# ଆଧୁନିକ ଓଡ଼ିଆ କବିତାରେ ରହସ୍ୟବାଦୀ ଚେତନା

ଡକ୍ଟର ସୌଦାମିନୀ ଚୌଧୁରୀ

Digitized by PPRACHIN, SOA

# ଆଧୁନିକ ଓଡ଼ିଆ କବିତାରେ
# ରହସ୍ୟବାଦୀ ଚେତନା

ଅଧ୍ୟାପିକା ଡକ୍‌ଟର ସୌଦାମିନୀ ଚୌଧୁରୀ

Digitized by PPRACHIN, SOA

ପ୍ରକାଶିକା : ଡକ୍ଟର୍ ସୌଦାମିନୀ ଚୌଧୁରୀ
ବଜ୍ରକବାଟି ରୋଡ୍, କଟକ

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥପ୍ରକାଶିନୀ ପ୍ରେସ୍ , କଟକ

ପରିବେଷକ : ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ : ଡିସେମ୍ବର ୧୯୮୮

ମୂଲ୍ୟ : ଟ ୮୦.୦୦

Digitized by PPRACHIN, SOA

# କୃତଜ୍ଞତା ପତ୍ର

୧୯୮୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା Ph.D. thesis ରୂପେ ସ୍ୱୀକୃତିପ୍ରାପ୍ତ ହୋଇଥିବା ମୋଦ୍ୱାରା ପ୍ରସ୍ତୁତ "ଆଧୁନିକ ଓଡ଼ିଆ କବିତାରେ ରହସ୍ୟବାଦୀ ଚେତନା" ଶୀର୍ଷକ ଏହି ନିବନ୍ଧଟି କିଞ୍ଚିତ୍ ପରିବର୍ତ୍ତିତ ରୂପରେ ଗ୍ରନ୍ଥ ଆକାରରେ ପ୍ରକାଶିତ ହେବାକୁ ଯାଉଛି । ଏହି ଅବସରରେ ମୁଁ ନିବନ୍ଧର ତତ୍ତ୍ୱାବଧାରକ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆବିଭାଗର ପ୍ରଫେସର୍ ଡକ୍ଟର୍ ନିତ୍ୟାନନ୍ଦ ଶତପଥୀଙ୍କଠାରୁ ନିବନ୍ଧ ପ୍ରସ୍ତୁତି କାଳରେ ଲାଭକରିଥିବା ଅକୁଣ୍ଠ ସାହାଯ୍ୟ, ମାର୍ଗଦର୍ଶନ ଓ ସ୍ନେହାଶୀର୍ବାଦକୁ ଗଭୀର କୃତଜ୍ଞତାର ସହ ସ୍ମରଣ କରୁଛି ।

ନିବନ୍ଧ ପ୍ରସ୍ତୁତ ପାଇଁ ତିନିବର୍ଷ ଛୁଟି ମଞ୍ଜୁର କରିଥିବାରୁ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ, ବିଶ୍ୱବିଦ୍ୟାଳୟ ଅଧୀନରେ ନିବନ୍ଧ ପ୍ରସ୍ତୁତିର ଅନୁମତି ପ୍ରଦାନ କରିଥିବାରୁ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଓ ବିଭାଗମୁଖ୍ୟ ଏବଂ ଏଥିପାଇଁ ବୃତ୍ତି ପ୍ରଦାନ କରିଥିବାରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ନିକଟରେ ମୁଁ କୃତଜ୍ଞତା ପ୍ରକାଶ କରୁଛି ।

ନିବନ୍ଧ ପ୍ରସ୍ତୁତି ଅବକାଶରେ ବିଭିନ୍ନ ଅନୁଷ୍ଠାନର ପାଠାଗାର ଉପଯୋଗ କରିବାପାଇଁ ଅନୁମତି ପ୍ରଦାନ କରିଥିବାରୁ ସମ୍ପୃକ୍ତ ଅନୁଷ୍ଠାନମାନଙ୍କର ପରିଚାଳନା କର୍ତ୍ତୃପକ୍ଷଙ୍କୁ ମୁଁ କୃତଜ୍ଞତା ଜ୍ଞାପନକରୁଛି ।

ଏ ଗ୍ରନ୍ଥ ମୁଦ୍ରଣ-ରୂପ ଲାଭକରିବା ଦିଗରେ ଗ୍ରନ୍ଥମନ୍ଦିରର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କ ଉଦ୍‌ଯୋଗ ଓ ଶ୍ରମ ସ୍ୱୀକାର ପାଇଁ ମୋର କୃତଜ୍ଞତାର ଭାଷା ଅତି ସାମାନ୍ୟ । ୧୯୮୬ରୁ ୧୯୮୮, ବ୍ରହ୍ମପୁରରୁ କଟକ—ବହୁ ପ୍ରତିକୂଳତାସତ୍ତ୍ୱେ ଏ ଗ୍ରନ୍ଥ ପ୍ରକାଶ ଲାଭ କରିବାର କୃତିତ୍ୱ ସମ୍ପୂର୍ଣ୍ଣ ତାଙ୍କର ।

ଗ୍ରନ୍ଥର କଳେବର ଦୃଷ୍ଟିରୁ ଶବ୍ଦ-ସୂଚୀ ଓ ସଂଶୋଧନପତ୍ରର ବ୍ୟବସ୍ଥା ସ୍ଥଗିତ ରଖାଗଲା । ମୁଦ୍ରଣଗତ ତ୍ରୁଟି-ପ୍ରମାଦ ମାର୍ଜନାପାଇଁ ସହୃଦୟ ସୁଧୀ ପାଠକଙ୍କର ଉଦାରତା ଉପରେ ଭରସା ରଖୁଛି ।

ପରିଶେଷରେ, ନିବନ୍ଧ ପ୍ରସ୍ତୁତି କାଳରେ ମୋର ସ୍ୱଜନ-ପ୍ରିୟଜନମାନଙ୍କଠାରୁ ଲାଭକରିଥିବା ଶୁଭେଚ୍ଛା, ସହଯୋଗ ଓ ତ୍ୟାଗ ନିକଟରେ ଋଣ ସ୍ୱୀକାର କରି ରହୁଛି ।

ଲେଖିକା

Digitized by PPRACHIN, SOA

# ପ୍ରାଗ୍‌ଭାଷ

ରହସ୍ୟବାଦର ମୂଳ ଜିଜ୍ଞାସା ଦର୍ଶନ ବା କାବ୍ୟତତ୍ତ୍ୱ ଆଧାରିତ ନୁହେଁ । ରହସ୍ୟତତ୍ତ୍ୱ ମୂଳତଃ ଆତ୍ମତତ୍ତ୍ୱ । ମାତ୍ର ସେ ଆତ୍ମୋପଲବ୍ଧିର ରୂପ ପ୍ରକାଶ ଧର୍ମ, ଦର୍ଶନ କିମ୍ବା କଳାର ମାଧ୍ୟମକୁ ଅଙ୍ଗୀକାର କରିନେଇଥାଏ । ଏହି ଅବକାଶରେ ରହସ୍ୟବାଦ ବିଶ୍ୱର ଯାବତୀୟ ଧର୍ମମତର ମୂଳ ପ୍ରବର୍ତ୍ତନା, ଦର୍ଶନର ମୂଳ ଜିଜ୍ଞାସା ଏବଂ କାବ୍ୟ-କଳାର ମୂଳ ପ୍ରେରଣାରୂପେ ବିଚାରଣୀୟ ହୋଇଥାଏ । ବିଶ୍ୱ ବାଙ୍ମୟ ଯେ ବ୍ୟକ୍ତି ଚେତନାର ନୈର୍ବ୍ୟକ୍ତିକତା ସିଦ୍ଧ ଅପରୋକ୍ଷ-ସମ୍ବିଦ୍-ଅନୁଭୂତିର ରହସ୍ୟକୁ ପ୍ରକାଶ କରିବାର ଭାଷା-ପ୍ରୟାସ ମାତ୍ର, ଅତଏବ କାବ୍ୟତତ୍ତ୍ୱରୂପେ ଅନୁଶୀଳିତ ହେବାର ଯଥାର୍ଥତା ଏହାର ରହିଛି, ଉପକ୍ରମରେ ତାହାର ସୂଚନା ପ୍ରଦତ୍ତ ।

ପ୍ରଥମ ପରିଚ୍ଛେଦରେ ରହସ୍ୟବାଦର ସଂଜ୍ଞାସ୍ୱରୂପ ଆଦି ତତ୍ତ୍ୱାତ୍ମକ ବିଚାର ଓ ରହସ୍ୟାନୁଭବର ରୂପ-ବିଶ୍ଳେଷଣ ସମ୍ପର୍କରେ ବହୁ ମିଷ୍ଟିକ୍ କବି, ସାଧକ, ଦାର୍ଶନିକ ଓ ଆଲୋଚକଙ୍କର ବିଭିନ୍ନ ମତର ବ୍ୟାଖ୍ୟାନ କରାଯାଇଛି ।

ଦ୍ୱିତୀୟ ପରିଚ୍ଛେଦରେ ଆଧୁନିକ ଓଡ଼ିଆ କାବ୍ୟ-ଚେତନାରେ ରହସ୍ୟବାଦ ପରମ୍ପରା ଓ ନୂତନତାର ଶୁଭସଂଯୋଗ ଭିତରୁ ଯେଉଁ ସ୍ୱର ବୈଚିତ୍ର୍ୟନେଇ ଆବିର୍ଭୂତ, ଭକ୍ତକବି ମଧୁସୂଦନଙ୍କ କାଳରୁ ମାୟାଧର ମାନସିଂହଙ୍କ ପର୍ଯ୍ୟନ୍ତ କେତେକ ବୈୟକ୍ତିକ କବିମାନସ ଓ କାବ୍ୟ-ସୃଷ୍ଟି ଅନୁଧ୍ୟାନରେ ତାହା ନିର୍ଣ୍ଣୀତ ।

ତୃତୀୟ ପରିଚ୍ଛେଦରେ ଏହି ସମୟ-ସୀମାରେ ରହସ୍ୟବାଦର ସ୍ୱରପ୍ରକାଶ ଅପ୍ରତୁଳ, ଅସ୍ପଷ୍ଟ, କ୍ଷୀଣ ଓ ଦୁର୍ବଳ ମନେହୋଇଥିବା କେତେକ କବିଙ୍କ ରଚନାର ସଂକ୍ଷିପ୍ତ ରୂପବିଚାରର ପ୍ରଚେଷ୍ଟା କରାଯାଇଛି ।

ଉପସଂହାରରେ ଆଧୁନିକ ଓଡ଼ିଆ କବିତାର ରହସ୍ୟବାଦୀ ଅଭିବ୍ୟକ୍ତିର ଆତ୍ମମୁଖ୍ୟ ଓ ପରିଣତି ସମ୍ପର୍କରେ କିଞ୍ଚିତ୍ ଅନୁଧ୍ୟାନ କରାଯାଇଛି ।

ପରିଶିଷ୍ଟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚେତନାରେ ବିଭିନ୍ନ ରହସ୍ୟବାଦୀ ତତ୍ତ୍ୱସିଦ୍ଧାନ୍ତର ରୂପ ଅନୁଧ୍ୟାନ କରାଯାଇଛି । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ—ଦୂରପ୍ରାଚ୍ୟ ଜେନ-ସିଦ୍ଧାନ୍ତ ଓ ତାଓସାହିତ୍ୟ ବିଚାର ପରିସର ଦୃଷ୍ଟିରୁ ପ୍ରସଙ୍ଗ-ବାହୁଲ୍ୟ ବିବେଚନାରେ ଏ ଗ୍ରନ୍ଥରେ ଆଲୋଚନା ପରିସରଭୁକ୍ତ ହୋଇନାହିଁ ।

ପରିଶେଷରେ, ସ୍ୱୀକାର୍ଯ୍ୟ, ଏ ସନ୍ଦର୍ଭ ଆଧୁନିକ ଓଡ଼ିଆ କବିତାରେ ରହସ୍ୟବାଦୀ ଚେତନା ସ୍ୱରୂପର ପୂର୍ଣ୍ଣ ଅନୁଧ୍ୟାନ ନୁହେଁ । ଯଥାସାଧ୍ୟ ଉଦ୍ୟମ ସତ୍ତ୍ୱେ ଅନେକ କବି ଓ କାବ୍ୟଭାବନା ଆଲୋଚନା ପରିସରଭୁକ୍ତ ହୋଇପାରି ନଥିବାର ସମ୍ଭାବନା ରହିଛି । ତାହା ମୋର ଅକ୍ଷମତା—ସେମାନଙ୍କର ଅସ୍ୱୀକୃତି ନୁହେଁ । ବ୍ୟକ୍ତି ସାଧନା ତ ସବୁବେଳେ ଆପେକ୍ଷିକ । ଓଡ଼ିଆ ସାହିତ୍ୟରେ ରହସ୍ୟବାଦୀ ଭାବ ଚେତନାର ରୂପଅବଧାରଣ ଦିଗରେ ଏ ସନ୍ଦର୍ଭ ସୋପାନ ମାର୍ଗର ପ୍ରସ୍ତୁତିପର୍ବ ହୋଇପାରିଲେ ଶ୍ରମ ସାର୍ଥକମନେକରିବି ।

---

Digitized by PPRACHIN, SOA

## ସୂଚୀପତ୍ର


୧ । ଉପକ୍ରମ : ରହସ୍ୟବାଦ ଓ ସାହିତ୍ୟ—ସଂଯୋଗ ଉତ୍ସ ... ୧

ସଂଯୋଗରୂପ ... ୫

୨ । ପ୍ରଥମ ପରିଚ୍ଛେଦ : ରହସ୍ୟ ସାଧନା ଧାରା

ଉନ୍ମେଷ ପର୍ବ ... ୫୪

ପ୍ରସ୍ଫୁଟ ପର୍ବ ... ୬୨

ଆଲୋକ ପର୍ବ ... ୬୪

ଆତ୍ମାର କାଳଗ୍ରନ୍ଥି ... ୭୦

ବ୍ରାହ୍ମୀସ୍ଥିତି ... ୮୪

୩ । ଦ୍ୱିତୀୟ ପରିଚ୍ଛେଦ

ଆଧୁନିକ ଓଡ଼ିଆ କବିତାରେ ରହସ୍ୟବାଦୀ ଚେତନା, ପ୍ରାରମ୍ଭିକ ସୂଚନା ... ୯୮

କାବ୍ୟାଲୋଚନା

ମଧୁସୂଦନ ରାଓ ... ୧୦୧

ଗୋପବନ୍ଧୁ ଦାଶ ... ୧୬୪

ଲକ୍ଷ୍ମୀକାନ୍ତ ମହାପାତ୍ର ... ୧୯୧

କୁନ୍ତଳା କୁମାରୀ ସାବତ ... ୨୨୫

ବୈକୁଣ୍ଠନାଥ ପଟ୍ଟନାୟକ ... ୨୪୦

ମାୟାଧର ମାନସିଂ ... ୩୦୧

୪ । ତୃତୀୟ ପରିଚ୍ଛେଦ — ରହସ୍ୟବାଦୀ ଭାବାନୁଚିନ୍ତାର ଗୌଣ କାବ୍ୟପ୍ରକାଶ ... ୩୪୮

୫ । ଉପସଂହାର — ଯୁଗୀୟ କବିତାର ରହସ୍ୟବାଦୀ ଆଭିମୁଖ୍ୟ ଓ ପରିଣତି ... ୩୭୩

୬ । ପରିଶିଷ୍ଟ — ରହସ୍ୟବାଦୀ ବିକାଶଧାରା

ପାଶ୍ଚାତ୍ୟ ଦର୍ଶନ ... ୩୮୧

ଗ୍ରୀସୀୟ ଦର୍ଶନ ... ୩୮୧

ଇହୁଦୀ ଧର୍ମ ଦର୍ଶନ ... ୩୮୪

ସୂଫୀ ଚେତନା ... ୩୯୩

ଭାରତୀୟ ଦର୍ଶନ ... ୪୦୫

ବୈଦିକ ରହସ୍ୟ ଚେତନା ... ୪୦୭

ଉପନିଷଦରେ ରହସ୍ୟ ଅଭିବ୍ୟକ୍ତି ... ୪୨୨

ଚର୍ଯ୍ୟାର ରହସ୍ୟତତ୍ତ୍ୱ ... ୪୨୭

ନିର୍ଗୁଣ ରହସ୍ୟ ସାଧନା ... ୪୩୯


---

* ପୃ. ୮୪ ରୁ ପୃ. ୯୧ ପୃଷ୍ଠାର ଶୀର୍ଷକ 'ବ୍ରାହ୍ମୀସ୍ଥିତି' ଓ ପୃ. ୩୮୧ ରୁ ପରିଚ୍ଛେଦ ଶେଷ ପର୍ଯ୍ୟନ୍ତ ପୃଷ୍ଠା ଶୀର୍ଷକ ପରିଶିଷ୍ଟ ବୋଲି ପାଠକରିବାକୁ ଅନୁରୋଧ ।

Digitized by PPRACHIN, SOA

# ଉପକ୍ରମ

## ରହସ୍ୟବାଦ ଓ ସାହିତ୍ୟ

ସଂଯୋଗ-ଉତ୍ସ:—ରହସ୍ୟବାଦ ବସ୍ତୁତଃ କୌଣସି କାବ୍ୟ ଧର୍ମ ନୁହେଁ—ଏବଂ ଧର୍ମ, ଦର୍ଶନ ଓ ସାହିତ୍ୟ କ୍ଷେତ୍ରରେ ଏହା ସମାନ ରୂପେ ପ୍ରଯୁକ୍ତ ହେଉଥିଲେ ହେଁ ଦର୍ଶନ ବା ଧର୍ମତତ୍ତ୍ୱବିଶେଷ ରୂପେ ଏହା କାବ୍ୟତତ୍ତ୍ୱକୁ ପ୍ରବେଶାଧିକାର ଲୋଡ଼ିନଥାଏ । ଏହା ବସ୍ତୁତଃ ଆତ୍ମୋପଲବ୍ଧିଗତ ଏକ ଜୀବନତତ୍ତ୍ୱ ।

ରହସ୍ୟଚେତନାର ସ୍ୱରୂପ—ବିବର୍ତ୍ତନର ଧାରା କ୍ରମରେ ମାନବ ଧରିତ୍ରୀପୃଷ୍ଠର ସର୍ବ ପ୍ରଥମ 'ଆତ୍ମ-ସଚେତନ'-ପ୍ରାଣୀ, ସିଏ କି ବିଶ୍ୱସଚେତନାର ଆଭିମୁଖ୍ୟ ପ୍ରତି ନିୟତ ଗତିଶୀଳ । ଅନ୍ତର୍ନିହିତ ଯାବତୀୟ ଉପଲବ୍ଧି ମାର୍ଗରେ ତାର ଚେତନାର ଏକ ଚକ୍ଷୁ ସ୍ୱକେନ୍ଦ୍ରସ୍ଥ, ଅପର ଦୃଷ୍ଟିରେଖାଟି ବିଶ୍ୱବଳୟ ପ୍ରତି ଉନ୍ମୋଚିତ । ଏକପାର୍ଶ୍ୱରେ ଜୀବନାତୀତ ଅଜ୍ଞେୟ ଓ ଅପରପାର୍ଶ୍ୱରେ ଜାଗ୍ରତ ଆତ୍ମ-ଅବବୋଧ—ଜୀବନରହସ୍ୟର ଏଇ ଦ୍ୱିବିଧ ସଚେତନା ପ୍ରତି ଉଚ୍ଚାଟିତ ଜିଜ୍ଞାସା ଭିତରୁ ହିଁ ମାନବୀୟ ସକଳ ଅଭିବ୍ୟକ୍ତି-ପ୍ରୟାସର ସମୁଦୟ ।

ବ୍ୟକ୍ତଚେତନାର ସ୍ଥୂଳ ଅଭିଜ୍ଞାନଟି ତ୍ରି-ପରିମିତିବୋଧିତ (Three-dimensional) । ଅନ୍ତର୍ନିହିତ ଉପଲବ୍ଧିସକଳର ସତ୍ୟତା ଏଇ ନିଃସୀମା-ବୋଧରେ ଅନୁଶୀଳିତ । ତଥାପି ଚେତନାର ଏକ ସୂକ୍ଷ୍ମାନୁଭୂତିଲବ୍ଧ ଇନ୍ଦ୍ରିୟାତୀତ ପ୍ରତୀତି ମଧ୍ୟ ରହିଛି, ଯାହା ଜୀବନର ଅଜ୍ଞାତ ପାର୍ଶ୍ୱ ପ୍ରତି ବ୍ୟକ୍ତିକୁ ଇଙ୍ଗିତ କରିଦିଏ । ଅଜ୍ଞାତ ଓ ଅଜ୍ଞେୟ ସଂପର୍କରେ ଚେତନାର ପ୍ରତିକ୍ରିୟା ହିଁ ମାନବର ଭାଷାରୂପରେ 'ରହସ୍ୟ' ନାମକରଣ ଦେଇଛି । ଏକ କଥାରେ ସ୍ୱ, ବିଶ୍ୱ ଓ ବିଶ୍ୱାତୀତ—ଏଇ ବିନ୍ଦୁ ତ୍ରୟରେ ପରିକ୍ରମା କରୁଥିବା ଜୀବନ-ରହସ୍ୟ ସଂପର୍କରେ ସଚେତନା ହିଁ ରହସ୍ୟବାଦୀ ରୂପ-ଜିଜ୍ଞାସା ।

ରହସ୍ୟତତ୍ତ୍ୱ ଓ ଧର୍ମ-ଦର୍ଶନ-ସାହିତ୍ୟ—ନିଜଠାରୁ ଭିନ୍ନ ଓ ଅବଧାରଣାର ଅଗମ୍ୟ ମନେହେଉଥିବା ରହସ୍ୟମୟ ଏକ ମହାଅଜଣାକୁ କେନ୍ଦ୍ରକରି ମାନବର କୌତୂହଳ, ବିସ୍ମୟ, ଭୟ ଓ ଶ୍ରଦ୍ଧା ପ୍ରଭୃତି ପ୍ରାଥମିକ ଭାବବୃତ୍ତିମାନ ଉଦ୍ରିକ୍ତ ହୋଇଥାଆନ୍ତି । ଏମାନେ ଏକପକ୍ଷରେ ବ୍ୟକ୍ତି ଓ ସେହି ଅଜ୍ଞାତସତ୍ତା ମଧ୍ୟରେ ଏକ ବ୍ୟବଧାନ ସୃଷ୍ଟି କରନ୍ତି, ପୁଣି ଉଭୟଙ୍କ ମଧ୍ୟରେ ଏକ ନିବିଡ଼ ସଂଯୋଗର ସୂଚନା ମଧ୍ୟ ଦେଇଥାଆନ୍ତି । ଜୀବନ ଯାହା ଜାଣେ ଏ ଅଜ୍ଞାତ ତାଠାରୁ ଭିନ୍ନ ('wholly other'); ଏଇ ଭିନ୍ନତ୍ୱ ହେତୁ ସେ ଅଜ୍ଞେୟ, ପୁଣି ଏ 'ଅଜ୍ଞେୟତ୍ୱ'ର ରହସ୍ୟକୁ ମାନବୀୟ ଶକ୍ତି ନିର୍ଣ୍ଣୟ କରିପାରିବନାହିଁ । ଏହି ରହସ୍ୟମୟତାରୁ ଜାତ ଭୟ, ବିସ୍ମୟ; ବିସ୍ମୟର ନିରୀକ୍ଷଣ ଭିତରୁ ଦର୍ଶନର ତର୍କଣା ଓ ଶ୍ରଦ୍ଧାର ଅଭିଭୂତିରୁ ଧର୍ମଧାରଣା । ଧର୍ମଧାରଣାରେ ଅଜ୍ଞାତ ଓ ଅଜ୍ଞେୟ

Digitized by PPRACHIN, SOA

ପ୍ରତି ସେ ସଂଭ୍ରମ ଅନୁରାଗର ଅନୁଭବରେ ସେହି ବହୁଃସ୍ଥ ବିରାଟ ବିସ୍ମୟ ସତ୍ତାର କ୍ଷୁଦ୍ର ହୃଦସ୍ପନ୍ଦରେ ଜୀବନାନଂଦ ରୂପେ ନିସୃତ ସ୍ପଂଦନ ରହିଥାନ୍ତି । ଏହି ଅବକାଶରେ ହିଁ ଧର୍ମ ଓ ଦର୍ଶନ ଜୀବନଚର୍ଯ୍ୟା ରୂପେ ସଂଗତ ହୁଅନ୍ତି । ଦର୍ଶନର ତାତ୍ତ୍ୱିକ ଈଶ୍ୱର କାଳ, ଶୂନ୍ୟ, ଅରୂପ ଚେତନାରେ ଧର୍ମ-ସାଧନାର ଜ୍ଞାନ ଭକ୍ତି ଯୋଗମାର୍ଗର କେଂଦ୍ରବିଂଦୁ ରୂପେ ଜୀବନ ସହ ଗଭୀରଭାବେ ସଂପୃକ୍ତ ହୋଇପଡ଼ନ୍ତି । ଦର୍ଶନର ଅମୂର୍ତ୍ତ ଅଜ୍ଞେୟକୁ ଅନୁଭବର ପ୍ରତ୍ୟକ୍ଷତାରେ ଯେ ଜୀବନରେ ଲାଭ କରିଥାଏ ତାର ରହସ୍ୟ ଉଦ୍‌ଘାଟନ ଏସବୁ ଅନୁଚର୍ଯ୍ୟାର ତାତ୍ପର୍ଯ୍ୟ ।

କଳା ସେଇ ରହସ୍ୟ ପ୍ରକାଶର ଏକ ନାଂଦନିକ ସାଧନା-ରୂପ ଏବଂ କଳାତ୍ମକ ଅଭିବ୍ୟକ୍ତିର ମାଧ୍ୟମ ବିଶେଷ ରୂପେ ସାହିତ୍ୟ ମଧ୍ୟ ଅସୀମ ଓ ସସୀମ ବା ଅପାର୍ଥିବ ଓ ପାର୍ଥିବର ଅପରୋକ୍ଷ ସାକ୍ଷାତ୍କାର ସଂବାଦର ରସାତ୍ମକ ବାଙ୍ମୟ ପରିବେଷଣ । କେବଳ ମହାନ୍ ବିରାଟ ସଂପର୍କରେ ସାହିତ୍ୟର ବିଶେଷ କିଛୁ ବ୍ୟସ୍ତତା ନାହିଁ । 'ସ୍ତବ୍ଧ ଚିତ୍ତବୃତ୍ତି' ବୋଲି ଜ୍ଞାପନ କରିଦେଇ ସେ ନୀରବ ରହିଯାଏ । ମାତ୍ର ଯେଉଁଠାରେ ଅଜ୍ଞାତ ଅପରିଚିତ ବ୍ୟକ୍ତିର ହୃଦୟକୁ ଆସି ସ୍ପର୍ଶକରେ, ଚିତ୍ତବୃତ୍ତିକୁ ନିଜ ପଛେ ପଛେ ଓଟାରି ନେବାକୁ ବସେ, ସେଠାରେ ସାହିତ୍ୟ ଆଉ ନୀରବଦ୍ରଷ୍ଟା ରହିପାରେ ନାହିଁ । ଚିତ୍ତବୃତ୍ତିଂକୁ ଶବ୍ଦ-ପ୍ରତୀକରେ ଭାଷା-ରୂପ ଦେବାହିଁ ତ ତାର କାର୍ଯ୍ୟ । ହୃଦୟର ଭାବସ୍ପଂଦନମାନହିଁ ତ କାବ୍ୟପ୍ରେରଣାରୂପେ ଭାଷାଶରୀରକୁ ସଂଗ୍ରହିତ କରିଥାଂନ୍ତି । ତାତ୍କାଳିକ ଅନୁଭବ ଭିତରୁ ଉଦ୍ରିକ୍ତ ଭାବଚେତନାକୁ ଜୀବନର ସମଗ୍ରତା ସହ ଅନ୍ୱିତ କରି ଦେଖିବା ତ କାବ୍ୟଦୃଷ୍ଟି । ଅର୍ଥାତ୍ କବି ଦ୍ରଷ୍ଟା—କେବଳ ଦର୍ଶକ ନୁହେଁ; ତାର କାବ୍ୟ ଦୃଷ୍ଟିରେ ତେଣୁ ହୃଦୟାନୁଭବର ତାତ୍କ୍ଷଣିକତା ସହ ବିଶ୍ୱଜନୀନତାର ବ୍ୟାପକତାଟି ମଧ୍ୟ ସମାକୀର୍ଣ୍ଣ । କବିସତ୍ତାର ସାମଗ୍ରିକ ବିହ୍ୱଳତା ଭିତରକୁ ଏଇ ଯେ ବିଶ୍ୱଜୀବନର ମହାଆବେଗ ପ୍ରସରି ଆସେ, ସେଇଠାରେ ହିଁ ଦର୍ଶନ ଓ ଧର୍ମ ଯେପରି ଏକାଠି ଏକ ସ୍ରୋତଧାର ହୋଇ ସାହିତ୍ୟ ବକ୍ଷରେ ଅକାତର ହୋଇପଡ଼ନ୍ତି । ଅନୁଭବ ଓ ଚିଂତା, ବୁଦ୍ଧି ଓ ଆବେଗକୁ ଭାବରସାଶ୍ରିତ କରି ସାହିତ୍ୟ ଭାଷା-ପ୍ରସ୍ତରରେ ସ୍ଥାପତ୍ୟଶିଳ୍ପର ଆନଂଦ-କୋଣାର୍କ ଗଢ଼ିଦିଏ । ଶୁଷ୍କ ତତ୍ତ୍ୱର ରହସ୍ୟ, ନିରୋଳା ଅନୁଭବର ରହସ୍ୟ ବୈଚିତ୍ର୍ୟ ଶବ୍ଦ-ଶକ୍ତିର ରହସ୍ୟକୁ ଆଶ୍ରୟ କରି ସାହିତ୍ୟରେ ରହସ୍ୟଚେତନା ରୂପେ ଅଭିବ୍ୟକ୍ତ ହୁଏ । ନିଛକ ଚିଂତା ଓ ନିରୋଳା ଅନୁଭବର ଯାବତୀୟ ବିରୋଧ ବ୍ୟବଧାନକୁ ଅଂଗୀକାର କରି ସାହିତ୍ୟ ସେମାନଂକର ମୂଳ ତାତ୍ପର୍ଯ୍ୟର ଅନୁସରଣ ଭିତରେ ଏକ ସମନ୍ୱୟ ସାଧନର ପ୍ରୟାସ କରେ ।

ଏଇଥିପାଇଁ ରହସ୍ୟତତ୍ତ୍ୱ ଏକ ଶୁଦ୍ଧ ସାହିତ୍ୟତତ୍ତ୍ୱ ରୂପେ ଆଲୋଚିତ ହୋଇପାରେ ନାହିଁ । କାରଣ ସାହିତ୍ୟରେ ରହସ୍ୟବାଦର ବିଚାର ପ୍ରସଂଗରେ ବିବିଧ ରହସ୍ୟବାଦୀର ବିଶ୍ୱାସ, ଦର୍ଶନ, ଚିଂତା ଓ ସାଧନାରୂପର ସଂକେତମାନ ଅନୁଶୀଳିତ ହୋଇ ରହିବାକୁ ବାଧ୍ୟ । ତେଣୁ ଅନ୍ୟାନ୍ୟ ସାହିତ୍ୟିକ ତତ୍ତ୍ୱ ପରି ରହସ୍ୟବାଦକୁ ଏକ ଶିଳ୍ପତତ୍ତ୍ୱ ରୂପେ ବିଚାର କରିବାର ନିର୍ଦ୍ଦିଷ୍ଟ ଦୃଗ୍‌ଦର୍ଶନଟି ସୁନିରୂପିତ ହୋଇ ପାରିନାହିଁ ।

ରହସ୍ୟବାଦୀ ସାହିତ୍ୟ ରହସ୍ୟବାଦୀ ଦର୍ଶନ ଆଧାରିତ । ସେ ଦର୍ଶନର ମୂଳଭିତ୍ତି ରହସ୍ୟାତ୍ମକ ଅନୁଭବ । ଏଇଠାରେ ସାହିତ୍ୟ ପୁଣି ତାର ମୂଳ ଜାଗା ଅନୁଭବକୁ ଫେରିଆସେ ।

Digitized by PPRACHIN, SOA

ଅନୁଭବରେ ଧର୍ମ ନାହିଁ, ଦର୍ଶନ ନାହିଁ, ତତ୍ତ୍ୱ ନାହିଁ କି କଳ୍ପନା ନାହିଁ । କେବଳ ଅନୁଭବ ଓ ଅନୁଭବୀ ଅଛନ୍ତି । ସେମାନଙ୍କର ତାଦାତ୍ମ୍ୟ ଅଛି । ସେ ତାଦାତ୍ମ୍ୟର ରୂପ ପରିଚୟ ବାଢ଼ିବା ପାଇଁ ଭାଷା ଉପସ୍ଥିତ ହୁଏ । ଭାଷା ଆଶ୍ରୟକରେ ଶବ୍ଦକୁ । ଶବ୍ଦ ଅର୍ଥାନ୍ୱିତ ହେବା ପାଇଁ ରୂପ ବା ଇମେଜ୍‌ର ଆଶ୍ରୟ ନିଏ । ଏ ରୂପ-ଚେତନା କିନ୍ତୁ ମନବୁଦ୍ଧିର ପୂର୍ବ ଅଭିଜ୍ଞାନ ସଂଶ୍ରବଯୁକ୍ତ । ଅନୁଭବର ଅପରୋକ୍ଷତା (immediacy) ଏଇଠାରେ ତାର ଶୁଦ୍ଧତା ବା କେବଳତ୍ୱକୁ ହରାଇବସେ । ଏ ସଂଯୋଜନା ଅବକାଶରେ ଭାବ ଓ କଳ୍ପନାର ସମାଗମ ହୁଏ । କଳ୍ପନା କିଛିପରିମାଣରେ ଅବାସ୍ତବତାକୁ ଅବଲମ୍ବନ କରେ । ତାର ଔଚିତ୍ୟ ବିଗ୍ଭର ପାଇଁ ବୁଦ୍ଧି ଆସି ଦ୍ୱାର ଜଗେ । ବିଚାରର ସହ ଆସେ ତାର୍କିକତା । ତର୍କ-ସହ ବେଳେ ବେଳେ ପଶିଆସନ୍ତି ବିଗ୍ଭରମୂଢ଼ତା ଓ ମତାନ୍ଧତା (dogma) ।

ଅନୁଭବର ପୃଥିବୀ ଉପରୁ ଭାବନାର ଆକାଶ ପର୍ଯ୍ୟନ୍ତ କଳ୍ପନା ଇନ୍ଦ୍ରଧନୁ ରଚନା କରେ । ମାଟି ଓ ଆକାଶକୁ ତଫାତ୍ କରି ସେ ଇନ୍ଦ୍ରଧନୁ ଭାଙ୍ଗିଦେବାକୁ ବିଗ୍ଭର ଉଦ୍ୟତ ହୋଇ ରହିଥାଏ । ସାହିତ୍ୟ ଏ ସଂଘର୍ଷର ଆହ୍ୱାନକୁ ଉଭୟ ପକ୍ଷରୁ ଗ୍ରହଣ କରେ । ସାହିତ୍ୟର ଆଖି ଯେପରି ସକାଳର ଶିଶିର କଣା । ପୃଥିବୀରେ ଥାଇ, ପୃଥିବୀର ହୋଇ ମଧ୍ୟ ସେ ଆକାଶକୁ ନିଜଠାରେ ଧାରଣ କରିବ, ଆକାଶକୁ ରଚନା କରିବ । ସକାଳର ସୂର୍ଯ୍ୟ ରଶ୍ମିକୁ ମାଟି ଉପରେ ଅଜସ୍ର ରଙ୍ଗରେ ଝଲସାଇ ଦେବ । ମାଟିକୁ ଆକାଶ ସାଙ୍ଗରେ, ସୂର୍ଯ୍ୟକୁ ରଙ୍ଗ ସାଙ୍ଗରେ ସଂବନ୍ଧିତ କରୁଥିବା ସେଇ କଳାତ୍ମକତାର ରହସ୍ୟ ଆବିଷ୍କାର ହିଁ ରହସ୍ୟବାଦୀ ସାହିତ୍ୟର ମୂଳଜିଜ୍ଞାସା ।

ମିଷ୍ଟିସିଜମ୍ ତାର ମୂଳ ସ୍ୱରୂପରେ କେବଳ ଆକାଶର ଉଚ୍ଚାଟନ ନୁହେଁ, କେବଳ ମାଟିର ଆଲିଙ୍ଗନ ବି ନୁହେଁ । ମାଟି ଓ ଆକାଶ ଉଭୟର ବାସ୍ତବତାକୁ ଉପଲବ୍ଧିର ସତ୍ୟତା ଭିତରେ ଲାଭ କରିବା ହିଁ ମିଷ୍ଟିକ ଉପଲବ୍ଧି । ସେ ଦୃଷ୍ଟି ପୂର୍ଣ୍ଣାଙ୍ଗ । ଆପେକ୍ଷିକ ଦେଖାରେ ଜୀବନ ହୁଏତ ଭୌତିକ-ବାଦୀର ଜଡ଼ ପରିଣତି, କିମ୍ବା ଭାବବାଦୀର ଅରୂପ ବିଳାସ । ରହସ୍ୟବାଦ ମାଟି ଓ ଆକାଶର ପାରସ୍ପରିକ ସଂପର୍କର ରହସ୍ୟସ୍ପନ୍ଦନଟିକୁ ହିଁ ଧରିରଖେ । ଏହି ସ୍ପନ୍ଦନଟି ଜୀବନୋଲ୍ଲାସ ରୂପେ ସୃଷ୍ଟିର ମୂଳଭୂତ ସୃଜନାବେଗକୁ ସଂବହନ କରିଥାଏ । ସୃଷ୍ଟିର ଯାବତୀୟ ଅଭିବ୍ୟକ୍ତିପ୍ରୟାସରେ ଜଗତ ଓ ଜୀବନର ଏହି ଅନ୍ତର୍ଗତ ସତ୍ୟଟି ନିୟତ ପ୍ରକାଶୋନ୍ମୁଖ ।

ସୁତରାଂ ସକଳ ଶିଳ୍ପପ୍ରସାଧନରେ, ମାନବର ଚିନ୍ତନ-ମନନ, ଭାବ ଅନୁଭବ, ତାର ସଂଗୀତ ସ୍ଥାପତ୍ୟ, ରଙ୍ଗ ତୂଳି ଓ କାଳିକଲମରେ ଏଇ ଆତ୍ମ ଅଭିବ୍ୟକ୍ତିର ଏକାଗ୍ର ଉନ୍ମୁଖତା ପ୍ରକଟିତ । ମନେହୁଏ, ବ୍ୟକ୍ତି ଯେପରି ଅନ୍ତଃସଂଗୁପ୍ତ ଏକ ପ୍ରବଳଶକ୍ତିର ଅଭିଘାତରେ ସ୍ରୋତୋଚ୍ଛ୍ୱାସ ଭଳି ମାଡ଼ିଚାଲିଛି । ଏ ଶକ୍ତି ଜୀବନାବେଗ ରୂପେ ତାର ସମସ୍ତ ସୀମାବନ୍ଧନ ଓ ଅସାମର୍ଥ୍ୟ ସତ୍ତ୍ୱେ ତାକୁ କେବେ ବି ନିଷ୍କ୍ରିୟ ରଖାଇଦେଉନାହିଁ । ସେହି ମହାପ୍ରାଣର ସ୍ପନ୍ଦନାବେଗଟି ତାର ନିଜକୁ, ପୁଣି ନିଜ ବାହାରେ ସବୁ କିଛିକୁ ଦେଖିବାକୁ, ବୁଝିବାକୁ, ଚହ୍ନିବାକୁ ଯେପରି ବ୍ୟଗ୍ର ଚଞ୍ଚଳ । ତାର ଅନ୍ତର୍ଜୀବନ ଓ ବହିର୍ଜଗତ ଯେପରି ଏକ ବିଶ୍ୱ ଚେତନାର ମହାପ୍ରବାହରେ ସମ୍ମିଳିତ ଓ ଏକତାନ ନ ହେବା ପର୍ଯ୍ୟନ୍ତ ଆତ୍ମାନୁସନ୍ଧାନର ଏ ବ୍ୟଗ୍ରତା ତାକୁ ସ୍ଥିର ରଖାଇ ଦେଉନାହିଁ । ବିଶ୍ୱ ପ୍ରବାହର ଗତିଛନ୍ଦ ସହ ଏକକ ଜୀବନର ପଦପାତଟିକୁ ମିଳାଇ ସମତାନ କରି

Digitized by PPRACHIN, SOA

ଦେଖିବାହିଁ ରହସ୍ୟବାଦୀର ଦେଖା । ବ୍ୟକ୍ତ ଚେତନାର ଅନୁଭବ ଓ ଭାବାନୁସଂଗ ଯେ ତାତ୍କାଳିକ ଏବଂ ତନ୍ମାତ୍ରକୁ ଅତିକ୍ରମ କରି ନିତ୍ୟକାଳ ଓ ନିତ୍ୟସ୍ଥଳର ଶାଶ୍ୱତ ଉପଲବ୍ଧିକୁ ପ୍ରସାରିତ ହୋଇଯାଏ—ରହସ୍ୟବାଦ ସୀମାର ସେଇ ଶାଶ୍ୱତ ନିଷ୍କ୍ରମଣର ପ୍ରତ୍ୟକ୍ଷ ସଂବାଦ ।

ଜୀବନର ଦୁଇଟି ପାର୍ଶ୍ୱ ବିଦ୍ୟମାନ । କ୍ଷଣ ଓ ଚିରଂତନ, ମୁହୂର୍ତ୍ତ ଓ ନିତ୍ୟ, ଦେଶକାଳର ସୀମା ଓ ଦେଶକାଳାତୀତ ସଂଭାବନା । ସାହିତ୍ୟ ଦେଶକାଳର ସଂବାଦ ଭିତରେ ଅନଂତ ଅନାଦିକୁ ଆସ୍ପୃହା କରେ । ରହସ୍ୟବାଦ ସେ ଆସ୍ପୃହାକୁ ସଂଭବ ବୋଲି ପ୍ରମାଣିତ କରି ସୀମାର ଶାଶ୍ୱତ ଆକାଂକ୍ଷାକୁ ସମ୍ମାନ ଦିଏ । ରହସ୍ୟବାଦର ଏଇ ଆଶ୍ୱାସନା ବ୍ୟତିରେକେ ସାହିତ୍ୟର ସକଳ ଅସୀମ ଆକାଂକ୍ଷା ଓ ଶାଶ୍ୱତ-ସାଧନା ଏକ ଅବାସ୍ତବ ଦୁରଭିଳାଷ ରୂପେ ଅସାର୍ଥକ ହୋଇଯାଂତା । ତାର ଦର୍ଶନ କେବଳ ଅମୂର୍ତ୍ତ ଭାବନା ଓ ବାସ୍ତବତା-ଭୀରୁ ପଳାୟନ-ପରତାରେ ପର୍ଯ୍ୟବସିତ ହୋଇଥାଂତା । ତାର ସୌଂଦର୍ଯ୍ୟ ଓ ପ୍ରେମର ଉପଲବ୍ଧି ଏବଂ ସତ୍ୟ ସାଧନାର ଭିତ୍ତି ଦୋହଲି ପଡ଼ଂତା । କାରଣ, ସାହିତ୍ୟ ବ୍ୟକ୍ତିର ଅନ୍ୟାନ୍ୟ ସକଳ ସାଧନା ପରି ସତ୍ୟର ହିଁ ସାଧନା । ସାହିତ୍ୟର ଏ ସତ୍ୟାନୁସଂଧାନ ସୌଂଦର୍ଯ୍ୟ ଓ ପ୍ରେମ ମାଧ୍ୟମରେ । ସୌଂଦର୍ଯ୍ୟର ଆଖି ନେଇ, ପ୍ରେମର ଆଲୋକ ଜାଳି ହୃଦୟର ରାଜପଥରେ ସେ ସତ୍ୟର ସ୍ୱରୂପକୁ ଖୋଜିଯାଏ । ରହସ୍ୟବାଦ ହିଁ ସୌଂଦର୍ଯ୍ୟ ଓ ପ୍ରେମକୁ ଯଥାଯଥ ପଥନିର୍ଦ୍ଦେଶ ଦେଇଥାଏ, କାରଣ ସତ୍ୟ ସହ ତାର ଯୋଗାଯୋଗ ଜୀବନର ସହଜ ଅନୁଭୂତି ଭିତରୁ ବହୁ ପୂର୍ବରୁ ସଂସାଧିତ ହୋଇଥାଏ ।

ମାନବର ବିଶାଳ ଚିଂତାଜଗତ ଓ ଅତଳ ଭାବସମୁଦ୍ରରେ ଏଇ ସତ୍ୟ, ସୌଂଦର୍ଯ୍ୟ ଓ ପ୍ରେମର ରୂପାଭିବ୍ୟକ୍ତି ଦର୍ଶନ, ବିଜ୍ଞାନ, ଧର୍ମ ଓ କଳାତ୍ମକ ଆବିର୍ଭାବ ଲୋଡ଼ିଥାଏ । କଳା ପ୍ରକୃତରେ ସମସ୍ତଙ୍କୁ ସଂବହନ କରେ । ମାତ୍ର କାହାରି ସହିତ ଏକାତ୍ମ ହୁଏ ନାହିଁ । ମନଶ୍ଚେତନାର ଅପାର ବିସ୍ତୃତି ଭିତରେ ଜୀବନର ସକଳ ଜିଜ୍ଞାସା ଅବାଧ ବିଚରଣର ସୁଯୋଗ ଲାଭକରନ୍ତି । ସାହିତ୍ୟ ସେମାନଙ୍କଠାରୁ ନିଜର ଆବଶ୍ୟକ ଉପାଦାନ ସଂଗ୍ରହ କରେ, ମାତ୍ର ସେମାନଙ୍କ ସହ ବାଂଧି ହୋଇ ରହେ ନାହିଁ । ତାହେଲେ ତାର ଗତିରୁଦ୍ଧ ହୋଇଯାଏ । ମର୍ଯ୍ୟାଦା ହ୍ରାସ ପାଏ । ସାହିତ୍ୟର ସ୍ୱାତଂତ୍ର୍ୟ ଲୋପପାଏ । ଧର୍ମ, ଦର୍ଶନ ବା ତର୍କଶାସ୍ତ୍ର ଯାହା ବ୍ୟାଖ୍ୟା କରନ୍ତୁନା କାହିଁକି ସୌଂଦର୍ଯ୍ୟ ଓ ପ୍ରେମର ମାଧୁର୍ଯ୍ୟ-ଲୋକଟିରୁ ବିଚ୍ୟୁତ ହେଲେ କଳାର ସମସ୍ତ ଶୈଳ୍ପିକ ମହତ୍ତ୍ୱ କ୍ଷୁଣ୍ଣ ହୁଏ । ଅନୁଭବର ଅନଂତ ରାଜ୍ୟରେ ଜୀବନ ଯେଉଁଠି ଅଗାଧ ଗହନ, ବିପୁଳପ୍ରସାର ଓ ସୁଉଚ୍ଚ ବିଶାଳ ମହିମାରେ ବିରାଜିତ, ସେଠାରେ ଗିରିଶୀର୍ଷ ଓ ଗମ୍ଭୀରଗର୍ତ୍ତ, ଉପତ୍ୟକା ଓ ମରୁଭୂମି, ଆଲୋକ ଓ ଅଂଧାରର ନିଜସ୍ୱ ଭୂମିକା ମଧ୍ୟ ସ୍ୱୀକୃତ । କଳାକାରର ଏ ଜୀବନାନୁଭୂତି ଯେତେ ଗମ୍ଭୀର ବ୍ୟାପକ ଓ ବିସ୍ତୃତ ହେବ, ତାର କାବ୍ୟୋଚ୍ଚାରଣ ସେତିକି ପୂର୍ଣ୍ଣତାର ଅଭିବ୍ୟକ୍ତି-ସାମର୍ଥ୍ୟ ବହନ କରିବ ।

ସାହିତ୍ୟ ସମଗ୍ରତାକୁ ଆକାଂକ୍ଷା କରେ, ମାତ୍ର ଖଂଡର କଥାହିଁ କହିଥାଏ—ଏବଂ 'ଖଣ୍ଡ'କୁ ନେଇ ଶିଳ୍ପ-ସଫଳତା ଲାଭକରିଥାଏ ମଧ୍ୟ । କାରଣ ସାହିତ୍ୟରେ 'ପ୍ରକାଶଭଂଗୀ'ଟିର ମଧ୍ୟ ଏକ ନିଜସ୍ୱ ସାର୍ଥକତା ରହିଛି ଯାହା ଶବ୍ଦ-ଶକ୍ତିକୁ ଆୟତ୍ତ କରିଜାଣେ । ମାତ୍ର ରହସ୍ୟଚେତନାର

Digitized by PPRACHIN, SOA

ପୂର୍ଣ୍ଣାଂଗ ଦେଖାଉଥିବା ସାହିତ୍ୟ ଖଣ୍ଡ ଓ କ୍ଷଣକୁ ଶାଶ୍ୱତର ପୃଷ୍ଠଭୂମିକାରେ ଯଥାଯଥ ବିନ୍ୟସ୍ତ କରିବାକୁ ସମର୍ଥ ହୁଏ । ରହସ୍ୟବାଦ 'କ୍ଷଣ'କୁ କ୍ଷଣ ବୋଲି ସାହିତ୍ୟ ସହ ସ୍ୱର ମିଳାଇ ସ୍ୱୀକାର କରେ, ମାତ୍ର ସେ 'କ୍ଷଣ' ଶାଶ୍ୱତର ଅନେକ କ୍ଷଣର ଏକତମ ରୂପେ ତା ପାଖେ ସ୍ୱୀକୃତ, ଅନଂତରୁ ବିଚ୍ୟୁତ ଓ ଅସମ୍ପୃକ୍ତ ଉପସ୍ଥାପନାକୁ ରହସ୍ୟବାଦୀ ବିଶ୍ୱର ସମର୍ଥନ କରେନାହିଁ । ତରଂଗକୁ ସେ ମହାପ୍ରବାହର ଅଂଶ ରୂପେହିଁ ଦେଖେ; ଯଦିଓ ତରଂଗର ସ୍ୱତଂତ୍ରତାକୁ ସେ ଅସ୍ୱୀକାର କରେନାହିଁ ବା ଅଂଶ ରୂପେ ତାର ସ୍ଥିତିରେ ଖିଦ୍ୟ ଦେଖେନାହିଁ । ମାତ୍ର ତାର ଦେଖାରେ ମହା-ପ୍ରବାହକୁ ବାଦଦେଇ ତରଂଗର ଅସ୍ତିତ୍ୱ ପରିଚିଂତ କଳ୍ପନା କରିହେବନାହିଁ । ଏଇଠାରେ ହିଁ ନିହିତ ବାସ୍ତବବାଦୀର ଲୌକିକଦର୍ଶନ ସହ ରହସ୍ୟଚେତନାର ମୂଳବିରୋଧ. କାରଣ ବାସ୍ତବବାଦୀ କେବଳ ତତ୍କାଳକୁ ବାସ୍ତବରୂପେ ଗ୍ରହଣ କରି ବାକି ସବୁ ଅପ୍ରତ୍ୟକ୍ଷ, ଅପ୍ରମାଣ୍ୟ, ତେଣୁ ଅବାସ୍ତବ ବୋଲି ପରିତ୍ୟାଗ କରେ । ଏ ମୁହୂର୍ତ୍ତ-ସର୍ବସ୍ୱତାକୁ ରହସ୍ୟବାଦ ଗ୍ରହଣ କରିପାରେନାହିଁ । କାରଣ ରହସ୍ୟବାଦର ବିଶ୍ୱର ଭୂମିଟି କେବଳ 'ଏହିକ୍ଷଣ' ନୁହେଁ, 'ଏଇଠାରେ' ନୁହେଁ—ତାର 'ଏହିଥିରି' ଓ 'ଏଠାରେ'ର ପ୍ରତ୍ୟକ୍ଷତା 'ସର୍ବଦା' ଓ 'ସର୍ବତ୍ର'ର ବାସ୍ତବତା ଉପରେ ଆଧାରିତ ।

ଏଇ 'ମୁହୂର୍ତ୍ତ' ଅବବୋଧଟି ରହସ୍ୟଚେତନାରେ ବିଶିଷ୍ଟ ତାତ୍ପର୍ଯ୍ୟମୂଳକ । ପ୍ରତ୍ୟକ୍ଷ-ବାଦର ମୁହୂର୍ତ୍ତଟି ଅନଂତ-ବିଚ୍ୟୁତ ଏକ ଖଂଡଲଗ୍ନ, ଯାହା ନିଜର ଅପୂର୍ଣ୍ଣତାର ସତ୍ୟତାକୁ ସ୍ୱୀକାର କରିନେବାପାଇଁ ବାଧ୍ୟ । ଏ ଅପୂର୍ଣ୍ଣତାକୁ ପୂର୍ଣ୍ଣତା ସହ ଅନ୍ୱିତ କରି ବିଗ୍ରହ କରିବାକୁ ସେ 'ଭାବାତ୍ମକ ଅବାସ୍ତବତା' ବା ଆଇଡ଼ିୟାଲିଜମ୍ ବୋଲି କଟାକ୍ଷ କରେ । ସାହିତ୍ୟ ଅବାସ୍ତବ କଳ୍ପନା ଓ ଦର୍ଶନ ଅମୂର୍ତ୍ତ ଚିଂତନ-ବିଳାସ ରୂପେ ଏହାର ଶରବ୍ୟ । କାରଣ ମିଷ୍ଟିକ ଉପଲବ୍ଧିରେ ଦେଶକାଳ-ବୋଧର ସୂକ୍ଷ୍ମତମ ପ୍ରକାଶ ଏହି 'ଅତ୍ର' ଓ 'ସଦ୍ୟ' (here and now) ନିତ୍ୟତା ଓ ନିରବଧିତାକୁ ସତତ ଉଦ୍ଭାସ କରିଥାନ୍ତି । ମୂଳକଥାଟି ହେଉଛି ଯେ କୌଣସି କାଳରେ, ଯେ କୌଣସି ସ୍ଥାନରେ ବ୍ୟକ୍ତିଚେତନାରେ ବିଶ୍ୱର ବା ଶାଶ୍ୱତର ପ୍ରକାଶ-ଉଦ୍ଭବ ଘଟିପାରେ । ରହସ୍ୟବାଦୀର ଏ ବିଶ୍ୱାସ ଏକ ପକ୍ଷରେ ମୁହୂର୍ତ୍ତ-ଜୀବୀ ବାସ୍ତବବାଦ ଓ ଅପରପକ୍ଷରେ ମୁମୁକ୍ଷାର ପରଲୋକାସକ୍ତି ତଥା କାବ୍ୟ-କଳ୍ପନାର ଅବାସ୍ତବ ବିଳାସକୁ କଟାକ୍ଷ କରିଥାଏ । ବାସ୍ତବବାଦ ମୁହୂର୍ତ୍ତ ବ୍ୟତୀତ ଆଉ କିଛିକୁ ବି ସତ୍ୟ ବୋଲି ଗ୍ରହଣ କରିପାରେ ନାହିଁ, ଭବିଷ୍ୟବାଦ ସତ୍ୟକୁ ଉପେକ୍ଷା କରି ସତ୍ୟକୁ ସାଧନ ସାପେକ୍ଷ ଦୂର ଭବିଷ୍ୟତ ଗର୍ଭରେ ରଖିଦିଏ, ମୁକ୍ତିକାମୀ ଜୀବନକୁ ଅନାଗ୍ରହ କରି ଜୀବନାତୀତ ପ୍ରତି ଉନ୍ମୁଖ ହୋଇଉଠେ । ସାହିତ୍ୟରେ ଅତୀଂଦ୍ରିୟ-ପ୍ରବଣତା ପ୍ରାତ୍ୟହିକତାରୁ ନିଷ୍କୃତି ପାଇଁ ଅବାସ୍ତବ-ଉନ୍ମୁଖୀ ହୁଏ । ଏ ସବୁର ପ୍ରଧାନ ପ୍ରବଣତାଟି ହେଉଛି 'ତାତ୍କାଳିକ ସର୍ବସ୍ୱତା' କିଂବା 'ତାତ୍କାଳିକ ବର୍ଜନତା' । ମିଷ୍ଟିକ ପାଇଁ ଏ ଦୁଇଟିଯାକ ବିଚାର ସମାନଭାବେ ଅର୍ଥହୀନ । ଯିଏ ଜନ୍ମ ଓ ମୃତ୍ୟୁ ଉଭୟରେ ପ୍ରକଟିତ ସେ ଶାଶ୍ୱତର ରହସ୍ୟ ଭେଦ ପାଇଁ ଜୀବନ-ବର୍ଜନର ପ୍ରୟୋଜନ ସେ ଦେଖେନାହିଁ । ଯାହା ଅଂତରରେ ଉପଲବ୍ଧ ତାକୁ ଅରଣ୍ୟରେ ଖୋଜିବା ଅର୍ଥହୀନ ବୋଲି ସେ ମଣେ । ଶାଶ୍ୱତ-ସତ୍ତାର ଦୁର୍ଲଭ ଅବକାଶ ମୁହୂର୍ତ୍ତକୁ ଚିରଂତନ, ମୃତ୍ତିକାକୁ ହିରଣ୍ମୟ, ସୀମାକୁ ଅସୀମାୟିତ କରିଦେଇପାରେ । ସେଇ ଶାଶ୍ୱତ-ସତ୍ତାର ମୁହୂର୍ତ୍ତଟିହିଁ ମିଷ୍ଟିକର ନିଜସ୍ୱ ମୁହୂର୍ତ୍ତ, ସେ ମୁହୂର୍ତ୍ତର ସମ୍ଭାବନାକୁ

Digitized by PPRACHIN, SOA

ସାହିତ୍ୟ ବା ଦର୍ଶନ ବା ଧର୍ମ ର ବିଜ୍ଞାନ ନିର୍ଧାରଣ କରିପାରିବନାହିଁ । ମୁହୂର୍ତ୍ତ ଭିତରେ ହିଁ କ୍ଷଣିକ ଜୀବନ ଯେ ଅନନ୍ତ ସଂସ୍ପୃଶ ହୋଇଯାଏ ସାହିତ୍ୟ ରହସ୍ୟବାଦ ଭିତରୁ ଏ ଅନନ୍ତତ୍ତ୍ୱର ପ୍ରେରଣା ଓ ପଥପ୍ରଦର୍ଶନ ଗ୍ରହଣକରେ । ସର୍ବକ୍ଷଣ ଓ ସର୍ବତ୍ରର ଉପସ୍ଥାପନା ଅବସରରେ ଧର୍ମ ଓ ଦର୍ଶନ ସନାତନ-ତ୍ୱର ଦ୍ୱାହିରେ ସ୍ୱାଭାବିକ ଉପସ୍ଥିତ ହୁଅନ୍ତି । ମେଟାଫିଜିକସ 'ଆଦ୍ୟତତ୍ତ୍ୱ' ନାମରେ ରହସ୍ୟବାଦର ଶାଶ୍ୱତ-ଉପଲବ୍ଧିକୁ ବିଗ୍ରହ କରିବସେ । ଧର୍ମ ତାକୁ 'ଈଶ୍ୱର' ନାମ ଦେଇ ଆରାଧନା କରିବାକୁ ଉଦ୍ୟତ ହୁଏ । ନାସ୍ତିକ ଚେତନା ଏହାକୁ ଶୂନ୍ୟତା ଓ ଅସ୍ତିତ୍ୱ ବିଗ୍ରହର 'ସତତା' ବା 'ତଥତା' ରୂପେ ଉପସ୍ଥାପନା କରେ । କିନ୍ତୁ ରହସ୍ୟବାଦ ଏସବୁ ତର୍କଣା ସହିତ ସିଧାସଳଖ ସମ୍ପୃକ୍ତ ହୁଏନା । ସେ କାହାର ବିରୋଧ କରେନାହିଁ । ତାର ଉପସ୍ଥାପନାରେ ସେ କେବଳ କୁହେ ଅଜ୍ଞାତ, ଅପରିଜ୍ଞାତ କିଛି ରହିଛି ଯାହାକୁ ସେ ଉପଲବ୍ଧିରେ ଅନ୍ତର୍ଗତ କରି ଲାଭକରିଛି । ତାକୁ ଅବଶ୍ୟ ସେ ଠିକ୍ ବୁଝାଇପାରିବନାହିଁ । କାରଣ ବୁଦ୍ଧିର ବିଗ୍ରହ ଓ ଭାଷାର ପ୍ରକାଶ ଶକ୍ତି ତାର ସେ ଉପଲବ୍ଧି—ରୂପକୁ ଠିକ୍ ଧରିପାରିବାକୁ ସମର୍ଥ ନୁହେଁ ବୋଲି ସେ ବିବେଚନା କରେ । ସେ କେବଳ ଜାଣିଛି, ପୁଣି ସେ ଯାହା ଜାଣେ, ତାଠାରୁ ସେ ନିଜେ ଭିନ୍ନ ନୁହେଁ, ଏତକ ତାର ସମୁଦାୟ ବିଜ୍ଞପ୍ତି ।

ତାର ସ୍ୱାନୁଭବକୁ ସେ କାହାର ଉପରେ ଲଦି ଦେବାକୁ ଚାହେନାହିଁ । ଯୁକ୍ତିତର୍କର ଜାଲରେ ସେ ଧରାଦେବାକୁ ପ୍ରସ୍ତୁତ ନୁହେଁ । ଶାସ୍ତ୍ର ବିଗ୍ରହର ପ୍ରସ୍ତାବମାନଙ୍କୁ ସେ ଅସାରମଣେ । ତାର ବିଶ୍ୱାସ, କିଛି ଏକ ଚିରନ୍ତନ ଅବିନାଶୀ ରହିଛି, ଯାହା ମୃତ୍ୟୁରେ ଜୀବନର ସମାପ୍ତି ଘୋଷଣାକୁ ନିରର୍ଥକ କରିଦିଏ । ଏତକ ତାର ସମୁଦାୟ ବକ୍ତବ୍ୟର ସାର ନିର୍ଯାସ ବୋଲି କୁହାଯାଇପାରେ ।

ଏହାପରେ ନିସ୍ତବ୍ଧ ମୌନ । ତାର ନୀରବତାକୁ ରହସ୍ୟ ଅଭିବ୍ୟକ୍ତିରେ ଖୋଜିବସିଲେ ଚେତଣକ ରବିଟାହିଁ ବେଶି କାନରେ ବାଜେ । ନୀରବତାର ସ୍ପନ୍ଦନ ମର୍ମମୂଳରେ ପହଞ୍ଚି ପାରେନାହିଁ ।

ରହସ୍ୟବାଦୀର ଅରୂପ ବିଶ୍ୱର ସବୁରୂପ ଭିତରେ ଅପରୂପ ହୋଇ ପ୍ରକଟିତ । ସେ ଅରୂପତାକୁ ରଂଗରୂପରେ ଖୋଜିବସିଲେ ଅରୂପ ବିରୂପ ହୋଇଯାଏ ।

ସ୍ରୋତଟି ସମୁଦ୍ରରେ ମିଳାଇଯାଏ । ରହସ୍ୟବାଦ ଏଇ ହଜିବାର ଗାନବିଭୋର ।

ଲହରୀର ନିମଜ୍ଜନ-ଉଚ୍ଛ୍ୱାସ ଶିଳ୍ପୀର ରସୋଲ୍ଲାସକୁ ଜାଗ୍ରତ କରେ, ତାର ସୃଷ୍ଟି-ସ୍ଥିତି-ବିଲୟ ଦାର୍ଶନିକକୁ ଭୁଆଁ ବୁଲାଏ, ଆଉ ଚରାଚର ବିଶ୍ୱବ୍ରହ୍ମାଣ୍ଡ ବିନ୍ଦୁ ପରିମିତ ହୋଇ ଯାହାର ପଦନଖାଗ୍ରରେ ଅବଲୁପ୍ତ, ତାର ରହସ୍ୟକୁ ହୃଦୟର ଉଚ୍ଚାର୍ଦ୍ଧ ସ୍ଥାନରେ ଧାରଣକରି ନିସ୍ତବ୍ଧ ସହଜ ନିଃଶ୍ୱାସରେ ପାଦପକାଇ ଚାଲିଥାଏ । ଏ ଉପଲବ୍ଧିର ପ୍ରକାଶ-ପ୍ରସ୍ତାବକୁ ସେ ମୂକର ବାଙ୍ମୟ ହେବାର ପ୍ରଚେଷ୍ଟା ବୋଲି ଜାଣେ । ସେଇଥିପାଇଁ ସେ ମୌନ ।

ତାର ମୌନତାକୁ ସମ୍ପନ୍ନ ମନେକରି ବିଜ୍ଞାନ, ଦର୍ଶନ, ଧର୍ମ ବା ସାହିତ୍ୟ ଯେପରି ବି ବ୍ୟାଖ୍ୟା କରିପାରନ୍ତି, ରହସ୍ୟବାଦ କାହାରି ପ୍ରତିବାଦ କରେନାହିଁ । ବରଂ ଏଗୁଡ଼ିକ ପୂର୍ଣ ସତ୍ୟର୍ ଏକ ଏକ ଆପେକ୍ଷିକ ମୂଲ୍ୟାୟନ—'ଅନ୍ଧମାନଙ୍କର ହାତୀଦେଖା' ପରି—ବୋଲି ବିଗ୍ରହ ସହିଷ୍ଣୁତା

Digitized by PPRACHIN, SOA

ପ୍ରକାଶ କରିଥାଏ । ସେ କେବଳ ପ୍ରତିବାଦର ସ୍ୱର ଉଠାଏ ଗୋଟିଏ ସ୍ଥଳରେ, ଯେତେବେଳେ ତାର ପ୍ରତ୍ୟକ୍ଷ-ପ୍ରାପ୍ତ ଅନୁଭବକୁ ମିଥ୍ୟା, କଳ୍ପନା, ସୁଦୂରମୋହ କହି ଏଡ଼ାଇ ଦେବାର ଚେଷ୍ଟା କରାଯାଏ । ସମସ୍ତ ରହସ୍ୟବାଦୀ ବାସ୍ତବ-ଦର୍ଶନ ଏଇ ବିରୋଧୀ ସ୍ୱରର ପ୍ରତିବାଦପତ୍ର ରୂପେହିଁ ଉଦ୍ଦିଷ୍ଟ; ଅନ୍ୟଥା ମିଷ୍ଟିକ ମୌନ ।

ଏକଥା ନୁହେଁ ଯେ, ରହସ୍ୟବାଦ ସବୁବେଳେ ଆପଣାର ଅପାର୍ଥିବତା-ବିଳାସୀ । ଅପାର୍ଥିବତା ଶୁଦ୍ଧ ଦର୍ଶନର ସାମ୍ରାଜ୍ୟ । ରହସ୍ୟଚେତନା ବରଂ ପୃଥିବୀ ସହ ବେଶି ସଂପୃକ୍ତ । ମାତ୍ର ଏହା ଠିକ୍ ଭୌତିକବାଦୀ ଦର୍ଶନର ପାର୍ଥିବାସକ୍ତି ନୁହେଁ । ମୂର୍ତ୍ତ ଓ ଅମୂର୍ତ୍ତର ଦୁଇକୋଟୀରେ ରହସ୍ୟଚେତନାର ନିରବଧି ଯାତାୟାତ । ପାର୍ଥିବକୁ ଅପାର୍ଥିବ ସହ ସଂପର୍କିତ ଓ ଅପ୍ରତ୍ୟକ୍ଷକୁ ପ୍ରତ୍ୟକ୍ଷରେ ପ୍ରତିଫଳିତ ଦେଖିବାହିଁ ମିଷ୍ଟିକର ସ୍ୱତଂତ୍ର ଦର୍ଶନ-ସାମର୍ଥ୍ୟ । ରହସ୍ୟବାଦୀର ପୂର୍ଣ୍ଣାନୁଭବରେ ବ୍ୟକ୍ତିତ୍ୱର କ୍ଷୁଦ୍ର ସ୍ୱୀକଂପନଟିକକ, ବିଶ୍ୱପ୍ରାଣର ଗଭୀର ଜୀବନ-ସ୍ପଂଦନଟିକକ ମଧ୍ୟ ଅଛପା ରହେନାହିଁ । ଏକ ମହାବିସ୍ତାରର ଆବେଗପୂର୍ଣ୍ଣ ରୂପେ ସବୁ କିଛି ତାର ଅଂତରକୁ ଛୁଏଁ । ରହସ୍ୟବାଦୀର ଦେଖାରେ ଜୀବନର କିଛି ବି ଅଭିବ୍ୟକ୍ତି ଶାଶ୍ୱତ-ବିଚ୍ଛିନ୍ନ ନୁହେଁ । ସାମାନ୍ୟ ଭାବ-ଆବେଗଠାରୁ ଗଭୀର ଅନୁଭବପର୍ଯ୍ୟଂତ ସବୁକିଛି ଅସୀମ-ଉନ୍ମୁଖ । ତେବେ ସ୍ତରଗତ ବିଭେଦ ରହିଛି । ଗଭୀର ଅନୁଭୂତିରୁ ସଂଜାତ ଭାବ-ସଂସ୍ଫୁରଣର ତୀବ୍ରତା, ତୀକ୍ଷ୍ଣତା ଓ ରୂପାବେଦନ ଅପେକ୍ଷାକୃତ ଅଗଭୀର ଭାବାନୁଷଂଗର ଉଚ୍ଚାରଣଠାରୁ ଅଧିକ ଶାଶ୍ୱତ-ସଂବେଦୀ । ଏଇ ଅବସରରେ ହିଁ ମିଷ୍ଟିକର ନିଖିଳ ନିମଂତ୍ରଣ । 'ସବୁ କିଛି ରହସ୍ୟାଭାସ ପ୍ରତୀତ' ଓ 'ପ୍ରତ୍ୟେକ ଦୈବତର ଅଧିକାରୀ'—ଏଇ ରହସ୍ୟବାଦୀ ସ୍ୱତଃସିଦ୍ଧି ଦ୍ୱୟ (Postulates) ପ୍ରତ୍ୟେକ ମାନବୀୟ ପ୍ରୟାସକୁ ସୀମାର ଶାଶ୍ୱତାଭିଳାଷ ବୋଲି ବିବେଚନା କଲେ । ବ୍ୟକ୍ତି ପ୍ରାଣରେ ଶାଶ୍ୱତ—ସଂବେଦନ ଓ ଆନଂତ୍ୟ ଧାରଣର ସାମର୍ଥ୍ୟହିଁ ତାର କ୍ରିୟାଭିବ୍ୟକ୍ତିରେ ରୂପାୟିତ ହୋଇଥାଏ । ସୀମା-ସୃଷ୍ଟି ବକ୍ଷରେ ଏ ଅସୀମ-ଉନ୍ମୁଖତାର ବିରତିନାହିଁ । ବିରତି ହୋଇପାରେନା । ଅନଂତର ଅସୀମ ପଥରେ କିଛି ବି ସିଦ୍ଧି-ରୂପ ନୁହନ୍ତି, ସବୁ କେବଳ ସାଧନପ୍ରୟାସ । ତଥାପି ସାଧନା ବୋଲି କିଛି ନିରର୍ଥକ ନୁହେ । ରହସ୍ୟବାଦୀ ଏ ସାଧନା-ରୂପକୁ, ଅନ୍ତରର ନିତ୍ୟସ୍ପଂଦିତ ଶାଶ୍ୱତାଭିଳାଷକୁ, ସତ୍ୟ ସଂଧାନକୁ ପୂର୍ଣ୍ଣ ସ୍ୱୀକୃତି ଦିଏ । ବ୍ୟକ୍ତିଗତ ଭାବରେ ପ୍ରତିଟି ସୃଷ୍ଟି, ପ୍ରତିଟି ସତ୍ତା ( ଜଡ଼, ଜୀବ ଓ ଭାବସତ୍ତା ) ଏଠି ଅସୀମ ଅଭିମୁଖୀ । ଦର୍ଶନ, ବିଜ୍ଞାନ, ଧର୍ମ ବା ସାହିତ୍ୟରେ ସେହି ଉଦ୍ୟମର ସ୍ୱୀକୃତି । ବିପୁଳା ପୃଥ୍ୱୀ ଓ ନିରବଧି କାଳ ବକ୍ଷରେ ଶାଶ୍ୱତ ଅଭିମୁଖେ ମାନବସତ୍ତାର ଅନଂତ ଅଭିସାର ଏକ ନିତ୍ୟବିକାଶ ମାର୍ଗରେ ଯେଉଁ ପୂର୍ଣ୍ଣତା ଆଡ଼କୁ ଉତ୍ତରୋତ୍ତର ପ୍ରସାରିତ ହୋଇରହିଛି, ରହସ୍ୟବାଦ ସେଇ ପୂର୍ଣ୍ଣତାର ସଂବାଦ ଓ ପ୍ରତିଶ୍ରୁତିର ଶଂଖନାଦ ।

ବେଳେବେଳେ ଏକ ପଳାୟନ୍ମୁଖ୍ ଜୀବନ ଦର୍ଶନବାଦୀ ସ୍ୱୟଂତୃପ୍ତ ଆତ୍ମିକଚର୍ଯ୍ୟା ରୂପେ ରହସ୍ୟବାଦ ସମାଲୋଚିତ ହୋଇଥାଏ । ମାତ୍ର ସିଦ୍ଧାଂତ ଦୃଷ୍ଟିରୁ ରହସ୍ୟବାଦ ଅଂତଃସ୍ୱରୂପରେ ପୂର୍ଣ୍ଣତାର ପରମ-ସଂଧାନୀ ଓ ଜୀବନର ଚରମ ସାର୍ଥକତା-କାମୀ ମାନବୀୟ ଅଭ୍ୟୁଦୟ-ପ୍ରଚେଷ୍ଟାର ସର୍ବୋତ୍ତମ ଅଭିବ୍ୟକ୍ତି । ରହସ୍ୟବାଦ ତାର ରହସ୍ୟଲୋକର ସତ୍ୟତାକୁ କେବେ ବି ଅବାସ୍ତବତାରେ ଖୋଜିନାହିଁ । 'ସବୁରି ଉପରେ ମାନବକୁ ସତ୍ୟ* ବୋଲି ପ୍ରତିଷ୍ଠା କରି ମାନବ-ଜୀବନରୁ ସତ୍ୟର ରହସ୍ୟ

* "ସବାର ଉପରେ ମାନୁଷ ସତ୍ୟ"—ଚଂଡୀଦାସ

Digitized by PPRACHIN, SOA

ଉଦ୍‌ଘାଟନ କରିବାକୁ ହୁଏ ବୋଲି ନିର୍ଦ୍ଦେଶ କରିଛି । ରହସ୍ୟବାଦୀର ଦୃଷ୍ଟି ପ୍ରକୃତି ସୃଷ୍ଟିକଣାକୁ ଚିନ୍ମୟ ଦେଖେ । ତାର ମୁଗ୍ଧ-ଅନୁଭବରେ ଏ ପୃଥିବୀ ମଧୁମିତା, ଜୀବନ ଶ୍ରେୟ ଓ ସୃଷ୍ଟି ପରମ-ଆତ୍ମୀୟ ହୋଇଯାଏ । ଏ ବିପୁଳ ଆନନ୍ଦ-ଯଜ୍ଞରେ ସାମଗାନ ପାଇଁ କବିକୁ ସେ ଆମନ୍ତ୍ରଣ ଜଣାଏ । ସୃଷ୍ଟିର କ୍ଷୁଦ୍ରାତିକ୍ଷୁଦ୍ରକୁ ମଧ୍ୟ ହୃଦୟର ଶ୍ରଦ୍ଧାମୃତ ନିବେଦନ କରି ସେ ବିଶ୍ୱକଲ୍ୟାଣକୁ ଆବାହନ କରେ । ଋଷି, କବି ଓ ପ୍ରେମିକରୂପୀ ମିଷ୍ଟିକ ଏକାଧାରରେ ହୋତା, ଉଦ୍‌ଗାତା ଓ ଅଧ୍ୱର୍ଯ୍ୟୁ ହୋଇ, ପୁଣି ଅନନ୍ତ-ରୂପୀ ବ୍ରହ୍ମାଙ୍କର ଅଦୃଶ୍ୟ ସାହଚର୍ଯ୍ୟ ଲାଭକରି ବିଶ୍ୱଯଜ୍ଞରେ ଜୀବନାନନ୍ଦର ପ୍ରଣବ ଗାନକରନ୍ତି । (୧) ସୃଷ୍ଟିର ଆଦ୍ୟରେ ଅମରର ଯେ ମଧୁର ମହାସ୍ୱପ୍ନ ଉଚ୍ଚକିତ, ମର୍ତ୍ତ୍ୟ ଜୀବନର କର୍ଦ୍ଦମଶଯ୍ୟାରେ ତାରି ପ୍ରେମାନନ୍ଦର ସ୍ୱର୍ଗୀୟ ଜାହ୍ନବୀକୁ ଏକ ଜ୍ୟୋତିଃପ୍ରଭ ସ୍ୱର୍ଣ୍ଣପଥରେ ମହାପ୍ରାଣର ମହାସମୁଦ୍ର ଅଭିମୁଖେ ଘେନିଯିବା ପାଇଁ ରହସ୍ୟ ସାଧକ/କବିର ଏଇ ଦୁରନ୍ତ ଭଗୀରଥ ତପସ୍ୟା

> I have been digging deep and long
> Mid a horror of filth and mire,
> A bed for golden river's song
> A home for death-less fire !'(2)

---

(1) "ମାନୁଷେର ମାଝେ ଆମି ବାଁଚିବାରେ ଚାଇ ।"

ରବୀନ୍ଦ୍ରନାଥ — (ପ୍ରାଣ) ସଞ୍ଚୟିତା — ପୃ. ୪୨

(2) Sri Aurobindo' Poems 'Past and Present' No.6

Digitized by PPRACHIN, SOA

# (ଗ) ସଂଯୋଗ ରୂପ

## ୧) ଅଣଭାରତୀୟ ପୃଷ୍ଠଭୂମି :

ଦୈବତ ପ୍ରତ୍ୟକ୍ଷ, ଅଧ୍ୟାତ୍ମ ଉପଲବ୍ଧି ଏବଂ ସୌନ୍ଦର୍ଯ୍ୟ ଓ ପ୍ରେମ ମାର୍ଗରେ ସତ୍ୟାନୁସନ୍ଧାନ, ରହସ୍ୟବାଦୀ ସାହିତ୍ୟର ମୂଳପ୍ରେରଣା ରୂପେ ପ୍ରକଟିତ । ସାହିତ୍ୟର ବିବର୍ତ୍ତନ ଧାରାରେ ଏମାନେ ପ୍ରତ୍ୟେକ ସ୍ୱତନ୍ତ୍ର ଅଥବା ସମ୍ମିଳିତ ଭାବରେ ବିଶ୍ୱର ସାର୍ବକାଳିକ କାବ୍ୟଜିଜ୍ଞାସା ତଥା ଯୁଗୀୟ ଆଭିମୁଖ୍ୟକୁ ପ୍ରଭାବିତ କରିଆସିଛନ୍ତି ।

ମାନବଚେତନାର ପ୍ରଥମ ରହସ୍ୟ ଜିଜ୍ଞାସାକୁ ଯଦି ଓଁ କାରରେ ବାଙ୍ମୟ କରିଦିଆ-ଯାଇଥାଏ, ତେବେ ତାଠାରୁ ଅଧିକ ସିଦ୍ଧିଗତପ୍ରୟାସ ଏ ପର୍ଯ୍ୟନ୍ତ କିଛି ହୋଇପାରିନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ, ଚିନ୍ତାତ୍ମକ ଓ ଅନୁଭବାତ୍ମକ ଏବଂ ସାଧନାତ୍ମକ ବା ଆଚରଣାତ୍ମକ ରହସ୍ୟଚେତନାକୁ ଭାଷାରୂପ ଲିପିବଦ୍ଧ କରିଥିଲେ ବି (ଗ୍ରନ୍ଥ, ଶାସ୍ତ୍ର ଇତ୍ୟାଦି) ସାହିତ୍ୟ ମୁଖ୍ୟତଃ ରହସ୍ୟବାଦର ଭାବାତ୍ମକ ଓ ଅନୁଭବାତ୍ମକ ବିଭବକୁ ନେଇ ହିଁ ଶିଳ୍ପସାଧନା କରିଛି ।

ଆଦ୍ୟତମ କାବ୍ୟପ୍ରେରଣାରେ ରହସ୍ୟବାଦର ସ୍ୱରୂପ ବୈଦିକ ଋକ୍‌ମାନଙ୍କରେ ସଂରକ୍ଷିତ । ବୈଦିକ ଛନ୍ଦବିନ୍ୟାସ ଓ ଧ୍ୱନିବିଚ୍ଛିତ୍ତିର ମଧ୍ୟ ଭାଷା ପ୍ରତୀକର ରହସ୍ୟାତ୍ମକତାକୁ ଆଶ୍ରୟ କରିଛି । ପ୍ରାଚୀନ ମିଶରର ମାତୃପୂଜା ଓ ସୂର୍ଯ୍ୟୋପାସନା, ମଧ୍ୟଏସିଆର ଜରଥୁଷ୍ଟ୍ରଧର୍ମୀମାନଙ୍କର ଅଗ୍ନିପୂଜା ଓ ସିନ୍ଧୁ ସଭ୍ୟତାର ମାତୃକା ଓ ଶିବପ୍ରତୀକରେ ଧ୍ୟାନ/ଯୋଗାତ୍ମକ ସାଧନା ସଙ୍କେତମାନ ପ୍ରକଟିତ । ମୁଖ୍ୟତଃ ଚୀନ-ଠାରୁ ମିଶର ପର୍ଯ୍ୟନ୍ତ ବିଶାଳ ଭୂଖଣ୍ଡରେ ଆଲୋକ (ଅଗ୍ନି/ସୂର୍ଯ୍ୟ) ଓ ମାତୃକାକୁ (ଶକ୍ତି/ପ୍ରଜନନ) କେନ୍ଦ୍ର-କରି ପ୍ରବର୍ତ୍ତିତ ଏତେସଂଖ୍ୟକ ରଚନା ସମୂହ ରହସ୍ୟଧର୍ମୀ ଭାବସଂପୃକ୍ତତାର ସଙ୍କେତ ପ୍ରଦାନ କରିଥାନ୍ତି ।

ପରବର୍ତ୍ତୀ ରହସ୍ୟବାଦୀ ଚିନ୍ତନାଲେଖ୍ୟର ନିର୍ଦ୍ଦିଷ୍ଟ ରୂପ ଭାରତୀୟ ଆରଣ୍ୟକ ଓ ଉପନିଷଦ ଏବଂ ଚୀନ ଓ ଜାପାନର ପବିତ୍ର ଗ୍ରନ୍ଥମାନଙ୍କରେ ସଂରକ୍ଷିତ । ଏକ, ଆଦି, ବିଶ୍ୱମୂଳ ଓ ସନାତନ ଋତ/ତାଓ/ଶିନ୍ତୋ/ବ୍ରହ୍ମଚେତନା ଏ ଭାବଜିଜ୍ଞାସାକୁ ଉଦ୍‌ବୁଦ୍ଧ କରିଛି । ରୂପକ, ପ୍ରତୀକ, ଉତ୍ପ୍ରେକ୍ଷା ମୂଳକ ଭାବ-ବୈଭବ ଓ ଭାଷାଗତ ମନୋହାରିତା ଏହି ରଚନାମାନଙ୍କର କାବ୍ୟୋତ୍କର୍ଷତା ସମ୍ପାଦନ କରିଛନ୍ତି । ଏହି ଭୂଖଣ୍ଡମାନଙ୍କର ପରବର୍ତ୍ତୀ ଅଧ୍ୟାତ୍ମଜିଜ୍ଞାସା ଓ ସୌନ୍ଦର୍ଯ୍ୟ ସାଧନା ପ୍ରାୟଶଃ ସେହି ରଚନାମାନଙ୍କର ଅନ୍ତର୍ସତ୍ୟ 'ଏକ' ଉପରେ ଅବଲମ୍ବିତ । ସେହି 'ଏକ'କୁ ହିଁ ସାହିତ୍ୟର ଜୀବନ- ରସ ରୂପେ ପ୍ରତିପାଦନ କରି (ରସୋ ବୈ ସଃ) ଉପନିଷଦୀୟ ମାନସ ତାର କାବ୍ୟଜିଜ୍ଞାସାର ଶ୍ରେଷ୍ଠ ଉପଲବ୍ଧିକୁ ଲାଭକରିଛି ।

ଭାରତ ଓ ଦୂରପ୍ରାଚ୍ୟର ପ୍ରତ୍ୟକ୍ଷ ଭାବବିନିମୟ କ୍ଷେତ୍ରରେ ଉପନିଷଦୀୟ ଦର୍ଶନ ଓ ବୌଦ୍ଧ ଧର୍ମ ସାଧନାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଦକ୍ଷିଣ ଏସିଆର ସାଂସ୍କୃତିକ ଚେତନାରେ ହୀନଯାନ ସିଦ୍ଧାନ୍ତର ପ୍ରଭାବ ସ୍ପଷ୍ଟ । ତିବ୍ବତ, ଚୀନ, ଜାପାନ, କୋରିଆ ପ୍ରଭୃତି ଉତ୍ତର ପୂର୍ବାଞ୍ଚଳ ମହାଯାନୀ ଦର୍ଶନ

Digitized by PPRACHIN, SOA

ଓ ସାଧନା ପଦ୍ଧତି ଦ୍ୱାରା ଓତଃପ୍ରୋତ ଅନୁପ୍ରାଣିତ । ନାଗାର୍ଜୁନଙ୍କ 'ମାଧ୍ୟମିକା' ଓ 'ଶୂନ୍ୟତତ୍ତ୍ୱ' ଏବଂ ଅଶ୍ୱଘୋଷ ଓ ବସୁବନ୍ଧୁଙ୍କ ଦ୍ୱାରା ତାହାର ଅନ୍ତର୍ଭୂକ୍ତ ଉପସ୍ଥାପନା— ଏ ପରଂପରାରେ ଭାରତବର୍ଷରେ ଯୋଗତନ୍ତ୍ର ମାର୍ଗରେ ବଜ୍ରଯାନ ପ୍ରଭୃତି କ୍ରମାନ୍ୱୟୀ ସହଜସାଧନାର ପ୍ରବର୍ତ୍ତନା ହୋଇଥିଲା, ଯାହାର କାବ୍ୟରୂପ ବୌଦ୍ଧଗାନ, ଦୋହା ଓ ଚର୍ଯାଗୀତମାନଙ୍କରେ ସୁରକ୍ଷିତ । ଏ ସହଜସିଦ୍ଧାଂତକୁ ଦୂରପ୍ରାଚ୍ୟ ତାର ପାରଂପରିକ ଧର୍ମଧାରଣା ଓ ସାଧନାଧାରାର ଯେପରି ଅଂଗୀଭୂତ କରିଥିଲା ଜେନ୍ ସାଧନାର ରହସ୍ୟ ବୈଚିତ୍ର୍ୟପୂର୍ଣ୍ଣ ପ୍ରତୀକାତ୍ମକ ରଚନାମାନଂକରେ ତାହା ଚମତ୍କାର କାବ୍ୟ ବ୍ୟଂଜନା ଲାଭକରିଛି । ପ୍ରାଚୀନ ମଧ୍ୟ ଏସିଆର କ୍ୟାଲଡୀୟ (Chaldean) ରହସ୍ୟସାଧନା ଓ ମିଶରୀୟ ପଦ୍ଧତି ଉପାସନାରେ ଅନୁଶୀଳିତ ଏଇ ଉପନିଷଦ୍/ବୌଦ୍ଧ ରହସ୍ୟବାଦୀ ଦର୍ଶନ ଖ୍ରୀଷ୍ଟପୂର୍ବ ୟୁରୋପର ଗ୍ରୀକ୍‌ମାନଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । ଗ୍ରୀକ୍ ବାଙ୍ମୟ ଏକ ପ୍ରଚଣ୍ଡ ବୌଦ୍ଧିକ ଅନ୍ୱେଷା ଭିତରେ ଗ୍ରୀକ୍ ଚେତନାର ଯେ ମୂଳବୈଜ୍ଞାନିକମାନଙ୍କୁ ପ୍ରତିଷ୍ଠିତ କରିଥିଲା, ସେ ବିଜ୍ଞାନର ଚରମ ଲକ୍ଷ୍ୟଥିଲା 'ଅନ୍ତରାନ୍ୱେଷଣ' (Know Thyself) । ଆଧୁନିକ ଭୌତିକ ବିଜ୍ଞାନ ଓ ଦର୍ଶନର ମୂଳଉତ୍ସ ଗ୍ରୀକ୍ ମନୀଷାର ଜ୍ଞାନୋଦ୍ୟମ ଭିତରେ ହିଁ ତାର ରହସ୍ୟଜିଜ୍ଞାସା ଅନ୍ତଃସଂପୃକ୍ତ । ଡ଼ାୟୋନିସିସ୍ ପୂଜା ଓ ସଂଗୀତ, ଅର୍ଫିକ ସାଧନା, ପିଥାଗୋରାସଙ୍କ ଦର୍ଶନ ଓ ସକ୍ରେଟିସ ଓ ପ୍ଲେଟୋଂକର ଅଭିବ୍ୟକ୍ତି ଭିତରେ ରହସ୍ୟବାଦୀ ଉପାଦାନ ପ୍ରଚୁର । ଗ୍ରୀକ୍ ମାଇଥୋଲଜି ଓ ଟ୍ରାଜେଡିମାନଂକ ଭିତରେ ରୂପକ ଓ ପ୍ରତୀକଧର୍ମୀ ରହସ୍ୟବାଦୀ ଉପାଦାନ ବିରଳ ନୁହେ ।

ପ୍ରାକ୍ ଇସଲାମ୍ ଓ ପ୍ରାକ୍ ଖ୍ରୀଷ୍ଟ ପାରସିକ ଜରଥୁଷ୍ଟ୍ର ଧର୍ମର ମୂଳରଚନା 'ଜେଂଦାଭେସ୍ତା' ସହ ବୈଦିକ ଭାବଚେତନା ଓ ବାଣୀବିନ୍ୟାସର ଗଭୀର ସାମଂଜସ୍ୟ ସ୍ୱୀକୃତ । ବୈଦିକ ଦେବ୍ୟ ଅଦେବ୍ୟର ସମାଂତରାଳ ରୂପଚେତନାରେ ଅହୁର-ମଜଦାର ଦ୍ୱୈତବାଦୀ ଉଦ୍‌ବୋଧନ ପାଶ୍ଚାତ୍ୟ ଚିଂତାଧାରାରେ ଈଶ୍ୱର ଓ ସଇତାନ ବିଗ୍ରହ ଆଶ୍ରିତ । ପାଶ୍ଚାତ୍ୟ ଧର୍ମଚେତନାର ମୂଳରେ ହିବ୍ରୁ ଧର୍ମଗ୍ରନ୍ଥ ବାଇବେଲ ଅନ୍ତର୍ଗତ Old Testament ର ଏକେଶ୍ୱରବାଦ, ଦ୍ୱୈତଦର୍ଶନ ଓ Revelation ସଂବାଦ ସହ ହିବ୍ରୁ ରହସ୍ୟସାଧନାର Cabala-cult ସମାଂତରାଳ ଭାବେ ଅବସ୍ଥାପିତ ।

ଖ୍ରୀଷ୍ଟଧର୍ମର ଅଭ୍ୟୁଦୟକାଳରେ ଯୀଶୁ 'ଜନ' (ଦ ବ୍ୟାପଟିଷ୍ଟ)ଙ୍କ ଠାରୁ ଯେଉଁ ସାଧନା-ଦୀକ୍ଷା ଗ୍ରହଣ କରିଥିଲେ, ତାହା ଏକ ରହସ୍ୟ ଚର୍ଯା ଥିଲା ଯାହାସହ ବୌଦ୍ଧ ଅନୁଚର୍ଯାର ରୂପ ସାମଂଜସ୍ୟ ଥିଲା । New Testament ରେ ସଂକଳିତ ନୈତିକ ପ୍ରବଚନ (Sermon of the Mount) ରେ ଆତ୍ମାର ଦୈବିକ ପ୍ରତ୍ୟକ୍ଷ ହିଁ ଯୀଶୁଙ୍କର ପ୍ରଧାନ ବକ୍ତବ୍ୟ ଥିଲା । ସମଗ୍ର ବାଇବେଲରେ ଏଭଳି ଅନେକ ରହସ୍ୟବାଦୀ ଅଭିବ୍ୟକ୍ତି ରହିଛି, ଯାହାର ସାହିତ୍ୟିକ ମୂଲ୍ୟାୟନ ସୁବିପୁଳ । ବାଇବେଲର 'Song of Solomon' ର ଶୃଂଗାରିକ ରହସ୍ୟବ୍ୟଂଜନାଟି ପରବର୍ତ୍ତୀ ଖ୍ରୀଷ୍ଟୀୟାନ ରହସ୍ୟବାଦୀ ଚେତନାରେ ମାନବ ଓ ଈଶ୍ୱରଙ୍କ ପ୍ରଣୟସଂବନ୍ଧ ରୂପେ ପଲ୍ଲବ ବିସ୍ତାର କରିଛି । ଉପନିଷଦ୍ ଓ ବୌଦ୍ଧ ରହସ୍ୟ-ଦର୍ଶନ ପ୍ରଭାବିତ ମିଶର ଓ କ୍ୟାଲଡୀୟ ରହସ୍ୟସାଧନାର ସଂକେତଧର୍ମିତା ସହ ଗ୍ରୀକ୍‌ମାନଙ୍କର 'ଭାବାଦର୍ଶବାଦ' ଏବଂ 'ଆତ୍ମଜ୍ଞାନ ବିଗ୍ରହ'ଯୁକ୍ତ ହୋଇ ଏଇ ବାଇବେଲ ହିଁ ପରବର୍ତ୍ତୀ କାଳରେ ଖ୍ରୀଷ୍ଟଧର୍ମାନୁସୃତ ରହସ୍ୟବାଦୀ ଦର୍ଶନ ଓ ପରେ ଇସ୍‌ଲାମର ସୁଫୀ ରଚନାକୁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଇଛି ଏବଂ ପାଶ୍ଚାତ୍ୟ ସାହିତ୍ୟର ରହସ୍ୟବାଦୀଭାବ ଉଦ୍‌ବୋଧନକୁ ଦୀପ୍ତ କରିଛି । ୟୁରୋପର ବହୁ ମଧ୍ୟଯୁଗୀୟ କବିତାରେ ଆଧ୍ୟାତ୍ମିକ ଓ ପ୍ରେମଭାବାତ୍ମକ ରହସ୍ୟଧର୍ମିତା ରୂପାୟିତ । ଏ ପ୍ରସଂଗରେ ମଧ୍ୟଯୁଗର ଟ୍ରିବାଡୁର-ଗାନର ନାମ

Digitized by PPRACHIN, SOA

ଉଲ୍ଲେଖଯୋଗ୍ୟ— ଯାହା ଲୌକିକ ଅନୁଭବ ଓ ପ୍ରେମଭାବନାର ଅଲୌକିକ ଉତ୍କ୍ଷେପ ଭିତରେ କାବ୍ୟ ସଫଳତା ଲାଭକରିଥିଲା ।

ପାଶ୍ଚାତ୍ୟ ଧର୍ମପରଂପରାରୁ ପ୍ରତ୍ୟକ୍ଷ ଭାବେ ସଂଜାତ ଇସ୍‌ଲାମ୍‌ର ପବିତ୍ରଗ୍ରନ୍ଥ 'କୋରାନ'ରେ ରହସ୍ୟବାଦୀ ଉପାଦାନମାନଂକର ଉଦ୍‌ବୋଧନ ପର୍ଯ୍ୟାପ୍ତ । କୋରାନର ଦର୍ଶନ ପ୍ରଭାବିତ ସୂଫୀବାଦ ଓ ରଚନାର ରହସ୍ୟ ସାହିତ୍ୟକୁ ଦାନ ଅତୁଳନୀୟ । ଆଧ୍ୟାତ୍ମିକଦର୍ଶନ ଏବଂ ସାଧନାର ପ୍ରସଂଗକୁ ପୂର୍ଣ୍ଣ ବାଦ ଦେଇ ମଧ୍ୟ ସୂଫୀ କାବ୍ୟର ପ୍ରଣୟ ଓ ସୌଂଦର୍ଯ୍ୟମୂଳକ ରସୋଦ୍‌ବୋଧନ ବିସ୍ମୟକର । ଏ ସୂଫୀ ପ୍ରେମବ୍ୟଂଜନା ପରବର୍ତ୍ତୀ ଭାରତୀୟ ରହସ୍ୟଚେତନା ଭିତରେ ଅନୁକୂଳତା ଲାଭକରି ନିର୍ଗୁଣ ଓ ବାଉଲ ରଚନାମାନଂକର କାବ୍ୟିକ ମନୋହାରିତା ସମ୍ପାଦନରେ ସାହାଯ୍ୟ କରିଛି ।

ଉଲ୍ଲେଖ୍ୟ, ଯୁରୋପର ଟ୍ରୁବାଡୁର, ପାରସିକ ସୁଫୀ ଏବଂ ଭାରତୀୟ ଚର୍ଯ୍ୟାଗାନ, ଅଲବାର ଓ ବାଉଲଗାନର ଅଧ୍ୟାତ୍ମ ପୃଷ୍ଠଭୂମିର ଭିନ୍ନତା ସତ୍ତ୍ୱେ ସେମାନଙ୍କ ରହସ୍ୟବାଦୀ କାବ୍ୟ ପ୍ରଚେଷ୍ଟାରେ ଲୌକିକତା ଓ ଅଲୌକିକତାର ଅଦ୍ଭୁତ ସମନ୍ୱୟ ପ୍ରତିଷ୍ଠିତ ହୋଇଛି । ପାର୍ଥିବ ମାନବର ପ୍ରେମ ଭାବନାକୁ ଏକ ଅପାର୍ଥିବ ମହତ୍ତ୍ୱରେ ଉଦ୍‌ବୁଦ୍ଧ କରାଇବା ଏ ଧାରାବାହିତ ପ୍ରୟାସର ଅନ୍ତଃଗୂଢ଼ ଉଦ୍ଦେଶ୍ୟ ।

## ୬) ଭାରତୀୟ ପୃଷ୍ଠଭୂମି

ଭାରତୀୟ ସାହିତ୍ୟର ରହସ୍ୟବାଦୀ ଅଭିବ୍ୟକ୍ତି ମୁଖ୍ୟତଃ ଉପନିଷଦୀୟ ରହସ୍ୟଚେତନାର ଯୁଗୀୟ ରୂପାଂତର ହୋଇ ଆବିର୍ଭୂତ । ଉପନିଷଦର 'ଏକ ଓ ଅଦ୍ୱୈତ' ତତ୍ତ୍ୱ ଆସ୍ତିବାଚକତା ଏବଂ ନେତିବାଚକତାର ଅବବୋଧ ଭିତରେ ସକଳ ଭାରତୀୟ ଅଧ୍ୟାତ୍ମ ବିଚାରକୁ ଅଳେଖ ବନ୍ଧିତେ ଆତ୍ମସାତ୍ କରିଛି । ଯୋଗ, ତଂତ୍ର, ଭକ୍ତି ଅନୁଶୀଳିତ ବିଭିନ୍ନ କାୟିକ ଓ ମାନସିକ ସାଧନା ସେମାନଂକର ତତ୍ତ୍ୱାଭିବ୍ୟକ୍ତିରେ ଉପନିଷଦର ମୂଳଉତ୍ସକୁ ବାରବାର ଫେରିଯାଇଛନ୍ତି । ଜ୍ଞାନ ଓ ଭକ୍ତି ପରସ୍ପରର ପରିପୂରକ ରୂପେ କିନ୍ତୁ ଯୁଗସମ୍ମତ ମୁଖ୍ୟଚେତନାରୂପେ ଏକେ ଏକେ ଭାରତୀୟ ବାଙ୍ମୟକୁ ଏ ରହସ୍ୟାତ୍ମକତାରେ ପ୍ରଭାବିତ କରିଛନ୍ତି । ଉପନିଷଦର ଜ୍ଞାନ, ପ୍ରେମ ଓ କର୍ମର ବିଚାରସିଦ୍ଧାଂତ ପରବର୍ତ୍ତୀକାଳରେ 'ଶ୍ରୀମଦ୍ ଭଗବତ୍‌ଗୀତା'ରେ ଏକ ପୂର୍ଣ୍ଣ ସମନ୍ୱୟମୂଳକ ସଙ୍ଗତି ଲାଭକରିଛି ଓ ବହୁ କାଳଧରି 'ପ୍ରସ୍ଥାନତ୍ରୟୀ' (ଉପନିଷଦ, ବେଦାଂତସୂତ୍ର, ଗୀତା) ଭାରତୀୟ ଅଧ୍ୟାତ୍ମ ଆଭିମୁଖ୍ୟକୁ ନିର୍ଦ୍ଦିଷ୍ଟ ଗତିସଂକେତ ପ୍ରଦାନ କରିଛି । 'ପ୍ରସ୍ଥାନତ୍ରୟୀ'ର ଜ୍ଞାନ ସିଦ୍ଧାଂତ ଉପରେ ନେତିମାର୍ଗବିସ୍ତାର ପରେ ବୌଦ୍ଧଦର୍ଶନର 'ଶୂନ୍ୟତତ୍ତ୍ୱ'ରେ ପ୍ରତିଫଳିତ ହୋଇଛି । ଆଜୀବକ ଏବଂ ବୌଦ୍ଧ ଦର୍ଶନ ବୈଦିକ କ୍ରିୟାକାଣ୍ଡ ନିଗଡର ଅବଶ୍ୟଂଭାବୀ ପ୍ରତିକ୍ରିୟାରୁ ସମ୍ଭୂତ ହୋଇ ପୁଣି କାଳକ୍ରମେ ଆତ୍ମୋପଲବ୍ଧି ମାର୍ଗରେ ଉପନିଷଦର ବିଶାଳ ସମୁଦ୍ରରେ ଅସ୍ତିତ୍ୱ ହରାଇଛନ୍ତି । ଆତ୍ମତତ୍ତ୍ୱ ସହ ପ୍ରେମକର୍ମର ଭାବ-ସାଧନା-ତତ୍ତ୍ୱଟି ଅନେକ କାଳଧରି ଭାରତୀୟ ଚେତନାର ସମନ୍ୱୟ ଧର୍ମିତା ଭିତରେ ସଂଘର୍ଷ ଓ ସଂହତିର ବହୁ ରୂପାଂତର ଲାଭକରି ବିଭିନ୍ନ ଧର୍ମଧାରା ଓ କାବ୍ୟୋଚ୍ଛ୍ୱାସକୁ ଯେଉଁ ରୂପଦାନ କରିଛି, ରାମାୟଣ ମହାଭାରତ ପରଂପରା ଅନୁସୃତ ପ୍ରାଚୀନ ପୁରାଣ ଗ୍ରନ୍ଥମାନ ତାହାର ବିଚିତ୍ର ଫଳଶ୍ରୁତି । ଇତିହାସର

Digitized by PPRACHIN, SOA

ନିର୍ଦ୍ଦେଶରେ ମଧ୍ୟପ୍ରାଚ୍ୟ ଓ ଦୂରପ୍ରାଚ୍ୟର ଅଧ୍ୟାତ୍ମ ମାନସହିତ ଭାରତୀୟ ଚେତନାର ବହୁବାର ସାକ୍ଷାତକାର ଘଟିଛି ଓ ଭାବସମ୍ପର୍କ ଭିତରେ ସମନ୍ୱୟ ସୃଷ୍ଟିର ଆବିଷ୍କାରରେ ପରସ୍ପର ଅପର୍ଯ୍ୟର ରହସ୍ୟବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଛନ୍ତି । ପ୍ରତ୍ୟକ୍ଷ ଓ ପରୋକ୍ଷରେ ଭାରତର ସ୍ୱତନ୍ତ୍ରସମର୍ଥ ଭାବମାନସରେ ଯୁଗାଶ୍ରିତ କାବ୍ୟଚେତନାର ଏ ରହସ୍ୟବାଦୀ-ବିବର୍ତ୍ତନୀ ରୂପାଲେଖ୍ୟକୁ ବାରବାର ଆବିଷ୍କାର କରିଛନ୍ତି । ପ୍ରାଂଶୀୟ ଭାଷା ସାହିତ୍ୟର ବିକାଶକାଳରେ ଯୋଗାଗ୍ରର ପ୍ରଭାବିତ ଓ ଶୂନ୍ୟସିଦ୍ଧାନ୍ତ ବଳସିତ ବୌଦ୍ଧଗାନ ଓ ଚର୍ଯ୍ୟାଗୀତିଚୂଡ଼ିକ ଲୌକିକ ଏବଂ ଅଲୌକିକ ପ୍ରେମ ସମ୍ପର୍କର ରହସ୍ୟବାଦୀ ବ୍ୟଂଜନାରେ ଚମତ୍କାର କାବ୍ୟମଂଜୁଳତା ଲାଭ କରିଛନ୍ତି । ବୌଦ୍ଧ ନିର୍ବାଣତତ୍ତ୍ୱ ଓ ଚର୍ଯ୍ୟା ସାଧନାର ସହଜ ସିଦ୍ଧାନ୍ତ ସହ ଉପନିଷଦୀୟ ଜ୍ଞାନାତ୍ମକ ଭକ୍ତି ଏବଂ ଯୋଗର କାୟସାଧନା ସମନ୍ୱୟରୁ ଉଦ୍‌ଭୂତ ନାଥ ଧର୍ମ ଓ ଦର୍ଶନ ପରବର୍ତ୍ତୀ ଅଧ୍ୟାତ୍ମ ରଚନାର ନିରାକାର ଭାବଚେତନା ଏବଂ ପ୍ରେମଧର୍ମର ଋଷସୂକ୍ଷ୍ମଳତା ସାଧନ ଦିଗରେ ସହାୟକ ଥିଲା । ଭକ୍ତିମାର୍ଗରେ ଇଷ୍ଟଙ୍କ ସହ ମାନବାତ୍ମାର ସଯୋଗ ସମ୍ପର୍କକୁ ଉପଜୀବ୍ୟ କରି ସାହିତ୍ୟରେ ରହସ୍ୟବାଦୀ ପ୍ରେମଚେତନାର ଅଭିକର୍ଷଣ ସାଧିତ ହୋଇଛି ।

ଆଚାର୍ଯ୍ୟ ଶଙ୍କରଙ୍କ 'କେବଳା-ଦ୍ୱୈତ'ର ପ୍ରତିବାଦରେ ଦକ୍ଷିଣରେ ଆଚାର୍ଯ୍ୟମାନଙ୍କ (ରାମାନୁଜ, ବଲ୍ଲଭ, ମାଧ୍ୱ, ନିମ୍ବାର୍କ) ଦ୍ୱାରା ପ୍ରବର୍ତ୍ତିତ ଭକ୍ତି ସାଧନାର ଦ୍ୱୈତାଦ୍ୱୈତ ତର୍କଣାମୂଳକ ରଚନାମାନ ରହସ୍ୟବାଦ ମୂଳସିଦ୍ଧାନ୍ତଗତ ବିରୋଧାଭାସର ଉପସ୍ଥାପନା ପ୍ରୟାସ ସ୍ୱରୂପରେ ପରବର୍ତ୍ତୀ ରହସ୍ୟାନୁଗ ବୈଷ୍ଣବସାହିତ୍ୟର ପୃଷ୍ଠପୀଠିକା ରୂପେ ବିଚାର୍ଯ୍ୟ । ସହଜିଆ ସାଧନା ପରମ୍ପରାରେ ବିଦ୍ୟାପତି, ଚଣ୍ଡୀଦାସ ରାୟ ରାମାନନ୍ଦ ପ୍ରଭୃତି ବୈଷ୍ଣବଗଣ ବ୍ରଜବୁଲି ଭାଷାରେ ପରକୀୟା-ପ୍ରତୀକାତ୍ମକ ଚମତ୍କାର ରହସ୍ୟାତ୍ମକ ଗୀତ ରଚନା କରିଛନ୍ତି । ଚୈତନ୍ୟଙ୍କ ପ୍ରଦର୍ଶିତ ରାଗାନୁଗା ସାଧନା ସର୍ବଭାରତୀୟ ସ୍ତରରେ ପ୍ରେମଭକ୍ତି ଚେତନାକୁ ରହସ୍ୟବାଦୀ କାବ୍ୟତତ୍ତ୍ୱ ରୂପେ ଚର୍ଚ୍ଚା କରିବାର ଯେଉଁ ଅବାଧ ମନସ୍ତାତ୍ତ୍ୱିକ ପୃଷ୍ଠଭୂମି ପ୍ରସ୍ତୁତ କରି ଦେଇଥିଲା, ତାହା ବହୁ ସ୍ଥଳରେ ରହସ୍ୟବାଦର ଅପଲାପ ଓ ସ୍ଥୂଳ ଏବଂ ବିକୃତ ରୂପାୟନର କାରଣ ହୋଇଥିଲେ ବି କାବ୍ୟକ୍ଷେତ୍ରରେ ଏକ ସ୍ୱଚ୍ଛନ୍ଦ ପରୀକ୍ଷା ନିରୀକ୍ଷାର ବ୍ୟାପକ ସୁଯୋଗ ଆଣି ଦେଇଥିଲା । ବୈଷ୍ଣବ କାବ୍ୟ ମୁଖ୍ୟତଃ ରାଧାକୃଷ୍ଣଙ୍କ ଅପ୍ରାକୃତ ପ୍ରେମ ସ୍ୱରୂପର ତାତ୍ତ୍ୱିକ ବ୍ୟାଖ୍ୟାରୂପ । ବୈଷ୍ଣବୀୟ ରହସ୍ୟବାଦୀ ପ୍ରେମ ପ୍ରକୃତରେ ଶରୀରାଶ୍ରିତ ନୁହେଁ, ଚେତନାଶ୍ରିତ । ମାତ୍ର ଉପଲବ୍ଧି ଅନଭିଜ୍ଞବ୍ୟକ୍ତିମାନଙ୍କରେ କେବଳ କାବ୍ୟୋଲ୍ଲାସ ପ୍ରଣୋଦିତ ଏ ପ୍ରେମଚିତ୍ର ଅନେକତ୍ର ସ୍ଥୂଳ ରୁଚିହୀନତା ଭିତରେ ଯାବତୀୟ ରହସ୍ୟ ସମ୍ବେଗ ହରାଇ ବସିଛି । ପୁନଶ୍ଚ ବୈଷ୍ଣବ କାବ୍ୟର ରାଧା ଓ କୃଷ୍ଣ ଅଲୌକିକବ୍ୟକ୍ତିତ୍ୱସମ୍ପନ୍ନ, ସେମାନଙ୍କ ସମ୍ବନ୍ଧ ସ୍ୱତଃ ଅପ୍ରାକୃତ । ଏହା ପାର୍ଥିବ ଚେତନାର ଅପାର୍ଥିବତାକୁ ଉତ୍ତରଣ ପ୍ରୟାସ ନୁହେଁ । ଏହା ଇନ୍ଦ୍ରିୟଜ ପ୍ରୀତିର ଅତୀନ୍ଦ୍ରିୟ ସାଧନୋତ୍‌ସଙ୍ଗ ନୁହେଁ । ବୈଷ୍ଣବ କାବ୍ୟର ରହସ୍ୟୋଦ୍‌ଦୀପନା ହେଉଛି ଅଲୌକିକପ୍ରେମ ସ୍ୱରୂପ ପ୍ରତି ଲୌକିକ ଅନୁଭବନାକୁ ପ୍ରଣୋଦିତ କରିବାରେ ସମ୍ପୃକ୍ତ । ବ୍ରଜ ପ୍ରେମ ମାନବିକ ସମ୍ପର୍କ ବିଶେଷ ନୁହେଁ, ମାନବୀୟ ପ୍ରୀତିର ପ୍ରତୀକାତ୍ମକ ଅଭିବ୍ୟକ୍ତି ମାତ୍ର; ଏ ପ୍ରତୀକାତ୍ମକତାକୁ ହିଁ ବୈଷ୍ଣବ କାବ୍ୟ ସିଦ୍ଧାନ୍ତ ରହସ୍ୟତତ୍ତ୍ୱ ନାମରେ ବିଚାର କରିଛି ।

ବୈଷ୍ଣବ କାବ୍ୟର ରୁଚିବିକୃତ ପ୍ରେମ ଭାବନା ପ୍ରତି ପ୍ରତିକ୍ରିୟାର ଏକ ସାର୍ଥକ ପରିଣତି ନିର୍ଗୁଣ ବା ସନ୍ଥ ସାହିତ୍ୟ । ମଧ୍ୟଯୁଗରେ ଭାରତର ସାଂସ୍କୃତିକ ଚେତନା ପ୍ରତି ଇସ୍‌ଲାମ ଚିନ୍ତାଧାରାର ପ୍ରବଳ ଆଘାତ ପୁଣି ସୁଫୀ ପ୍ରେମ ସାଧନା ପନ୍ଥାର ବୈଷ୍ଣବୀୟ ଭକ୍ତି/ପ୍ରୀତିତତ୍ତ୍ୱ ସହ ସମନ୍ୱୟ ସାଧନ,

Digitized by PPRACHIN, SOA

ଉଭୟ ମଧ୍ୟଯୁଗୀୟ ଭାରତୀୟ ରହସ୍ୟ ଚେତନାରେ ପ୍ରତିଫଳିତ । ନାନକ, କବୀର, ତୁଳସୀ, ଦାଦୂ, ମୀରା, ରୁଇଦାସ ଓ ଓଡ଼ିଶାର ଯୋଗୀ/ଭକ୍ତ ଜଗନ୍ନାଥ, ବଳରାମ, ଯଶୋବନ୍ତ ପ୍ରଭୃତି ଏ ଦିଗରେ ଦର୍ଶନ ଓ ସାହିତ୍ୟ ଭିତରେ ଏକ ସୁନ୍ଦର ସୁଷମାମଣ୍ଡିତ କାବ୍ୟସିଦ୍ଧି ହାସଲ କରିଛନ୍ତି । ଭକ୍ତିଧର୍ମର ପ୍ରାବଲ୍ୟକାଳରେ ଏ ରହସ୍ୟ ଚେତନା ବୈଷ୍ଣବ ଅନୁରାଗ ଓ ସୂଫୀ ବିରହ ବ୍ୟାକୁଳତା ଦ୍ୱାରା ପରିପୁଷ୍ଟ ହୋଇଛି; ମାନବୀୟ ଭାବ ଆବେଦନର ସହୃଦୟତା କାବ୍ୟିକ ମନୋହାରିତା ସମ୍ପାଦନ କରିଛି । ସିନ୍ଧୀ, ପଞ୍ଜାବୀ, ମୈଥିଳୀ, ପ୍ରଭୃତି ଭାଷା ସାହିତ୍ୟରେ ଆଖ୍ୟାୟିକାମୂଳକ ରଚନାମାନଙ୍କରେ ଏ ରହସ୍ୟ-ଧର୍ମିତା ସ୍ପଷ୍ଟ । ବିଶେଷକରି ହିନ୍ଦିରେ ଜାୟସୀଙ୍କ ରଚିତ 'ପଦ୍ମାବତୀ', ପଞ୍ଜାବୀରେ ବୁଲେଶାହଙ୍କ 'ହୀର-ଏ ରାଁଝା' ପ୍ରଭୃତି ପ୍ରେମମୂଳକ ଆଖ୍ୟାୟିକା-କାବ୍ୟ ଜୀବ-ପରମର ପ୍ରୀତି-ରହସ୍ୟର ପ୍ରତୀକାତ୍ମକ ବିନ୍ୟାସ ରୂପେ ପରିକଳ୍ପିତ ।

ଅବଶ୍ୟ, ଆଖ୍ୟାୟିକା-କାବ୍ୟ ଓ ତତ୍ତ୍ୱଗର୍ଭିତ ରଚନାକୁ ବିଚାର ପରିସରଭୁକ୍ତ କରିନେଲେ ଋଗ୍ ବେଦଠାରୁ ଆରମ୍ଭକରି ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ମଧ୍ୟଯୁଗୀୟ ସମସ୍ତ ଦର୍ଶନ, ପୁରାଣଶାସ୍ତ୍ର ଓ ବୈଷ୍ଣବ ଗ୍ରନ୍ଥଗୁଡ଼ିକୁ ରହସ୍ୟବାଦୀ ପରିଚୟର ସ୍ୱୀକୃତି ଦେବାକୁ ପଡ଼ିବ । ମାତ୍ର ରହସ୍ୟ-କାବ୍ୟ-ବିଚାର ପ୍ରସଙ୍ଗରେ ଏହା ଯୁକ୍ତିଯୁକ୍ତ ନୁହେଁ ।

ପାରମ୍ପରିକ କାବ୍ୟଧାରାରେ ଏକ ଉଲ୍ଲେଖନୀୟ ବ୍ୟତିକ୍ରମ ଘଟେ ଊନବିଂଶ ଶତକରେ । ୟୁରୋପୀୟ ଚିନ୍ତାମାନସହିତ ଭାବବିନିମୟ ଅବକାଶରେ ଭାରତୀୟ ସାଂସ୍କୃତିକ ଚେତନା ଆପଣାକୁ ପୁନର୍ବିନ୍ୟାସ କରିବାକୁ ଯେଉଁ ଅଧ୍ୟାତ୍ମ ଆହ୍ୱାନ ପାଇଲା ତାର ସୁଦୂରପ୍ରସାରୀ ପରିଣତିରୂପେ ଉପନିଷଦୀୟ ଚେତନାର ପୁନରଭ୍ୟୁଦୟ ହେଲା । ଏ ନବଜାଗରଣ ନବଯୁଗର ସାହିତ୍ୟାଦର୍ଶରେ ମଧ୍ୟ ପ୍ରତିଫଳିତ ହେଲା । ପୁନଶ୍ଚ ରହସ୍ୟବାଦ ଧର୍ମନିଗଡ଼ତାମୁକ୍ତ ଏକ ସ୍ୱତନ୍ତ୍ର କାବ୍ୟାଦର୍ଶରୂପେ ନିଜକୁ ଉପସ୍ଥାପନା କରିବାର ପ୍ରଚୁର କ୍ଷେତ୍ର ଲାଭକଲା । ଏ ପ୍ରସଙ୍ଗରେ ସ୍ମରଣୀୟ, ଏ ଯାବତ୍ ବ୍ୟକ୍ତିଗତ ଓ ସାମାଜିକ ପରିପ୍ରେକ୍ଷୀରେ ଧର୍ମ ଓ ଦର୍ଶନମୂଳକ ରହସ୍ୟଚେତନାର ପ୍ରାୟୋଗିକ ଉପଯୋଗିତା ଥିଲା, ବ୍ୟକ୍ତିଗତ ଆଧ୍ୟାତ୍ମିକ ନିମନ୍ତେ ତାର ଆନ୍ତରିକ ପ୍ରତିଷ୍ଠା ଥିଲା; ମାତ୍ର ସାହିତ୍ୟାଦର୍ଶରୂପେ ତାର ସ୍ୱତନ୍ତ୍ର ଅନୁସରଣ ସ୍ୱୀକୃତ ନଥିଲା । ଭାରତୀୟ କାବ୍ୟଚେତନାରେ ପ୍ରାଚ୍ୟ ଭାବାଦର୍ଶ ଓ ପାଶ୍ଚାତ୍ୟ କାବ୍ୟାଦର୍ଶର ମିଳନ ଅବକାଶରେ ହିଁ ରହସ୍ୟବାଦ ଏକ କଳାତ୍ମକ ଅଭିବ୍ୟକ୍ତିରୂପେ ଅନୁଶୀଳିତ ହେବାର ସୁଯୋଗ ଲାଭକଲା । ଧର୍ମ ଓ ଦର୍ଶନର ଅନିବାର୍ଯ୍ୟ ଅବଲମ୍ବନକୁ ଉପେକ୍ଷା କରି ପ୍ରଥମ କରି ଏହା ଏହି ଯୁଗର କାବ୍ୟକଳାରେ ହିଁ ଜୀବନାନୁଭବର ବ୍ୟାଖ୍ୟା ରୂପରେ ଆତ୍ମପ୍ରକାଶକରିବାକୁ ଉଦ୍ୟମ କରିଛି । ବୈଦିକ ପ୍ରକୃତି ଉପାସନା ଓ ଉପନିଷଦର ଐକ୍ୟତତ୍ତ୍ୱସହ ପାଶ୍ଚାତ୍ୟ କାବ୍ୟଚେତନାର ପ୍ରକୃତି ସୌନ୍ଦର୍ଯ୍ୟଗ୍ରାହ୍ୟତା ଏବଂ ପ୍ରଣୟାନୁଭବରେ ବିଶ୍ୱସହ ଐକ୍ୟତାନିକତା ଲାଭକରିବା ମୂଳରେ ଯେ ଏକ ଭାବ ସାମଞ୍ଜସ୍ୟ ରହିଛି, ତାହା ପ୍ରଥମକରି ଏକ ପୂର୍ଣ୍ଣ ରସନିଷ୍ପାଦନକାରୀ କାବ୍ୟାକାଙ୍କ୍ଷା ରୂପେ ରବୀନ୍ଦ୍ର ରଚନା ମାଧ୍ୟମରେ ଭାରତୀୟ ବିଦଗ୍ଧ ଚେତନାକୁ ପ୍ରସାରିତ ହୋଇଛି ।

ଆଧୁନିକ ଭାରତୀୟ ଭାଷା ସାହିତ୍ୟରେ ରହସ୍ୟବାଦୀ ଭାବସଂବେଗର ନବତମ ପ୍ରକାଶ ରୂପ ହେଉଛି ରବୀନ୍ଦ୍ର କାବ୍ୟଜଗତ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାବସମୁଦ୍ରର ମନ୍ଥନ ଭିତରୁ ତାଙ୍କ କାବ୍ୟଲକ୍ଷ୍ମୀଙ୍କର

Digitized by PPRACHIN, SOA

ଅପୂର୍ବ ସାରସ୍ୱତ ସୁଧା ହସ୍ତରେ ମନୋଜ୍ଞମୟୀ ଆବିର୍ଭାବ ଘଟିଛି । ରବୀନ୍ଦ୍ରମାନସ ଯେପରି ସମଗ୍ର ଭାରତୀୟ ସାରସ୍ୱତ ପରଂପରାକୁ ବାମହସ୍ତରେ ଉତ୍ତରାଧିକାର ସୂତ୍ରରେ ଲାଭକରି ଦକ୍ଷିଣ ହସ୍ତରେ ପାଶ୍ଚାତ୍ୟ ଭାବମଂଦିରର ଐଶ୍ୱର୍ଯ୍ୟସାରକୁ ସ୍ୱଦେଶୀୟ କାବ୍ୟସାଧନାର ଉତ୍ତରଦାୟାଦଙ୍କ ପାଇଁ ବରଣ କରିଆଣିଲେ । ରବୀନ୍ଦ୍ରଚେତନାରେ ପାଶ୍ଚାତ୍ୟ ମେଟାଫିଜିକାଲ ମନ ଓ ରୋମାଣ୍ଟିକ ସାହିତ୍ୟାଦର୍ଶ ପ୍ରାଚ୍ୟ ହୃଦୟର ପ୍ରେମ-ଭକ୍ତି-ଜ୍ଞାନରେ ନିର୍ମଳ ତ୍ରିବେଣୀରେ ଆପଣାର ସ୍ପଷ୍ଟ ପ୍ରତିଚ୍ଛବି ଲାଭକରିପାରିଥିଲା । ରବୀନ୍ଦ୍ରନାଥଙ୍କ ସମସାମୟିକ ଓ ପରବର୍ତ୍ତୀ ପ୍ରାଦେଶିକ ସାହିତ୍ୟସାଧନା ମୁଖ୍ୟତଃ ଏହି ରବୀନ୍ଦ୍ରିକ-ଉପନିଷଦ ରୋମାଣ୍ଟିକ' ରହସ୍ୟଧର୍ମିତାଠାରୁ କାବ୍ୟ ପ୍ରେରଣା ଲାଭକରିଛି । ନବଜାଗରଣକାଳୀନ ଏହି କାବ୍ୟଚେତନାରେ ଭାରତୀୟ ମନ ପାଶ୍ଚାତ୍ୟ ଅତୀନ୍ଦ୍ରିୟ ଭାବାଦର୍ଶଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ ବି ସକଳ ଭାରତୀୟ ଭାବଧାରାର ମୂଳଉତ୍ସ ଓ ତାର ଅତି ନିଜସ୍ୱ ରହସ୍ୟବାଦୀ ବିଚାରଧାରା ଭିତରକୁ କ୍ରମଶଃ ସହିତ ହୋଇ ଫେରିଆସିଛି । ଏ କାବ୍ୟ ସ୍ୱରରେ ୟୁରୋପର ବୌଦ୍ଧିକ ମାନସର ପ୍ରତିଫଳନ ସହ ଋଷିକବିର ବିମୁଗ୍ଧ ବିସ୍ମୟ ପୁଣି ଉପନିଷଦୀୟ ଉଦାର ପ୍ରଶାଂତିପୂର୍ଣ୍ଣ ଆତ୍ମପ୍ରକାଶ କରିଛି । ଏହାସହ ବୈଷ୍ଣବ ପ୍ରୀତିଦର୍ଶନ ଏ କାବ୍ୟଚେତନାର ରାଗାତ୍ମକତାକୁ ମଧ୍ୟ ଉଦ୍ଦୀପ୍ତ କରିଛି ।

ତେବେ ମନେହୁଏ, ଆଧୁନିକ କାବ୍ୟାଦର୍ଶବିଚାର ଆଖ୍ୟାୟିକାମୂଳକ ରୂପକାତ୍ମକତା ଏବଂ ତତ୍ତ୍ୱଗର୍ଭିତ ଧର୍ମ/ଦର୍ଶନ ରଚନାକୁ ରହସ୍ୟବାଦୀ ସାହିତ୍ୟରୂପେ ଗ୍ରହଣ କରିବାକୁ କୁଣ୍ଠିତ । ରହସ୍ୟବାଦର ସାଂପ୍ରତିକ କାବ୍ୟାଭିବ୍ୟକ୍ତି ନିରୋଳା ତତ୍ତ୍ୱ ବିଚାର ବା ଲୌକିକ ପ୍ରେମର ଅଲୌକିକ ଉତ୍କ୍ଷେପଣରେ ସନ୍ତୁଷ୍ଟ ନୁହେଁ । ବ୍ୟକ୍ତିଗତ ବୌଦ୍ଧିକ ଭାବନାର ଅମୂର୍ତ୍ତତାକୁ ନୈର୍ବ୍ୟକ୍ତିକତା ନାମରେ ଅଧ୍ୟାତ୍ମ ରୂପ ଦେବା ବା ରୂପକାତ୍ମକତା ବିଧାନରେ ରହସ୍ୟାତ୍ମକତାକୁ ଉଚ୍ଛିତ କରିବା, ଆଜିର କାବ୍ୟବିଚାରରେ ରହସ୍ୟଚେତନାର ସ୍ୱୀକୃତ ମୂଲ୍ୟାଂକନ ନୁହେଁ । ୟୁରୋପର ସାଂପ୍ରତିକ ସାହିତ୍ୟରେ ଏଇ ରୂପ ଅତୀନ୍ଦ୍ରିୟ ପ୍ରବଣତାକୁ ବୋଧହୁଏ ଲକ୍ଷ୍ୟକରି କବି ଗେଟେ ମନ୍ତବ୍ୟ କରିଥିଲେ ଯେ— 'ଆଧୁନିକ କବି ମସୀ ପାତ୍ରରେ ଜଳର ବ୍ୟବହାର ମାତ୍ରାଧିକ ଭାବେ କରୁଛି ।' ଯାବତୀୟ ବ୍ୟକ୍ତିଗତ ଅମୂର୍ତ୍ତ ଭାବାତ୍ମକତାକୁ ଅସୀମ ଓ ଈଶ୍ୱରରେ ଆରୋପିତ କରିଦେବା ରହସ୍ୟବାଦୀଚେତନା ନୁହେଁ । ରହସ୍ୟବାଦର 'ଅତୀନ୍ଦ୍ରିୟ' ଇନ୍ଦ୍ରିୟ ପ୍ରତ୍ୟକ୍ଷତା ସହ ନିବିଡ଼ ସଂପୃକ୍ତ । ଅଧ୍ୟାତ୍ମବାଦ ବା ଈଶ୍ୱରତତ୍ତ୍ୱ ସେଠାରେ ଅନିବାର୍ଯ୍ୟ ନୁହେଁ । ଏ ପ୍ରସଂଗରେ ନିମ୍ନୋକ୍ତ ମନ୍ତବ୍ୟଟିଂ ପ୍ରଣିଧାନଯୋଗ୍ୟ ଯାହା ଜଣେ ଅଧ୍ୟାତ୍ମବାଦୀ, ଈଶ୍ୱରବିଶ୍ୱାସୀ, ରହସ୍ୟବାଦୀ ଦାର୍ଶନିକ ଓ ସାଧକ କବିର ବିଚାର, ଯିଏ କି ଆଧ୍ୟାତ୍ମିକତା ଓ କବିଧର୍ମର ସକଳ ସୂକ୍ଷ୍ମ ରହସ୍ୟାତ୍ମକ ମାର୍ଗରେ ଗତିକରି ଜୀବନାନୁଭବ ଓ କାବ୍ୟୋପଲବ୍‌ଧିର ନିଗୂଢ଼ ସଂବାଦକୁ ଚେତନାରେ ଲାଭକରିଛନ୍ତି ।

---

1 "Mystic poetry has a perfectly concrete meaning much more than intellectual poetry which is much more abstract. The nature of the intellect is abstraction. Spiritualism and mysticism deal with the concrete by their very nature."

Sri Aurobindo "Future Poetry"—P. 353

Digitized by PPRACHIN, SOA

## ୩) ଉତ୍କଳୀୟ ପୃଷ୍ଠଭୂମି :

ଭାରତୀୟ ରହସ୍ୟଚେତନାର ଏ କ୍ରମବିବର୍ତ୍ତନ ଧାରା ପାରଂପରିକ ଓଡ଼ିଆ କାବ୍ୟସାହିତ୍ୟରେ ଧର୍ମ ଓ ଦର୍ଶନମୂଳକ ବ୍ୟାଖ୍ୟା ରୂପେ ହିଁ ଆତ୍ମପ୍ରକାଶ କରିଛି ।

୧- ତତ୍ତ୍ୱଗର୍ଭିତ ଦର୍ଶନବିଗ୍ରହ,

୨- ଲୌକିକ ପ୍ରେମ ବର୍ଣ୍ଣନାରେ ଅଲୌକିକତାର ଉତ୍ପ୍ରେକ୍ଷା,

୩ ଚେତନାର ଯାବତୀୟ ଅତୀନ୍ଦ୍ରିୟ ଉନ୍ମୁଖତା, ଶାଶ୍ୱତ ସଂବେଗ ଓ ଅନୁଦ୍‌ଘାଟିତ ରହସ୍ୟ-ଜିଜ୍ଞାସା- ଏହି ଭାରତୀୟ ବିଗ୍ରହଭୂମି ଉପରେ ଓଡ଼ିଆ କାବ୍ୟଧାରାର ରହସ୍ୟବାଦୀ ଆଭିମୁଖ୍ୟ ମଧ୍ୟ ଅବଲଂବନଶୀଳ ହୋଇ ରହିଛି । ଓଡ଼ିଶାର ନିଜସ୍ୱ ସାଧନା ପରଂପରାଟି ଯୌଗିକ ଏବଂ ନିବୃତ୍ତିପର । ତାର ଆଧ୍ୟାତ୍ମ କାବ୍ୟ-ରୂପ ତେଣୁ ବୈରାଗ୍ୟର କଷାୟବାସମଣ୍ଡିତ । ବେଦାଂତର ଅଦ୍ୱୈତ ଓ ଶଂକର-ମାୟାବାଦ, ବୌଦ୍ଧ ଶୂନ୍ୟବାଦ ଯୋଗର ପିଣ୍ଡବ୍ରହ୍ମାଣ୍ଡ ସିଦ୍ଧାଂତ, ତଂତ୍ରର ଦେହଚର୍ଯ୍ୟା, ଭକ୍ତର ସାକାରପ୍ରେମ ଓ ନିରାକାର ଆରାଧନା ଏବଂ ନାଥ, ସିଦ୍ଧ, ଅବଧୂତ, ମହିମା ପରଂପରାର ଜ୍ଞାନାତ୍ମିକା ନିର୍ଗୁଣ ସାଧନା ବହୁ ପରୀକ୍ଷା ନିରୀକ୍ଷା ଦେଇ ଓଡ଼ିଆର ଆଧ୍ୟାତ୍ମିକ କାବ୍ୟ ଜିଜ୍ଞାସାକୁ ଅନୁପ୍ରାଣିତ କରିଛି । ଭାଷା ସାହିତ୍ୟର ଉନ୍ମେଷକାଳୀନ ରଚନା ଚର୍ଯ୍ୟାଗୀତଠାରୁ ଆରଂଭକରି ନାଥ-ସିଦ୍ଧ, ପଂଚସଖା ରଚନାମାର୍ଗଦେଇ ଭୀମ ଭୋଇଙ୍କ ମହିମା ଭଜନ ପର୍ଯ୍ୟଂତ ଏ ଧାରାଟି ମଧ୍ୟଯୁଗୀୟ ଓଡ଼ିଆ କାବ୍ୟର ପୁଷ୍କଳତା ସଂପାଦନ କରିଛି ।

ଭାଷା କାବ୍ୟର ଆଦ୍ୟରୂପ ଚର୍ଯ୍ୟା ଗୀତର ରହସ୍ୟବାଦୀ ସଂକେତାର୍ଥରେ ସମୃଦ୍ଧ । ନାଥ ଦର୍ଶନ ଗ୍ରନ୍ଥର (ମୁଖ୍ୟତଃ ଶିଶୁବେଦ) ରହସ୍ୟସିଦ୍ଧାଂତ ବେଦାନ୍ତ ଓ ବୌଦ୍ଧ ପରଂପରାର ପ୍ରାୟୋଗିକ ଅଭିଳେଖ ରୂପେ ହିଁ ଉଦ୍ଦିଷ୍ଟ । ଏ ରହସ୍ୟାତ୍ମିକତା ପ୍ରାୟ ଅପରିବର୍ତ୍ତିତ ସ୍ୱରୂପରେ ପଂଚସଖା ସାହିତ୍ୟ ନିକଟରେ ସମାଗତ ଯାହା ଏକ ଦିଗରେ ଦକ୍ଷିଣାଗତ ସାକାର ଉପାସନାମୂଳକ ସଗୁଣ ଭକ୍ତି ଓ ଅପର ଦିଗରେ ଗୌଡ଼ୀୟ ରାଗାନୁଗା ପ୍ରୀତି ଅତୀନ୍ଦ୍ରିୟ ଭାବସାଧନାଦ୍ୱାରା ପରିପୁଷ୍ଟ । ଓଡ଼ିଶାର ପାରଂପରିକ ନିର୍ଗୁଣ ସାଧନା ସହ ଏହି ସଗୁଣ ଉପାସନାର ସମ୍ମିଶ୍ରଣର ପ୍ରଭାବ ପଂଚସଖା ସାହିତ୍ୟରେ ସ୍ପଷ୍ଟ । ରହସ୍ୟବାଦର ଏ ସାହିତ୍ୟିକ ଅଭିବ୍ୟଂଜନା ପଂଚସଖା ପରବର୍ତ୍ତୀ ଅନେକ ସ୍ୱନାମଧନ୍ୟ ଓ ଅନାମଧେୟ ରଚୟିତାଙ୍କର ଜଣାଣ ଭଜନ ପ୍ରଭୃତିରେ ମଧ୍ୟ ସଂରକ୍ଷିତ । ଗୌଡ଼ୀୟ ଦର୍ଶନର ପ୍ରଭାବ ଓଡ଼ିଆ ବୈଷ୍ଣବ କାବ୍ୟାଦର୍ଶକୁ ସ୍ଥିରୀକୃତ କରିଦେଇଥିଲେ ବି ରହସ୍ୟବାଦୀ ଅଭିବ୍ୟଂଜନାରେ ଏ ଯୁଗୀୟ କାବ୍ୟ ସମୃଦ୍ଧ ନୁହେଁ । ବୈଷ୍ଣବ ପଦାବଳୀ ଓ ରାୟ ରାମାନଂଦଂକ ରଚନାରେ ପ୍ରେମାଭିବ୍ୟକ୍ତିର ରହସ୍ୟୋନ୍ମୁଖିତା ଆଦର୍ଶ ରୂପେ ଲାଭ ସତ୍ତ୍ୱେ ବି ରୀତିଧର୍ମୀ ଆଳଂକାରିକତା ଏବଂ ଦେହବାଦୀ ଶୃଂଗାରିକତାର ଆତ୍ୟଂତିକତାରେ ପ୍ରବଣତା ରାଧାକୃଷ୍ଣ ପ୍ରଣୟାଶ୍ରିତ ଓଡ଼ିଆ କାବ୍ୟଚେତନାକୁ ପ୍ରେମ ରୂପର ରହସ୍ୟବାଦୀ ଉତ୍କ୍ଷେପ ସାମର୍ଥ୍ୟ ଦେଇପାରିନାହିଁ । ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳର ଦେହଭୋଗାସକ୍ତ ଶୃଂଗାର-ଲାଳସା ପ୍ରେମର ଅପାର୍ଥିବ ରହସ୍ୟଲୋକ ପ୍ରତି ବିଶେଷ ଉତ୍ସାହ ପ୍ରକାଶ କରିନାହିଁ । ପରେ ଅଭିମନ୍ୟୁଙ୍କ 'ବିଦଗ୍ଧ ଚିଂତାମଣି' ଏ ଦିଗରେ ଏକ ବିହିତ ଉଦ୍ୟମ ବୋଲି ମନେ ହୋଇଥାଏ । ଅନ୍ୟତମ ଭକ୍ତକବି କବିସୂର୍ଯ୍ୟ ରଚିତ ଶ୍ରୀଗୋବିଂଦର ଶୃଂଗାରିକତା ପ୍ରଭାବିତ 'ଚଂପୂ'ରେ ରହସ୍ୟାତ୍ମକ ପ୍ରେମର କ୍ଷୀଣ ସଂକେତ 'ଶ୍ୟାମ ଗଉର ଦୁଇ ମହ' ବର୍ଣ୍ଣନା ଭିତରେ ଗୂଢ଼ାୟିତ ହୋଇଯାଇଛି ।

Digitized by PPRACHIN, SOA

ଉପେନ୍ଦ୍ରାନୁଗ ଆଖ୍ୟାୟିକା-କାବ୍ୟମାନଙ୍କରେ ନାୟକ-ନାୟିକାଙ୍କର ଜନ୍ମ ସୂତ୍ରରେ ଦିବ୍ୟତ୍ୱ ଏକ କାବ୍ୟଗତ ଆବଶ୍ୟକତା ରୂପେ ସୂଚିତ ହୋଇଥିଲେ ମଧ୍ୟ ଏଥିରେ 'ପଦ୍ମାବତୀ' ସମତୁଲ୍ୟ ରହସ୍ୟବାଦୀ ରୂପକାତ୍ମକତାର (allegorical) କୌଣସି ସ୍ୱୀକୃତି ନାହିଁ। ବରଂ ଏଇ ମଧ୍ୟଯୁଗୀୟ ଭାବସ୍ଥାଣୁତ୍ୱ ଓ ରୁଚିହୀନ ଶୃଙ୍ଗାରଚର୍ଚ୍ଚାର କର୍କଶ ବାଦ୍ୟକୋଳାହଳ ଭିତରେ ବେଳେ ବେଳେ ଗୋପାଳକୃଷ୍ଣ, ବନମାଳୀ ପ୍ରଭୃତିଙ୍କ ଆନୁକୂଲ୍ୟରୁ ଜଣାଣ ଭଜନ ରୂପୀ ସୁଲଳିତ ସ୍ୱର ସଙ୍ଗୀତର କ୍ଷୀଣ ଲହରୀ ଖଣ୍ଡେ ଖଣ୍ଡେ ଯେ କାନରେ ମଧୁର ହୋଇ ବାଜିଯାଆନ୍ତି, ତାହା ଭକ୍ତିମୋଦୀ ହୃଦୟର ରସତୃଷାକୁ କିଂଚିତ ପ୍ରଶମିତ କଲେ ବି କାବ୍ୟ ସମ୍ବେଗର ରହସ୍ୟବାଦୀ ଅଭିମୁଖ୍ୟଟିକୁ ସ୍ପଷ୍ଟ କରିରଖିବାରେ ଏତେ ପ୍ରଭାବଶାଳୀ ନୁହନ୍ତି। ଓଡ଼ିଆ କାବ୍ୟର ଅଧ୍ୟାତ୍ମଚେତନା ନିବୃତ୍ତିମାର୍ଗୀ ଅଥଚ ପ୍ରଣୟ ସାଧନା ଦେହ ଭୋଗକାମୀ ହୋଇପଡ଼ିବା ହେତୁ ଏ ଯୁଗୀୟ ସାହିତ୍ୟର ଏକ ପାର୍ଶ୍ୱରେ ରୁଚିବିକୃତ ରସାଭିଳାଷ ଓ ଅପରପାର୍ଶ୍ୱରେ ଶୁଷ୍କ ଜୀବନ ବୈରାଗ୍ୟର ରକ୍ତଚକ୍ଷୁ ଶଙ୍କିତ ଜଗତ-ଉଦାସୀନ ମୁକ୍ତି ଅନ୍ୱେଷା କାବ୍ୟ-ପୁରୁଷକୁ ଯେ ରୀତି, ଗୁଣ, ଧ୍ୱନି, ବକ୍ରୋକ୍ତିର କ୍ରୀଡ଼ା କସରତ ଭିତରେ ରସତୃପ୍ତିର ଉଦ୍ୟମ କରିବାକୁ ପ୍ରବୃତ୍ତ କରିଥିବ, ଏହା ବିଚିତ୍ର ନୁହେ।

ଅନ୍ୟାନ୍ୟ ପ୍ରାନ୍ତୀୟ ନବଯୁଗସାହିତ୍ୟପରି ଓଡ଼ିଆ ସାହିତ୍ୟର ନବଜାଗରଣ ମଧ୍ୟ କାଳଗତ ପ୍ରକ୍ରିୟାକୁ ମାନିନେଇଛି। ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତକର ପ୍ରଥମାର୍ଦ୍ଧରେ ପାଶ୍ଚାତ୍ୟ ସାହିତ୍ୟ, ପ୍ରତିବେଶୀ ସାହିତ୍ୟ ଓ ପାରମ୍ପରିକ ସାହିତ୍ୟ ପରସ୍ପରକୁ ପ୍ରଭାବିତ କରିବାର ଭାବସଂଘର୍ଷ ଭିତରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପାଶ୍ଚାତ୍ୟ କାବ୍ୟାଦର୍ଶ କିନ୍ତୁ ଭାରତୀୟ ଭାବମାନସକୁ ପ୍ରମୂର୍ତ୍ତ କରି ତ୍ରୟୀ ଯୁଗପୁରୁଷ- ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ଆବିର୍ଭାବ ଘଟିଲା। ଉପନିଷଦୀୟ ଦର୍ଶନ, ବ୍ରାହ୍ମ-ସିଦ୍ଧାନ୍ତ ଓ ପାରମ୍ପରିକ ଭକ୍ତିଭାବନା ସହ ୟୁରୋପୀୟ ମେଟାଫିଜିକାଲ ଦୃଷ୍ଟିଭଙ୍ଗିର ଚମତ୍କାର ସମନ୍ୱୟରୂପ ମଧୁସୂଦନଙ୍କ କାବ୍ୟାଭିବ୍ୟକ୍ତି ଯାହା ପ୍ରାଚ୍ୟ ଆଧ୍ୟାତ୍ମିକ-ମନ ଏବଂ ପାଶ୍ଚାତ୍ୟ କାବ୍ୟଚେତନା ଅନ୍ତର୍ଗତ ରହସ୍ୟାତ୍ମକତାର ସୁନ୍ଦର ପରିବେଷଣ କରିଛି। ଜଟିଳ ଅଧ୍ୟାତ୍ମ ଉପଲବ୍ଧି ଓ ରହସ୍ୟବାଦୀ ଅନୁଭବର ଏଭଳି ବିଶୁଦ୍ଧ, ମାର୍ମିକ କାବ୍ୟାଲେଖ୍ୟ ଓଡ଼ିଆ ସାହିତ୍ୟରେ ଦୁର୍ଲଭ। ଏ ରହସ୍ୟବାଦୀ ଭାବବିଭବକୁ ମଧୁସୂଦନ ଆଧ୍ୟାତ୍ମିକ ଆଦର୍ଶ ରୂପେ ତାଙ୍କ ରଚନାରେ ପ୍ରତିଷ୍ଠା କରିଥିଲେ ବି ଏହା ଏକ ରସାତ୍ମକ ଆଦର୍ଶ ରୂପେ ସ୍ୱତନ୍ତ୍ର ଭାବେ ପରବର୍ତ୍ତୀ କାବ୍ୟୋଦ୍ୟମକୁ ପ୍ରଣୋଦିତ କରିବାର ପ୍ରେରଣାଟି ତାଙ୍କଠାରୁ ସମାରବ୍ଧ ବୋଲି କୁହାଯାଇପାରେ। ଓଡ଼ିଆ କବିତା କ୍ଷେତ୍ରରେ ରାଧାନାଥୀ ସୌନ୍ଦର୍ଯ୍ୟାଦର୍ଶ ଓ ରୋମାଣ୍ଟିକ ପ୍ରଣୟଭାବନାକୁ ନେଇ ଯେଉଁ ଏକ ନୂତନ କାବ୍ୟ ପରମ୍ପରା ସୃଷ୍ଟି ହେଲା, ମଧୁସୂଦନ ସେଥିରେ ନବତମ ଏକ ଭାବାଦର୍ଶର ପରମ୍ପରା ମଧ୍ୟ ସଂଯୋଗ କରିଦେଇ ଗଲେ। ମୁଖ୍ୟତଃ ତାଙ୍କରି ପଦାଙ୍କ ଅନୁସରଣରେ ଅନେକ ଦିନ ଧରି ଓଡ଼ିଆ କବିତା ସେହି ଅଧ୍ୟାତ୍ମ ପ୍ରବଣତା ଓ ଦର୍ଶନାତ୍ମକ ଅଭିଭାଷଣକୁ ହିଁ ପାଥେୟ କରି ରଖିଥିଲା।

ଓଡ଼ିଆ କାବ୍ୟମାନସର ରହସ୍ୟବାଦୀ ପ୍ରବଣତା ସମ୍ମୁଖରେ ଅନ୍ୟ ଏକ ବିପୁଳ ଦିଗନ୍ତର ଉନ୍ମୋଚନ କରିଥିଲା ରବୀନ୍ଦ୍ର କାବ୍ୟାଦର୍ଶ। କି ପ୍ରେମଭାବନା, କି ସୌନ୍ଦର୍ଯ୍ୟଚେତନା, କି ଅଧ୍ୟାତ୍ମ ଉପାସନା ସବୁଠି ରବୀନ୍ଦ୍ର ମାନସର ପ୍ରତିଚ୍ଛବି, ରବୀନ୍ଦ୍ର କାବ୍ୟସ୍ୱରର ପ୍ରତିଧ୍ୱନି, ରବୀନ୍ଦ୍ର ରଚନାର ଅନୁକରଣ ଏପରିକି ସ୍ପଷ୍ଟ ଅନୁସରଣ ମଧ୍ୟ ଏ ରହସ୍ୟବାଦୀ କାବ୍ୟୋଦ୍ୟମରେ ପ୍ରୋତ୍ସାହନ ଲାଭ କରିଥିଲା। ନାରାୟଣମୋହନ ଦେ, ପଦ୍ମଚରଣ ପଟ୍ଟନାୟକ, ମଦନ ମୋହନ ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ମହାପାତ୍ର,

Digitized by PPRACHIN, SOA

କୁଂତଳାକୁମାରୀ ସାବତ, ଚଂଦ୍ରଶେଖର ମିଶ୍ର, ବୈକୁଣ୍ଠନାଥ ପଟ୍ଟନାୟକ ଓ ନବକିଶୋର ଦାସ ପ୍ରଭୃତିଙ୍କ ରଚନାରେ ମଧୁସୂଦନଙ୍କ ଅଧ୍ୟାତ୍ମପ୍ରେରଣା ଓ ରବୀଂଦ୍ରନାଥଙ୍କ ରୋମାଣ୍ଟିକ ରହସ୍ୟାତ୍ମକତାର ବଳବତ୍ତର ପ୍ରଭାବ ପରିଲକ୍ଷିତ ।

ତେବେ ଗୋପବଂଧୁ ଦାଶଙ୍କ ଖଣ୍ଡକବିତା ଓ ଲକ୍ଷ୍ମୀକାଂତ ଏବଂ କୁଂତଳାଙ୍କ ଗୀତିକବିତା-ଗୁଡ଼ିକରେ ହିଁ ମଧୁସୂଦନୀୟ ଆଧ୍ୟାତ୍ମିକତା ଓ ରବୀଂଦ୍ର ରହସ୍ୟାତ୍ମକତା କିଞ୍ଚିତ୍ କାବ୍ୟିକ ସଫଳତା ଲାଭକରିଛି । ସବୁଜ କବି ବୈକୁଣ୍ଠନାଥଙ୍କ ଆଦ୍ୟରଚନାର ଉନ୍ମେଷ ପ୍ରେରଣା ଏବଂ ସମସାମୟିକ କବି ମାନସିଂଙ୍କର ପରଣତକାଳର କବିତାମାନଂକରେ ବିକଶିତ କାବ୍ୟଚେତନା ରୂପେ ଏ ରବୀଂଦ୍ରାନୁସାରୀ ରହସ୍ୟବାଦର ସ୍ପଷ୍ଟ ପଦପାତ ଅଂକିତ । ସ୍ୱୀକାର କରିବାକୁ ହେବ, ମଧୁସୂଦନ ଓ ରବୀଂଦ୍ର ସାହିତ୍ୟ ଅର୍ଦ୍ଧଶତାବ୍ଦୀଧିର ଓଡ଼ିଆ କାବ୍ୟପ୍ରୟାସର ପୃଷ୍ଠଭୂମିରେ ମୂଳପ୍ରେରଣା ରୂପେ ବିଦ୍ୟମାନଥିଲେ ବି ଅନୁକରଣ, ଅନୁସରଣ ବା ସମନ୍ୱୟ ମାର୍ଗରେ ଓଡ଼ିଆ କବିତାରେ ଯଥାର୍ଥ ରହସ୍ୟବାଦୀ ଅନୁଭବର ପ୍ରକାଶ ହେତେ ସାଫଲ୍ୟମଂଡିତ ନୁହେ, ବରଂ ରୋମାଣ୍ଟିକ ଭାବଦମ୍ମୋହ ଓ ଦୂରକଳ୍ପନା ଏବଂ ବୌଦ୍ଧିକ ବିଳାସର ପ୍ରବଣତା ସମର୍ଥକ । ବହୁ କବିତା ଦାର୍ଶନିକ ଓ ଅମୂର୍ତ୍ତ-ଚିଂତନାତ୍ମକ ଭାବ ଉଚ୍ଛଳତା ପ୍ରକାଶ କରିଥିଲେ ବି ରହସ୍ୟବାଦୀ କାବ୍ୟୋପଲବ୍ଧିରେ ସେତେ ପ୍ରକାଶ-ବିଶ୍ୱସ୍ତ ମନେ ହୁଅନ୍ତି ନାହିଁ । ସ୍ପଷ୍ଟ କହିଲେ ମଧୁସୂଦନଙ୍କ ଗଭୀର ଅଧ୍ୟାତ୍ମ ଉପଲବ୍ଧି ଓ ରଂବୀନ୍ଦ୍ର କବିତାର ଆତଂରିକ ବିଶ୍ୱପ୍ରୀତି ଓ ପ୍ରେମଗଭୀରତା କିଂବା ପାଶ୍ଚାତ୍ୟ ରହସ୍ୟବାଦୀ ଚେତନାର ଅମୂର୍ତ୍ତ ସତ୍ୟର ମୂର୍ତ୍ତ କାବ୍ୟୋପଲବ୍ଧି ଏ ଯୁଗୀୟ କବିତାରେ ଦୁଷ୍ପ୍ରାପ୍ୟ । ଏ କାବ୍ୟଆୟାସ ବହୁସ୍ଥଳରେ କୃତ୍ରିମ ଆରୋପିତ ବୋଲି ବାରିହୋଇପଡ଼େ । କେବଳ ଗୋପବଂଧୁ କୁନ୍ତଳା ଲକ୍ଷ୍ମୀକାଂତ ଚନ୍ଦ୍ରଶେଖର ବୈକୁଣ୍ଠନାଥ ଓ ମାନସିଂ ପ୍ରଭୃତି ସ୍ୱଳ୍ପକବି ଆନ୍ତରିକ ଉପଲବ୍ଧି, ଭାବବିଶ୍ୱସ୍ତତା ଓ ପ୍ରକାଶମାର୍ଗରେ କିଛିଟା ସାର୍ଥକସ୍ୱରସଂଗତ ଲାଭକରିଥିବା ମନେହୁଏ ।

ଉତ୍ତର ପର୍ବର ଓଡ଼ିଆକବିତା ପ୍ରତ୍ୟକ୍ଷବାଦ, ସାମ୍ୟବାଦୀ ସମାଜଚେତନା ଏବଂ ମନୋ-ବୈଜ୍ଞାନିକ ନିରୀକ୍ଷା ଭିତରେ ସେତେ ରହସ୍ୟୋନ୍ମୁଖତା ପ୍ରକାଶ କରିନାହିଁ । ତେବେ ଉତ୍ତର ଷାଠିଏର କବିଦୃଷ୍ଟି ବ୍ୟକ୍ତିଜୀବନର ସମାଜସହ, ପରିପାର୍ଶ୍ୱ ସହ ସଂପୃକ୍ତିକୁ ଚିନ୍ତିଦେଖିବା ଭିତରେ ଅନ୍ତର୍ଚେତନାର ଅତଳତାରେ ମଧ୍ୟ ଭାବ-ସଂପୃକ୍ତିର ରହସ୍ୟ ସନ୍ଧାନ କରିବାକୁ ଦୁଃସାହସ କରିଛି । ଆଜିର ଉଦ୍ଭଟ, ମନୋବୈଜ୍ଞାନିକ ଓ ସ୍ଥିତିବାଦୀ କାବ୍ୟଦର୍ଶନରେ ସାହିତ୍ୟର ଜୀବନସହ ସଂପୃକ୍ତିଗତ ଘନିଷ୍ଠ ସଂଯୋଗର ଯେ ପ୍ରତର୍କିଯ୍ୟ ଅଙ୍ଗୀକୃତ, ରହସ୍ୟ ବୌଦ୍ଧିକ ରହସ୍ୟବାଦୀ ଉପାଦାନ (**intellectual mysticism**) ତହିଁରେ ଦୁଷ୍ପ୍ରାପ୍ୟ ନୁହେଁ । ପରିଶେଷରେ ବକ୍ତବ୍ୟ, ମନସ୍ତତ୍ତ୍ୱ ବିବର୍ତ୍ତନବାଦକୁ ସ୍ୱୀକାର କରୁଥିଲେ ଏ ଯୁଗୀୟ କାବ୍ୟଚେତନା ରହସ୍ୟବାଦ ଅଭିମୁଖୀ ହେବା ବରଂ ସ୍ୱାଭାବିକ ବୋଲି ବିଚାରିବାକୁ ହେବ । ମହାକାଳ ସହ କାଳଧର୍ମର ସ୍ୱାଭାବିକ ଗତିପର୍ଯ୍ୟାୟକୁ ମିଳାଇ ଦେଖିଲେ, ଆଜିର ଭାବରାଜ୍ୟ, ଯେତିକି ବିପୁଳ, ବିଶାଳ, ସେତିକି ଅତଳଗଭୀର, ଯେତିକି ଊର୍ଦ୍ଧ୍ୱବିସ୍ତାରୀ, ସେତିକି ନିମ୍ନପ୍ରସାରୀ । ଆଜିର କବିଦୃଷ୍ଟି ପ୍ରବଳ ବହିଃସଚେତନ ଏବଂ ତାର କାବ୍ୟ ସୃଷ୍ଟି ଗଭୀର ଅନ୍ତର୍ମଗ୍ନ । ଏ ବ୍ୟାପକତା ଓ ଅନ୍ତର୍ମୁଖୀନତାର ସମନ୍ୱୟ ବିଧାନପାଇଁ ଯୁଗଚେତନାର ସାମଗ୍ରିକ ପ୍ରୟାସ ସଂପୃକ୍ତ ପରିଲକ୍ଷିତ । ଯେଉଁ ବ୍ୟକ୍ତି ନିଜର ରହସ୍ୟକୁ ଆତ୍ମଚେତନାର ସମୁଦ୍ରଭିତରୁ ଯେତିକି ସନ୍ଧାନ କରିପାରିଛି, ବିଶ୍ୱରହସ୍ୟ ତା ସମ୍ମୁଖରେ ସେତିକି ପରିମାଣରେ ଉନ୍ମୋଚିତ ହୋଇଛି । ଏହାହିଁ ଆଜିର ବିଜ୍ଞାନ ଦୃଷ୍ଟି

Digitized by PPRACHIN, SOA

ପ୍ରତ୍ୟକ୍ଷତାବାଦ, ଆତ୍ମତତ୍ତ୍ୱ । ଧର୍ମତତ୍ତ୍ୱ ବା ଈଶ୍ୱରତତ୍ତ୍ୱ ଏଠାରେ ଅପରିହାର୍ଯ୍ୟ ନୁହନ୍ତି । ଅସ୍ତିତ୍ୱବାଦ ହିଁ ଏହାର ଯୁଗୀୟ ଉଦ୍‌ବୋଧନ । ଅସ୍ତିତ୍ୱବାଦୀ କିମ୍ବା ରହସ୍ୟବାଦୀ ତର୍କଣା ହୋଇନପାରେ, ମାତ୍ର ଅସ୍ତିତ୍ୱର ସାର୍ବକାଳିକ ଯେଉଁ ରହସ୍ୟ ବିସ୍ମୟରେ ମନ ଚକିତ, ତାହା ହିଁ ମିଷ୍ଟିକ୍‌ର ପ୍ରଥମ ଆତ୍ମସଚେତନତା, ମନୁଷ୍ୟେତର ସୃଷ୍ଟିଠାରୁ ମନୁଷ୍ୟର ମୂଳ ବିଭେଦଟି ତାର ଏଇ ଆତ୍ମସଚେତନତା । ସତ୍ତାର ଆତ୍ମନିରୀକ୍ଷଣ ଯୁଗେଯୁଗେ ମନଶ୍ଚେତନାରେ ଯେଉଁ କୌତୂହଳ ବିସ୍ମୟ ଜାଗ୍ରତ କରିଛି, ତାହା ହିଁ ତାର କଳ୍ପନାର କ୍ରମାଭିବ୍ୟକ୍ତିର ଧାରାକୁ ନିର୍ଦ୍ଦିଷ୍ଟ କରିଛି । ନିଜକୁ କେନ୍ଦ୍ରକରି ଚେତନାର ଆବର୍ତ୍ତନ କ୍ରମଶଃ ଅସୀମବଳୟ ଅଭିମୁଖୀ ହୋଇଛି । ଚେତନାର ଏ ବିଶ୍ୱବିବର୍ତ୍ତନାତ୍ମକ ବିଶ୍ୱ ବିସ୍ତୃତି ହିଁ ମିଷ୍ଟିକ୍‌ର ବିଶ୍ୱାବଧାରଣ । ମାନବଚେତନାର ଅନୁଭବସାମର୍ଥ୍ୟ ଯେତେ ଅଧିକାଧିକ ବିଶ୍ୱତୋମୁଖୀ ହୋଇଚାଲିଛି, ତାର ପ୍ରକାଶରୂପ ମଧ୍ୟ ସେତିକି ବିଶ୍ୱଜାଗତିକ ହୋଇଉଠୁଛି । ପ୍ରାଚ୍ୟ ପାଶ୍ଚାତ୍ୟ, ଉଭୟ ଚିନ୍ତାଧାରାରେ ଏ ଅନିବାର୍ଯ୍ୟ ବିଶ୍ୱବୋଧ (Cosmic consciousness)[୧] ସ୍ୱୀକୃତ । ଏ ଉତ୍‌କ୍ରାନ୍ତ ଚେତନାଦିଗନ୍ତ ଓ ଅନ୍ତଃଗୂଢ଼ ଦୃଷ୍ଟିପାତ ଆଜିର ସାହିତ୍ୟାଦର୍ଶରେ ପ୍ରତିଫଳିତ । ସେହି ସାହିତ୍ୟ ପ୍ରକୃତ ରହସ୍ୟାତ୍ମକ କାବ୍ୟସିଦ୍ଧିର ଅଧିକାରୀ ହେବ, ଯାହା କବିର 'ଦ୍ରଷ୍ଟା' ଓ 'ସ୍ରଷ୍ଟା' ସତ୍ତାର ମିଳିତ ଉଦ୍‌ବୋଧନ ଭିତରୁ ସଂପ୍ରେରିତ ହୋଇଥିବ । ଆଜିର ବିଶ୍ୱସାହିତ୍ୟ ପୁଣି ପ୍ରାଂତୀୟ ସାହିତ୍ୟରେ ଏ ସମ୍ଭାବନାର ଦିଗନ୍ତ ଉଜ୍ଜ୍ୱଳ ।

---

1. The mankind of tomorrow is emerging from the mists of future.... The evolution which led to the present human consciousness is continuing its onward march and will ultimately result in terrestorial transformation.

Teichard de Chardin- quoted in A-jesuit/ Yogi by Dr. Karan Singh- The Statesman Dt=19-10-81

Digitized by PPRACHIN, SOA

## ପ୍ରଥମ ପରିଚ୍ଛେଦ (ପ୍ରଥମ ଭାଗ)

# ରହସ୍ୟବାଦ

### ସଂଜ୍ଞା ଓ ପରିଭାଷା

ସାଂପ୍ରତିକ ଭାରତୀୟ ଭାଷା ସାହିତ୍ୟରେ ରହସ୍ୟବାଦ ଇଂରାଜୀ mysticism ଶବ୍ଦର ପାରିଭାଷିକ ରୂପେ ପ୍ରଯୁକ୍ତ । ମର୍ମବାଦ, ଅତୀନ୍ଦ୍ରିୟବାଦ ନାମରେ ମଧ୍ୟ ଏହାର ବ୍ୟବହାର ରହିଛି । ସଂସ୍କୃତରେ 'ରହଃ'ର ଧାତ୍ୱାର୍ଥ- ଗୋପନୀୟତା ଓ ନିର୍ଜନତା [୧] । mysticism ଶବ୍ଦ ମୂଳ ଲାଟିନ୍‌ରେ mystica ଅର୍ଥାତ୍ ଦୁର୍ବୋଧ୍ୟ (mystery) ଅର୍ଥରେ theologica ର (ଧର୍ମତତ୍ତ୍ୱ) ବିଶେଷଣ ରୂପେ ପ୍ରଯୁକ୍ତ ହୋଇ ଗୋପନୀୟ ଓ ନିଗୂଢ଼ ଧର୍ମ ସମ୍ବନ୍ଧୀୟ ବ୍ୟାପାରକୁ ବୁଝାଉଥିଲା । ଜେମସ୍ ହାଷ୍ଟିଂସ୍ ପ୍ରଚଳିତ ଅର୍ଥରେ ମିଷ୍ଟିସିଜମ୍‌କୁ ଜର୍ମାନ ଭାଷାର mystik (ସ୍ରଷ୍ଟା ଓ ସୃଷ୍ଟି ସଂଯୋଗ ରହସ୍ୟ) ଏବଂ mystrizymus (ଆଧିଦୈବିକ ଶକ୍ତିର ବିଚାର)ରୁ ଉଦ୍‌ଭୂତ ବୋଲି ବିଚାର କରିଛନ୍ତି । ରହସ୍ୟବାଦର ସପକ୍ଷ ଓ ବିପକ୍ଷରେ ସବୁ ଦେଶରେ, ସବୁକାଳରେ ବହୁବିଧ ମତବାଦ ଓ ଆଲୋଚନା ପ୍ରସଙ୍ଗରେ ସର୍ବଦା ଏକ ସାଧାରଣ ବିଚାର ଅସ୍ପଷ୍ଟ ରୂପ, mist ବା କୁହୁଡ଼ି ଝାପସା ଦୃଷ୍ଟି ଭେଳକିବାଜି ଓ ମନ୍ତ୍ର ତନ୍ତ୍ର ପ୍ରଭାବିତ ଅଦ୍ଭୁତ କ୍ରିୟାକଳାପର ଧାରଣାସହ ରହସ୍ୟ ନାମକରଣକୁ ସ୍ୱାଭାବିକ ଭାବେ ସଂପୃକ୍ତ ଦେଖି ଆସିଛି । 'ଅସ୍ପଷ୍ଟତା ଏହାର ବୈଶିଷ୍ଟ୍ୟ' [୨] ଆଲୋଚକଙ୍କର ଏପରି ମତ ଭିତରେ ରହସ୍ୟବାଦର ଦୁର୍ବୋଧ୍ୟତା ହିଁ ସ୍ୱୀକୃତ । ମାନବଚେତନାର ଏକ ନିଗୂଢ଼ ଉପଲବ୍‌ଧି ରୂପେ ରହସ୍ୟବାଦ ଅନିର୍ବଚନୀୟ, ଅବୋଧ୍ୟ, ଅଦ୍ଭୁତ, ବିଚିତ୍ର ଇତ୍ୟାଦି ଶବ୍ଦମାନଙ୍କ ସହ ସଂପୃକ୍ତ ହୋଇ ତାର ସଂଜ୍ଞାତୀତତାର ବୈଶିଷ୍ଟ୍ୟକୁ ସୂଚିତ କରିଥାଏ ମାତ୍ର ।

ରହସ୍ୟବାଦ ମାନବଚିନ୍ତନ ପ୍ରକ୍ରିୟାର ଏକ ସଜ୍ଞାନ ସଚେତନ ଅଭିବ୍ୟକ୍ତି ରୂପେ ସଂଜ୍ଞାୟିତ ହେବାର ଅପେକ୍ଷା ରଖେ । ଅଥଚ ରହସ୍ୟାନୁଭୂତି ଲାଭ କରିଥିବା ବ୍ୟକ୍ତି ଓ ରହସ୍ୟବାଦର ସମୀକ୍ଷକ ଉଭୟ ଏହାକୁ ନିର୍ଦ୍ଦିଷ୍ଟ ସଂଜ୍ଞା-ପରିସର ବହିର୍ଭୂତ ବୋଲି ସମସ୍ୱରରେ ଘୋଷଣା କରିଥାନ୍ତି । ରହସ୍ୟ ବାଦର ସ୍ୱରୂପ ଓ ଆଭିମୁଖ୍ୟ ସମ୍ପର୍କରେ କାଞ୍ଚିତ ଆଲୋକପାତ ଦ୍ୱାରା ଏହାର କାରଣ ଅନୁସନ୍ଧାନ କରାଯାଇପାରେ । ବହିଃବିଶ୍ୱ ଓ ଆତ୍ମଜଗତର ତାଦାତ୍ମ୍ୟ ଅନୁଭୂତ ସମ୍ପର୍କିତ ଅନ୍ତଃଚେତନାର ସୂକ୍ଷ୍ମତତ୍ତ୍ୱ ରୂପେ ରହସ୍ୟବାଦର ଅବତାରଣା । ରହସ୍ୟବାଦୀ ମତରେ ରହସ୍ୟବାଦର ମୂଳତମ ସିଦ୍ଧାନ୍ତଟି ହେଉଛି ଅନୁଭବୀ ଓ ଅନୁଭବର ଅଦ୍ୱୈତ ସ୍ଥିତି, ଅର୍ଥାତ୍ ଏହି ଚେତନାର ସେହି ଉପଲବ୍‌ଧି ଯେଉଁଥିରେ ଅନୁଭବ ଓ ଅନୁଭବୀ ଏକ ଏବଂ ଅଭିନ୍ନ ହୋଇଯାନ୍ତି । ଏହିପରି ବର୍ଣ୍ଣନାକାରୀ ଓ ବର୍ଣ୍ଣନୀୟର ଦ୍ୱିବିଧ

---

୧ କ) ରହଃ—ନିର୍ଜନ ପର୍ଯ୍ୟାୟଭୁକ୍ତ (ବିବିକ୍ତ, ଛନ୍ନନିଃଶଲାକ) ମେଦିନୀକୋଷ

ଖ) ତତ୍ତ୍ୱ ଇତି ଗୁହ୍ୟ, (ରହସି ଭବ ରହସ୍ୟମ୍) (ଅମରକୋଷ) ~~ମେଦିନୀ କୋଷ~~,–ଗୋପନୀୟ, ମର୍ମ, ଗୂଢ଼, ନିର୍ଜନ, ପରିହାସ

2. "Its virtue lies in its vagueness" W. T. Stace 'Mysticism and Philosophy' Preface P—5

Digitized by PPRACHIN, SOA

ଭୂମିକା ଲୋପହୋଇଯିବାରୁ ଏ ଚେତନା ସଙ୍କୀର୍ଣ୍ଣ ପରିସର ବହିର୍ଭୂତ ହୋଇଯାଏ, କାରଣ ସଜ୍ଞାକରଣ ଏକ ଯୁକ୍ତିବାଦୀ (Logical) ବିଶ୍ଳେଷଣ ଯାହା ବିଶେଷ୍ୟ ଓ ବିଶେଷଣୀୟର ବାଧ୍ୟକ ଓ ବିଧେୟ ରୂପ (subject and predicate) ଦ୍ୱୈତ ଭୂମିକାକୁ ଅପରିହାର୍ଯ୍ୟ ରୂପେ ଆବଶ୍ୟକ କରେ ।[୩] ତଥାପି, ରହସ୍ୟବାଦ ସମ୍ପର୍କରେ ବିଭିନ୍ନ ମତ ଓ ସମୀକ୍ଷାକୁ ଅନୁଧ୍ୟାନକରି ଏତାଦୃଶ ନାମକରଣ ସମ୍ପର୍କରେ କିଛି ଆଲୋକପାତ କରାଯାଇପାରେ । ଗ୍ରାହ୍ୟ ସାଧାରଣ ମତରେ ରହସ୍ୟଚେତନା ଚରମସତ୍ୟର ପ୍ରତ୍ୟକ୍ଷାନୁଭୂତ,[୪] ଏକ ଅଲୌକିକ ଚେତନାସହ ବ୍ୟକ୍ତିଚେତନାର ସନ୍ନିବାନୁଭୂତ ।[୫] ଏ ବ୍ୟାଖ୍ୟା ସବୁ ରହସ୍ୟବାଦୀଙ୍କ ଦ୍ୱାରା ସ୍ୱୀକୃତ ।

ଏକ ଲୋକୋତ୍ତର ଚେତନାର ସ୍ୱୀକୃତ ରହସ୍ୟବାଦର ପ୍ରାଣଧର୍ମ । ରହସ୍ୟ ତତ୍ତ୍ୱ ଏହି ବିଶିଷ୍ଟ 'ଅପରୋକ୍ଷ ଅନୁଭୂତ' (immediate experience) ଉପରେ ପ୍ରତିଷ୍ଠିତ ତତ୍ତ୍ୱବିଶେଷ ଯାହା ଏକ 'ବୋଧାତୀତ'କୁ ସ୍ୱତଃସିଦ୍ଧ (postulate) ରୂପେ ଗ୍ରହଣ କରିଥାଏ । ବୁଦ୍ଧିର ଅଗୋଚର ଅଥଚ ସ୍ୱୟଂପ୍ରତୀତ- ଏହି ବିରୋଧାତ୍ମକ ବୈଶିଷ୍ଟ୍ୟ ହେତୁ ହିଁ ଏ ରହସ୍ୟ ମାନବର ବିସ୍ମୟ ଜିଜ୍ଞାସାର କାରଣ ହୋଇପଡ଼େ ।

ଏହି ସ୍ୱତଃସିଦ୍ଧ ହିଁ ଅଧିତତ୍ତ୍ୱ (metaphysics) ର ଆଦିକାରଣ ବା ମୂଳସତ୍ତା ରୂପେ ଗୃହୀତ ।[୬] ଏହି ଉତ୍ସରୁ ପ୍ରାୟୋଗିକ ବିଜ୍ଞାନ ବହିର୍ମୁଖୀ ଯାତ୍ରା କରେ । ଅଧିବିଦ୍ୟା (ontology) ଧର୍ମତତ୍ତ୍ୱ (theology) ଓ ନ୍ୟାୟ ମୀମାଂସା (logic) ଅମୂର୍ତ୍ତ ଦାର୍ଶନିକ ଅନୁସନ୍ଧାନରେ ଏହି ବିନ୍ଦୁରେ କେନ୍ଦ୍ରୀଭୂତ ହୋଇଥାନ୍ତି । ଆବେଗ, ଅନୁଭବର ଚରଂତନ ଭାବସଂବେଗମାନ ଏହି ସନ୍ଧିରୁ ପ୍ରାଣମୟ ଉତ୍ସାର ଲାଭ କରନ୍ତି । ଇଂଦ୍ରିୟ, ମନ, ହୃଦୟ ଓ ଇନ୍ଦ୍ରିୟ ପ୍ରଭୃତି ସକଳ ଭାବଚିଂତା ଓ କର୍ମ ଜୀବନର ସ୍ୱବିରୋଧୀ ଅଭିକ୍ଷେପମାନ ଏକ ବୃହତ୍ ମିଳନ ଭୂମିରେ ଏଇଠାରେ ଅପୂର୍ବ ସମନ୍ୱୟ ଲାଭକରନ୍ତି । ମାନବ ଜୀବନଧାରାର ବିଭିନ୍ନ ସ୍ୱରୂପ ଓ ଶାଖାସହ ରହସ୍ୟବାଦର ଏହି ସମ୍ପର୍କ ବହୁ ସ୍ୱତଂତ୍ର ଓ ବିସ୍ତୃତ ଆଲୋଚନା ପରିସରର ଅପେକ୍ଷା ରଖେ ।

---

3. To describe something implies that it stands over against one as an object to be looked at and examined and have its characteristics noted. But this condition is not fulfilled in the exposition of the one, since the experience is merged in it,

Plotinus qt. 'Mysticism and Philosophy' p 104. W. T. Stace.

4. "It is a phase of thought or rather perhaps of a feeling which appears in connection with the endeavour of the human mind to grasp the divine essence or the ultimate reality of things and enjoy the blessedness of actual communication with the Highest.

Encyclopaedica Britanika Vol—16

5. "Broadly speaking– I understand it to be the expression of the innate–tendency of human spirit towards complete harmony with the transcendental order.

"Mysticism : Preface XIV" by Evelyn Underhill.

6. What the world– which truly knows nothing calls mysticism is the science of ultimates– the science of self–evident Reality— which cannot be reasoned about because it is the object of pure reason or perception."

Coventry Palmore. The Rod, and the Root and the Flower" qt-'Mysticism p'-2

Digitized by PPRACHIN, SOA

ରହସ୍ୟବାଦର ଆଲୋଚନା ପ୍ରସଙ୍ଗରେ ସ୍ୱୟଂପ୍ରତୀତ (Selfevident) ଶବ୍ଦଟି ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଅନୁଭୂତରେ 'ଏକ ବଶିଷ୍ଟ ଚେତନାର ଉପଲବ୍ଧି ପ୍ରସଙ୍ଗ ଜଡିତ-ଯାହା ମାନବର ସକଳ ଅଭିଜ୍ଞାନ ପ୍ରଚେଷ୍ଟା ବହିର୍ଭୂତ ହୋଇମଧ୍ୟ 'ଅସ୍ତିତ୍ୱବୋଧରେ ସତ୍ ରୂପେ ସ୍ୱୀକୃତ; ଓ ଅନୁଭୂତରେ ସେଇ ସ୍ୱରୂପର ଉଦ୍‌ଘାଟନ— ଦେଶକାଳ ନିର୍ବିଶେଷରେ ରହସ୍ୟବାଦୀ ବର୍ଗ୍ଗରେ ଏହି ବଳିଷ୍ଠ ପ୍ରକାଶ ଏହାକୁ କେବଳ ଭାବାତ୍ମକ ଅମୂର୍ତ୍ତ କଳ୍ପନା, ମିଥ୍ୟାଭାଷଣ, ବା ଅସ୍ୱାଭାବିକ ଚିତ୍ତବିକ୍ଷେପଜନିତ ବିକୃତ ବୋଲି ପରିଗଣ୍ୟ ହେବାକୁ ଦିଏ ନାହିଁ । କାରଣ ଏ ସ୍ୱୟଂ ପ୍ରତୀତ ଓ ଚେତନାକୁ ରହସ୍ୟବାଦୀ ଭାବବୁଦ୍ଧି ସଞ୍ଜାତଜ୍ଞାନ (intellect) ନୁହେଁ ବରଂ ପ୍ରଜ୍ଞାବୋଧ (intuition) ବୋଲି ଦାବୀକରେ । ଏହି (Self-revealed) ସ୍ୱପ୍ରକାଶ ଅନୁଭୂତ, ଅନୁଚ୍ଚାରିତ ଓ ସ୍ୱବିରୋଧୀ-ଚେତନାର ସମାହିତ ରୂପ ପରିପ୍ରେକ୍ଷୀରେ ରହସ୍ୟବାଦ ସହ ଦୁର୍ବୋଧତା ଅଂଗାଂଗୀ ଜଡିତ ରହିଥିବାରୁ ଯାବତୀୟ ଅବୋଧ ବର୍ଗ୍ଗରକୁ ରହସ୍ୟବାଦର ନାମ ସହ ସଂଶ୍ଳିଷ୍ଟ କରିଦେବାର ପ୍ରବଣତା ଅନେକାଂଶ ସୁଲଭ । ଏ ସମ୍ପର୍କରେ କୁହାଯାଇ ପାରେ ଯେ ଯେ କୌଣସି ଗଭୀର ତାତ୍ତ୍ୱିକ ଓ ଅମୂର୍ତ୍ତ ଚନ୍ତାଧାରା ଶବ୍ଦ ପ୍ରତୀକତ ହେଲା-ବେଳେ କିଛି ପରିମାଣରେ ଭାଷା-ଦୈନ୍ୟଗତ ଦୁର୍ବୋଧତାର ଶରବ୍ୟ ହୁଅନ୍ତି । ଏ ପ୍ରକାର ରହସ୍ୟାଭାଷ କିଂତୁ 'ରହସ୍ୟବାଦ'ର ସ୍ୱତଂତ୍ର ସଜ୍ଞା ସୀମା ପରିସର ବହିର୍ଭୂତ ।

ଅବଶ୍ୟ ରହସ୍ୟବାଦରେ 'ରହସ୍ୟାତ୍ମକତା' ଏକ ଅପରିହାର୍ଯ୍ୟ ଉପାଦାନ । ମାତ୍ର ଏହି 'ରହସ୍ୟ'ର ସ୍ୱରୂପ ରହସ୍ୟବାଦର ଭାଷା-ବିଜ୍ଞାନରେ ଭିନ୍ନାର୍ଥକ । ମାନବୀୟ-ଚିନ୍ତାର ଯାବତୀୟ ପରି-ପ୍ରକାଶର ଧାରା ମୁଖ୍ୟତଃ ଦ୍ୱିମୁଖୀ । ଗୋଟିଏ ଅନ୍ତର୍ମୁଖୀ ଓ ଅନ୍ୟଟି ବହିର୍ମୁଖୀ । ଏକ ଉତ୍ସ ଓ ଅନେକ ଉତ୍ସାର- ଏହି ମୌଳିକ ଚେତନାର ଭିତ୍ତି ଉପରେ ରହସ୍ୟବାଦୀ ଚିନ୍ତନ ଏକପକ୍ଷରେ ଉତ୍ସ ସହ ଉତ୍ସାରଣର ଅଭିନ୍ନ ଏକାତ୍ମକତାକୁ ସମର୍ଥନ କରିଛି ଓ ଅନ୍ୟ ପକ୍ଷରେ ଉଭୟଙ୍କ ମଧ୍ୟରେ ଏକ ଗଭୀର ପାର୍ଥକ୍ୟକୁ ଲକ୍ଷ୍ୟକରି ଆସିଛି । ରହସ୍ୟ-ଅନୁଭୂତରେ ଅଦ୍ୱୈତବାଦର ଅଭିନ୍ନତାବୋଧ ସହ ଦ୍ୱୈତଚେତନାର ଭିନ୍ନ-ସ୍ଥିତି ବୋଧ ମଧ୍ୟ ଯୁଗପତ ଅବ୍ୟାହତ ରୁହେ । ଏହାହିଁ ରହସ୍ୟବାଦର ସଜ୍ଞା-ଶକ୍ତି ଅତୀତ ରହସ୍ୟାତ୍ମକତାର ମୁଖ୍ୟକାରଣ ।[7] ମିଷ୍ଟିକ୍ ତାର ବିଚିତ୍ର ଅନୁଭୂତରେ ବିଲୀନ ହୋଇ ମଧ୍ୟ ବିଳୟମାନତାକୁ ଅନୁଭବ କରିପାରେ । ଅର୍ଥାତ୍ ଆତ୍ମବିଲୁପ୍ତି କାଳରେ ସେଇ ଅନୁଭବର ବିଲୁପ୍ତି ଘଟେନାହିଁ । ଏହି ଆପାତଃ ଅସମ୍ଭବ୍ୟ, ସ୍ୱବିରୋଧୀ ଅବବୋଧର ବ୍ୟାଖ୍ୟା-ପ୍ରୟାସ ହିଁ ପ୍ରଚଳିତ ଅର୍ଥରେ ରହସ୍ୟବାଦ ରୂପେ ପରିଚିତ ।

ରହସ୍ୟବାଦ ସମ୍ପର୍କରେ ବିଭିନ୍ନ କୌତୂହଳ, ଅନୁଧ୍ୟାନ ଓ ଆଲୋଚନା ପ୍ରସଙ୍ଗରେ ସ୍ୱୟଂ ରହସ୍ୟବାଦୀ (mystic) କିଂତୁ ଏକ ଭୀଷଣ ସ୍ପର୍ଶ-କାତରତା ଅନୁଭବ କରିଥାଏ । ରହସ୍ୟ-ତତ୍ତ୍ୱର ଦୁର୍ବୋଧତା ଓ ଜଟିଳତାଜନିତ ଅମୀମାଂସିତ ସ୍ୱରୂପ ସମ୍ପର୍କରେ ବ୍ୟକ୍ତିଚେତନାରେ ଯଥାର୍ଥ ଦୃଷ୍ଟି ଅପେକ୍ଷା ଭ୍ରାନ୍ତିର ଅବକାଶ ବରଂ ଅଧିକ- ଏହି ଆଶଂକା ସେ ସ୍ପର୍ଶକାତରତାର ପ୍ରମୁଖ କାରଣ । ମୌନତା ହିଁ ଯାହା ସମ୍ପର୍କରେ ଶେଷକଥା; ଯେଉଁ ପ୍ରସଙ୍ଗ ଉତ୍ଥାପନ ମାତ୍ରେ "ଗୁରୁବୋବା, ଚୈଧାକାଳା"

---

7 It eludes definition for it is a movement of the soul which unites in itself – the latent and the progressive, the static and the dynamic, passivity and activity, absorption and independence, surrender and acquisition, then holding within itself the most baffling oppositions.'—the most obstinate antimonies.

Dr. T. G. Manikar ('Mysticism in Rg veda) P–15

Digitized by PPRACHIN, SOA

ହୋଇଯାନ୍ତି । ସେହି ରହସ୍ୟତତ୍ତ୍ୱ ସମ୍ପର୍କିତ ଯେ କୌଣସି ସାଧାରଣ ଆଲୋଚନା ରହସ୍ୟବାଦୀ ମତରେ ଜନ୍ମାନ୍ଧର ଆଲୋକ ତତ୍ତ୍ୱ ନିରୂପଣ ପରି ଏକ ଅସମ୍ଭବ ଓ ହାସ୍ୟାସ୍ପଦ ନିଷ୍ଫଳ ବ୍ୟାପାର । ଇସଲାମ ଧର୍ମ ପ୍ରବର୍ତ୍ତକ ମହମ୍ମଦ ରହସ୍ୟ - ଅନୁଭୂତି ଲାଭ କରିନଥିବା ଏକ ବ୍ୟକ୍ତିର ପୁସ୍ତକ ଅଧ୍ୟୟନ ମାଧ୍ୟମରେ ରହସ୍ୟତତ୍ତ୍ୱ ନିରୂପଣ କରିବାର ପ୍ରଚେଷ୍ଟାକୁ ଏକ ପୁସ୍ତକ ଭାରବାହୀ ଗର୍ଦ୍ଦଭର ବିଦ୍ୟାର୍ଜନ ପ୍ରୟାସ ସହିତ ତୁଳନା କରିଥିଲେ, ପ୍ରବାଦ ଅଛି । ତତ୍ତ୍ୱ ହିସାବରେ ରହସ୍ୟବାଦର ଆଲୋଚନାର ଅସାରତ୍ୱ ପ୍ରତିପାଦନ ଏହି କିଂବଦନ୍ତୀର ଉଦ୍ଦେଶ୍ୟ । ମିଷ୍ଟିକର ଯୁକ୍ତିରେ ଅନୁଭୂତି-ଲବ୍ଧ ବସ୍ତୁବ୍ୟାପାର ଅନୁଭବ-ଅକ୍ଷମ ଚେତନାର ଅବବୋଧକ୍ଷମ ହୋଇ ନପାରେ । ପୁଣି ସ୍ଥାନକାଳବୋଧଖଣ୍ଡିତ ମାନବର ସୀମିତ ଭାଷା ଶାଶ୍ୱତ ଅବବୋଧର ପ୍ରକାଶ କ୍ଷମ ହୋଇପାରିବ ନାହିଁ । ମୌନତା ହିଁ ରହସ୍ୟତତ୍ତ୍ୱ ସମ୍ପର୍କରେ ଯଥାର୍ଥ ଓ ସର୍ବୋତ୍ତମ ଅଭିବ୍ୟକ୍ତି ।

ରହସ୍ୟବାଦୀ ଆଲୋଚନାର ପରିସର ମୁଖ୍ୟତଃ ଦ୍ୱିଧାବିଭକ୍ତ । ଗୋଟିଏ ରହସ୍ୟ ଅନୁଭୂତିର ତଥ୍ୟାତ୍ମକ ବର୍ଣ୍ଣନା,-ଅପରଟି ସେହି ଅନୁଭୂତିର ତତ୍ତ୍ୱାତ୍ମକ ସମୀକ୍ଷା । ଏହି ତତ୍ତ୍ୱ ସ୍ୱରୂପ ବିଶ୍ଳେଷଣାତ୍ମକ ରହସ୍ୟବାଦ (Speculative ବା Analytic) ଦର୍ଶନ ବା ତତ୍ତ୍ୱ-ମୀମାଂସାତ୍ମକ ବିଭିନ୍ନ ଶାସ୍ତ୍ରକୁ ଉଦ୍‌ବୁଦ୍ଧ କରିଛି । ସେହିପରି ରହସ୍ୟାନୁଭୂତିର ବିଭିନ୍ନ ସ୍ତର ଓ ଉପଲବ୍ଧି ସ୍ୱରୂପକୁ ଭାବାତ୍ମକ ରହସ୍ୟବାଦ (Experimental/Emotive mysticism) ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଛି । ଅନୁଭବର ବର୍ଣ୍ଣନା କେବଳ ସାଧକ ମିଷ୍ଟିକ୍‌ର ସାଧ୍ୟ ବ୍ୟାପାର ହୋଇଥିବା ବେଳେ ତତ୍ତ୍ୱାନୁଶୀଳନ କ୍ଷେତ୍ରରେ ଉଭୟ ଅନୁଭୂତିଲବ୍ଧ ସାଧକ ଓ କେବଳ ବୁଦ୍ଧିବାଦୀ ଦାର୍ଶନିକର ପ୍ରଚେଷ୍ଟା ଦେଖିବାକୁ ମିଳେ । ଜଣେ ଅନୁଭବସିଦ୍ଧ ବ୍ୟକ୍ତିର ଅନୁଭୂତିର ବର୍ଣ୍ଣନାରେ ତେଣୁ ପ୍ରାଞ୍ଜଳତା ଓ ତାତ୍ତ୍ୱିକ ବ୍ୟାଖ୍ୟାରେ ପରିଚ୍ଛନ୍ନତାର ସ୍ୱାଭାବିକ ପ୍ରକାଶ ଘଟିଥିଲାବେଳେ ଅନୁଭୂତି ରହିତ ତାତ୍ତ୍ୱିକ କେବଳ ମିଷ୍ଟିକ୍ ବର୍ଣ୍ଣିତ ଭାବ ଓ ଚିନ୍ତାର ଅନୁସରଣ/ଅନୁଧ୍ୟାନ ଦ୍ୱାରା ହିଁ ସ୍ୱମତ ଆହରଣ କରିବାକୁ ବାଧ୍ୟ ହୋଇଥାଏ । ପୁଣି ରହସ୍ୟବାଦ ସମ୍ପର୍କରେ ବ୍ୟକ୍ତିଗତ ଭାବ-ପ୍ରତିକ୍ରିୟା, ଅର୍ଥାତ୍ ସମଭାବାପନ୍ନତା କିମ୍ବା ବିଦ୍ୱେଷ ପ୍ରଭୃତି ମାନସିକ ଧାରଣା ସମୀକ୍ଷକର ମତାମତକୁ ସ୍ୱତନ୍ତ୍ର ଆଲେଖ୍ୟ ପ୍ରଦାନ କରିଥାଏ ।

ରହସ୍ୟବାଦର ଦୁର୍ବୋଧତାଜନିତ ଅନ୍ତର୍ନିହିତ ବୈଚିତ୍ର୍ୟଟି ହେତୁ ଅନୁଭବାତ୍ମକ ରହସ୍ୟ-ବାଦ ରହସ୍ୟତତ୍ତ୍ୱ ସମ୍ପର୍କରେ 'ସ୍ପଷ୍ଟ ଓ ସତ୍ୟ' ବୋଲି ଯେଉଁ ଯୁକ୍ତି ପ୍ରତିପାଦିତ କରେ, ତାହା ଅନୁଭୂତି ରହିତ ଥିବା ବିଶ୍ଳେଷକର ଦୃଷ୍ଟିରେ ଦୁର୍ବୋଧ, ଅସମ୍ଭବ ଓ ପୁନରୁକ୍ତି ପ୍ରଜଳ୍ପନ ରୂପେ ବିବେଚିତ ହୋଇପାରେ । ଏହି ଦୃଷ୍ଟିରୁ, ରହସ୍ୟବାଦୀ ଅଭିବ୍ୟକ୍ତିକୁ ଯୁକ୍ତିଯୁକ୍ତ ସଜ୍ଞାନ-ଉକ୍ତି ରୂପେ ବିଗ୍ରହଣୀୟ ବୋଲି ଗ୍ରହଣ କରିବାକୁ ତାର୍କିକ କୁଣ୍ଠାବୋଧ କରିଥାନ୍ତି । ଏହି କାରଣରୁ Oldenberg, Hillebrandt, Bloomfield ପ୍ରଭୃତି ଶୁଦ୍ଧବିଚାରବାଦୀମାନେ ରହସ୍ୟବାଦକୁ ଏକ ଲଘୁ ଭାବୋଚ୍ଛ୍ୱାସ, ବା ଦୁର୍ବଳ ମାନସିକତାର ସତ୍ୟ ଉନ୍ମୁଖ ଆବେଗ ପ୍ରବଣତା ବୋଲି କଟାକ୍ଷ କରିଛନ୍ତି । ଏହା ମୁଖ୍ୟତଃ ଧର୍ମଭାବନା ପ୍ରଣୋଦିତ ବୋଲି ଅନେକଙ୍କ ଦ୍ୱାରା ସମାଲୋଚିତ ହୋଇଛି । ଭାବୋନ୍ମାଦନା (ecstasy) କାଳରେ ସାଧକର ଅସ୍ୱାଭାବିକ ମାନସିକତା, ଅସଂଗତିପୂର୍ଣ୍ଣ କାର୍ଯ୍ୟକଳାପ ଓ ଅସମ୍ବନ୍ଧ-ଉକ୍ତି ପ୍ରାୟୋଗିକ ମନୋବିଜ୍ଞାନର କଟାକ୍ଷ ଆହରଣ କରିଛି । ତାର ଯୁକ୍ତିରେ ତଥାକଥିତ ରହସ୍ୟାନୁଭୂତି ଏକ ସ୍ୱାଭାବିକ ଅନୁଭୂତି ନୁହେଁ ବରଂ ପରିପାର୍ଶ୍ୱ ପ୍ରଭାବିତ ଏକ ବିଶେଷ-ମାନସିକତା, ବା ମନସ୍ତତ୍ତ୍ୱର ସ୍ୱତନ୍ତ୍ର

Digitized by PPRACHIN, SOA

ପରଭୂମିରେ (ASC—altered states of consciousness—ଏକ ଅସ୍ୱାଭାବିକ ଓ ପରିବର୍ତ୍ତିତ ମାନସିକ ଚେତନା ରୂପ, ଯାହା ନିର୍ଦ୍ଦିଷ୍ଟ କୌଣସି ମାନସିକ ନିୟନ୍ତ୍ରଣ (ଯୋଗାଭ୍ୟାସ) ପ୍ରକ୍ରିୟା ଦ୍ୱାରା ସାଧିତ, ଏପରିକି ମାଦକଦ୍ରବ୍ୟ ସେବନର (drug induction) ପ୍ରଭାବରୁ ମଧ୍ୟ ସୃଷ୍ଟି ହୋଇପାରେ ।[8] ଦାର୍ଶନିକ {Bertrand Russell} ରହସ୍ୟବାଦ ସମ୍ପର୍କରେ ଅତି ପ୍ରଶଂସାପୂର୍ଣ ମନ୍ତବ୍ୟମାନ ପ୍ରଦାନ କରିଥିଲେ ମଧ୍ୟ ଏହାକୁ କେବଳ ଏକ ମାନସିକ ଭାବବୃତ୍ତି (emotion) ରୂପେ ବିଚାର କରିବାକୁ ଦ୍ୱିଧା କରିନାହାନ୍ତି ।[9] ଅତଏବ ଯେଉଁ ଅନିର୍ବଚନୀୟତା ଓ ବିରୋଧାତ୍ମକତା ବୌଦ୍ଧିକ ବିଚାର ପକ୍ଷରେ ରହସ୍ୟବାଦର ଯୌକ୍ତିକତା ନିରୂପଣରେ ପ୍ରଧାନ ପ୍ରତିବନ୍ଧକ ରୂପେ ଦେଖାଦିଏ, ରହସ୍ୟବାଦୀ ସିଦ୍ଧାନ୍ତରେ ତାହାହିଁ ରହସ୍ୟବାଦର ପ୍ରଧାନ ପରିଚୟ । ରହସ୍ୟବାଦର ଇତିହାସରେ ତାର ଆତ୍ମିକ ଉପଲବ୍ଧି କେବଳ ଧର୍ମଧାରଣା, ଭକ୍ତିଭାବନା, ବା ଓ ଅସୁସ୍ଥ ମାନସିକତା-ପ୍ରସୂତ ସ୍ୱେଚ୍ଛାଗ୍ରସ୍ତ ଭାବ ବିଳାସ ବୋଲି କୌଣସି ଦୃଷ୍ଟାନ୍ତ ନାହିଁ । ବୈଦିକ ଉପଲବ୍ଧି ଠାରୁ ବିଂଶଶତାବ୍ଦୀର ଅସ୍ତିତ୍ୱବାଦୀ ବିଚାର ପର୍ଯ୍ୟନ୍ତ ଏ ରହସ୍ୟରୂପ ପ୍ରତିପାଦନ ପ୍ରଚେଷ୍ଟାରେ ବହୁ ସୁସ୍ଥ ମସ୍ତିଷ୍କର ସଚେତନ ଭୂମିକାଟି ଲକ୍ଷଣୀୟ ।[10]

ପୃଥିବୀର ବିଭିନ୍ନ ଧର୍ମଧାରା, ମତବାଦ ଓ ଦର୍ଶନ ବିଚାରରେ ରହସ୍ୟସାଧକମାନଙ୍କର ଅନୁଭୂତ ଏବଂ ଚିନ୍ତାଧାରା ଅନୁଧ୍ୟାନ କରି ସେମାନଙ୍କ ମଧ୍ୟରେ ଏକ ଅପୂର୍ବ ଭାବଗତ ସାମ୍ୟର ସନ୍ଧାନ କରାଯାଇପାରେ । ସେହି ସମସ୍ତ ରହସ୍ୟାଗ୍ରହୀ ଅଭିଭାଷଣର ମୂଳକଥାଟି ହେଲା- "ଜଗତର ସମସ୍ତ କିଛି 'ଏକ' ପରମସତ୍ୟ ବିଧୃତ । ଅନନ୍ତ ଅଖଣ୍ଡ ଆତ୍ମା ସ୍ୱରୂପରେ ବିରାଜିତ ସେଇ 'ଏକ ସତ୍ତା' ହିଁ ବିଶ୍ୱବ୍ୟାପ୍ତ ପରମଚୈତନ୍ୟ ପୁଣି ବିଶ୍ୱାତୀତ ନିର୍ଗୁଣ ନିର୍ଲିପ୍ତ ବ୍ରହ୍ମ । ଦେଶକାଳ ବିଭକ୍ତ, ନାମ-ରୂପ ଆଶ୍ରିତ ବ୍ୟକ୍ତି ଅହଂ (ego) ସେଇ ନିତ୍ୟରୂପ ଏକୋଽହମ୍ ଆତ୍ମାକୁ (self) ଚରାଚର ପରିବ୍ୟାପ୍ତ ପରମାତ୍ମା (universal Self) ସ୍ୱରୂପରେ; ପୁନଶ୍ଚ ଲୋକୋତ୍ତର ସର୍ବାତୀତ ବ୍ରହ୍ମସ୍ୱରୂପର 'ସୋଽହମ୍' ଉପଲବ୍ଧିରେ ପ୍ରାପ୍ତ ହୋଇଥାଏ । 'ତଦେକମ୍' ଓ 'ସୋଽହମ୍'ର' ଏହି ଏକକାଳୀନ ଅନୁଭବ ସମନ୍ୱୟରେ ଅନୁଭବ ପ୍ରାପ୍ତ ବ୍ୟକ୍ତି-ଚୈତନ୍ୟର ଉପଲବ୍ଧି ସ୍ୱରୂପ ବିଶ୍ଳେଷଣ ରହସ୍ୟବାଦର ମୁଖ୍ୟ ପ୍ରତିପାଦ୍ୟ ।

---

ଦ୍ରଷ୍ଟବ୍ୟ -

8. "Principles of General Psychology,
G.A Kimble/ N. Garmezy/ Edmond Zigler P-461

ପୁନଶ୍ଚ-

Nitrous Oxide (Laughing gas) & ether, when sufficiently diluted with air, stimulate mystical consciousness in an extra-ordinary degree ××× Depth beyond depth of truth seems revealed to the inhaler. P. 463

9. a) The highest eminence, as I think, that it is possible to achieve in the world of thought.
b) This emotion in the inspirer of what ever is best in man.
—Mysticism & Logic, P.3

10. In mystic states we become One with the Absolute and we became aware of our oneness. This is the everlasting and triumphant mystical tradition hardly altered by difference of clime or creed'. – Wiliam James, "Varleties of Religious Experience" P 410.

Digitized by PPRACHIN, SOA

ଏଇ ଅପାର୍ଥିବ ଚୈତନ୍ୟସତ୍ତାର ତାତ୍ତ୍ୱିକ ବିଚାର ଦର୍ଶନ ବା ଧର୍ମତନ୍ତ୍ରର ସ୍ୱତନ୍ତ୍ର ବ୍ୟାପାରଭୁକ୍ତ ହୋଇପାରେ । କିନ୍ତୁ ରହସ୍ୟସାଧନାର ପ୍ରଥମପର୍ଯ୍ୟାୟ ଆରମ୍ଭ ହୁଏ ଏଇ ଚେତନା ସମ୍ପର୍କରେ ଅସ୍ତିତ୍ୱବୋଧକ ଏକ ପ୍ରଭାସ୍ୱର ଅବବୋଧରୁ । ରହସ୍ୟୋପଲବ୍‌ଧିରେ ବ୍ୟକ୍ତିର ଅହଂସତ୍ତା ତାର ଗଭୀର ଅନ୍ତର୍ବୋଧରେ ସୂକ୍ଷ୍ମ ସ୍ପନ୍ଦନ ହୋଇ ଜାଗ୍ରତ, ପୁଣି ଆତ୍ମାନୁଭୂତିର ଅବକାଶରେ ଏକ ଚରାଚରବ୍ୟାପ୍ତ ମହାପ୍ରାଣମୟ ପରିପ୍ରକାଶ ରୂପେ ଅଭିବ୍ୟକ୍ତ । ଏଇ ମହାଚେତନା ଭୂମା ଏକାଧାରରେ ଅନ୍ତର୍ଲୀନ (immanent) ଓ ବୋଧାତୀତ (transcendent) ରୂପେ ରହସ୍ୟବାଦୀଙ୍କ ଦ୍ୱାରା ସମ୍ବୋଧିତ ।

ଯୁକ୍ତିବାଦୀ ବୌଦ୍ଧିକତା ପ୍ରାୟୋଗିକ ପ୍ରାମାଣ୍ୟସିଦ୍ଧିର ଅଭାବଦର୍ଶାଇ ଏ ଅନୁଭୂତିର ସତ୍ୟତା ଓ ରହସ୍ୟୋପଲବ୍‌ଧି ପ୍ରତିପାଦିତ 'ମହାସତ୍ତାର' ଅସ୍ତିତ୍ୱ ସମ୍ପର୍କରେ ସଂଶୟ ପ୍ରକାଶ କରିଛି । ମାତ୍ର ଶାସ୍ତ୍ର ପ୍ରମାଣସିଦ୍ଧ ହୋଇନପାରିବା ସତ୍ତ୍ୱେ ବି ରହସ୍ୟବାଦୀ ସିଦ୍ଧାନ୍ତ ଅନୁଭୂତିଲବ୍‌ଧ ସତ୍ୟଜ୍ଞାନ ରୂପେ ମନସ୍ତାତ୍ତ୍ୱିକ ଚେତନାର ଇତିହାସରେ ସ୍ୱତନ୍ତ୍ର ମର୍ଯ୍ୟାଦା ପାଇଆସିଛି । ଦେଖିବାକୁଗଲେ, ରହସ୍ୟବାଦର ଇତିହାସରେ ଅନ୍ଧବିଶ୍ୱାସ, ଧର୍ମାନ୍ଧତା ବା ଉଗ୍ରମୀ, ଅସଂଯତ ଭାବାବେଗ ଓ ତ୍ରୁଟିପୂର୍ଣ୍ଣ ମାନସିକତାପ୍ରସୂତ କୌଣସି ମତାମତ ରହସ୍ୟ ତତ୍ତ୍ୱବିଚାରର କିଛି ବି ସମର୍ଥନ ଲାଭ କରିପାରିନାହିଁ । ପକ୍ଷାନ୍ତରେ ଭାବବିହ୍ୱଳାତ୍ମକ ଭକ୍ତିଚେତନାଠାରୁ ଆରମ୍ଭକରି ନିରୀଶ୍ୱରବିଚାର ପର୍ଯ୍ୟନ୍ତ, ପୁଣି ପରମାର୍ଥିକୋର୍ମୀଙ୍କଠାରୁ ଆରମ୍ଭକରି ଜଡ଼ବିଜ୍ଞାନୀଙ୍କ ପର୍ଯ୍ୟନ୍ତ ଏତାଦୃଶ ସ୍ୱାନୁଭବମୂଳକ ଉପଲବ୍‌ଧିର (intuitional perception) ସମ୍ଭାବନା ପ୍ରସଙ୍ଗକୁ ସ୍ୱତଃ ଉତ୍ଥାପନକରି ରହସ୍ୟବାଦର ସତ୍ୟଭିତ୍ତିକ ଆତ୍ମପ୍ରତିଷ୍ଠା ସହ ପ୍ରତ୍ୟକ୍ଷ ଓ ପରୋକ୍ଷରେ ସଂଶ୍ଳିଷ୍ଟ ହୋଇଯାଇଛନ୍ତି । ନିଜକୁ ଧର୍ମ ଓ ଈଶ୍ୱରଧାରଣା ପ୍ରଭାବମୁକ୍ତ ବୋଲି ପରିଚିତ କରାଉଥିବା ଜଣେ ମନସ୍ତତ୍ତ୍ୱବିଜ୍ଞାନୀଙ୍କ ନିମ୍ନୋକ୍ତ ଉକ୍ତିଟି ଏ ସମ୍ପର୍କରେ ପ୍ରଣିଧାନ ଯୋଗ୍ୟ ।[୧୧]

ଏହି ଆଲୋଚନାର ପରିପ୍ରେକ୍ଷୀରେ ରହସ୍ୟତତ୍ତ୍ୱର ଦୁଇ ମୁଖ୍ୟ ବିଭାବକୁ ସମୀକ୍ଷା କରାଯାଇପାରେ ପ୍ରଥମରେ ଦେଖାଗଲା ଯେ ଦେଶକାଳ ପାତ୍ର ଓ ଧର୍ମ/ ବିଶ୍ୱାସ/ ଭାବନା ନିର୍ବିଶେଷରେ ବ୍ୟକ୍ତି ରହସ୍ୟାନୁଭୂତିରେ ଏକ ସମାନ ଓ ଅପରିବର୍ତ୍ତିତ ଉପାଦାନ ନିର୍ଦ୍ଦିଷ୍ଟ ଭାବେ ବିଦ୍ୟମାନ ଯାହାକି ଏଇ ଅନୁଭୂତିର ପରିସର-ଭୁକ୍ତ ହୋଇନଥିବା ବିଚାର ବିଶ୍ୱାସ ଭାବାବେଗ ବା ତତ୍‌ଜନିତ ଉଚ୍ଚାଟକାରୀଅନୁଭୂତି-ମାନଙ୍କରେ ଅନୁପସ୍ଥିତ । ଦ୍ୱିତୀୟତଃ ସାର୍ବଜନୀନ ସେହି ଉପାଦାନ ବା ସତ୍ତାର ଅସ୍ତିତ୍ୱକୁ ସବୁ ରହସ୍ୟବାଦୀଙ୍କର ସ୍ୱୀକୃତି ଦାନର ବୈଧତା ପ୍ରସଙ୍ଗ ଏଇ ଶେଷୋକ୍ତ କାରଣଟି ଧର୍ମଦର୍ଶନ ବିଜ୍ଞାନ ପ୍ରଭୃତି ମୌଳିକ ସତ୍ତା-ସମ୍ବନ୍ଧୀ ଯାବତୀୟ ଅନ୍ୱେଷାରେ ଚିରନ୍ତନ ବିଚାରଣ ଭୂମି । Metaphysics ର ଅଙ୍କେକ୍ଷିତ ଆଦିସତ୍ତା ରହସ୍ୟୋପଲବ୍‌ଧିର ସେଇ ଅଲୌକିକ ସତ୍ତା ବୋଲି ରହସ୍ୟବାଦୀର ନିର୍ଦ୍ଧାରଣ ପ୍ରସଙ୍ଗରୁ ହିଁ ରହସ୍ୟ ତତ୍ତ୍ୱର ଜଗତକୁ ଦର୍ଶନ ଓ ବିଜ୍ଞାନର ଅନୁପ୍ରବେଶ ଘଟିଥାଏ ।

---

11 I am prepared to admit that some experience occur among people of different races and social traditions and that they have occurred at all periods of history....I think it more likely than not that in religious and mystical experience men come into contact with some Reality or some aspect of Reality which they donot come into contact with in any other way."

C. D. Board –Religion, Philosophy and Psychical Research P–172/173

Digitized by PPRACHIN, SOA

ଅନେକ ସମୟରେ ତୀବ୍ର ଆବେଗ, ସମ୍ମୋହନୀ ବିଦ୍ୟା, ମାଦକଦ୍ରବ୍ୟ ସେବନ, ପୁଣି ବ୍ୟକ୍ତିର ଭାବବିହ୍ୱଳତା ପ୍ରଭୃତ ବାହ୍ୟପ୍ରଭାବ ଉପରେ ଦୁର୍ବଳ ମାନସିକତା ସମ୍ପନ୍ନ ବ୍ୟକ୍ତି ଅସ୍ୱାଭାବିକ ଅନୁଭୂତି ଲାଭ କରିଥିବାର ଦେଖାଯାଏ । ଉନ୍ମାଦନା, ବିହ୍ୱଳତା, ଶାରୀରିକ କଂପନ ଇତ୍ୟାଦି ଲକ୍ଷଣ-ପ୍ରକଟିତ ଏହି ଅବସ୍ଥାରେ ସେ ଆପଣାକୁ ଏକ ପ୍ରସାରିତ, ଉଲ୍ଲସିତ ଚେତନାବଳୟରେ ଆବିଷ୍କାର କରେ । ଅବଶ୍ୟ ଦିବ୍ୟାନୁଭବ କାଳରେ ବ୍ୟକ୍ତିଠାରେ ସ୍ୱାଭାବିକ କେତେକ ଅନୁସଙ୍ଗୀ-ଭାବବିକ୍ରିୟା ଦେଖା ଦେଇଥାନ୍ତି । କିଂତୁ ପ୍ରକୃତ ରହସ୍ୟାନୁଭୂତି ସମସ୍ତ ବାହ୍ୟ-କ୍ରିୟା ଓ ନିସର୍ଗନିୟମାଧୀନ କାର୍ଯ୍ୟକାରଣ ସମ୍ପର୍କବିମୁକ୍ତ ଚେତନା ରୂପେ ହିଁ ଉପଲବ୍ଧ ହୋଇଥାଏ ।

କେତେକ କ୍ଷେତ୍ରରେ ଶୁଦ୍ଧ ଜୀବନଚର୍ଯ୍ୟା, ଆତ୍ମନିୟଂତ୍ରଣ ଓ ନିଷ୍ଠାଧ୍ୟାସନ ଦ୍ୱାରା ବ୍ୟକ୍ତିର ଚେତନାର କ୍ରମ-ଉଦ୍‌ବର୍ତ୍ତନରେ ଏକ ବିଶିଷ୍ଟ ଅବସ୍ଥାର ସୃଷ୍ଟି ହୁଏ, ଯେଉଁଥିରେ ଆତ୍ମୋପଲବ୍ଧି ସ୍ୱତଃ ସଂଘଟିତ ହୋଇଥାଏ । ମାତ୍ର ସେଇ ଦୃଷ୍ଟିରୁ ଏଗୁଡ଼ିକୁ ସେଇ ଅନୁଭୂତିର ନିୟାମକ ରୂପେ ଗ୍ରହଣ କରାଯାଇନପାରେ । ରହସ୍ୟୋପଲବ୍ଧି ଆପାତତଃ ଏକ କାର୍ଯ୍ୟକାରଣ ନିରପେକ୍ଷ ଅହେତୁକ ଓ ଆକସ୍ମିକ ସଂଘଟନ ଯାହା କୌଣସି ଆନୁଷଂଗିକ ଅନୁଚର୍ଯ୍ୟାର ପରିଣତି ରୂପେ ଲବ୍ଧ ହୋଇନଥାଏ । ପୂର୍ବୋକ୍ତ ସଚେତନ ପ୍ରୟାସଗୁଡ଼ିକ ଅବଶ୍ୟ ଅନୁକୂଳ କ୍ଷେତ୍ର ପ୍ରସ୍ତୁତିର ସହାୟତା କରିଥାଆନ୍ତି । ଏ ସକଳ ଶାସ୍ତ୍ରଜ୍ଞାନ ଓ ବ୍ୟାବହାରିକ କ୍ରିୟାଯୋଗମୂଳକ ପ୍ରୟାସକୁ ଜେନ୍ ରହସ୍ୟବାଦ ଯଥାର୍ଥରେ 'ଚନ୍ଦ୍ରପ୍ରତି ଅଂଗୁଳି ସଙ୍କେତ' ବୋଲି ବିଚାର କରିଛି । ଅଂଗୁଳି ଦ୍ୱାରା ଚନ୍ଦ୍ରକୁ ନିର୍ଦ୍ଦେଶ କରାଯାଇପାରେ, ମାତ୍ର କେବଳ ଅଂଗୁଳି ଉପରେ ଦୃଷ୍ଟି ନିବଦ୍ଧ ଥିଲେ ଚଂଦ୍ର ଦର୍ଶନ ସମ୍ଭବ ହୁଏନାହିଁ । ପୁଣି ଚଂଦ୍ର ଦର୍ଶନ ପରେ ଅଂଗୁଳି ନିର୍ଦ୍ଦେଶର ପ୍ରୟୋଜନ ମଧ୍ୟ ରହେନାହିଁ । ରହସ୍ୟବାଦୀ ତର୍କଣାରେ ଉପେୟ ଉପାୟ-ହେତୁକ ନୁହେ, ଯଦିଓ ଉପାୟ ଉପେୟ-ଅଭିମୁଖୀ ହେବାରେ ଅସୁବିଧା କିଛି ନାହିଁ ।

## ସ୍ୱରୂପ ବିଚାର :

ଦିବ୍ୟୋପଲବ୍ଧିର ଉତ୍ସାରଣ ଆଭିମୁଖ୍ୟ ବିଶ୍ଳେଷଣ କରି ରହସ୍ୟଚେତନାର ସ୍ୱରୂପକୁ ସାଧାରଣତଃ ଅନ୍ତର୍ମୁଖୀ (introvertive) ଓ ବହିର୍ମୁଖୀ (extrovertive), ଏପରି ଦୁଇଭାଗରେ ବିଭକ୍ତ କରିବାର ପ୍ରବଣତା ଆଲୋଚକମାନଂକ ମଧ୍ୟରେ ଦେଖା ଦେଇଥାଏ । ସଂକ୍ଷେପରେ କହିଲେ ବହିର୍ମୁଖୀ ଉପଲବ୍ଧିରେ ବ୍ୟକ୍ତି ଚେତନା ଇଂଦ୍ରିୟାନୁଭବ ମାଧ୍ୟମରେ ବହିର୍ବିଶ୍ୱ ପ୍ରତି ସଂଚାଳିତ ହୋଇଥାଏ । ଅନ୍ତର୍ମୁଖୀ ରହସ୍ୟାନୁଭବ ଅନ୍ତଃନିହିତରେ ଆତ୍ମାବିଷ୍କାର କରିଥାଏ । ଉଭୟଙ୍କର ଚରମ ପ୍ରାପ୍ତି ଏକ ପରମ ଅସ୍ତିତ୍ୱ ଘଟିତ । ବହିର୍ମୁଖୀ ରହସ୍ୟଚେତନା ଇଂଦ୍ରିୟଗ୍ରାହ୍ୟ ଜଗତକୁ ଏକ ଅଖଣ୍ଡ ଐକ୍ୟ-ବିନିଃସୃତ ବୋଲି ଉପଲବ୍ଧି କଲାବେଳେ ଅନ୍ତର୍ମୁଖୀ ଅଭିଜ୍ଞାନ ସମସ୍ତ ପ୍ରତୀତବୋଧ ବହିର୍ଭୂତ ଏକ ଓ ଅଦ୍ୱିତୀୟ ଆତ୍ମସ୍ୱରୂପକୁ କେବଳ ମାତ୍ର ହିଁ ପ୍ରତିଷ୍ଠିତ ଦେଖେ ।

## ବହିର୍ମୁଖୀ ରହସ୍ୟବାଦ :

"ଯିଏ ସର୍ବଭୂତରେ ବିରାଜମାନ ଅଂତରାତ୍ମା ସର୍ବନିୟଂତା ଏକ ସ୍ୱରୂପ, ସେହି ଏକ ଆପଣାକୁ ବହୁଧା ବିଭକ୍ତ କରିଛନ୍ତି । ସେଇ ଏକ ହିଁ ସକଳ ଅନିତ୍ୟର ନିତ୍ୟ, ଅଚେତନର ଚେତନ,

Digitized by PPRACHIN, SOA

ସେଇ ଏକ ଆତ୍ମସ୍ଥ, ଏହିପରି ଦେଖିପାରୁଥିବା ବ୍ୟକ୍ତିମାନେ ହିଁ ଶାଶ୍ୱତ ସୁଖର ଅଧିକାରୀ, ଅନ୍ୟମାନେ ନୁହନ୍ତି ।" ୧୨

ଲୋକ ଲୋକାନ୍ତରସ୍ଥିତ ଜଡ଼ ଓ ଚେତନର ଯାବତୀୟ ଲୀଳା ଏବଂ ବିକାଶକୁ ଧାରଣକରି ଅନନ୍ତକାଳ ଓ ଦେଶ ବ୍ୟାପୀ ଅଖଣ୍ଡ ବିଶ୍ୱପ୍ରବାହ ନିୟତ ବିଦ୍ୟମାନ । ବ୍ୟକ୍ତିସତ୍ତା ସ୍ଥାନକାଳଖଣ୍ଡିତ ନାମରୂପର ଅହଂଚେତନା ମୁକ୍ତହେଲେ ଆପଣାର ଅନ୍ତର୍ସତ୍ତାକୁ ଦେଇ ବିଶ୍ୱଂଭର ବ୍ୟାପ୍ତ ସତ୍ତା ସହ ଅନ୍ୱିତ, ଅଭିନ୍ନ ଓ ଏକ ବୋଲି ଉପଲବ୍ଧିକରେ । ପରିଦୃଶ୍ୟମାନ ଜଗତର ରୂପଭିନ୍ନତା ସହ ଅଂତରିନ୍ଦ୍ରିୟ ଏଇ ତାଦାତ୍ମ୍ୟ ଉପଲବ୍ଧିରେ ହିଁ ବହିର୍ମୁଖୀ ରହସ୍ୟବାଦର ପ୍ରାଣପ୍ରତିଷ୍ଠା ।

ଋଷି ଉଦ୍ଦାଳକ ଆରୁଣିପୁତ୍ର ଶ୍ୱେତକେତୁଙ୍କୁ ବ୍ରହ୍ମତତ୍ତ୍ୱ ଶିକ୍ଷା ଦେବାକୁ ଯାଇ ଏକ ନ୍ୟଗ୍ରୋଧ-ବୀଜ ଭଗ୍ନକରି ତାର ସୂକ୍ଷ୍ମତମ ଅଂଶଟି ଦେଖାଇ କହିଥିଲେ ' ସ ଯ ଏଷୋଽଣି ମୈତଦାତ୍ମ୍ୟମିଦଂସର୍ବଂ ତତ୍ ସତ୍ୟଂ ସ ଆତ୍ମା ତତ୍ତ୍ୱମସି । ୧୩

ଏଠାରେ ନିର୍ବିଶେଷ ଓ ବୀଜସତ୍ତା ରୂପଭିନ୍ନତା ସତ୍ତ୍ୱେ ଆତ୍ମସତ୍ୟରେ ଏକ ରୂପେ ପ୍ରତିଷ୍ଠିତ । ଏହିପରି ସକଳ ବୈଭିନ୍ନ୍ୟ ଓ ବିସୃଷ୍ଟିର ତାଦାତ୍ମ୍ୟ ପ୍ରତିଷ୍ଠାରେ ମିଷ୍ଟିକ ବିଶ୍ୱବ୍ରହ୍ମାଣ୍ଡକୁ ବହୁତ୍ୱ ଓ ଭିନ୍ନତା ସତ୍ତ୍ୱେ ସେମାନଂକ ଅନ୍ତର୍ସତ୍ତାରେ (essence) ଏକ ଓ ଅଭିନ୍ନ ବୋଲି ଉପଲବ୍ଧିକରେ ଏବଂ ଆପଣାର ଅନ୍ତଃସଂଯୋଗକୁ ଦେଇ ଐକ୍ୟ ସୂତ୍ରରେ ମଧ୍ୟ ପ୍ରତ୍ୟକ୍ଷ କରେ । ବ୍ୟକ୍ତିର କ୍ଷୁଦ୍ର ଅହଂ ଏହିପରି ପରମ ଏକ ମଧ୍ୟରେ ଇଦଂ ସର୍ବଂକୁ ଲିଭ୍‌କରି ନିଜେ ଇଦଂ ସର୍ବଂ ହୋଇଯାଏ । "ସତ୍ ଏବ ଇଦମଗ୍ରେ ଆସୀତ୍ । ଏକମେବାଦ୍ୱିତୀୟମ୍" ।୧୪ ବେଦାଂତର ଏ ବାଣୀ ସହିତ ତ୍ରୟୋଦଶ ଶତାବ୍ଦୀର ଜର୍ମାନ ରହସ୍ୟ-ସାଧକ Meister Eckhart'ଙ୍କ ନିମ୍ନୋକ୍ତ ବାଣୀର ଅଦ୍ଭୁତ ଅର୍ଥ ଓ ଭାବସାମ୍ୟ ପରିଲକ୍ଷିତ ହୁଏ । ୧୫

ଐକ୍ୟ ଚେତନା (unity) ବହିର୍ମୁଖୀ ରହସ୍ୟବାଦର ପ୍ରଧାନ ଗୁଣଗତ ବୈଶିଷ୍ଟ୍ୟ ରୂପେ ସ୍ୱୀକୃତ ହୋଇପାରେ । 'ସର୍ବଂଖଲ୍ୱିଦଂ ବ୍ରହ୍ମମ୍' ଅନୁବୋଧରେ ସମଗ୍ର ବିଶ୍ୱକୁ ଏକ ଅଖଣ୍ଡ-ପ୍ରବାହ କରି ଦେଖିଲା ବେଳେ ଏହାର ସ୍ଥାନ ଓ କାଳର ଅବ୍ୟାହତ ବ୍ୟାପକବୋଧ ମଧ୍ୟ ଜାଗ୍ରତ ହୁଏ । ଅନବଚ୍ଛିନ୍ନ-ତାର ପରିପୂର୍ଣ ଅବବୋଧ ଭିତରେ ସ୍ୱାଭାବିକ ଭାବେ ଏକ ଅପରିସୀମ ବ୍ୟାପ୍ତିର ବିପୁଳ ବିମୁକ୍ତି ଓ ବିମଳ

---

୧୨ "ଏକୋବଶୀ ସର୍ବଭୂତାଂତ ରାତ୍ମା / ଏକ ରୂପଂ ବହୁଧା ଯଃ କରୋତି/ ତମାତ୍ମସ୍ଥଂ ଯେହନୁପଶ୍ୟଂତି ଧୀରା / ତେଷାଂ ସୁଖଂ ଶାଶ୍ୱତଂ ନେତରେଷାମ / ନିତ୍ୟୋହ ନିତ୍ୟାନାଂ ଚେତନଶ୍ଚେତନାମ୍ / ଏକୋ ବହୂନାଂ ଯୋ ବିଦଧାତିକାମାନ / ତମାତ୍ମସ୍ଥଂ ଯେହନୁପଶ୍ୟଂତି ଧୀରା / ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥" (କଠୋପୋନିଷଦ୍ ୨ ୨/୧୨-୧୩)

୧୩ କଠୋପୋନିଷଦ୍ ୬/୧୨/୩

୧୪ ଛାନ୍ଦୋଗ୍ୟ ଉପନିଷଦ୍ ୬/୨/୧

15. "All that a man has here externally in multiplicity is intrinsically one"
ଦ୍ର: Rudolf Otto 'Mysticism : East and West', P. 61

Digitized by PPRACHIN, SOA

ପ୍ରଶାନ୍ତ ବ୍ୟକ୍ତି ହୃଦୟରେ ଜାଗ୍ରତ ହୁଏ । ସେ ଈଶ୍ୱରଙ୍କ ଅସୀମ ଆବିର୍ଭାବକୁ ବିରାଟ ପୃଥ୍ୱୀ କୀଟାନୁକୀଟ ମଧ୍ୟରେ ବି ଆବିଷ୍କାର କରେ ।[16] ବିଶ୍ୱସୃଷ୍ଟିର ଯାବତୀୟ ବିଭିନ୍ନତା ଓ ଖଣ୍ଡରୂପ ଏକ ଅଖଣ୍ଡ ଅନ୍ତର୍ନିହିତ ପ୍ରାଣସତ୍ତା ଗ୍ରଥିତ ସ୍ୱରୂପରେ ଉଦ୍‌ଭାସିତ ହୋଇ ଉଠେ । ଏହି ଉପଲବ୍ଧି ପରେ ମିଷ୍ଟିକର ସମଗ୍ର ଦୃଷ୍ଟିଭଙ୍ଗୀ ଅଥବା ଦୃଷ୍ଟିଜଗତ ଯେପରି ଓଲଟପାଲଟ ହୋଇଯାଏ । ନିୟତ ପ୍ରବାହିତ ଜୀବନ-ଧାରାରେ ସମାଚ୍ଛାଦିତ ସୃଷ୍ଟି ଅମରତ୍ୱ ଓ ଅନୁରାଗର ଦୃଶ୍ୟଶାଳାକୁ ଯେପରି ରହସ୍ୟବାଦୀ ସମ୍ମୁଖରେ ଉନ୍ମୁକ୍ତ କରିଦିଏ । ମିଷ୍ଟିକ୍‌ର ନିଜ ଭାଷାରେ ସେ ସବୁକିଛିର ଅଭ୍ୟନ୍ତରକୁ ଦେଖିପାରେ ।[17] ପ୍ରତି ସତ୍ତାରେ ଅସ୍ତିତ୍ୱର ମହିମା ପରିଚୟ ଲାଭକରେ । ଏହା ପରେ ତା ନିକଟରେ ଆଉ କିଛି ଅଗ୍ରଜ୍ଞେୟ ରହିପାରେ ନାହିଁ, ଅପାଂକ୍ତେୟ ରୂପେ ବର୍ଜିତ ହୋଇପାରେନାହିଁ । ସର୍ବଭୂତରେ ତା ପାଇଁ ଈଶ୍ୱରୀୟ ଉଦ୍‌ଜୀବନ ଓ ଉଦ୍‌ଘାଟନର ପ୍ରତିଶ୍ରୁତି ମିଳିଯାଏ ।

ବିଖ୍ୟାତ ରହସ୍ୟବାଦୀ ଆଲୋଚକ ରିଚାର୍ଡ ବକ୍ ଏହିପରି ଏକ ଅନୁଭୂତି ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି—"ଅକସ୍ମାତ୍, ଅତର୍କିତ ଭାବରେ ମୁଁ ନିଜକୁ ଏକ ବହ୍ନିମୟ ଉଜ୍ଜ୍ୱଳ ମେଘାବରଣରେ ଆବୃତ ଦେଖିଲି।ମୁହୂର୍ତ୍ତକ ପାଇଁ କେଉଁଠି ଅଗ୍ନ୍ୟୁତ୍ପାତ ହେଉଥିବାର ଭାବିଲି । ପରମୁହୂର୍ତ୍ତରେ ସେହି ଅଗ୍ନିକୁ ମୁଁ ମୋରି ଭିତରେ ଆବିଷ୍କାର କଲି । ଠିକ୍ ତାପରେ ପରେ ମୋ ଭିତରେ ଏକ ବିପୁଳ ଆନନ୍ଦର ଉଲ୍ଲାସ ଜାଗ୍ରତ ହେଲା । ଏକ ଅପୂର୍ବ ଆଲୋକ-ଦୀପ୍ତି ଲାଭ କରି ମୁଁ ଏ ବିଶ୍ୱକୁ ଆଉ ଜଡ଼ମୟ ଦେଖିପାରିଲି ନାହିଁ । ସବୁକିଛି ଏକ ପ୍ରାଣମୟ ଚେତନାବିଧୃତ ଦେଖିଲି । ମୋ ଭିତରେ ଏକ ଶାଶ୍ୱତ ଜୀବନ ସମ୍ପର୍କରେ ମୁଁ ସଚେତନ ହୋଇ ଉଠିଲି । ସମଗ୍ର ଜଗତର ମୂଳ କାରଣ ରୂପେ ମହାନ୍ ପ୍ରେମକୁ ବିରାଜମାନ ଦେଖିଲି ।[18]

କବି ରବୀନ୍ଦ୍ରନାଥଙ୍କ ଜୀବନସ୍ମୃତିରେ ଏହିପରି ଏକ ଅନୁଭୂତିର ପ୍ରସଙ୍ଗ ବର୍ଣ୍ଣିତ ।[19] "ହଠାତ୍ ମୁହୂର୍ତ୍ତକ ଭିତରେ ମୋ ଆଖି ଆଗରୁ ଯେପରି ଗୋଟାଏ ପର୍ଦ୍ଦା ଘୁଂଚିଗଲା । ଦେଖିଲି, ଗୋଟାଏ ଅପରୂପ ମହିମାରେ ବିଶ୍ୱ ସଂସାର ସମାଚ୍ଛନ୍ନ; ଆନନ୍ଦ ଓ ସୌନ୍ଦର୍ଯ୍ୟରେ ସର୍ବତ୍ର ତାହା ତରଙ୍ଗାୟିତ । ମୋ ହୃଦୟର ସ୍ତରେ ସ୍ତରେ ବିଷାଦର ଯେଉଁ ଗୋଟାଏ ଆଚ୍ଛାଦନ ଥିଲା, ତାହା ନିମିଷରେ ଭେଦକରି

---

16. "In this light my spirit saw through all things and into all creatures and I recognised God in grass and plants."
Jocob Boehma Qt.—'Mysticism and Philosophy'—P-69. by—W T. Stace

17. "He sees into the very heart of things, into their essence." H. Brinton—'The Mystic Will—Qt.—'Mysticism add Philosophy' P–69.

18. "All at once, without warning of anykind, I found myself wrapped in a flame coloured cloud. For an instant I thought of fire some where......in the next I know that the fire was in myself. Directly afterwards there came upon me a sense of exaltation, of immense joyousness accompanied or immediately followed by an intellectual illumination impossible to describe. I saw that the universe in composed of a living presence. I became conscious in myself of eternal life. I saw that the foundation of the world is love. "R. Bucke–'Cosmic Consciousness'–P–2.

୧୯. ଜୀବନସ୍ମୃତି (ଜୀବଂଧମାଳା)—୨ୟ ଖଣ୍ଡ (ଅନୁବାଦ : ଗୌରୀ କୁମାର ବ୍ରହ୍ମା)

Digitized by PPRACHIN, SOA

ଯେମିତି ମୋର ସମସ୍ତ ଭିତରଟାରେ ବିଶ୍ୱର ଆଲୋକ ଧ୍ୱନିପୂର୍ଣ ବିଚ୍ଛୁରିତ ହୋଇ ବହିଗଲା । ଏପରି ହେଲା ଯେ ଯେତେବେଳେ ମୋ ପାଖରେ ଅପ୍ରିୟ କିଛି ରହିଲା ନାହିଁ । ଧରଣୀ ବ୍ୟାପୀ ସମଗ୍ର ମାନବ ଦେହ ସଂଚଳନକୁ, ସୁବୃହତ୍ ଭାବେ ଗୋଟିଏ କରି ଦେଖି ମୁଁ ଏକ ମହାସୌନ୍ଦର୍ଯ୍ୟନୃତ୍ୟର ଆଭାସ ପାଇଥିଲି....ବସ୍ତୁତଃ ଯାହା ଅନୁଭବ କରିଥିଲି ତାହା ପ୍ରକାଶ କରିବାର ଶକ୍ତି ମୋର ନଥିଲା । × × ଏଇ ଅନ୍ତହୀନ ଆନନ୍ଦର ଅବସ୍ଥାରେ ଚାରିଦିନ ରହିଥିଲି । ଏଇ ଚାରିଦିନ ଜଗତକୁ ସତ୍ୟ ଭାବରେ ଦେଖିଛି ।"

ରବୀନ୍ଦ୍ରନାଥଙ୍କ ବର୍ଣନାରେ ଅବଶ୍ୟ ସ୍ୱାଭାବିକ ଭାବେ କାବ୍ୟିକ ମନୋହାରିତାର ରସମୟ ରୂପାୟନ ରହିଛି । ମାତ୍ର ବିଷୟଟି କବିତ୍ୱ ନୁହେଁ । ଆଲୋଚକ **W. T. Stace** ତାଙ୍କର ଜଣେ ପରିଚିତ ଆମେରିକୀୟ ବ୍ୟକ୍ତିଙ୍କର ଅନୁରୂପ ଅନୁଭୂତିର ବର୍ଣନା ଉଦ୍ଧାର କରିଛନ୍ତି-ଯାହାର ଓଡ଼ିଆରେ ଭାବାନୁବାଦ ଏହି ପ୍ରକାରର—'ପ୍ରତ୍ୟେକ ବସ୍ତୁକୁ ଅସ୍ତିତ୍ୱମୟ, ଅନ୍ତର୍ସତ୍ୟମୟ, ବୈଶିଷ୍ଟ୍ୟ ପୂର୍ଣ କରି ଦେଖିଲି । ସବୁ କିଛି ଅତ୍ୟନ୍ତ ପ୍ରାଣମୟ ମନେହେଲା । କ୍ଷୁଦ୍ର ବିରାଡ଼ିଟି, ମଧୁପଟି, ଭଗ୍ନଶିଳାଖଂଡ଼— ସମସ୍ତଂକ ଭିତରେ ସେଇ ପ୍ରାଣ ଏକ ଓ ଅଭିନ୍ନ ଥିଲା । କେବଳ ସେମାନଂକର ରୂପଗତ ପ୍ରକାଶ ଭିନ୍ନ ଥିଲା । ସକଳବସ୍ତୁ ଅନ୍ତର୍ଜଗତରୁ ଉତ୍ସାରିତ 'ଏକ' ଆଲୋକରେ ଦୀପ୍ତିମଂତ ମନେ ହେଉଥିଲେ । ସମୟର ଗତିପ୍ରବାହ ଅଦୃଶ୍ୟ ହୋଇଯାଇଥିଲା ।' ପ୍ରାଣସ୍ପନ୍ଦନରେ ସବୁକିଛି ବ୍ୟଗ୍ରଚଂଚଳ ଥିଲା ।'[20]

ଲକ୍ଷ୍ୟ କରିବାର କଥା ରହସ୍ୟବାଦୀ ମାନେ ଏହି 'ଦିବ୍ୟପ୍ରାଣମୟତା' ପ୍ରସଂଗରେ ଦୃଷ୍ଟ, ଶ୍ରୁତ, ଅନୁଭୂତ, ପ୍ରତ୍ୟକ୍ଷସାକ୍ଷାତ ପ୍ରଭୃତି ସ୍ପଷ୍ଟ ସଂସର୍ଗବୋଧକ ଶବ୍ଦମାନଙ୍କର ଅଭିଧାଗତ ପ୍ରୟୋଗ ହିଁ କରେ । କେଉଁଠାରେ କଳ୍ପନା, ଭାବନା ବା ସଂଭାବନାମୂଳକ ଅସ୍ପଷ୍ଟତାର ଉକ୍ତି କରେନାହିଁ । ଏହିଠାରେ 'ଋଷି' ଶବ୍ଦର ତାତ୍ପର୍ଯବିଚାର ସ୍ୱତଃ ମନକୁ ଆସେ । ବୈଦିକ ପ୍ରୟୋଗରେ 'ଋଷି'—'ସାକ୍ଷାତ୍-କୃତଧର୍ମନଃ', ଅର୍ଥାତ୍ ଦ୍ରଷ୍ଟା ଅର୍ଥରେ ପ୍ରଯୁକ୍ତ । ଋଷୀୟ ଦିବ୍ୟଦୃଷ୍ଟି ରହସ୍ୟାନୁଭୂତିର ସେଇ ସ୍ୱତଃଦୃଷ୍ଟି ଯାହା ଶାଶ୍ୱତକୁ ସୀମାଠାରେ ଅଧିରୂଢ଼ ଦେଖେ ।

ସାଧାରଣ ଦୃଷ୍ଟିରେ ଅସାଧାରଣକୁ ଦେଖିପାରିବାର ଏଇ ରହସ୍ୟବୈଚିତ୍ର୍ୟ ମିଷ୍ଟିକ୍ ପାଇଁ କାହିଁ କିଛି ଅସଂଭବ ମନେ ହୁଏନାହିଁ । 'ସ୍ୱୟଂଭୂ ପରିଭୂ' ଶାଶ୍ୱତକୁ ଆତ୍ମବୀକ୍ଷଣ ଓ ବିଶ୍ୱଦର୍ଶନ ମାର୍ଗରେ ଏକକାଳୀନ ଅବବୋଧ କରିବା ଆତ୍ମାର ସହଜ ଓ ଅଂତର୍ଗତ ପ୍ରଜ୍ଞା-ଶକ୍ତି ସାଧିତ ବୋଲି ସେ ବିଶ୍ୱାସ କରେ । ଏହି ସ୍ୱତଃପ୍ରଜ୍ଞା-ଲବ୍ଧ ଚେତନାରେ ହିଁ ବ୍ୟକ୍ତିର ବିଂଦୁରେ ସିଂଧୁଦର୍ଶନ, ସାମାନ୍ୟ ଧୂଳିକଣାରେ ଚରାଚର ବିଶ୍ୱପ୍ରତୀତିର ଉଦ୍‌ଘୋଷଣା; ମିଷ୍ଟିକ୍‌ର ସ୍ପଷ୍ଟ ଓ ପରିଷ୍କାର ଉଚ୍ଚାରଣ—"ଅପରୂପକେ ଦେଖେ ଗେଲେମ୍ ଦୁଟି ନୟନ ମେଲେ ।" [21] ଏହି ଦର୍ଶନରେ ରୂପଗତ ତାରତମ୍ୟବୋଧ ବିଲୁପ୍ତ ହୁଏନାହିଁ ।

---

20. "Suddenly every object in my field of vision took on a curious and intense kind of existence of its own, that is, everything appeared have an "inside"—to exist as existed having inwardness, a kind of individual life .. Everything was urgent with life.... All things seemed to glow with a light that came from within them."

W. T. Stace–Mysticism and Philosophy, P-71/72.

୨୧ ରବୀଂଦ୍ରନାଥ (ଯାବାରଦିନ)—ସଂଚୟିତା ପୃ ୫୨୧

Digitized by PPRACHIN, SOA

ସବୁ ରୂପ ଏକ ମୂଳରୂପର ବହୁ ରୂପାଂତର ବୋଲି ହିଁ ମନେ ହୁଅନ୍ତି । ପୁଣି ଏ ପ୍ରକାଶଗତ ରୂପଭିନ୍ନତାର ଅନୁଭବ ସହ ମୂଳ ଅଖଣ୍ଡ ଏକ ସ୍ୱରୂପର ଅବବୋଧଟି ମଧ୍ୟ ଏକକାଳୀନ ଅବ୍ୟାହତ ରହିଥାଏ । ଅନେକ ରୂପମୟ ପ୍ରକାଶ ସହ ଆନ୍ତରିକ ସତ୍ତ୍ୱର ଏଇ ଯେ ନିରବଚ୍ଛିନ୍ନ ସଯୋଗଟି ପ୍ରତିଷ୍ଠିତ ହୁଏ ସେଇ ପରିପ୍ରେକ୍ଷୀରେ ନାମରୂପପରିଚୟଭିକ୍ତି ସବୁ କିଛିର ଅର୍ଥ ମଧ୍ୟ ବଦଳିଯାଏ । ପ୍ରତ୍ୟେକ ବସ୍ତୁ ଏକ ବିଶେଷ ଉଦ୍ଦେଶ୍ୟମୂଳକ ସାର୍ଥକତାରେ ମିଷ୍ଟିକ୍ ପାଇଁ ନୂତନ ଅର୍ଥରିଂ ସଦେଶ ବହନ କରିଆଣେ । ବାହ୍ୟ ପରିଚୟ ଅନ୍ତର୍ସତ୍ୟର ନିର୍ବାଧ ବ୍ୟାପ୍ତିରେ ସୀମାରୂପକୁ ଅତିକ୍ରମ କରିଯାଏ । ଏହାହିଁ ସତ୍ତ୍ୱର ରୂପାତିକ୍ରମଣ ବା ସ୍ୱକାଂତ (self-transcendence) । ଏହି ଅବସ୍ଥାରେ ହିଁ ବ୍ୟକ୍ତିର ଭାଷା ତାର ପ୍ରଚଳିତ ଅର୍ଥ ତାତ୍ପର୍ଯ୍ୟ ହରାଇ ନିଗୂଢ଼ ବ୍ୟଂଜନାତ୍ମକ ଅନିର୍ବଚନୀୟତାକୁ ପ୍ରାପ୍ତ ହୁଏ । ହୁଇଟ୍‌ମାନ୍ ସ୍ୱଗତୋକ୍ତି କରନ୍ତି, "ମୁଁ ଆଉ ମୃତ୍ୟୁ କିଂବା ପ୍ରେମକୁ କୌଣସି ଗୃହାଂଗନରେ ଉଚ୍ଚାରଣ କରିପାରିବି ନାହିଁ ।" [22]

ଏଇ ଅର୍ଥସଙ୍କ୍ରମଣଜନିତ ରୂପାଂତରିତା (transmutation) ରହସ୍ୟବାଦର ଏକ ବିଶିଷ୍ଟ ବିଭବ ଯାହା ସହ ଅନିର୍ବଚନୀୟ ଭବଟି ଅଂଗାଂଗୀ ଜଡିତ । ରହସ୍ୟବାଦୀ ଯେତେ ସ୍ପଷ୍ଟ ଓ ପ୍ରାଂଜଳ ହେବାକୁ ଚେଷ୍ଟା ନା କାହିଁକି, ତାର ଅନୁଭୂତିର ବର୍ଣ୍ଣନା ପ୍ରସଂଗରେ କିଛି ଦୁର୍ବୋଧତା, ଅସ୍ପଷ୍ଟତା ଓ ବିରୋଧାତ୍ମକତା ନିଶ୍ଚୟ ରହିଥାଏ । ଏ କହି ନ ପାରିବାର ଦୁର୍ବଳତାକୁ ମିଷ୍ଟିକ ଭାଷାଗତ ଦୈନ୍ୟ ବୋଲି ବ୍ୟାଖ୍ୟାକରେ । ତାର ମତରେ, ପ୍ରକୃତରେ ତାର ଅନୁଭବରେ କିଛି ବି ଅସ୍ପଷ୍ଟତା ବା ଦୁର୍ବୋଧତା ନାହିଁ । କେବଳ ତାର ଉପସ୍ଥାପନାରେ ଅର୍ଥାତ୍ ବର୍ଣ୍ଣନା ଓ ବ୍ୟାଖ୍ୟାକରଣରେ ଦୁର୍ବୋଧତା ପ୍ରବେଶ କରେ । ଏହାର କାରଣ ଅପାର୍ଥିବ ଓ ଅସାଧାରଣକୁ ବୁଝାଇ ପାରିବା ଭଳି ସାମର୍ଥ୍ୟ ଶବ୍ଦ-ଶକ୍ତି ସୀମିତ ଭାଷାର ନଥାଏ । ତେଣୁ ସାର୍ବିକକୁ (universal) ବ୍ୟକ୍ତିକ (individual) ରୂପଚେତନା ଦେବାର ଚେଷ୍ଟାରେ କିଂଭୂତ କରି ପରିବେଷଣ କରିଥାଏ । ରହସ୍ୟ-ଉପଲବ୍‌ଧିରେ ମୂଳସତ୍ତ୍ୱର ଅଖଣ୍ଡ ରୂପାନୁଭୂତି ସହ ପ୍ରକାଶଗତ ଖଣ୍ଡିତ ରୂପବୋଧ ଯେ ଅବ୍ୟାହତ ରହିଥାଏ, ଅପାତତଃ ଦୃଷ୍ଟି ଓ ସମ୍ୟକ୍ ଦୃଷ୍ଟିର ସେହି ବିଚିତ୍ର କ୍ରିୟାତ୍ମକତା ହିଁ ଏ ଭାଷାଗତ ଅସାମର୍ଥ୍ୟର କାରଣ ।

ରୂପବୈଚିତ୍ର୍ୟ ଓ ଭିନ୍ନତା ସତ୍ତ୍ୱେ ମୂଳସତ୍ତ୍ୱରେ ଏକ-ରୂପତାର ଅବବୋଧ ରହସ୍ୟବାଦୀ ବିରୋଧାଭାସର ପ୍ରଧାନ ଉପାଦାନ ରୂପେ ଉଭୟ ପ୍ରାଚ୍ୟପାଶ୍ଚାତ୍ୟ ସ୍ୱୀକୃତି ଲାଭକରିଛି । ଅଚିଂତ୍ୟ ଭେଦାଭେଦ, Distinct and identical perception (Otto), ବା Paradox of Identity in Difference (Stace) ପ୍ରଭୃତି ମତସାମଂଜସ୍ୟ ଭିତରେ ରହସ୍ୟବାଦର ଅପର ବିରୋଧାଭାସଟି ଅନୈକ୍ୟ ଭିତରେ ଐକ୍ୟ ବା unity in diversityର ପରିଚୟଟି ମଧ୍ୟ ନିହିତ । ଅନୁଭବରେ ସବୁ ସତ୍ୟ ଐକ୍ୟାବଧୃତ ଓ ଐକ୍ୟାନୁସ୍ୟୂତ ସ୍ୱରୂପରେ ବହିର୍ମୁଖୀ ରହସ୍ୟଚେତନାକୁ ଅନ୍ତର୍ମୁଖୀନ କରାଇନେବାରେ ଯେ ବିଚିତ୍ର ଭାବବୈପରୀତ୍ୟମାନ ସୃଷ୍ଟି ହୋଇଥାଏ, ଯାବତୀୟ ରହସ୍ୟବାଦୀ ତର୍କଣା ଏଇ ବିରୋଧାଭାସ

---

22. "I swear I will never again mention love or death inside a house."—
Whitman-Leaves of Grass—P-70.
Ed—1891-92 Pub-Modern Library, Newyork.

Digitized by PPRACHIN, SOA

ଉପରେ ହିଁ ଅବଲମ୍ବିତ । କାରଣ ଏହାକୁ ରହସ୍ୟବାଦର ଦୁର୍ବଳତମ ଭିତ୍ତି ବୋଲି ଲଜିକ୍ ପୁକ୍ତ କରୁଥିଲେ ହେଁ ମିଷ୍ଟିକ୍‌ର ବିବେଚନାରେ ଏ ସ୍ୱବିରୋଧୀ ଉପାଦାନ ହିଁ ରହସ୍ୟାତ୍ମକତାର ସବଳତମ ଭିତ୍ତିଭୂମି ।

## ଅନ୍ତର୍ମୁଖୀ ରହସ୍ୟବାଦ (Introvertive Mysticism)

ବହିର୍ମୁଖୀ ରହସ୍ୟୋପଲବ୍ଧିର ବିଶ୍ୱାସ୍ଥିତ ଐକ୍ୟଚେତନାକୁ ଅନ୍ତର୍ଗତ 'ଏକ' ସ୍ୱରୂପରେ ପ୍ରତ୍ୟକ୍ଷକରିବା ପ୍ରସଙ୍ଗଟି 'ଅନ୍ତର୍ମୁଖୀ ରହସ୍ୟବାଦର, ବକ୍ତବ୍ୟ । ବହୁତ୍ୱ ଓ ବିଭିନ୍ନତ୍ୱ ବର୍ଜିତ ଏଇ ଚେତନାର ରୂପନିର୍ଣ୍ଣୟ ପ୍ରସଙ୍ଗରେ ସବୁଦେଶକାଳର ଉପସ୍ଥାପନାରେ ପୂର୍ଣ୍ଣ ମତୈକ୍ୟ ଦୃଷ୍ଟିଗୋଚର ହୁଏ । ମାତ୍ର ତାର ବ୍ୟାଖ୍ୟା ବିଶ୍ଳେଷଣ ବହୁ ମତାନୈକ୍ୟ ଓ ବାଦବିସମ୍ବାଦମୟ ବୁଦ୍ଧିବିଗ୍ରହର ତର୍କଣା-ଜାଲରେ ଛନ୍ଦି ହୋଇ ରହିଛି । ତେବେ ମୋଟ ଉପରେ ଅନ୍ତର୍ଦୃଷ୍ଟିରେ ଅନ୍ତଃସ୍ୱରୂପକୁ ନିରୀକ୍ଷଣ ଓ ଅନ୍ତର୍ମୁଖୀ ସାଧନାର ସିଦ୍ଧାନ୍ତ ପ୍ରତିପାଦନ କରୁଥିବାରୁ ଏହି ସତ୍ତ୍ୱ 'ଅନ୍ତର୍ମୁଖୀ ରହସ୍ୟବାଦ' ନାମରେ ଆଲୋଚିତ । ପ୍ରଥମରୁ କହିରଖିଥିବା ସଙ୍ଗତ ଯେ, ସ୍ଥୂଳତଃ ରହସ୍ୟବାଦୀ ବିଶ୍ବରେ ଏଇ ଅନ୍ତର୍ମୁଖୀ ଓ ବହିର୍ମୁଖୀ ଉଭୟଧାରାର ପ୍ରତିପାଦିତ ସିଦ୍ଧାନ୍ତଟି ଏକ ।[23] ପାର୍ଥକ୍ୟ କେବଳ ଉତ୍ସ ଓ ଉତ୍ସାରଣର ସମ୍ପର୍କଗତ ।

ଉଭୟ ରହସ୍ୟବାଦୀ ଉପଲବ୍ଧିର ବିଶିଷ୍ଟ ଲକ୍ଷଣଗୁଡ଼ିକୁ ବିଶ୍ଳେଷଣ କରି ସେମାନଙ୍କର ସାମ୍ୟ ଓ ବୈଷମ୍ୟଗତ ରୂପାନୁଭୂତିକୁ ବ୍ୟାଖ୍ୟା କରାଯାଇପାରେ । ବିଭିନ୍ନ ଆଲୋଚକ ବିଭିନ୍ନ ନାମଭେଦରେ ଏହି ଲକ୍ଷଣମାନଙ୍କୁ ବିଗ୍ରହ କରିଥାନ୍ତି । ଏକ ତୁଳନାତ୍ମକ ବିଗ୍ରହମାଧ୍ୟମରେ ସେମାନଙ୍କର ଉପସ୍ଥାପନା ଓ ପରସ୍ପରଠାରୁ ପୃଥକତ୍ୱର ପରିଚୟକୁ ସ୍ପଷ୍ଟ କରିଦିଆଯାଇପାରେ ।

| ବହିର୍ମୁଖୀ | ଅନ୍ତର୍ମୁଖୀ |
|---|---|
| ୧— ଐକ୍ୟବୋଧ (ସର୍ବୈକମ୍) | ୧— କେବଳ ଏକ (ତଦେକମ୍) |
| ୨— ସର୍ବସ୍ଥାନ, ସର୍ବକାଳ, ଆଦିଅନ୍ତବ୍ୟାପ୍ତ | ୨— ଦେଶକାଳବୋଧ ରହିତ |
| ୩— ବାସ୍ତବ ପ୍ରତ୍ୟକ୍ଷୀଭୂତ | ୩— ବାସ୍ତବ ପ୍ରତ୍ୟକ୍ଷାନୁଭୂତ |
| ୪— ଦିବ୍ୟତା, ଶୁଦ୍ଧତା, ପବିତ୍ରତାବୋଧ | ୪— ଦିବ୍ୟତା, ଶୁଦ୍ଧତା, ପବିତ୍ରତାବୋଧ |
| ୫— ପ୍ରଶାନ୍ତ, ପରିପୂର୍ଣ୍ଣତା, ଆନନ୍ଦ | ୫— ପ୍ରଶାନ୍ତ, ପରିପୂର୍ଣ୍ଣତା, ଆନନ୍ଦ |
| ୬— ସ୍ୱବିରୋଧାତ୍ମକତା | ୬— ସ୍ୱବିରୋଧାତ୍ମକତା |
| ୭— ଅନିର୍ବଚନୀୟତା | ୭— ଅନିର୍ବଚନୀୟତା |

---

23 "The mystics take it for granted that the 'One' which is disclosed in the Introvertive experience is identical with the One' which is disclosed in the Extrovertive experience. The outward and inward are one and identical." W.T. Stace–'Mysticism and Philosophy'– P-133

Digitized by PPRACHIN, SOA

ଲକ୍ଷ୍ୟ କରାଯାଇପାରେ, ପ୍ରଥମ ଓ ଦ୍ୱିତୀୟ ଲକ୍ଷଣରେ ଭିନ୍ନତା ଓ ଅନ୍ୟନ୍ତ ସାମ୍ୟବୋଧ ପ୍ରକଟିତ । ଦ୍ୱିତୀୟ ଲକ୍ଷଣଟି ସ୍ଥାନକାଳବୋଧ ସହ ସଂପୃକ୍ତ ଓ 'ସର୍ବମୟ' ତଥା 'ସର୍ବାତୀତ' ଭେଦରେ-ଉଭୟ ଅନୁଭୂତିର ଆନୁଷଂଗିକ ବୈଶିଷ୍ଟ୍ୟ ପ୍ରତିପାଦନ କରେ ଯାହା ପ୍ରଥମ ଲକ୍ଷଣର ମୂଳ ଐକ୍ୟଗତ ଭେଦଭାବନା ସହ ଓତଃପ୍ରୋତ ଜଡ଼ିତ ।

ବହିର୍ମୁଖୀ ରହସ୍ୟଚେତନାର ମୁଖ୍ୟ ଉପଲବ୍ଧି ଥିଲା ପ୍ରକାଶିତ ରୂପଜଗତର ଅନ୍ତର୍ବର୍ତ୍ତୀ ଐକ୍ୟସ୍ଥିତି ସହ ବ୍ୟକ୍ତିସତ୍ତାର ସଂଯୋଗାନୁଭୂତି । ଅନ୍ତର୍ମୁଖୀ ରହସ୍ୟଚେତନାରେ ଏହି ଉପଲବ୍ଧି ସର୍ବବୋଧ ନିଷ୍କାସିତ କେବଳ ଶୁଦ୍ଧ 'ଏକ' ସ୍ୱରୂପରେ ପ୍ରତିଭାତ । ଏହି 'ଏକ' ଶାଶ୍ୱତର ଅଂଶହର ହେବା ପରିବର୍ତ୍ତେ କେବଳୋଽହମ୍‌ର ବିରାଟ ଓ ଏକକ ଐଶ୍ୱର୍ଯ୍ୟରେ ଦୀପ୍ତିମନ୍ତ । ଏହି ପ୍ରତିପାଦନରେ, ଅନେକ ସାମନ୍ତଙ୍କ ମଧ୍ୟରେ ସର୍ବୋତ୍ତମ ମହାମହିମ ଏକାଂଗଚକ୍ରବର୍ତ୍ତୀ ସମ୍ରାଟ୍ ରୂପେ ନୁହେଁ, ବରଂ ଏକମାତ୍ର ଏକରାଟ୍, ସ୍ୱୟଂସୃଷ୍ଟ, ସ୍ୱୟଂପ୍ରଭ ଓ ସ୍ୱୟଂକ୍ରିୟ ଶାଶ୍ୱତ ଆତ୍ମା ନିତ୍ୟୋଜ୍ଜ୍ୱଳ ଉଦ୍‌ଭାସନରେ ଆତ୍ମଂଭରି ହୋଇ ବିରାଜିତ ରହିଥାନ୍ତି । ଅନ୍ତର୍ମୁଖୀ ଅବବୋଧର ଏହି ସର୍ବବୋଧ ନିଷ୍କାସିତ 'ଶୂନ୍ୟ' ଚେତନାଟି କିନ୍ତୁ ବହିର୍ମୁଖୀ ଉପଲବ୍ଧିରେ ବିଶ୍ୱାସ୍ଥିତ ପରିପୂର୍ଣ୍ଣ ମନେ ହୋଇଥାଏ । ମାୟା, ଅଳୀକ ବା କେବଳ ଇନ୍ଦ୍ରିୟ ପ୍ରତୀତ ରୂପେ କିଛି ଆଉ ନାସ୍ତିବୋଧରେ ପରିତ୍ୟକ୍ତ ରହେନାହିଁ । କ୍ଷୁଦ୍ରାତିକ୍ଷୁଦ୍ର କୀଟଠାରୁ ବିରାଟ ଜୀବପର୍ଯ୍ୟନ୍ତ, ସାମାନ୍ୟ ସାମାନ୍ୟ ବୃତ୍ତିପ୍ରବୃତ୍ତି ଓ କ୍ରିୟାବିକ୍ରିୟାଠାରୁ ଉଚ୍ଚତମ ଭାବାନୁଭୂତି ପର୍ଯ୍ୟନ୍ତ ସବୁ ସେହି ଐକ୍ୟପ୍ରସାରୀ ବିଶ୍ୱଚେତନାର ଅତଳ ଔଦାର୍ଯ୍ୟରେ ସାର୍ଥକତା ଲାଭକରନ୍ତି ।

ବହିର୍ମୁଖୀ ଚେତନାରେ ଅନୁଭୂତିର ଗତି ଆଭିମୁଖ୍ୟ ଆପଣାଠାରୁ ଉତ୍ସାରିତ ହୋଇ ବିଶ୍ୱ-ବ୍ୟାପ୍ତ ହୋଇଗଲାବେଳେ ଅନ୍ତର୍ମୁଖୀ ଉପଲବ୍ଧିରେ ଏହା ସମସ୍ତ ଅନ୍ତର୍ଗତ ଭାବ ଓ ବହିରାଗତ ପ୍ରଭାବକୁ ନିଷ୍କାସିତ କରି ଏକ ଆତ୍ମଗତ ସ୍ଥିର ବିନ୍ଦୁରେ କେନ୍ଦ୍ରାସ୍ଥିତ ହୋଇଯାଏ । ବହିର୍ମୁଖୀ ଅନୁଭୂତି ଲବ୍ଧ ଚେତନାର ସମ୍ପୂର୍ଣ୍ଣ ବିପରୀତ କୋଟୀରେ ଏହାର ଅବସ୍ଥାନ ବୋଲି କୁହାଯାଇପାରେ । ରହସ୍ୟବାଦର ସ୍ୱତନ୍ତ୍ର ଭାଷାରେ, ଅନ୍ତର୍ମୁଖୀ ଚେତନାର ଏହି ଏକ ସକଳପାର୍ଥିବତା ଅତିକ୍ରାନ୍ତ ପରମଶାଶ୍ୱତଙ୍କର ଉଦ୍‌ଗମ ସ୍ୱରୂପ (emanent) ରୂପେ ଉଦ୍‌ବୋଧିତ ହେଲାବେଳେ ବହିର୍ମୁଖୀ ଚେତନାର ସତ୍ତାସାର (essence) ହୋଇ ଅନ୍ତର୍ଗତ (immanent) ରହିଥାନ୍ତି । କୌତୂହଳର ବିଷୟ, ଅନ୍ତର୍ଗତ ଓ ବହିର୍ଗତ ସ୍ୱରୂପରେ ମିଷ୍ଟିକ ତାର ଚରମ ଅନୁଭୂତି ସ୍ତରରେ ଭିନ୍ନ ଭିନ୍ନ ଭାବେ ଭେଟିଥିବା 'ଏକ'କୁ କିନ୍ତୁ ଅଭିନ୍ନ ଓ ଉଭୟ ରାଜ୍ୟର ଏକମାତ୍ର 'ଏକ' ରୂପେ ହିଁ ପ୍ରତିପାଦନ କରିଥାଏ । ଏହିଠାରେ ତତ୍ତ୍ୱର ସର୍ବାତୀତ (transcendent) ଉପଲବ୍ଧିରେ ସର୍ବଗତ ହୋଇଉଠନ୍ତି । ବୋଧଜ୍ଞାନମନର ଅଜ୍ଞାତ ଓ ଅଗମ୍ୟଙ୍କୁ ଅନୁଭୂତିରେ ଅନ୍ତର୍ଗତ କରି ଲାଭକରିବାର ଏହି ସୌଭାଗ୍ୟଟିକକ ହିଁ ଅପର ସକଳ ଅଧ୍ୟାତ୍ମ-ସାଧନାମାର୍ଗୀଙ୍କଠାରୁ ରହସ୍ୟବାଦକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦାନ କରିଥାଏ ।

ଅନ୍ତର୍ମୁଖୀ ରହସ୍ୟାନୁଭୂତିରେ ନିର୍ଦ୍ଦିଷ୍ଟ ସାଧନାଚରଣର ପ୍ରଶ୍ନ ସ୍ୱତଃ ଉତ୍‌ଥିତ ହୋଇଥାଏ । ଇନ୍ଦ୍ରିୟ ପରିଗ୍ରହ ଓ ଚିତ୍ତସଂଯମ ମାର୍ଗରେ ଚୈତନ୍ୟକୁ ସକଳ ଭବବିମୁକ୍ତ କରିବାର ପ୍ରୟାସ ନିଶ୍ଚିତ ଭାବେ ବ୍ୟକ୍ତି ସାଧନାର ଅପେକ୍ଷା ରଖେ । ମାତ୍ର ଏଥିପାଇଁ ଏ ରହସ୍ୟାନୁଭୂତିକୁ ଏକ ବିଶେଷ ମାନସିକ ପ୍ରକ୍ରିୟା କିମ୍ବା ମନ ଚେତନାର ଅବସ୍ଥା ବିଶେଷରୂପେ ପ୍ରୟାସ-ନିର୍ଭର ବ୍ୟକ୍ତିମୁଖାପେକ୍ଷିତା ବୋଲି

Digitized by PPRACHIN, SOA

ମନୋବୈଜ୍ଞାନିକ ପରିଭାଷାକୁ ରହସ୍ୟବାଦ ସ୍ୱୀକାର କରେ ନାହିଁ । ତାର ବିଚାରରେ ଚିତ୍ତ ପରିଶୁଦ୍ଧି କେବଳ ଏକ ସ୍ୱତଂତ୍ର ଅବସ୍ଥା, ଯାହା ରହସ୍ୟାତ୍ମକ ଅନୁଭୂତିର ସ୍ୱତଃ ଅଭ୍ୟୁଦୟ ପାଇଁ ଅନୁକୂଳ କ୍ଷେତ୍ର-ବିଶେଷ ସଜାଡିଦିଏ ।[24] ମାତ୍ର ସେ ଅନୁଭୂତିଟି ଶୃଙ୍ଖଳିବଦ୍ଧ ବା (Grace) କୃପା ପ୍ରାପ୍ତ ଏକ ଆପାତତଃ ଅକାରଣ ସଂଜାତ ଘଟଣା । ଅବଶ୍ୟ ସକଳ ଧର୍ମଧାରା ତଥା ବୈୟକ୍ତିକ ରହସ୍ୟମାର୍ଗରେ ଏକ ସୁନିୟଂତ୍ରିତ ସାଧନା ପ୍ରଣାଳୀ ଧ୍ୟାନ, ଯୋଗ ରୂପରେ ବିଶ୍ୱ ଜୀବନ-ଧାରାର ଶାଶ୍ୱତୋନ୍ମୁଖିତାକୁ ପ୍ରଭାବିତ କରିଆସିଛି ।

ଏଇ 'ପ୍ରସ୍ତୁତି' ସଂପର୍କରେ ରହସ୍ୟବାଦୀର ବ୍ୟାଖ୍ୟା ହେଉଛି, ଏଇ ପରିଦୃଶ୍ୟମାନ ଜଗତର ଅସ୍ତିତ୍ୱ କେବଳ ବ୍ୟକ୍ତିର ଇନ୍ଦ୍ରିୟ-ପ୍ରତୀତିରେ । ଇଂଦ୍ରିୟର ଗ୍ରାହ୍ୟ ଶକ୍ତି ସୀମିତ ଓ ଅସ୍ୱଚ୍ଛ । ଯେପରି ଏକ ବିଭଂଗ ଦର୍ପଣରେ ବା ଅସ୍ୱଚ୍ଛ ଜଳାଧାରରେ ପ୍ରତିବିଂବର ଅସ୍ପଷ୍ଟ ଓ ବିକୃତ ରୂପାୟନ ଘଟିଥାଏ, ସେହିପରି ମାନବଚେତନାରେ ଅନିତ୍ୟ, କ୍ଷୟଶୀଳ ଓ ସତତ ପରିବର୍ତ୍ତନୀୟ ରୂପ ଚେତନାରେ ଏହି ଜଗତ ପ୍ରତିଭାତ । ସେହି ରୂପାଭିବ୍ୟକ୍ତି ସଂପର୍କରେ ମଣିଷର ଜିଜ୍ଞାସା ଯେଉଁ ଭାବ-ବୁଦ୍ଧିର ଭୂମିରୁ ସଂଘଟିତ, ସେ ଭାବ ଓ ବୁଦ୍ଧି ମଧ୍ୟ ମାନବର ସେଇ ସୀମିତ ଚଂଚାଶକ୍ତି ଜାତ ହେତୁ ଚରମଜ୍ଞାନର ଅବଧାରଣ ଅକ୍ଷମ । ଶୁଭ୍ର ନିର୍ମଳ ସୂର୍ଯ୍ୟାଲୋକ ଜଳକଣାବୃତ ହୋଇ ଇଂନ୍ଦ୍ରଧନୁ ବା ଶିଶିର ବିଂଦୁରେ ବହୁରଂଗରୂପରେ ଚିତ୍ରାୟିତ ହୋଇଥାଏ । ମାତ୍ର ଏହି ରଂଗସମାବେଶ ଜଳକଣାର ବିଲୁପ୍ତିରେ ବିନଷ୍ଟ ହୁଏ । ଅଥବା ଏକ ଜଳପୂର୍ଣ୍ଣ ପାତ୍ରରେ ଆକାଶ-ଚନ୍ଦ୍ରର ପ୍ରତିବିଂବନ ଘଟେ । ପାତ୍ର ଜଳ-ଶୂନ୍ୟ ହେଲେ ଚନ୍ଦ୍ରର ପ୍ରତିବିଂବିତ ରୂପଛାୟା ମଧ୍ୟ ଅନ୍ତର୍ହିତ ହୋଇଯାଏ ।

ସୁତରାଂ ସକଳ ବାହ୍ୟଚେତନା ଓ ଭାବାନୁଭୂତ, ଏବଂ ବୁଦ୍ଧିଜ୍ଞାନର ଅତୀତରେ ବିଦ୍ୟମାନ ଅସ୍ତିତ୍ୱକୁ ତାର ଯଥାର୍ଥ ସ୍ୱରୂପରେ ସନ୍ଧାନ କରିବାକୁ ହେଲେ ମନଭାବନାର କ୍ରିୟାଶୀଳତାକୁ ନିୟଂତ୍ରଣ କରିବା ଓ ବୃତ୍ତିପ୍ରବୃତ୍ତିର ବଂଧନକୁ ଅତିକ୍ରମ କରିବା ସାଧକ ନିକଟରେ ପ୍ରଥମ ଓ ପ୍ରଧାନ ପ୍ରଶ୍ନ ରୂପେ ଦଣ୍ଡାୟମାନ ହୁଏ । ସାଧନାମାର୍ଗରେ ଚେତନାରୁ ଇନ୍ଦ୍ରିୟ ନିବୃତ୍ତି, ଭାବନାବୋଧ ଦ୍ୱାରା ଅଭିଜ୍ଞାନ-ଦ୍ୟୋତକ ସଚେତନତାର ସଂପୂର୍ଣ୍ଣ ବହିଷ୍କରଣ ବା ଅତିକ୍ରମଣ ପରେ ସାଧକ ସମ୍ମୁଖରେ ଅବଶିଷ୍ଟ ସତ୍ତା ହିଁ କେବଳ 'ଆତ୍ମା' ବା 'ଶୂନ୍ୟ' ସ୍ୱରୂପରେ ବିଦ୍ୟମାନ ରୁହେ । ଅପଣା ଭିନ୍ନ ଏହାର ଅନ୍ୟ ଅସ୍ତିତ୍ୱ ନାହିଁ, ଭିନ୍ନ ଅବଧାରଣ ମଧ୍ୟ ନାହିଁ ।

ଏହି 'ଏକ'ର ସ୍ୱରୂପନିର୍ଣ୍ଣୟ ପ୍ରସଂଗରେ ସର୍ବଦେଶ ସର୍ବକାଳର ରହସ୍ୟବାଦୀ ଅଭିବ୍ୟକ୍ତି ସମାନ ଅର୍ଥବୋଧକ ଶବ୍ଦ ବା ପରିଭାଷାର ପ୍ରୟୋଗ କରିଛି । ଏହା ସକଳଚେତନାବହିଃସ୍ଥ ହେତୁ ନିରାଧାର,

24. "Enlightenment is always like an accident, because it is unpredictable because you cannot manage it. You cannot arrange for it to happen. You cannot cause it to happen. All that you can do is only an invitation. You should invite it, but don't be certain that the guest will come. Finally it depends on the guest. Not on you. But without the invitation the guest will never come. With your invitation he may come. With your invitation it is not certain that he will not come. But with your no-invitation it is certain that he will not come. So wait by the door. All meditations will help you only to look towards the unknown, to look at the stranger."

Sri Rajnish - No water No moon. P-14 - 15.

Digitized by PPRACHIN, SOA

ସକଳ ରୂପାତ୍ମକତାବର୍ଜିତ ହେତୁ ନିରାବରଣ ଓ ବିଶେଷଣ ବିନିର୍ମୁକ୍ତ ହେତୁ ନିରାଭରଣ । ସକଳ ବର୍ଜିତ ହେତୁ ଶୂନ୍ୟ ପୁଣି ବହୁବୋଧରହିତ ହେତୁ ଏକ । ଭେଦବୋଧହୀନ ହେତୁ ଅସୀମ ଓ ବିଶେଷ ସଙ୍କ୍ଷାପରିଚୟହୀନ ହେତୁ ନିର୍ବିଶେଷ । ସବୁଠାରୁ ଅବଶିଷ୍ଟ ଅନାତ୍ମାଶ୍ରୟ (ଶରୀରହୀନ), ଅଧ୍ୟାସହୀନ, ଅବସ୍ଥାତ୍ରୟାତୀତ, (ସ୍ୱପ୍ନ, ସୁପ୍ତି, ଜାଗୃତ ଅତୀତ), ଅରୂପ ପୁରୁଷ ଆତ୍ମରୂପ 'ସୋଽହମ୍' ଚେତନାରେ ନିତ୍ୟ ବିଦ୍ୟମାନ । [୨୫] ସକଳ ଅସ୍ତିନାସ୍ତି ବିଗ୍ରହକୁ ଆତ୍ମସାତ୍ କରି ସେ ଅବ୍ୟକ୍ତ ସ୍ୱରୂପରେ ସହଜ ବିରାଜିତ ।[୨୬] ଏହାହିଁ ଅସ୍ତିତ୍ୱାତ୍ମକତା ଓ ନାସ୍ତିବାଚକତାର ଯୁଗପତ୍ ସ୍ଥିତାବସ୍ଥା । ଏହାହିଁ ବେଦାନ୍ତର ନିର୍ଗୁଣ ବ୍ରାହ୍ମୀସ୍ଥିତି, ବୌଦ୍ଧ ଶୂନ୍ୟତା/ ତଥତା, ଏକହାର୍ଟଙ୍କ (Ekhart) ମରୁପ୍ରାନ୍ତର (barrenness, desert) ପାଶ୍ଚାତ୍ୟ ରହସ୍ୟଚେତନାର Wayless, abyss, void, ସାର୍ତ୍ରେଙ୍କ Being and nothingness ।[୨୭] ଏଇ ଅଚିନ୍ତ୍ୟ ଆତ୍ମାର ସ୍ପଷ୍ଟ ଘୋଷଣା "ମୋର ଅଧଃ ବା ଊର୍ଦ୍ଧ୍ୱ କିଛିନାହିଁ । ବାହ୍ୟ ନାହିଁ କି ଅନ୍ତର ନାହିଁ । ମନ ନାହିଁ କି କାର୍ଯ୍ୟ ନାହିଁ ।[୨୮] ଏହି ଶୂନ୍ୟତା କିନ୍ତୁ ଅନ୍ତଃସାର ଶୂନ୍ୟତା ନୁହେ । ପ୍ରତ୍ୟକ୍ଷିତ objective ରୂପେ ଏହା ସତ୍ତାତ୍ମକ ।[୨୯] ସମସ୍ତ ରହସ୍ୟବାଦୀ ସିଦ୍ଧାନ୍ତ ଏହି ନାସ୍ତିବୋଧକତାର ଅସ୍ତିତ୍ୱାତ୍ମକ ତର୍କଣା ବୋଲି କୁହାଯାଇପାରେ । 'କିଛି ନାହିଁ, ଅଥଚ ଏ ବିଶ୍ୱସଂସାର ମୋଠାରୁ ଭିନ୍ନ ଆଉ କିଛି ନୁହେ' ।[୩୦] ସମଗ୍ର ରହସ୍ୟାବଳୀ ବିଗ୍ରହ ଏଇ ଅସ୍ତିନାସ୍ତିବୋଧର ଅନିର୍ବଚନୀୟତା ଉପରେ ପ୍ରତିଷ୍ଠିତ ।

ପ୍ରଶ୍ନ ଉଠିଥାଏ, ବ୍ୟକ୍ତିର ମାନସିକ, ବୌଦ୍ଧିକ ହୃଦ୍‌ବୃତ୍ତିଗତ ଓ ଇନ୍ଦ୍ରିୟଲବ୍ଧ ଚେତନାର ଯଦି ଏହିସତ୍ତା ଆଧାରସ୍ୱରୂପ ତେବେ ଗୁହ୍ୟ ବା ଏସୋଟେରିକ ସାଧନା ମାର୍ଗରେ ସକଳ ବୃତ୍ତିପ୍ରବୃତ୍ତିର ନିରୋଧ ଏବଂ ବହିଷ୍କାରଣ ହୋଇଗଲାପରେ ଅବଶିଷ୍ଟ ଆଉ କିଛି ବି ଉପଲବ୍ଧିଯୋଗ୍ୟ ରହିବ ନାହିଁ । ମାତ୍ର ରହସ୍ୟବାଦୀ ବିଗ୍ରହରେ ଏହା ଶୂନ୍ୟ ହେଲେ ବି ପୂର୍ଣ୍ଣ, ଏବଂ ଏହା ଏପରି ଏକ ଅଦ୍ଭୁତ ପୂର୍ଣ୍ଣତାର ତତ୍ତ୍ୱ ଯେ ଏକ ଅଖଣ୍ଡର ବହୁ ଅଂଶ ବର୍ଜନପରେ ବି ମୂଳ ସତ୍ତା ଅବିକୃତ ଓ ଅଖଣ୍ଡ ରହିଥିବ ।[୩୧] ପୁନଶ୍ଚ, ବ୍ୟାବହାରିକ ପ୍ରୟୋଗରେ, ଏକର ଅବବୋଧଟି ବହୁ ଖଣ୍ଡ ବା ଅଂଶର ସମ୍ମିଳିତ ରୂପରେ ହିଁ ସମ୍ଭବ । ସେ ଅଂଶର ଯତ୍‌ସାମାନ୍ୟକୁ ବାଦ୍ ଦେଇଦେଲେ 'ଏକ'ର ପୂର୍ଣ୍ଣତା ନଷ୍ଟ ହୋଇଯାଏ ଅଥଚ

୨୫- ଅନାତ୍ମାଶ୍ରୟୋଽହଂ ମମାଧ୍ୟାସହୀନାତ୍ ବିବେକୋଽବଶିଷ୍ଟ ଶିବକେବଳୋଽହମ୍ । (ଶଙ୍କରାଚାର୍ଯ୍ୟ 'ନିର୍ବାଣ ଦଶକମ୍', ଗ୍ରନ୍ଥାବଳୀ ପୃ ୨୭୨)

26. men is holding up in this very act of negation something quite positive and affirmative. D.T. Suzuki–Mysticism : Christian & Buddhist–p38

27. Pure Being and pure nothingness are hence the samething. Sartre–Being & Nothingness, p–21

୨୮- ନିର୍ବାଣ ଶତକମ୍—ଶ୍ଲୋକ ନଂ ୮ ଶଙ୍କର ଗ୍ରନ୍ଥାବଳୀ- ପୃ ୨୭୦

29. It is a positive experience which has no positive content. W.T. Stace–Mysticism & Philosophy–p. 80

୩୦- ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବ ପ୍ରବର୍ତ୍ତତେ ।
ଶ୍ରୀମଦ୍‌ଭଗବଦ୍‌ଗୀତା: ଦଶମ ଅଧ୍ୟାୟ—ଶ୍ଲୋକ ନଂ ୮

୩୧- "ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ଶୁକ୍ଳ ଯଜୁ"

Digitized by PPRACHIN, SOA

ରହସ୍ୟବାଦର ଐକ୍ୟ ଚେତନା ସକଳ ବିବର୍ଜିତ ସ୍ୱୟଂ ପୂର୍ଣ ଏକ ରୂପେ ବିଦ୍ୟମାନ । ଏହାକୁ ଗାଣିତିକ ଅମୂର୍ତ୍ତ ଏକସହ ତୁଳନା କରିବାରେ ଅସୁବିଧା ରହିଛି । ଗାଣିତିକ ଏକରୁ ଯେତେ କମ୍ ବିଯୁକ୍ତହେଲେ ବି ତାହା ଏକର ଲଘୁତର ଓ ଚରମ ଅବସ୍ଥାରେ ଶୂନ (୦)ରେ ପରିଣତ ହୋଇଯିବ । ଏ ଶୂନ କିନ୍ତୁ ରହସ୍ୟବାଦୀର ଶୂନ୍ୟ ନୁହେ । ପୁଣି, ଗାଣିତିକ ଏକ ଓ ଶୂନ ସମମୂଲ୍ୟ ବିଶିଷ୍ଟ ନୁହନ୍ତି । ମାତ୍ର ରହସ୍ୟଚେତନାର ଏକ ଓ ଶୂନ୍ୟ ସମାର୍ଥବୋଧକ । ଏହା ସହ ସଂଯୋଗ ବା ବିଯୋଗର ପ୍ରଶ୍ନ ଉଠେନାହିଁ । ସକଳ ଯୋଗ ବିୟୋଗ ସତ୍ତ୍ୱେ ହ୍ରାସବୃଦ୍ଧି ନିରପେକ୍ଷ ଏହି ଏକ/ଶୂନ୍ୟ ଅପରିବର୍ତ୍ତିତ ଓ ଅବିକଳ ହୋଇ ବିଦ୍ୟମାନ । ଶୂନ୍ୟତାରେ ପୂର୍ଣତ୍ୱର ଏଇ ଉଦ୍‌ବୋଧନ, ନିର୍ଗୁଣର ଗୁଣାତ୍ମକ ପ୍ରକଟନ, ଏକ ଅସଂବଂଧ ଓ ଅସଂଭବ ପ୍ରଜଳ୍ପନ ମନେହେଲେ ବି, ଏଇ ଅନିର୍ବଚନୀୟତା, ନାସଦୀୟ ବିରୋଧାଭାସ (the paradox of vacum// plennum)ସବୁ ରହସ୍ୟବାଦୀ ଉପଲବ୍ଧିର ସାରତତ୍ତ୍ୱ ରୂପେ ଗୃହୀତ ।

## ବିଶ୍ୱାତ୍ମା ଓ ସଦସତ୍ ବିରୋଧାଭାସ

ପ୍ରତ୍ୟକ୍ଷ ଉପଲବ୍ଧିରେ ଏକ ଦିବ୍ୟଚେତନା ବା ଐକ୍ୟ ସତ୍ତାର ସାକ୍ଷାତ୍କାର- ଏହା ହେଉଛି ରହସ୍ୟବାଦୀର ପ୍ରଧାନ ପ୍ରତିପାଦନ । ମାତ୍ର ଏହି ଚେତନାଟି ଭାବାତ୍ମକ (subjective) ବା ବିଧେୟାତ୍ମକ (predictive/ objective) ନୁହେ । ସଂଜ୍ଞାତ୍ମକ କରି ସୁତରାଂ ତାହାକୁ କିପରି ବ୍ୟକ୍ତ କରାଯାଇପାରେ ? ରହସ୍ୟବାଦର ଏହାହିଁ ପ୍ରଧାନ ସମସ୍ୟା ।

ଏହାର ଅସ୍ତିତ୍ୱ ସପକ୍ଷରେ ଦୃଢ଼ମତପୋଷଣ କରି ମଧ୍ୟ ରହସ୍ୟବାଦୀ ଏହାର ସ୍ୱଭାବ ସ୍ୱରୂପ ବ୍ୟାଖ୍ୟା କରିପାରେ ନାହିଁ । ଖୁବ୍ ବେଶିରେ କହିପାରେ—

'ନାହଂ ମନ୍ୟେ ସୁବେଦେତି ଯେନ ବେଦେତି ବେଦଚ<br>ଯୋ ନସ୍ତଦ୍‌ବେଦ ତଦ୍‌ବେନ ଯେନ ବେଦେତି ବେଦଚ । '[୩୨]

(ମୁଁ ଏହାକୁ ଠିକ୍ ଜାଣିଚି ବୋଲି ଭାବୁନାହିଁ । ତଥାପି ମୁଁ ଜାଣୁଚି ଯେ ଏହା ମୋର ଅଜ୍ଞାତ ନୁହେ । ଆମ୍ଭମାନଂକ ଭିତରୁ ଏକଥା ଯେ ଜାଣେ, ସେ ହିଁ ତାହାକୁ ଜାଣେ । ସେ ଜାଣେ ଯେ ଏହା ତାହାର ଅଜଣା ନୁହେ) ।

ତଥାପି ଏହି ଅନାମଧେୟ 'ତଦ୍'-ଏହି ସର୍ବନାମକୁ ବ୍ରହ୍ମ, ଶୂନ୍ୟ ବା ଆତ୍ମା ନାମରେ ସଂଜ୍ଞାୟିତ କରିବାକୁ ଯାଇ ରହସ୍ୟବାଦ ସ୍ୱତଃ ଅଧିତାତ୍ତ୍ୱିକ ତର୍କଣା (metaphysical speculation) ସହ ଜଡିତ ହୋଇପଡ଼େ । ଧୂମାଚ୍ଛାଦିତ ମେଘପଟଳାବୃତ, ନିହାର ପ୍ରାବୃତ, ହିରଣ୍ମୟକୋଷସ୍ଥିତ ଏହି ଅଜ୍ଞାତର ସ୍ୱରୂପ ଜାଣିବା ଦୁଃସାଧ୍ୟ ବୋଲି ଯେତେ ଉପମାର ନିଷେଧ ରହିଥିଲେ ବି ଏ ସଂପର୍କରେ କୌତୂହଳ ନିବୃତ୍ତି ପାଇଁ ମାନବ ପ୍ରଚେଷ୍ଟାର ଅଂତ ନାହିଁ ।

---

୩୨- କେନୋପନିଷଦ ୨/୧

ତୁଳନୀୟ—He who knows the Tao, doesnot care to speak, he who is everready to speak about it doesnot know it.

Laoze-Tao Teh king part II 56.1. Sacred Book of China-p.100.

Digitized by PPRACHIN, SOA

ଅଜ୍ଞାତ ସମ୍ପର୍କରେ କୌତୂହଳ ପ୍ରାୟ ଅନବଚନୀୟତ୍ୱବାଚକ ଶୈଳୀ ଅର୍ଥାତ୍ ପ୍ରଶ୍ନାତ୍ମକ, ବିରୋଧାତ୍ମକ, ଅସାମର୍ଥ୍ୟଦ୍ୟୋତକ, ବିଭ୍ରମାତ୍ମକ ନିଷେଧାତ୍ମକ ବା ମୌନାତ୍ମକ ସ୍ୱରୂପରେ ହିଁ ପ୍ରକଟିତ ହୋଇଥାଏ । ଏ ପ୍ରସଙ୍ଗରେ ବୈଦିକ-ବାଙ୍ମୟର ପ୍ରଖ୍ୟାତ ନାସଦୀୟ-ସୂକ୍ତଟି ଉଦ୍ଧାର କରାଯାଇପାରେ ।[୩୩]

ନାସଦାସୀନ୍ନୋ ସଦାସୀତ୍ତଦାନୀଂ
ନାସୀଦ୍ରଜୋ ନୋ ବ୍ୟୋମା ପରୋଯତ୍
କିମାବରୀବଃ ? କୁହ କସ୍ୟ ଶର୍ମନ ?
ଅମ୍ଭଃ କି ମାସୀଦ୍, ଗହନଂ ଗଭୀରମ୍ ।
ନ ମୃତ୍ୟୁରାସୀଦ ମୃତ ନତର୍ହି
ନ ରାତ୍ର୍ୟା ଅହ୍ନଃ ଆସୀତ୍ ପ୍ରକେତଃ ।

ସୃଷ୍ଟିର ଆଦିକାଳରେ ସତ୍ ନଥିଲା କି ଅସତ୍ ନଥିଲା । ସେତେବେଳେ ଆକାଶ ନଥିଲା କି ସ୍ୱର୍ଗ ନଥିଲା, ତେବେ କିଏ ସେ ଢ଼ାଂକି ରହିଥିଲା ? ଏସବୁ କେଉଁଠାରେ ଥିଲା ଓ କାହାର ଅଧୀନରେ ଥିଲା ? ଗଭୀର ଗହ୍ୱର ଓ ଜଳ କେଉଁଠାରେ ଥିଲା ? ସେତେବେଳେ ମୃତ୍ୟୁ ନଥିଲା, ଅମରତ୍ୱ ନଥିଲା, ଦିନ ବା ରାତି ମଧ୍ୟ ନଥିଲା । ତଥାପି—

ଆନୀଦବାତଂ ସ୍ୱଧୟା ତଦେକଂ
ତସ୍ମାଦ୍ଧାନ୍ୟନ୍ନ ପରଃ କିଞ୍ଚନାସ ।

ସେତେବେଳେ ଗୋଟିଏ ଜିନିଷ ବାୟୁରହିତ ହୋଇ ରହୁଥିଲା, ଯେ କି ନିଜ ସାମର୍ଥ୍ୟ ବଳରେ ଶ୍ୱାସ ନେଉଥିଲା । ତାଠାରୁ ଅତିରିକ୍ତ ଅନ୍ୟ କିଛି ବସ୍ତୁ ବିଦ୍ୟମାନ ନଥିଲା । ସେହି ଏକ (ତଦେକମ୍)ର ସ୍ୱରୂପ ବ୍ୟାଖ୍ୟା କରିବାକୁ ଯାଇ ରହସ୍ୟବାଦୀ ଅଭିବ୍ୟକ୍ତ ବହୁ ବିରୋଧାତ୍ମକତାର ସମସ୍ୟା ସହ ଜଡିତ ହୋଇଯାଇଛି । କାରଣ ସବୁ ଉପଲବ୍ଧି ଏହାକୁ 'ଅସ୍ତି ନାସ୍ତି'- ଏ ଉଭୟ ଦ୍ୱନ୍ଦ୍ୱବୋଧର ସମନ୍ୱିତ ପୁଣି ଅତୀତ ଏକ 'ପର' ସ୍ଥିତିରେ ହିଁ ନିର୍ଦ୍ଦିଷ୍ଟ କରିଛନ୍ତି । ସ୍ଥିରତା ଓ ଗତିମୟତା, ଏକତ୍ୱ ଓ ବହୁତ୍ୱ, ନିଃଶ୍ଚେତନା ଓ ସ୍ୱ ସଚେତନତା, ଏକ କଥାରେ ମୃତ୍ୟୁ ଓ ଜୀବନର ସମ୍ବନ୍ଧ ବୋଧାନୁଭୂତି ଏଇ ପ୍ରହେଳିକାକୁ କେନ୍ଦ୍ର କରି ଆବର୍ତ୍ତ । ବିଶ୍ୱମନୀଷାର ଯାବତୀୟ ରହସ୍ୟବାଦୀ ତର୍କଣା ଏଇ ସଦସତ୍ ବିରୋଧାଭାସର ପାରିଭାଷିକକୁ ହିଁ ଗ୍ରହଣ କରିଆସିଛି । ଆସ୍ତିବାଚକତା ଆଲୋକମଣ୍ଡଳ ଓ ଶବ୍ଦତରଂଗ ଏବଂ ଅସତ୍ ବିଶ୍ୱର ଅଂଧକାର ଓ ନୀରବତା ସୂଚକ ଭାଷାରୂପକୁ ଆଶ୍ରୟ କରିଛି ।

ଏହା ଏକ ସମୟରେ ଶୂନ୍ୟ ପୁଣି ପୂର୍ଣ୍ଣ ।[୩୪] ଐଶ୍ୱରିକଚେତନାର ପୂର୍ବବର୍ତ୍ତୀ ରୂପେ ମଧ୍ୟ ଏହାର ବିଦ୍ୟମାନତା । 'ସକଳର ଉତ୍ସ ପୁଣି ସକଳ ରହିତ'[୩୫] ଉପସ୍ଥାପନାରେ ଶୂନ୍ୟପୂର୍ଣ୍ଣ ସମାର୍ଥବାଚକ

୩୩- ଋକ୍ ୧୦/୧୨୯/୧-୫

**34. The Tao is like an empty vessel/ that may yet be drawn from/ without ever needing to be filled. Lao Tzu : qt Suzuki– Mysticism– Christian and Buddhist–p 18**

୩୫- ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ ।
ତଦଂତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ଈଶ ୧/୫

Digitized by PPRACHIN, SOA

ହୋଇଯାନ୍ତି । ବେଦାଂତର ନିର୍ଗୁଣ, ବୌଦ୍ଧ ଦର୍ଶନର ନିର୍ବାଣ, ଗୀତାର 'କ୍ଷରାକ୍ଷର' ତତ୍ତ୍ୱ, ଚର୍ଯ୍ୟାର ସହଜ,[୩୬] ଜେନ୍‌ର ସାତୋରି (Satori)[୩୭], ପାଶ୍ଚାତ୍ୟ ଚେତନାର ପରା-ଈଶ୍ୱର (Godhead)[୩୮] ଏହି 'ଭାବାଭାବ' ସ୍ଥିତିରେ ହିଁ ସ୍ୱସିଦ୍ଧ । ଏହାହିଁ Ruysobroek ଙ୍କ ଶାଶ୍ୱତ ବିଶ୍ରାଂତି (eternal rest), Ekhart ଙ୍କର ଅଜାତ ଅସ୍ତିତ୍ୱ (unborn essence), T.S Eliot ବର୍ଣ୍ଣିତ 'ଜଗତର ସ୍ଥିରବିଂନ୍ଦୁ ଯେଉଁଠାରେ ସବୁକିଛି ପ୍ରବହମାନ୍', ହେଗେଲଙ୍କ ଅନ୍ୱୟବାଦ (dialectism) ମଧ୍ୟ ଦ୍ୱଂଦ୍ୱାତ୍ମକତାର 'ଅନ୍ୱିତ ଓ ଅତିକ୍ରମଣ' ସିଦ୍ଧାଂତଟିକୁ ଉତ୍‌ପ୍ରେକ୍ଷା କରେ ।[୩୯] ଅସ୍ତିତ୍ୱବାଦର ବ୍ୟାଖ୍ୟାକାରୀ ସାର୍ତ୍ରେ 'ଈଶ୍ୱର' ପ୍ରସଂଗ ନିରପେକ୍ଷରେ ମଧ୍ୟ ସତ୍ତାକୁ ଆପଣାର ସାର ସ୍ୱରୂପରେ ସର୍ବବୋଧନିରପେକ୍ଷ, ସ୍ୱସିଦ୍ଧ, ଅନୁସ୍ଥିତ ନାସ୍ତିବୋଧକୁ ଅତିକ୍ରମକରି ସ୍ୱଚେତନାରେ ଅଖଣ୍ଡିତ ରହିଥିବାର ଶକ୍ତିଯୁକ୍ତ ବୋଲି ପ୍ରତିପାଦନ କରନ୍ତି ।[୪୦] କହିବାର କଥା, ଅସ୍ତିତ୍ୱ ସଂବଂଧୀୟ ଯାବତୀୟ ତର୍କଣା ଏ 'ସଦସତ୍' ବିଗ୍ରହ ବିମୁକ୍ତ ହୋଇନପାରେ ।



---

୩୬- "ଭାବ ନ ହୋଇ ଅଭାବ ଣ ଜାଇ" (ଲୁଇପା) ଚର୍ଯ୍ୟାନ ୨୯

37. "It is a state of absolute Suchness, of absolute emptiness, which is absolute fullness" D.T. Suzuki– Mysticism – Christian and Buddhist p–69

38. "The eternally resting God–head is also the wheel rolling out of itself" Ekhart : qt–Rudolf Otto 'Mysticism–East and West'–p–174

39. "There is nothing in heaven or earth which doesnot contain in itself being and nothingness" Hegel–Greater Logic- Chap–1

40. The pure being is pure abstraction and consequently absolutely negation, which taken in its immediate moment is also non-being Nothingness is then simple identity with itself, complete emptiness, absence of determination and contents. Pure being and pure nothingness are then the samething because the difference cannot be named. Nothingness lies coiled in the heart of being.

Sartre : Being and Nothingness p. 22–21

Digitized by PPRACHIN, SOA

# ସଂଯୋଗ ତତ୍ତ୍ୱ

ବୃହଦାରଣ୍ୟକରେ ଯାଜ୍ଞବଲ୍କ୍ୟ ମୈତ୍ରେୟୀଙ୍କୁ ଆତ୍ମା ପରମାତ୍ମା ସଂଯୋଗରହସ୍ୟ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି, 'ଲବଣ ଜଳସ୍ପର୍ଶରେ ବିଗଳିତ ହୋଇଯିବା ପରି ଜୀବାତ୍ମା ପରମାତ୍ମାଙ୍କଠାରେ ଲୀନ ହୋଇଯାଏ । ପରମଙ୍କ ସହ ବ୍ୟକ୍ତିସତ୍ତାର ଏଇ ମହାମିଳନ ବା ସଙ୍ଗମତତ୍ତ୍ୱଟି ଉଭୟ ଅଭେଦାତ୍ମକ ଏକରୂପତା ଓ ଭେଦାତ୍ମକ ସଙ୍ଗମଭାବନାରେ ଅନୁଶୀଳିତ ହୋଇଥାଏ । ପ୍ରସଙ୍ଗତଃ ଉଲ୍ଲେଖନୀୟ ପ୍ରାଚ୍ୟ ରହସ୍ୟବାଦୀ ବର୍ଗର (ତାନ୍ତ୍ରିକ, ଉପନିଷଦ, ବୌଦ୍ଧ ଇତ୍ୟାଦି) ଅଭେଦତତ୍ତ୍ୱକୁ ସମର୍ଥନ କରିଥାଏ ଏବଂ ପାଶ୍ଚାତ୍ୟ ରହସ୍ୟବାଦୀ ଅଭିବ୍ୟକ୍ତି ପ୍ରାୟତଃ ଭେଦାତ୍ମକ ମିଳନତତ୍ତ୍ୱରେ ବିଶ୍ୱାସୀ, ତଥାପି ବର୍ଣ୍ଣନା ପ୍ରସଙ୍ଗରେ କୁତ୍ରାପି ରହସ୍ୟବାଦୀ ଅଭିବ୍ୟକ୍ତି ଅଭେଦତ୍ୱକୁ ପୂର୍ଣ୍ଣ ପରିହାର କରିପାରେ ନାହିଁ ।

## ଦ୍ୱୈତବାଦୀ ମିଳନ ତତ୍ତ୍ୱ

ରହସ୍ୟବାଦୀ ମିଳନଚେତନା ମୁଖ୍ୟତଃ ଦ୍ୱୈତତତ୍ତ୍ୱ ଉପରେ ପ୍ରତିଷ୍ଠିତ । ଏକ ଓ ଅଭିନ୍ନ ସତ୍ତାର ମିଳନପ୍ରସଙ୍ଗ ଉଠେନାହିଁ । ଦ୍ୱୈତ ସ୍ଥିତିର ଭିନ୍ନତା ଓ ବ୍ୟବଧାନ ହେତୁ ହିଁ ଜୀବ ପରମସହିତ ପାରସ୍ପରିକ ଆକର୍ଷଣ ତଥା ମିଳନରୂପ ପରିଣତି ଘଟିବା ସମ୍ଭବପର । ତେଣୁ, ରହସ୍ୟବାଦୀ ମାନେ ନିଜଠାରୁ ଭିନ୍ନ ଓ ଶ୍ରେୟ ଏକ ପରମପ୍ରିୟଂକ ସହ ପ୍ରେମ ସମ୍ପର୍କରେ ପରିକଳ୍ପନାରେ ଅନିବାର୍ଯ୍ୟ ଭାବେ ଜଡ଼ିତ ।

ପୁଣି, ମିଳନାନୁଭୂତି ପାଇଁ ସମ, ଏକ ବା ଆତ୍ମବିଲୋପ ଭାବ ଅପରିହାର୍ଯ୍ୟ ନୁହେ । ବରଂ 'ଏକ'ରେ ଅପରର ବିଲୁପ୍ତି ଭିତରେ ମିଳନର ଭାବଚେତନାଟି ଅଂତର୍ହିତ ହୋଇଯିବାର ସମ୍ଭାବନା ରହିଛି । ରହସ୍ୟଚେତନାର ସଯୋଗାବସ୍ଥାଟି ଜୀବ ଓ ଈଶ୍ୱରଙ୍କର ସ୍ୱସ୍ୱ ଅଧିଷ୍ଠାନମୂଳକ ଭିନ୍ନତା ଭିତରେ ହିଁ ଲବ୍ଧ ହୋଇଥାଏ । ଏହି ସଙ୍ଗମ ଚେତନା ହିଁ ରହସ୍ୟବାଦୀ ଉଚ୍ଚାରଣରେ ନାରୀ-ପୁରୁଷର ପ୍ରେମାତ୍ମକ ରୂପ ପ୍ରତୀକରେ ରୂପାୟିତ ।

ପାଶ୍ଚାତ୍ୟ ଚିଂତାଧାରାରେ ସୃଷ୍ଟିତତ୍ତ୍ୱ ପ୍ରସଙ୍ଗ ପ୍ରଧାନତଃ 'ସ୍ରଷ୍ଟା' ଓ 'ସୃଷ୍ଟିର' ମୂଳଗତ ଦ୍ୱୈତବାଦୀ ଚେତନା ଉପରେ ପ୍ରତିଷ୍ଠିତ । ସ୍ରଷ୍ଟା ସୃଷ୍ଟିକାରୀ ଇଚ୍ଛା ତଥା ସୃଜନୀ ଶକ୍ତି ଅନ୍ୱିତ ହୋଇଥିବାରୁ ସୃଷ୍ଟିଠାରୁ ଭିନ୍ନ ଓ ମହତ୍ତର ସ୍ଥାନର ଅଧିକାରୀ । ସେ ପରମ ସତ୍ତାରୂପୀ ଈଶ୍ୱର ଅସୀମ, ଦିବ୍ୟ, ଶୁଦ୍ଧ ଓ ଶାଶ୍ୱତ । ତାଙ୍କଠାରୁ ସୃଷ୍ଟି ଓ ସୀମାବଦ୍ଧ ଜୀବ ଈଶ୍ୱରତତ୍ତ୍ୱର ସେହି ପୂର୍ଣ୍ଣକୋଠୀକୁ କଦାପି ସ୍ପର୍ଶ କରିନପାରେ । ବରିଷ୍ଠ, ମହାନ, ଅକଳ୍ପନୀୟ, ଅବାଙ୍ମନସଗୋଚର ପରମଶାଶ୍ୱତଙ୍କୁ ପାଶ୍ଚାତ୍ୟ ଚେତନା 'ମହାଅଜଣା' (Numen) ଓ ସୃଷ୍ଟିଠାରୁ ପୂର୍ଣ୍ଣ ଭିନ୍ନ (wholly other) ବୋଲି ସ୍ୱୀକାର କରିଛି ।[୧] ଏହି ଭିନ୍ନତ୍ୱ ଓ ଅନ୍ଧ୍ୟେତ୍ୱର ତାରତମ୍ୟ ପ୍ରାଚୀରଟି ସୀମାବୋଧରେ ସ୍ରଷ୍ଟାଙ୍କୁ ତାଠାରୁ କ୍ଷୁଦ୍ରତର ଓ ଲଘୁତର ସୃଷ୍ଟିଠାରୁ ବିଚ୍ଛିନ୍ନ ଏବଂ ପୃଥକ୍ କରି ରଖିଥାଏ । ସତ୍ତା

1. Rudolf Otto ଙ୍କ 'The Idea of Holy'– ପୁସ୍ତକର ଅବତରଣିକା ଦ୍ରଷ୍ଟବ୍ୟ

Digitized by PPRACHIN, SOA

ସସୀମ, ଦେଶକାଳାବଦ୍ଧ, ଜନ୍ମମରଣଶୀଳ ଓ ଅନିତ୍ୟ । ତେଣୁ ପରମ ଈଶ୍ୱର ତାର ସମ୍ପୂର୍ଣ୍ଣ ସାଧ୍ୟାତୀତ । ତେଣୁ ତାଙ୍କସହ ଅଭେଦତ୍ୱକୁ ପ୍ରାପ୍ତ ହେବା ଏକ ଅସମ୍ଭବ ତଥା ଭ୍ରଷ୍ଟାଗ୍ରସ୍ତ ପାଷାଣ୍ଡତତ୍ତ୍ୱ (heresy) ବୋଲି ପାଶ୍ଚାତ୍ୟ ଧର୍ମ ସିଦ୍ଧାନ୍ତ ପ୍ରବଳ ପ୍ରତିକ୍ରିୟା ପ୍ରକାଶ କରିଛି । ନଶ୍ୱର, ଗୁଣାଧୀନ, ଭିନ୍ନଏକ ସ୍ଥିତିସଞ୍ଜାତ ଏବଂ ବିଶେଷକରି ସ୍ୱୟଂ ସୃଷ୍ଟି କ୍ରିୟା ଅକ୍ଷମ ଅଦିବ୍ୟ ମର୍ତ୍ତ୍ୟ ସତ୍ତ୍ୱ ପରମ ଦିବ୍ୟଙ୍କ ସହ ସଂଯୁକ୍ତି ହେବା ବା ଏକରୂପତା ଲାଭକରିବାକୁ ଅସମ୍ଭବ ବୋଲି ପ୍ରତିପାଦନ କରି ଷୋଡ଼ଶ ଶତାବ୍ଦୀର ଜର୍ମାନୀ ରହସ୍ୟସାଧକ ହେନେରୀ ସୁସୋ କୁହନ୍ତି— ଯେତେ ଦିବ୍ୟ ସମ୍ପ୍ରସାରଣ ଘଟିଲେ ମଧ୍ୟ ଜୀବ ନିଜର ସୀମାକୋଠରୀରୁ ମୁକ୍ତହୋଇ ଅସୀମକୋଠରୀରେ ପୂର୍ଣ୍ଣସ୍ଥିତି ପାଇପାରିବ ନାହିଁ । ପରମ ଯେଉଁ ବୋଧାତୀତ ସ୍ଥିତିରେ ବିଦ୍ୟମାନ, ସେ ବୋଧାତୀତତାକୁ ଅତିକ୍ରମ କରି ପରମସହ ପୂର୍ଣ୍ଣ ସଙ୍ଗମ ପ୍ରାପ୍ତ ହେବା ଜୀବସତ୍ତ୍ୱ ପକ୍ଷେ ଅସମ୍ଭବ ।[2] ଧର୍ମ ଧାରଣାର ଏଇ ସୁଦୃଢ଼ ଯୁକ୍ତି ଓ ପ୍ରତିବାଦ ସତ୍ତ୍ୱେ ରହସ୍ୟ-ଚେତନାରେ ଜୀବ ସର୍ବଦା ଦିବ୍ୟରୂପଙ୍କ ଅଂଶହର ଓ ଦିବ୍ୟ ସାନ୍ନିଧ୍ୟ ଉପଭୋଗକାରୀ ରୂପେ ଅଭିନନ୍ଦିତ ହୋଇଆସିଛି । ଏ ପରିପ୍ରେକ୍ଷୀରେ ଜୀବ ଓ ପରମଙ୍କର ଏକ ଚିରନ୍ତନ ଅଭିନ୍ନ ସମ୍ପର୍କ ରହସ୍ୟସିଦ୍ଧାନ୍ତରେ ସ୍ୱୀକୃତ ହୋଇଆସିଛି । ଏ ସମ୍ପର୍କର ଦୁଇଟି ବିଭବ 'ଉଦ୍‌ଗମ' ତତ୍ତ୍ୱ (Theory of Emanence) ଓ 'ଅନ୍ତର୍ଭୂତ ତତ୍ତ୍ୱ' (Theory of Immanence) ରୂପେ ଦର୍ଶନଶାସ୍ତ୍ରରେ ଅନୁଶୀଳିତ ହୋଇଛି ।

**ଉଦ୍‌ଗମବାଦ—**

ଉଦ୍‌ଗମବାଦ ଉଦ୍‌ଭୂତ ବା ସମ୍ଭୂତ ତତ୍ତ୍ୱ ଉପରେ ପର୍ଯ୍ୟବସିତ । ସୃଷ୍ଟି ଏକ ସ୍ରଷ୍ଟାକାରୀ ସତ୍ତ୍ୱଙ୍କ (ଈଶ୍ୱର Creator God) ଠାରୁ ଉଦ୍‌ଗତ ବା ବିନିଃସୃତ । ସମ୍ଭୂତିର ଉତ୍ସମୂଳ ଏକମାତ୍ର ଅପ୍ରତିବୋଧ୍ୟ ଓ ଅପ୍ରକଟ ସତ୍ୟ (ନିତ୍ୟପାର୍ଶ୍ୱିକ ବ୍ରହ୍ମ (absolute Godhead) ରୂପେ ବିଦ୍ୟମାନ । ସକଳ ସୃଷ୍ଟି ସେହି ପରମଙ୍କର ସୃଜନୀ ସଂକଳ୍ପରୁ ଈଶ୍ୱରୀୟ ସୃଷ୍ଟି ଶକ୍ତି ମାଧ୍ୟମରେ ତାଙ୍କରି ଭିତରୁ ଉଦ୍‌ଭୂତ । ରୂପବ୍ୟକ୍ତ ଜଗତ ସ୍ରଷ୍ଟାଙ୍କର ପରମୋତ୍କର୍ଷ ଐଶ୍ୱର୍ଯ୍ୟ ଗୌରବର କିଞ୍ଚିତ୍ ପ୍ରତିଭାସନ ମାତ୍ର ।

ଆକାଶସ୍ଥ ମେଘଖଣ୍ଡରୁ ବିଚ୍ୟୁତହୋଇ ଜଳକଣା ବର୍ଷା ବିନ୍ଦୁରୂପେ ଭୂପତିତ ହେଲାପରି ଜୀବ ନାମରୂପାଙ୍କିତ ଜନ୍ମ ମରଣାଶ୍ରିତ ଦେହଧାରଣ ପରେ ଐଶୀଚେତନାରୁ ବିଚ୍ଛିନ୍ନ ହୋଇଯାଏ । ଜୀବ ପରମଙ୍କଠାରୁ ବିଚ୍ଛିନ୍ନହୋଇ ଦିବ୍ୟ ସୁଖ ବଞ୍ଚିତ ହେବାହିଁ ମର୍ତ୍ତ୍ୟର ଦୁଃଖ । ତେଣୁ ପାର୍ଥିବସ୍ଥିତିର ଅସହାୟତା ସତ୍ତ୍ୱେ ସେ ନିରନ୍ତର ଅପାର୍ଥିବତାର ଅଭିଳାଷୀ । ପୁଣି ଉତ୍ସ ପ୍ରତି ଅର୍ଥାତ୍ ଈଶ୍ୱରଙ୍କ ପ୍ରତି ନିତ୍ୟ ଆକର୍ଷଣ ଅସ୍ଥିର । ଅସୀମତା, ଚିରନ୍ତନତା ଓ ଆନନ୍ଦ ଏଇ ତ୍ରିବିଧ ପରମପ୍ରାପ୍ତିର ଦୁର୍ଲକ୍ଷ୍ୟ ହିଁ ତାର ଜୀବନାବେଗ ଓ କର୍ମପ୍ରବାହକୁ ଶାଶ୍ୱତାଭିମୁଖୀ କରିରଖେ ।

ସ୍ରଷ୍ଟା ଶ୍ରେଷ୍ଠ, ମହତ୍ତର, ଭିନ୍ନ ଓ ସୁଦୂର—ଏଇ ସିଦ୍ଧାନ୍ତର ଅନୁସରଣରେ ହିଁ ରହସ୍ୟ-ସାଧକର ଯାତ୍ରାପ୍ରତୀକ ପରିକଳ୍ପନା, ଊର୍ଦ୍ଧ୍ୱଲୋକ ଅଭିମୁଖେ ନିମ୍ନ ଜାଗତିକ ଚିତ୍ତଭୂମିରୁ ଚେତନାର ଉତ୍ତ୍ସାରଣର ଅଭିବ୍ୟଞ୍ଜନା । ସୁତରାଂ ମିଷ୍ଟିକର ଭାଷାରୂପରେ ସଂସାର ବିଦେଶ, ଜୀବ ନିର୍ବାସିତ,

2. "Union with God must not be interpreted as identity.. the spirit passes away not wholly, for it doesnot become God by nature it is still something which has been created" Henry Suso-qt—W T. Stace, Mysticism and Philosophy p-112

Digitized by PPRACHIN, SOA

ପରମଧାମ ପବିତ୍ର, ଊର୍ଦ୍ଧ୍ୱସ୍ଥ ଓ ଅତୁଳ ଐଶ୍ୱର୍ଯ୍ୟମୟ[୩]। ମହାର୍ଘ ସିଂହାସନ, ସୁଉଚ୍ଚ ସୋପାନଶ୍ରେଣୀ ଓ ସ୍ତରଭେଦ ପ୍ରସଙ୍ଗ ଯାତ୍ରାପଥର ଏହି ସଙ୍କେତ-ରୂପମାନ ରହସ୍ୟ ରଚନାର ସୁଲଭଚିତ୍ର ହୋଇପଡ଼ନ୍ତି।

ଉଦ୍‌ଗମବାଦୀ ଦର୍ଶନ ବିଚାରରେ ପାର୍ଥିବସ୍ଥିତି ଓ ଦେହବୋଧ ହେୟତ୍ୱଭାବମୂଳକ। ପାଶ୍ଚାତ୍ୟ-ଚେତନାରେ ସୃଷ୍ଟିର ସଂଭୂତ ସହ ମୈଥୁନହେତୁକ ଆଦିପାପ ବୋଧ (man is conceived in sin) ଓ ଅବିଚ୍ଛିନ୍ନ ସମ୍ପର୍କ ଦେହକୁ ଘୃଣ୍ୟ ଓ ହୀନ ବିବେଚନା କରିଥାଏ। ଗ୍ଲାନିକର, ପ୍ରମାଦଗ୍ରସ୍ତ ଓ କାଳିମାଲିପ୍ତ ହୋଇଥିବାରୁ ନଶ୍ୱର ଜୀବସତ୍ତା ପରମପବିତ୍ରଙ୍କର ସାନ୍ନିଧ୍ୟ-ଅଯୋଗ୍ୟ, ଏଇ ବିବେଚନାରେ ହିଁ ଆତ୍ମଲଘୁମନ୍ୟତା ଓ ବିଷାଦବାଦ ରହସ୍ୟବାଦୀ ମନସ୍ତତ୍ତ୍ୱକୁ ପ୍ରବେଶ କରିଥାଏ।

ଜୀବ ମାତ୍ରେଇ ଦେହାଧୀନ। ଜନ୍ମମରଣବ୍ୟାଧିଜନିତ ତ୍ରିତାପ ଓ ସୁଖ ଦୁଃଖାତ୍ମକ ଇନ୍ଦ୍ରିୟଜ ବେଦନାବୋଧରେ ପ୍ରାଣୀ ସନ୍ତପ୍ତ। କେବଳ ଐଶୀ ଅନୁଗ୍ରହ ବା କୃପା (Grace) ବଳରେ ହିଁ ଦିବ୍ୟଜୀବନର ଆଶୀର୍ବାଦ କିଂଚିତ୍ ଲାଭ କରାଯାଇପାରେ। ପ୍ରସଙ୍ଗତ ଉଲ୍ଲେଖନୀୟ, ପାଶ୍ଚାତ୍ୟଚେତନାର ଏ ଦିବ୍ୟକୃପା ବା ଐଶୀକରୁଣା (pity) ବୌଦ୍ଧ ଦର୍ଶନର କରୁଣାଠାରୁ (universal compassion) ଗୁଣାତ୍ମକ ସ୍ୱରୂପରେ ଭିନ୍ନ। ବୌଦ୍ଧକରୁଣା ବିଶ୍ୱ ସଂବେଦନା ରୂପେ ସର୍ବଜୀବଦୁର୍ଦ୍ଦଶାମୋଚନ କଳ୍ପେ ବୋଧିସତ୍ତ୍ୱଙ୍କ ହୃଦୟରେ ଜାଗରୂକ ହୁଏ ଏବଂ ସତ୍ତା ନିରପେକ୍ଷ 'ଶୂନ୍ୟତାର' ପରମଜ୍ଞାନ ସହ ମିଳିତ ହୋଇ ବାରଂବାର ଧରାପୃଷ୍ଠରେ ବୁଦ୍ଧାବତାରର କାରଣ ହୋଇଥାଏ। ପାଶ୍ଚାତ୍ୟ ଅନୁଚିନ୍ତାରେ ଈଶ୍ୱରୀୟ କରୁଣା ବ୍ୟକ୍ତିଚେତନାର ଗ୍ଲାନିବୋଧରୁ ସଂଜାତ ଯାହା ବ୍ୟକ୍ତିଗତ ମୁକ୍ତିପାଇଁ ଈଶ୍ୱରାନୁଗ୍ରହର ଅଭିଳାଷୀ। ଭାରତୀୟ ଭକ୍ତିଭାବନାର ଦାସ୍ୟ-ଉପାସନାରେ ମଧ୍ୟ ଏଇ କୃପାଭିକ୍ଷୁ-ରୂପ କରୁଣାନିର୍ଭର ଦୀନଭାବର ଚରମତାକୁ ସ୍ପର୍ଶ କରିଛି। ଦୟା/ଦାକ୍ଷିଣ୍ୟ/ଅନୁଗ୍ରହ/ଅନୁକମ୍ପା ପାଇଁ ଅନୁଯୋଗ ଓ ପ୍ରାର୍ଥନାମୂଳକ ଏଇ ଦିବ୍ୟାଦିବ୍ୟ ଆଦାନପ୍ରଦାନମୂଳକ ଭାବସଂପୃକ୍ତ ଭାବାତ୍ମକ ରହସ୍ୟବାଦର ରୂପ ବୈଶିଷ୍ଟ୍ୟ ସଂପାଦନ କରିଥାଏ। ଏଇ ପରିପ୍ରେକ୍ଷୀରେ ହିଁ ଭକ୍ତିସାଧନାର ସଗୁଣ ଈଶ୍ୱର ଭାବାତ୍ମକ ଅନୁଭୂତିର ରହସ୍ୟଦେବତାଙ୍କ ସମଧର୍ମବିଶିଷ୍ଟ ରୂପେ ପରିଗଣିତ ହୋଇଥାଆନ୍ତି।

**ଆତ୍ମଭୂତତତ୍ତ୍ୱ**

ଉଦ୍‌ଗମତତ୍ତ୍ୱର ବିପରୀତକୋଟୀରେ ଏହି ସିଦ୍ଧାନ୍ତକୁ ଉପସ୍ଥାପିତ କରାଯାଇଥାଏ। ଏହାର ବିଚାରରେ ପରମସତ୍ତା ବହିଃସ୍ଥ ଓ ଅଜ୍ଞାତବାସୀ ନହୋଇ ଜୀବର ଆତ୍ମାଧିଷ୍ଠିତ। ମାତ୍ର ଜୀବଚେତନା ଅଜ୍ଞାନରୂପୀ ଅନ୍ଧକାରରେ ଆଚ୍ଛାଦିତ ହୋଇଥିବାରୁ ସେ ଅଦୃଶ୍ୟ ମନେହୁଅନ୍ତି। ଆମେ ତାଙ୍କୁ ଭିତରେ ରଖି ଅସ୍ତିତ୍ୱମୟ ହେଉ ଓ ତାଙ୍କର ଭିତରେ ଚଳୁ ଏବଂ ବଂଚୁ।[୪] ସମସ୍ତ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ସୃଷ୍ଟିର ସ୍ଥିତି ଓ ଗତିଚେତନାର ଉତ୍ସ ଏବଂ ସର୍ବାନ୍ତର୍ଗତ ରୂପେ ତେଣୁ ତାଙ୍କର ସଂବୋଧନ।

---

3. "We ascend. Thy ways that be in our heart, and sing a song of degree, we glow inwardly with Thy fire. with Thy goodfire and we go because we go upwards to the peace of Jerusalem." St. Augustine. qt by E. Underhill–Mysticism p–98

4. If thou conceivest a small minute circle, as small as a grain of mustard seed, yet the heart of God is wholly and perfectly there in, and if thou art born in God, then there is in thyself the whole of heart of God undivided"—
Jakab Boehme : The Three fold Life of man. qt-by Evelyn Underhill- 'Mysticism' p–71

Digitized by PPRACHIN, SOA

ସମସ୍ତ ପ୍ରକାଶର କାରଣ ସ୍ୱରୂପ ସେହି ସ୍ୱପ୍ରକାଶ ପ୍ରତିକୋଷମଧ୍ୟରେ ଚଦାଗ୍ନି ରୂପେ ସଦା ପ୍ରଜ୍ୱଳିତ । ସର୍ଯ୍ୟ ଓ ସୌରଜଗତ ପର ସୃଷ୍ଟି ସ୍ରଷ୍ଟାସହ ଅବିଚ୍ଛିନ୍ନ ସମ୍ପର୍କରେ ନିବଂଧିତ ଓ ତାଙ୍କର ରୂପଗ୍ରସ୍ଥାରେ ଅଭିବ୍ୟକ୍ତ ।

ଦିବ୍ୟସତ୍ତା ସହ ବ୍ୟକ୍ତିସତ୍ତାର ଅନ୍ତର୍ଭୁକ୍ତିଗତ ଅଭିନ୍ନତାର ଏ ସମ୍ପର୍କଟିକୁ ରହସ୍ୟବାଦ ପୂର୍ଣ୍ଣ ସମର୍ଥନ କରେ । ପିଣ୍ଡ ମଧ୍ୟରେ ବ୍ରହ୍ମାଂଡ଼କୁ ଉପଲବ୍ଧି କରିବାକୁ ଏଇ ଭିତ୍ତିଭୂମିରେ ହିଁ ସଂଘଟିତ ହୋଇଥାଏ । ମିଷ୍ଟିକ ବିଚାରରେ ସୀମା ଓ ଅସୀମର ଏହି ବିସ୍ମୟକର ସାକ୍ଷାତ୍ ବ୍ୟାପାରଟି ଯେଉଁଠାରେ ସଂଘଟିତ ହୁଏ, ତାହା କୌଣସି ସୁଦୂରଧାମ ନୁହେ । ନିଜଭିନ୍ନ ଅନ୍ୟକଳ୍ପିତ ଅମର୍ତ୍ତ୍ୟ ଭାବକଳ୍ପନା ନୁହେ ବା ନୈର୍ବ୍ୟକ୍ତିକ ନୁହେ, ତାହା ସତ୍ତାର ପ୍ରଜ୍ଞାଗ୍ନି ଉଦ୍ଭାସିତ ଅନ୍ତଃଚେତନାଭୂମି ଅନ୍ତର୍ଗତ ଏଇ ଦିବ୍ୟାତ୍ମା ଏକାଧାରରେ ବ୍ୟକ୍ତିର କ୍ଷୁଦ୍ର ଅହଂରୂପ ଅନ୍ତର୍ହିତ ପୁଣି ବିରାଟ ଐଶ୍ୱରିକ ମହିମାରେ ସମୁଦ୍ଭାସିତ । [5]

ବହୁ ଦେବବାଦର (Pantheism) ପ୍ରବଳ ଆଶଂକା ସତ୍ତ୍ୱେ ବି ପାଶ୍ଚାତ୍ୟ ରହସ୍ୟବାଦୀ ବିଚାର ମାନବର 'ଏଇ ଈଶ୍ୱର ପୁତ୍ର' ଓ 'ଦିବ୍ୟତ୍ୱରେ ଅଧିକାର' ପ୍ରସଙ୍ଗକୁ ପୂର୍ଣ୍ଣ ଉପେକ୍ଷା କରିପାରିନାହିଁ । ଅବଶ୍ୟ ପାଶ୍ଚାତ୍ୟଚେତନାରେ ଆତ୍ମା ଶବ୍ଦ ମୁଖ୍ୟତଃ ବ୍ୟକ୍ତି ସତ୍ତାର ଅହଂରୂପ (Individual self ବା ego) ପ୍ରତି ପ୍ରଯୁକ୍ତ, ଯାହା ଜୀବଭୂର ସକଳ ଦୋଷଦୁଷ୍ଟ । ତେଣୁ ଆତ୍ମା 'ଈଶ୍ୱରରୂପୀ'- ଏ ଅବବୋଧରେ କ୍ଷୁଦ୍ରସତ୍ତା ଈଶ୍ୱରଙ୍କ ସହ ଏକାସନରେ ଅଧିରୂଢ଼ ହେବା ଏକ ଅସ୍ପୃହଣୀୟ ଓ ଅକ୍ଷମଣୀୟ ଆସ୍ପର୍ଧାମୂଳକ ବିଚାର ରୂପେ ବିବେଚିତ ହୋଇଥାଏ । ଏଇ ସିଦ୍ଧାଂତ ଉପରେ ପ୍ରତିଷ୍ଠିତ ହିବ୍ରୁ ଧର୍ମ (Judaism) ରେ ରହସ୍ୟବାଦୀ ମିଳନତତ୍ତ୍ୱ ସମର୍ଥନ ପାଇନଥାଏ ଏବଂ ତତ୍ ସଂଭୂତ ଖ୍ରୀଷ୍ଟଧର୍ମ ଓ ଇସଲାମ ଚେତନାରେ ତେଣୁ ଅଭେଦତତ୍ତ୍ୱ ସ୍ୱାଭାବିକଭାବେ ବର୍ଜିତ । ତଥାପି ଏଇସବୁ ଧର୍ମ ଧାରଣାର ଅନ୍ତର୍ଭୁକ୍ତ ରହସ୍ୟବାଦୀ ବର୍ଣ୍ଣନାରେ ବହୁବାର ଅଭିନ୍ନ ଏକାତ୍ମକତା ଓ ସଂଯୋଗାନୁଭବର କଥାକହି ବହୁ ସାଧକ ଧର୍ମାନୁଶାସନ ତଥା ରାଜଦଣ୍ଡର ନିପୀଡ଼ନ ଲାଭ କରିଛନ୍ତି ।

ନିର୍ଦ୍ଦିଷ୍ଟ ଧର୍ମଗୋଷ୍ଠୀଭୁକ୍ତ ରହସ୍ୟବାଦୀ ସାଧକମାନଙ୍କର ସ୍ୱଧର୍ମ ପ୍ରତି ନିଷ୍ଠାପର ଆନୁଗତ୍ୟ ଏ ବିକ୍ଷୋଭର ଅନ୍ୟ ଏକ କାରଣ । ସ୍ୱଧର୍ମଦ୍ରୋହର ଭୟ, ପତନଆଶଂକା ଓ ପାପବୋଧ, ଦୈବୀଶାସ୍ତି ଓ ନରକଭୟ ପୁଣି ପାଶ୍ଚାତ୍ୟ- ଇତିହାସରେ ବ୍ୟକ୍ତିଗତ ଧର୍ମାନୁଚରଣରେ ରାଜଧର୍ମର ହସ୍ତକ୍ଷେପ ଯୁଗୀୟ ରହସ୍ୟ ସାଧକର ମନସ୍ତତ୍ତ୍ୱକୁ ପ୍ରଭାବିତ କରି ତାର ଚିଂତାଧାରା ଓ ବାଣୀରୂପକୁ ମଧ୍ୟ ନିର୍ଦ୍ଧାରିତ କରିଛି । ଅନ୍ତର୍ଲବ୍ଧ ଅନୁଭୂତି ଯେଉଁଠାରେ ଧର୍ମମତବିରୋଧୀ ତାହା ସେମାନଂଙ୍କର ବ୍ୟାବହାରିକ ମନସ୍ତତ୍ତ୍ୱର ସ୍ଥିର ଓ ସୁନିର୍ଦ୍ଦିଷ୍ଟ ସମର୍ଥନ ପାଇପାରିନାହିଁ ଏବଂ ସେମାନଂକ ଭାବପ୍ରକାଶର ଭଂଗୀ ଓ ଶବ୍ଦ ସଂଯୋଜନାକୁ ପୁନରୂପିତ କରିଛି । ତେଣୁ ଇହୁଦୀ, ଖ୍ରୀଷ୍ଟୀୟାନ ଓ ସୁଫୀ ରହସ୍ୟବାଦୀମାନେ ସଂଯୋଗାନୁଭୂତି ସମ୍ପର୍କରେ ନିମଜ୍ଜନାତ୍ମକ ବହୁଶବ୍ଦ (melts away, passes away, loses, immersion, ଫନା) ପ୍ରୟୋଗ କରିଥିଲେ ମଧ୍ୟ ଯଥେଷ୍ଟ ସତର୍କତାର ସହ ଏହା ଅଭେଦାତ୍ମକ ନୁହେ ବୋଲି ଯଥାସାଧ୍ୟ ଦୃଢ଼ୋକ୍ତି

5. "a nameless something which is great enough to be God and small enough to be me"
Ruysobroek : qt-, Mysticism—p-100

Digitized by PPRACHIN, SOA

କରିଥାନ୍ତି । ସେଣ୍ଟ ଅଗଷ୍ଟାଇନ୍ [6] ଓ ଅଲଗଜଲଙ୍କ ରଚନା [7] ଏହାର ନିଦର୍ଶନ । ସବୁ ସତ୍ତ୍ୱେ ବି ମିଷ୍ଟିକ୍‌ର ଉଚ୍ଚାରଣରେ ଅଭିନ୍ନତାର ଉପଲବ୍ଧି ଯେଉଁ ସଂକେତାତ୍ମକ ସ୍ୱୀକାରୋକ୍ତି [8] ଲାଭକରେ, ଏକ ନିରପେକ୍ଷ ବିଶ୍ଳେଷକର ଦୃଷ୍ଟିରେ ତାହା କୌତୁକପ୍ରଦ । ଇତିହାସରେ ରହସ୍ୟବାଦ ପ୍ରକୃତପକ୍ଷେ ସବୁବେଳେ ଅନୁଷ୍ଠାନିକ ଧର୍ମମତର (scholastic religion) ପ୍ରତିଦ୍ୱନ୍ଦ୍ୱୀଶୀଳ ଚେତନା ରୂପେ ହିଁ ଆତ୍ମପ୍ରକାଶ କରି ଆସିଛି । ତେବେ, ପ୍ରାଚ୍ୟ ଧର୍ମ ଧାରଣା ପ୍ରାୟ ତାର ରହସ୍ୟବାଦୀ ବିଶ୍ୱରର ଅଧ୍ୟାତ୍ମ ଅଭିମୁଖିତା ତଥା ସାଧନଚର୍ଯ୍ୟା ଉପରେ ଗଢି ଉଠିଥିବାରୁ ପ୍ରାଚ୍ୟ ରହସ୍ୟବାଦୀ ଭାବଧାରାରେ ଜୀବ ପରମ ସଂଯୋଗ ତତ୍ତ୍ୱ ମିଳନ ଓ ଅଭେଦ ଉଭୟ ସ୍ୱରୂପରେ ବା 'ଭେଦାଭେଦ ତତ୍ତ୍ୱ' ରୂପରେ ସ୍ୱାଭାବିକ ସମର୍ଥନ ଲାଭ କରିଛି ।

## ଦ୍ୱୈତତତ୍ତ୍ୱ ଓ ଭେଦାତ୍ମକ ସଂଯୋଗ—

ପ୍ରଚଳିତ ଧର୍ମଧାରାମାନଙ୍କ ଭିତରେ ପ୍ରାଚୀନ ହିବ୍ରୁ ଧର୍ମ ରହସ୍ୟବାଦର କୌଣସି ପ୍ରାସଙ୍ଗିକ ମୂଲ୍ୟ ଦିଏନାହିଁ । ଏହାକୁ ସୈଦ୍ଧାନ୍ତିକତତ୍ତ୍ୱ ରୂପେ ମଧ୍ୟ ଗ୍ରହଣ କରେନାହିଁ । ତଥାପି ବାଇବେଲର Old Testamentରେ ରହସ୍ୟବାଦୀ ଚେତନା ଅତି ସତର୍ପଣରେ ପରୋକ୍ଷ ପ୍ରକାଶ ଲାଭ କରିଛି । ଇହୁଦୀୟ 'କାବାଲିଷ୍ଟ' ସାଧନ ପନ୍ଥା ରହସ୍ୟବାଦୀ ଅନୁଚର୍ଯ୍ୟାକୁ ବିଧିବଦ୍ଧ ରୂପଦାନ କରିଛି । ମୁଖ୍ୟତଃ 'ସ୍ରଷ୍ଟା ଓ ସୃଷ୍ଟି'—ଦ୍ୱୈତଚେତନା ଉପରେ ଏ ଧର୍ମର ଭିତ୍ତିପତନ ହେତୁ ଏଥିରେ ସଂଯୋଗତତ୍ତ୍ୱର କୌଣସି ଆବଶ୍ୟକୀୟ ଗୁରୁତ୍ୱ ନାହିଁ । ତଥାପି ଏହି ଧର୍ମାବଲମ୍ବୀ ସାଧକ(ପ୍ରଫେଟ୍)ମାନଙ୍କର ଅନୁଭୂତି ବର୍ଣ୍ଣନାରେ ଈଶ୍ୱରଙ୍କର ସନ୍ନିଧି ଲାଭ ପ୍ରସଙ୍ଗର ଦୃଷ୍ଟାନ୍ତ ବିରଳ ନୁହେ । ଆଦ୍ୟ ଇହୁଦୀପ୍ରଫେଟ୍‌ମାନଙ୍କ ବର୍ଣ୍ଣନାରେ ଏକ ଦିବ୍ୟସିଂହାସନାରୂଢ଼ ମହୋଜ୍ଜ୍ୱଳ ଈଶ୍ୱରଙ୍କ ଅଭିମୁଖେ ମାନବାତ୍ମାର ଯାତ୍ରାମୂଳକ ଚିତ୍ର ପ୍ରଦର୍ଶିତ । ସିଂହାସନରେ ଈଶ୍ୱରଙ୍କୁ 'ସନ୍ଦର୍ଶନ' (vision) କରିବାର ଉପଲବ୍ଧି ଭିତରେ ଆତ୍ମାର ଈଶ୍ୱର ସାମୀପ୍ୟବୋଧ ଓ ତାଙ୍କର ଅବୋଧ ରହସ୍ୟ (mystery) ସମ୍ପର୍କରେ ବିସ୍ମୟ-ମୂଢ଼ତାର ପ୍ରସଙ୍ଗଟି ମଧ୍ୟ ଉତ୍ଥାପିତ । ସିଂହାସନାରୂଢ଼ ଦିବ୍ୟପୁରୁଷଙ୍କୁ ଦର୍ଶନ କରିବା ଅର୍ଥରେ ହିବ୍ରୁ ଭାଷାରେ ପ୍ରଯୁକ୍ତ କ୍ରିୟା ଶବ୍ଦଟି ହେଉଛି ' devekuth ', ଯାହାର ସେହି ଭାଷାରେ ଆଭିଧାନିକ ଅର୍ଥ ହେଉଛି 'ପ୍ରତ୍ୟକ୍ଷ କରିବା' ବା 'ସଲଗ୍ନହେବା' (direct contact or adhesion) । ହିବ୍ରୁ ରହସ୍ୟବାଦୀ ଚେତନା ସମ୍ପର୍କରେ ଆଲୋଚକ G.G. Scholem ଏହି 'ପ୍ରତ୍ୟକ୍ଷ ସମ୍ପର୍କ'ର ଅନୁଭବ ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରନ୍ତି, କାରଣ ତାଙ୍କ ମନ୍ତବ୍ୟ ଅନୁସାରେ 'ଈଶ୍ୱର ଓ ବ୍ୟକ୍ତିର ଏହି 'ପ୍ରତ୍ୟକ୍ଷ ସମ୍ପର୍କର' ଅନୁଭବ ଯେ ସବୁ ରହସ୍ୟୋପଲବ୍ଧିର ମୂଳଭୂତଚେତନା ଏହା ଅସ୍ୱୀକାର କରାଯାଇନପାରେ ।' ଏହି ଅନୁଭୂତିକୁ ଅବଶ୍ୟ ହିବ୍ରୁ ବିଶ୍ୱର ସ୍ପର୍ଶ ବା ସଙ୍ଗମ ବୋଲି ସ୍ୱୀକାର କରିବାକୁ କୁଣ୍ଠିତ । ସଂଯୋଗକୁ କେବଳ ସନ୍ଦର୍ଶନମୂଳକ ବୋଲି ସେ ପ୍ରତିପାଦନ କରେ । ଊର୍ଦ୍ଧ୍ୱାୟିତ ଚେତନାରେ ବ୍ୟକ୍ତିସତ୍ତା ଦିବ୍ୟୋଜ୍ଜ୍ୱଳ ଐଶ୍ୱରିକ ବିଭୂତିକୁ

---

6. Confessions–

7. Thya Utum, al Din–

8. Clothe me in thy selfhood. Thou will be that and I shall not be there at all."

Abuyazid, qut. by Stace—'Mysticism and Philosophy p–57.

Digitized by PPRACHIN, SOA

ଅବଲୋକନ କରିବାର (vision) ଏହା କେବଳ ସାମୀପ୍ୟ ବୋଧ । ଦର୍ଶନ ପ୍ରସଙ୍ଗରେ ଈଶ୍ୱରଙ୍କର ମହିମା ପ୍ରକଟନ, ଐଶ୍ୱର୍ଯ୍ୟ ବର୍ଣ୍ଣନା, ସପ୍ତଧାମ, ଉତ୍ତୁଂଗ ପ୍ରାସାଦ ଓ ଅତୁଳନୀୟ ସିଂହାସନର ବର୍ଣ୍ଣନା ହିବ୍ରୁ ଧର୍ମରେ 'Throne Mysticism' ନାମରେ ପରିଚିତ । ସମଗ୍ର ସେମିଟିକ୍ ଧର୍ମଧାରଣା ରହସ୍ୟବାଦୀ ସଂଯୋଗତତ୍ତ୍ୱର ସାନ୍ନିଧ୍ୟ ଚେତନାକୁ ଭ୍ରୂକୁଂଚିତ କରିଆସିଥିବାରୁ ତତ୍ପ୍ରଭାବିତ ପାଶ୍ଚାତ୍ୟ ଓ ଇସଲାମୀ ରହସ୍ୟବାଦ ସଂଯୋଗ ସମ୍ପର୍କରେ ନିମଜ୍ଜନ ବା ବିଲୁପ୍ତିବୋଧକ ଶବ୍ଦମାନଙ୍କର ଯଥେଚ୍ଛା ପ୍ରୟୋଗ ସତ୍ତ୍ୱେ ଏହାକୁ କେବଳ ଦ୍ୱୈତସ୍ଥିତିମୂଳକ ମିଳନ ଅର୍ଥରେ ହିଁ ଚିଂତା କରିଛି ।

ଖ୍ରୀଷ୍ଟୀୟାନ୍ ରହସ୍ୟଚେତନା ଆନୁଷ୍ଠାନିକ ଧର୍ମଧାରା ଓ ପୁରୋହିତ ଶାସନ (Clergy)ର କବଳିତ ହୋଇ ଯେଉଁ ଅନୁଭୂତିକୁ ମିଳନ ବୋଲି ପ୍ରକାଶ କରିଛି, ସେଠାରେ ଏକାତ୍ମକତାକୁ ପୂର୍ଣ୍ଣ ସ୍ୱୀକାର କରିପାରିନାହିଁ । ସେଣ୍ଟ୍ ଟେରେସା ଏ ମିଳନାନୁଭୂତିରେ ଜୀବ ଓ ଈଶ୍ୱରଙ୍କ ସ୍ଥିତିକୁ ସ୍ପଂଜ ଓ ପାଣିର ସମ୍ପର୍କ ସହ ତୁଳନା କରିଛନ୍ତି ।[୯] ଏକହାର୍ଟଙ୍କ 'ଈଶ୍ୱର ଓ ମୁଁ ଏକ'[୧୦] ସ୍ୱୀକାରୋକ୍ତିରେ ଏହି ଚେତନାର ସମର୍ଥନ ରହିଛି । ତଥାପି ପୂର୍ଣ୍ଣ 'ଆତ୍ମବିଲୟକୁ ପାଶ୍ଚାତ୍ୟମାନସ ଦୃଢ଼ବିରୋଧ କରେ ।[୧୧]

Ruysobroek ଏକ ସୁଂଦର କାବ୍ୟୋପମା ଭିତରେ ଏହି ମିଳନଚେତନାର ରମଣୀୟ ରୂପଚିତ୍ର ପ୍ରଦାନ କରନ୍ତି । 'ସୂର୍ଯ୍ୟର ଉତ୍ତାପ ଓ ଉଜ୍ଜ୍ୱଳତା ଯେପରି ପୃଥିବୀକୁ ଆଚ୍ଛାଦିତ କରି ରହିଥାଏ, ଅଗ୍ନି ଯେପରି ଲୌହ ପିଣ୍ଡରେ ସଂଗୃହୀତ ହୋଇଗଲେ ଲୌହ ଅଗ୍ନି ବର୍ଣ୍ଣ ଧାରଣ କରେ, ଏହା ସତ୍ତ୍ୱେ ବି ଅଗ୍ନିର ଅଗ୍ନିତ୍ୱ ଓ ଲୌହର ଲୌହତ୍ୱ ଅକ୍ଷୁଣ୍ଣ ଥାଏ,—ସେହିପରି ଈଶ୍ୱର ଓ ଜୀବ ସଂଯୋଗାବସ୍ଥାରେ ମଧ୍ୟ ଆପଣାର ସ୍ୱତଂତ୍ରତାକୁ ପୂର୍ଣ୍ଣଭାବେ କଦାପି ହରାଇ ବସନ୍ତି ନାହିଁ । ସ୍ୱପରିଚୟର ଅନିବାର୍ଯ୍ୟତାରେ[୧୨] ହିଁ ରହସ୍ୟବାଦୀ ସଂଯୋଗ ସଂଘଟିତ ହୋଇଥାଏ ।

ସୂଫୀ ଦର୍ଶନରେ 'ଈଶ୍ୱରଙ୍କଠାରେ କୌଣସି ଦ୍ୱୈତତା ନାହିଁ' । 'ଈଶ୍ୱରଙ୍କଠାରେ ପୂର୍ଣ୍ଣ ମଜ୍ଜନ ସୂଫୀ ସାଧନାର ଚରମ ପରିଣତି',[୧୩] ପ୍ରଭୃତି ସିଦ୍ଧାନ୍ତ ସତ୍ତ୍ୱେ ଦ୍ୱୈତବାଦୀ ଇସଲାମୀୟଧର୍ମାନୁଗତ ସତର୍କ ରହସ୍ୟବାଦୀ ଦର୍ଶନ ଏ ଏକାତ୍ମକତାକୁ ଭୟଂକର ପାପ ଓ ଆତ୍ମମଗ୍ନକାଳୀନ ଭାବବିହ୍ୱଳତାକୁ ନିର୍ବୋଧର ପ୍ରଳାପ ବୋଲି ଆକ୍ଷେପ କରିବାର ଦୃଷ୍ଟାଂତ ବିରଳ ନୁହେଁ । ତଥାପି ସୂଫୀ ସାଧନାର ଚରମାବସ୍ଥା 'ଫନା' ଆତ୍ମବିଲୟ ଓ ଈଶ୍ୱରଙ୍କଠାରେ ପୂର୍ଣ୍ଣମଜ୍ଜନର ଅଭେଦାତ୍ମକତାକୁ ଅସ୍ୱୀକାର କରିପାରେନାହିଁ ।[୧୪]

---

9. I understood how our Lord was in all things, and He was in the soul, and the illustration of a sponge filled with water was suggested to me."

St. Teresa : qt– 'Mysticism' (Underhill)–p-100.

10. "God and I are One'–Eckhart

qt.–S. T. Stace : Mysticism and Philosophy'–p-224.

11. ' In this merging itself in God the spirit passes away and yet not wholly."

T. E. Knox. 'Life of Henry Suso'–p 56.

12. ' His being remains, but in another form, in another glory, and in another power."

Henry Suso–(Book of Truth) qt–Stace-'Mysticism and Philosophy'—p 424

13. 'In God, there is no duality..the end of sufism is total absorption in God.'

Stace—Mysticism and Philosophy'–p 106,

14. In that presence I and you and we' and he become one'· Shabistan

qt–Stace Mysticism and Philosophy–p–106

Digitized by PPRACHIN, SOA

**ଅଭେଦତତ୍ତ୍ୱ**

"ସ ଯୋ ହ ବୈ ତତ୍ ପରମଂ ବ୍ରହ୍ମବେଦ ।
ବ୍ରହ୍ମୈବ ଭବତି ନାସ୍ୟା ବ୍ରହ୍ମବିଦ୍ କୁଲେ ଭବତି ॥ [୧୫]

( ସେଇ ଯିଏ ପରଂବ୍ରହ୍ମଙ୍କୁ ଜାଣିଛି, ସ୍ୱୟଂ ବ୍ରହ୍ମ ହୋଇଯାଇଛି । )

ଅଭେଦବାଦୀ ସିଦ୍ଧାଂତରେ ଜୀବ ପ୍ରତ୍ୟକ୍ଷ ଅନୁଭୂତିରେ ଦିବ୍ୟସଂସର୍ଗ ଲାଭକଲେ ସତ୍ତାର ସ୍ୱତଂନ୍ତ୍ର ପରିଚୟ ବିଲୁପ୍ତ ହୋଇଯାଏ । [୧୬] ଜନ୍ମମରଣଖଣ୍ଡିତ ସତ୍ତାର ଅଜନ୍ମାମର ଶାଶ୍ୱତ ଚେତନା ସହିତ ଏକାତ୍ମକତା ଘଟିଲେ ଆଉ ଦ୍ୱୈତବୋଧ ରହେନାହିଁ । ବ୍ୟକ୍ତି ବିଶ୍ୱାତ୍ମିତ ହୋଇଯାଏ । [୧୭]

ଆତ୍ମାକୁ ଆତ୍ମପ୍ରତିଷ୍ଠାର ସ୍ୱାଧିଷ୍ଠାନ ବୋଲି ଜାଣିବା ପାଇଁ ଆତ୍ମଚେତନା ପାର୍ଥିବବୋଧକୁ ଅତିକ୍ରମ କରିବାକୁ ପଡ଼େ । ଅସୀମକୁ ସୀମା ଅବରୁଦ୍ଧ ହୋଇପାରେନାହିଁ ଏବଂ ସତ୍ତା ସ୍ୱସୀମା ଅତିକ୍ରମର ଶକ୍ତି ଲାଭକରିଲେ ହିଁ ଅସୀମର ଅବଧାରଣା କରିପାରେ । ରହସ୍ୟବାଦୀ ପରିଭାଷାରେ ଏହା ସତ୍ତାର 'ସ୍ୱାତିକ୍ରମ' ଓ 'ସ୍ୱପ୍ରସାରଣା' ଶକ୍ତି (trans-subjectivity) । ଅର୍ଥାତ୍ ଆପଣାର ସୀମାବୋଧକୁ ଅତିକ୍ରମ କରିବାର ଶକ୍ତି ସତ୍ତା ଭିତରେ ସ୍ୱାଭାବିକଜନିତ । ଏହାପରେ ସତ୍ତା ଆପଣାର ଅସୀମତାକୁ ଜାଣେ ଏବଂ ଏହି ଜାଣିବା ହିଁ ଶେଷଜ୍ଞାନ ବୋଲି ଜାଣେ । ଏହି ପରିପ୍ରେକ୍ଷୀରେ ହିଁ ଆତ୍ମତତ୍ତ୍ୱମୂଳକ 'ଆତ୍ମନ ଆତ୍ମନା ଆତ୍ମନଃ-ଦ୍ୱା Allain ଙ୍କ "to know is to know that one knows- ଉକ୍ତିମାନ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇପଡ଼ନ୍ତି ।

ନବ୍ୟେଲା ଦର୍ଶନର ଏ ଶୁଦ୍ଧ ଅଭେଦବାଦଠାରୁ କିନ୍ତୁ ରହସ୍ୟବାଦୀ ଅଦ୍ୱୈତାନୁଭବ ଭିନ୍ନ ରୂପଚେତନାଶ୍ରିତ ବୋଲି ପ୍ରତିପାଦିତ ହୋଇଥାଏ । ମିଷ୍ଟିକର ମତରେ ରହସ୍ୟାତ୍ମକ ଅଭିଜ୍ଞାନରେ ବିଲୁପ୍ତି, ନିମଜ୍ଜନ, ବିଗଳିତ ପ୍ରଭୃତି ଶବ୍ଦ ଅସ୍ତିତ୍ୱର ବିଲୁପ୍ତି ବା ବିନାଶକୁ ବୁଝାଏ ନାହିଁ । ଭିନ୍ନସ୍ଥିତିର ଚେତନାକୁ ହିଁ ଲୋପ କରେ । ଏ ସଂପର୍କରେ ଶ୍ରୀ ସ୍କୋଲେମ (Mr. Scholem) ଆଲୋଚନା କରି କହନ୍ତି ଯେ କେତେ ବାଧାବିଘ୍ନର ସୀମା ବ୍ୟକ୍ତିସତ୍ତାକୁ ବିଶ୍ୱଜୀବନ ପ୍ରବାହଠାରୁ ବିଚ୍ୟୁତ କରି ରଖେ । ତନ୍ତବଂଧନ ସଦୃଶ ଏହି ଅବରୋଧ ଆତ୍ମାକୁ ତାର ପରିପାର୍ଶ୍ୱସ୍ଥ ଅନନ୍ତସ୍ରୋତାଧାରଠାରୁ ବିଚ୍ଛିନ୍ନ କରିଦିଏ । ରହସ୍ୟାନୁଭବରେ ଏହି ଅବରୋଧକାରୀ ଚେତନା ଅନ୍ତର୍ହିତ ହୋଇଯିବାରୁ ବ୍ୟକ୍ତିସତ୍ତା ବ୍ୟାପ୍ତଚେତନାରେ ସମ୍ମିଶ୍ରିତ ହୋଇଯାଏ । ଅନ୍ତରାତ୍ମା ଓ ବହିର୍ବିଶ୍ୱ ଭିନ୍ନ ସ୍ଥିତି ସତ୍ତ୍ୱେ ଅସ୍ତିତ୍ୱ ସ୍ୱରୂପରେ ଏକ ଓ ଅଭିନ୍ନ ପ୍ରତୀତ ହୁଅନ୍ତି ।"

---

୧୫. ମୁଣ୍ଡକ ୩/୨/୯

**16.** "Beholder was one with beheld, he is become the unity. having no diversity either in relation to himself or anything else'

Plotinus : Enneads. Ch. IX

**17.** a state in which the soul becomes one with the universal, the Eternal and the Real'–

The Creed of Buddha–p 227

Digitized by PPRACHIN, SOA

ଜେନ୍ (zen) ରହସ୍ୟସାଧନାର ପ୍ରଧାନ ପ୍ରବକ୍ତା ଡ଼.ଟି. ସୁଜୁକୀ ଜେନ ଚରମାବସ୍ଥାର ଅନୁଭୂତ ବିଶ୍ଳେଷଣ କରି କୁହନ୍ତି' ସାତୋରି (ଦିବ୍ୟାନୁଭବ) କାଳରେ ମୋର ବ୍ୟକ୍ତିତ୍ୱକୁ ଦୃଢ଼ଭାବେ କୋଷବଦ୍ଧ କରି ରଖିଥିବା 'ଅହଂ'ର ଆବରଣଟି ବିସ୍ଫୋରିତ ହୋଇଯାଏ । ଏକଥା ନୁହେ ଯେ, ମୁଁ ମୋଠାରୁ ଅଧିକତ୍ତ ବା ବୃହତ୍ତର କୌଣସି ଭିନ୍ନସତ୍ତା ସହ ସଂଯୁକ୍ତ କିଂବା ତାର ଅନ୍ତର୍ଗତ ହୋଇଯାଏ । ମାତ୍ର ମୋର ଦୃଢ଼ବଦ୍ଧ ବ୍ୟକ୍ତିଚେତନା ଯାହା ଏ ଯାବତ୍ ସକଳ ଅପରସତ୍ତାଠାରୁ ନିର୍ଦ୍ଦିଷ୍ଟଭାବେ ବିଚ୍ଛିନ୍ନ ଓ ସ୍ୱତଂତ୍ର ସ୍ୱରୂପରେ ବିଦ୍ୟମାନ ଥିଲା, ତାହା ସେହି ଅଭ୍ୟସ୍ତ ଚିରାଚରିତତାଠାରୁ ଭିନ୍ନ ଏକ ଅନିର୍ବଚନୀୟତାରେ ବିଗଳିତ ହୋଇଗଲା ।[୧୮]

ଅତଏବ ବ୍ୟକ୍ତି ପରିଚୟର ସଙ୍କୋଚକାରୀ ଅବରୋଧ ଅହଂ ବା ବୌଦ୍ଧ ଦର୍ଶନର 'ଅହଂକାରକ'ର (ପାଶ୍ଚାତ୍ୟ ଦର୍ଶନରେ self) ଅଂତର୍ଧାନ ନିଜନିଜ ଭୂମାନୁଭୂତି ହିଁ ଏ ରହସ୍ୟୋପଲବ୍ଧିର ପ୍ରତିପାଦିତ ସିଦ୍ଧାନ୍ତ । ରମଣମହର୍ଷି ଏଇ ଉପଲବ୍ଧିକୁ ସମୁଦ୍ରରେ ବୁଦ୍‌ବୁଦ୍‌ର ଉତ୍‌ଥାନ ଓ ନିମଜ୍ଜନ ରୂପ ପ୍ରତୀକରେ ଅଭିବ୍ୟକ୍ତି କରିଛନ୍ତି । ଧର୍ମ ଓ ଦର୍ଶନର ତତ୍ତ୍ୱବିଶ୍ଳେଷଣନିରପେକ୍ଷରେ ମଧ୍ୟ ଏଇ ଉପଲବ୍ଧି ଆତ୍ମ-ନିମଜ୍ଜନର ରହସ୍ୟାତ୍ମକତା ପ୍ରତିପାଦନ କରିପାରେ । ଆତ୍ମା ବା ଈଶ୍ୱରଙ୍କ ନାମୋଲ୍ଲେଖ ପର୍ଯ୍ୟନ୍ତ ନକରି ଅସୀମ ବିସ୍ତୃତିରେ ନିଜକୁ ବିଲୀୟମାନ ଦେଖିବା ପ୍ରସଙ୍ଗ ରହସ୍ୟବାଦୀ ରଚନାରେ ଦୁର୍ଲଭ ନୁହେ । ଟେନିସନ୍ ଏହି ଅର୍ଥରେ ଅସୀମସତ୍ତା (boundless being) ବୋଲି ଉଲ୍ଲେଖ କରିଛନ୍ତି । ନିରୀଶ୍ୱରବାଦୀ ବର୍ଣ୍ଣନାରେ ଏ ରୂପଚିତ୍ର ପର୍ଯ୍ୟାପ୍ତ । ଏଇ ଉଦ୍ଦେଶ୍ୟରେ ସମୁଦ୍ର, ଅଂଧକାର, ଅତଳତା, ଶୂନ୍ୟତା, ଗହ୍ୱର, ନିର୍ଜନତା, ଶବ୍ଦ ନିର୍ବଂଧନ ଓ ନିଃସୀମତାର ଭାବଦ୍ୟୋତକ ରୂପେ ପ୍ରଯୁକ୍ତ ହୋଇଥାଆନ୍ତି । ଏମାନେ ନିଚୁକ୍ତି ଷ୍ଟ ବା ନିଖୋଜ ହୋଇଯିବାର ରୂପଚେତନା ବହନ କରିଥାନ୍ତି ।[୧୯] ଭାବବାଦୀ ରହସ୍ୟଚେତନା ଏ ଅନୁଭବକୁ ପ୍ରିୟସଂଗମକାଳୀନ ଆତ୍ମଲୀନ ବିହ୍ୱଳତା ରୂପେ ସୂଚିତ କରିଥାଏ । ରହସ୍ୟବାଦୀ ଚରମାନୁଭୂତିରେ ଦିବ୍ୟସତ୍ତା ସହ ବ୍ୟକ୍ତିସତ୍ତାର ସଂଯୋଗ ସ୍ୱରୂପଟି କେବଳ ମିଳନାତ୍ମକ ବା କେବଳ ଅଭିନ୍ନାତ୍ମକ, ଏ ପ୍ରସଙ୍ଗରେ ମତଭିନ୍ନତାର ଅବକାଶ ସତ୍ତ୍ୱେ ଏହା ସର୍ବସ୍ୱୀକୃତ ଯେ, ଏହି ଚେତନାରେ ବ୍ୟକ୍ତି ନିଜକୁ ସଂଯୁକ୍ତ/ ବିଗଳିତ/ ନିମଜ୍ଜିତ/ ବିଲୁପ୍ତ ବୋଲି ଅନୁଭବ କରୁଥିଲେ ବି ସେ ଅନୁଭବ କ୍ରିୟାକୁ ଏବଂ ଅନୁଭବକାରୀ ରୂପେ ଆପଣାକୁ ବିସ୍ମୃତ ହୋଇନଥାଏ । ପୁଣି ଆନଂଦ, ଶାଂତି, ବିସ୍ମୃତି ଆନୁସଙ୍ଗିକ ଅନୁଭବଚେତନାରେ ମଧ୍ୟ ସେ ଜାଗ୍ରତ ରହିଥାଏ ।

---

18. "The individual shell in which my personality is so solidly encased exploded at the moment of Satori (zen word for enlightened experience). Not necessarily that I get united with a greater being than myself or absorbed by it, but my individuality which I found rigidly held together and definitely separate from other individual existences.. melts away into something indescribable, something which is of a quite different order from what I am accustomed to."

"Selected writings by D. T. Suzuki"—(Ed-William Barrett)—P-105

19. "The abysmall waylessness of God is so dark and so unconditioned that it swallows up within itself every Divine way and activity and all the attributes of the person within the rich compass of the essential unity. This is the dark silence in which all lovers loose themselves."

Ruysobroek-qt-Stace-Mysticism and Philosophy-p 97

Digitized by PPRACHIN, SOA

ବିଶ୍ୱର ସମସ୍ତ ଚେତନା ମୂଳରେ 'ଏକ ମଧ୍ୟରେ ଅନେକ' ଓ 'ଅନେକ ମଧ୍ୟରେ ଏକ' ଏଇ ଯେ ନିୟମ ବିଦ୍ୟମାନ, ବୈଚିତ୍ର୍ୟରେ ସଂହତର ସେଇ ଅବବୋଧ ହେଉଛି ଚେତନାର ସର୍ବୋତ୍ତମ ଉପଲବ୍ଧି ।[20] ସବୁ 'ବହୁ' 'ଏକ'ରୂପେ ସ୍ୱତଂତ୍ର; କେହି ପ୍ରଧାନ ବା ଅପ୍ରଧାନ ବି ନୁହନ୍ତି;ଅର୍ଥାତ୍ ଐକ୍ୟର ଗ୍ରଂଥନ ସୂତ୍ରରେ ଏକ 'ପ୍ରଧାନ' ଓ ଅନେକ 'ଅପ୍ରଧାନ'ଙ୍କ ସମାହାର—ଏପରି ମୂଲ୍ୟ ନିର୍ଦ୍ଧାରଣ ମଧ୍ୟ ସମ୍ଭବ ନୁହେ । ପ୍ରତ୍ୟେକ ଏକକ, ଅହଂମାନ୍ୟ, ଅନ୍ତଃସାରମହିମ୍ନାନ୍ ଏବଂ ପରମ ସହ ଅନ୍ୱିତ ହେବାର ସମ୍ଭାବନା ସାମର୍ଥ୍ୟଯୁକ୍ତ ମାଳାର ପ୍ରତ୍ୟେକ ସ୍ୱତଂତ୍ର ପୁଷ୍ପ ସୂତ୍ର ଓ ଅପର ପୁଷ୍ପ ସହ ଐକ୍ୟ ଗ୍ରଥିତ ହୋଇ ରହିଥିବାପରି, ଏଇ ଐକ୍ୟାନୁଭୂତି ସମ୍ପୂର୍ଣ ବିରୋଧାତ୍ମକ ଚେତନାସକଳଙ୍କୁ ନିଜ ଅଂଗୀଭୂତ କରି ରଖିଥାଏ ।[21] ପାଶ୍ଚାତ୍ୟ ଧର୍ମବିଜ୍ଞର ଏଇ ଚେତନାଭୂମିରେ ବହୁ-ଦେବ ବାଦ (pantheism) ସମସ୍ୟାର ସମ୍ମୁଖୀନ ହୁଏ, ଯାହା ତାର ଅପରିହାର୍ଯ୍ୟ ଦ୍ୱୈତବାଦୀ ଅଧ୍ୟାତ୍ମ-ସିଦ୍ଧାଂତର ସମ୍ପୂର୍ଣ ବିପରୀତକୋଟୀରେ ଅବସ୍ଥିତ । ପୁଣି ପ୍ରାଚ୍ୟ ଧର୍ମଧାରଣାର ଅଭେଦ ସିଦ୍ଧାନ୍ତ ସକଳ ବର୍ଜିତ 'ଏକ' କୁ ଏକମାତ୍ର ସତ୍ୟ ରୂପେ ଗ୍ରହଣ କରି ସୃଷ୍ଟିକୁ ଅସ୍ୱୀକାର କରିଦିଏ । ଉଭୟ ଭ୍ରାଂତିରେ ରହସ୍ୟବାଦୀ ଚରମାନୁଭୂତି ତାର ଭିନ୍ନାଭିନ୍ନ ସଂଯୋଗଜନିତ ତାତ୍ପର୍ଯ୍ୟ ବୈଶିଷ୍ଟ୍ୟ ହରାଇ ଏକ ଅସମ୍ଭବ୍ୟ ଅର୍ଥହୀନ ଉଦ୍ଭଟତାର ଦୁର୍ଭୋଗ ପ୍ରାପ୍ତହୁଏ ।

ଅନାମଧେୟ ବାଉଲକବିର ସେଇ ପ୍ରଖ୍ୟାତ ସଂଗୀତ "ଟଲେ ଜୀବ ଅଟଲେ ଈଶ୍ୱର/ ତାର ମଧ୍ୟ ଖେଲକରେ ରସିକ ଶେଖର" ରେ ଏଇ ସଂଯୋଗତତ୍ତ୍ୱ ଏକ ଅପୂର୍ବ କାବ୍ୟର ଉଦ୍‌ବୋଧନା ପ୍ରାପ୍ତ ହୋଇଛି । ଐକ୍ୟାନୁଭୂତିରେ ଜୀବ ପରମ-ଲୀଳାବିଳାସ ରସମଧୁ ସନ୍ଧାନୀ ସେଇ ରସିକଶେଖରଟି ଯେ ସ୍ୱୟଂ ଏକ ମିଷ୍ଟିକ୍, ଏବଂ ଟଳିବାର ଦୁର୍ବଳତା ଓ ଅଟଳତାର ନିର୍ବିଚଳତାଯୁକ୍ତ ଆତ୍ମରମଣ ସ୍ରଷ୍ଟା ପୁରୁଷର ଏଇ 'ଏକ ଅନେକ ମୂଳକ' ଆତ୍ମରତମତ୍ତତା ଯେ ଏକ ନିତ୍ୟ ମିଷ୍ଟିକ୍ ବିଳାସ ତାହା ଦିବ୍ୟାନଂଦ ପ୍ରାପ୍ତ ସାଧକମାନେଇ ଉପଲବ୍ଧି କରିଥାଏ ।

**ଦେଶ କାଳଅବବୋଧ—**

ରହସ୍ୟାନୁଭୂତିର ଅନ୍ୟତମ ବିଶିଷ୍ଟ ଲକ୍ଷଣଟି ଦେଶକାଳବୋଧ ସମ୍ପର୍କିତ । ଏହା ଦେଶକାଳର ଅନବଚ୍ଛିନ୍ନତା ଓ ଦେଶକାଳାତୀତତା— ଉଭୟ ଅବସ୍ଥାକୁ ଇଂଗିତ କରେ । ସ୍ଥାନକାଳବୋଧ ଚେତନା ସୀମାରକୋଟିରୁ ସଂଜାତ । ଏ ଦୃଶ୍ୟମାନ ଜଗତ ସ୍ଥାନ ଓ ସମୟର ନିର୍ଦ୍ଦିଷ୍ଟ ସୃଷ୍ଟିରୂପ । ମାନବଚେତନାର ଯାବତୀୟ ବିଶ୍ୱରବୋଧ ସ୍ୱାଭାବିକଭାବେ ଏଇ ଦେଶକାଳଜ୍ଞାନରେ ନିର୍ଦ୍ଦିଷ୍ଟ । ପକ୍ଷାଂତରେ ଅନାଦ୍ୟଂତ ଅବବୋଧ ମଧ୍ୟ ରହସ୍ୟାନୁଭୂତିର ଏକ ଅପରିହାର୍ଯ୍ୟ ବିଭବ ।

ବହିର୍ମୁଖୀ ରହସ୍ୟଚେତନାରେ ବ୍ୟାପ୍ତ ପୂର୍ଣ୍ଣାଲୋଚିତ ଐକ୍ୟବୋଧକୁ ଜଗତ୍‌ମୟ ପରିବ୍ୟାପ୍ତ ଦେଖେ । ସୃଷ୍ଟିସ୍ୱରୂପରେ ନିତ୍ୟନୂତନ ଅଥଚ ସେଇ ସୂତ୍ରରେ ହିଁ ଚିରବିଦ୍ୟମାନ ତ୍ରିକାଳବୋଧକ

20 'Each being contained within itself the whole intelligent world. Therefore all is everywhere, each is there and all is each.

Plotinus– qt. 'Mysticism East and West' (R.Otto)-p–77

21. "Black doesnot cease to be black nor white white. But black is white and white is black. The opposites co–inside without ceasing to be what they are in themselves."

Rudolf Otto : 'Mysticism East and West'–p—12

Digitized by PPRACHIN, SOA

ଶାଶ୍ୱତ ଚେତନାକୁ ସେ ଅବ୍ୟାହତ ଅନବଚ୍ଛିନ୍ନ ବୋଲି ଜାଣିବାକୁ ପାଏ । ଆଦ୍ୟତମ ଓ ଅଦ୍ୟତନର ଏ ଅଭାବନୀୟ ରୂପାନୁଭୂତିରେ ଅନାଦି ଅନନ୍ତ ଦେଶକାଳାତୀତତା ଏକ ମୁହୂର୍ତ୍ତର ସ୍ଥିରବିନ୍ଦୁରେ ହିଁ ନିଷ୍କ୍ରିୟ କରାୟତ୍ତ ହୋଇଯାଏ । [22]

ସେହିପରି ଅନ୍ତର୍ମୁଖୀ ରହସ୍ୟଚେତନାରେ ବ୍ୟକ୍ତି ପୂର୍ବୋକ୍ତ ସର୍ବାତୀତ 'ଏକ'କୁ ଆଉ ଦେଶକାଳାଧୀନ ନିର୍ଦ୍ଦିଷ୍ଟ ନାମରୂପ ଦେହଲୀବଦ୍ଧ ବୋଲି ଦେଖିପାରେନାହିଁ । ଜନ୍ମ ଓ ମୃତ୍ୟୁ ଯେ ଏକ ସ୍ଥାନକାଳସାପେକ୍ଷ ପ୍ରକ୍ରିୟା,-ନିଜର କାଳଜୟୀ ଅମରତ୍ୱକୁ ଆବିଷ୍କାର କରିବାପରେ ହିଁ ଏକସ୍ୱରୂପ ନିତ୍ୟୋହଂ ଆତ୍ମା ସକଳ ସୀମାବନ୍ଧନ ମୁକ୍ତ ହୁଏ । ଏଇ ଚରୁଶ୍ଚୋଟି ବିନିର୍ମୁକ୍ତ ଆତ୍ମାହିଁ ସର୍ବାତିକ୍ରାନ୍ତ ଅଚିନ୍ତ୍ୟ ରୂପେ ସମ୍ବୋଧିତ ହୋଇଥାଏ ।

ଭୌତିକ ଜଗତରେ ସୃଷ୍ଟି ଓ ବିଲୟର ରୂପାନ୍ତର ଭିତରେ ନିତ୍ୟନିତ୍ୟ ନୂତନରୂପରେ ପ୍ରତିଭାତ ହୋଇଥାଏ । ଏ ପ୍ରକାର ଅବବୋଧର ମୁଖ୍ୟ କାରଣ ବ୍ୟକ୍ତିର ଇନ୍ଦ୍ରିୟାଶ୍ରୟୀ ଚେତନା । ତାର ବହିରିନ୍ଦ୍ରିୟ ଓ ଅନ୍ତରେନ୍ଦ୍ରିୟ ଶାଶ୍ୱତ ଅବଧାରଣ ସାମର୍ଥ୍ୟଯୁକ୍ତ ନୁହନ୍ତି ଏବଂ ଭେଦ ବୁଦ୍ଧିରେ ହିଁ ବସ୍ତୁ ଜଗତକୁ ରୂପନିବଦ୍ଧ କରି ଦେଖିବାରେ ଅଭ୍ୟସ୍ତ । କିନ୍ତୁ ପୂର୍ଣ୍ଣତାର ଉପଲବ୍ଧି ଏଇ ଖଣ୍ଡଚେତନାର ଅତିକ୍ରମଣ ପରେ ହିଁ ସମ୍ଭବ । ରହସ୍ୟାନୁଭବରେ ବ୍ୟକ୍ତିସତ୍ତାର ଭୂମାବୋଧ ଏ ଅତିକ୍ରମଣକୁ 'ସର୍ବଗତ' ଓ ସର୍ବାତିରିକ୍ତ' ଉଭୟ ରୂପରେ ଲାଭକରିଥାଏ । ଏହି ପ୍ରାପ୍ତି ହିଁ ଋଷି ମନୀଷାର ସ୍ୱୟମ୍ଭୂ ପରିଭୂ ସନ୍ଦର୍ଶନ ।

ଯେପରି ମହାପ୍ରବାହର ବିସ୍ତୃତ ବକ୍ଷରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଓ ସମୟରେ କ୍ଷୁଦ୍ର ତରଙ୍ଗଟିଏ ଉତ୍ଥିତ ହୋଇଥାଏ, ଯିଏ କି ସମଗ୍ର ପ୍ରବାହର ଅଂଶ ବିଶେଷ ଅଥଚ ନିଜର ସ୍ୱତନ୍ତ୍ର ସ୍ଥିତିରୂପରେ ସେ ପ୍ରବାହର ବ୍ୟାପ୍ତି ଓ ଗଭୀରତାର ସମୁଦାୟତାକୁ ଧାରଣ କରିପାରେ ନାହିଁ, ମାତ୍ର ବିଲୟକାଳରେ ସମଗ୍ର ଜଳାଧାର ସହ ଅବିଚ୍ଛିନ୍ନତାକୁ ପୁନଃପ୍ରାପ୍ତ ହୁଏ,—ସୃଷ୍ଟି ସେହିପରି ଅନନ୍ତର ସୀମାହୀନ ପ୍ରସାର ବକ୍ଷରେ ନିତ୍ୟୋତ୍ଥିତ ଓ ନିମଜ୍ଜିତ ହୋଇଥାଏ । ଶାଶ୍ୱତର ମହାପ୍ରବାହରେ ସମ୍ମିଳିତ ହୋଇଯିବାପରେ ସତ୍ତା ମୁହୂର୍ତ୍ତକୁ ଅତିକ୍ରମ କରି ଚିରନ୍ତନତାରେ ସଙ୍ଗୀବିତ ରହିଥାଏ ।[୨୩] ଚେତନାର ଚରମ ଉତ୍କ୍ରାନ୍ତିରେ ଦେଶକାଳ ଅବରୋଧ ଓ ଜନ୍ମମୃତ୍ୟୁର ଶୃଙ୍ଖଳା ଅନ୍ତର୍ହିତ ହୋଇଥାଏ । ଶରୀର ଓ ପ୍ରାଣମନ ପ୍ରଭୃତି ତ୍ରିତତ୍ତ୍ୱକ ରୂପାନ୍ତର ସତ୍ତ୍ୱେ ବି ସୃଷ୍ଟି ଓ ବିଲୟରେ ସତ୍ତାର ଅପରିବର୍ତ୍ତନୀୟତା ରହସ୍ୟାନୁଭୂତିର ଏକ ଅପରିହାର୍ଯ୍ୟ ପ୍ରତିପାଦିତ ସିଦ୍ଧାନ୍ତ ।

## ପ୍ରତ୍ୟକ୍ଷଣବୋଧ ଓ ପ୍ରଜ୍ଞାନ—(ସ୍ୱପ୍ନ) ଆଲୋକାନୁଭୂତି

ବୈଦିକ ଋକ 'ଦ୍ୱା ସୁପର୍ଣ୍ଣା......'ରେ ବର୍ଣ୍ଣିତ ଆତ୍ମ ପରମାତ୍ମା ସମ୍ବନ୍ଧୀ ପକ୍ଷୀ-ପ୍ରତୀକ ଚିତ୍ରଟି ଜନ୍ମାନ୍ଧ ଋଷି ଦୀର୍ଘତମାଙ୍କ ଦ୍ୱାରା ସ୍ପଷ୍ଟ ପ୍ରତ୍ୟକ୍ଷୀଭୂତ ହୋଇଥିଲି ଏବଂ ଅନ୍ତତଃ ତିନିଥର ସେ ଉପସ୍ଥାପନା କରୁଥିବା ସତ୍ୟର ଦର୍ଶନ ଲାଭକରିଛନ୍ତି ବୋଲି ତାଙ୍କର ସ୍ୱୀକାରୋକ୍ତି ବେଦରେ ସୂଚିତ

22. "All time is one body, space, a single look." Sir Aurobindo : Savitri—p 741

୨୩ "ଭିଂଗିସ୍ତେ ଗେଲମ ଦେହେର ବେଡ଼ା ପେରିଯ୍ତେ ଗେଲମ କାଲେର ସୀମା । "
ରବୀନ୍ଦ୍ରନାଥ - 'ଶ୍ୟାମଲୀ' (ସଂଚୟିତା)

Digitized by PPRACHIN, SOA

ଅଛି ।[୨୪] ବୈଦିକ ମଂତ୍ରମାନ 'ପ୍ରତ୍ୟକ୍ଷଶ୍ରୁତ'ଓ ମନ୍ତ୍ରର ଉପଲବ୍ଧ ସତ୍ୟ ସାକ୍ଷାତଦୃଷ୍ଟ ବୋଲି ପରଂପରାର ଦୃଢ଼ ଦାବୀ ରହିଛି । ବେଦର ପରିଭାଷା ଶ୍ରୁତ ଆତ୍ମାଦ୍ୱାରା ଶ୍ରୁତ ଅସୀମର ଛନ୍ଦ ବୋଲି ସଙ୍କେତିତ, ଉପନିଷଦରେ ବ୍ରହ୍ମଙ୍କୁ 'ଅନୁପଶ୍ୟତ' ବୋଲି ସ୍ପଷ୍ଟ ଉଲ୍ଲେଖ ରହିଛି । ଗ୍ରୀକ୍ ରହସ୍ୟସାଧକ ପ୍ଲୋଟିନସ୍ ଏହି ପ୍ରସଙ୍ଗରେ 'to see and to have seen that vision," "that which is seen" ପ୍ରଭୃତି ପ୍ରତ୍ୟକ୍ଷବୋଧୀ ଭାଷାର ସଚେତନ ପ୍ରୟୋଗ କରିଛନ୍ତି । ପ୍ରତ୍ୟେକ ରହସ୍ୟବାଦୀ ତାର ଅନୁଭୂତିକୁ କଳ୍ପନାମୁକ୍ତ ବାସ୍ତବ ଓ ସ୍ପଷ୍ଟ ପ୍ରତ୍ୟକ୍ଷିତବୋଲି ଦୃଢ଼ଦାବୀ କରିଥାଏ ।

ଏହି ପ୍ରତ୍ୟକ୍ଷିତ ଚେତନା ଏକ ଭାବାତ୍ମକ (subjective) ମାନସିକ ପ୍ରକ୍ରିୟା, ଅତ୍ୟଧିକ ଭାବପ୍ରବଣତା ଓ କଳ୍ପନାଜାତ ଆବେଗାତ୍ମକ ପ୍ରଜଳ୍ପନ ବୋଲି ପ୍ରାୟୋଗିକ ବିଜ୍ଞାନର ଯାବତୀୟ ସମାଲୋଚନାକୁ ରହସ୍ୟବାଦୀ ପୂର୍ଣ୍ଣ ଅସ୍ୱୀକାର କରେ । ତାର ଯୁକ୍ତିରେ ଆତ୍ମାର ଉପଲବ୍ଧି ହିଁ ସତ୍ୟୋପଲବ୍ଧି । ଆତ୍ମ ସାକ୍ଷାତ୍କାରରେ ବ୍ୟକ୍ତିସତ୍ତା ଜୀବନର ସର୍ବମୟ ପରପ୍ରକାଶକୁ ଅନ୍ତର୍ସତ୍ୟ ରୂପେ ସନ୍ଦର୍ଶନ କରେ । ଏହି ଦର୍ଶନରେ ବହିରିନ୍ଦ୍ରିୟ ଓ ମନୋମୟ ଅଭିଜ୍ଞାନର ଜଗତଟି ପୂର୍ଣ୍ଣ ନିଷ୍କାସିତ ରହିଥାଏ । କେବଳ ସତ୍ତାର ଅସ୍ତିତ୍ୱ-ଚେତନାରେ ବିଦ୍ୟମାନତାକୁ ସକଳ ବିଧିତ ଐକ୍ୟ ସ୍ୱରୂପ ବୋଲି ଦେଖିବାହିଁ ଆତ୍ମଦର୍ଶନ ବା ସତ୍ୟଦର୍ଶନ । ମାତ୍ର ଏହି ଦର୍ଶନ ଯେଉଁ ସ୍ଥଳରେ ସଙ୍ଘଟିତ ହୁଏ ତାହା ମନ ନୁହେ ବା ପ୍ରାଣଚେତନା ନୁହେ, ଅର୍ଥାତ୍ ଭାବସତ୍ତା ନୁହେ । ସମସ୍ତ ପ୍ରକାର ବୌଦ୍ଧିକ ବିଚାର ତଥା ଭାବ ଆବେଗର ଅତିକ୍ରମଣ ପରେ ସ୍ଫଟିକ-ସ୍ୱଚ୍ଛ ଚେତନାରେ ଅସ୍ତିତ୍ୱର ଯେଉଁ ସ୍ୱତଃ ଅଭିଜ୍ଞା ପ୍ରତିବୋଧ ହୁଏ, ତାହାହିଁ 'ପ୍ରଜ୍ଞାନ' ବା ସ୍ୱଜ୍ଞା (intuition), ଦିବ୍ୟସ୍ୱର ବା ବାଣୀ, (voice) ଅନ୍ତର୍ଦୃଷ୍ଟି (vision), ଅନୁପ୍ରେରଣା (inspiration) ଦିବ୍ୟକଳ୍ପନା, ('prophetic imagination'-Blake) ପୁଣି ସକ୍ରେଟିସଙ୍କ କୌତୂହଳ ଉଦ୍ଦୀପକ ଭାଷାରେ 'ସ୍ୱର୍ଗୀୟ ଉନ୍ମାଦନା' (spiritual madness) ଏବଂ ଶିଷ୍ୟ ପ୍ଲେଟୋଙ୍କ ମଂତବ୍ୟର ଏକ 'ସୁରକ୍ଷାକାରୀ ପାଗଳାମି'[୨୫] (saving madness) ପ୍ରଭୃତି ନାମରେ ଏହି ପ୍ରଜ୍ଞା ବୋଧ ରହସ୍ୟବାଦୀ ପରିଭାଷାରେ ସ୍ୱୀକୃତ ।

ଅନ୍ତର୍ଜ୍ଞାନ ମାନୁଷୀ-ଶକ୍ତିର ସାଧ ଅନ୍ୟାନ୍ୟ ଯାବତୀୟ ଜ୍ଞାନ ଅପେକ୍ଷା ଶ୍ରେଷ୍ଠରୂପେ ସ୍ୱୀକୃତ । ମାନବର ସ୍ୱଳ୍ପ ବୋଧଶକ୍ତି ଆପଣାକୁ ଅନ୍ତଃସ୍ଥ ଓ ବହିଃସ୍ଥ ଏକ ଓ ଅଖଣ୍ଡ ସତ୍ତାରୂପେ ଜାଣିବାକୁ ଅସମର୍ଥ । କେବଳ କଳ୍ପନା ପ୍ରବେଗ ବା ଭାବୋନ୍ମତ୍ତତାରେ ଏ ପ୍ରକାର ଅବବୋଧ କୟତ୍କାଳ ପାଇଁ ସମ୍ଭବ ହୋଇପାରେ । ସ୍ୱପ୍ନ ଉନ୍ମାଦନା ଓ ହିପ୍ନୋଟିଜମ୍‌ରେ ଏହି ଅସ୍ୱାଭାବିକ ଅନୁଭୂତିର ସମ୍ଭାବନା କିଛି ପରିମାଣରେ ସ୍ୱୀକୃତ । ମାତ୍ର ଏହିସବୁ ଦୃଷ୍ଟି ଚେତନା ଅସମ୍ବଂଧିତ, ବକ୍ଷିପ୍ତ ଓ ସତ୍ୟାଭାସ ଉପରେ ପ୍ରତିଷ୍ଠିତ—ତେଣୁ ଭ୍ରାଂତଦୃଷ୍ଟି ରୂପେ ବିବର୍ଜିତ । ରହସ୍ୟାନୁଭୂତିରେ ଚେତ୍ନାଧାରାର ଏ ପ୍ରକାର ବିଶୃଙ୍ଖଳ ଅରାଜକତା ଦେଖାଯାଏ ନାହିଁ । ପୁଣି ମାୟିକ ଦୃଷ୍ଟି (illusion, hallucination) ବ୍ୟକ୍ତିର ମାନସିକ

---

24. "Dirghatama the blind poet, had the union of the self and the Highest, of the Tree, of the Soul's journey after death and has described the vision...He has asserted thrice (inspite of being blind) that he has seen what he is speaking about."
T G. Manikar–Mysticism in RG. Veda p–39

୨୫. ଶରତ କୁମାର ମହାନ୍ତି—'ସକ୍ରେଟିସ ଓ ପ୍ଲେଟୋ ପୃ ୪୧୪

Digitized by PPRACHIN, SOA

ଜଗତରେ ସଙ୍ଘଟିତ । ଅଥଚ ରହସ୍ୟାନୁଭବ କେବଳ ଭାବାତ୍ମକ ନୁହେ । ବରଂ ମନ-ନିରପେକ୍ଷ ପ୍ରତ୍ୟକ୍ଷତାବୋଧରେ ହିଁ ଉପଲବ୍ଧ । ଦିବ୍ୟସତ୍ତ୍ୱର ଅନୁଭୂତି ବ୍ୟକ୍ତିସାମର୍ଥ୍ୟ ପ୍ରସୂତ ନ ହୋଇ ଈଶ୍ୱରାନୁଗ୍ରହ, ଦିବ୍ୟକୃପା, ଦୈବୀ ପ୍ରେରଣା ବା ବୋଧିଚିତ୍ତର ସ୍ୱତଃ ଜ୍ଞାନ ରୂପେ ସଂପ୍ରାପ୍ତ ବୋଲି ରହସ୍ୟବାଦୀର ବଳବତ୍ତର ବିଶ୍ୱାସ ।

ଜ୍ଞାନବାଦୀ ଦାର୍ଶନିକଙ୍କ ବିଚାରରେ ମଧ୍ୟ ସ୍ୱଜ୍ଞା ଜ୍ଞାନଲାଭର ବିବିଧ ଉପାୟ ମଧ୍ୟରେ ସର୍ବଶ୍ରେଷ୍ଠ । (Kant ଙ୍କ pure reason ଓ Berkely ଙ୍କ perception ର ସ୍ୱରୂପ ଏ ପ୍ରସଙ୍ଗରେ ଅନୁଧ୍ୟାନ ଯୋଗ୍ୟ) । ଅନ୍ୟାନ୍ୟ ସକଳ ଜ୍ଞାନ ଆହରଣ ମାର୍ଗରେ ଲବ୍ଧ ଓ ବ୍ୟକ୍ତିଗତ ମନୀଷାର ପ୍ରଚେଷ୍ଟା ମୂଳକ କିନ୍ତୁ ପ୍ରଜ୍ଞା ସର୍ବପ୍ରକାର ପ୍ରୟତ୍ନର ଅତୀତ, ସର୍ବବୋଧ ବିମୁକ୍ତ ଅସ୍ତିତ୍ୱର ଜ୍ଞାନ ଅନ୍ୟାନ୍ୟ ଜ୍ଞାନମାନଙ୍କଠାରୁ ସ୍ୱରୂପତଃ ଭିନ୍ନ । ପ୍ରଜ୍ଞାର ସ୍ୱତନ୍ତ୍ରିତ ବୈଶିଷ୍ଟ୍ୟଟି ହେଉଛି ତାହାର ତାତ୍‌କାଳିକତା (immediacy)[26] ପ୍ଲେଟୋଙ୍କ ମତରେ ଆତ୍ମା ସହ ବ୍ୟକ୍ତିର ସମ୍ପର୍କ ପ୍ରତ୍ୟକ୍ଷ ଓ ଦୁହିଙ୍କ ମଧ୍ୟରେ ଜ୍ଞାନ (ବିଚାରବୁଦ୍ଧି) ବା ଅନ୍ୟ କାହାର ସ୍ଥାନ ନାହିଁ ।[27]

ଦେଖିବାକୁ ଗଲେ, ସକଳ ସଚେତନ ଜ୍ଞାନ ଜ୍ଞାତା ଓ ଜ୍ଞେୟ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଭାବଚେତନା ମାଧ୍ୟମରେ ପ୍ରକଟିତ । ସ୍ୱଜ୍ଞାରେ ସତ୍ତ୍ୱା ନିଜ ରୂପକୁ ସିଧାସଳଖ ପ୍ରତ୍ୟକ୍ଷ ଭେଟିଥିବାରୁ କୌଣସି 'ମଧ୍ୟବର୍ତ୍ତୀ ଚେତନା'ର ହସ୍ତକ୍ଷେପ ଘଟେନାହିଁ । ଜ୍ଞାତା ଓ ଜ୍ଞେୟ ଭିତରେ ଏହି 'ମଧ୍ୟବର୍ତ୍ତିତା'ର ଅନ୍ତରାୟହୀନତା ହିଁ ପ୍ରଜ୍ଞ । ଆତ୍ମରୂପର ଏହି ସାକ୍ଷାତ୍ ଉପଲବ୍ଧି ପ୍ରୟାସ ନିରପେକ୍ଷ, କାରଣ ସ୍ୱତଃପ୍ରଣୋଦିତ-ଜାତ । ତେଣୁ ଏହା ଆକସ୍ମିକ ଓ ବିସ୍ମୟାବହ ମନେ ହୋଇଥାଏ । ପାସ୍କାଲଙ୍କ (Pascal) ବର୍ଣ୍ଣନାରେ, ହୃଦୟର ଏପରି ବିଚାର ଅଛି, ଯାହାକୁ ହୃଦୟ ନିଜେ ଜାଣେନା ।"[28]

ଏହି ସ୍ୱତଃପ୍ରତ୍ୟୟ ଏକ ଦିବ୍ୟ ଆଲୋକ ଉଦ୍‌ଭାସନ [28] ରୂପେ ବର୍ଣ୍ଣିତ । ଆଲୋକ ତତ୍ତ୍ୱଟି ସାଧାରଣ ମାନସରେ ଅଂଧକାର ବିରୋଧୀ ଓ ଦୃଶ୍ୟକାରୀ ଶକ୍ତିରୂପର ଭାବଚେତନା ସହ ସଂପୃକ୍ତ । ଆତ୍ମ-ଅବବୋଧ ପଥରେ ଭ୍ରାଂତି ଓ ଅଜ୍ଞାନତା ରୂପକ ଅସ୍ୱଚ୍ଛ ଅଂଧକାରର ବିନାଶକାରୀ ଏବଂ ଆତ୍ମ ସାକ୍ଷାତ୍‌କାରୀ ଶକ୍ତି ରୂପେ ପ୍ରଜ୍ଞା ଅଧ୍ୟାତ୍ମ-ଭାଷଣରେ 'ଦିବ୍ୟାଲୋକ' ନାମରେ ଅଭିନଂଦିତ । ଏହି ଅର୍ଥରେ ପ୍ରଜ୍ଞା ସଂପର୍କରେ ଅନ୍ତର୍ଚକ୍ଷୁ, ଦିବ୍ୟଚକ୍ଷୁ ବା ତୃତୀୟନେତ୍ର ଶବ୍ଦର ପ୍ରୟୋଗ ମଧ୍ୟ ରହିଛି ।

ଏହି ସ୍ୱଜ୍ଞା ବା ସଂବୋଧିର ପ୍ରଭାସ୍ୱର ଅବବୋଧର ବ୍ୟାଖ୍ୟା କରି ଶ୍ରୀ ଅରବିନ୍ଦ କୁହଂତି, "...ଆଲୋକ ମୁଖ୍ୟତଃ ଏକ ଜଡ଼ଗତ ସୃଷ୍ଟି ନୁହେ ଏବଂ ସେହି ଆଲୋକର ଯେଉଁ ଅନୁଭବ ବା ଦିବ୍ୟଦୃଷ୍ଟି ଆମର ଅନ୍ତରକୁ ଜ୍ୟୋତିର୍ମୟ କରି ଦେଇଥାଏ, ତାହା ଆମର ଅନ୍ତର୍ମୁଖୀ ମନପଟ ଉପରେ ପ୍ରତିଫଳିତ ହେଉଥିବା କୌଣସି ବସ୍ତୁର କେବଳ ଏକ ସୂକ୍ଷ୍ମ ପ୍ରତିବିଂବ କିମ୍ବା ପ୍ରତୀକମୟ କେବଳ ଏକ ପ୍ରତିଭାସ ଆଦୌ ନୁହେ । ଆଲୋକ ହେଉଛି ମୂଳତଃ ସେହି ପରମ ଦିବ୍ୟସତ୍ୟର ଏକ ଚିନ୍ମୟ ଅଭିବ୍ୟକ୍ତି,

---

26. Intuition has often been defined as the immediate presence of the unknown to the known."
Sartre : Being and Nothingnese–178

୨୭- ଶରତ କୁମାର ମହାନ୍ତି—ସକ୍ରେଟିଶ ଓ ପ୍ଲେଟୋ-ପୃ ୩୧୪

୨୮- ଶରତ କୁମାର ମହାନ୍ତି—ଅସ୍ତିତ୍ୱବାଦର ମର୍ମକଥା ପୃ-୧୦୮

Digitized by PPRACHIN, SOA

ସୃଷ୍ଟି କରିବା ଓ ସୃଷ୍ଟିବସ୍ତୁକୁ ଆଲୋକିତ କରିବା ହେଉଛି ତାହାର ଧର୍ମ ।" ଯେତେବେଳେ ଚେତନା ସର୍ବୋଚ୍ଚ ପରମ ସତ୍ୟ ବା ସକଳ ବସ୍ତୁ ଓ ସକଳଜୀବର ଅଧ୍ୟାତ୍ମସତ୍ୟଟିର ସାକ୍ଷାତ ଲାଭ କରେ ଏବଂ ସେଗୁଡ଼ିକ ସହିତ ତାହାର ଏକ ସଂସ୍ପର୍ଶଗତ ସମ୍ମିଳନ ସଂଘଟିତ ହୁଏ, ସେତେବେଳେ ତାହାର ଅନ୍ତର୍ଗୀଥିରରେ ସେହି ଅନ୍ତରଂଗ ସତ୍ୟ-ବୋଧଶକ୍ତିଟି ସତେଅବା ଏକ ସ୍ଫୁଲିଂଗ ପରି, ଏକ ଅଗ୍ନିଚମକ ବା ଅଗ୍ନିଶିଖା ପରି ଜଳିଉଠେ । ଏହି ଅନ୍ତରଂଗବୋଧକୁ କେବଳ ଏକ ଦୃଷ୍ଟି ବୋଲି କହିହେବ ନାହିଁ । **କେବଳ ଏକ ସାମାନ୍ୟ ପ୍ରତ୍ୟକ୍ଷ ବୋଲି କହିହେବ ନାହିଁ**·····ମନୁଷ୍ୟର ମନୋଭୂମିରେ ସଂବୋଧି ଏହିପରି ଏକ ସତ୍ୟ-ସ୍ମରଣ ବା ସତ୍ୟ ବହ୍ନି ହୋଇ ରହିଥାଏ । ଏହିପରି ଏକ ସର୍ବପ୍ରକାଶକ ଜ୍ୟୋତିଝଲକ ବା ଜ୍ୟୋତିଶିଖା ରୂପେ ସେଶା ହିଁ ଅବିଦ୍ୟାର ଏକ ବିରାଟ ପିଣ୍ଡ ଉପରେ ଆପଣାକୁ ଆଣି ବିସ୍ଫୋରିତ କରିଦିଏ, ଅଥବା ନିଶ୍ଚେତନତାର ଏକ ଆବରଣକୁ ଚିରଦେଇ ତାହାର ଭିତରକୁ ବାହାରି ଆସେ । × × ×

"ସଂବୋଧିକୁ ଆମେ ସର୍ବଦା ଏକ ଊର୍ଦ୍ଧ୍ୱତର ଆଲୋକର ପ୍ରାଂତ ରଶ୍ମି ବା ବହିଃସ୍ଫୁରଣ ବୋଲି ଜାଣିବା···ସେହି ଉଚ୍ଚତର ଭୂମିଟିରେ ଆଲୋକ ସଂପୂର୍ଣ ଅମିଶ୍ରିତ ହୋଇ ରହିଛି···ସେଠାରେ ତାହାର ରଶ୍ମିଗୁଡ଼ିକ ପରସ୍ପରଠାରୁ ଆଦୌ ଅଲଗା ହୋଇଯାଇନାହିଁ ଓ ଏପରି ଏକ ତରଂଗଲୀଳାରେ ଏକାନ୍ତ ସଂଯୁକ୍ତ ବା ସମାହୃତ ହୋଇ ରହିଛି, ଯାହାକୁ କି ସଂସ୍କୃତ କାବ୍ୟଭାଷାରେ 'ସ୍ଥିର ସୌଦାମିନୀ'ର ଏକ ସମୁଦ୍ର ବା ପୁଂଜବୋଲି କୁହାଯାଇପାରିବ ।" [୨୯]

ଏହି ପ୍ରଜ୍ଞାଲବ୍ଧ ଆଲୋକରେ ବିଶ୍ୱସତ୍ତାଠାରୁ ବ୍ୟକ୍ତିରୂପର ଭିନ୍ନ ସଂଜ୍ଞାକାଂକ୍ଷୀ ଚେତନାମାନ ଅନ୍ତର୍ହିତ ହୋଇଯାଏ । ସକଳ ବୈପରୀତ୍ୟ ଏକ ପୂର୍ଣ୍ଣ ସମନ୍ୱୟ ପ୍ରାପ୍ତ ହୁଅନ୍ତି । ଆତ୍ମାର ନିଗୂଢ଼ତମ ରହସ୍ୟକୁ ଏଇ ଅପ୍ରତ୍ୟାଶିତ ମୁହୂର୍ତ୍ତରେ ଅତି ସହଜ ଓ ସ୍ୱାଭାବିକ ରୂପରେ ଅବଗତ ହେବାଟାହିଁ ବ୍ୟକ୍ତି ପାଇଁ ବିସ୍ମୟକର ହୋଇପଡ଼େ ।

ଆତ୍ମାର ଏଇ ସ୍ୱ ରହସ୍ୟ ଦର୍ଶନର ବିସ୍ମୟକୁ ସ୍ମୃତିଦର୍ଶନ ରୂପ ଚମକ ବୋଲି ରହସ୍ୟବାଦୀ ବର୍ଣ୍ଣନା କରିଛନ୍ତି । ସକ୍ରେଟିସ୍ ଆତ୍ମଦର୍ଶନକୁ 'reminiscence' [୩୦] ବୋଲି ଉଲ୍ଲେଖ କରି କହିଛନ୍ତି, ଆତ୍ମା ଅମର ହେତୁ ମନୁଷ୍ୟର ସବୁଜ୍ଞାନ (ଆତ୍ମଜ୍ଞାନ ମଧ୍ୟ) ସହ ପୂର୍ବପରିଚୟ ରହିଛି । କେବଳ ସାକ୍ଷାତ ହେଲେହିଁ ଚିହ୍ନିବ । ହେଗେଲ୍‌ଙ୍କ ଉପସ୍ଥାପନାରେ Ich bin Ich (I am I) ମୁଁ କୁ ମୁଁ ବୋଲି ଜାଣିବାରେ ନୂତନ ଜ୍ଞାନ କିଛିନାହିଁ । କେବଳ ନୂତନକୁ ପୁରାତନ ବୋଲି ପୁନଃପରିଚିତ ହେବାର ସବିସ୍ମୟ ଆଘାତ ମାତ୍ର ।[୩୧] ଏହା କେବଳ ଏକ ପୁନର୍ସାକ୍ଷାତମୂଳକ ସ୍ମୃତିଜାଗରଣ । The cloud of unknowing ପୁସ୍ତକର ଅଜ୍ଞାତ ଖ୍ରୀଷ୍ଟଧର୍ମୀ ରହସ୍ୟସାଧକ-ରଚୟିତା ଏହି ଅବସ୍ଥାକୁ ଆତ୍ମାର ସ୍ୱସ୍ଥାନ

---

୨୯-ଦିବ୍ୟଜୀବନ, ୨ୟଭାଗ ଉତ୍ତରାର୍ଦ୍ଧ ପୃ-୯୦୮-୯୦୯ (ଅନୁବାଦ- ଶ୍ରୀ ଚିତ୍ତରଂଜନ ଦାଶ)

୩୦-'ସକ୍ରେଟିସ ଓ ପ୍ଲେଟୋ'—ପୃ ୨୨୪

31. "..a shock of identity..One knows because one recognises."

Satprem: 'Adventure of consciousness–p-213.

Digitized by PPRACHIN, SOA

ପ୍ରାପ୍ତି ବୋଲି ଅନୁଭୂତ କରିଛନ୍ତି ।[32] 'ଜ୍ଞାନକୁ ବ୍ୟକ୍ତି ନିଜେ ନିଜପାଖରେ ଆବିଷ୍କାର କରିବ'— ପ୍ଲାଟୋଙ୍କର ଏରୂପ ମନ୍ତବ୍ୟର ମୂଳତାତ୍ପର୍ଯ୍ୟଟି ଏହିଠାରେ ।

**ଆନନ୍ଦ, ଶାନ୍ତି, ବିରତି—**

ମିଷ୍ଟିକ୍‌ର ଅନୁଭୂତି ବର୍ଣ୍ଣନା ପ୍ରସଙ୍ଗରେ ଏକ ଆନନ୍ଦ ଉଲ୍ଲାସର, କଥା ବହୁଭାବରେ ରୂପ ପାଇଥାଏ । ଆତ୍ମାର ସହଜ ରୂପ ଯେ ଆନନ୍ଦରୂପମମୃତମ୍, ବ୍ୟକ୍ତି ଚରମୋପଲବ୍ଧିରେ ସେଇ 'ରସୋ ବୈଃ ସ' ପୂର୍ଣ୍ଣାନନ୍ଦ ସ୍ୱରୂପକୁ ହିଁ ପ୍ରତ୍ୟକ୍ଷ କରେ । ପ୍ରାପ୍ତି-ବିବ୍ୟାପ୍ତି, ପୂର୍ତ୍ତି ଓ ସମନ୍ୱିତ ଚେତନାରେ ହିଁ ବ୍ୟକ୍ତି ଏ ଅବସ୍ଥାରେ ଶାନ୍ତି, ବିରତି ଏବଂ ଆନନ୍ଦାନୁଭବକୁ ଲାଭ କରିଥାଏ ।

ଆନନ୍ଦ ପରିବର୍ଦ୍ଧନତାକୁ ଇଂଗିତ କରେ । (ଆ+ନନ୍ଦ୍=ବୃଦ୍ଧି) । ବିଶ୍ୱସହ ଏକାତ୍ମକତା ବୋଧରେ ପାର୍ଥିବ ଚେତନାର ଅପୂର୍ଣ୍ଣ ଖଣ୍ଡିତ ଅବସ୍ଥାର ଯନ୍ତ୍ରଣା ତିରୋହିତ ହୋଇଯାଏ । ବିରୋଧର ଅବସାନ ଘଟେ ଏବଂ ଏକ ଗଭୀର ଆତ୍ମୀୟତାରେ ସମଗ୍ର ସୃଷ୍ଟି ଅନ୍ତରଂଗ ହୋଇଉଠେ । ନିଖିଳକୁ କୋଳାଗତ କରି ଏକ ମଧୁର ପ୍ରେମ ତନ୍ମୟତା ବ୍ୟକ୍ତିକୁ ନିମଜ୍ଜିତ କରିରଖେ । ପୁନଶ୍ଚ ଦେଶକାଳାତୀତ ନାମରୂପସଙ୍ଗାସ୍ଥିତ ପରିମେୟ-ବୋଧର ବିଲୁପ୍ତି ହେତୁ ଅପ୍ରାପ୍ତି, ଅତୃପ୍ତି ଓ ଅସମ୍ପୂର୍ଣ୍ଣତାର ଗ୍ଲାନି ତିରୋହିତ ହୋଇଯାଏ । 'ନାଳ୍ପେ ସୁଖମସ୍ତି, ଭୂମୈବ ସୁଖ'ର ମନସ୍ତତ୍ତ୍ୱରେ ଜନ୍ମାବଧି ପରିଶୃଙ୍ଖଳିତ ଅନ୍ତଃସତ୍ତ୍ୱା ଏଇ ଭୂମାପ୍ରାପ୍ତିର ଅବକାଶରେ ହିଁ ସାର୍ଥକତା ଆସ୍ୱାଦନ କରେ ।

ବିବ୍ୟୋପଲବ୍ଧିରେ ବ୍ୟକ୍ତି ଯେ ଏକ ଅସୀମ, ଅପରିମେୟ, ଅଖିଳ ପରିସ୍ପନ୍ଦ ଚେତନାରେ ନିର୍ବନ୍ଧନ ବ୍ୟାପ୍ତି, ପରମପର୍ଯ୍ୟାପ୍ତି, ପରିପୂର୍ଣ୍ଣତା ଓ ସମାହିତତାର କେନ୍ଦ୍ରସ୍ଥ ଚେତନା ରୂପେ ନିଜକୁ ଆବିଷ୍କାର କରେ, ତାହାହିଁ ତାର ଉଲ୍ଲାସବୋଧର କାରଣ । ଆତ୍ମବିସ୍ତୃତି, ଅନତ୍ୟାଧାରଣ ଓ ଉତ୍ଥାନ ସାମର୍ଥ୍ୟ'—ପାର୍ଥିବ ଜୀବନର ସକଳ ସମସ୍ୟାର ଏହି ସହଜତମ ସମାଧାନ ବିନ୍ଦୁରେ ସବୁକିଛିର ଏକ ସାମଗ୍ରିକ ମୂଲ୍ୟବୋଧ ଜାଗ୍ରତ ହୋଇଉଠେ । ନିତ୍ୟତାରେ ନିଦ୍ୱଂଦତା ଓ ନୂତନତାର ସାଫଲ୍ୟରେ ସଂସ୍କାରପୋଷିତ ସକଳ କର୍ମ ଶୃଙ୍ଖଳାର ଅବସାନ ଘଟେ । ସମଗ୍ର ସୃଷ୍ଟିର ଏକ ପ୍ରସନ୍ନସୁନ୍ଦର ରୂପାୟନ ଘଟେ ।

ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଏଇ ଆନନ୍ଦ ଅନୁଭୂତିଟି ଅନେକ ସମୟରେ ପ୍ରବଳ ଭାବବିହ୍ୱଳତା ଓ ଉନ୍ମାଦନାପର ଅବ୍ୟବସ୍ଥିତଚିତ୍ତତା ରୂପେ ଦେଖା ଦେଇଥାଏ । ଏହା ଦୁର୍ବଳ ମାନସିକତାର ଆସ୍ୱାଭାବିକ ବିବିକାର ବୋଲି ମଧ୍ୟ କଟାକ୍ଷ ଲାଭକରିଥାଏ । ବୌଦ୍ଧ 'ନିର୍ବାଣତତ୍ତ୍ୱ' ଏଇ ଦୃଷ୍ଟିରୁ ଚିତ୍ତଭୂମିରୁ ଦୁଃଖସହ ସୁଖାନୁଭବର ନିଷ୍କ୍ରମଣତାକୁ ମଧ୍ୟ ପ୍ରୟୋଜନୀୟ ମନେକରେ । ଶଙ୍କର,

32. "Then suddenly, there comes a shell-breaking insight, a spontaneous outcry. Having been completely lost to himself and unaware of what he was doing, he has found the self he originally came from."

—The Cloud of Unknowing' (Edited by Ira Progroff)–p-33.

Digitized by PPRACHIN, SOA

ଏକହାର୍ଟ ଓ ଶ୍ରୀ ଅରବିନ୍ଦ ମଧ୍ୟ ଅନୁରୂପ ବିଗ୍ରହର ପକ୍ଷପାତୀ । ସାଧାରଣତଃ ସ୍ୱଳ୍ପ ପ୍ରାପ୍ତି କାଳୀନ ଏଇସବୁ ଚିତ୍ତବିକ୍ଷେପକାରୀ ଭାବତରଂଗମାନ ( titilation-Eckhart ) ବିନଷ୍ଟ ହେଲେ ହିଁ ଅଧ୍ୟାତ୍ମ ପୂର୍ଣ୍ଣତାର ସମାହିତତା ସାମର୍ଥ୍ୟ ସଂଭବ ହୁଏ । ଶ୍ରୀ ଅରବିନ୍ଦଙ୍କ ସମୀକ୍ଷାରେ "ଅଧ୍ୟାତ୍ମ ସାଧନାରେ ଆନନ୍ଦରେ ଅଭିଭୂତ ହୋଇରହିଥିବା ଅବସ୍ଥାମାନ ହେଉଛି ଏକ ନିମ୍ନସ୍ତରୀୟ ଅବସ୍ଥା । ଏଇଟି ହେଉଛି ଏକ ଅସ୍ଥାୟୀ ମଧ୍ୟବର୍ତ୍ତୀ ମାର୍ଗସ୍ୱରୂପ । ......ଏଇ ଅନୁଭୂତି ଭିତରେ ଏକ ଗର୍ବାନୁଭବ ରହିଥାଏ, ବିଜୟୋଲ୍ଲାସ ରହିଥାଏ, ଉତ୍ତେଜନା ବି ରହିଥାଏ, ହୃଦ୍‌ଗତ ଆନନ୍ଦର ଏକ ଉଚ୍ଚତମ ପ୍ରଗାଢ଼ତା ରହିଥାଏ ଏବଂ ଆତ୍ମାର ଏକ ଅନ୍ତର୍ଗତ ଶ୍ରଦ୍ଧାନୁଭବ ବି ରହିଥାଏ, ଯାହାକୁ କି ଏକ ଚମତ୍କାର ମଧ୍ୟପଥ ବା ଏକ ଉତ୍ତେଜନାକାରୀ ଶକ୍ତି ବୋଲି ବେଶ୍ କୁହାଯାଇପାରିବ । ଆଧ୍ୟାତ୍ମିକ ଆନନ୍ଦର ଉଚ୍ଚତମ ଶିଖରଗୁଡ଼ିକରେ ଏହି ଶକ୍ତିମୟ ଗର୍ବୋତ୍‌ଫୁଲ୍ଲତା କିଂବା ଉତ୍ତେଜନାଟି ଆଦୌ ଦେଖିବାକୁ ମିଳେନାହିଁ, ତାହା ପରିବର୍ତ୍ତରେ ଏକ ଅନନ୍ତ ଆନନ୍ଦାନୁଭୂତି ମଧ୍ୟରେ ଅଂଶଗ୍ରହଣ କରୁଥିବାର ଏକ ଅପରିମେୟ ଗମ୍ଭୀରତାର ଉପଲବ୍ଧି ହୋଇଥାଏ ।"[୩୩]

## ଅନିର୍ବଚନୀୟତା

ମିଷ୍ଟିକ୍ ତାର ଚରମାନୁଭୂତିର ଯଥାର୍ଥ ରୂପାୟନ କରିବାକୁ ଅସମର୍ଥ ବୋଲି ଜଣାଇଥାଏ, ତାର ଯୁକ୍ତିରେ ଅତୀନ୍ଦ୍ରିୟ-ଅନୁଭୂତିର ଅବସ୍ଥା ସର୍ବବୋଧର ଅତିରିକ୍ତ ଅବସ୍ଥା । ଅଥଚ ବ୍ୟକ୍ତି କେବଳ ଭାଷାରୂପ ବା ଭାବଭଂଗୀରେ ହିଁ ଯାହାକିଛି ପ୍ରକାଶ କରିପାରେ । ମାତ୍ର ଏ ପ୍ରକାଶଭଂଗୀ ବା ଭାଷାରୂପ ମଧ୍ୟ ମାନସିକ ଅବଧାରଣା ସଂଜାତ (conceptual) । ରହସ୍ୟାନୁରୂତି କାଳର ନିରବବୋଧ ଅବସ୍ଥା ଅତିକ୍ରାନ୍ତ ହେବାପରେ ସାଧାରଣ ଅବସ୍ଥାକୁ ଫେରିଆସି ସାଧକ ସେ ଅନୁଭୂତିକୁ ସ୍ମୃତିରେ ଜାଗ୍ରତ କରିବାକୁ ଗଲାବେଳେ ଏ ମାନସ ଭିତ୍ତିକୁ ହିଁ ଅବଲମ୍ବନ କରିଥାଏ । ମାତ୍ର ଏଇ ପରବର୍ତ୍ତୀ ସଚେତନ ପୁନଃସ୍ମରଣ ଭିତରେ ପୂର୍ବାନୁଭୂତିର ଅବିମିଶ୍ରତା ଅବିକୃତ ଓ ଅକ୍ଷୁର୍ଣ୍ଣ ରହିବା ଅସମ୍ଭବ । ତେଣୁ ଭାଷାତୀତକୁ ଭାଷାଗତ କରି ଦେଖିବା ଭିତରେ ସବୁକିଛି ଅସଂଗତ, ଦୁର୍ବୋଧ ଓ ରହସ୍ୟମୟ ପ୍ରତୀତ ହୁଏ ।[୩୪]

ଶ୍ରୀରାମକୃଷ୍ଣ 'ବ୍ରହ୍ମ' ସ୍ୱରୂପ ବର୍ଣ୍ଣନା ପ୍ରସଙ୍ଗରେ ଥରେ ମନ୍ତବ୍ୟ କରିଥିଲେ, 'ବ୍ରହ୍ମ ଅନୁଚ୍ଛିଷ୍ଟ' । ଅର୍ଥାତ୍ ଏ ସମ୍ପର୍କରେ ଯେତେ ଅଭିଧା, ଉପମା, ବିଶେଷଣ ପ୍ରୟୋଗ କରାହେଉନା କାହିଁକି, ବ୍ରହ୍ମ କେବେବି ପୂର୍ଣ୍ଣତଃ କାହାରି ମୁଖବ୍ୟକ୍ତ ହୋଇପାରନ୍ତି ନାହିଁ। ଆକାଶର ଗଂଭୀରତାକୁ ବ୍ୟାଖ୍ୟା କରିହୁଏନାହିଁ । ଅନନ୍ତଙ୍କର ଅନନ୍ତତାକୁ ମଧ୍ୟ ସୀମିତ ବାକ୍‌ରୂପରେ ପ୍ରତିପାଦନ କରି ହେବନାହିଁ । ତେଣୁ ବସ୍ତୁ-ପ୍ରତୀକରେ, ଗୀତିକ୍ ବାଣୀ ଭଂଗୀରେ ମିଷ୍ଟିକ୍ ସେହି ବିରାଟ, ଅସୀମ, ଅଥଚ କ୍ଷୁଦ୍ରାତିକ୍ଷୁଦ୍ରର ଅବଧାରଣା

---

୩୩. ଶ୍ରୀ ଅରବିନ୍ଦ 'ଦିବ୍ୟଜୀବନ'-୧୧୬୨/୬୪

(ଅନୁବାଦ ଶ୍ରୀ ଚନ୍ଦ୍ରରଂଜନ ଦାଶ)

34. In a wonderous fashion remembering we donot remember, seeing we donot see, understanding we donot understand, penetrating we donot penetrate."

Benjamine Mayor, qt–'Mysticism' (Evelyn) p-370.

Digitized by PPRACHIN, SOA

ପ୍ରସଙ୍ଗରେ ଅଜସ୍ର କହି ମଧ୍ୟ ଯେପରି କିଛି କହିପାରେ ନାହିଁ; ଅଥଚ କହିବା ତାର ସରେନାହିଁ । ଶ୍ରୋତା ବା ପାଠକର କୌତୂହଳ ନିବୃତ୍ତି ନିମନ୍ତେ ଏହା ଅତ୍ୟନ୍ତ ସ୍ୱଳ୍ପ ଓ ଅସଫଳ ଏବଂ ସ୍ୱୟଂ ବ୍ୟାଖ୍ୟାକାରୀ ପକ୍ଷରେ ମଧ୍ୟ ଅତୃପ୍ତିକର, ପ୍ରକାଶ-ଅକ୍ଷମ ଅସହାୟତା ଗ୍ଲାନିଯୁକ୍ତ । ହୃଦୟର କ୍ଷୁଦ୍ରାୟତନ ସଂଗୁପ୍ତ ଆତ୍ମା କିପରି ଯେ ବିରାଟ ବ୍ରାହ୍ମୀ ମହିମାରେ ଚରାଚର ବ୍ୟାପ୍ତ ହୋଇ ରହିଛନ୍ତି, [୩୬] ଏହାର ରହସ୍ୟ ନିଜେ ରହସ୍ୟବାଦୀ ମଧ୍ୟ ବୁଝିପାରେନାହିଁ । ଉପଲବ୍ଧିରେ ଯାହା ଲଭ୍ୟ, ଭାଷା ରୂପାୟନରେ ତାହା ବ୍ୟର୍ଥ, ଏହାହିଁ ଅନିର୍ବଚନୀୟତା [୩୭] ର କାରଣ । ଭାଷାଦୈନ୍ୟଗତ ଏଇ ଅକ୍ଷମତା ବହୁ ସାଧକ କବିଙ୍କର ରସାଳ କାବ୍ୟଚୟରେ ଅନବଦ୍ୟ ଚମତ୍କାରିତା ଲାଭ କରିଛି । ଯଥା ଲବଣପିତୁଳା ସମୁଦ୍ର ସ୍ନାନରେ ନିଶ୍ଚିହ୍ନ ହୋଇଯାଏ । ଲବଣୀ ପିତୁଳା ଅଗ୍ନି ସ୍ପର୍ଶରେ ବିଗଳିତ ହୋଇଯାଏ । ବର୍ଷା ବିନ୍ଦୁଟିଏ ନଦୀପ୍ରବାହରେ ମିଳାଇଯାଏ । କର୍ପୂର କେଉଁ ଭାବରେ ତାର ବହ୍ନି-ମିଳନର ବିହ୍ୱଳତାକୁ ବ୍ୟକ୍ତ କରିବ ! ଏ ସକଳ ବର୍ଣ୍ଣନା କେବଳ ପ୍ରକଟିତର ପ୍ରକାଶମୟତାର ସଂବାଦ, ମାତ୍ର ଅପ୍ରକାଶିତର କେଉଁ ରୂପ କେଉଁ ଶବ୍ଦ ? ଜଳ ରଂଗହୀନ ହୋଇ ମଧ୍ୟ ରଂଗମୟ ପ୍ରତିଭାତ । ଆତ୍ମା ଅମୂର୍ତ୍ତ ହୋଇ ମଧ୍ୟ ବିମୂର୍ତ୍ତ ସ୍ୱରୂପରେ ଅଭିବ୍ୟକ୍ତ । ସକଳ ରୂପଚେତନା କେବଳ 'ଖଣ୍ଡ'ର ଆଶ୍ୱାସ-ସଂବାଦ । ସମଗ୍ରକୁ କେଉଁ ଖଣ୍ଡ, କ୍ଷୁଦ୍ର ପୃଷ୍ଠାପାତ ଲିପିବଦ୍ଧ କରିପାରିବ ? ରହସ୍ୟର ଭାଷା ତେଣୁ ନୀରବତା । 'ନିର୍ବାଣ'ର ସ୍ୱରୂପ ସମ୍ପର୍କରେ ବୁଦ୍ଧ-ବାଣୀ ଚିର ନିରୁତ୍ତର ।

---

୩୬. ବୃହଚ୍ଚତଦ୍ ଦିବ୍ୟମଚିନ୍ତ୍ୟରୂପଂ ସୂକ୍ଷ୍ମାଚ୍ଚତତ୍ ସୂକ୍ଷ୍ମତରଂ ବିଭାତି । ଦୂରାତ୍ ସୁଦୂରେ ତ ଦିହାନ୍ତିକେ ଚ ପଶ୍ୟତ୍‌ସ୍ୱିହୈବ ନିହିତଂ ଗୁହାୟାମ୍ ॥ ମୁଣ୍ଡକ ୩/୧/୭

36. "What fills us with radical amazement is not the relation in which every thing is embeded. but the fact that even the minimum of perception is a maximum engima. The most incomprehensible fact is that we apprehend at all."

A. Hershel "God in search of Man"–p-47.

Digitized by PPRACHIN, SOA

# ଦ୍ୱିତୀୟ ଭାଗ

The Path to God lies through six ascending planes of consciousness.

On each plane fresh glories unveiled to the traveller.
And new hardships await him, and imagination (fond man)
of arrival at the goal—
until he arrives.

At the goal which is the goal where in
he is drowned of the world—

And himself, and abides in himself as God.
When the pilgrim arrives on the first plane
he is temporarily lost in bliss.

If he overcomes this delusion he advances
to the second plane of light.

On the third, body and world are lost
and God's power gained.

But not used. On the fourth plane
he may use it or not.

If not used. He comes to the fifth plane,
if ill used, he falls;
but if for good.

To the sixth straightly comes to constant sight
of God and enjoys

And suffers love, until by Love,
this last illusion vanishes.

---

★ 'Stay with God' (by-Francis Brabazon)—p 35-36. ★

Digitized by PPRACHIN, SOA

**ରହସ୍ୟସାଧନା—ଧାରା**

ବ୍ୟକ୍ତ ଚେତନାରେ ରହସ୍ୟାନୁଭୂତିର ମର୍ମୋପଲବ୍ଧି ଏକ କ୍ରମପର୍ଯ୍ୟାୟଶୀଳ ଗତି-ଆଭିମୁଖ୍ୟର ଶଙ୍କ ପ୍ରଦାନ କରେ । ଏ କ୍ରମାନ୍ୱୟୀ ଉଦ୍‌ବର୍ତ୍ତନ ଧାରାଟିର ସ୍ତରଭେଦ ବିଷୟରେ ପ୍ରସଙ୍ଗରେ ରହସ୍ୟବାଦୀ ବର୍ଗରରେ ବହୁ ମତଦ୍ୱୈଧତା ରହିଛି । ତଥାପି ସାଧାରଣ ଭାବରେ ଏ ଗତିଧାରାର ତିନୋଟି ମୁଖ୍ୟ କ୍ରମବିକଶିତ ଚେତନାସ୍ତରର ନିର୍ଦ୍ଦେଶ କରାଯାଇପାରେ । ଚେତନାର ପ୍ରାରମ୍ଭିକ ପର୍ଯ୍ୟାୟଟି ଉନ୍ମୀଳନ, ଉନ୍ମେଷ, ବା ଜାଗରଣ ମୂଳକ । ଏକ ଅପାର୍ଥିବ ସତ୍ତା ସମ୍ପର୍କରେ ନୂତନ ସଚେତନତା, ବିସ୍ମୟବୋଧ ଓ ପାର୍ଥିବ ଜୀବନର ତାହା ସଙ୍ଗେ ସମ୍ବନ୍ଧର ସ୍ୱରୂପ ଆବିଷ୍କାର-ଉଦ୍ୟମ ଏଥିରେ ପରିଲକ୍ଷିତ । ଦ୍ୱିତୀୟ ପର୍ଯ୍ୟାୟରେ ଆତ୍ମରହସ୍ୟଲାଭର ସକ୍ରିୟ ପ୍ରଚେଷ୍ଟା, ପାର୍ଥିବତା ଘଟିତ ସୀମାସଚେତନତା ଓ ଦୈନ୍ୟବୋଧର ଭାବଚାଂଚଲ୍ୟଜନିତ ଆବେଗ ପ୍ରାବଲ୍ୟ ପରିଦୃଷ୍ଟ । ଅନ୍ତିମ ପର୍ଯ୍ୟାୟରେ ଦିବ୍ୟଚେତନାକୁ ଉତ୍ତରଣ, ମିଳନାନନ୍ଦ ବା ଅଦ୍ୱୈତଉପଲବ୍ଧିରେ ଭାବମୁକ୍ତି ସଂଘଟିତ । ଏହି ତ୍ରୟୀ ମୁଖ୍ୟ ଅବସ୍ଥା ବିଭିନ୍ନ ରହସ୍ୟବାଦୀ ସାଧନା ବର୍ଗରରେ ଗୃହସ୍ତର, ପଞ୍ଚକୋଷ, ଷଡ଼ସୋପାନ, ସପ୍ତ ଉପତ୍ୟକା, ଅଷ୍ଟମାର୍ଗ, ନବପର୍ଯ୍ୟାୟ ଇତ୍ୟାଦି ସୂକ୍ଷ୍ମବିଭାଜନ-ରୂପ ଧାରଣକରିଛି । ଉପନିଷଦରେ 'ପଞ୍ଚକୋଷୀ ସତ୍ତା'ର ଉଲ୍ଲେଖ ରହିଛି ।[୧] ପାଶ୍ଚାତ୍ୟ ରହସ୍ୟବାଦୀ ବର୍ଗର ମଧ୍ୟ ଭାବସାଧନାକୁ ପାଞ୍ଚୋଟି ମୁଖ୍ୟ ଅବସ୍ଥାର ଅଧୀନ ବୋଲି ନିର୍ଦ୍ଦିଷ୍ଟ କରିଛି ।[୨] ଇହୁଦୀ ବର୍ଣ୍ଣନାରେ ଷଡ଼ ସୋପାନ ଓ ସୂଫୀ ସାହିତ୍ୟରେ ସପ୍ତ ଉପତ୍ୟକାର ଉଲ୍ଲେଖ ଏ ପ୍ରସଙ୍ଗରେ ପ୍ରଣିଧାନଯୋଗ୍ୟ । ବିଂଶ ଶତାବ୍ଦୀରେ ପଶ୍ଚିମ ଭାରତର 'ମେହେରବାବା' ଆତ୍ମୋପଲବ୍ଧିର ମାର୍ଗକୁ 'ସତସ୍ତର ବିଶିଷ୍ଟ' ବୋଲି ଅନୁଗାମୀମାନଙ୍କୁ ନିର୍ଦ୍ଦେଶ କରିଛନ୍ତି ।[୩] ଗୁହ୍ୟବିଦ୍ୟା (Occultism) ଅସ୍ତିତ୍ୱର ନବଧା ସ୍ୱରୂପରେ ବିଶ୍ୱାସୀ । 'କାବାଲିଜମ୍'ରେ ମଧ୍ୟ 'ତନ୍ତ୍ର ପ୍ରଦର୍ଶିତ' କୁଣ୍ଡଳିନୀର ଷଡ଼ଚକ୍ର, (ବୌଦ୍ଧିକ ଅଷ୍ଟଚକ୍ର)ର ସମାନ୍ତରାଳ ବିଷୟରେ ନବଧା କେନ୍ଦ୍ରର ଉଲ୍ଲେଖ ରହିଛି ।[୪] ସ୍ତରନିର୍ଦ୍ଦେଶ ସମ୍ପର୍କରେ ମତଭିନ୍ନତାକୁ ବରଂ ସଂଶ୍ଳେଷିତ (sinthetic) ବା ବିଶ୍ଳେଷିତ (analytic) ଦୃଷ୍ଟିଭଙ୍ଗୀ ରୂପେ ଗ୍ରହଣକରିବା ସମୀଚୀନ ମନେହୁଏ । ରହସ୍ୟାତ୍ମକ ଯାତ୍ରା-ପଥ ବର୍ଣ୍ଣନା ଅବକାଶରେ ଏକ ଅଗ୍ରସର-ପର ଚେତନାର ଗତି ନିର୍ଦ୍ଧାରଣ ପ୍ରକ୍ରିୟା ପ୍ରସଙ୍ଗଟି ସମ୍ବାଦସମ୍ମତ, ମତ ପ୍ରାର୍ଥକ୍ୟ କେବଳ ନିର୍ଦ୍ଦିଷ୍ଟ ବ୍ୟବଧାନଜନିତ ସ୍ତର ନିର୍ଦ୍ଧାରଣରେ' ପ୍ରବହମାନ ଜଳଧାରାକୁ କାଳ୍ପନିକ ସୀମାରେଖା ସାହାଯ୍ୟରେ ସୂଚିତ କଲାବେଳେ ନିର୍ଦ୍ଦିଷ୍ଟ ସ୍ଥାନ ନିରୂପଣ ସମ୍ଭବ ନୁହେ । ଭାବସାଧନା ସମ୍ପୂର୍ଣ୍ଣ ରୂପେ ଅନ୍ତଃରାଜ୍ୟର ବ୍ୟାପାର । ପୁଣି ସାଧକମାନଙ୍କ ଜୀବନରେ ସବୁବେଳେ ଏକ ଅବସ୍ଥାର ବିଲୟ ଓ ପରବର୍ତ୍ତୀ ଚେତନାର ସମାଗମ ନିର୍ଦ୍ଦିଷ୍ଟ ସମୟର ବ୍ୟବଧାନରେ ସଂଘଟିତ ହୋଇନଥାଏ । ଅନେକ ସମୟରେ ଏକାଧିକ ଭାବଚେତନା ସନ୍ନିସଂପୃକ୍ତ ହୋଇ ବିଦ୍ୟମାନ ଥାନ୍ତି । ତେଣୁ ସର୍ବଦା ଏକ ଚେତନାର ସମାପ୍ତି ଓ ଅନ୍ୟର ସମାରମ୍ଭକୁ ସୂଚିତ କଲାଭଳି ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ଚିହ୍ନ ଓ ପରିମାପ ଭାବସାଧନା କ୍ଷେତ୍ରରେ ଅନ୍ୱେଷଣ କରିବା ଫଳପ୍ରଦ ହୋଇପାରେନାହିଁ ।

---

୧-ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ, ଆନନ୍ଦମୟ ।

2. 'Mysticism'–Evelyn Underhill– Chap–1

3. Fransis Brabazon– 'Stay with God'–p 35

4. Haribanaa Raybachan's—Yeats and occultism p. 90

Digitized by PPRACHIN, SOA

ରହସ୍ୟାଶ୍ରୟୀ ରଚନାମାନଂକରେ ଏହି ଭାବସାଧନାତ୍ମକ ଆତ୍ମାନୁଭୂତିର କ୍ରମବିକାଶ ସାଧକମାନଂକର ବ୍ୟକ୍ତିଗତ ସୃଜନଶୀଳ ଭାବବୈଶିଷ୍ଟ୍ୟ ଯେପରି ନିର୍ଦ୍ଦିଷ୍ଟ ରୂପକାତ୍ମକ ବା ପ୍ରତୀକାତ୍ମକ ଅଭିବ୍ୟଞ୍ଜନା ଲାଭ କରିଥାଏ । ଯେଉଁ ଅଧ୍ୟାତ୍ମ-ସାଧନାରେ ପରମଚୈତନ୍ୟ ସହଜ ସ୍ୱରୂପରେ ଆତ୍ମ-ବୋଧରେ ଚିର ଜାଗ୍ରତ ରୂପେ ପରିବେଷିତ, ସେଠାରେ ତାଦାତ୍ମ୍ୟ ଉପଲବ୍ଧି ପାଇଁ ଭାବଜଗତରୁ ବହିର୍ବିଶ୍ୱକୁ ନିଷ୍କାସିତ କରି ଆପଣାଠାରେ ମଗ୍ନଚୈତନ୍ୟର ସ୍ୱରୂପ ଉନ୍ମୋଚନ କରିବା ପାଇଁ ମୁଖ୍ୟତଃ ବିନ୍ଦୁ, ନାଦ ବା ଶୂନ୍ୟ ସାଧନା-ପ୍ରତୀକର ବ୍ୟବହାର ହୋଇଥାଏ । କିନ୍ତୁ ସାଧନାବ୍ରତୀ ଓ ତନ୍ତ୍ରବାଦୀ ସାଧକମାନଂକର ଏବଂବିଧ ରଚନାମାନ ସ୍ୱତଃ ତତ୍ତ୍ୱଗର୍ଭିତ, ଦୁର୍ବୋଧ, ଗୂଢ଼ାର୍ଥକ । ଅନ୍ତତଃ କଳାତ୍ମକ ରମଣୀୟତା ବା ଚମତ୍କାରିତା ସମ୍ପାଦନରେ ଏମାନଂକ କ୍ୱଚିତ୍ ସାଫଲ୍ୟ ଦେଖାଯାଏ । ପକ୍ଷାଂତରେ କାବ୍ୟାତ୍ମକ ମାଧୁର୍ଯ୍ୟ ଓ ରସସିଦ୍ଧି ଦୃଷ୍ଟିରୁ ରହସ୍ୟ-ସାଧନାର ତୀର୍ଥଯାତ୍ରା (pilgrimage) ପରିକଳ୍ପନାଟି ସ୍ୱତଂତ୍ର ବିସ୍ମୟର ଦାବୀ ରଖେ । ଏ କ୍ଷେତ୍ରରେ ଦିବ୍ୟସତ୍ତା ସୁଦୂର ଅଧିବାସୀ । ବିଭିନ୍ନ ଭାବାନୁଭୂତିର ସଂକଟ ଓ ସଂକଳ୍ପ ଭିତରେ ତାଂକର ଦର୍ଶନାଭିଳାଷୀ ସତ୍ତାର ଉଦ୍‌ବେଗାକୁଳିତ ଯାତ୍ରା ସମ୍ବାଦ ଅନେକ ରହସ୍ୟ ରଚନାକୁ ମୁଖରିତ କରିଛି । ରହସ୍ୟବାଦୀ ସାହିତ୍ୟରେ ସର୍ବାଧିକ ପ୍ରିୟ ଓ ବହୁବ୍ୟବହୃତ ରୂପ-ଚିତ୍ରଟି ପ୍ରୀତି ସାଧନା-ମୂଳକ । ପ୍ରେମ ଅନୁଭୂତିର ଚରମ ଉପଲବ୍ଧିରେ ଆତ୍ମାଧିଷ୍ଠିତ ଅରୂପ ଅନ୍ତର୍ଯ୍ୟାମୀଙ୍କୁ ପ୍ରିୟ ପୁରୁଷୋତ୍ତମ ରୂପରେ ଅଭିଗମନ କରିବା ହିଁ ଏ ଭାବସାଧନାର ବୈଶିଷ୍ଟ୍ୟ । ତେବେ, ଯେଉଁ ଚିତ୍ର-ପ୍ରତୀକକୁ ଆଶ୍ରୟ କରୁନା କାହିଁକି, ମିଷ୍ଟିକ୍‌ର ଉପଲବ୍ଧିର ଧାରା ସର୍ବଦା ସମାଂତରାଳ ଭାବଚେତନାର ଆରୋହଣ କ୍ରମରେ ଉଦ୍‌ବର୍ତ୍ତିତ ହୋଇଥିବାର ସଂକେତ ସେଥିରେ ସୁସ୍ପଷ୍ଟ ।

**ତୀର୍ଥାଟନ ବା ଯାତ୍ରାପ୍ରତୀକ—**

× × × "ତାରି ଲାଗି ରାତ୍ରି ଅଂଧକାରେ ଚଲେଛେ ମାନବ-ଯାତ୍ରୀ, ଯୁଗ ହତେ ଯୁଗାଂତର ପାନେ ଝଡ଼ଝଂଜା ବଜ୍ରପାତେ, ଜ୍ୱାଲାୟେ ଧରିୟା ସାବଧାନେ ଅନ୍ତର-ପ୍ରଦୀପ ଖାନି"[୫] × × ×

ପାପତାପକ୍ଳିନ୍ନ, କଳଂକକ୍ଲାନ୍ତ, ଦୁଃଖଯାତନା ଅବସନ୍ନ ଏ ନରକ-ଭୀରୁ ମର୍ତ୍ତ୍ୟଜୀବନ ମୁକ୍ତି ଓ ଶାଂତିର ଏକ ଅକ୍ଷୟ-ସ୍ୱର୍ଗକୁ ଚିରଂତନ କାମନା କରିଆସିଛି । ସେହି ସ୍ୱର୍ଗର ବିଭିନ୍ନ ବର୍ଣ୍ଣନ କରିଆଣେ ସୁଦୂର ତୀର୍ଥର ପୁଣ୍ୟାଲୋକ । ମୁମୁକ୍ଷୁ ଚିରଦିନ ମୁକ୍ତିର ସ୍ଥାନଟିକୁ, ଦେବତାର ଧାମଟିକୁ, ପରମରମଣୀୟ ନନ୍ଦନକାନନ, ମଧୁବନ, ଅମର୍ତ୍ତ୍ୟଗୋଲକ, ବୃନ୍ଦାରଣ୍ୟ, ଜେରୁଜାଲେମ୍, ମଂଜଲେ-ମୀମ[୬] ବୋଲି ନିର୍ଦ୍ଦେଶ ଦେଇଆସିଛି । ତାହାହିଁ ମାନସ ହଂସର ମାନସରୋବର, ସ୍ୱର୍ଣ୍ଣ ସନ୍ଧାନୀର ଏଲଡୋରାଡୋ El-dorado ।[୭] ତୀର୍ଥ ଯାତ୍ରାରୂପଚେତନାଟି ରହସ୍ୟବାଦୀର ରଚନାରେ ବହୁଳ ବ୍ୟବହୃତ ମିଷ୍ଟିକ୍‌ର ଏକ ପ୍ରିୟ ଅଭିବ୍ୟକ୍ତି । ଚିଂତା ଚେତନାର ବହୁ ବିଚିତ୍ର ଭାବପ୍ରବାହର ସମାଧାନ ତଥା ସମନ୍ୱୟର ସୂତ୍ର ଖୋଜିବାରେ ସତ୍ତାର ବିପୁଳ ଓ ଦୁଃସାହସିକ ଯାତ୍ରା-ଉଦ୍ୟମ ଏ ଚିତ୍ର-ପ୍ରତୀକରେ ସୁପରିସ୍ଫୁଟ । ତୀର୍ଥାଟନ ସହ ଆଶା ବିଶ୍ୱାସ ଆନଂଦ ପୁଣି କ୍ଲେଶଯଂତ୍ରଣାର ସମ୍ପର୍କଟି ଅତି ଘନିଷ୍ଠ । ଏକ ପକ୍ଷରେ ଯାତ୍ରୀର ଅଧ୍ୟାତ୍ମ-ପିପାସା, ପାର୍ଥିବ ଅନାସକ୍ତି ଓ

---

୫ ରବୀନ୍ଦ୍ରନାଥ 'ଏବାର ଫିରାଓ ମୋରେ'-(ଚୟନିକା ସଂଚୟିତା) ପୃ-୨୨୨

୬- ଇସ୍‌ଲାମୀୟ ପରମଧାମ

୭- ଅକ୍ଷୟ 'ସ୍ୱର୍ଣ୍ଣ-ରାଜ୍ୟ' ସମ୍ପର୍କିତ ପାଶ୍ଚାତ୍ୟ ବିଶ୍ୱାସ କଳନା (Myth of Eternal golden Land)

Digitized by PPRACHIN, SOA

ପ୍ରାତ୍ୟହିକତାଠାରୁ ନିଷ୍କୃତିକାମନା; ଅପରପକ୍ଷରେ ଯାତ୍ରାପଥର ସୁଦୂରତା, ପଥପାର୍ଶ୍ୱସ୍ଥ ପ୍ରଲୋଭନ ଓ ଅପଥର ଆମନ୍ତ୍ରଣ, ପଥ ମଧ୍ୟସ୍ଥ ବିପଦ୍ରାଜି, ନିବିଡ଼ ଅରଣ୍ୟ, ନିର୍ଜନ ମରୁଭୂମି, ଗହନ ଜଳାବର୍ତ୍ତ, ଦୁର୍ଲଂଘ୍ୟ ଗିରିଚୂଡ଼ା, ଅଂଧକାର ରାତ୍ରି, ଉତ୍ତପ୍ତ ମଧ୍ୟାହ୍ନ, ବହୁ ପ୍ରାକୃତିକ ବଜ୍ରପାତ, ବିପର୍ଯ୍ୟୟ ପୁଣି ଶାରୀରିକ କ୍ଲାଂତି ଓ ମାନସିକ ଅବସନ୍ନତା ଆଦି ବହୁ ପ୍ରତିକୂଳ ପରିସ୍ଥିତି—ସବୁ ସତ୍ତ୍ୱେ ବି ତୀର୍ଥଦେବତାର ସମ୍ମୋହିନୀ ଆକର୍ଷଣ, ମୁକ୍ତି ଓ ପ୍ରାପ୍ତିର ବାଇବେଲୀୟ ପ୍ରତିଶ୍ରୁତି ('seek, you shall find') ଉପରେ ଏକାଂତ ନିର୍ଭରତା, ଯାତ୍ରାପଥର ପରମ ପାଥେୟ ରୂପେ ଯାତ୍ରୀର ସହଚର୍ଯ୍ୟା କରିଥାଏ ।

କେଉଁ ବିପୁଳ ଜଳଧିର ନିର୍ଜନ ଦ୍ୱୀପରେ, ପାତାଳୀ ଗୁହାର ନିରଂଧ୍ର ଅଂଧକାରରେ, ଭାବ-ସାଧନାର ତମିସ୍ର-ଯଂତ୍ରଣା ଭିତରେ ସାଧକ ଏକାକୀ ଅଚିହ୍ନା ଦେବତାକୁ ଅଜଣାସ୍ଥାନରେ ଅନ୍ୱେଷଣ କରିବୁଲେ । ପଥ ମଧ୍ୟରେ ସାମୟିକ ଶ୍ରାଂତି ଅପନୋଦନର ବିସ୍ମୟକର ଆୟୋଜନ, ପାନ୍ଥଶାଳାର ଅପ୍ରତ୍ୟାଶିତ ଅଭ୍ୟର୍ଥନା, ଦେବତାର ଅନୁଗ୍ରହ ପ୍ରତି ତାକୁ ଆଶାୟୀ କରିଦିଏ । ଭାବ-ସାଧନାର ଏ ଦୁର୍ଜ୍ଞେୟ ପଥଟିର ଏକ ସୁଂଦର ରୂପଚିତ୍ର Bunyan ଙ୍କ ରଚିତ 'Pilgrims progress' ପୁସ୍ତକରେ ପ୍ରଦତ୍ତ । କେଉଁଠାରେ ପ୍ରତିରୋଧ, କେଉଁଠାରେ ପ୍ରଲୋଭନ, କେଉଁଠାରେ ବହିର୍ବିଶ୍ୱର ଘଟଣାସଂଘାତ, କେଉଁଠାରେ ବା ଅନ୍ତର୍ଗତ ଭାବବିକ୍ଷେପ ପଦେ ପଦେ ଅଧ୍ୟାତ୍ମ ଯାତ୍ରୀର ('ଖ୍ରୀଷ୍ଟୀୟାନ୍') ଯାତ୍ରାପଥକୁ ବିଘ୍ନିତ କରିଚାଲିଥିଲେ ବି ଆତ୍ମିକ ଦୃଢ଼ତା ଅନ୍ତିମରେ ତାକୁ ଲକ୍ଷ୍ୟସିଦ୍ଧିର ସଫଳତା ଦାନ କରିଛି ।

ଆତ୍ମାର ଅନୁରୂପ ଯାତ୍ରାବିଳାସର ଏକ ସଫଳ କାବ୍ୟଚିତ୍ର ଇଟାଲୀୟ ରେନେସାଁର ପ୍ରମୁଖ କବି ଦାନ୍ତେଙ୍କର Divine comedy ରେ ପ୍ରଦତ୍ତ । ଏହି କାବ୍ୟବର୍ଣ୍ଣିତ ନରକ (inferno) ପାପତାପ ଗ୍ରସ୍ତ ଏଇ ଜଗତ ଓ ସ୍ୱର୍ଗ (paradiso) ପ୍ରେମ ଏବଂ ଆନଂଦର ଚିରସୁଂଦର ଭୂମି; ପ୍ରେମର ବିଶୁଦ୍ଧ ଓ ମଧୁରତମ ଅନୁଭୂତିରେ ହିଁ ଦାନ୍ତେ ସେ ରାଜ୍ୟର ଦ୍ୱାର ଉନ୍ମୋଚିତ କରି ଚିରଂତନ ଜୀବନର ଐଶ୍ୱର୍ଯ୍ୟମଂଦିରକୁ ଅପରୂପ ସୌନ୍ଦର୍ଯ୍ୟଲୋକରେ ଆବିଷ୍କାର କରିଛନ୍ତି ।

ଯାତ୍ରା-ଚିତ୍ରର ଅନ୍ୟ ଏକ ସୁଂଦର ଅଭିବ୍ୟକ୍ତି ପାରସିକ ସୂଫୀ କବି 'ଅତ୍ତର୍'ଙ୍କ ରହସ୍ୟବାଦୀ ରଚନା 'ପକ୍ଷୀସଭା'ରେ (The colloquy of birds) ପ୍ରଦତ୍ତ । ମହାମହିମ ପକ୍ଷୀସମ୍ରାଟ Simurgh ଙ୍କ ରାଜ୍ୟ ସୁଦୂର, ପଥ ଦୁର୍ଗମ । ସେହି ପକ୍ଷୀରାଜ ଅନାଦ୍ୟନ୍ତ, ଅରୂପ ଓ ଅବ୍ୟକ୍ତ । ତାଙ୍କ ସମ୍ମୁଖରେ ଆଲୋକ ଓ ଅଂଧାରର ଅସଂଖ୍ୟ ଆବରଣ । ଏହି ରାଜାଙ୍କର ଅସ୍ତିତ୍ୱ 'ପକ୍ଷ' ବା ଡେଣାରୂପେ ସବୁ ପକ୍ଷୀଙ୍କଠାରେ ବିରାଜିତ । ତାଙ୍କର ଦର୍ଶନାଭିଳାଷୀ ପକ୍ଷୀମାନଙ୍କର ଯାତ୍ରାପଥ ସପ୍ତ ଉପତ୍ୟକା [ୱ] ସମାକୀର୍ଣ୍ଣ । ଚିହ୍ନ ଆୟାସରେ ଏହି ପଥକୁ ଅତିକ୍ରମ କରି ପକ୍ଷୀରାଜଙ୍କ ସହ ଲୀନ ହୋଇ ଯାଇଥିବା କୌଣସି ପକ୍ଷୀ-ଆତ୍ମା ପକ୍ଷରେ ପୁନରାୟ ପାର୍ଥିବ ଜଗତକୁ ପ୍ରତ୍ୟାବର୍ତ୍ତନ କରିବା ସଂଭବ ନୁହେଁ, ତେଣୁ ରାଜବିଭୂତିବର୍ଣ୍ଣନା ଅଥବା ତଲ୍ଲୀନାବସ୍ଥାର ସୂଚନାତ୍ମକ ଉଲ୍ଲେଖ ବ୍ୟତୀତ ଏ ଅନୁଭୂତିର କୌଣସି ବିସ୍ତୃତ ଓ ସ୍ପଷ୍ଟ ବିବରଣୀ ଦେଖିବାକୁ ମିଳେନାହିଁ । ଏଇ ପରିପ୍ରେକ୍ଷୀରେ ରିଚ୍ଚର୍ଡବାଖ୍‌ଙ୍କ ରଚିତ 'ଜୋନାଥନ ସିଗଲ' ପୁସ୍ତକରେ

[ୱ]- ସପ୍ତଉପତ୍ୟକା· Valley of Quest (ଅନ୍ୱେଷଣ), Love (ପ୍ରେମ) Knowledge (ଜ୍ଞାନ) Determination (ପ୍ରତିଜ୍ଞା) unity, Ecstasy (ମିଳନାନଂଦ), Amazement. (ବିସ୍ମୟ) Anihilation (ବିଲୟ)

Digitized by PPRACHIN, SOA

ଜୋନାଥନ ନାମକ ସାମୁଦ୍ରିକ ପକ୍ଷୀର ବିଭିନ୍ନ ଊର୍ଦ୍ଧ୍ୱଲୋକକୁ କ୍ରମାରୋହଣ ସାଧନାର ଏକ ଚମତ୍କାର ରୂପଚିତ୍ର ପରିବେଷିତ । ଆରମ୍ଭରୁ ଜୋନାଥନକୁ ପ୍ରତ୍ୟେକ ବ୍ୟକ୍ତିର ପରମସାର୍ଥକତା ଅନ୍ୱେଷୀ ମୁକ୍ତିକାମୀ ସତ୍ତା-ପ୍ରତୀକ ବୋଲି ନିର୍ଦ୍ଦେଶକରି [9] ଲେଖକ ଏ ରହସ୍ୟାତ୍ମକ ବ୍ୟଞ୍ଜନାକୁ ସ୍ପଷ୍ଟ କରିଦେଇଛନ୍ତି ।

## ପ୍ରୀତ୍ୟୁପାସନା

ରହସ୍ୟବାଦୀ ପ୍ରତିପାଦନରେ ପରମ ପ୍ରେମିକଙ୍କ ସହ ସତ୍ତାର ମହାମିଳନର ଅନୁଭୂତି ହିଁ ଚେତନାର ଶ୍ରେଷ୍ଠ ଅନୁଭୂତି ।[10] ପାର୍ଥିବ ପ୍ରଣୟାନୁଭବର ସମାନ୍ତରାଳ ଚିତ୍ର ସଂଯୋଜନାରେ ଏହି ଅପାର୍ଥିବ ପ୍ରେମସାଧନାର ରୂପନ୍ୟାସ । ଜୀବ ଓ ପରମ ମଧ୍ୟରେ ଏକ ରାଗାତ୍ମକ ପ୍ରୀତି ସଂପର୍କର ସୂଚନା, ସସୀମ ପ୍ରତି ଅସୀମର ଏକ ସପ୍ରେମ ମିଳନର ପ୍ରସ୍ତୁତି ସବୁ ଯୁଗର ସବୁ ଦେଶର ରହସ୍ୟବାଦୀ ରଚନାର ମୁଖ୍ୟ ରସ-ସଂପଦ ।[11] Oldenberg, Bloomfield ପ୍ରଭୃତି ଆଲୋଚକମାନଙ୍କ ମତରେ ଏହା ବ୍ୟକ୍ତିର 'ସତ୍ୟ ସାଦୃଶ୍ୟ ଲିପ୍ସା'ର ପରିଣାମ । ମାନବୀୟ ପ୍ରୀତି-ସଂପର୍କର ପ୍ରତୀକାତ୍ମକତାରେ ସୀମା ଅସୀମର ଏ ପାରସ୍ପରିକ ସଂପର୍କକୁ ରୂପାୟିତ କରିବାର ଏ ରହସ୍ୟବାଦୀ ଅଭିମୁଖ୍ୟଟି ସୁପ୍ରାଚୀନ । J. B. Pratt ଙ୍କ ମତରେ 'ପାର୍ଥିବ ଜୀବନରେ ଉପଲବ୍ଧ ସର୍ବଶ୍ରେଷ୍ଠ ଆନନ୍ଦଟି ପ୍ରେମାନୁଭୂତିର । ତେଣୁ, ସେହି ପ୍ରେମ-ସଂପର୍କର ଉତ୍ପ୍ରେକ୍ଷାରେ ଏ ଶାଶ୍ୱତ ସଂଯୋଗର ଅନୁଭବକୁ କାବ୍ୟିକ ରୂପଦାନ କରିବାର ପ୍ରୟାସ ମନସ୍ତତ୍ତ୍ୱର ସମର୍ଥିତ' ।[12]

ବୃହଦାରଣ୍ୟକରେ ଉଲ୍ଲେଖ ଅଛି, ଆତ୍ମାର ସାକ୍ଷାତ ଉପଲବ୍ଧି ଅନ୍ତରତ, ଆନନ୍ଦ ରୂପରେ ବିହାର । ଯେପରି ପ୍ରିୟାଲିଙ୍ଗନ [13] ସମୟରେ ବ୍ୟକ୍ତି ଭିତର ବାହାର କିଛି ଜାଣିପାରେ ନାହିଁ । ପ୍ରାଜ୍ଞ ଆତ୍ମଆଲିଙ୍ଗନ କାଳରେ ବାହ୍ୟ ଓ ଅନ୍ତରଭେଦ ଜାଣିପାରେ ନାହିଁ । ଅନାତ୍ମବାଦୀ

---

9 "To the real Jonathan Sea-gull, who lives within us all"

"Richard Bagh Jonathan Livingstone-Sea-gull- (dedication page)

10. My rendezvous is appointed : it is certain The Lord will be there and wait till I come. On perfect terms- the comrade the lover, for whom I pine, wil be there.

Manik Verma- Tirubachhakam (tra)-p. 81

୧୧. "ଆମାର ତେ ମନେହୟ, ଆମାର କାବ୍ୟରଚନାର ଏଇ ଏକଟି ମାତ୍ର ପାଲା, ଯାର ନାମ ଦେଓୟାଯାତେ ପାରେ, ଅସୀମେର-ସହିତ ସସୀମେର ମିଳନ ସାଧନେର ପାଲା ।"

ବନସ୍ପତି-ରବୀନ୍ଦ୍ରନାଥ ।

12. "There are several reason why the mystic almost invariably make use of language of human love in describing joy of the love of God. The first and simplest is this that they have no other language to use.....The mystic must have use of expressions drawn from the earthy love to describe his experience, or give up the attempt of describing at all. It is the only way he has of even suggesting to the non-mystical what he has felt"

J. B. Pratt The Religious Consciousness qt E. Underhtill 'Mysticism'-p. 418.

୧୩ "ତଦ୍ ଯଥା ପ୍ରିୟୟା ସ୍ତ୍ରିୟା ସଂ ପରିଷ୍ୱକ୍ତୋ ନ ବାହ୍ୟଂ କିଂଚନବେଦ, ନାଂତରମ । ଏବମେବାୟଂ ପୁରୁଷଃ ପ୍ରାଜ୍ଞେନାତ୍ମନା ସଂପରିଷ୍ୱକ୍ତୋ ନ ବାହ୍ୟଂ କିଂଚନବେଦନାନ୍ତରମ । ତଦ୍ ବା ଅସ୍ୟ ଏତ ଦାପ୍ତକାମମ୍ । ଆତ୍ମକାମ୍ଂ ଅକାମଂ ରୂପମ୍ । ବୃହଦାରଣ୍ୟକ ୪/ ୩/ ୨୧

ଅଧ୍ୟାପକ ବଳଦେବ ଗ୍ରନ୍ଥ 'ଭାରତୀୟ ଦର୍ଶନ'—(ଅନୁବାଦ) ପୃ ୮୫

Digitized by PPRACHIN, SOA

ବୌଦ୍ଧଦର୍ଶନର ଶୂନ୍ୟତା କ୍ରମଶଃ ମହାଯାନୀ ସିଦ୍ଧାନ୍ତରେ 'ପ୍ରଜ୍ଞା' ଓ 'କରୁଣା'ର ଯୁଗନଦ୍ଧ ସ୍ୱରୂପରେ ପରବର୍ତ୍ତୀ କାଳରେ ତନ୍ତ୍ରାନୁଯାୟୀ ବ୍ରଜଯାନ ଓ ସହଜସାଧନା ମାର୍ଗ ପରମ୍ପରାରେ 'ନୈରାତ୍ମ୍ୟଦେବୀ' ରୂପେ ସିଦ୍ଧ ସାଧକଙ୍କୁ ରହସ୍ୟାଲିଙ୍ଗନର ମହାସୁଖ ପ୍ରଦାନ କରିବାର ଶକ୍ତି ପ୍ରଦତ୍ତ ।[୧୪] ବୈଷ୍ଣବ କାବ୍ୟ ଓ ସନ୍ଥ ସାହିତ୍ୟରେ ଭକ୍ତ ଓ ଆରାଧ୍ୟ ମଧ୍ୟରେ ଏହି ରାଗାତ୍ମିକା ସମ୍ବନ୍ଧର ଉଦ୍‌ବୋଧନ ପର୍ଯ୍ୟନ୍ତ । ସୁଫୀ ପ୍ରେମ (ଇଶକ) ଓ ପରମ ପ୍ରେମିକାର (ଲାୟଲା) ସନ୍ଧାନ ସୁଫୀ ସାଧନାର ଚରମ ଲକ୍ଷ୍ୟ ରୂପେ ନିର୍ଣ୍ଣୀତ । ଖ୍ରୀଷ୍ଟୀୟାନ ରହସ୍ୟସାଧନା ବ୍ୟକ୍ତିସତ୍ତାକୁ ବରପୂର୍ବା କନ୍ୟା (bride) ଆଖ୍ୟାଦେଇ ପରମେଶ୍ୱରଙ୍କ ସହ ଭାବ-ସମ୍ପର୍କର ପରିଣତ ରୂପକୁ ଶାଶ୍ୱତପରିଣୟ ରୂପେ ପରିକଳ୍ପନା କରିଛି ।

ସୀମା ଓ ଅସୀମର ଏହି ପ୍ରୀତିମୂଳକ ସମ୍ପର୍କଟି ଏକ ରହସ୍ୟମୟ ଦିବ୍ୟେଚ୍ଛା ପ୍ରଣୋଦିତ ବୋଲି ରହସ୍ୟବାଦୀ ବିଶ୍ୱାସ କରେ । ମର୍ତ୍ତ୍ୟ ସତ୍ତାର ଏହି ଅମର୍ତ୍ତ୍ୟାଭିଳାଷୀ ପ୍ରେମ, ଅରୂପ ଶାଶ୍ୱତ ପ୍ରତି ଜୀବର ଆକର୍ଷଣ ଅନୁଭବ ଏକ ଦିବ୍ୟପ୍ରେମ ଉଦ୍‌ବୁଦ୍ଧ ଓ ସମ୍ପ୍ରେରିତ ବୋଲି ନିର୍ଦ୍ଦେଶ ରହିଛି ।[୧୫] ରହସ୍ୟବାଦୀ ସିଦ୍ଧାନ୍ତରେ ଏଇ ପ୍ରେମ କେବଳ ଅସୀମ ପ୍ରତି ସୀମାର ଆକାଂକ୍ଷା ସଞ୍ଜାତ ନୁହେ, ସୀମାପ୍ରତି ଅସୀମର ବ୍ୟାକୁଳତା ସମ୍ଭୂତ ମଧ୍ୟ ।[୧୬] ସୃଷ୍ଟି ସହ ମିଳନର ମାଧୁର୍ଯ୍ୟ ଉପଭୋଗ ପାଇଁ ସ୍ୱୟଂ ସ୍ରଷ୍ଟା ଆପଣାର ପ୍ରେମାଲୋକରେ ସୃଷ୍ଟିର ପ୍ରାଣ-ପ୍ରଦୀପକୁ ସଞ୍ଜୀବିତ କରେ । ତାର ବିମୋହନ ରାସ-ସଙ୍ଗୀତରେ ସୃଜନର ଗୋପନତମ ହୃତସ୍ପନ୍ଦନ ମଧ୍ୟ ପ୍ରୀତି ଉଚ୍ଛଳିତ ହୁଏ । ରହସ୍ୟବାଦୀ ବିଚାରରେ ଜୀବ ଯେ ପରମଙ୍କ ପ୍ରତି ଏକ ଆକର୍ଷଣର ଆବେଗକୁ ଅନୁଭବ କରେ ତାହା ସ୍ୱୟଂ ପରମଙ୍କର ପ୍ରେମ ଇଚ୍ଛାର ଲୀଳାମାତ୍ର ।[୧୭] ଜୀବ ଏଇ ଅନନ୍ତ ପ୍ରେମାକର୍ଷଣରୁ ନିଜକୁ ଚେତନ କଦାପି ବିଚ୍ଛିନ୍ନ କରି ରହିପାରିବନାହିଁ ।

କାଳିମାମୟ ଅଙ୍ଗାରକଣାଭିତରୁ ତେଜପୂର୍ଣ୍ଣ ଅଗ୍ନି ଦ୍ୟୁତିର ଆବିର୍ଭାବ ପରି ମୋହାଚ୍ଛନ୍ନ ବ୍ୟକ୍ତି ପ୍ରାଣରେ ଏହି ତେଜୋମୟ ପ୍ରେମବହ୍ନି ସ୍ଫୁରିତ ହୋଇ ଜୀବକୁ ପ୍ରବଳ ଭାବେ ଅସ୍ଥିର କରିପକାଏ । ବିସ୍ମୟବିମୂଢ଼ ଜୀବ ଦେଖେ ଚିର ରହସ୍ୟରାଜ୍ୟର ଦେବତା ମାନବର ପ୍ରେମଭିକ୍ଷୁ ହୋଇ ଐଶ୍ୱର୍ଯ୍ୟର ସିଂହାସନରୁ ଓହ୍ଲାଇଆସି ଧୂଳି ଧରଣୀର ଗ୍ଲାନିମାଳିନ୍ୟଭରା ନିର୍ଜନପଥରେ ତାର ଘରର ସନ୍ଧାନ କରି ଚାଲିଛି । ସ୍ରଷ୍ଟାର ଏହି ପ୍ରେମାଭିସାର ଓ ଭାବନିବେଦନ ପରେ ସୃଷ୍ଟି ପକ୍ଷେ ଆଉ ପ୍ରତ୍ୟୁତ୍ତରହୀନ ରହିବା ସମ୍ଭବ ହୁଏନାହିଁ । ଅନିର୍ବଚନୀୟ ଭାବସମ୍ମୋହନରେ ଅଦୃଶ୍ୟ ଅଜ୍ଞାତ ପାଇଁ ଭିତର ବାହାର ସବୁଟ ଏକ

---

୧୪. ସବରେ ଭୁଜଂଗ ନଇରାମଣି ଦାରି ପେହ୍ମରାତି ପୋହାଇଲି ।
ସବର ପାଦ—କରୁଣାକର କର: ଚର୍ଯ୍ୟାଚର୍ଯ୍ୟା ବିନିଶ୍ଚୟ ପୃ୪୮୧

15. "that self-existent transcendent Love spreading itself over all, turning everywhere to certain embrace, unite, help, upraise towards love and bliss and one-ness, becomes cosmic divine love.
Letters of Sri Aurobindo. Vol-III

16. "Earth cannot escape sky, let it flee up or down, the sky flows into it, and makes it fruitful whether it will or no. So God does to man. He who will escape Him only runs to His bosom, for all corners are open to Him."
Eckhart-qt-'Mysticism'—p 136.

17. At what distance would myself and my soul be from our Beloved/ If He and His grace had not guided us both, O my Soul !
Manikverma- 'Tirubachhakam (T) p-143

Digitized by PPRACHIN, SOA

ବିଚାର ଉଦ୍‌ବିଗ୍ନ ଅନ୍ୱେଷା ଜାଗିଉଠେ । ପାର୍ଥିବ ଆକର୍ଷଣ ତୁଚ୍ଛ ହୋଇଯାଏ । ସର୍ବସ୍ୱ ବିସର୍ଜନ ଦେଇ, ସକଳ ବଂଧନ ଅସ୍ୱୀକାର କରି ବ୍ୟକ୍ତି ଏକାକୀ ଅନିବାର୍ଯ୍ୟ ଦିବ୍ୟାଭିସାରର ଅନିର୍ଣ୍ଣିତ ପଥ ରଚନା କରେ ।[୧୮]

## (ଖ) ଚେତନାର ସ୍ତରାଂତର ଯାତ୍ରା = (ଜୟଯାତ୍ରା)

### ଉନ୍ମେଷ ପର୍ବ

ଅଜ୍ଞାତସତ୍ତା ସମ୍ପର୍କରେ ବିସ୍ମୟ ଓ କୌତୂହଳ ଜାତ ଜିଜ୍ଞାସା ବ୍ୟକ୍ତିଚେତନାକୁ ଯେତେବେଳେ ତାର କ୍ଷୁଦ୍ର ଅହଂ-ସୀମାର ଅବରୋଧ ମଧ୍ୟରେ ବି ଏକ ନୂତନ ଅସୀମପ୍ରସାରୀ ବ୍ୟାପ୍ତିର ସମ୍ଭାବନାରେ ଉଦ୍‌ବୁଦ୍ଧ କରନ୍ତି, ବ୍ୟକ୍ତି ଜୀବନରେ ଅଧ୍ୟାତ୍ମ-ଜାଗରଣର ପ୍ରଥମ ଉଷା ଆବିର୍ଭୂତା ହୁଅନ୍ତି ବୋଲି କହିବାକୁ ହେବ । ଅନାହୂତ, ଅଭାବିତ, ଆକସ୍ମିକ ଏଇ ଚମତ୍କାର ଉନ୍ମୁକ୍ତିର ମୁହୂର୍ତ୍ତରେ ବ୍ୟକ୍ତି ଚରାଚର ପରିବ୍ୟାପ୍ତ ଏକ ମହାପ୍ରାଣମୟ ସତ୍ତା ସମ୍ପର୍କରେ ସଚେତନ ହୋଇଉଠେ । ଏ ଯାବତ୍ ଜନ୍ମମୃତ୍ୟୁ କବଳିତ, କ୍ଷୟିଷ୍ଣୁ ଓ ଦେହାଧୀନ ବୋଲି ଜାଣିଆସିଥିବା ଆତ୍ମସତ୍ତାକୁ ମଧ୍ୟ ଏହି ଅବିନଶ୍ୱର ଦିବ୍ୟସତ୍ତାର ଅଂଶହିଁ ବୋଲି ଆବିଷ୍କାର କରି ଅନନ୍ତ ସମ୍ଭାବନାର ଦିଗ୍‌ବଳୟ ସମ୍ମୁଖରେ ହଠାତ୍ ନିଜକୁ ଉପସ୍ଥିତ ଦେଖେ । ବୃହତ୍ତର ସତ୍ତାର ବିଭକ୍ତାଂଶ ରୂପେ ଏଇ ଆତ୍ମଅବବୋଧତାର ଚେତନାର ସକଳ ସ୍ତରକୁ ଗଭୀର ପ୍ରଭାବିତ କରେ । ତାର ଚିନ୍ତାଧାରା, ଭାବଭଂଗୀ ଦୃଗ୍‌ଦର୍ଶନ ସବୁହିଁ ଏକ ଭିନ୍ନ, ସୂକ୍ଷ୍ମ, ବ୍ୟାପକ ଓ ଉଦାରୀକୃତ ଦୃଷ୍ଟିଭଂଗୀର ସ୍ପର୍ଶ ଲାଭ କରେ । ଭାବସାଧନାପଥରେ ଆତ୍ମାର ଏହି ଉନ୍ମେଷ ମୁହୂର୍ତ୍ତର ଗୁରୁତ୍ୱ ରହସ୍ୟବାଦରେ ନବଜନ୍ମ, ଜାଗରଣ, Conversion, Take off ପ୍ରଭୃତି ବାଚନଭଂଗୀରେ ଅଭିବ୍ୟଂଜିତ । ଆକସ୍ମିକ, ଚମକ, ଆଲୋକଦର୍ଶନ ଓ ବିସ୍ତାରବୋଧ ଏହି ସ୍ୱରୂପର ସାଧାରଣ ପରିଚୟ ବହନ କରିଥାଆନ୍ତି ।[୧୯]

ଏହି ଅନୁଭୂତିର ବର୍ଣ୍ଣନା ପ୍ରସଙ୍ଗରେ ମିଷ୍ଟିକ ବହୁ ରୂପକ ଓ ପ୍ରତୀକାତ୍ମକତାକୁ ଅବଲଂବନ କରିଥିବାର ଦେଖାଯାଏ । ଏକ ଗୁହାଅଭ୍ୟଂତରର ଅଂଧାର ଭିତରୁ ବାହାରି ହଠାତ୍ ଆଲୋକ ଉଜ୍ଜ୍ୱଳ ପୃଥିବୀକୁ ଭେଟିବା, ଶୀତଳ ପ୍ରଦେଶରେ ଅକସ୍ମାତ୍ ତୃପ୍ତିକର ବହ୍ନି ସ୍ପର୍ଶ ଲାଭକରିବା ପ୍ରଭୃତି ବର୍ଣ୍ଣନାର ଅବକାଶରେ ଏଇ ଆକସ୍ମିକ ଚମକ ଓ ଭାବମୂଢ଼ତାର ସମ୍ବାଦ ମିଳିଥାଏ ।

ଏଇ ଅନୁଭୂତି ପ୍ରସଙ୍ଗରେ ବେଦବର୍ଣ୍ଣିତ 'ଜ୍ୟୋତିରିବାଧୂମକ' ତାତ୍ପର୍ଯ୍ୟବୋଧୀ ହୋଇଉଠେ । ସବୁ ତମସାର ପରପାରରେ ଆଦିତ୍ୟ ମଂଡ଼ଳର ଉଜ୍ଜ୍ୱଳ ସମ୍ଭାବନା ମିଳିଯାଏ । ଏକ ପ୍ରଜ୍ଜ୍ୱଳ ଅଗ୍ନିବଳୟର ପ୍ରତିଭାସନ, ଏକ ପ୍ରବଳ ଚୁଂବକୀୟ ଆକର୍ଷଣ ବ୍ୟକ୍ତିଚେତନାକୁ ଉଚକିତ କରିଦିଏ । ଏକ ନୂତନ

18. a) "Ah I go tell them I sailed for the deep Sea"

Al Hallaj-qt. James Kritzect Anthology of Islamic literature-p-108.

b) "Sail forth-Steer for the deep waters only/ O my brave soul/ O farther, farther sail/ O daring joy, but safe, are they not/ all the seas of God"

Whitman-qt Egebert O. Oliver 'Studies in American literature' p-121.

19. "It is a change of state, the most momentous that ever occurs in human experience....It usually involves a sudden and acute realization of a splendour and adorable reality in the world"

J. B. Pratt- Religious Consciousness qt- E. Underhill—Mysticism'—p 177

Digitized by PPRACHIN, SOA

ପ୍ରଭାତର ମଧୁର ଊଷାଲୋକରେ ବ୍ୟକ୍ତି ଯେଉଁ ପ୍ରବଳ ଉତ୍ସାହ ଓ ଉନ୍ମାଦନା ଅନୁଭବ କରେ, ଗ୍ରୀକ୍ ରହସ୍ୟବାଦ ତାକୁ 'enthusiasm' ବୋଲି ନାମକରଣ କରିବା ଭିତରେ ଏକ ନବପ୍ରାପ୍ତ ଶକ୍ତିସ୍ଫୁରଣ ଓ ଭାବଗତ ଚାଞ୍ଚଲ୍ୟକୁ ସଙ୍କେତ କରି ଥାଇପାରେ । ଏଇ ଅପୂର୍ବ ଅନୁଭୂତି, ଅପରିସୀମ ବ୍ୟାପ୍ତିର ସମ୍ବାଦରେ ବ୍ୟକ୍ତିସତ୍ତା ଏକ ନୂତନ ସାର୍ଥକ ଜୀବନର ପ୍ରତିଶ୍ରୁତିକୁ ଲାଭ କରିଥିବା ଭଳି ପ୍ରୀତି ଅନୁଭବ କରେ । ନିଜ ସମ୍ପର୍କରେ ଓ ବହିର୍ବିଶ୍ୱ ସମ୍ପର୍କରେ ତାର ପୂର୍ବପୋଷିତ ସମସ୍ତ ଚିନ୍ତାଧାରା ଯେପରି ବିପର୍ଯ୍ୟସ୍ତ ହୋଇଯାଏ । ତାର ସମ୍ମୁଖଜଗତରୁ କୁଜ୍ଝଟିକାର ରହସ୍ୟାବରଣ ଅପସୃତ ହୋଇଯାଏ । ସବୁକିଛି ଉଦ୍ଦେଶ୍ୟନିଷ୍ଠ ସତ୍ୟତାରେ ଅର୍ଥାନ୍ୱିତ ହୋଇଉଠେ ।[୨୦]

ଏହା ପରିଚିତ ଜଗତ ଓ ଅଭ୍ୟସ୍ତ ଜୀବନଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏକ ଦେଖା ବୋଲି ମନେହୁଏ । ମାତ୍ର ମିଷ୍ଟିକ୍ ଏହାକୁ କେବେ ବି ସୁଦୂର, ଜୀବନ-ବିମୁଖ, କାଳ୍ପନିକ ଚେତନାବିଭ୍ରମ ବୋଲି ସ୍ୱୀକାର କରେନାହିଁ । ତାର ବିଶ୍ଳେଷଣରେ ବରଂ ଏହା ଅନ୍ଧାର ରାତ୍ରିର କ୍ଷୀଣ ନକ୍ଷତ୍ରଦ୍ୟୁତିରେ ଦେଖିଆସିଥିବା ଅସ୍ପଷ୍ଟ ପୃଥିବୀକୁ ସୂର୍ଯ୍ୟାଲୋକରେ ସ୍ପଷ୍ଟ ଦେଖିପାରିବାର ନୂତନାନୁଭୂତି । ଗଭୀରତର ଓ ବିସ୍ତୃତତର ପରିପ୍ରେକ୍ଷୀରେ ଏ ଦେଖା ସାହାଯ୍ୟରେ ବ୍ୟକ୍ତି ମହାବିଶ୍ୱର ଘନିଷ୍ଠତର ହୁଏ । ଏ ପର୍ଯ୍ୟନ୍ତ ସୀମିତ ଦୃଷ୍ଟିବଳୟ ଭିତରେ ଦୂରରୁ ଦେଖିଆସିଥିବା ବିଶ୍ୱର ବହିଃ ପରିଚୟ ପରିବର୍ତ୍ତେ ତାର ଅନ୍ତଃସ୍ୱରୂପକୁ ଚେତନାର ପ୍ରତ୍ୟକ୍ଷାନୁଭୂତିରେ ଲାଭକରି, ସେ ଯେପରି ଆନନ୍ଦ, ବିସ୍ମୃତି ଓ ବିହ୍ୱଳତାର ଏକ ପ୍ରଚଣ୍ଡ ବିସ୍ମୟ ଚମକ ପ୍ରାପ୍ତହୁଏ । ଜଗତ-ବିମୁଖତା ନୁହେଁ, ବରଂ ଜୀବନବାଦୀ ହେବାର ଯଥାର୍ଥ ପ୍ରେରଣା ମିଷ୍ଟିକ୍ ସେଇ ମୁହୂର୍ତ୍ତରେ ହିଁ ଲାଭକରେ । ଜୀବନର ଅଖଣ୍ଡ ସ୍ୱରୂପ ଅମୂଲ୍ୟ ଦାବୀ ଯେନି ବ୍ୟକ୍ତିର ସକ୍ରିୟ ଆଲିଙ୍ଗନକୁ ଅପେକ୍ଷା କରି ରୁହେ । ଏକ ଦିବ୍ୟ, ମହତ୍ ଓ ଉଦାର ପ୍ରାଣପ୍ରବାହରେ, ମୂଲ୍ୟାୟନରେ ନୂତନ ଦୃଷ୍ଟିଭଙ୍ଗୀ ଏବଂ ସୌନ୍ଦର୍ଯ୍ୟ ଓ ମଙ୍ଗଳ ଚେତନାର ସୂକ୍ଷ୍ମାନୁଭୂତିକୁ ଲାଭକରି ବ୍ୟକ୍ତି ଏକ ବରିଷ୍ଠ ପ୍ରତିଶ୍ରୁତିର ଅବଦାନ ରୂପେ ଆତ୍ମଶକ୍ତିର ଆବିଷ୍କାର ପ୍ରୟାସୀ ହୋଇଉଠେ ।

ଏହି ଅବସ୍ଥାରେ ଚେତନାର ବିସ୍ଫୋରଣ ଏତେ ଦ୍ରୁତ ଓ ଆକସ୍ମିକ ଭାବେ ସଂଘଟିତ ହୋଇଥାଏ ଯେ ବ୍ୟକ୍ତି ତାହାକୁ ଅନ୍ତଃଗୂଢ଼ ପ୍ରେରଣା ପରିବର୍ତ୍ତେ ବାହ୍ୟଶକ୍ତି ପ୍ରଚୋଦନାଜନିତ ବୋଲି ଭାବିନିଏ । ଅଧ୍ୟାତ୍ମ ଅନୁଭବର ଏଇ ପ୍ରଥମ ସମ୍ବାଦରେ, ବିପୁଳ ବ୍ୟାପ୍ତି ଓ ବରିଷ୍ଠ ଆଲୋକସତ୍ତା ସମ୍ମୁଖରେ ପ୍ରବୁଦ୍ଧ ବ୍ୟକ୍ତିଚେତନା ଏହାକୁ ଏକ ସିଦ୍ଧିପ୍ରାପ୍ତିର ମୁହୂର୍ତ୍ତ ବୋଲି ସାମୟିକ ଭ୍ରମକରିବା ବିଚିତ୍ର ନୁହେଁ । ମାତ୍ର ରହସ୍ୟବାଦୀ ବିଗ୍ରହରେ ଏହି ଚେତନା କେବଳ ପୂର୍ଣ୍ଣତାର ସମ୍ବାଦ ଆଣି ଦେଇଥାଏ । ପ୍ରାପ୍ତି ନୁହେଁ । ଭାବସାଧନା ପଥର ଏ ପ୍ରଥମ ଊଷାଲୋକ ପରବର୍ତ୍ତୀ ବିପୁଳ ଆଲୋକାନୁଭୂତିର ସୂର୍ଯ୍ୟସରଣୀକୁ ରେଖାଙ୍କିତ କରିଦିଏ । ଏ ଉପଲବ୍ଧିରେ ବ୍ୟକ୍ତିର ଆତ୍ମ ସାକ୍ଷାତ୍କାର ଘଟେନାହିଁ । ଆତ୍ମ-ଅବବୋଧ ଜାଗ୍ରତ ହୋଇଥାଏ । ଏହା ଦିବ୍ୟ ସାକ୍ଷାତ୍କାରଜନିତ ବିଭୂତିଯୋଗ କିମ୍ବା ଦିବ୍ୟସଂଯୋଗ ନୁହଁ ବରଂ ଦିବ୍ୟତା ପ୍ରାପ୍ତିର ସମ୍ଭାବନାମୟ ପଥସଙ୍କେତ ବୋଲି ଗ୍ରହଣ କରିବା ସମୀଚୀନ । କହିବାକୁ ଗଲେ ପରବର୍ତ୍ତୀ ଅବସ୍ଥାରେ ଭୂମାସହ ସୀମାର ସମ୍ପର୍କନିର୍ଣ୍ଣୟ ଓ ସୀମାର ଭୂମାୟିତ ହେବାର ସମ୍ଭାବନାର ଏହା ପ୍ରଥମ ସଚେତନ ମୁହୂର୍ତ୍ତ ଓ କ୍ରିୟାତ୍ମକତାର ପ୍ରଥମ ପ୍ରେରଣା ଭୂମି ।

---

20. of something far more deeply interfused, Whose dwelling is the light of setting suns / And the round ocean, and the living air / And the blue sky, and in the mind of/ A motion and a spinit, which impels/ All thinking things, / all objec's of the thoughts,/ And rolls through all things...."

Wordsworth—The Prelude

Digitized by PPRACHIN, SOA

ଏଇ ପ୍ରସାରିତ ସମ୍ଭାବନା ସହ ବ୍ୟକ୍ତିତ୍ୱର ସ୍ଥିତାବସ୍ଥାମୂଳକ ସୀମାସଙ୍କୋଚନ ଏଇ ପର୍ଯ୍ୟାୟରେ ବ୍ୟକ୍ତିଠାରେ ବହୁଭାବ ବିକ୍ଷୋଭ ଓ ଅନ୍ତର୍ଦ୍ୱନ୍ଦ୍ୱ ସୃଷ୍ଟି କରେ । ......ଚେତନାର ଜାଗରଣକୁ ମିଷ୍ଟିକ୍ ଦିବ୍ୟସତ୍ତାର ଅକୁଣ୍ଠିତ ପ୍ରେମପ୍ରସାଦ ବା ଦିବ୍ୟାନୁଗ୍ରହ (Grace) ବୋଲି ବିଶ୍ୱାସ କରେ । ମାତ୍ର ପାର୍ଥିବ ସ୍ଥିତିଗତ ବନ୍ଧନ ଦଶାହେତୁ ସେ ନିଜକୁ ଏଇ ଅନୁଗ୍ରହର ଉପଯୁକ୍ତ ମନେକରିପାରେ ନାହିଁ । ଦେହମନପ୍ରାଣର ଦାବୀକୁ ଉପେକ୍ଷା କରିବା ଏବଂ ସେମାନଙ୍କୁ ଅଧ୍ୟାତ୍ମ ଲକ୍ଷ୍ୟାନୁବର୍ତ୍ତୀ କରିବାର ସାମର୍ଥ୍ୟ ତାର ନଥାଏ । ଏକ ମହାମୁକ୍ତିର ପ୍ରଥମ ବାର୍ତ୍ତାରେ ଆପଣାର ଅହଂ-ବନ୍ଧନକୁ ସେ ନିବିଡ଼ ଭାବେ ଅନୁଭବ କରେ । ଉନ୍ମୁକ୍ତ ଜୀବନ ପ୍ରାଙ୍ଗଣର ଆଲୋକ-ଅନଳ-ବଞ୍ଚିତ ଅସହାୟ ବନ୍ଦୀତ୍ୱକୁ ଆବିଷ୍କାର କରେ ।[20] ଉଲ୍ଲାସ ଓ ସଙ୍କୋଚନ, ହର୍ଷ ଓ ବିଷାଦ, ବିପୁଳ ଭାବ ବିସ୍ଫୋରଣରେ ସତ୍ତାକୁ ଦ୍ୱିଧାଭିନ୍ନ କରିଦିଅନ୍ତି । ଏଇ ତୀବ୍ର ଭାବାନୁଭୂତି ଭିତରେ ସୁଦୂରସ୍ଥ ହିରଣ୍ୟରଶ୍ମି ସତ୍ତାର ଅନ୍ତର୍ବର୍ତ୍ତୀ ସ୍ଫୁଲିଙ୍ଗ ହୋଇ ଯେପରି ପ୍ରଜ୍ଜ୍ୱଳିତ ହୋଇଉଠନ୍ତି । ତାଙ୍କୁ ଚିର ଦେଦୀପ୍ୟମାନ କରି ରଖିବାର ସାଧନା ବ୍ୟକ୍ତି ଜୀବନର ଏକମାତ୍ର କର୍ମ ହୋଇପଡ଼େ ।

ଏଇ ନୂତନ ଜୀବନର ପ୍ରାରମ୍ଭିକ ଅବସ୍ଥାରେ ଭାବ ବିକ୍ଷୁବ୍ଧ ବ୍ୟକ୍ତିସତ୍ତା ମାନସିକ ଭାରସାମ୍ୟହୀନ ଅବ୍ୟବସ୍ଥିତତା ଓ ବିଶୃଙ୍ଖଳା-ଗ୍ରସ୍ତ ହୋଇପଡିବା ବିଚିତ୍ର ନୁହେ । ସ୍ଥଳବିଶେଷରେ ବ୍ୟକ୍ତିଠାରେ ଏହା ବିଭିନ୍ନ ଶାରୀରିକ ଓ ମାନସିକ ଅସ୍ୱାଭାବିକତା-ମାଧ୍ୟମରେ ପ୍ରକଟିତ ହୋଇଥାଏ । ମାତ୍ର ଚେତନାର ଊର୍ଦ୍ଧ୍ୱତର ବିକାଶ ପାଇଁ ଉନ୍ମାଦନା ଓ ଚେତନା-ଶୃଙ୍ଖଳ୍ୟ ପରିବର୍ତ୍ତେ ଭାବସଂହତି, ମାନସିକ ଭାରସାମ୍ୟ ଏବଂ ନିର୍ଦ୍ଦିଷ୍ଟ ସାଧନାକ୍ରମର ପ୍ରୟୋଜନ ରହିଛି । ଜାଗରଣକାଳୀନ ଭାବ-ଉନ୍ମାଦନାକୁ କ୍ରମଶଃ ଆତ୍ମଗତ କରି ସମାହିତ ଭାବରେ ଉତ୍ତରଣ ଚେତନାପର୍ଯ୍ୟାୟକୁ ଉଦ୍‌ବର୍ତ୍ତିତ କରିପାରିଲେ ଭାବ ସାଧନାର ନିର୍ଦ୍ଦିଷ୍ଟ କ୍ରମଟି ସୁରକ୍ଷିତ ରହିଥାଏ ।

ଅନେକ କ୍ଷେତ୍ରରେ ଏହି ଉପଲବ୍ଧି ପ୍ରଚଣ୍ଡ କ୍ରିୟାଶୀଳତା ବା କର୍ମ ପ୍ରେରଣାରେ ପ୍ରକାଶ ଲାଭ କରିଥାଏ । ଆଜନ୍ମଦରିଦ୍ର ଅକସ୍ମାତ୍ କୁବେର-ସମ୍ପଦ ଲାଭର ସମ୍ବାଦ ଶୁଣିଲାପରି ବ୍ୟକ୍ତି ଏହି ଅପ୍ରତ୍ୟାଶିତ ସମ୍ବାଦକୁ ସହସ୍ର ସ୍ୱରୂପରେ ବ୍ୟକ୍ତ କରିବସେ । ହଠାତ୍ ବର୍ଷାରେ ଶୀର୍ଣ୍ଣ ଜଳାଧାର ଉଚ୍ଛ୍ୱାଳ ହୋଇଉଠିବା ପରି ବ୍ୟକ୍ତି ଆପଣାର ଏହି ନବଲବ୍ଧ ଅକୁଣ୍ଠ ଆବେଗକୁ ବିଶ୍ୱପ୍ରାଙ୍ଗଣରେ ଅଜାଡି ଦେବାକୁ ବ୍ୟାକୁଳ ହୋଇପଡ଼େ । ଶିଳ୍ପ, ସାହିତ୍ୟ, ସଙ୍ଗୀତ, ବିଜ୍ଞାନ ସକଳ କ୍ଷେତ୍ରରେ ଏହି ଉତ୍ସାହର ରୂପପ୍ରକାଶକୁ ଦେଖି ନିର୍ଣ୍ଣୟ କରିହୁଏ ।

ଚେତନାର ଏହି ଆଲୋକିତ ଅବସ୍ଥା ମିଷ୍ଟିକ୍ ପାଇଁ ଚିରସ୍ଥାୟୀ ହୋଇ ରହିନଥାଏ । ଭାବସମ୍ବେଗର ପ୍ରଚଣ୍ଡ ଉନ୍ମାଦନା ସ୍ୱାଭାବିକଭାବେ କ୍ରମଶିଥିଳତା ପ୍ରାପ୍ତହୁଏ । କେତେକଙ୍କ ଚେତନାରେ ଏହା ଅପେକ୍ଷାକୃତ ଦୀର୍ଘକାଳ ସ୍ଥାୟୀ ହେଲେହେଁ ଅନେକଙ୍କ ଶୀଘ୍ର ଅପସାରିତ ହୋଇଥାଏ । ଏହାର ଗଭୀରତର ଓ ବ୍ୟାପକତର ସମ୍ପୃକ୍ତି ସାଧକର ବ୍ୟକ୍ତିତ୍ୱ ତଥା ସଜ୍ଞାନ ପ୍ରଚେଷ୍ଟାମୂଳକ ପ୍ରସ୍ତୁତି ଉପରେ ମଧ୍ୟ ନିର୍ଭର କରେ । ମାତ୍ର ସମସ୍ତ ସୀମା ଯାହା ହେଉନା କାହିଁକି, ଏ ଅନୁଭୂତିକୁ ଥରେ

---

20. Iam swept up to Thy Beauty, but torn away from Thee by my own weight"

St. Augustine, quote-Evelyn-Mysticism

Digitized by PPRACHIN, SOA

ଲାଭ କରିଥିବା ବ୍ୟକ୍ତିର ଦୃଷ୍ଟିଭଂଗୀରେ ପୂର୍ବତନ ଅନାଲୋକିତ ଚେତନାର ବିଶ୍ୱର ବିଭ୍ରାଟ ଓ ଦୃଷ୍ଟି ବିଭ୍ରମ ଆଉ କେବେ ଠିକ୍ ସେହିପରି ଆସେନାହିଁ ବୋଲି କୁହାଯାଇ ପାରେ । ପୁନଶ୍ଚ ବ୍ୟକ୍ତିସତ୍ତା ଅଖଣ୍ଡ ସୁରକ୍ଷା ଓ ସାହାଯ୍ୟ ସମ୍ପର୍କରେ ଏକ ନିଶ୍ଚିତ ପ୍ରତ୍ୟୟର ଦୃଢ଼ତାକୁ ଲାଭ କରେ ।

ମାନବ ଚେତନାରେ ଊର୍ଦ୍ଧ୍ୱାୟନ ଓ ନିମ୍ନାବତରଣର ସଂଘର୍ଷ ଅନବରତ କ୍ରିୟାଶୀଳ । ମନସ୍ତତ୍ତ୍ୱର ବିଶ୍ଳେଷଣରେ ଚେତନାର ଉଲ୍ଲଂଘନ ଯେତିକି ଦ୍ରୁତ ଓ ଊର୍ଦ୍ଧ୍ୱାୟିତ, ତାର ପରବର୍ତ୍ତୀ ନିମ୍ନ-ପତନ ମଧ୍ୟ ସେତିକି କ୍ଷିପ୍ର । ଚେତନା ସଂଘାତର ଏହି ପ୍ରବଳ ତରଂଗ ଭଂଗ ଭିତରେ ନିଷ୍କମ୍ପ ରହିବାର ସାଧନା ହିଁ ମିଷ୍ଟିକ୍ ପାଇଁ ପ୍ରଥମ ଶକ୍ତିପରୀକ୍ଷାର ଆହ୍ୱାନ ହୋଇ ଦେଖାଦିଏ, ପରବର୍ତ୍ତୀ ସଂଘର୍ଷ ମୁଖର ପ୍ରସ୍ତୁତିପର୍ବ (Purgation) ଏହି ଆହ୍ୱାନର ଅବଶ୍ୟଂଭାବୀ ପରିଣତି ।

## ପ୍ରସ୍ତୁତ ପର୍ବ (ଆତ୍ମକର୍ଷଣ)

ମନସ୍ତତ୍ତ୍ୱର ବିଶ୍ୱରରେ ଭାବବିସ୍ଫୋରଣର ଅବ୍ୟବହିତ ପରର ମାନସିକ ଚେତନା ସ୍ୱାଭାବିକ ଭାବରେ କ୍ଳାନ୍ତ, ଦୁର୍ବଳ ଶିଥିଳ ହୋଇଯାଏ । ଆବେଗ ଉନ୍ମାଦନାର ଉଦ୍‌ବେଳିତ ଅବସ୍ଥାଟି ପରବର୍ତ୍ତୀ ପର୍ଯ୍ୟାୟରେ ଭଟାଶୀର୍ଣ୍ଣ ସମୁଦ୍ରପରି ପ୍ରାୟ ଉଦାସବିଷଣ୍ଣ, ତେଣୁ ଉନ୍ମେଷ ବା ଜାଗରଣ ପର୍ବସ୍ଥିତ ଚେତନାର ଉଚ୍ଛ୍ୱସିତ ଅବସ୍ଥା ଓ ଊର୍ଦ୍ଧ୍ୱାୟିତ ଗତିପ୍ରବାହ ନିମ୍ନାବତରଣ କରେ । ଆଲୋକ ଓ ଆନନ୍ଦର ଅନୁଭୂତି ପରେ ପରେ ହିଁ ଗଂଭୀର ଅନ୍ଧକାରମୟ ନୈରାଶ୍ୟ ଅରଣ୍ୟରେ ସାଧକ ବିଭ୍ରସ୍ତ, ବିମୂଢ଼ ହୋଇପଡ଼େ ।

ଏହି ଅବସ୍ଥାର କାରଣ ସମ୍ପର୍କରେ ରହସ୍ୟବାଦୀ ବିଶ୍ୱରର ଅଭିମତ ଯେ—ପ୍ରଥମାବସ୍ଥାରେ ଏକ ସମୁଜ୍ଜ୍ୱଳ ଅସୀମ ସତ୍ତା ସମ୍ପର୍କରେ ସଚେତନତା ସହ ପାର୍ଥିବ ଜୀବନ ଓ ଇନ୍ଦ୍ରିୟ-ଗ୍ରାହ୍ୟ ଜଗତର ସୀମାବୋଧ–ଅର୍ଥାତ୍ 'ନିତ୍ୟ ସତ୍' ଓ 'ଆପାତଃ' ସମ୍ପର୍କରେ ଏକ ପ୍ରବଳ ଦ୍ୱନ୍ଦ୍ୱମୁଖର ଚିତ୍ତବିକ୍ଷୋଭ ସାଧକକୁ ଭାବ ସଂଘର୍ଷରେ ବିକ୍ଷୁବ୍ଧ କରିଦିଏ । ସତ୍ ଓ ଅସତ୍ ସମ୍ପର୍କରେ ଏହି ସୂକ୍ଷ୍ମ ଅବବୋଧଟି ଏ ଯାବତ୍ ସହାବସ୍ଥାନ ସୂତ୍ରରେ ମାନିନେଇଥିବା ଆପାତଃସହଜ ଜୀବନର ପ୍ରଲୋଭନ ଓ ନବାବିଷ୍କୃତ ଚିରଂତନ ଜୀବନର ଆମଂତ୍ରଣ ଭିତରେ ଯୋଗସୂତ୍ର ଖୋଜିବାକୁ ଚେଷ୍ଟାକରେ । ସାଧକ ଚିତ୍ତର ଏଇ ଯନ୍ତ୍ରଣା ଉଭୟ ନୈତିକ ଓ ଶାରୀରିକ ପ୍ରତିକ୍ରିୟାରେ ପ୍ରକଟିତ ହୋଇଥାଏ । ଅବଚେତନରେ ପାପବୋଧ (ପ୍ରାଚ୍ୟ ବିଶ୍ୱାସର ପୂର୍ବଜନ୍ମାର୍ଜିତ କର୍ମ ବଂଧନ ଓ ପାଶ୍ଚାତ୍ୟ ଚେତନାର ଆଦିସ୍ଖଳନ (The first sin) ବ୍ୟକ୍ତି ପ୍ରାଣରେ ଅନୁଶୋଚନା ଓ ଆତ୍ମଦହନର ତୁଷାନଳ ଜାଳିଦିଅନ୍ତି । ଦେହବଂଧନ, ଓ ସୀମା ଦୈନ୍ୟଜନିତ ଅସହାୟତା ସେଥିରେ ଇନ୍ଧନ ଯୋଗାଇଦିଅନ୍ତି । ଅନ୍ତରରେ ଆତ୍ମାର ଅଧିକାରକୁ ବ୍ୟକ୍ତି ତଥ୍ୟରୂପେ ଜାଣିଥାଏ, ଅଥଚ ସେ ଅମୃତାଳୟରୁ ନିଜକୁ ଦୂର ନିର୍ବାସିତ ଦେଖେ । ସିଦ୍ଧି ପଥରେ 'ଅହଂ' ଚେତନାକୁ ପ୍ରଧାନ ପ୍ରତିବଂଧକ ରୂପେ ଆବିଷ୍କାର କରେ । ଦେହର ପ୍ରୟୋଜନକୁ ସମର୍ଥନ କରିପାରେ ନାହିଁ । ମାତ୍ର ଦେହକୁ ବାଦ୍ ଦେଇ ବିଦେହକୁ ଲାଭ କରିବାର ଭିନ୍ନ ଆଧାର ଖୋଜିପାଏ ନାହିଁ । ଏହି ଅବସ୍ଥାରେ ଦେହ-ସହ ହାଲିସ ବାଂଧିବାର ଯେତେ ନୂତନ ସୂତ୍ରମାନ ସେ ପ୍ରୟୋଗକରେ, 'ଦେହାତୀତ' ସମ୍ପର୍କରେ ସେତିକି ନିଷ୍ଫଳ ହୋଇଯାଏ । କ୍ରମଶଃ ଦେହକୁ ଅସ୍ୱୀକାର ଓ ଅବଜ୍ଞା ପରିବର୍ତ୍ତେ ବୃହତ୍ତର ପ୍ରୟୋଜନ ସିଦ୍ଧିପାଇଁ ଦେହକୁ ଉପଯୋଗ କରିବାର ସମ୍ଭାବନା କ୍ଷେତ୍ରମାନଂକୁ ସେ ଆବିଷ୍କାର କରିବସେ । ସାଧକ ପରମ-ପ୍ରାପ୍ତି ପଥରେ ଦେହକୁ ବାଧା-ସ୍ୱରୂପ

Digitized by PPRACHIN, SOA

ଅନୁଭବ କଲେ ମଧ୍ୟ ଦେହନଷ୍ଟ ବା ଆତ୍ମହତ୍ୟା କରିବାର ଯଥାର୍ଥତା ଖୋଜିପାଏ ନାହିଁ । ବରଂ ଅଦେଖା ସତ୍ତାକୁ ଦେହାନୁଭୂତିରେ ଲାଭକରିବାପାଇଁ ପାର୍ଥିବ ଶରୀରକୁ ଦିବ୍ୟଇଚ୍ଛାର ଏକ ସୁନ୍ଦର ଓ ସାର୍ଥକ ଆଧାର ରୂପେ ଦେଖିପାରିବାର ନୂତନ ଦୃଷ୍ଟି ଲାଭକରେ । ଏହି ଅବସ୍ଥାରେ ହିଁ ଉନ୍ମେଷପର୍ବର ଭାବୋନ୍ମାଦନା ସହ ବୌଦ୍ଧିକତା ଓ ମନନଶୀଳତାର ସଂଘର୍ଷ ଘଟିଥାଏ । ଗତାନୁଗତିକ ଭ୍ରାନ୍ତି-ବିଳାସରୁ ମୁକ୍ତ ହେବାପାଇଁ ଆଗ୍ରହ ସହ ନବଲବ୍ଧ ଜ୍ଞାନଚନ୍ଦନ ଏହି ସମୟରେ ସାଧକ ମନରେ ବହୁ ପ୍ରାୟୋଗିକ ସୁବିଧା-କ୍ଷେତ୍ର ସୃଷ୍ଟି କରିଦିଏ । ଲଘୁମନ୍ୟତା, ନିଃସଙ୍ଗପ୍ରିୟତା ପ୍ରଭୃତି ମାନସିକ ସଂକୋଚନ ସହ ଇନ୍ଦ୍ରିୟ-ନିଗ୍ରହ, ସରଳ ନିରାଡ଼ଂବର ଜୀବନଯାତ୍ରା, ବିଷୟବାସରେ ଅନାସକ୍ତ ପ୍ରଭୃତି ସନ୍ନ୍ୟାସୀ-ସୁଲଭ ଆତ୍ମକର୍ଷଣ ମୂଳକ ଆଚରଣରେ ଏହି ମୁମୁକ୍ଷାର ଆକୁଳତା ଓ ଯନ୍ତ୍ରଣାକାତରତାର ଚିହ୍ନ ସୁସ୍ପଷ୍ଟ । ଆତ୍ମଦୈନ୍ୟର ତୀବ୍ରତା ସହ ଦୈବୀ-ଅନୁଗ୍ରହ ଉପରେ ବିଶ୍ୱାସନିର୍ଭରତା ମଧ୍ୟ ବୃଦ୍ଧିଲାଭ କରିବା ଏ ପର୍ଯ୍ୟାୟର ବିଶେଷ ମାନସିକତାର ଲକ୍ଷଣ ।

ସୁତରାଂ ଏହି ଅବସ୍ଥାଟିକୁ ମିଷ୍ଟିକ୍‌ର ଅନ୍ତର୍ଜୀବନର ଚରମ ସନ୍ଧିସ୍ଥ ଅବସ୍ଥା ରୂପେ ଗ୍ରହଣ କରାଯାଇପାରେ । ଅସୀମ ପ୍ରତି ସତ୍ତ୍ୱାର ଉନ୍ମୁଖତା ଏବଂ ବ୍ୟକ୍ତି-ବିକାଶର ସମ୍ଭାବନାମୟ ସ୍ୱୀକୃତି ଆପାତତଃ ଦୃଷ୍ଟ ସମସ୍ତ ଅସହାୟତା ଓ ବିଘ୍ନକୁ ଅତିକ୍ରମ କରିଯିବା ପାଇଁ ବ୍ୟକ୍ତି ପ୍ରାଣରେ ଧୈର୍ଯ୍ୟ, ଆବେଗ ଓ କ୍ରିୟା-ତତ୍ପରତା ଭରିଦିଏ । ବ୍ୟକ୍ତିକ ବୈଶିଷ୍ଟ୍ୟ ଯେଉଁ ସେ କ୍ରିୟାଶୀଳତା ପ୍ରବର୍ତ୍ତୀ, ସନ୍ନ୍ୟାସ, ଲୋକକଲ୍ୟାଣ ବା କଳାସାଧନା ମାଧ୍ୟମରେ ଅଭିବ୍ୟକ୍ତ ହୋଇଥାଏ । ଯେ କୌଣସି ସାଧନାମାର୍ଗରେ ବି ଗଭୀର ଆନ୍ତରିକତା, ନିଷ୍ଠା ଓ ଏକାଗ୍ରଚିତ୍ତ କର୍ମପ୍ରେରଣାକୁ ଜୀବନଦେବତାଙ୍କ ଉଦ୍ଦେଶ୍ୟରେ ଏକାଂତଭାବେ ଉତ୍ସର୍ଗ କରିଦେବାର ବ୍ୟାକୁଳତା ଭିତରେ ସାଧକ ସେ ସଫଳତାର ଆଶ୍ୱାସନାକୁ ଅନ୍ତର୍ବର୍ତ୍ତୀ କରି ରଖିଥାଏ ।

ନିଶ୍ଚିତ ଭାବରେ ଏହା ଏକ ଅନ୍ୱେଷଣ ଓ ଭାବବିକ୍ଷୁବ୍ଧ ଅବସ୍ଥା । ପ୍ରାପ୍ତିର ଆଶା ସହ ଅପ୍ରାପ୍ତିର ଆଶଂକା, ବିରାଟ ଦେବତା ଓ କ୍ଷୁଦ୍ର ବ୍ୟକ୍ତିତ୍ୱ, ଅସୀମ ଆତ୍ମା ଓ ସୀମିତ ଅହଂସତ୍ତ୍ୱା, ପାପ ଓ ପୁଣ୍ୟ, ଭଲ ଓ ମନ୍ଦ, ଉଚିତ ଓ ଅନୁଚିତ ଇତ୍ୟାଦି ବ୍ୟବଧାନଗତଚେତନା ସାଧକ ପ୍ରାଣରେ ପ୍ରବଳ ସଂଘାତ ସୃଷ୍ଟି କରେ । ନିଷ୍ଠାର ଅଭାବ ଏବଂ ଧୈର୍ଯ୍ୟ-ଚ୍ୟୁତି ଘଟିଲେ ଭାବ-ସାଧନାର ଅଗ୍ରଗତି ଏହି ପର୍ଯ୍ୟାୟରେ ବ୍ୟାହତ ହୋଇଯିବାର ଯଥେଷ୍ଟ ସମ୍ଭାବନା ରହିଛି ।

ପୂର୍ବତନ ଜାଗରଣକାଳୀନ ଉଚ୍ଛ୍ୱସିତ ଭାବାବେଗର ଏହି ପର୍ଯ୍ୟାୟରେ ଆତ୍ମଦୈନ୍ୟ ଓ ବହିଃପ୍ରକ୍ଷିପ୍ତ ବାଧାବିଘ୍ନମାନଙ୍କର ବାଲିବଂଧ ଭିତରେ ସତେ ଯେପରି ପଥ ଖୋଜିବୁଏ । ଗଭୀର ମାନସିକ ଗ୍ଲାନି ଓ ସ୍ଥାନ-ବିଶେଷରେ ଶାରୀରିକ ଶ୍ରମ ସାଧକକୁ କ୍ଳାଂତକରି ଦେଇଥାଏ । ଏକ ଦୋଦୁଲ୍ୟମାନତା ଭିତରେ ଚେତନା ମନ୍ଥନ ଏ ଅବସ୍ଥାର ସବିଶେଷ ଲକ୍ଷଣ । ପାର୍ଥିବର ସମ୍ମୋହନ ଓ ଉପଭୋଗ ଆସକ୍ତି ନଷ୍ଟ ହୋଇନଥାଏ, ମାତ୍ର ଜାଗତିକ ଅସାରତାବୋଧ ଓ ଏକ ମହାଜାଗତିକତାର ଆକର୍ଷଣ ବଳରେ ବ୍ୟକ୍ତି ପାର୍ଥିବ ଜୀବନର କକ୍ଷଚ୍ୟୁତ ହୋଇ ମହାଶୂନ୍ୟର ଅସୀମପଥରେ ଯେପରି ନୂତନ ପଥ-ସଂଧାନ କରିବୁଲେ । ଏକ ସ୍ଥିର କେନ୍ଦ୍ରୀ କକ୍ଷପଥରେ ପ୍ରତିଷ୍ଠିତ ନ ହେବା ପର୍ଯ୍ୟଂତ ଅନିଶ୍ଚୟତା ଭିତରେ ଦୋଦୁଲ୍ୟମାନ ଉଲ୍‌କା ତୁଲ୍ୟ ତାର ଭାବଚେତନା ଆଶା-ନିରାଶାର ଘନାବର୍ତ୍ତ ମଧ୍ୟରେ ମୁହୂର୍ମୁହୁ ଅସ୍ଥିର ହୋଇଉଠେ । ମନସ୍ତତ୍ତ୍ୱର ବିବେଚନାରେ ଏହି ସମୟର ଅସଂହତ ଭାବବିକ୍ଷେପ ବ୍ୟକ୍ତିକୁ ତାର ପରିଚିତ ଜଗତସହ ଅନେକ ପରିମାଣରେ ଅସମ୍ବଂଧିତ ଓ ଅନ୍ୟମନସ୍କ କରି ରଖେ ।

Digitized by PPRACHIN, SOA

ଅଭ୍ୟସ୍ତ ଜୀବନଠାରୁ ଏକପ୍ରକାର ମାନସିକ ନିର୍ବାସନ ଘଟେ । ଆପଣାର ନିର୍ଜନ-ହୃଦୟ ପଥରେ ପ୍ରାଣାରାମଂକର ଅନ୍ୱେଷଣ ଉତ୍କଣ୍ଠା ଭିତରେ ବହିର୍ଜଗତର ସ୍ଥିତି ସଚେତନତା ଯେପରି ଅନ୍ତର୍ହିତ ହୋଇଯାଏ । ଏହି ଯଂତ୍ରଣାରୁ ନିବୃତ୍ତିର କଥା କିଂତୁ ମିଷ୍ଟିକ୍ କେବେ କୁହେ ନାହିଁ । ଏକ ସ୍ଥିର ପ୍ରାପ୍ତିର ନିଶ୍ଚିତ ଆଶା ଭିତରେ ଅପେକ୍ଷାର ସାର୍ଥକତା ନୂତନ ଅର୍ଥପ୍ରାପ୍ତିରେ ପ୍ରତୀକ୍ଷାଜନିତ ଏ ଯଂତ୍ରଣାକୁ ମଧୁମୟ କରିଦିଏ । ଏ ପ୍ରାପ୍ତି ସାଧନା ପଥରେ ମୃତ୍ୟୁ ମଧ୍ୟ ତୁଚ୍ଛ ମନେହୁଏ । ବରଂ ଅମୃତ-ମହିମାରେ ଭାସ୍ୱର ହୋଇଯାଏ । ସାଧକର ନିଜଭାଷାରେ 'ପବିତ୍ର-ପ୍ରେମର ଏ ଦିବ୍ୟ ଦାବାନଳ'[21] ଅହଂର ବିନାଶ ଓ ଚିତ୍ତଶୁଦ୍ଧି ଭିତରେ ଅଗ୍ନିଲୌହକୁ ଦଗ୍ଧକରି କଳଂକମୁକ୍ତ କରିବାପରି ଏଇ ଆତ୍ମ-ଦହନ ପ୍ରକ୍ରିୟା ସାଧକକୁ ବ୍ୟକ୍ତି-ସ୍ୱାତଂତ୍ର୍ୟ ଓ ଜାଗତିକ ପାପବୋଧରୁ ମୁକ୍ତ ହେବାକୁ ସାହାଯ୍ୟ କରିଥାଏ ।

ମିଷ୍ଟିକ୍ ବିବେଚନାରେ ଯଂତ୍ରଣାର ଏହି ନୂତନ ଅର୍ଥଲାଭ କିଂତୁ କୌଣସି ବିଷାଦବାଦୀ ଭାବଚେତନା ବା ସାଡିଜମ୍ (saddism) ପ୍ରସୂତ ନୁହେ । ଧ୍ୱଂସ ନୁହେ, ବରଂ ଆପାତଃ ଧ୍ୱଂସ ଭିତରେ ସଂଗୁପ୍ତ ସୃଷ୍ଟିର ଆନଂଦକୁ ଏହା କାମନା କରେ । ଦେହାତୀତରେ ବିଶ୍ୱାସ କରୁଥିବାରୁ ଦେହର ବିନାଶପାଇଁ ରହସ୍ୟବାଦୀ ଚିଂତାକରେ ନାହିଁ । ବରଂ ଶରୀର ପ୍ରତି ଗଭୀର ବିତୃଷ୍ଣାର ମଧୁର ରୂପାଂତର ଘଟେ ଶରୀରକୁ ପ୍ରୟୋଜନ-ସାଧନ ରୂପ ପ୍ରୟୋଗ ଭିତରେ । ସାଧକ ଜୀବନରେ ବାହ୍ୟ ଆଚରିକ ନିଷ୍ଠା ଓ ମାର୍ମିକ ଭାବବିଳାସ ଏହି ଅବସ୍ଥାରେ ପରିଦୃଷ୍ଟ ହୋଇଥାଏ । ପୁଣି କଳା ଓ ସାହିତ୍ୟରେ ପ୍ରେମଭାବନାର ବିପ୍ରଲଂଭସ୍ୱର ଏହି ସମୟରେ ଅଧିକ ଧ୍ୱନିତ ହୋଇଥାଏ । ମିଷ୍ଟିକ୍‌ର ନିଜ ଭାଷାରେ ଅସୀମ ସହ ବ୍ୟକ୍ତିତ୍ୱର ସମ୍ପର୍କର ଏହି ହିଁ ଏକ ମଧୁର କ୍ରୀଡ଼ାଚାତୁର୍ଯ୍ୟ । ପ୍ରାଣଦେବତା ଏକାଧାରରେ କୋମଳ ଓ କଠିନ, ଅନୁରାଗୀ ପୁଣି ନିର୍ମମ ଉଦାସୀନ । 'କ୍ରୀଡ଼ା' ଶବ୍ଦଟି ଭାବରାଜ୍ୟରେ ଦୋଦୁଲ୍ୟମାନତା, ଚିତ୍ତ ବିକ୍ଷେପ ଓ 'ସ୍ୱାଦ୍ୟ' ଏକ ମାଧୁର୍ଯ୍ୟକୁ ଇଂଗିତ କରେ । ବେଦନା ଓ ପ୍ରତୀକ୍ଷା ଭିତରେ ପ୍ରେମର ସାନ୍ଦ୍ରତା ଏବଂ ଗଭୀରତାର ବିକାଶ ତଥା ଉପଲବ୍ଧି କ୍ଷେତ୍ରରେ ଏହା ମିଷ୍ଟିକ୍ ପାଇଁ ଏକପ୍ରକାର ସୁଯୋଗ ପ୍ରସ୍ତୁତ କରେ । ଜର୍ମାନ ରହସ୍ୟବାଦୀ ସାଧକ ହେନେରୀ ସୁସୋ ଏହି ଅର୍ଥରେ 'ଯଂତ୍ରଣା ପ୍ରେମର ଆଦିମତମ ରୀତି'[22] ବୋଲି ମଂତବ୍ୟ କରିଥିବେ ।

**ଆଲୋକପର୍ବ**

ରହସ୍ୟ ସାଧନାର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଓ ମହତ୍ତ୍ୱପୂର୍ଣ୍ଣ ଏଇ ଅବସ୍ଥାରେ ବ୍ୟକ୍ତି ଏକ ଶୁଭ୍ର ଆଲୋକ ଓ ଆନନ୍ଦଘନଚେତନା ବଳୟକୁ ଉନ୍ନୀତ ହୋଇଯାଏ । ପୂର୍ବବର୍ତ୍ତୀ ଅବସ୍ଥାରେ ବୁଦ୍ଧି ଓ ଭାବନାର ଗଭୀର ଯୋଗାଯୋଗ ଏଠାରେ ସଂଗତି ଲାଭ କରେ । ଅନ୍ତର୍ଲୋକରେ ଅସୀମ ଓ ସସୀମର ଏଇ ଭେଟାଭେଟିର ଉଜ୍ଜ୍ୱଳ ମୁହୂର୍ତ୍ତଟିରେ ଦିବ୍ୟଧାମ ଓ ପାର୍ଥିବ ରାଜ୍ୟର ଏକ ମଧୁର ସାକ୍ଷାତକାର ଘଟେ । ଦିବ୍ୟ ପ୍ରେମର ସୂର୍ଯ୍ୟସ୍ନାନରେ ଚେତନାରୁ ସକଳ ବିଭ୍ରାଂତିର କୁଜ୍ଝଟିକା ଅନ୍ତର୍ହିତ ହୋଇଯାଏ ।[୨୩]

---

21. "divine furnace of purifying love"   'Sermon of St. Paul' The Innerway–p 114.

22. Suffering is the ancient law of love"   Suso–Qt. 'Mysticism'–P 222

୨୩. ଆମାର ହାଜାର ବଛରେର ଅଂଧକାର ଗୁହା ଏକଟି ଦେଶଲାଇ ଜ୍ୱଲେ ଉଠେ ।

ଅଚିଂତ୍ୟ ସେନଗୁପ୍ତ- 'କବି ଶ୍ରୀ ରାମକୃଷ୍ଣ'—ପୃ ୧୧୯

Digitized by PPRACHIN, SOA

ଅନୁଭୂତରେ ଏହି ବଶିଷ୍ଟ ଉପଲବ୍ଧିର 'ଆଲୋକମୟ' ରୂପଚେତନାଟି ବଶେଷ ତାତ୍ପର୍ଯ୍ୟପୂର୍ଣ ହେତୁ ନାମକରଣ ମଧ ତଦନୁରୂପ[୨୪] (ପ୍ରଭାସ୍ୱର, illumination, enlightenment, ବୋଧିଚତ୍ତ, ଇତ୍ୟାଦ) । ଏହି ଅବସ୍ଥାରେ ଅନ୍ତର୍ଲୋକରୁ ସ୍ଫୁରିତ ଏକ ବଚଚ ଆଲୋକ-ସଂପାତରେ ସ୍ୱୟଂ ବ୍ୟକ୍ତିସତ୍ତା ଓ ସମଗ୍ର ବଶ୍ୱସତ୍ତା ଅଭିସ୍ନାତ ହୋଇ ଏକ ରହସ୍ୟମୟ ଅଥଚ ଅନାବରଣ ସ୍ୱରୂପରେ ପ୍ରତଭାତ ହୁଅନ୍ତ ।[୨୫] 'ସମ୍ୟକଦର୍ଶନ', 'ସତ୍ୟରପ୍ରତଭାସନ', 'ଶାଶ୍ୱତ ଅବବୋଧ' ପ୍ରଭୃତ ସ୍ପଷ୍ଟ ଓ ଦୃପ୍ତ ଉଚାରଣ ଭିତରେ ସାଧକର ଏହି ନବଲବ୍ଧ ଚେତନାର ସୂଚନା ପ୍ରଦତ୍ତ ।

ଏଇ ଆଲୋକରୂପ ଦବ୍ୟଜ୍ଞାନ ବା ପ୍ରଜ୍ଞା ସାଧକର ଅନ୍ତର୍ଲୋକରେ ଏକ ଦୀପ୍ତ ସୂର୍ଯ୍ୟ ଭଳି ଉଦ୍‌ଭାସିତ ହୁଏ । ଏହି ଦୀପ୍ତ ରଶ୍ମି ବଳୟ କଂରୁ ପ୍ରଚଣ୍ଡ ଦ୍ୟୁତମାନ ହେତୁ ସ୍ପଷ୍ଟ ପ୍ରଖର ହୁଏ ନାହିଁ । ଏହି ଆଲୋକ ହିଁ କବ Blake ବର୍ଣ୍ଣିତ 'fourfold vision' ଯେଉଁଥିରେ ଅଦେଖା ହୋଇ ଆଉ କଛି ରହେ ନାହିଁ । ଭବସାଧନାର ପ୍ରଥମାବସ୍ଥାର ଉନ୍‌ମେଷକାଳୀନ ପ୍ରତ୍ୟୁଷଛଟା ରଂଜତ ସାଧକର ଚେତନା-ଲୋକ ଏହି ମୁହୂର୍ତ୍ତିରେ ଜ୍ଞାନସୂର୍ଯ୍ୟର ପ୍ରଥମ ରଶ୍ମି ସପାତରେ ଏକ ପରଚ୍ଛନ୍ନ ଦଙ୍‌ମଣ୍ଡଳକୁ ପ୍ରତ୍ୟକ୍ଷ କରେ, ଆତ୍ମଅବଲୋକନ ମଧ କରବସେ । ଆଲୋକର ଯେଉଁ ପ୍ରଥମ ପ୍ରତଶ୍ରୁତିଟି ତାକୁ ମଂତ୍ରମୁଗ୍ଧ ଭଳି ନର୍ଦିଷ୍ଟ ଲକ୍ଷ୍ୟପଥରେ ଛୁଟାଇ ନେଇଥିଲ, ସତ୍ୟରୂପେ ତାହାହିଁ ସମ୍ମୁଖବର୍ତ୍ତୀ ହୋଇ ଯେପର ବଚତ୍ର ରାଜ୍ୟର ଆଲୋକ ବାର୍ତ୍ତାରେ ତାକୁ ଅଭିଭୂତ କରଦେଲ । ଉପନଷଦୀୟ 'ଆଲୋକାନୁଭୂତ'ରେ ଏହି ଅଭିଭୂତଟି ଏକ ସୁନ୍ଦର କାବ୍ୟକ ଆବେଗ ବହନ କରପାରଛି ।

ନତତ୍ର ସୂର୍ଯ୍ୟୋ ଭାତ ନ ଚନ୍ଦ୍ରତାରକଂ / ନେମା ବଦ୍ୟୁତୋ ଭାନ୍ତ କୁତୋଽୟମଗ୍ନିଃ ॥
ତମେବ ଭାନ୍ତ ମନୁଭାତ ସର୍ବଂ । ତସ୍ୟଭାସା ସର୍ବମିଦଂ ବଭାତ ॥[୨୬]

ଏହି ଅବସ୍ଥାକୁ ଭାବ ସାଧନାର ପ୍ରଥମ ସାଫଲ୍ୟ-ମଣ୍ଡିତ ଅବସ୍ଥା ବୋଲ କୁହାଯାଇପାରେ । ଶାଶ୍ୱତକୁ, ଚରମକୁ ତାର ସତ୍ୟ-ସ୍ୱରୂପରେ ପ୍ରଥମ ଥର ପାଇଁ ବ୍ୟକ୍ତ ଭେଟିଥାଏ । ମୁଖ୍ୟତଃ ଏହା ଏକ ଭେଟାଭେଟିର ମୁହୂର୍ତ୍ତ ବା 'ସାକ୍ଷାତ୍ପର୍ବ';—ଅନ୍ତରର ନଗୂଢ଼ ପ୍ରଦେଶରେ ଅନ୍ତର୍ଯ୍ୟାମୀଙ୍କର ନଭୃତ ଉପଲବ୍ଧି ପୁଣି ବହିର୍ବିଶ୍ୱରେ ସର୍ବବ୍ୟାପୀଙ୍କର ବସ୍ମୟକର ଆବଷ୍କାର । ଏପର୍ଯ୍ୟନ୍ତ ଯେ 'ସତ୍ୟ' 'ନହାର ପ୍ରାବୃତ' ଥିଲ, ଅଜ୍ଞାନ ମେଘାବରଣ ସଂଗୁପ୍ତ ଥିଲ । ଇନ୍ଦ୍ରିୟ-ଅସ୍ୱଚ୍ଛ ଦୃଷ୍ଟି-ବଭ୍ରମର ବନାଶରେ, ଚେତନାର ସ୍ୱଚ୍ଛ ଦର୍ପଣରେ, ଜାଗରଣ ମୁହୂର୍ତ୍ତର ପ୍ରଥମ କରଣ ଝଲକ ସାଧକକୁ ତାର ଦୀପ୍ତୋଜ୍ଜ୍ୱଳ ବଭାରେ ଝଲସାଇ ଦଏ । ସଂଯୋଗ ନୁହେ, ସଂପ୍ରାପ୍ତି ନୁହେ, ବଲୟ ନୁହେ ବା ବସ୍ମୃତ ନୁହେ—ସାକ୍ଷାତ୍ ମୁହୂର୍ତ୍ତର ଏହି ଉଦୟବେଳାରେ ସାଧକ ଏକ ସଚେତନ ଦ୍ରଷ୍ଟାରୂପେ, ଅନୁଭବୀରୂପେ ବ୍ୟକ୍ତି-ଚେତନାର ସ୍ୱତଂତ୍ର ସ୍ଥିତରେ ଜାଗ୍ରତ ରହି ଏହି 'ଆତ୍ମୋଦୟ' କୁ ପ୍ରତ୍ୟକ୍ଷ କରେ ।

---

24 A light not born of sun or moon or fire
A light that dwelt within and saw within
Shedding an intimate visibility.

Sri Aurobindo—'Savitri'—P 595

25 The whole consciousness is flooded with light to unknown depths, under the gaze of which nothing escapes.

Rec 'e' jae—

୨୬ ମୁଣ୍ଡକ ୨।୨।୧୧

Digitized by PPRACHIN, SOA

ଏ ଅତର୍କିତ ଆଲୋକାଭାସର ଅପ୍ରତ୍ୟାଶିତ ଚମକ ତାର ମନୋରାଜ୍ୟରେ ଏହାକୁ ଚରମ ମିଷ୍ଟିକ୍ ଉପଲବ୍ଧି ବୋଲି ବଗୃର ଭ୍ରାଂତ ସୃଷ୍ଟି କରିପାରେ । ମାତ୍ର ବହୁ ଭାବବାଦୀ ବିଶ୍ଳେଷକଂକ ଦ୍ୱାରା ଏହା କେବଳ ପୂର୍ଣ ସାନ୍ନିଧ ଲାଭ ନୁହେଁ, କେବଳ ପରିଚୟ ଲାଭର ମୁହୂର୍ତ୍ତ ବୋଲି ନିର୍ଦ୍ଦିଷ୍ଟ ।

**Ruysobroek** ଏହାକୁ 'ସ୍ୱୟଂ ଆଲୋକ ପରମ' ନୁହନ୍ତି— ବରଂ ପରମଂକର ସେହି ଆଲୋକ ଯାହା ସାହାଯ୍ୟରେ ତାଂକୁ ପ୍ରତ୍ୟକ୍ଷ କରାଯାଏ'[୨୭] ବୋଲି ମତବ୍ୟକ୍ତ କରିଛନ୍ତି । ସାଧକ ଏହି ଅବସ୍ଥାରେ ଏକ ଉର୍ଦ୍ଧ୍ୱତନ ଚେତନାଲୋକକୁ ଉନ୍ନୀତ ହୋଇଯାଇଥାଏ ସତ୍ୟ, ମାତ୍ର ଚରମ ଅବସ୍ଥାରେ ଉପନୀତ ହୋଇନଥାଏ । ମିଷ୍ଟିକ୍‌ର ପ୍ରତୀକ-ଭାଷଣରେ ଏହି ମୁହୂର୍ତ୍ତଟି ସେପରି ଭାବସାଧନାର ଏକମୁଖୀ ରାଜପଥଟିରେ (The King's high way) ପହଞ୍ଚିବାର ବିଶେଷ ମୁହୂର୍ତ୍ତ, ଥରେ ଯେଉଁଠି ପହଞ୍ଚିଗଲେ ଆଉ ବାଟବଣା ହୋଇ ବିପଥଗାମୀ ହେବାର ଆଶଂକା ରହେ ନାହିଁ ।

ଏଇ ଅବସ୍ଥାର ବିଶେଷ ଉପଲବ୍ଧି ୧) ଏକ 'ଦିବ୍ୟ-ସାନ୍ନିଧ ବୋଧ ଓ ୨) 'ମହାଜାଗତିକ ଅବବୋଧ' । ଭାବୋନ୍ମାଦନା (ecstasy) ଏହାର ବାହ୍ୟ ପ୍ରତକ୍ରିୟାତ୍ମକ ଲକ୍ଷଣ ରୂପେ ମଧ୍ୟ ସ୍ଥଳ ବିଶେଷରେ ଆତ୍ମପ୍ରକାଶ କରିଥାଏ ।

**ଦିବ୍ୟସାନ୍ନିଧ୍ୟ**

ଏହି ଅବସ୍ଥାରେ ବ୍ୟକ୍ତି ଅନ୍ତଃରାଜ୍ୟରେ ଏକ ଆଲୋକମୟ ସତ୍ତାର ଉପସ୍ଥିତିକୁ ଅନୁଭବ କରିଥାଏ । ଏହି ଉପସ୍ଥିତିଜନିତ ଦିବ୍ୟାନୁଭୂତି ମୁଖ୍ୟତଃ ଆଲୋକ ଓ ଆନନ୍ଦ ସ୍ୱରୂପରେ ପ୍ରକଟିତ । ରହସ୍ୟବାଦୀ ରଚନାମାନଂକରେ ଏହି ସତ୍ତାର ସ୍ୱରୂପ ବର୍ଣନା ପ୍ରସଙ୍ଗରେ ଅନେକ ବାଗ୍‌ବିନ୍ୟାସ ଓ ପ୍ରକଳ୍ପନ ସତ୍ତ୍ୱେ ଅନିର୍ବଚନୀୟତାଜନିତ ବ୍ୟର୍ଥତାର ସଂବାଦ ସ୍ପଷ୍ଟ । ସ୍ୱୟଂ ଆଲୋକମୟ ସତ୍ତାଟି ଆପଣାର ଜ୍ୟୋତିରେ ବ୍ୟକ୍ତିର ଚେତନାବଳୟକୁ ଉଦ୍ଭାସିତ କରିଦେଉଥିଲେ ବେଳେ ନିଜେ ଏକ ଜ୍ୱଳନମୟ ସହସ୍ରାଂଶୁ-ସ୍ୱରୂପରେ ଅପ୍ରତ୍ୟକ୍ଷ ଓ ଅବର୍ଣନୀୟ ମନେ ହୁଅନ୍ତି ।[୨୮] ଉପନିଷଦର 'ହିରଣ୍ମୟ ପାତ୍ର ସଂଗୁପ୍ତ' ସତ୍ୟ,[୨୯] ପାଶ୍ଚାତ୍ୟ ସାଧକ ଡାୟୋନିସିସ୍‌ଙ୍କ ସଙ୍କେତିତ 'ଦିବ୍ୟାଂଧକାର' (divine darkness), ସୁଟୋଂକ ବର୍ଣିତ 'ସମୁଜ୍ଜ୍ୱଳ ପ୍ରଚ୍ଛନ୍ନତା' (glorious and dazzling obscurity) ଏଇ ଅବବୋଧର କିଂଚିତ୍ ରୂପଆଭାସ ପ୍ରଦାନ କରିପାରନ୍ତି । ଏଇ ଅଂଧକାରହିଁ ଦିବ୍ୟ-ସ୍ୱରୂପଙ୍କର ଚିରଂତନ ନିବାସ[୩୦] ବୋଲି ନିର୍ଦ୍ଦିଷ୍ଟ କରି ଇହୁଦୀ ଚେତନା ଈଶ୍ୱରଙ୍କୁ ଅପ୍ରାପ୍ୟ ବୋଲି ସିଦ୍ଧାନ୍ତ କରିଥାଏ । ଅତ୍ୟୁଜ୍ଜ୍ୱଳ ଆଲୋକ ହେତୁ ଅଂଧୀଭୂତ ବ୍ୟକ୍ତିଚେତନା ଏହି ଅନିର୍ବଚନୀୟତାକୁ ଦିବ୍ୟୋକ୍ତିରେ ପ୍ରତୀକିତ କରିଥିବା ରହସ୍ୟବାଦୀ ରଚନାରେ ସୁଲଭ ।[୩୧]

---

27 This is not Him but the Light in which we see Him.
qt.—'Mysticism'—P 235

28 "Light rare..untellable, lightening the very light."
Whitman : qt. 'Mysticism'—P 255

୨୯ 'ହିରଣ୍ମୟପାତ୍ରେଣ ସତ୍ୟସ୍ୟାପିହିତମୁଖମ୍'—

30 "God dwells in deep darkness !"
Abraham Hershel 'God in search of Man'—P 61

31 "There in God some say / a deep but dazzling darkness, as men have / say it is late and dusky because they see not all clear / O for that Night when I in Him / Might live invisible and dim.'
Vaughan—'Night'—'Metaphysical Poets'—P 281

Digitized by PPRACHIN, SOA

ଦିବ୍ୟସାନ୍ନିଧ୍ୟ ଜନିତ ଉଲ୍ଲାସ ଓ ଇଂଦ୍ରିୟବନ୍ଧନର ବିମୁକ୍ତି ହେତୁ ବ୍ୟକ୍ତି ଏଇ ଅବସ୍ଥାରେ ଜାଗତିକ ଜଂଜାଳ ଓ ଆତ୍ମକୃତପାପବୋଧରୁ ମୁକ୍ତ ଏକ ପବିତ୍ର ଆନଂଦମୟ ଚେତନା ଲାଭକରେ । ପ୍ରାକ୍ ଆଲୋକାନୁଭୂତିର ବିଶୃଙ୍ଖଳ ଏବଂ ପାର୍ଥିବଜଗତସହ ଆସକ୍ତିକସମ୍ପର୍କମୂଳକ ଦୃଷ୍ଟିଭଂଗୀଟିର ଏହି ପରିବର୍ତ୍ତିତ ସ୍ୱରୂପରେ ସେ ନିଜକୁ ଗ୍ଲାନିମୁକ୍ତ ଓ ଦିବ୍ୟ-ପ୍ରେମ-ପ୍ରତିଶ୍ରୁତି ପ୍ରାପ୍ତ ନୂତନ ବ୍ୟକ୍ତିରୂପେ ଅନୁଭବ କରେ । ଅନ୍ତର୍ଜଗତ ଓ ବହିର୍ବିଶ୍ୱ ସର୍ବତ୍ର ଯେପରି ପରମପ୍ରିୟଙ୍କ ମଧୁର ସ୍ପର୍ଶ ତାକୁ ଘେରି ରଖେ ।

ଏହି ଅବକାଶରେ ଯୁଗଯୁଗାଂତର ସାଧନରତ ସତ୍ତ୍ୱର ଅବିରାମ ଯାତ୍ରା ପ୍ରଥମକରି ଯେପରି ସାର୍ଥକତାର ସ୍ୱାଦଲାଭ କରେ । ରହସ୍ୟବାଦୀ ରଚନାମାନଙ୍କରେ ଏ ଅନୁଭବର ସ୍ୱାଭାବିକ ଓ ବହୁଳ ବର୍ଣ୍ଣନାଚିତ୍ର ହୋଇଛି, 'ଆକାଶଭର୍ତ୍ତି ଆଲୁଅ, ପୁଷ୍ପିତ ସୁଂଦରଧରଣୀ, ସ୍ୱୟଂ ପ୍ରେମ-ଦେବତା ହୃଦୟର ନିର୍ଜନ ଦ୍ୱାରଦେଶରେ ସମାଗତ । ଅନୁରାଗ ବିହ୍ୱଳ ଏଇ ନୂତନ ଦୃଷ୍ଟିବଳୟ ଭିତରେ ଅରୂପଦେବତା ଯେପରି ରୂପରଂଗଭରା ସୃଷ୍ଟିର ଛିଦ୍ରେ ଛିଦ୍ରେ ଅପରୂପ ହୋଇ ପ୍ରକାଶ ପାଆନ୍ତି । ପ୍ରକୃତିର ପ୍ରତିଟି ସୁଂଦର ରୂପଚିତ୍ର, ଜୀବନର ପ୍ରତିଟି ମଧୁର ଅନୁଭବ, ପ୍ରୀତିମୁଗ୍ଧ ହୃଦୟ ପାଇଁ ଅସଂଖ୍ୟ ପ୍ରଣୟବାର୍ତ୍ତା ବହନକରି ଆଣନ୍ତି । ଆପଣାକୁ ବିଶ୍ୱଦେବତାଂକ ଅଂଶହିରି ଓ ପ୍ରିୟଦେବତାଙ୍କୁ ଆପଣାର ଅଂତରତମରୂପେ ଉପଲବ୍ଧି କରି ଅନଂତପ୍ରେମର କାଦଂବରୀପାନମତ୍ତ ସାଧକ ବିଚିତ୍ର ପୁଲକାନୁଭୂତିର ଗାନକରେ ।[32] ଏହି ମିଳନାନୁଭୂତିଟି କିନ୍ତୁ ନିଶ୍ଚିତଭାବେ ଦ୍ୱୈତଚେତନାମୂଳକ । ଆତ୍ମବିଲୁପ୍ତି ଜନିତ ଅଦ୍ୱୈତ ସ୍ଥିତି ଏ ଅବକାଶର ଲବ୍‌ଧାନୁଭୂତ ନୁହେ । ତେବେ କର୍ତ୍ତୃତ୍ୱବୋଧରେ ଅହଂସ୍ଫୀତ ନହୋଇ ସତ୍ତ୍ୱା ନିଜକୁ କେବଳ ନିମିତ୍ତମାତ୍ରର ତାତ୍ପର୍ଯ୍ୟ ବୋଧକ୍ଷମ ବୋଲିହିଁ ଉପଲବ୍ଧି କରିଥାଏ ।

## ମହାଜାଗତିକ ଚେତନା (Cosmic Consciousness)

ଏହି ଉପଲବ୍‌ଧିରେ ବ୍ୟକ୍ତିର ସତ୍ୟ-ସାକ୍ଷାତ୍‌କାର ଘଟିଥାଏ ବୋଲି ବର୍ଣ୍ଣନା ଅଛି । ପରମ ସଦ୍‌ବସ୍ତୁ, ସତ୍ୟ, ପ୍ରେମ, ସୌଂଦର୍ଯ୍ୟ, ମଂଗଳ, ଆନଂଦ ପ୍ରଭୃତି ଶାଶ୍ୱତ ସ୍ୱରୂପରେ ବ୍ୟକ୍ତି ଚିତ୍ତରେ ଉଦ୍‌ଭାସିତ ହୋଇଉଠନ୍ତି । ଏ ଉଦ୍‌ଭାସନ ବିଦ୍ୟୁଲ୍ଲାସ ପ୍ରାୟ କ୍ଷିପ୍ର ଏବଂ ତୀବ୍ର । ଅନ୍ତର୍ଜ୍ଞାନ ବା ପ୍ରଜ୍ଞାଲୋକ ଏକ ଚମକିତ ତଡିତାଭାସରେ ବ୍ୟକ୍ତିସମ୍ମୁଖରେ ସତ୍ୟସ୍ୱରୂପକୁ ପ୍ରକଟିତ କରିଦିଏ ।[33] ଏହାହିଁ ଜ୍ଞାନ-ସାଧନାର ତୃତୀୟ ନେତ୍ର ଉନ୍ମୀଳନ । ଚିତ୍ତୋନ୍ମୁକ୍ତିର ଏହି ମୁହୂର୍ତ୍ତରେ ବ୍ୟକ୍ତି ଯେପରି ଅନଂତକାଳଧରି ଚାଲିଥିବା ଦ୍ୟୁଲୋକ, ଭୂଲୋକ ଓ ଅଂତରୀକ୍ଷବ୍ୟାପ୍ତ ଜଡ଼ ଓ ଚେତନର ସର୍ବବାଧବିକାଶ ଓ ଲୀଳାର ଏକ ଅଖଂଡ଼ ପ୍ରବାହ ସମ୍ମୁଖରେ ଅକସ୍ମାତ୍ ଉଭାହୋଇଯାଏ । ସମଗ୍ର ବିଶ୍ୱପ୍ରକୃତି ଓ ସୃଷ୍ଟିକ୍ରିୟା ମହାପ୍ରାଣମୟ

---

32 "I am intoxicated with Love's cup,
The two worlds have passed out my ken."

Rumi— qt. An Anthology of Islamic literature'—P 254
Ed—by James Kritzeck,

33 'Knowledge is a lightening flashed from the silence and all is there. not higher, or deeper in truth, but just there, under our very eyes, awaiting our becoming a little clear. All is so rapid, flashing, . terrible-rapidities of the clear consciousness"

Satprem – 'Adventure of consciousness'—P 212

Digitized by PPRACHIN, SOA

ଆନଂଦଘନ ଚେତନା ସ୍ୱରୂପରେ ପ୍ରତିଭାତ ହୋଇଯାଏ । ଧୂଳିକଣାଟିରେ ସମଗ୍ର ବିଶ୍ୱକୁ ଆବିର୍ଭୂତ ଦେଖିବାର ବିଚିତ୍ର ବିଭୂତିଯୋଗରେ ବ୍ୟକ୍ତିଠାରେ 'ଦିବ୍ୟଦୃଷ୍ଟି'ର (Prophetic vision) ଉନ୍ମୋଚନ ହୋଇ ବ୍ୟକ୍ତିତ୍ୱର ନବଜନ୍ମ ଘଟେ ।[୩୪] ଅନୁଭବୀର ବର୍ଣ୍ଣନାରେ 'ତଖନ ଭୁବନମୟ ଏକଟି ଅଖଂଡ଼ ଜ୍ୟୋତି, ଏକ ଅଖଂଡ଼ ପରମାନଂଦ, ତାତେ ଲୀନ ହୟେ ଗେଲାମ ଧୀରେ ଧୀରେ । ଆର ଅଂତଶୂନ୍ୟ ଅରୂପ ସମୁଦ୍ରେ । ତଖନ ଆବ୍ରହ୍ମସ୍ତମ୍ଭପର୍ଯଂତ ବ୍ରହ୍ମାଣ୍ଡ, ଏକଟି କ୍ଷୁଦ୍ର, କ୍ଷୀଣ, ଶିଳା ହୟେ ଛିଲାମ ଧରଣୀର ଏକକୋଣେ, ମିଶେ ଗେଲାମ ଆସ୍ୱାଦିତ ଆଦ୍ୱୈତ୍ୟ ।''[୩୫] ଅନୁରୂପ ଅନୁଭୂତିର ପ୍ରମାଣ ଦିଅଂତି ଜାକବ ବୋହମ୍ (Jakob Boehme)—'ଏହି ଆଲୋକରେ ମୋର ସତ୍ତା ସବୁକିଛିର ଅନ୍ତର୍ସତ୍ତାକୁ ଦେଖିପାରିଲି ଓ ତୃଣ ଓ ତରୁରେ ମଧ୍ୟ ଈଶ୍ୱରଙ୍କୁ ଆବିଷ୍କାର କରିପାରିଲି ।'[୩୬] ଏହି ଚେତନାକୁ ତେଣୁ ମହାକାଶଚେତନା, ବିଶ୍ୱରୂପପ୍ରତ୍ୟକ୍ଷ, ପ୍ରଜ୍ଞାଲୋକ କହିବାର ମୂଳରେ 'ସର୍ବଂଖଲ୍ୱିଦଂବ୍ରହ୍ମମ୍' ଉପଲବ୍ଧିର ତାତ୍ପର୍ଯ୍ୟ ନିହିତ । ଏହା ଯେପରି ଏକ ଅସୀମ ପ୍ରସାରୀ ବୃତ୍ତ— ଯାହାର କେଂଦ୍ର ସର୍ବତ୍ର ଓ ପରିଧି ଅସ୍ପଷ୍ଟିହୀନା[୩୭] ଆତ୍ମପୋଷଣ ନୁହେଁ, ବିଶ୍ୱପୋଷଣହିଁ ତେଣୁ, ଭବସାଧକର ଜୀବନ ଧର୍ମ ହୋଇଯାଏ । ଉପଲବ୍ଧିର ସାକ୍ଷାତ୍‌ଭୂମିରେ ତମସଃ ପରସ୍ତାତ୍ ପୁରୁଷ ମହାନଙ୍କ ଅଂତର୍ଦୃଷ୍ଟିର ଏ ଐଶ୍ୱର୍ଯ୍ୟୋଜ୍ଜ୍ୱଳ ସନ୍ଦର୍ଶନ । 'ଗୀତା'ର 'ବିଶ୍ୱରୂପ ଦର୍ଶନ' ପ୍ରସଂଗ, ବାଇବଲ ବର୍ଣ୍ଣିତ ସିନାଇ ଶିଖରରେ ମୋଜେସଙ୍କର ସର୍ବତ୍ର ଏକ ପ୍ରଦୀପ୍ତ ଜ୍ୱଳନମୟ ବହ୍ନି-ରୂପ' ପ୍ରତ୍ୟକ୍ଷ ପ୍ରସଂଗ[୩୮] ଏଇ ଅବକାଶରେ ପ୍ରଣିଧାନ ଯୋଗ୍ୟ ।

ଶାଶ୍ୱତ ସହ ମିଷ୍ଟିକର ଏହାହିଁ ପ୍ରଥମ ପ୍ରତ୍ୟକ୍ଷ ଭାବବନ୍ଧନମୟ, ପ୍ରଥମ ପ୍ରାଣସଂଶ୍ଳେଷଣରେ ଏକାଂତ ମୁହୂର୍ତ୍ତ । ଭୂମି ଭିତରେ ଭୂମାର ଏ ଦିବ୍ୟାବିର୍ଭାବର ଅବକାଶରେ ଦିବ୍ୟସତ୍ତା ଓ ଜୀବସତ୍ତା ମଧ୍ୟରେ ଏକ ପରମାତ୍ମର୍ମାନ୍ୱିତା ଜାତ ହୁଏ । 'ବହିର୍ବିଶ୍ୱରେ ପରିବ୍ୟାପ୍ତ ଓ ଅନ୍ତର୍ଭୂମିରେ ସଗୁପ୍ତ,'[୩୯] ଚେତନାର ଏହି ଦ୍ୱିବିଧ ବିସ୍ତୃତ ବ୍ୟକ୍ତିକୁ ଏକ ଅନିର୍ବଚନୀୟ ଭାବାନୁଭୂତିରେ ନିମଜ୍ଜିତ କରିଦିଏ । ସାଧନାମାର୍ଗରେ, ବିଶେଷକରି ଭକ୍ତିବାଦୀ ରହସ୍ୟୋପାସନାରେ (emotive mysticism) ଏଇ ଦ୍ୱୈତାନୁଭୂତିର ମୁହୂର୍ତ୍ତଟି ଏକ ପରମ ଉପଭୋଗ୍ୟ ମୁହୂର୍ତ୍ତ । ଭକ୍ତିବାଦ ଏହିଠାରେ ତୃପ୍ତିଘୋଷଣା କରିବାକୁ ପ୍ରଲୋଭିତ ~~ହୋଇପଡ଼େ । ମିଷ୍ଟିକ୍ ଚେତନା ପରମ-ସାର୍ଥକତାରେ ଅଭିଭୂତ ହୋଇଯାଏ~~ ।

---

34 "I but open my eyes and perfection..and God is seen God. / In the star, in the stone, in the soul, in the flesh and the clod."

Robert Browning "Saul' XVII

୩୫ ଅଚିଂତ୍ୟ ସେନଗୁପ୍ତ 'କବି ଶ୍ରୀ ରାମକୃଷ୍ଣ' ପୃ ୬୮

୩୬ ଦ୍ରଷ୍ଟବ୍ୟ— 'ବହିର୍ମୁଖୀ ରହସ୍ୟବାଦ' ଅଧ୍ୟାୟ

37 "I saw Eternity the othernight / Like a great ring of Pure and endless light. / All calm, as it was bright / And round beneath it, Time in hours, days, years / Driven by the spheres / Like a vast shadow moved in which the world / And all her train were hurled."

Henry Vaughan 'The World' Meltaphysical Poets—271

38 "..every common bush afire with God."

Evelyn—'Mysticism'—P 254

39 "If I have looked without myself, I have found that He is beyond that which is outside of me, and if within, He was at an inner depth still."

St Bernard—qt, 'Mysticism'—P 244

Digitized by PPRACHIN, SOA

ହୋଇପଡ଼େ । ଶିଳ୍ପଚେତନାର ପରମ ସାର୍ଥକତାରେ ଅଭିଭୂତ ହୋଇପଡ଼େ । ଏହି ଅବସ୍ଥାରେ ସାଧକଠାରେ ଏକ ଶକ୍ତିଶାଳୀ ସୂକ୍ଷ୍ମଚେତନାର ଗଭୀର ଓ ବ୍ୟାପକ ବିକାଶ ଘଟେ । ଦାର୍ଶନିକ, ସାଧକ, ଓ କଳାକାରମାନେ ନିଜକୁ 'ସଂପ୍ରେରିତ' (**inspired**) ଅନୁଭବ କରିଥାନ୍ତି । ଭାବ-ସମୁଦ୍ରରେ ବିରାଟ ବିସ୍ଫୋରଣର ଏଇ ଅଭାବନୀୟ ମୁହୂର୍ତ୍ତକୁ ସଙ୍କବ ସୁଂଦର କରି ତୋଳିବାକୁ କଳାସୃଷ୍ଟି ଲୋଭନୀୟ ହୋଇ ଉଠିବାର ତତ୍ପରତା ସହଜେ ଅନୁମେୟ । ବ୍ଲେକ, ଓ୍ୱାଡ଼ସଓ୍ୱାର୍ଥ, ଲିଓନାର୍ଡୋ-ଡ଼ାଭିନଚି, ପାସ୍କାଲ, ବିଥୋଭେନ, ଶ୍ରୀ ଅରବିଂଦ, ରବୀଂଦ୍ରନାଥ, ହୁଇଟମାନ୍ ପ୍ରଭୃତି ଅଗଣିତ ଶିଳ୍ପୀ ଜୀବନ ଏହାର ସାକ୍ଷ୍ୟ ବହନ କରିଛି ।[୪୦]

ଏହି ଅବସ୍ଥାରେ ବ୍ୟକ୍ତିସତ୍ତା ଯେ ତାର ଜାଗ୍ରତ ଅହଂବୋଧରେ ବି ବ୍ୟାପ୍ତ ଚୈତନ୍ୟକୁ ନିରୀକ୍ଷଣ କରିଥାଏ; ଏ ଭାବ-ବିସ୍ଫୋରଣ ତାରି ପ୍ରତିଚ୍ଛବି ମାତ୍ର । ଏକ ଦିଗଂତପ୍ରସାରିତ ସାମୁଦ୍ରିକ ଉଚ୍ଛ୍ୱାସରେ କ୍ଷୁଦ୍ର ତରଂଗଟି ଯେପରି ଆକାଶସ୍ଫୀତ ହୋଇଯାଏ, ବିରାଟବ୍ୟାପ୍ତି ଓ ବିଶ୍ୱତାଦାତ୍ମ୍ୟର ଏହି ବିପୁଳଧିକ୍କା ବ୍ୟକ୍ତିସତ୍ତାକୁ ତାର ସ୍ଥିତି-ସ୍ୱାତଂତ୍ର୍ୟର ଶ୍ୱାସରୋଧୀଗ୍ଳାନିରୁ ମୁକ୍ତକରି ଏକ ବହମାନ ବାତ ହିଲ୍ଲୋଳିତ, ମୁକ୍ତାଲୋକମୟ, ପ୍ରାଣଚଂଚଳ ଆକାଶ ତଳେ ଓହ୍ଲାଇଦିଏ । ଅନେକ ସାଧକ ସ୍ୱାଭାବିକ ଭାବେହିଁ ଏ ପର୍ଯ୍ୟାୟରେ ଭାବୋନ୍ମାଦନାର (**ecstasy**) ଉତ୍କଟ ପ୍ରତିକ୍ରିୟା ଭୋଗନ୍ତି । ସେଥିପାଇଁ ରହସ୍ୟବାଦୀ ଚେତନା ଆତ୍ମମଜ୍ଜନର ଏ ପ୍ରଲୁବ୍ଧ ମୁହୂର୍ତ୍ତ ସମ୍ପର୍କରେ ବହୁ ସତର୍କବାଣୀ ଶୁଣାଇ ଆସିଛି । ଚେତନାର ଉତ୍କ୍ରାଂତି ଧାରାରେ ଏହା କେବଳ ଏକ ସ୍ତର ବିଶେଷ ଓ ଅନ୍ତିମଲକ୍ଷ୍ୟଠାରୁ ଅନେକ ଦୂର । ପୂର୍ଣ୍ଣତ୍ୱ ଅଭିଳାଷୀ ବ୍ୟକ୍ତି ଏହିଠାରେ କଳାତ୍ମକ ଉଚ୍ଛ୍ୱାସପ୍ରବାହ ଓ ଭାବବିଳାସୀର ଉନ୍ମତ୍ତ ନୃତ୍ୟ ଆସରର (ସମା,ମିଷ୍ଟିକ ଡ଼ାନ୍ସ) ସମ୍ମୋହନ, ଦିବ୍ୟ ମଦିରାର ପ୍ରଲୋଭନ ମୁକ୍ତ ହୋଇ ପରବର୍ତ୍ତୀ ପଦକ୍ଷେପ ପାଇଁ ଉଦ୍‌ଯୋଗ କରେ । ଏହି ସମୟରେ ବ୍ୟକ୍ତି ଚେତନାରେ ଦିବ୍ୟୋନ୍ମାଦରୂପେ ଯେଉଁ ଭାବବିହ୍ୱଳତା, ବିଚିତ୍ର ଦୃଶ୍ୟଦର୍ଶନ, ଅଲୌକିକକଳ୍ପ, ଦିବ୍ୟବାଣୀ ଏବଂ ଅସଂଲଗ୍ନ ପ୍ରଳାପ, ଯଂତ୍ରଣା-କାତରତା ପ୍ରଭୃତି ଚିତ୍ତଅବ୍ୟବସ୍ଥିତତା ଓ ଶାରୀରିକ ବିଲକ୍ଷଣମାନ ପରିଲକ୍ଷିତ ହୁଏ, ମନସ୍ତତ୍ତ୍ୱ ତାହାକୁ ଅବଚେତନର ସଂତୃପ୍ତି (**wish fulfilment**) ବୋଲି କଟାକ୍ଷ କରିଥାଏ । ରହସ୍ୟବିଜ୍ଞାନଙ୍କ ମତରେ ଏଗୁଡ଼ିକ ଦ୍ରୁତଚେତନା-ସଂଘାତର ପାର୍ଶ୍ୱସଂସୃଷ୍ଟ ଭାବବିକ୍ଷେପ । ଆଲୋକର ଅପ୍ରତ୍ୟାଶିତ ଚମକ ଓ ଚେତନାର ଅଭାବନୀୟ ବିସ୍ତୃତି ସାଧକ ଚିତ୍ତରେ ପ୍ରବଳ ଭାବସଂଘାତ ଜାତ କରାଇଥାଏ । ଏ ନବାବିଷ୍କୃତ ଭାବରାଜ୍ୟରେ ନୂତନ ଐଶ୍ୱର୍ଯ୍ୟଲାଭର ଉଲ୍ଲାସ ଓ ଆବେଗ ପ୍ରବାହରେ ଅଭିଭୂତ ରହିଗଲେ ପରବର୍ତ୍ତୀ ପଥଚର୍ଯ୍ୟା ସାଧକପକ୍ଷରେ ଆଉ ସମ୍ଭବ ହୁଏ ନାହିଁ । ତେଣୁ ବୁଦ୍ଧ, ଶଙ୍କର, ଏକହାର୍ଟ, ଅରବିଂଦ ପ୍ରଭୃତି ଧ୍ୟାନବାଦୀ ରହସ୍ୟବାଦୀମାନେ ଏହି ଅନୁଭୂତିର ବହିଃପ୍ରକାଶଘଟିତ ଶକ୍ତି ଅପଚୟ ପରିବର୍ତ୍ତେ ନବଲବ୍ଧ ପ୍ରାପ୍ତିକୁ ଚରମ ଓ ପୂର୍ଣ୍ଣସିଦ୍ଧି ପଥରେ ଏକ ଦୃଢ଼ ସୋପାନ ଶ୍ରେଣୀରୂପେ ଗ୍ରହଣ କରିବାକୁ ନିର୍ଦ୍ଦେଶ କରିଛନ୍ତି ।[୪୧] ଏଇ ଆଲୋକାନୁଭୂତିଟି ଯେ ପୂର୍ଣ୍ଣସିଦ୍ଧି ପ୍ରାପ୍ତିର ଅବସ୍ଥା ନୁହେଁ, ତାର ପ୍ରମାଣ,

---

40 In this state of lucidity, symbol and reality, nature and imagination are seen to be one and in it are produced all the more sublime works of art,—since these owe their greatness to the impact of Reality upon the artistic mind."

Letters of Blake—VI. III

41 "It is 'as it were, a resting place upon the steep stair-way of love', where the self turns and sees all about it a transfigured universe, radiant with that same Light Divine which nests in its own heart and leads it on."

Evelyn—'Mysticism —p 264

Digitized by PPRACHIN, SOA

ଏଇଠାରେହିଁ ଚେତନାର ଗତିଧାରା ଛେଦିତ ହୁଏନାହିଁ । ବରଂ ଉତ୍ତରୋତ୍ତର ବିକାଶମାର୍ଗ ସନ୍ଧାନ କରିଥାଏ । ବରଂ କୁହାଯାଇପାରେ, ଏକ ସମ୍ପୂର୍ଣ୍ଣ ପ୍ରାପ୍ତିର ଅଭାବଜନିତ ଅତୃପ୍ତିବୋଧରେ ପ୍ରଥମ ରହସ୍ୟଯାତ୍ରା (first mystic life) ତାର ଦୁଃଖାତ୍ମକ ସମାପ୍ତି ଘୋଷଣା କରେ । ଐଶ୍ୱର୍ଯ୍ୟପୁରର ଦ୍ୱାରଦେଶରେ ଉପଗତ ହୋଇ ମଧ୍ୟ ତାର ଉପଭୋଗ ଅଧିକାର ଲାଭ କରିନଥାଏ । ରତ୍ନସମ୍ଭବା ମହୋଦଧି ବକ୍ଷରେ ବିଳାସପୋତ ଭସାଇଗଲେ ମଧ୍ୟ ଅତଳତଳର ମାଣିକ୍ୟକୁ କରଗତ କରିନଥାଏ । ରହସ୍ୟସାଧକର ଆଦ୍ୟ ଦୁଃଖାନୁଭୂତିଟି ଥିଲା ଅଜ୍ଞାନତାଜନିତ । ସଚେତନ ପର୍ଯ୍ୟାୟର ଏ ବେଦନାବୋଧଟି ଅପ୍ରାପ୍ତିଜନିତ । ପ୍ରାପ୍ତିରି ଅଖଣ୍ଡ ପ୍ରତିଶ୍ରୁତି; ଅଥଚ ଅଧିକାର ଓ ଉପଭୋଗ ସାମର୍ଥ୍ୟର ଅଭାବ ମନସ୍ତତ୍ତ୍ୱ ଦୃଷ୍ଟିରୁ 'ଭୂମୈବ ସୁଖ, ନାଲ୍ପେ ସୁଖମସ୍ତି'ର ବେଦନା ଏଇଠାରେହିଁ ଘନୀଭୂତ ଓ ଯଥାର୍ଥ ସ୍ୱରୂପରେ ଉପଲବ୍ଧ । 'ଅଜ୍ଞାତ' ସମ୍ପର୍କରେ ଯେ କୌତୂହଳ ରହସ୍ୟବାଦୀକୁ ଏକ ଅନ୍ୱେଷଣ-ପଥରେ ଛୁଟାଇ ଆଣିଥିଲା, ତାର ସମାପ୍ତି ଘଟିଲେ ମଧ୍ୟ ଅପ୍ରାପ୍ତିଜନିତ ବ୍ୟାକୁଳତାର ଅବସାନ ଘଟେ ନାହିଁ । ବରଂ ଚେତନାର ଏକ 'ବିଶ୍ରାଂତି ପର୍ବ' ରୂପେ ଏହାର ସାଧନାମୂଳକ ଉପଯୋଗିତା ସ୍ୱୀକୃତ । ଅନ୍ୟପକ୍ଷରେ ଏହାକୁ ସାଧନା-ପଥର ଏକ ଭୟଂକର ଦୁଃସ୍ଥିତି ବୋଲି ମଧ୍ୟ ସଙ୍କେତ କରାଯାଏ । ସାଧକକୁ ପୂର୍ଣ୍ଣସିଦ୍ଧି ଲଭିବାପାଇଁ ପୁନରାୟ ଯେ ଏକ ପୂର୍ବାପେକ୍ଷା ଭୟାବହ ସଙ୍ଘର୍ଷମୁଖର ଚେତନାର ଅଂଧକାର ଅନିଶ୍ଚିତତାକୁ ପ୍ରବିଷ୍ଟ ହେବାକୁ ପଡ଼େ—ଏ ଯେପରି ତାହାରି ପାଥେୟ ସଂଗ୍ରହର ବିରତି ଅବକାଶ । ଏଇ ପରିପ୍ରେକ୍ଷୀରେ 'ଯେଉଁମାନେ ଅଜ୍ଞାତର (ଅମୃତ) ସନ୍ଧାନ କରନ୍ତି, ସେମାନେ ଗଭୀରତର ଅଂଧକାର ରାଜ୍ୟକୁ ଯାତ୍ରା କରନ୍ତି[୪୨]' ଏ ଉପନିଷଦୀୟ ସତର୍କବାଣୀ ସ୍ୱତଂତ୍ର ବିଚାରର ଅବକାଶ ସାପେକ୍ଷ ।

## ଆତ୍ମାର କାଳରାତ୍ରି (The dark night of the Soul)

"None can reach heaven who has not passed through hell."[୪୩]

ରହସ୍ୟ-ସାଧନାର କ୍ରମସ୍ୱରୂପଟି ଉତ୍ଥାନ ପତନର ଏକ ନିର୍ଦ୍ଦିଷ୍ଟ ଛନ୍ଦ ରଚନା କରି ବିବର୍ତ୍ତିତ ହେଉଥିବା ପରି ବୋଧହୁଏ । ପ୍ରଥମ ଉନ୍ମେଷପର୍ବର ଉଚ୍ଛାଟନ ଓ ବିସ୍ମୟୋଲ୍ଲାସ ପରେ ପରେ 'ଆତ୍ମକର୍ଷଣ' କାଳୀନ ସଂଶ୍ରୁଣାସିକ୍ତ ଅନୁଭୂତି ସାଧକକୁ ଭବସାଧନାର ଏଇ ବୈଶିଷ୍ଟ୍ୟଟି ପ୍ରତି ସଚେତନ କରିଦିଏ । ପରବର୍ତ୍ତୀ ପ୍ରଭାସ୍ୱର (illumination) ଅବସ୍ଥାର ଆନୁଷଂଗିକ ପରିଣତିରୂପେ ମିଷ୍ଟିକ୍ ଯେଉଁ ଅନୁଭୂତିରାଜ୍ୟକୁ ପ୍ରବେଶ କରେ, ତାହା ସେହି ଆଲୋକଚେତନାର ସମ୍ପୂର୍ଣ୍ଣ ବିପରୀତ ଏକ ଭୟଙ୍କର ଅଂଧକାରରେ ସମାଚ୍ଛାଦିତ । ସାଧାରଣତଃ ଆଲୋକାନୁଭୂତିରେ ଭବସାଧନାର ପ୍ରଥମ ପର୍ବ (The First Mystic Life) ସମାପ୍ତି ଘୋଷଣା କରିଥାଏ । ତାର ଅବ୍ୟବହିତ ପରର ଅନ୍ଧକାରମୟ ଚେତନା ମିଷ୍ଟିକ୍ ପ୍ରାଣରେ ଯେଉଁ ଅଦ୍ଭୁତ ଭାବବିମୂଢ଼ତା ଓ ନିଷ୍କ୍ରିୟ ନିଃସଂଗତା ଭରିଦିଏ, ଚରମ ସାର୍ଥକତା ଲାଭ ପଥରେ ତାହାହିଁ ପ୍ରଧାନତମ ପ୍ରତିବଂଧକ ବୋଲି ମନେହୁଏ । ଅଧ୍ୟାତ୍ମଯଂତ୍ରଣାର ଏଇ ଦୁଃସହତମ ଅନୁଭୂତି ଚରମ ସଙ୍ଘାତ **(the last crisis)** ରୂପେ ହିଁ ଭବସାଧନାର ସର୍ବାପେକ୍ଷା ଜଟିଳ ଓ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ଅତ୍ମପ୍ରକାଶ

---

୪୨ ଅଂଧଂତମଃ ପ୍ରବିଶନ୍ତି ଯେଽସମ୍ଭୂତିମୁପାସତେ।"
—ଈଶ ୧୨

43. Sri Aurobindo'—'Savitri'—P 257

Digitized by PPRACHIN, SOA

କରି ଅନ୍ତିମ ସାଫଲ୍ୟର ବିଜୟୋଲ୍ଲାସ ପୂର୍ବରୁ ସାଧକ ହୃଦୟକୁ ଚରମ ସଂଘର୍ଷର କୁରୁକ୍ଷେତ୍ରରେ ପରିଣତ କରିଦିଏ । ସଂଶୟ ଓ ବିଶ୍ୱାସର ଭୟାବହ ସଂଗ୍ରାମ ଭିତରେ ନିର୍ପୀଡ଼ିତ ରକ୍ତାକ୍ତ ଆତ୍ମା ଜୀବନର ଚରମ ଦୁର୍ଯୋଗରୂପେ ଏହି କାଳ-ଅଂଧାରର ଭୟାବହତାକୁ ଭେଟିଥାଏ । ସ୍ୱର୍ଗଲାଭ ପୂର୍ବରୁ ନରକବାସ ପ୍ରାପ୍ତହୋଇ ଜୀବନ ତାର ସକଳ ଅନୁଭୂତିର ପୂର୍ଣ୍ଣତା ଲାଭ କରିବା ପାଇଁ ଯେପରି ଏହି ଅଂଧତାମସୀର ଆବିର୍ଭାବ । ରହସ୍ୟବାଦୀ ବିଗ୍ରହର ବିଶ୍ଳେଷଣରେ ଏହି ଅନୁଭୂତିର ଏକ ସ୍ୱତଂତ୍ର ଓ ଅପରିହାର୍ଯ୍ୟ ଆବଶ୍ୟକତା ରହିଛି । ମିଷ୍ଟିକ୍ ବ୍ୟଂଜନାରେ ଅଧ୍ୟାତ୍ମ ଜୀବନର ପରମ ଅଭିଳଷିତ ଅମୃତକୁ ଏକ ଅଗ୍ନିବଳୟ ଘେରି ରହିଛି । ସାଧନାର ମାର୍ଗରେ ସାଫଲ୍ୟର ନିକଟବର୍ତ୍ତୀ ହେବାର ଅର୍ଥ କ୍ରମଶଃ ଏହି ବହ୍ନି ପ୍ରବାହର ସ୍ପର୍ଶାନୁଭୂତି ଲାଭ କରିବା । ଆଲୋକର ଉଜ୍ଜ୍ୱଳତା ସହ ଉତ୍ତାପର ଦହନ ମଧ୍ୟ ଆନୁଷଂଗିକ ଚେତନାରୂପେ ସ୍ୱତଃ ଆସିଥାଏ । ତେଣୁ ଅଲୋକାନୁଭୂତି ପରେ ମିଷ୍ଟିକ ପ୍ରାଣରେ ଯେଉଁ ଯଂତ୍ରଣା ତାହା ସେହି ଉତ୍ତାପର ପ୍ରଖର ଦହନର ଜ୍ୱାଳା ବୋଲି ହିଁ କୁହାଯାଇପାରେ । ପୁଣି ସେ ଅଗ୍ନିବଳୟର ପ୍ରଖର ଉଜ୍ଜ୍ୱଳତା ଭିତରେ ସବୁ ଅସ୍ପଷ୍ଟ, ଦୃଷ୍ଟି ଅଂଧୀଭୂତ । ଯଂତ୍ରଣାର ସ୍ପର୍ଶକୁ ସହ୍ୟ କରିନପାରିଲେ, ଅଗ୍ନିବଳୟକୁ ଅତିକ୍ରମ କରିନଗଲେ ଅମୃତ ଚିରଦିନ ସୁଦୂର ଅପ୍ରାପ୍ୟ ହୋଇ ରହିଯିବ । ତେଣୁ ଏହି ଜ୍ୱାଳା ମିଷ୍ଟିକ ପାଇଁ ଅମୃତ ପ୍ରତିଶ୍ରୁତିର ବାର୍ତ୍ତା ବହନ କରି ଆଣନ୍ତି । ବରଂ ଅଗ୍ନି ପ୍ରବାହରେ ଚେତନାର ମାଳିନ୍ୟ ଭସ୍ମୀଭୂତ ହୋଇଯିବାପରେ ଶୁଦ୍ଧ ଅମ୍ଳାନ ହୋଇ ତାର ଅମୃତତ୍ୱକୁ ପୁନଃପ୍ରାପ୍ତ ହେବ । ରହସ୍ୟବାଦୀ ମନସ୍ତତ୍ତ୍ୱରେ ତେଣୁ ଏ ଅନୁଭୂତି ବିଶେଷର ଏକ ଗୂଢ଼ ତାତ୍ପର୍ଯ୍ୟ ରହିଛି ।

## ସ୍ୱରୂପ

ଆତ୍ମକର୍ଷଣ ପର୍ବର ସମାଂତରାଳ ପୃଷ୍ଠଭୂମିରେ ଏଇ ଚେତନାସ୍ତରକୁ ବିଗ୍ରହ କରାଯାଇପାରେ । ଉଭୟ ଅବସ୍ଥା ଏକ ଆଲୋକଦୀପ୍ତ, ଆନଂଦମୟ, ଦିବ୍ୟସାନ୍ନିଧ୍ୟଲାଭର ମଧୁରାନୁଭବ ପରେ ହିଁ ସଂଜାତ ହୋଇଥାନ୍ତି । ମାତ୍ର ଆତ୍ମକର୍ଷଣକାଳ ଅପେକ୍ଷା ଏ ଚତୁର୍ଥ ଅବସ୍ଥାର ବେଦନାବୋଧ ଓ ଅନୁଭୂତିର ତୀବ୍ରତା ଅଧିକ ଗଭୀର ଏବଂ ବ୍ୟାପକ । ଭାବସାଧନାର ଏଇ ପର୍ଯ୍ୟାୟ ସହ ଅଂଧକାର ଚେତନାଟି ଅଂଗାଂଗୀ ଜଡ଼ିତ । ପୂର୍ବାନୁଭୂତିର ଆଲୋକ ଓ ଆନଂଦମୟ ରାଜ୍ୟରୁ ନିର୍ବାସିତ ହୋଇ ଏଇ ଅବସ୍ଥାରେ ଚରମ ଭାବସଙ୍କଟରେ ଉପନୀତ ହୋଇଥାଏ । ଚେତନାର ଦିଗଂତରୁ ଦିବ୍ୟଜ୍ୟୋତିର ଅପସାରଣ, ଆନଂଦ ଉଲ୍ଲାସର ତିରୋଧାନ ହେବା ସଂଗେ ସନ୍ଦେହ, ବିଷାଦ ଓ ନିରାଶାରେ ଦ୍ୱଂଦାକୁଳ ଚିତ୍ତ ଶାଶ୍ୱତାନୁସନ୍ଧାନର ଦୁର୍ଭେଦ୍ୟ ଦୁରୂହତମ ପ୍ରଦେଶରେ ନିଜକୁ ଏକାକୀ ଅସହାୟ ଓ କିଂକର୍ତ୍ତବ୍ୟବିମୂଢ଼ ଦେଖିବାକୁ ପାଏ ।[44] ରହସ୍ୟବାଦୀ ବର୍ଣ୍ଣନାର ବିଶେଷଣମାନଙ୍କରୁ ହିଁ (ଭୟଙ୍କର ଶାନ୍ତି, ଅଧ୍ୟାତ୍ମ ଅପମୃତ୍ୟୁ ; ଦୁର୍ଭେଦ୍ୟପ୍ରାଚୀର—spiritual darkness, the last crisis, the mystic death, the infinite rock ଇତ୍ୟାଦି) ସାଧକ ଚିତ୍ତର ଏଇ ଅଂଧକାର ଅନୁଭୂତି ଓ ନିରାଶ-ଭାବନାର ଭୟାବହ ସ୍ୱରୂପ ଉଦ୍‌ଘାଟିତ ।

---

44. "Solitude, a harsh intense solitude, and always this strong impression of having been flying headlong into a hell of darkness."

The "Mother—Prayers of Meditation."

(March 3, 1915)

Digitized by PPRACHIN, SOA

ଉନ୍ମେଷ ପର୍ବର ପ୍ରାଥମିକ ଜାଗରଣ ପ୍ରସ୍ତୁତି ପର୍ବରେ ଆତ୍ମଗ୍ଲାନିପୂର୍ଣ୍ଣ ବିଷାଦଭାବନାଦ୍ୱାରା ଆକ୍ରାନ୍ତ ହୋଇଥାଏ । ତାର ପରବର୍ତ୍ତୀ ଆଲୋକାନୁଭୂତିଟିର ଗଭୀରତା ଓ ବ୍ୟାପକତାର ଅନୁପାତରେ ଅନ୍ଧକାରପର୍ବଟି ସେହିପରି ଅଧିକତର ବିଷାଦ-ବିକ୍ଷୋଭିତ ମନେହୋଇଥାଏ । ଭାବ-ସାଧନାର ପରମ ସିଦ୍ଧିପୂର୍ବରୁ ଏହା ଅଧ୍ୟାତ୍ମ ଚେତନାର ଚରମତମ କର୍ଷଣଭୂମି ରୂପେ ଆବିର୍ଭୂତ ହୋଇଥାଏ । ପରମ ପ୍ରାପ୍ତି ପୂର୍ବରୁ ଏହା ଚରମ ସଙ୍କଟ ରୂପରେ, ପୁଣି ଚେତନାର ପୂର୍ଣ୍ଣ ଆତ୍ମବୋଧ ପଥରେ ଏକ ଅନ୍ତିମ ଅଥଚ ଅନିବାର୍ଯ୍ୟ ପ୍ରୟୋଜନୀୟ ନିର୍ଦ୍ଦିଷ୍ଟ ସ୍ତରବିଶେଷରୂପେ ମିଷ୍ଟିକ ପାଇଁ କଷ୍ଟପ୍ରଦ ହେଲେବି ଏକ ଅବଶ୍ୟବରଣୀୟ ପଦକ୍ଷେପ ରୂପେ ସହନୀୟ ହୋଇଥାଏ ।

## କାରଣ

ରହସ୍ୟସାଧନାର ଏଇ ଗୁରୁତ୍ୱାନ୍ଧକାର ପଥକୁ ରହସ୍ୟବାଦୀ ମନସ୍ତତ୍ତ୍ୱରେ ଚେତନାର ଊର୍ଦ୍ଧ୍ୱବର୍ତ୍ତନଧାରାର ଏକ ଅନିବାର୍ଯ୍ୟ ଅବସ୍ଥାବିଶେଷରୂପେ ବିବେଚନା କରାଯାଏ । ଅନ୍ଧକାରପର୍ବଟି ପୂର୍ବବର୍ତ୍ତୀ ଆଲୋକ-ଅନୁଭୂତିର ଅବଶ୍ୟମ୍ଭାବୀ ପରିଣତିରୂପେ ଆବିର୍ଭୂତ । ସମୀକ୍ଷକମାନେ ଏହାର ଦୁଇଟି ମୁଖ୍ୟକାରଣ ନିର୍ଣ୍ଣୟ କରିଥାନ୍ତି । ଗୋଟିଏ ଚେତନାର ସ୍ନାୟବିକ ଅବସାଦ, ଅପରଟି ଅବସ୍ଥାନ୍ତର ଜନିତ ନୂତନତାର ଚମକ । ଏହା ଏକ ପ୍ରାମାଣିକ ମନସ୍ତାତ୍ତ୍ୱିକ ସିଦ୍ଧାନ୍ତ ଯେ, ବିକାଶୋନ୍ମୁଖୀ ଚେତନାର ପ୍ରତିଟି ଊର୍ଦ୍ଧ୍ୱାରୋହ ଓ ବିସ୍ତୃତିର ପ୍ରତିକ୍ରିୟାଟି ପରବର୍ତ୍ତୀ ଅବସ୍ଥାରେ ତଦନୁରୂପ ଅବରୋହ ଓ ସଂକୋଚନ ଶୀର୍ଣ୍ଣତାକୁ ଅନିବାର୍ଯ୍ୟତଃ ପ୍ରାପ୍ତ ହୋଇଥାଏ ।[45] ଏହା ଚେତନାର ସ୍ୱାଭାବିକ ସ୍ନାୟବିକ କ୍ଲାନ୍ତି । ପ୍ରଚଣ୍ଡ ଉତ୍ସାହ ଉନ୍ମାଦନାର ଅବ୍ୟବହିତପର ନିଶ୍ଚେଷ୍ଟ ଅବସନ୍ନତା ଏକ ସ୍ୱାଭାବିକ ମାନସିକ-ପ୍ରକ୍ରିୟା । କାରଣ ଆଲୋକମୟ ଅନୁଭୂତିରେ ଚେତନା ଏକ ସମ୍ପ୍ରସାରିତ ଊର୍ଦ୍ଧ୍ୱଲୋକକୁ ଉତ୍କ୍ଷିପ୍ତ ହେବାଦ୍ୱାରା ବ୍ୟକ୍ତିର ସ୍ନାୟୁତରଙ୍ଗରେ ଅଭୂତପୂର୍ବ ଭାବଚାଞ୍ଚଲ୍ୟ ସୃଷ୍ଟି ହୋଇଥାଏ । ସେଥିରେ ମାନସିକ ଶକ୍ତି କ୍ଷୟପ୍ରାପ୍ତ ହୋଇ ପରେ ପରେ ସ୍ୱତଃ କ୍ଲାନ୍ତ ଓ ଭାବଶୈଥିଲ୍ୟ ଦେଖାଦିଏ । ରହସ୍ୟବାଦୀ କାବ୍ୟବ୍ୟଞ୍ଜନାରେ—ନିବିଡ଼ ଅନ୍ଧାର ରାତିରେ ଆକାଶର ବିଦ୍ୟୁତ ଚମକ ପୃଥିବୀକୁ ଅନ୍ଧକାରତର ମନେକରାଇ ଦିଏ । ପ୍ରଭାସ୍ୱର ଅବବୋଧରେ ସାଧକ ଚିତ୍ତରେ ପ୍ରଚଣ୍ଡ ଆଲୋକର ଚକିତ ଆବିର୍ଭାବ ଅପସୃତ ହୋଇଯିବାପରେ ଚିତ୍ତଭୂମିର ଅନ୍ଧକାର ସ୍ତବ୍ଧବିମୂଢ଼ ଚେତନାରେ ପ୍ରବଳତର ମନେହୋଇଥାଏ ।

ମାନବର ଚେତନାସ୍ତରଗୁଡ଼ିକ ବିଷୟରେ ପର୍ଯ୍ୟାଲୋଚନାକଲେ ଦେଖାଯାଏ, ଏହା କେବଳ ଫ୍ରୟେଡୀୟ ଅବଚେତନ (sub conscious) ପର୍ଯ୍ୟନ୍ତ, ଅଧୋଗାମୀ ନୁହେ, ଅଧ୍ୟାତ୍ମ-ସିଦ୍ଧାନ୍ତରେ ଅତି-ମାନସ ସ୍ତରରେ ମଧ୍ୟ ଏହାର ବିସ୍ତାର । ପ୍ରଚଳିତ ମନସ୍ତତ୍ତ୍ୱ ଏହି ଅତି ମାନସର ସନ୍ଧାନ କୌଶଳ ଆୟତ୍ତ କରିପାରିନାହିଁ । ଅଥଚ ଅବଚେତନର ଦୁର୍ଗମ ଅରଣ୍ୟରେ ପଥ ହରାଇବସିଛି । ଚେତନା

---

45. For there is a fundamental psychological law which no one can escape that the Law of Descent is proportional to the Law of Ascension. One cannot descent lower than one has climbed—because the force necessary for descent is also the very one necessary for climbing,"

Satprem —"Adventure of Consciousness."—p 241

Digitized by PPRACHIN, SOA

ରାଜ୍ୟରେ ପ୍ରତିଟି ଅବତଳ ସ୍ତରର ସମାଂତରାଳ ସ୍ଥିତିରେ ଏକ ଏକ ଅଧିମାନସ ସ୍ତର ବିଦ୍ୟମାନ। ପ୍ରତିଟି ଊର୍ଦ୍ଧ୍ୱାରୋହଣ ତାର ସାନୁପାତିକ ଅବତଳର ବିକର୍ଷଣ କ୍ରିୟା ସହ ଜଡ଼ିତ। ଅର୍ଥାତ୍ ଚେତନା ଊର୍ଦ୍ଧ୍ୱମାନସକୁ ଗତି କଲାବେଳେ ପ୍ରତିଟି ଉତ୍ତରଣ ପଦକ୍ଷେପରେ ଅବଚେତନର ଯଥାନୁପାତ ନିମ୍ନ-ଆକର୍ଷଣର ପ୍ରଭାବକୁ ଅନୁଭବ କରିଥାଏ। ଉତ୍‌ଥାନ ସହ ପତନର ସଂପର୍କ ତେଣୁ ଅନିବାର୍ଯ୍ୟ। ବିବର୍ତ୍ତନ ପ୍ରକ୍ରିୟା କୌଣସି ଅନନୁପାତିତ ବା ଅସଂବଂଧିତ ଲଂଫକୁ ସ୍ୱୀକାର କରେନାହିଁ। ପ୍ରତିଟି ଉଦ୍‌ବର୍ତ୍ତିତ ପଦକ୍ଷେପରେ ବ୍ୟକ୍ତିର ଭାବସତ୍ତା ଯେତିକି ଊର୍ଦ୍ଧ୍ୱ ଚେତନାର ଆଲୋକ ମଂଡ଼ଳକୁ ପ୍ରବେଶକରେ, ସମାଂତରାଳ ଭାବରେ ଅବଚେତନର ଅଂଧାରିତ ଅଭ୍ୟଂତର ତାକୁ ସେତିକି ନିମ୍ନକର୍ଷିତ କରିଥାଏ।[୪୬] ଭାବସାଧନାର ପ୍ରତିଟି ପର୍ଯ୍ୟାୟରେ ସତ୍ତାକୁ ଏଇ ଆକର୍ଷଣ ଓ ବିକର୍ଷଣର ଦ୍ୱିମୁଖୀ କ୍ରିୟାଭିତରେ ସମତାଭିତ୍ତା ଆହରଣ କରିବାକୁ ପଡ଼ିଥାଏ। ଆରୋହଣ ଓ ଅବରୋହଣର ଏହି ଦ୍ୱୈତକ୍ରିୟାଭିତରେ ଅବସ୍ଥାଂତର ଚେତନାସହ ସଯୋଗ ଓ ସଂସ୍ଥିତିର ସମନ୍ୱୟାତ୍ମକ ଭାବସ୍ଥିରତା ଆସିଲେହିଁ ତାଉର ଊର୍ଦ୍ଧ୍ୱଗତି ପକ୍ଷରେ ତାହା ସାର୍ଥକ ପଦକ୍ଷେପ ହୁଏ। ଅର୍ଥାତ୍ ଚେତନାର ନବନବ ଉପଲବ୍‌ଧି ଭିତରେ ସମତାଭିତ୍ତା ଲାଭହିଁ ବ୍ୟକ୍ତିର ପୂର୍ଣସିଦ୍ଧି। ଗୀତାରେ ଏହାହିଁ ଯୋଗସାଧନାର ରହସ୍ୟରୂପେ ନିର୍ଣ୍ଣୀତ। ଚେତନାର ଉଦ୍‌ବର୍ତ୍ତନ ଧାରାଟି ତେଣୁ ସିଧା ସ୍ୱଚ୍ଛଂଦ, ଅବ୍ୟାହତ ନୁହେ। ରହସ୍ୟବାଦୀ ବର୍ଣ୍ଣନାରେ ଏହା ବରଂ ଏକ ଘୂରଂତା ସିଡ଼ି (spiral) ବା ଶଂଖାବର୍ତ୍ତରୂପେ ପ୍ରତୀକିତ, ଯାହାର ପ୍ରତିଟି ସୋପାନ ନୂତନତାର ବିସ୍ମୟକିଳିତ, ଅଭିଜ୍ଞତାସମୃଦ୍ଧ, ନବଚେତନାଦୀପ୍ତ ଓ ଅର୍ଥଶାଣିତ। ଚେତନାର ଗତିପ୍ରବାହରେ ଏ 'ତାମସୀ' ଅନୁଭବ ଏକ ବିଚିତ୍ର ପ୍ରତିସ୍ରୋତ। ପ୍ରତିକୂଳ ଯାହାରେ ସ୍ରୋତ-ଶକ୍ତିର ପୂର୍ଣଅବଧାରଣ ଘଟିବାପରି ଚେତନାର ସତ୍ୟସଂଧାନପଥରେ ଏ ତାମସୀ ଆବର୍ତ୍ତ ଆଲୋକ-ରହସ୍ୟର ପୂର୍ଣ ଉନ୍‌ମୋଚନ ନିମନ୍ତେ ଅଭିପ୍ରେତ ମନେହୁଏ।

ଅଧ୍ୟାତ୍ମଯାତ୍ରାର ପ୍ରତିଟି ପଦକ୍ଷେପରେ ଏଇ ଯେ ବିରୋଧର ସଂଘର୍ଷ ଉପସ୍ଥିତ, ତାର ମୁଖ୍ୟ କାରଣ ଅବସ୍ଥାଂତର ସହ ସହାବସ୍ଥାନର ସମସ୍ୟା। ପୂର୍ବର ଆଲୋକାନୁଭୂତିରେ ଚେତନା ଯେଉଁ ନୂତନ ସଂପ୍ରାପ୍ତି ଓ ବିସ୍ତୃତିକୁ ଉନ୍ନୀତ ହୋଇଥାଏ, ତାହା ପ୍ରାକ୍ ଆଲୋକାନୁଭୂତଠାରୁ ଭିନ୍ନ ହେତୁ ଚେତନାରେ ଅସମନ୍ୱୟ ଓ ଭାରସାମ୍ୟହୀନତା ଆସିଥାଏ। ଅନ୍ୟ ଏକ କାରଣ ହେଲା, ବ୍ୟକ୍ତିର ନବଲବ୍‌ଧ ପୂର୍ଣାଂଗ ଦୃଷ୍ଟିବଳୟ। ପ୍ରଭାସ୍ୱର ଅବବୋଧରେ ଦୀପ୍ତ ବୋଧିସତ୍ତା ଚେତନାସ୍ତରର ପ୍ରତିଟି ସୀମାସଂକୁଚିତ ଦୈନ୍ୟରୂପକୁ ସତ୍ୟର ଉଦ୍‌ଭାସନରେ ସ୍ପଷ୍ଟ ଉନ୍ମୋଚିତ କରିଦେଇଥାଏ।[୪୭] ଏକ ନିଷ୍ଠୁର ସୂର୍ଯ୍ୟସକାଳ ସକଳ ମିଥ୍ୟାବରଣ ଭିତରୁ କ୍ଷୁଦ୍ରାତିକ୍ଷୁଦ୍ର କଳଂକଚିହ୍ନକୁ ମଧ୍ୟ ସତ୍ୟାଲୋକ ସମ୍ମୁଖରେ ଅନାବୃତ କରି ଛିଡ଼ାଇଦିଏ।[୪୮] ଏହା ସାଧାରଣ ସତ୍ୟ ଯେ, ସତ୍ତାର ପ୍ରତିଟି କ୍ଷୁଦ୍ର ଚେତନାସ୍ତର ମଧ୍ୟ ଉଭୟ ସୁ ଓ କୁ ଭାବବୃତ୍ତି ଦ୍ୱାରା ନିୟଂତ୍ରିତ। ବେଦରେ ଅତୀନ୍ଦ୍ରିୟଜ୍ଞାନର ଆଲୋକମାର୍ଗରେ ବହୁ ଅଂଧକାର ଗୁହା ବିଦ୍ୟମାନ

46. "As soon as we have touched a certain intensity of consciousness or light, automatically it exercises a pressure on the rest of the nature and brings swiftly the corresponding obscurities or resistances.'

Satprem—'Adventure of Consciousness'—p 247

47. "The whole consciousness is flooded with light to unknown depths, under the gaze of love, from which nothing escapes."

Re'ce'jac—qt, 'Mysticism'—p 262

48. "Each level of our being has its heavens and hells"—

Satprem—'Adventure of consciousness'—p 239

Digitized by PPRACHIN, SOA

ବୋଲି ସତର୍କବାଣୀ ରହିଛି । ଯେ କୌଣସି ନବପ୍ରାପ୍ତ ଅନୁଭୂତିରେ ଚିତ୍ତଭୂମିର ଏହି ପୁଣ୍ୟବୃତ୍ତି ପ୍ରଭାବିତ ଏବଂ ଉଦ୍ବେଳିତ ହୋଇଥାନ୍ତି । ରହସ୍ୟବଲ୍ଲୀମତରେ ନିଷ୍ଚେତନାର ଅଂଧକାର ଗୁହାଭିତରୁ ଆଲୋକର ପ୍ରଥମ ପ୍ରବେଶ ପଥଟି ଉନ୍ମୋଚିତ ହେଲାବେଳେ ସତ୍ତାର ସ୍ନାୟୁ ତରଂଗରେ ଯେଉଁ ଚମକସ୍ପର୍ଶ ଲାଗେ, ସେ ଅଭିଘାତଟି ପ୍ରକୃତିରେ ଆଲୋକର ନୁହେ ଅଂଧକାରର । ପ୍ରତିଟି ଆଲୋକ-ଉନ୍ମୁଖ ପଦକ୍ଷେପରେ ଚିତ୍ତଗହ୍ୱରର ଏଇ ଆଦିମ ଅଂଧକାରି ସତେଯେପରି ପ୍ରତିବାଦର ସ୍ୱର ଉଠାଇଥାଏ ।[୪୯]

ପୂର୍ବାବସ୍ଥାର ନିରୁପଦ୍ରବ ଅଶ୍ୱସ୍ତି ଓ ଆନଂଦ ଭିତରୁ ହଠାତ୍ ଏକ ଶୂନ୍ୟ ପ୍ରଦେଶର ନିଃସଙ୍ଗ ଅଶ୍ୱସ୍ତି ଓ ନିରାଶ୍ରୟବୋଧ ସାଧକ ପ୍ରାଣରେ ଗଭୀର ବ୍ୟାକୁଳତା ଭରିଦିଏ । ପୂର୍ବାନୁଭୂତିରେ ସତ୍ୟର ପ୍ରତ୍ୟକ୍ଷ ଉପଲବ୍ଧି ଏବଂ ପରମପ୍ରାପ୍ତିଜନିତ ଉଲ୍ଲାସକୁ ଚିରପ୍ରାପ୍ୟ ବୋଲି ଧରିନେଇଥିବାବେଳେ ନିର୍ଦ୍ଧିତ ସୁରକ୍ଷାର ସେଇ ପ୍ରବଳ ପ୍ରତ୍ୟୟ ଭିତରୁ ପୁନରାୟ ଅନ୍ଧାବସ୍ଥାରର ଏଇ ଦୁରୁହ ଗହ୍ୱରରେ ନିଜକୁ ପରିତ୍ୟକ୍ତ ଦେଖି ବ୍ୟକ୍ତି ଭାବବିମୂଢ଼ ହୋଇଯାଏ । ମନେହୁଏ ଯେପରି ସର୍ବୋତ୍ତମକୁ ସଂଧାନ କରୁକରୁ ରହସ୍ୟସଂଧାନୀ ଉଚ୍ଚାତିଉଚ୍ଚକୁ ଲଭିକରିଛି । ଅମୃତ ଆଶାୟୀ ଗରଳଗ୍ରାସରେ ମୁହ୍ୟମାନ ହୋଇଯାଏ । ଶାଂତ ଓ ଆଲୋକିତ ଦଙ୍ମଂଡ଼ଳରେ ବହୁବ୍ରେଟର ଜ୍ୟୋତିଃପରାଗ ସଙ୍ଘଟିତ ହୋଇଯାଏ ।

ଏଇ ଅବସ୍ଥାରେ ଆଲୋକମଂଡ଼ଳରୁ ଦ୍ରୁତ ଅପସାରିତ ଚେତନା ସନ୍ଦେହ, ନିର୍ଘଣ ଓ ଜିଜ୍ଞାସାର ଦ୍ୱଂଦ୍ୱାକୁଳିତ ପ୍ରାଯ୍ୟାଂଧକାର ଭେଦକରି କ୍ରମଶଃ ଗଭୀର ନିରାଶାର ଘନାଂଧକାର କବଳିତ ହୋଇପଡ଼େ ।[୫୦] ସକଳ ଆଲୋକ, ଆନଂଦ ଓ ଆଶାର ସମ୍ଭାବନା ତିରୋହିତ ହୋଇଯାଏ । ସବୁକିଛି ବିପର୍ଯ୍ୟସ୍ତ ମନେହେଉଥିବାର ଏ ମୁହୂର୍ତ୍ତରେ ସାଧକର ଚିତ୍ତଭୂମି ସଂଶୟର ସମୁଦ୍ରଗର୍ଭରୁ ସର୍ବଗ୍ରାସୀ ସିଂହକାର ଆକର୍ଷଣରେ ଆକାଶଚ୍ୟୁତ ହୋଇଯାଏ । ଏ ଯେପରି ହେଇ ସର୍ବନାଶୀ ଶୂନ୍ୟତା ଯାହା ଆଖିଆଗରେ କ ହାତ ପାହାଂତାରେ ଆଉ କିଛି ବି ରଖାଇଦଏନାହିଁ ।[୫୧] ସବୁ ଅଧ୍ୟାତ୍ମ ଆବେଗ ନିଃଶେଷ ମନେହୁଏ । ବସ୍ତୁଜଗତର ସଚେତନତା ପ୍ରବଳ ଓ ପାର୍ଥିବ ଆକର୍ଷଣ ପ୍ରଗାଢ଼ ହୋଇଯାଏ । ପ୍ରଲୋଭନର ସିଂହାସନ ତଳେ ଆତ୍ମନିଗ୍ରହର ଯଂତ୍ରଣାକାତରତା ସୁଯିଂଶପଥର ସାର୍ଥକତାସଂପର୍କରେ ସାଧକକୁ ସନ୍ଦିହାନ କରିଦିଏ ।[୫୨] କେବଳ ହୃଦୟର ଦୃଢ଼ ବିଶ୍ୱାସବଳରେହିଁ ସାଧକ ଏ ଶୂନ୍ୟ ଗହ୍ୱରରୁ ମୁକ୍ତିପାଇବାକୁ ଆଶା ରଖିପାରେ ।

---

49. "The wounded gloom complaining against light."
Sri Aurobindo 'Savitri'—p 195

50. "I am exiled from every spiritual happiness !"
'The Mother' (Prayers and Meditations I) March 7, 1915.

୫୧ "ମୋ ଆତ୍ମାର ବିଷାକ୍ତ ସଂଶୟ ସର୍ବଗ୍ରାସୀ, ମୋର ଆତ୍ମା ଗୋଟାଏ ମୃତ ସମୁଦ୍ର ପରି, ଯାହା ଉପର ଦେଇ ଚଢ଼େଇଟିଏ ଉଡିଯାଇପାରିବନାହିଁ । ··· ମୋର ସଂଶୟ ଅତି ଭୟଂକର । ଏହାକୁ ସଂଭାଳିବାର ଶକ୍ତି କାହାର ନାହିଁ । ଏହା ଏକ ଅତୃପ୍ତ କ୍ଷୁଧା ।"
(କାଏର କେଗାର୍ଡ) 'ଅସ୍ତିତ୍ୱବାଦର ମର୍ମକଥା'—ଶରତକୁମାର ମହାନ୍ତି —ପୃ ୬୮

୫୨ "ତମେ ଆଉ କେବେହେଲେ ଗୋଟାଏ ପରମପ୍ରଜ୍ଞା ବା ପରମକଲ୍ୟାଣ ବା ପରମଶକ୍ତି ନିକଟରେ ଆଶ୍ରୟ ନେଇପାରିବନାହିଁ । ତମ ହୃଦୟ ପାଇଁ ଆଉ ଏପରି ଆଶ୍ରୟ ସ୍ଥଳ ନାହିଁ ଯେଉଁଠି ସବୁ ମିଳିଯିବ: ପାଇବାକୁ କିଛି ବାକୀ ରହିବ ନାହିଁ ।
(ନିତ୍‌ସେ)—ଶରତ କୁମାର ମହାନ୍ତି—'ଅସ୍ତିତ୍ୱବାଦର ମର୍ମକଥା'—ପୃ ୪୫

Digitized by PPRACHIN, SOA

ସତ୍ତ୍ୱର ଏଇ ସଂଭ୍ରଣାର କାରଣ ମୂଳରେ ରହିଛି ମୁଖ୍ୟତଃ ପ୍ରଜ୍ଞାଲବ୍ଧଜ୍ଞାନ (intuition) ସହ ବୁଦ୍ଧିଜାତ ଅଭିଜ୍ଞାନର (intellect) ସଂଘର୍ଷ ଯାହା ଏଇ ପର୍ଯ୍ୟାୟରେ ଚରମ ସ୍ୱରୂପ ଧାରଣକରେ । ନବଲବ୍ଧ ଅନୁଭୂତିର ଆଲୋକିତ ଉଜ୍ଜ୍ୱଳତାର ପ୍ରଖରତା ଏବଂ ତୀବ୍ର ଆବେଗକୁ ଧାରଣ କରିବାର ସାମର୍ଥ୍ୟ ସୀମିତ ବ୍ୟକ୍ତି ଚେତନାର ନଥାଏ ।[୫୩] ଅନ୍ତଃଚେତନାର ଏଇ ଅଭିବବୋଧ ସମ୍ପର୍କରେ ପ୍ରବଳ ଚେତନତା ତାର ସର୍ବମୟ ଅଂଧାର କରି ଦେଖାଇଦିଏ । ଯୁକ୍ତି ପ୍ରଭାସ୍ୱର ଅନୁଭୂତି ପ୍ରତ୍ୟକ୍ଷିତ ଶାଶ୍ୱତର ସତ୍ୟସ୍ୱରୂପକୁ ଅବଧାରଣ କରିବାର କ୍ଷମତା ତାର ବସ୍ତୁବାଦୀବୁଦ୍ଧି-ଅପେକ୍ଷିତ ଅପୂର୍ଣ୍ଣ ଦୃଷ୍ଟିକୋଣରେ ନଥାଏ । ଆତ୍ମା ସମ୍ପର୍କରେ ଯେଉଁ ନବତମ ମହିମାବୋଧ ଚେତନାକୁ ଏକ ସମ୍ପ୍ରସାରିତ ଦିବ୍ୟବଳୟକୁ ନିକ୍ଷେପ କରିଦିଏ, ସୀମା ବୋଧର କ୍ଷୁଦ୍ରତାରୁ ମୁକ୍ତ ହୋଇନଥିବା ଚିତ୍ତଭୂମି ଦେଇ ବରିଷ୍ଠ ବସ୍ତୁ ସହ ସହାବସ୍ଥାନ କରିନପାରି ଦୈନ୍ୟ ଅନୁଭବ କରେ । ଆଲୋକାନୁଭୂତିରେ ବ୍ୟକ୍ତିର ସତ୍ୟ ସାକ୍ଷାତ୍କାର ଘଟିଥାଏ । ତାହାର ଅବଧାରଣା ହୋଇନଥାଏ । ସ୍ୱ ଆତ୍ମାରେ ବିଶ୍ୱଦର୍ଶନ ହୋଇଥାଏ । ମାତ୍ର ଅହଂ-ବିନାଶ ଘଟିନଥାଏ । ଆଲୋକ-ସମ୍ପାତର ଅତର୍କିତ ମୁହୂର୍ତ୍ତରେ ସ୍ୱଜ୍ଞାପ୍ରତ୍ୟକ୍ଷିତ (intuition) ଆତ୍ମାର ଏଇ ନୂତନ, ଭିନ୍ନ ଓ ବିସ୍ମୟକର ବିଶ୍ୱମୟ ରୂପାନୁଭୂତିଟି ଯେ ସତ୍ତ୍ୱର ଶିରଂଚିନ ସହଜ ସ୍ୱରୂପ, ତାହା (intellect) ବୋଧିମାନଙ୍କର ଅଧିଗମ୍ୟ ହେବା ନିମନ୍ତେ ବ୍ୟକ୍ତିତ୍ୱରେ ଯେଉଁ ସହାବସ୍ଥାନକାଳୀନ ଦ୍ୱଂଦ୍ୱ ଉପଜାତ ହୁଏ, ତାହାହିଁ ଅଂଧକାର ପର୍ବର ସମସ୍ୟା ।[୫୪] ପ୍ରଥମାବସ୍ଥାରେ ଜାଗରଣ କାଳରେ ଯେଉଁ ଉଜ୍ଜ୍ୱଳ ଅଗ୍ନିବଳୟକୁ ସୁଦୂର ଗଗନମଂଡ଼ଳରେ ସୁଂଦର ବିମୋହନ କରି ମିଷ୍ଟିକ୍ ଦେଖିବାକୁ ପାଇଥିଲା, ଅ.ଲୋକପର୍ବରେ ସେହି ଅନଳ ଉତ୍ସକୁ ଆପଣାର ଅନ୍ତସ୍ଥଳରେ ପ୍ରଜ୍ୱଳିତ ଦେଖି ସେ ହଠାତ୍ ବିଚଳିତ ହୋଇପଡ଼େ । ବହ୍ନି ପ୍ରଦାହରେ ସୁବର୍ଣ୍ଣ ବିଗଳିତ ହୋଇଗଲାବେଳେ ତନ୍ମିଶ୍ରିତ ମାଳିନ୍ୟ ଯେପରି ଜଳି ଉଠନ୍ତି, ଆତ୍ମାରାଜ୍ୟରେ ଦିବ୍ୟାଗ୍ନିର ଉଦ୍ଭାସନରେ ସତ୍ତ୍ୱର ଅହଂମାଳିନ୍ୟ ସେହିପରି ଦଗ୍ଧୀଭୂତ ହୁଅନ୍ତି । 'ଆଲୋକାନୁଭୂତି'ର ପରବର୍ତ୍ତୀ ପର୍ଯ୍ୟାୟଟି ତେଣୁ, ଏଇ ଦାବଦହନରପର୍ବ । ଏ ଅଗ୍ନିଜାତ ଧୂମକୁଣ୍ଡଳୀ ହିଁ ତାର ସଣ୍ଢୋଚନକାରୀ ଅନ୍ତସ୍ତ୍ରିରୂପୀ ଅଂଧକାର ଗୁହା, ଦ୍ରାବିଡ଼ଙ୍କାରୀ ନିହାର, ଅସୂର୍ଯ୍ୟଦେଶ, ଜେନ୍‌ସାଧନାର ଦୁର୍ଲଂଘ୍ୟ କୋଆନ୍ (Koan), ପୌରାଣିକ କଳ୍ପନାର ଭୀମଦାନବ ବୃତ୍ର । ଏହାହିଁ ଶାଶ୍ୱତ ସଂଯୋଗ ପଥରେ ପ୍ରଧାନ ଓ ଅନ୍ତିମ ପ୍ରତିବନ୍ଧକ ।[୫୫] ରହସ୍ୟବାଦୀ ଭାବସାଧନାରେ 'ଶାଶ୍ୱତବିରହ ଯାମା' ରୂପେ ପରିକଳ୍ପିତ ଏଇ ଅନୁଭୂତି ଚେତନାଟି ଦିବ୍ୟ-ବିରହର ଦୁଃସହତମସ୍ଥିତିକୁ ହିଁ ସଂକେତିତ କରିଛି । ଏଇ କାଳରାତ୍ରିରେ ଚିତ୍ତଭୂମି ଗଭୀର ଅଂଧାର ଭିତରେ କେବଳ ପଥହରାଏ ନାହିଁ,

53. "The self is in dark because it is blinded by a light greater than it can bear."
Evelyn—Mysticism—p 99

54. "At this stage when the intuition bids you yield up your intellect..there will then ensue a great struggle, during which a part of your body will seem as if torn into pieces..Intellect declares war against the new invader and is determined not to surrender its place without a severe struggle."
Paul Brunton : 'The Inner Reality'—p 114

୫୫ "ଏପରି ନିବିଡ଼ ଅଂଧାର ଭିତରେ ମେଘୁଆ ମନକୁ ବୋଧହୁଏ ଅସୂର୍ଯ୍ୟଲୋକ ବୋଲି ଉପନିଷଦ କହିଛନ୍ତି: କିଂତୁ ତାଂକର ବର୍ଣ୍ଣିତ ଚିରଭାସ୍ୱର ସତ୍ତ୍ୱା, ତାମସର ପରପାରରେ ସେହି ଆଦିତ୍ୟବର୍ଣ୍ଣ ନ ଦେଖିହେଉଥିବା, ଏ ମେଘଟାହିଁ ସତ୍ୟ ।"
ଚଂଦ୍ରଶେଖର ରଥ—ଉତ୍ତରଅରଣ୍ୟ (ମନରମେଘ) ପୃ ୪୫

Digitized by PPRACHIN, SOA

ପଥଦ୍ରଷ୍ଟା ପ୍ରିୟଦେବତାର ସଙ୍ଗସୁଖରୁ ମଧ୍ୟ ବଂଚିତ ହୁଏ । ଆରାଧ୍ୟର ସାନ୍ନିଧ୍ୟରେ ଯିଏ ସ୍ୱର୍ଗମର୍ତ୍ତ୍ୟପାତାଳକୁ ହୃଦୟର ଅଭ୍ୟଂତରରେ ଏକାକାର ଦେଖିପାରନ୍ତି,[56] ତା ପକ୍ଷରେ ପ୍ରେମ ଦେବତାର ଏଭଳି ଅତର୍କିତ ଅନ୍ତର୍ଦ୍ଧାନ ପରେ ଜୀବନର ସମସ୍ତ ବାଂଛିତ ବିଳାସ ତୁଚ୍ଛ ହୋଇଯାଏ । ଆଶାସୂର୍ଯ୍ୟର ବିଲୟପରେ ଉପଗତ ବିରହର ପ୍ରଲଂବିତ ତ୍ରିଯାମାଟି କେବଳ ବିଚ୍ଛେଦର ଯଂତ୍ରଣାଜର୍ଜରିତ ନୁହେଁ, ଆଶଂକାର ଅସଂଖ୍ୟ ଅଶାନ୍ତି ଓ ନିରାଶାର ଅଜସ୍ର ଆଘାତରେ ମଧ୍ୟ ଶତଧା ବିଡ଼ଂବିତ । ସେ ଗଭୀର ଅମାରଜନୀର ମଧ୍ୟ-କାଳରେ ସୂର୍ଯ୍ୟ-ସମାଗମ କେଉଁକାଳେ ବି ସଂଭବ ମନେହୁଏ ନାହିଁ ।

ବିରହକାଳୀନ ଏ 'ନିରାଶା' ଜନିତ ବ୍ୟଥାଟିର 'ପରିତ୍ୟକ୍ତ ହେବାର ଉତ୍ସ' 'ଆତ୍ମଗ୍ଳାନି' । ସତେ ଯେପରି ଅକ୍ଷୟପ୍ରେମର ପ୍ରତିଶ୍ରୁତି ଦେଇଥିବା ଚିରଂତନ ପ୍ରୀତିଦେବତା ଭବିଷ୍ୟତ ମିଳନ ପାଇଁ ସାମାନ୍ୟତମ ଅଂଗୀକାର ମଧ୍ୟ ନକରି ବ୍ୟକ୍ତିକୁ ଏହିପରି ପରିତ୍ୟାଗ କରିଥାନ୍ତି ।[57] କୁସୁମିତ ପ୍ରଣୟ ଉଦ୍ୟାନର ପ୍ରଲୋଭନ ଦେଖାଇ, ଜୀବନ ଦେବତା ବ୍ୟକ୍ତିକୁ ତାର ପରିଚିତ ଜୀବନ-ସ୍ଥଳୀରୁ ପଥଭ୍ରଷ୍ଟକରି ଏକ ଅଗମ୍ୟ ଅରଣ୍ୟ ନିକଟରେ ଏକାକୀ ଛାଡ଼ିଦେଇ ଅଦୃଶ୍ୟ ହୋଇଯାନ୍ତି ।

ରହସ୍ୟବାଦୀ ମନସ୍ତତ୍ତ୍ୱରେ ଏହି କ୍ଷୋଭମୂଳରେ ରହିଛି 'ଆତ୍ମଦୈନ୍ୟ' ଜନିତ ଗ୍ଳାନି ଓ ଅସହାୟବୋଧ । ପ୍ରାପ୍ତିର ମୁହୂର୍ତ୍ତରେ ତ ଅନେକ ଆତ୍ମତୃପ୍ତି । ପରମପ୍ରେମିକଂକ ନିର୍ବାଚିତ (chosen one), ସ୍ନେହଧନ୍ୟ, ମହିମାନ୍ୱିତ, ଐଶ୍ୱର୍ଯ୍ୟବଂତ ତ୍ରିଭୁବନ ଗୌରବବୋଧ । ତାପରେ ପରେ କେଉଁ କେଉଁ ଦୁର୍ବୋଧ୍ୟ ଇଂଗିତରେ ଏହିପରି ପ୍ରତ୍ୟାଖ୍ୟାନ ଓ ପରିତ୍ୟକ୍ତ ହେବାର ବିଡ଼ଂବନାକୁ, ସ୍ମୃତିର ନିପୀଡ଼ନକୁ, ନିର୍ଜନ ନିଃସଂଗତାର ଅଭିଶାପକୁ ଓ ଅଂଧକାର ଦୁଃସହତାକୁ ସ୍ୱାଭାବିକ ବୋଲି ମିଷ୍ଟିକ୍ ମାନେ ନେଇପାରନ୍ତିନାହିଁ । ବିପୁଳ ଜାଗତିକ ଆକର୍ଷଣ, ଅନ୍ତର୍ଗତ ବାସନାଭିଳାଷର ପ୍ରଲୋଭନ, ମୋଟ ଉପରେ ସ୍ୱୟଂବ୍ୟକ୍ତି ନିଜ ସୀମାବୋଧକୁହିଁ ଅସୀମଲାଭ ପଥରେ ପ୍ରଧାନ ପ୍ରତିବଂଧକରୂପେ ଆବିଷ୍କାର କରେ । ଯେଉଁ ଦିବ୍ୟପ୍ରେମକୁ ସେ ଆପଣାର 'ଶାଶ୍ୱତବିଳାସ' ରୂପ ପ୍ରାପ୍ୟ ବୋଲି ଧରିନେଇଥିଲା ତାହା ଯେ ଏକ ଅଜଣାଦେବତାର ଅଯାଚିତ ଅନୁଗ୍ରହ, ଅହେତୁକ କରୁଣାକଟାକ୍ଷ, ଏହାହିଁ ବ୍ୟକ୍ତିର ଆତ୍ମାଭିମାନ ଓ ଅହଂକାରକୁ ଗଭୀର ଆଘାତକରେ । ଅନଂତପ୍ରେମର ଅପରିସୀମ ଆକାଶତଳେ ଉଭାହୋଇ ସେ ଯେପରି ଆପଣାର କ୍ଷୁଦ୍ର ପାର୍ଥିବତାକୁ, ଅସମର୍ଥ ପ୍ରଣୟଶକ୍ତିକୁ ପ୍ରଥମଥରପାଇଁ ଆବିଷ୍କାର କରେ । ଅନ୍ତର୍ଗତ କଳୁଷିତ ଚିତ୍ତବୃତ୍ତିର ପାପବୋଧଜଡ଼ିତ ହୋଇ ଅପାପବିଦ୍ଧ ଅପାର୍ଥିବର ଦିବ୍ୟାନୁଗ୍ରହ ଲାଭ କରିବାର ଆତ୍ମପ୍ରତ୍ୟୟ ତାର ଲୋପପାଏ । ଅନ୍ତରର ବିଶ୍ୱାସ ଓ ବହିଃସୁରକ୍ଷା, ନିଜକୁ ଉଭୟରୁ ବଂଚିତ ଅନୁଭବ କରିବାର ଏ ନୈରାଶ୍ୟଦଗ୍ଧ ସ୍ଥିତିଟି ଭାବ ସାଧନାପଥରେ ଚେତନାର ଉତ୍କୃଷ୍ଟତମ ଅନୁଭୂତିବୋଲି ପାଶ୍ଚାତ୍ୟ

---

56. "With Thou, a prison would be a rose-garden
O Thou ravisher of hearts,
With Thee / hell would be paradise
Oh Thou cheerer of soul !
('Rumi')

57. "That which this anguished soul feels most deeply, is the conviction that God has abandoned it, of which it has no doubt."
St. John of the Cross—qt. 'Mysticism'—389

Digitized by PPRACHIN, SOA

ରହସ୍ୟବାଦ ମଂତବ୍ୟ କରିବେଳେ[୫୮] ଭାରତୀୟ ଅଧ୍ୟାତ୍ମ ସାଧନା ମଧ୍ୟ ସତ୍ତ୍ୱର ଚରମମୁକ୍ତ ପୂର୍ବର ଏହା ଦୁଃସାଧ୍ୟତମ ସ୍ଥିତି ବୋଲି ବିବେଚନା କରେ ।

ରହସ୍ୟବାଦୀ ପ୍ରେମ ସାଧନାରେ ସ୍ମୃତି ବିକଳତା ଓ ପୀଡ଼ାବିଧୁରତାର ଭାବମଂଥନ ଭିତରେ ପ୍ରୀତି ଚେତନାର ଏଇ ବିପର୍ଯ୍ୟସ୍ତ ଗତିଧାରାଟିକୁ ଲକ୍ଷ୍ୟ କରାଯାଇପାରେ । ମିଳନାନୁଭବର ଉଲ୍ଲାସ ହ୍ରାସ ପାଇଆସେ, ବିଚ୍ଛେଦ ଯଂତ୍ରଣା କ୍ରମଶଃ ଗଭୀରତର ହୁଏ । ପ୍ରଥମ ବିରହକାଳରେ ଆଶା ନିରାଶାର ଦ୍ୱନ୍ଦ୍ୱମଂଥିତ ଭାବଉଦ୍‌ବେଳନ, ପ୍ରତୀକ୍ଷା, ସ୍ମୃତିଚାରଣ ଓ ସ୍ୱପ୍ନାଛନ୍ନତାର ସ୍ୱର ଅଧିକ ଉଚ୍ଚାରିତ । ପ୍ରତୀକ୍ଷାର ଅସରଂତ ପଥରେ ପ୍ରାଣର ଉତ୍ସୁକତା ବିଛାଇ ପ୍ରୀତି ଦୀପାଳି ହସ୍ତରେ ସାଧକ ମିଳନଲଗ୍ନର ପ୍ରତ୍ୟାଶୀ ରହିଯାଏ । କ୍ରମଶଃ ଉତ୍କଣ୍ଠା ଓ ଅଭିମାନରେ ସେ ପଥଧାର କରୁଣସଜଳ ହୋଇଉଠେ । ସାଧକ କବିର ମନୋବିକଳନର ଏକ ମାର୍ମିକ ଚିତ୍ର କବୀର ପ୍ରଦାନ କରନ୍ତି । ଦେବତା ଧୀର ଓ ଅବିଚଳିତ, ମାତ୍ର ପ୍ରେମର ବହ୍ନିତାପରେ କେତେବେଳେ କାଚପାତ୍ରସ୍ଥ ଦୁଗ୍ଧଭଳି କବୀର ଜଳି ନଯାଇ ରହିପାରିବେ ? ଅଷ୍ଟମ ଶତକର ପାରସିକ ନାରୀକବି ରାବିଆଂକର ଅଜ୍ଞାତପ୍ରିୟ ଉଦ୍ଦେଶ୍ୟରେ ଅବୁଝାପ୍ରଶ୍ନ—"ଅଗ୍ନିରେ ଝାସଦେଇ ଅଗ୍ନିସହ ଏକାତ୍ମ ହେବାର ଦୁର୍ଜୟ କାମନାରେ ଛୁଟି ଆସିଥିବା ପତଂଗଟି ଅଗ୍ନିସମ୍ମୁଖରେ କିପରି ବା ଆତ୍ମରକ୍ଷା କରିବ ?"

ମନେହୁଏ, ମିଷ୍ଟିକର ଚେତନାରେ ବିରହର ବ୍ୟଥାଟି ବଡ଼ଅଂତରଂଗ । ତାର ଈଶ୍ୱର "ଏକଟି ବ୍ୟଥାର ମତ, ନିରବଚ୍ଛିନ୍ନ ବ୍ୟଥା, ନିଦ୍ରାହୀନ ନିରଂକୁଶ ବ୍ୟଥା ।"[୫୯] ମିଳନମଧୁର ଚିତ୍ର ତୁଳନାରେ ଏଇ ଅବସ୍ଥାର ବିରହବିଧୁର ଭାବସଜଳତାହିଁ ରହସ୍ୟକାବ୍ୟଗୁଡ଼ିକୁ ଅଧିକ ରସ ସଂକୁଳ କରିଛି । ପ୍ରାପ୍ତିର ଆଶା ଓ ଅପ୍ରାପ୍ତିର ବ୍ୟଥାରେ ବିରହୀରହୃଦୟବେଦୀରେ ଅଶ୍ରୁ ଉଲ୍ଲାସର ଚିର୍ପରିଣୟ ଯେପରି ଘଟିଚାଲିଥାଏ ।[୬୦] କ୍ରମଶଃ ବିରହର ଘନୀଭୂତ ବେଦନା ତାର ପ୍ରେମସାଧନାର ଅନ୍ୟରୂପ ପାଲଟିଯାଏ । ପ୍ରୀତି ପ୍ରତ୍ୟାଶୀର ଭଗ୍ନହୃଦୟରେ ପ୍ରିୟ-ଅଦର୍ଶନଜନିତ ସନ୍ତାପକୁ ସହ୍ୟକରିନେବାର ଏକ ଦୁର୍ବାର ଅଭିମାନ ଜାଗିଉଠେ । ପ୍ରୀତିର ଗାନରୂପେ ବିରହ ପ୍ରିୟ-ସମ୍ବୋଧନର ମନ୍ତ୍ରୋଚ୍ଚାରଣ ହୋଇଯାଏ । ବେଦନାର ସାମ୍ରାଜ୍ୟରେ ହୃଦୟ ସାମ୍ରାଜ୍ଞୀ, ପ୍ରିୟବିରହ ପୀଡ଼ା ତାର ପରମ ଐଶ୍ୱର୍ଯ୍ୟ । ଯେଉଁ ପ୍ରେମ ଏକ କ୍ଷୁଦ୍ର ମୁହୂର୍ତ୍ତର ତଡ଼ିତ୍-ବିଳାସ ହୋଇ ଜାଗିଉଠିଥିଲା— ତାର ସ୍ମୃତି-ଉଦ୍‌ବୋଧନ ପାଇଁ ଆଜି ସମଗ୍ର ଜୀବନ ବି ଯେପରି ପର୍ଯ୍ୟାପ୍ତ ହେବନାହିଁ ।[୬୧]

---

58. "This is one of the most bitter sufferings of the Purgation. The soul is conscious of a profound emptiness in itself..It sees itself in the midst of opposite evils, miserable imperfections, dryness and emptiness of the understanding and abandonment of the spirit in darkness.

St. John of the Cross—qt. Mysticism—391

୫୯ ଅଚିଂତ୍ୟ ସେନଗୁପ୍ତ 'କବି ଶ୍ରୀରାମକୃଷ୍ଣ'—ପୃ ୪୬

୬୦ "ମାନବ ହୃଦୟ ବେଦୀପର ପରିଣୟ ହୋ ବିରହ ମିଳନକା"

ପ୍ରସାଦ 'ଆଁଶୁ'

୬୧ "ହେ ଅନିମେଷ, ଆମାର ଜନରନ୍ଧ୍ରର ପ୍ରତିଟି ନିମେଷ ତୋମାର ଜନ୍ୟେ ଅଶେଷ ହୟେ ଥାକୁକ ।" 'କବି ଶ୍ରୀରାମକୃଷ୍ଣ' ପୃ ୧୦୮

Digitized by PPRACHIN, SOA

ଅଦର୍ଂଢ ବେଦନା କ୍ରମଶଃ ଅସୀମଶୂନ୍ୟତାରେ ପରିଣତ ହୋଇଯାଏ । ଭୟଂକର ନିରାଶାବୋଧ, ତ୍ରିୟବିରହର ପ୍ରବଳ ଆଶଂକା, ଅତୃପ୍ତ ସାଧକର ଅନ୍ତରାତ୍ମାକୁ ମନ୍ଥନ କରିଦିଏ । ଗଭୀର ବିତୃଷ୍ଣା ଓ ବିରକ୍ତିରେ ସବୁ ପୂର୍ବାସକ୍ତ ତୁଚ୍ଛ, ଅସାର, ଅକିଂଚିତକର ମନେହୁଏ । ମର୍ତ୍ତ୍ୟଜୀବନରୁ ଉର୍ଦ୍ଧ୍ୱନିକ୍ଷିପ୍ତ ହୋଇ, ସ୍ୱର୍ଗବାସସୁଖ ଅନୁଭବକରି, ପୁଣି ସ୍ୱର୍ଗଚ୍ୟୁତ ହେବାର ଏଇ ନିରାଳଂବ ଦୁର୍ଭାଗ୍ୟ; ପୃଥିବୀର ନିଶ୍ଚିତ ଭରସା ଭିତରକୁ ଫେରିଆସିବା ମଧ୍ୟ ତା ପକ୍ଷରେ ଆଉ ସମ୍ଭବ ନୁହେ । ମର୍ତ୍ତ୍ୟ ପ୍ରତି ଅନାସକ୍ତି, ଅଥଚ ସ୍ୱର୍ଗପ୍ରାପ୍ତି ଅସଂଭବ; ଲୁତାତନ୍ତୁକୁ ବଜ୍ରକଠିନ ଜ୍ଞାନରେ ଆଶ୍ରୟ କରି ବ୍ୟକ୍ତି ତ୍ରିଶଂକୁ ଭଳି ଏରୂପ ଶୂନ୍ୟପରିସରର ଭୟାନକ ଅଶାନ୍ତି ଭୋଗକରେ । ଗ୍ରୀକ୍ ପୁରାଣର ଅଭିଶପ୍ତ ଟାଂଟାଲସ ପରି ଫଳଭାରାବନତ ବୃକ୍ଷ ସମୀପରେ ଅନିବାରଣକ୍ଷୁଧା, ମଧୁରଜଳାଶୟରେ କଣ୍ଠମଗ୍ନ ହୋଇ ଚିର ତୃଷା ପୀଡ଼ିତ ହେବାର ଏ ଦୁର୍ଭୋଗ ସୁଧାପାୟୀ ରାହୁର ଛିନ୍ନମସ୍ତା ହେବାର ଜୀବନ୍ମୃତ ଯନ୍ତ୍ରଣା ସହ ମିଶିଯାଏ ।[୬୨] ଭାବସାଧନାର ଏଇ ଭୟଂକର ସଙ୍କଟମୟ ମୁହୂର୍ତ୍ତକୁ ଅଧ୍ୟାତ୍ମ ଅପମୃତ୍ୟୁ ବା mystic

ବୋଲି ସଙ୍କେତ କରିବା ଭିତରେ ଏଇ ଅବସ୍ଥାରେ ଈଶ୍ୱର ପଥହରା ପ୍ରେମ; ନିଷ୍ଫଳ ଅଭିମାନ, ବ୍ୟର୍ଥ ଆତ୍ମାଭିସାର ଓ କର୍ତ୍ତବ୍ୟବିମୂଢ଼ତାର ରୋରୁଦ୍ୟମାନ ଦୀର୍ଘଶ୍ୱାସ ସଂଘର୍ଷରେ ଗୁଂଜରିତ ।[୬୩] (ଗଭୀର ଆସ୍ଥା ଓ ଐକାଂତିକୀ ଆନୁଗତ୍ୟର ନିଷ୍ଠାପର ସାଧନା ଭିତରେ ଅତ୍ୟଂତ ସତର୍କତାର ସହ ସାଧକକୁ ଏହି ସମୟରେ ଭାବୋନ୍ମାଦନାର ପରବର୍ତ୍ତୀ ପ୍ରତିକ୍ରିୟାଜନିତ ଜୀବନବୈଦରିରୁ ଆତ୍ମରକ୍ଷା କରିବାକୁ ହୁଏ ।) ବ୍ୟକ୍ତି ଦେଖେ, ସହାସସୁଂଦର ଜୀବନଦେବତା ଭୟଂକର ଈର୍ଷାପରତାରେ ତାର ସର୍ବସ୍ୱ ଯେପରିକି ଦାବୀକରି ବସନ୍ତି । ନିଜକୁ ପୂର୍ଣ୍ଣରୂପେ ଉତ୍ସର୍ଗ କରିଦେବାବ୍ୟତୀତ ସେ ସର୍ବଗ୍ରାସୀ ପ୍ରେମକୁ ତୁଷ୍ଟ କରିବାର ଆଉ ଯେପରି ଭିନ୍ନ ଉପାୟ ନାହିଁ ।[୬୪] ଭାବବିକଳନର ଏଇ ତୀବ୍ରାନୁଭୂତିରେ ପ୍ରାପ୍ତି ଅପ୍ରାପ୍ତିର ସବୁ ତଫାତ୍ ଏକ ହୋଇଯାଏ । ସାଧକ ଦେଖେ ଆଉ ଯାଚ୍ଞା ନୁହେ, ଅଭିମୁଖିତା; ପ୍ରତ୍ୟାଶା ନୁହେ, ପ୍ରତ୍ୟର୍ପଣ ! ହୃଦୟର ସବୁ ଅଭିମାନ ଅଭିଯୋଗ, ଅଧିକାରକୁ ଜଳାଂଜଳି ଦେଇ, ଆଶା ଆକାଂକ୍ଷା ଅପେକ୍ଷା ସବୁ ବିସର୍ଜନକରିଦେବାପରେ ସର୍ବଶୂନ୍ୟ ନିରୂପାୟ ଉନ୍ମୁଖତା ! "ତୁମେ ଅପ୍ରସନ୍ନ ଯଦି ମୋର ଇହପରରେ କି ଲୋଡ଼ା ? ଆଉ ତୁମେ ପ୍ରସନ୍ନ ଯଦି ମୋର ଇହ ପରରେ ବା କି ପ୍ରୟୋଜନ ?[୬୫]

62 "She (the soul) is like a person suspended in mid-air, who can neither touch the earth, nor mount the heaven, she burns with a consuming thirst and cannot reach water. And this is a thirst which cannot be borne but one nothing will quench; the only water that can quench it is denied."

Evelyn Underhill—'Mysticism'—P395

୬୩ "ଚିରଦିନ ମୋରେ ହାସାଲ କାଂଦାଲ, ଚିରଦିନ ଦିଲ ଫାଙ୍କି ।"

ରବୀଂଦ୍ରନାଥ—'ସଞ୍ଚୟିତା' (ଚିତ୍ରା/ସିଂଧୁପାରେ)—ପୃ ୧୦୮

64 "Love deafens me to every voice but His
Has ever love so strange as that ?
Love blinds me, and on Him alone I gaze
Love binds me, and being hidden, slays,"

Rabiye—tra—R. A Nichelson
Anthology of Islamic Literature—P125

୬୫ "ତ୍ୱୟ୍ୟପ୍ରସନ୍ନେ କମିହାପରେର୍ନଃ ! ତ୍ୱୟି ପ୍ରସନ୍ନେ କମିହାପରୈର୍ନଃ ?"

'ଶ୍ରୀକୃଷ୍ଣ କଥାମୃତ'

Digitized by PPRACHIN, SOA

ବିରହର ଏଇ ତୀବ୍ରତମ ଅନୁଭୂତିରେ ହିଁ ଭାବସାଗରର ଅତଳତାରେ ବିରହମିଳନର ବିଚିତ୍ର ସଂଯୋଗ ଘଟେ । ବିରହୋନ୍ମାଦ ଆତ୍ମା-ବଧୂ ପ୍ରିୟର ଅନୁଚିଂତାରେ ଆପଣାକୁ ପ୍ରିୟ-ସ୍ୱରୂପ-ଭ୍ରମ କରି ନିଜଠାରେ ହିଁ ଏ ବିରହ ମିଳନକୁ ଏକାତ୍ମ କରି ଭୋଗକରେ ।[୬୫] ପ୍ରେମର ହୋମାଗ୍ନିରେ କର୍ପୂରଖଣ୍ଡ ସାଜି, ସମିଧ ହୋଇଜଳି, ଜୀବନଯଜ୍ଞରେ ଆତ୍ମାହୂତିର ସାର୍ଥକତା ଖୋଜିପାଏ । ପ୍ରଣୟ-ଗୌରବର ଅଭିମାନ ବଂଚିତ ହୃଦୟ ଏ 'ବର୍ଜନରୂପ ଶାସ୍ତି'କୁ ପ୍ରିୟଦେବତାର ଇଚ୍ଛାରୂପେ ସ୍ୱୀକାର କରିନେଇ ବିରହର ଅନଳ-ସାଧନା ଭିତରେ ଆପଣାର ପ୍ରେମନିଷ୍ଠା ପ୍ରତିଷ୍ଠା କରିବାର ଆହ୍ୱାନ ଗ୍ରହଣ କରେ । ପ୍ରାପ୍ତି ବା ଉପଭୋଗ ନୁହେଁ; ଉତ୍ସର୍ଗ ଓ ବିସର୍ଜନର ପଥରେ ନିଜ ତୃପ୍ତିକୁ ନିଃଶେଷ କରିଦେବା ଭିତରେ ତାପାଇଁ ପ୍ରୀତିତତ୍ତ୍ୱ ନୂତନ ଅର୍ଥଦୀପ୍ତି ଲାଭକରେ । ଭାବସାଧନାରେ ଏଇ ଅବସ୍ଥାରେ ନିଷ୍କ୍ରିୟତା (passive) ଅଧିକ ପରିଲକ୍ଷିତ ହୁଏ । ଆଗ୍ରହ, ଅଭିଳାଷ ଓ ଉଦ୍ୟମ ପରିବର୍ତ୍ତେ କେବଳ ଏକ ନିର୍ଦ୍ୱନ୍ଦ୍ୱ ସମର୍ପଣମୂଳକ ଉନ୍ମୁଖତା ଉଚ୍ଚାରଣରେ ତାହା ମୁଖରିତ ।[୬୬] ସମର୍ପଣ ଓ ଶରଣାଗତିର ଏଇ ଅଭିନବ ଅଭିବ୍ୟଂଜନା ଭିତରେ ସେ ଦେଖେ ଜୟମାଳ୍ୟର ଅଭାଜନ ହେଲେ ବି, ଦୁଃଖର କଣ୍ଟକାଘାତ ପାଇଁ ସେ ପ୍ରିୟ-ନିର୍ବାଚିତ; ତାଂକର ପ୍ରସନ୍ନପ୍ରହାର ବି ତେଣୁ ତାର ସୁଖସ୍ପର୍ଶ ।[୬୭] ପଦପ୍ରାଂତର ବିଚ୍ୟୁତହୋଇ, ସ୍ନେହାଲିଂଗନରୁ ବଂଚିତ ହୋଇ, ପଥପ୍ରାଂତରେ ପଡ଼ିରହିବା ଆଉ ଗ୍ଲାନିମୟ ନୁହେଁ, ଗୌରବମୟ, ଶାସ୍ତି ନୁହେଁ, ଅଧିକାର ସ୍ୱୀକୃତି । ପ୍ରେୟସୀର ଗର୍ବ ହଜିଯାଏ, ସଂଧ୍ୟାଳତିର ସ୍ନିଗ୍ଧାଲୋକ ଯେ ଦୀପାହାଚତଳେ ନିଜର ସ୍ଥାନ ବାଛିନିଏ । ଭସ୍ମରେ ଆଉ ସମିଧର ଅହଂକାର ନଥାଏ, କେବଳ ଅନଳସ୍ପର୍ଶର ତନ୍ମୟବିହ୍ୱଳତା ।[୬୮] ଅବନତ ଅହଂ ଭାର ଆଉ ଲଜ୍ଜାକର ଅକ୍ଷମତା ନୁହେଁ, ଶରଣାଗତିର ନିଷ୍କୃତି । ଅସ୍ମିତ୍ୱବିଳାସକୁ ବିସର୍ଜନ ଦେବାର ଏ ନିର୍ଜନତମ ମୁହୂର୍ତ୍ତରେ ଅସ୍ମିତା ବିଲୁପ୍ତି ପାଇଁ ପରମାତ୍ମାଙ୍କଠାରେ ଅନ୍ତରାତ୍ମାର ବିନମ୍ରତମ ନିବେଦନ : "ଆମାର ଜୀବନ ଏକଟି ନମସ୍କାରେ ଭରେ ଉଠୁକ୍ ।[୭୦]

---

୬୬ "ଆକୁଲତା ହୀ ଆଜ ହୋଗୟୀ ତନ୍ମୟୀ ରାଧା
ବିରହ ବିନା ଆରାଧ, ଦ୍ୱୈତ କ୍ୟା କୈସୀ ବାଧା !" ମହାଦେବୀ ବର୍ମା 'ସନ୍ଧ୍ୟାଗୀତ' ପୃ ୩୦

୬୭ "ଆମି ନିଶିଦିନ ତୋମାୟ ଭାଲୋବାସି / ତୁମି ଅବସର ମତ ବାସିଓ
ଆମି ନିଶିଦିନ ହେଥାୟବସେଆଛି / ତୋମାର ଯଖନ ମନେପଡ଼େ ଆସିଓ !"

ରବୀଂଦ୍ରନାଥ—ଜୀବନସଂଗୀତ ।

୬୮ "ବିଶ୍ୱାସ କରବି, ଜୀବନେ ଯା ପାଇ ତୁମି, ଯା ନା ପାଇ ତାଓ ତୁମି । ଯା ପାଇ ତାତେ ତୋମାର ପ୍ରକାଶ, ଯା ନା ପାଇ ତାତେ ତୋମାର ଆଭାସ ।"

ଅଚିଂତ୍ୟ ସେନଗୁପ୍ତ—'କବି ଶ୍ରୀରାମକୃଷ୍ଣ' ପୃ ୬୨

69 "Love is the anihilation of the lover in his attributes to the confirmation of the Beloved in Her Essence !"

Annamerie—'Dimensions of Islam'—P 40

୭୦ ଅଚିଂତ୍ୟ ସେନଗୁପ୍ତ 'କବି ଶ୍ରୀରାମକୃଷ୍ଣ'—ପୃ ୧୬୮

Digitized by PPRACHIN, SOA

## ସିଦ୍ଧାଂତ ତାତ୍ପର୍ଯ୍ୟ

ରହସ୍ୟବାଦୀ ଉପସ୍ଥାପନାର ଏଇ 'ଅଂଧକାର' ଭାବଚେତନାଟି ଏକ ଗଭୀର ଅଧ୍ୟାତ୍ମ ଉପଲବ୍ଧିର ସ୍ଥିରବିଂଦୁ ଉପରେ ପର୍ଯ୍ୟବସିତ ଯାହା ସମସ୍ତ ରହସ୍ୟବାଦୀ ବର୍ତ୍ମର, ସିଦ୍ଧାଂତ ଓ ସାଧନାର ଆଭିମୁଖ୍ୟକୁ ସୁନିରୂପିତ ଏବଂ ସୁନିୟଂତ୍ରିତ କରିଥାଏ ।

ଚେତନାର ବିକାଶଧାରାରେ ଆଲୋକ ଓ ଅଂଧକାରର ସମାଂତରାଳ ଅନୁଭୂତିମାନ ବ୍ୟକ୍ତିଚିତ୍ତରେ ଜାଗ୍ରତ ହୋଇଥାନ୍ତି । ମନସ୍ତତ୍ତ୍ୱର ଉପସ୍ଥାପନାରେ ଯାହା ଚିତ୍ତର ନିମ୍ନତମ ଓ ଗଭୀରତମ ଅବଚେତନ ସ୍ତର, ଧର୍ମଧାରଣାର ତାହାହିଁ ଅବିଦ୍ୟା ପ୍ରତିରୋଧ; ଦ୍ୱୈତବାଦୀ ଧର୍ମମତରେ ତାହା ଅସୁରୀ ଶକ୍ତି ଓ ଅଦ୍ୱୈତର ବିବେଚନାରେ ତାହା ପରମଙ୍କର ସ୍ୱଜାତ ମାୟାଶକ୍ତି । ଲଜିକ ଏହାକୁ ନ୍ୟାୟସିଦ୍ଧାଂତ ମାର୍ଗର ଚରମ ଅଯୌକ୍ତିକ ମୁହୂର୍ତ୍ତ, ଉଦ୍ଭଟ ବର୍ତ୍ମରର ଶେଷ ଅଂଧାରି ଅପହଂଚ ସ୍ଥଳ ବୋଲି କଟାକ୍ଷ କରିଥାଏ । ଅସ୍ତିତ୍ୱବାଦ ନିର୍ଦ୍ଦେଶିତ ଚିତ୍ତର ବିଚ୍ଛିନ୍ନତା ଓ ଏକାକିତ୍ୱର ସେହାହିଁ ନିର୍ଜନତମ ତଥା ଦୁଃସହତମ ଯଂତ୍ରଣାର ମୁହୂର୍ତ୍ତ । ମାତ୍ର ଈଶ୍ୱରବାଦୀ (Theism) ହେଉ ବା ନିରୀଶ୍ୱରବାଦୀ (Atheism) ସିଦ୍ଧାଂତ ହେଉ, ଅଧ୍ୟାତ୍ମ ସାଧନା ଏହାକୁ ସମଗ୍ର ପାର୍ଥିବଚେତନାର ଦିବ୍ୟରୂପାଂତର ଲାଭର ପୂର୍ବଲକ୍ଷଣ; ପୂର୍ଣ୍ଣାଲୋକିତ ହେବା ପୂର୍ବରୁ ପୂର୍ଣ୍ଣାଂଧକାରର ମୁହୂର୍ତ୍ତ ବୋଲି ପ୍ରତିପନ୍ନ କରିଥାଏ । ମେଟାଫିଜିକ୍ସ ତାହାକୁ 'ଆଦିନିଷେଧନା' ବୋଲି ସୂଚିତ କରେ । ତାହା ସତ୍ୟକୁ 'ଅଜ୍ଞେୟ', ଶାଶ୍ୱତକୁ ଅଦୃଷ୍ଟ କରି ରଖିବାର ଆବରଣ ରୂପେ କଳ୍ପିତ ।[71] ଏ ଚେତନାର ରୂପକାତ୍ମକ ପ୍ରକାଶ କୃଷ୍ଣବର୍ଣ୍ଣ । ଭକ୍ତି ସାହିତ୍ୟର ପ୍ରତୀକାତ୍ମକ ଅଭିବ୍ୟକ୍ତି ଏ ଅବସରରେ ଅଂଧକାର ରାତ୍ରି, କୃଷ୍ଣବେଣୀ ସମୁଦ୍ର, ମେଘାଚ୍ଛାଦିତ ଗିରିଶୃଂଗ, ଅତଳଗହ୍ୱର, ପରାଗଗ୍ରସ୍ତ ସୂର୍ଯ୍ୟ ପ୍ରଭୃତି ରୂପକଳ୍ପନାକୁ ଆଶ୍ରୟ କରିଥାଏ ।

ରହସ୍ୟବାଦୀ ବର୍ତ୍ମରରେ ଆଲୋକମୟ ଉଦ୍ଭାସନ ପରେ ଚେତନାରୁ କ୍ରମଶଃ ସେ ଉଜ୍ଜ୍ୱଳ ଦିଗମଂଡ଼ଳ ଅପସାରିତ ହେବାରେ ଲାଗେ ଏବଂ ଛାୟାମୟ ଛାୟାଂଧକାର କ୍ରମଶଃ ଗାଢ଼ତ୍ୱ ପ୍ରାପ୍ତହୋଇ ପରିଶେଷରେ ମହାଂଧକାରରେ ପରିଣତ ହୁଏ । ଚିତ୍ତର ସମସ୍ତ ଉପଲବ୍ଧିର ଜଗତ, ତାର ଅନ୍ତର ବାହାର, ଦ୍ୟୁଲୋକ ଭୂଲୋକ ସର୍ବତ୍ର ଯେପରି ଏ ଅଂଧକାରର କରାଳଗ୍ରାସରେ ଲୀନ ହୋଇଯାଏ । ଅଂଧକାରର ଏ ସର୍ବବ୍ୟାପିତ୍ୱ ଚେତନାରେ ଏକ ନୂତନ ରୂପାନୁଭୂତି ଜାତକରେ । ଆଲୋକ ଓ ଅଂଧାରକୁ ଆତ୍ମସାତ୍ କରି ଯେ ଶାଶ୍ୱତ ବିଦ୍ୟମାନ, ସେ ଆଲୋକ ଉଦ୍ଭାସ ପରି ଏକ ବିଶ୍ୱପ୍ରସାରୀ ଅଂଧାରପ୍ରକାଶ ମଧ୍ୟ ନେଇପାରନ୍ତି । ଆଲୋକ ଭଳି ଅଂଧକାରରେ ମଧ୍ୟ ମହାଜାଗତିକ ବ୍ୟାପ୍ତି ସଂଭବ । ସତ୍ୟର ପୂର୍ଣ୍ଣତମ ଜ୍ଞାନ ନିମନ୍ତେ ତାର ସକଳ ବିରୋଧାଭାସର ଦ୍ୱୈତତତ୍ତ୍ୱକୁ ଉପଲବ୍ଧି କରିବା ଆବଶ୍ୟକ । ବ୍ୟକ୍ତିଚେତନାରେ ବିଶ୍ୱଜାଗତିକତାର ପ୍ରଥମ ପୂର୍ଣ୍ଣାନୁଭବ ସଂଭବ ହୁଏ 'ଅସ୍ମିତା'ର ବିଲୟବେଳାରେ ।

---

71 "The ignorant No in the Origin of things,
The stuborn mute rejection in Life's depths !"

Sri Aurobindo—: Savitri'—P 359

Digitized by PPRACHIN, SOA

ଅସ୍ତିତ୍ୱ ଭାଲୁପ୍ତ ହେବାର ପ୍ରଥମ ଅନୁଭୂତିଟି ଆତ୍ମରୂପ ନିଶ୍ଚିହ୍ନତାର, ଅଦୃଶ୍ୟମାନତାର, ଅଂଧକାରର, ଅର୍ଥାତ୍ ପରିବ୍ୟାପ୍ତ ଅଂଧକାରରେ, ଗାଢ଼ କୃଷ୍ଣ ବର୍ଣରେ ହିଁ ସବୁ ରଂଗ ରୂପ ସ୍ୱାତଂତ୍ର୍ୟ ହରାଇ, ସ୍ୱପରିଚୟ ହରାଇ ଏକାକାର ନିମଜ୍ଜନ ଲାଭକରନ୍ତି । ୭୨ ଏ ନାସ୍ତ୍ୟାତ୍ମକତା ସହ ଆଲୋକର ଅଭିବ୍ୟଞ୍ଜନାର ନାସ୍ତ୍ୟାର୍ଥକତାର ସଂପର୍କମୂଳରେ ଖିବନ୍ଧଯୋଗ ରହିଛି ।

ଆଲୋକପର ଅଂଧକାରର ରହସ୍ୟବାଦୀ ସ୍ୱୀକୃତିଟି ମଧ୍ୟ ଅନୁଭବାତ୍ମକ । ଏ ଅନୁଭୂତିରେ ନାସ୍ତିବାଚକତା ଅସ୍ତିତ୍ୱବିଶ୍ୱରରେ (ଅସ୍=ଅଛି) ଆସ୍ତିବାଚକତାର ସମପର୍ଯ୍ୟାୟଭୁକ୍ତ । ଉଭୟଙ୍କର ଅବସ୍ଥିତି ପରସ୍ପରର ବିପରୀତ ମେରୁରେ । ଆଲୋକର ନିରସନ ବା ଅନୁପସ୍ଥିତି ଯେ ଅଂଧକାର, ତାହା ଆଲୋକର ଗୁପ୍ତତମ ପ୍ରକାଶ ରୂପ ମାତ୍ର । ରହସ୍ୟବାଦୀ ବିଶ୍ୱରରେ ଅଂଧକାର ଆଲୋକର ବିରୋଧ ପରିବର୍ତ୍ତେ ବରଂ ତାର ଅଦର୍ଶନଜନିତ ରୂପାଂତର ଅବବୋଧମାତ୍ର । ଅଂଧକାର ଆଲୋକକୁ ବିନାଶ କରିପାରେନାହିଁ; ସାମାନ୍ୟତମ ଛିଦ୍ର ମିଳିଗଲେ ବିପୁଳ ଅଂଧକାର ଭେଦକରି ଆଲୋକ ନିଜକୁ ପ୍ରକାଶ କରିଦିଏ ଏବଂ ଆଲୋକ ଯେତେ କ୍ଷୀଣ ହେଲେ ମଧ୍ୟ, ଯେତେ ସ୍ୱଳ୍ପସ୍ଥାନ ପ୍ରୟୋଜନ ସିଦ୍ଧି ପାଇଁ ଉଦ୍ଦିଷ୍ଟ ହୋଇଥିଲେ ମଧ୍ୟ ଚତୁଃପାର୍ଶ୍ୱସ୍ଥ ସମୁଦାୟ ପରିବେଶଟିକୁ ଉଣା ଅଧିକେ ଆଲୋକିତ ନକରି ରହିପାରେନାହିଁ । ଅଂଧକାର ଆଲୋକକୁ କେବେ ବି ଦୂର କରିପାରେନାହିଁ । ଆଲୋକ ସ୍ୱତଃ ଅପସାରିତ ହୋଇଯିବାରୁ ହିଁ ଅଂଧକାର ରୂପେ ପ୍ରତୀୟମାନ ହୁଏ । ତେଣୁ ଅନ୍ତର୍ଗତ ଆଲୋକର ପ୍ରକାଶପୂର୍ବର ମୁହୂର୍ତ୍ତ ହିଁ ଚରମ ଅଂଧକାରର ଅନୁଭବ ରୂପେ ଜାଗ୍ରତ ହୋଇଥାଏ ।

ଅଧ୍ୟାତ୍ମବିଶ୍ୱରରେ ସତ୍ତ୍ୱର ଆଲୋକାନୁଭୂତି ଯେତିକି ଚେତନାର ଊର୍ଦ୍ଧ୍ୱବିଂଦୁରେ, ଅଂଧକାରର ସାକ୍ଷାତ୍କାର ସେତିକି ଅବଚେତନର ନିମ୍ନଭୂମିରେ । ବ୍ୟାପ୍ତି ଓ ଶକ୍ତି ଉଭୟତ୍ର ସମାନ । ଅର୍ଥାମକୁ ଅବଧାରଣ ପାଇଁ ସୀମା ପକ୍ଷରେ ଏହା ଯେପରି ପ୍ରଥମ ଶକ୍ତି ପରୀକ୍ଷାର ଆହ୍ୱାନ, ପ୍ରଥମ ସୁଯୋଗ ମଧ୍ୟ । ଅବଚେତନ ମୁହୂର୍ତ୍ତର ନିଶ୍ଛିଦ୍ର ଅଂଧକାର ଯେଉଁ ବଂଦଦ୍ୱାରର ଧକ୍କା ଖାଇ ପୁଣି ନିଜ ଭିତରକୁ ଫେରି-ଆସେ, ସେହି ଦ୍ୱାରର ଉନ୍ମୁକ୍ତିରେ ହିଁ ଗୃହାଂଗନକୁ ଆଲୋକ ଅବାଧ ପ୍ରବେଶ କରେ । ଅବଚେତ ଚେତନାର ଆଘାତପ୍ରାପ୍ତ ମୁହୂର୍ତ୍ତରେ ହିଁ ଆଲୋକର ନିମଂତ୍ରଣ ସଂକେତ । ମନସ୍ତତ୍ତ୍ୱର ସିଦ୍ଧାଂତରେ ଅବଚେତନସ୍ତରର ଏହି ଘୋର ତମିସ୍ରାକୁ ଧାରଣ କରିନପାରିବା ପର୍ଯ୍ୟନ୍ତ ଚେତନା ଊର୍ଦ୍ଧ୍ୱସ୍ତରରେ ଆଲୋକ ଧାରଣ ପାଇଁ ନିଜକୁ ପୂର୍ଣ ପ୍ରସ୍ତୁତ କରିପାରେ ନାହିଁ । ଦିବ୍ୟମାର୍ଗରେ ଆଧ୍ୟାତ୍ମିକତାର ଉଚ୍ଚରୁ ଉଚ୍ଚତମ ଶୃଂଗାରୋହଣ କରୁଥିବା ଚେତନାକୁ ନିମ୍ନତମ ଭୂମି, ଗହ୍ୱର ଓ ଖାଦର ବିପଜ୍ଜନକତା ସଂପର୍କରେ ମଧ୍ୟ ସାବଧାନ ହେବାକୁ ପଡ଼େ । ଶିଖର ଆରୋହଣ ଅବକାଶରେ ନିମ୍ନପତନ ଘଟିତ ବିପର୍ଯ୍ୟୟ ସମ୍ଭାବନାକୁ ମଧ୍ୟ ଉଲ୍ଲଂଘନ ଓ ଅତିକ୍ରମ କରିବାର ପ୍ରୟତ୍ନ କରିବାକୁ ହୁଏ । ତେଣୁ, ସାଧନାମାର୍ଗରେ ଏହି ନିମ୍ନତମ

---

୭୨ "ଦେଖିଲାମ—ଅବସନ୍ନ ଚେତନାର ଗୋଧୂଳିବେଳାୟ / ଦେହ ମୋର ଭେସେ ଯାୟ କାଲୋ କାଲିଂଦୀର ସ୍ରୋତବାହି—/ ଏକ କୃଷ୍ଣ ଅରୂପତା ନାମେ ବିଶ୍ୱବୈଚିତ୍ର୍ୟେର ପରେ / ସ୍ଥଲେ ଜଲେ ଛାୟା ହୟେ, ବିନ୍ଦୁ ହୟେ ମିଲେ ଯାୟ ଦେହ / ଅଂତହୀନ ତମିସ୍ରାୟ....।"

ରବୀନ୍ଦ୍ରନାଥ—'ସଞ୍ଚୟିତା' (ପ୍ରାଂତିକ) ପୃ ୭୭୭

Digitized by PPRACHIN, SOA

ଛିଦ୍ରର ଅଂଧକାରଘନ ଭାବମୂଢ଼ତା ସତ୍ତ୍ୱେ ଏହା ଶେଷ ପ୍ରତିରୋଧୀ ବିଘ୍ନ ଓ ବିପୁଳ ସିଦ୍ଧିର ନିଶ୍ଚିତ ସଂଭାବନା ସଂକେତରୂପେ ସୂଚିତ । ରହସ୍ୟବାଦୀର ଧୈର୍ଯ୍ୟ ଓ ଶକ୍ତିର ଧ୍ୟାନମଗ୍ନ ଏକାଗ୍ର ନିଷ୍ଠା ଓ ଏ ମୁହୂର୍ତ୍ତ ଏକ ପ୍ରତିଶ୍ରୁତ ସୂର୍ଯ୍ୟ ସକାଳର [73] ନିଃଶବ୍ଦ ଅଥଚ ଆଶ୍ୱାସନାମଂଡିତ ପ୍ରତୀକ୍ଷା ଲଗ୍ନ ।

ଅଂଧକାରର ଏହି ମହାକାଶଗତିକ ଈଶ୍ୱର୍ଯ୍ୟ ମହିମା ପ୍ରକାଶ ପ୍ରତୀତିଟି ଧର୍ମସିଦ୍ଧାନ୍ତ ଅନୁମୋଦିତ । ଈଶ୍ୱରଂକର ତମଗୁଣର ବିଶ୍ୱମୟୀ ପ୍ରକାଶ ସ୍ୱରୂପ ଶ୍ୟାମା, କାଳୀ, ମହାକାଳ ପ୍ରଭୃତି । ଘନ-କୃଷ୍ଣ ଏ ସମୁଦ୍ରରୂପରେ ଅସ୍ତିତ୍ୱବୋଧ ଲୀନ ହୋଇ ପରିବୃତ ଶ୍ୟାମଚେତନା ସହ ଏକରୂପତାକୁ ପ୍ରାପ୍ତହେଲେ ବ୍ୟକ୍ତିର ବିଶ୍ୱସତ୍ତ୍ୱସହ ପ୍ରତ୍ୟକ୍ଷ ସଯୋଗଘଟେ । 'ଅଦ୍ୱୈତ'ର ପରିଭାଷାରେ ଏହାହିଁ ଯୋଗେଶ୍ୱରଙ୍କ 'ଯୋଗମାୟା' ବା ମହାମାୟାରୂପୀ ଶେଷ ତରଙ୍ଗିଣୀ, ଶେଷ ନେତିବୋଧ, ଯାହା ଅପାବୃତ ହେଲେହିଁ ପରମଙ୍କ ସହ ପୂର୍ଣ୍ଣ ଏକାତ୍ମତା ଘଟେ । 'ଜେନ୍' ସାଧନାରେ'ସାତୋରି'ବା ଅନୁପ୍ରାପ୍ତି ପୂର୍ବରୁ ସାଧକକୁ ଏଇ ଅଦ୍ଭୁତ ବିପର୍ଯ୍ୟୟ 'କୋଆନ୍ (Koan) ର ସମ୍ମୁଖୀନ ହେବାକୁ ପଡ଼େ । କୋଆନ୍ ଜେନ୍ ପ୍ରତିପାଦନରେ ଚେତନାର ଏକ 'ଅସଂଭବ' ମୁହୂର୍ତ୍ତ ଯେଉଁଠି ସବୁ ପ୍ରଶ୍ନ ସମାଧାନହୀନ ରହସ୍ୟ-ଗ୍ରଂଥିରେ ଛଂଦ ହୋଇଯାନ୍ତି । ସବୁ ଭାବବିଶ୍ୱର ଦୁର୍ବୋଧତାର ଏକ ଦୁର୍ଲଂଘ୍ୟବଂଧ ଦେହରେ ଧକ୍କା ଖାଇ ଫେରିଆସନ୍ତି । [74] ସୁଫୀ ସାଧନା ଏଇ ଅସୀମ କୃଷ୍ଣବେଣୀରୂପକ ଶାଶ୍ୱତ ବିରହରେ ଚୂଡ଼ଶ୍ୱାସ ନିର୍ବାଣ ଲଭିବା (ଫନା) ପ୍ରେମସାଧନାର ସାର୍ଥକତମ ମୁହୂର୍ତ୍ତ ବୋଲି ଜ୍ଞାନକରେ । ଗୌତମବୁଦ୍ଧଙ୍କର ପ୍ରଭାସ୍ୱର ଅନୁଭୂତି ବା ଦିବ୍ୟଜ୍ଞାନପ୍ରାପ୍ତି (enlightenment) ପୂର୍ବରୁ 'ମାର' ର ଆବିର୍ଭାବ ପ୍ରସଂଗଟି ଏହି ଚେତନାର ରୂପପ୍ରତୀକ ବୋଲି ବିବେଚନା କରାଯାଇପାରେ । ଖ୍ରୀଷ୍ଟଧର୍ମରେ ସଇତାନର (Lucifer) ସ୍ଥାନ ଈଶ୍ୱରଙ୍କ ସିଂହାସନର ମାତ୍ର ଗୋଟିଏ ପାହାଚ ତଳେ । ଅଧ୍ୟାତ୍ମବାଦର ବିବେଚନାରେ ଏହା ଦିବ୍ୟସତ୍ତ୍ୱଙ୍କର ପ୍ରତିଚ୍ଛାୟା । ତେଣୁ ଅସ୍ତିତ୍ୱର ମର୍ମମୂଳରେ ପରମଜ୍ଞାନ ସହ ପରମଅଜ୍ଞାନ, ପରମ ଆନଂଦ ସହ ପରମ ଯଂତ୍ରଣା ଅଂଗାଂଗୀ ଜଡ଼ିତ । ଜ୍ଞେୟବାଦର ଏ ଅଜ୍ଞାନତା ବିବର୍ତ୍ତନବାଦର ଆଦି ଜଡ଼ମୂଳ ଯାହାର ପୂର୍ଣ୍ଣ ଅତିକ୍ରମଣରେ ହିଁ ପରମ ପ୍ରଜ୍ଞାନର ଉଦ୍ଭାସ ସଂଭବ । ହିବ୍ରୁଚେତନାରେ ଈଶ୍ୱର (ଜେହୋଭା) ଅଦୃଶ୍ୟ ପ୍ରତିପନ୍ନ ହେବା ମୂଳରେ ଏହି ପରିବୃତକାରୀ ଅଂଧକାରହିଁ ସ୍ୱୀକୃତିପ୍ରାପ୍ତ । ନଗୋଲା ଧର୍ମଚିନ୍ତାରେ ଏହା ଅଦିବ୍ୟଚେତନାପ୍ରତୀକ ସଇତାନ, ଡେଭିଲ ବା ଦାନବ, ଈଶ୍ୱରଙ୍କ ବିଦ୍ୱେଷୀ, ପ୍ରତିସ୍ପର୍ଦ୍ଧୀ ଓ ପ୍ରାୟ ଅନୁରୂପ ଶକ୍ତିଶାଳୀ, ସ୍ୱର୍ଗଚ୍ୟୁତ, ଚିରଅଂଧକାର ରାଜ୍ୟ ବା ପାତାଳର

---

73 "Only know : / As well as you know—drawn from lantern light / That far above you, for you and within you / There burns and shines and lives,unwaveringly / And always yours the truth !

Arlington Robinson 'Captain Craig,

74 The Koan.—are generally, such as to shut up all possible avenues of rationalization.. The Koan breaks down all the hinderances to the ultimate truth. It has a most definite objective, the arousing of doubt and pushing it to farthest limits..All rivers are sure to pour into ocean. but the Koan is an ironwall standing in the way..seems almost impass-able. Intellectually this is the transcending of the limits of logical dualism..The Koan is indeed a contradiction."

Suzuki—'An Introduction to Zen Buddhism'—P 108

Digitized by PPRACHIN, SOA

ଅଧିବାସୀ, ମନୁଷ୍ୟକୁ ଈଶ୍ୱରଙ୍କଠାରୁ ବିଚ୍ଛିନ୍ନ ରଖିବା ନିମନ୍ତେ ନିୟତ ତତ୍ପର । ଭାରତୀୟ ଚେତନାରେ ଏ ଦାନବ ମଧ୍ୟ ଅମୋକ୍ଷ ଅଭିଶାପଗ୍ରସ୍ତ ନୁହେ । ଆତ୍ମସମର୍ପଣ ହୋଇନପାରିଲେ ବି ବିରୋଧ, ସଂଗ୍ରାମ ଓ ଆତ୍ମବିସର୍ଜନରେ ତାର 'ମୋକ୍ଷ'ର ପ୍ରତିଶ୍ରୁତି । ପ୍ରାଚ୍ୟ ଅଧ୍ୟାତ୍ମ ସିଦ୍ଧାନ୍ତରେ ଈଶ୍ୱର ଦାନବତ୍ୱକୁ ଆପଣା ଭିତରେ ଆତ୍ମସାତ୍ କରି ଜାଗ୍ରତ । ବରଂ ଈଶ୍ୱରଙ୍କ ଧ୍ୱଂସଶକ୍ତିର ଆସୁରୀ ଅଭିବ୍ୟକ୍ତିରୂପେ ଅନେକତ୍ର ଏ ଦୈତ୍ୟସତ୍ତ୍ୱର ଆବିର୍ଭାବ । ଏ ଦୈତ୍ୟ ଦିବ୍ୟବର୍ଜନ ଓ ଅହଂପ୍ରତିଷ୍ଠା ମାର୍ଗରେ ଧ୍ୱଂସର ଚରମକୁ ରୂପାୟିତ କରି ଶେଷରେ ପ୍ରଳୟାଗ୍ନିରେ ସ୍ୱୟଂ ଭସ୍ମୀଭୂତ ହୋଇଥାଏ । ଈଶ୍ୱର ଆସୁରୀଶକ୍ତି ସହ ସଂଗ୍ରାମକରି କେବଳ ଦାନବକୁ ନୁହେଁ ତାର ଦାନବତ୍ୱକୁ ମଧ୍ୟ ଧ୍ୱଂସ କରନ୍ତି ଏବଂ ତାର ମୃତ୍ୟୁକୁ 'ପରିମୁକ୍ତି' ରେ ରୂପାନ୍ତରିତ କରନ୍ତି । ଅଧ୍ୟାତ୍ମ ସିଦ୍ଧାନ୍ତରେ ଆସୁରୀ-ସାଧନା ମଧ୍ୟ ଦୈବିକ ସାଧନାର ଏକ ଛାୟାରୂପ ଯାହା ନାସ୍ତିବାଚକତା ପଥରେ ଗତିଶୀଳ । କିନ୍ତୁ ପରମ ପ୍ରେମ କାହାରିକୁ ବର୍ଜନ କରେ ନାହିଁ । ତେଣୁ ଆସୁରୀ ତାମସିକତା ମଧ୍ୟ ଦିବ୍ୟ ସାତ୍ତ୍ୱିକ ଅନୁଗ୍ରହ ଲାଭକରିପାରେ ।

ମାନବଚେତନାକୁ ଦିବ୍ୟ ଓ ଅଦିବ୍ୟର ସଂଗ୍ରାମସ୍ଥଳୀ ରୂପେ ବିବେଚନା କରିବା ରହସ୍ୟବାଦୀ ବିଶ୍ୱାସର ପୂର୍ଣ ସମର୍ଥନ ଲାଭ କରିଛି । ମାନବ ଜୀବନ ପୂର୍ଣତା ଅଭିମୁଖୀ । ବ୍ୟକ୍ତିତ୍ୱରେ ସମାଚ୍ଛାଦିତ ନିଶ୍ଚେତନାର ଆସୁରୀ ପ୍ରତିବନ୍ଧକ ପ୍ରକାଶୋନ୍ମୁଖ ଦିବ୍ୟଚେତନାକୁ ଅହରହ ପ୍ରତିରୋଧ ଓ ପ୍ରତିହତ କରିବାରେ ଲାଗିଥାଏ । ଆତ୍ମସାକ୍ଷାତକାର ପଥରେ ଆତ୍ମବିରୋଧହିଁ ପ୍ରବଳତମ ବିରୋଧ । ଆତ୍ମଜ୍ଞାନ ପାଇଁ ତେଣୁ ଦିବ୍ୟ ପ୍ରତିଷ୍ଠା ନୁହେଁ, ତା ପୂର୍ବରୁ ଅଦିବ୍ୟର ବିସର୍ଜନ ମଧ୍ୟ ପ୍ରୟୋଜନ ହୁଏ । ଚେତନାର ପ୍ରତ୍ୟେକ ଗୋପନ ସ୍ତରରେ ପ୍ରବେଶ ଓ ପ୍ରଲୋଭନର ନିରସନ ଭିତରେ ହିଁ ଅନ୍ତଃସ୍ଥ କାମ୍ୟଲକ୍ଷ୍ମୀଙ୍କୁ ବରଣ କରିବାକୁ ହୁଏ । କେବଳ ହିମାଳୟର ଉଚ୍ଚଭୂମିରେ ନୁହେଁ ପାତାଳର ଅତଳ ଗହ୍ୱରରେ ମଧ୍ୟ ଅଗ୍ନିହୀର ଆବିଷ୍କାର, ଜୀବନର ସତ୍ୟ ପ୍ରତିଷ୍ଠା କରିବାକୁ ହୁଏ । ସେଇ ପରମସିଦ୍ଧି ପୂର୍ବର ଚରମ ପ୍ରତିରୋଧକାରୀ ଦୁର୍ଭୋଗରୂପେ ହିଁ ଏ ମୋହମୟୀ କାଳରାତ୍ରିର କାଳଅନ୍ଧାରୀ ଆବିର୍ଭାବ ।



Digitized by PPRACHIN, SOA

# ବ୍ରାହ୍ମୀସ୍ଥିତି (The Unitive Life)

ଉଦ୍‌ବୟଂ ତମସସ୍ପରି ଜ୍ୟୋତିଷ୍ପଶ୍ୟନ୍ତ ଉତ୍ତରମ୍ ।
ଦେବଂ ଦେବତ୍ରା ସୂର୍ଯ୍ୟମଗନ୍ମ ଜ୍ୟୋତିରୁତ୍ତମମ୍ ॥ ଋକ୍ ୧।୫୦।୧୦.

("ଅଂଧକାରର ସେ ପାର୍ଶ୍ୱରେ ରହିଥିବା ଊର୍ଦ୍ଧ୍ୱରେ ସେଇ ଆଲୋକର ଦର୍ଶନ କରି ଆମେ ଦେବଙ୍କର ବାହନରେ ଦିବ୍ୟ ସୂର୍ଯ୍ୟର ସାମୀପ୍ୟ ଲାଭ କଲୁ । ସର୍ବୋଚ୍ଚ ସର୍ବୋତ୍ତମ ଜ୍ୟୋତି ମଧ୍ୟରେ ପ୍ରବେଶ କଲୁ ।[୨୫]

ରହସ୍ୟାନୁଭବର ଅନ୍ତିମ ସୋପାନଟି ଦିବ୍ୟଚେତନାର ସହ ବ୍ୟକ୍ତିଚେତନାର ପୂର୍ଣ୍ଣମିଳନର । ଅବଶ୍ୟ ଏ ଦିବ୍ୟ ଉପଲବ୍ଧିର ସ୍ୱରୂପବର୍ଣ୍ଣନା ପ୍ରସଂଗରେ ରହସ୍ୟବାଦୀ ଉଚ୍ଚାରଣ ମୁଖ୍ୟତଃ 'ଅନିର୍ବଚନୀୟ' ର ପାରିଭାଷିକରେ ବିବୃତ । ମିଷ୍ଟିକ୍‌ର କହିବା ଅନୁସାରେ ସେ ସାଧନା ପ୍ରଣାଳୀ ବା ଚେତନାର ବିଭିନ୍ନ ସ୍ତର ଓ ଅବସ୍ଥା ସମ୍ପର୍କରେ କିଛି କିଛି ସୂଚନା ଦେଇପାରେ, ମାତ୍ର ପୂର୍ଣ୍ଣୋପଲବ୍ଧିର ପ୍ରକାଶ ପାଇଁ ସେ ଭାଷାହୀନ । ସାଧନାପଥର ବିବରଣୀ ଉପସ୍ଥାପନା କରିପାରେ, ଯାତ୍ରା ସମାପ୍ତିର ସମ୍ବାଦ ଉଦ୍‌ଘୋଷଣା କରିପାରେ, ମାତ୍ର ସେ ସମାପ୍ତିକାଳୀନ ଅନୁଭବ ତା ପକ୍ଷରେ ବର୍ଣ୍ଣନାରେ ଦୁଃସାଧ୍ୟ । ତଥାପି ରହସ୍ୟାଶ୍ରୟୀ ରଚନାମାନଙ୍କରୁ ରହସ୍ୟବାଦୀର ଏଇ ଅନ୍ତର୍ଯୋପଲବ୍ଧିର କିଂଚିତ ଆଭାସଇଂଗିତ ତାର ଶବ୍ଦଚିତ୍ରଆୟାସ ମଧ୍ୟରେ ପ୍ରକାଶ ଲାଭ କରିଥାଏ ।

ଏହି ଅବସ୍ଥାକୁ ରହସ୍ୟବାଦୀ ତାର ଚେତନାର ସର୍ବୋଚ୍ଚ ଓ ସର୍ବୋତ୍ତମ ପର୍ଯ୍ୟାୟର ପୂର୍ଣ୍ଣୋପଲବ୍ଧି ବୋଲି କହିଥାଏ । ଦିବ୍ୟମିଳନ, ଶ୍ରେଷ୍ଠମୁକ୍ତି, ପୂର୍ଣ୍ଣାନଂଦ, ବ୍ରାହ୍ମୀସ୍ଥିତି ପ୍ରଭୃତି ପାରିଭାଷିକରେ ଏହା ବିବୃତ । ଏ ଅବସ୍ଥାରେ ବ୍ୟକ୍ତି ଆଧ୍ୟାତ୍ମିକ ପରମସତ୍ୟର ମୌଳିକ ରୂପପ୍ରକାଶର ପରିଚୟ ଲାଭ କରିଥାଏ । ବ୍ୟକ୍ତିଜୀବନରେ ଏ ପରମପ୍ରାପ୍ତିର ତ୍ରିବିଧ ପ୍ରକାଶ ଘଟିଥାଏ—ଜ୍ଞାନ, ଶକ୍ତି ଓ ଆନନ୍ଦ । ପରମ ଦିବ୍ୟ ଅସ୍ତିତ୍ୱ, ପରମ ଦିବ୍ୟଚେତନାର ଶକ୍ତି ଏବଂ ଅସ୍ତିତ୍ୱଗତ ଦିବ୍ୟ ଆନଂଦର ପରମ ପ୍ରସନ୍ନତା, ଏ ତିନୋଟିର ଏକତ୍ର ସମାବେଶ ବ୍ୟକ୍ତି ଦେଖିବାକୁ ପାଏ । ଏଇ ଅବସ୍ଥାରେ ଶାଶ୍ୱତ ବା ପରମ ସତ୍ୟର ତିନୋଟି ପ୍ରକାଶରୂପ ପ୍ରତ୍ୟକ୍ଷିତ ହୋଇଥାଏ; ୧) ପରମଙ୍କୁ ସର୍ବାତୀତ (Transcendental self) ରୂପେ ଜ୍ଞାନ, (୨) ଅନ୍ତରାତ୍ମରୂପରେ (Individual self) ପ୍ରାପ୍ତି ଓ (୩) ବିଶ୍ୱବ୍ୟାପ୍ତ ସତ୍ତା (Cosmic self) ରୂପେ ଉପଲବ୍ଧି । ଏଇ ଉପଲବ୍ଧିରେ ସାଧକ ଚିତ୍ତରେ ବ୍ୟକ୍ତି, ବିଶ୍ୱ ଓ ବିଶ୍ୱାତୀତର ପାରସ୍ପରିକ ରହସ୍ୟ ଉଦ୍‌ଘାଟିତ ହୋଇଥାଏ । ଅର୍ଥାତ୍ ବ୍ୟକ୍ତିଜୀବନ ବିଶ୍ୱଜୀବନ ଓ ବିଶ୍ୱବହିର୍ଭୂତ ସକଳ ଚେତନା ସହ ଯେଉଁ ସମ୍ପର୍କସୂତ୍ରରେ ବିଧୃତ, ସେଇ ସତ୍ୟକୁ ଲାଭ କରେ । ସମଗ୍ର

---

୨୫ ଋକ୍ ୧।୫୦।୧୦

Digitized by PPRACHIN, SOA

ରହସ୍ୟବାଦୀ ଉପଲବ୍ଧିଧାରା ପ୍ରାରଂଭରୁ ଏହି ସତ୍ୟର ଅନ୍ୱେଷଣ ପଥରେ ହିଁ ସଂଚାଳିତ ହୋଇଥାଏ । ବ୍ୟକ୍ତିସତ୍ତା, ବିଶ୍ୱସତ୍ତା ଓ ପରମ ସତ୍ୟସତ୍ତା—(ଯିଏ କି ପୂର୍ବବର୍ତ୍ତୀ ଉଭୟରେ ରହିଛନ୍ତି, ପୁଣି ଉଭୟଙ୍କୁ ଅତିକ୍ରମ କରି ରହିଛନ୍ତି), ଅସ୍ତିତ୍ୱ ସଂପୃକ୍ତ ଯାବତୀୟ 'ରହସ୍ୟର ଗ୍ରବକାଠି'ରୂପେ ରହିଥିବା ଏଇ ତିନୋଟି ଉପାଦାନ ସାଧକର ଉପଲବ୍ଧିରେ ଯେତେବେଳେ ଏକ ତଥା ପରସ୍ପର ସହିତ ସମନ୍ୱିତ ଭାବ-ବସ୍ଥାରେ ଆବଦ୍ଧ ରହିଥାନ୍ତି, ତାହାହିଁ ଚେତନାର ଉତ୍କ୍ରାଂତ ସ୍ଥିତି ଓ ସାଧନାର ଚରମ ସଂସିଦ୍ଧି । ପ୍ରାଚ୍ୟ ପାଶ୍ଚାତ୍ୟ ସକଳରହସ୍ୟବାଦୀ ବିଚାର ବ୍ୟକ୍ତି ବିଶ୍ୱ ଓ ଶାଶ୍ୱତର ଏଇ ପାରସ୍ପରିକ ସଂପର୍କର ପୂର୍ଣ୍ଣୋପଲବ୍ଧିମୂଳକ ସିଦ୍ଧାଂତ ଉପରେ ହିଁ ପର୍ଯ୍ୟବସିତ ।[76]

## ଶାଶ୍ୱତର ରୂପାଭିବ୍ୟକ୍ତି

ଆତ୍ମାର ପରମୋପଲବ୍ଧି ଉଭୟ ସେଶ୍ୱର ଓ ନିରୀଶ୍ୱରବାଦୀ ସିଦ୍ଧାଂତ ମାର୍ଗରେ ଅଭିବ୍ୟକ୍ତ ହୋଇଥାଏ । ଅର୍ଥାତ୍ ସତ୍ତା ଯେଉଁ ପୂର୍ଣ୍ଣରୂପ ପ୍ରତ୍ୟକ୍ଷକରେ, ତାହାକୁ ସେ ଇଷ୍ଟ ବା ବ୍ୟକ୍ତିରୂପ ପରମେଶ୍ୱର **(Personal God)** ବୋଲି କହିପାରେ, କିଂବା ଈଶ୍ୱରଙ୍କ ନାମୋଲ୍ଲେଖ ପର୍ଯ୍ୟଂନ୍ତ ନକରି କେବଳ ଏକ ନିର୍ବିଶେଷ ସ୍ଥିତି ବା ନୈର୍ବ୍ୟକ୍ତିକ ଅବସ୍ଥା ବା ପରମ ସଦ୍‌ବସ୍ତୁ **(absolute reality)** ଜ୍ଞାନ କରିପାରେ । ମାତ୍ର ଏ ପ୍ରସଂଗରେ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ସିଦ୍ଧାଂତଟି ହେଉଛି, ଏ ଉଭୟ ବିଚାରଧାରା ଊର୍ଦ୍ଧ୍ୱତର ଏକ 'ଶାଶ୍ୱତବାଦ' **(Transcendentalism)** ଉପରେ ଅବଲଂବିତ, ଯାହାକୁ ସେ ସନାତନ, ଧ୍ରୁବ, ଶୂନ୍ୟ, ସହଜ ବା ଜୀବନ ଧର୍ମ ବୋଲି କହିପାରେ । ଏହା ଅସ୍ତିତ୍ୱ ସଂପର୍କୀୟ ସକଳସିଦ୍ଧାଂତର ପୂର୍ବବର୍ତ୍ତୀ ଓ ସକଳ ପ୍ରକାଶର ବିଧାୟକ । ସୃଷ୍ଟି ବା ବିନାଶ କାହିଁରି ଏହାକୁ ଉଲ୍ଲଂଘନ କରିପାରେନାହିଁ ।

## ନିରୀଶ୍ୱରବାଦ ସିଦ୍ଧାନ୍ତ

ମୁଖ୍ୟତଃ ପ୍ରାଚ୍ୟଚେତନାର ଜୈନ, ବୌଦ୍ଧ ଓ ତତ୍ତ୍ୱଦର୍ଶନ ପ୍ରଭାବିତ ସହଜମାର୍ଗୀ ସିଦ୍ଧାନ୍ତମାନ ଏଇ ରୂପ ବିଶ୍ଳେଷଣର ପକ୍ଷପାତୀ । ପାଶ୍ଚାତ୍ୟ ଚେତନାର ଅତି ଭୌତିକବାଦୀ କେତେକ ଦର୍ଶନ ଓ ବିଜ୍ଞାନର ଅସ୍ତିତ୍ୱବାଦୀ ବିଚାର ମଧ୍ୟ ଏଇ ନିରୀଶ୍ୱର-ବାଦୀକୁ ଚରମାନୁଭୂତିର ପ୍ରସଂଗକୁ ସ୍ୱୀକୃତି ଦେଇଛି ।

କ) ଏଇ ବିଚାର ଅନୁସାରେ ଚରମାନୁଭୂତି ଆତ୍ମାର ବା ସତ୍ତାର ସହଜାନୁଭୂତି । ଏଠାରେ 'ସହଜ' ଶବ୍ଦଟି ତାର ଧାତ୍ୱାର୍ଥରେ ଅର୍ଥାତ୍ ନିର୍ମୋଳା ଶୁଦ୍ଧ ପ୍ରାକୃତିକ, ସ୍ୱାଭାବିକ, ସହଜାତ ଅର୍ଥରେ ବ୍ୟବହୃତ ।

ଖ) ଏହାର ତାତ୍ପର୍ଯ୍ୟ ହେଉଛି ଚରମାନୁଭବ ସମୟରେ ସତ୍ତା ନିଜ ଭିନ୍ନ ନୂତନ କିଛି ସ୍ଥିତି ବା ବସ୍ତୁ ବା ରୂପ ଲାଭ କରେ ନାହିଁ । ବରଂ ତାର ଅବିମିଶ୍ର ଅରୂପ ପରିଚୟକୁହିଁ ଜ୍ଞାତ ହୁଏ ।

---

76 "Overcoming of all the usual barriers between the individual and the Absolute is the great mystic achievement !"

William James—'Variety of Religious Experiences' P 410

Digitized by PPRACHIN, SOA

ସେହି ଉପଲବ୍ଧିରେ ସେ କାହାର ସହ କୌଣସି ସବଧର ଅନ୍ତର୍ଗତ ନୁହେ । ସେ ନିଜେ ସମ୍ପୂର୍ଣ୍ଣ ଶୂନ୍ୟ ହେତୁ ପରିପୂର୍ଣ୍ଣତା ପାଇଁ କିଛି ଲୋଡ଼େ ନାହିଁ । ପରମ ପ୍ରଜ୍ଞାରେ ନିଜକୁ ସେ ସର୍ବୋଚ୍ଚ ଓ ପୂର୍ଣ୍ଣ ନିରାଧାର ଦେଖେ, ଯାହାର ଆଉ କୌଣସି ଭିନ୍ନ ଊର୍ଦ୍ଧ୍ୱତର ସ୍ଥିତି ସଂଭବ ନୁହେଁ । ଆତ୍ମାର ନିଜକୁ ଶୂନ୍ୟ ଭିନ୍ନ ଆଉ କିଛି ବି ଅନୁଭବ ନାହିଁ । ଆରମ୍ଭ ବା ଶେଷ ନାହିଁ । ଏହିପରି ସେ ଶୂନ୍ୟତା ସେଇ ହିଁ ଜୈନ ପରିଭାଷାର "କେବଳମ୍" ! ଏହି 'କୈବଲ୍ୟ' ହିଁ ଶେଷ ଜ୍ଞାନ, ଶେଷ ଉପଲବ୍ଧି ।

ଗ) ଏ ଆତ୍ମା ରୂପର ସବିଶେଷ ପ୍ରକାଶ ନିର୍ଦ୍ୱଂଦ୍ୱତା ବା ଅସମ୍ପୃକ୍ତ । ଅର୍ଥାତ୍ ଅନୁରକ୍ତ ବା ବିରକ୍ତ ନୁହେ, ନିର୍ଲିପ୍ତ । ସ୍ୱାଭାବିକତାକୁ ସକଳ ପ୍ରତିକ୍ରିୟାହୀନ ସହଜ-ସ୍ୱୀକୃତ । ଏହାହିଁ ନିର୍ବାଣ, ସହଜ, ମୋକ୍ଷ ବା ସାତୋରି ।

## ସେଶ୍ୱରବାଦ

ଈଶ୍ୱର— ୧) ସ୍ଥିତି (State) ଓ ସତ୍ତ୍ୱା (Being)

ସତ୍ତ୍ୱାରୂପ—୨) ନୈର୍ବ୍ୟକ୍ତିକ ଓ ବ୍ୟକ୍ତି-ରୂପ (Impersonal, Personal)

ନିରୀଶ୍ୱରବାଦୀ ସିଦ୍ଧାଂତରେ ଯାହା କେବଳ ଏକ ନିର୍ବିଶେଷ ସ୍ଥିତି, ଆସ୍ତିକବାଦୀ ବିଚାରରେ ତାହାହିଁ 'ଈଶ୍ୱର' । ଏ ଈଶ୍ୱର ଉଭୟ ସ୍ଥିତି ବା 'ପୁରୁଷ'ର ରୂପାଭିବ୍ୟକ୍ତି ଲାଭ କରିପାରନ୍ତି । ଅର୍ଥାତ୍ ବ୍ୟକ୍ତି ଯେଉଁ 'ଶାଶ୍ୱତ' କୁ ଲାଭକରେ ସେ ପରମ/ତୁରୀୟ/ବ୍ରାହ୍ମୀ ଅବସ୍ଥା ବା ସ୍ଥିତି ହୋଇପାରନ୍ତି, କିଂବା ପରମ ପୁରୁଷ ଭଗବାନ ମଧ୍ୟ ହୋଇପାରନ୍ତି ।

## ନିର୍ବିଶେଷତା (Impersonality of the Eternal)

ମିଷ୍ଟିକ ଅପାରର ଖଣ୍ଡିତ ମୁହୂର୍ତ୍ତର ଏକ ନିର୍ଦ୍ଦିଷ୍ଟ ଅନୁଭବ ଭିତରେ ଶାଶ୍ୱତକୁ ନିର୍ବିଶେଷ, ସର୍ବଅବସ୍ଥା ଓ କାଳର ଅତୀତ ବୋଲି ଉପଲବ୍ଧି କରେ । ଏ ଅବବୋଧରେ ଶାଶ୍ୱତ ସବୁ କିଛି ସହ ବ୍ୟକ୍ତିଗତ ସଂବଂଧ ବହିର୍ଭୂତ ଓ ସବୁପ୍ରକାର ରୂପ ପରିଚୟର ଅତୀତ ଏକ ନିତ୍ୟ ନିରବଚ୍ଛିନ୍ନତା ରୂପେ ଉପଲବ୍ଧ ହୋଇଥାନ୍ତି । ବେଦର ହିରଣ୍ୟଗର୍ଭ ପୁରୁଷ, ଉପନିଷଦର 'ବ୍ରହ୍ମ', ଗୀତାର ବିଶ୍ୱରୂପ, ତଂତ୍ରର ମହାକାଳ ପ୍ରଭୃତି ଚେତନା ଶାଶ୍ୱତର ଏଇ ନିର୍ବିଶେଷ ଓ ନୈର୍ବ୍ୟକ୍ତିକ ସିଦ୍ଧାନ୍ତ ଉପରେ ପର୍ଯ୍ୟବସିତ ବୋଲି ଅନୁମାନ କରିହୋଇପାରେ ।[୭୭] ଏଠାରେ ପରମ ଜଡ଼ଜଗତର କୌଣସି କର୍ମ, ସିଦ୍ଧାନ୍ତ ବା ସୁଖଦୁଃଖାତ୍ମକ ଭାବାନୁଭୂତି ସହ ସଂପୃକ୍ତ ନୁହନ୍ତି ଏବଂ ବିଶ୍ୱର ସବୁ କିଛି ତାଙ୍କୁ ହିଁ କେନ୍ଦ୍ର କରି

---

୭୭ ହିବ୍ରୁ ଚେତନା ଈଶ୍ୱରଂକ ରୂପାଭିବ୍ୟକ୍ତିରେ ବିକଶିତ ହେଲେ ମଧ୍ୟ ଏଇ ନୈର୍ବ୍ୟକ୍ତିକ ନିର୍ବିଶେଷତାକୁ ସ୍ୱୀକୃତ ଦିଏ । 'En-Sof (God in Himself)—which is unknowable and impersonal (different from) the Personal God of the Torah who is God in manifestation. The En-Sof is also called" the hidden God"..."in the depths of His nothingness." "Further En-Sof, which is the Infinite, has no qualities or attributes."

Scholem Lecture quote Mysticism & Philosophy—P 177/178 Stace.

Digitized by PPRACHIN, SOA

ନିର୍ଦ୍ଦିଷ୍ଟ ନିୟମାବଦ୍ଧତାରେ ଅଭିବ୍ୟକ୍ତ ଲାଭ କରୁଥିଲେ ମଧ୍ୟ ସ୍ୱୟଂ ଈଶ୍ୱର କୌଣସି ବ୍ୟବସ୍ଥାର ଅଧୀନ ନୁହନ୍ତି, ଅଥଚ କିଛି ନିୟମ ବା ପ୍ରାକୃତିକତାକୁ କେବେହେଁ ଉଲ୍ଲଂଘନ କରନ୍ତି ନାହିଁ । ଏହା ମୁଖ୍ୟତଃ ପରମଙ୍କର ନିର୍ଗୁଣାତ୍ମକତାର ଉପଲବ୍ଧି ଯାହା ଅଦ୍ୱୈତବାଦୀ ଜ୍ଞାନମାର୍ଗୀ ସିଦ୍ଧାନ୍ତର ଅନୁକୂଳ । ବେଦାନ୍ତ ବ୍ରହ୍ମ ପରଂପରାରେ ଆଚାର୍ଯ୍ୟ ଶଙ୍କରଂଙ୍କ ଶୁଦ୍ଧାଦ୍ୱୈତ, ବୌଦ୍ଧ ଶୂନ୍ୟବାଦ, ଜର୍ମାନ ରହସ୍ୟବାଦୀ ଏକହାର୍ଟଙ୍କ (Eckhart) God-head ଓ Rudolf Otto ଙ୍କ ନିର୍ଦ୍ଦେଶିତ Numen [78] ଅବଧାରଣାରେ ଏଇ ଭାବଚେତନାର ବିସ୍ତାର-ରୂପ ପ୍ରଦର୍ଶିତ ।

## ବ୍ୟକ୍ତି ରୂପ ଈଶ୍ୱର (Immanent)

ଭାବବାଦୀ ରହସ୍ୟ ଚେତନା (ଓ ଭକ୍ତିଭାବନା) ସାଧାରଣତଃ ଈଶ୍ୱରଙ୍କର ଏ ଦର୍ଶନ-ତତ୍ତ୍ୱର ନୈର୍ବ୍ୟକ୍ତିକ ପରିଚୟରେ ସଂତୃପ୍ତ ନୁହେଁ । ତେଣୁ ସେ ଈଶ୍ୱରଙ୍କୁ ସାକାର ହେଉ ବା ନିରାକାର ହେଉ ବ୍ୟକ୍ତି-ମାନସ ସହ ଅନ୍ତରଂଗତାର ସଂବଂଧ ସ୍ୱୀକୃତ ପରିଚୟ ଭିତରେ ଉପସ୍ଥାପନା କରେ, ଯେଉଁଠାରେ ସେ ତାହାର ପ୍ରଭୁ, ପିତା, ବଂଧୁ ବା ପ୍ରିୟ ରୂପେ ବ୍ୟକ୍ତିଜୀବନ ସହିତ ସଂପୃକ୍ତ । ଦ୍ୱୈତବାଦୀ ମିଳନ ଅନୁଭୂତିର ବିସ୍ତାର ଭୂମିଟି ଏହିଠାରେ ଅନୁସଂଧେୟ । ଈଶ୍ୱରଙ୍କୁ ସର୍ବାଂତର୍ଗତ (immanent) ରୂପେ ଅନୁଭବ କରିବା ଏ ଭାବାନୁଭୂତିର ବୈଶିଷ୍ଟ୍ୟ । ବୋଧହୁଏ ଏଇ ଅର୍ଥରେ ଆଲୋଚକ Otto ଏ ଉପଲବ୍ଧିକୁ ରହସ୍ୟବାଦର ସ୍ୱତଂତ୍ର ବିଭାବ ବୋଲି ବିବେଚନା କରିଛନ୍ତି । [79]

## ଆତ୍ମସାକ୍ଷାତ୍କାର (Perception of Individual Self)

ରହସ୍ୟବାଦୀ ଅନୁଭବରେ ବ୍ୟକ୍ତିର ଆତ୍ମୋପଲବ୍ଧି ଯେଉଁ ବ୍ୟାଖ୍ୟା ରୂପକୁ ଆଶ୍ରୟ କରେ ତାହା ଆତ୍ମନ=ବ୍ରହ୍ମନ୍ ରୂପେ ନିର୍ଦ୍ଧାରିତ ହୋଇପାରେ କିଂବା ଆତ୍ମା ବ୍ରହ୍ମାଂଶ ବା ଚିତ୍କଣା ରୂପେ ପ୍ରତିପାଦିତ ହୋଇପାରେ । ଅର୍ଥାତ୍ ଏ ଆତ୍ମା ପୂର୍ଣ୍ଣବ୍ରହ୍ମ ପରମଶାଶ୍ୱତ କିଂବା ଯେତେ ମହିମାମଂଡ଼ିତ ହେଲେବି ପୂର୍ଣ୍ଣ ସ୍ୱରୂପଙ୍କର ଅଂଶବିଶେଷ ମାତ୍ର । ଏ ବିସ୍ତାରବୋଧ ହିଁ ଜ୍ଞାନମାର୍ଗୀ ଅଦ୍ୱୈତ ସାଧନା ଓ ଭକ୍ତିମାର୍ଗୀ ଦ୍ୱୈତ ଉପାସନାର ମତବିରୋଧର ହେତୁସ୍ୱରୂପ । ଏହି ନବଲବ୍ଧ ଅନୁଭୂତିରେ ସତ୍ତା ଆପଣା ସଂପର୍କରେ ଯେଉଁ ସବୁ ଜ୍ଞାନ ଲାଭକରେ, ତାହା ତ୍ରିବିଧ ପରିଚୟରେ ପ୍ରକାଶିତ ହୋଇପାରେ ।

(କ) ଅସ୍ତିତ୍ୱବିଲୟ (Self-loss)

(ଖ) ସତ୍ତାର-ଅତିକ୍ରମଣ (Self transcendence)

(ଗ) ସତ୍ତାର ରୂପାଂତର ଲାଭ (Self transmutation)

---

78 'Otto' 'The Idea of Holy'

79 "It is supposed to be peculiar to mysticism to conceive God not as transcendent but as immanent."

Rudolf Otto 'Mysticism, East and West.'—P 148

Digitized by PPRACHIN, SOA

## ଅସ୍ତିତ୍ୱମଜ୍ଜନ

ମୁଣ୍ଡକ ଉପନିଷଦରେ ନଦୀ ସମୁଦ୍ରସଂଗମକାଳରେ ସ୍ୱପରିଚୟ ବିଲୁପ୍ତ ହେବାର ବର୍ଣ୍ଣନା ଅଛି।[୮୦] ପାଶ୍ଚାତ୍ୟ ରହସ୍ୟବାଦୀ ବର୍ଣ୍ଣନାରେ, ଏଇ ଅନୁଭବ ପ୍ରସଂଗରେ ଅତଳଗହ୍ୱର, ବିପୁଳ ଅଂଧକାର, ଗଭୀର ନୀରବତାରେ ବ୍ୟକ୍ତି ଆତ୍ମ-ମଜ୍ଜନ ହେବାର ଚିତ୍ର ପ୍ରଦତ୍ତ।[୮୧] ବୌଦ୍ଧ ନିର୍ବାଣ, ଜୈନ ସାଲ୍ଲେଖ, ସୂଫୀ ଫନା ମଧ୍ୟ ଏଇ ସ୍ୱବିଚେତନା ଆଧାରିତ। ଅସୀମ ସହ ମିଳିତ ହେବାପରେ ସତ୍ତା ପ୍ରଥମକରି ନିଜର ପୂର୍ବତନ ସୀମାବଦ୍ଧ ଚେତନାର ଯେଉଁ ଅଭାବ ଅନୁଭବ କରେ ତାହାହିଁ ତାର ଶୂନ୍ୟତାର ପ୍ରଥମ ଅବବୋଧ। ନିଜ ସମ୍ପର୍କରେ ବ୍ୟକ୍ତି ଏଇ ଯେଉଁ ଅନୁଭୂତିକୁ ଲାଭ କରେ ତାହା ତାର ଅସ୍ତିତ୍ୱର ବିଲୋପ ବୋଲି ସେ କହିଥାଏ। ଅର୍ଥାତ୍ ଏ ଯାବତ୍ ଅହରହ ମୁକ୍ତାପେକ୍ଷୀ ହୋଇ ଆସିଥିବା ସତ୍ତାର ସ୍ଥାନ-କାଳ ନିର୍ଦ୍ଦିଷ୍ଟ ନାମ-ରୂପ ଅଭିବ୍ୟକ୍ତ ଯେଉଁ 'ମୁଁ' ବା ଅହଂଚେତନା ଜନ୍ମାବଧି ତା ଭିତରେ ଜାଗ୍ରତ ରହି ତାର ବାହ୍ୟାଭ୍ୟଂତର ସକଳ କ୍ରିୟାତ୍ମକତାକୁ ନିୟଂତ୍ରିତ କରିଆସିଥିଲା, ବ୍ୟକ୍ତି ତାହାକୁ ଠିକ୍ ସେହିପରି ଆଉ ଖୋଜିପାଏ ନାହିଁ। ଯାବତୀୟ 'ସ୍ୱ' ସଂବଂଧୀ ଭାବନା ଏଇ ଅବସ୍ଥାରେ ଯେଉଁ ନେତିବାଚକତାକୁ ଲାଭ କରେ, ତାହାହିଁ ବୌଦ୍ଧ 'ଅନାତ୍ତ' (ଅନାତ୍ମ nought soul) ର ଚେତନା। ଏ ସବୁର ମୂଳ ବକ୍ତବ୍ୟଟି ହେଉଛି ଦିବ୍ୟ ସଂଯୋଗକାଳରେ ସତ୍ତା ଆପଣାର ଅସ୍ତିତ୍ୱବୋଧକୁ ହରାଇ ବସେ ସତ, ମାତ୍ର ସେ ହରାଇବାର ଚେତନାକୁ କିନ୍ତୁ ପୂର୍ଣ୍ଣ ଅନୁଭବ କରିଥାଏ।[୮୨]

"ବ୍ୟକ୍ତି ସଂଯୋଗକାଳରେ ଶାଶ୍ୱତ ସହ ଅଭେଦ ସ୍ଥିତିରେ ବିଦ୍ୟମାନ ଥିଲେ ବି ସେ ଅଭେଦତ୍ୱକୁ ଅନୁଭବ କରିବାର ସାମର୍ଥ୍ୟ ଯୁକ୍ତ ହୋଇ ରହିଥାଏ। ଶାଶ୍ୱତରେ ନିମଜ୍ଜ ହୋଇ ସେ ନିମଜ୍ଜନର ଅନୁଭୂତିକୁ ସ୍ୱତଂତ୍ର କରି ଉପଭୋଗ କରେ। ଏହାହିଁ ରହସ୍ୟୋପଲବ୍ଧିର ବୈଶିଷ୍ଟ୍ୟ।"

ରହସ୍ୟବାଦ ବିଶୁଦ୍ଧ ଅଭେଦବାଦ ନୁହେ। ତେଣୁ ରହସ୍ୟବାଦୀ ବର୍ଣ୍ଣନା ଅଦ୍ୱୈତ ପ୍ରସଂଗ ଉତ୍ଥାପନ

---

୮୦ "ଯଥା ନଦ୍ୟଃ ସ୍ୟନ୍ଦମାନା ସମୁଦ୍ରେ
ଽସ୍ତଂ ଗଚ୍ଛନ୍ତି ନାମରୂପେ ବିହାୟ।
ତଥା ବିଦ୍ୱାନ ନାମ ରୂପାତ୍ ବିମୁକ୍ତଃ
ପରାତ୍ ପରଂ ପୁରୁଷମୁପୈତି ଦିବ୍ୟମ୍।"

ମୁଣ୍ଡକ ୩।୨।୮

81 "There follows the union without distinction..they immerse themselves in a wayless abyss of fathomless beatitude where the Trinity of the Divine Persons passes their nature in the essential unity..in it every—creaturely distinction ceases..There all light is turned into darkness !"

Ruysobroek—qt—'Mysticism and Philosophy' (Stace) P 96
The Book of the Supreme Truth—Chap. 12

82 "In mystic state we become one with the Absolute and we become one of our oneness"

William James "Variety of Religious Experience"— P 410

Digitized by PPRACHIN, SOA

ପକ୍ଷେ ଏହା କେବଳ ସତ୍ତାର ସ୍ୱାତନ୍ତ୍ର୍ୟବୋଧର ବିଲୁପ୍ତି ବୋଲି ଦାବୀ କରିଥାଏ । ସମୁଦ୍ରର ଜଳକଣା ବାଷ୍ପରୂପ ହୋଇ ବର୍ଷାଜଳ ଓ ସ୍ରୋତଧାରରୂପେ ପୁଣି ସମୁଦ୍ରବକ୍ଷକୁ ଫେରିଆସିବା ପରି ଅନନ୍ତ ବିସୃଷ୍ଟ ସତ୍ତା ଅବସ୍ଥାନ୍ତର ପ୍ରାପ୍ତି ଭିତରେ ବି ଶାଶ୍ୱତର ଅସୀମବକ୍ଷରେ ବିଲୀନ ହୋଇଯାଏ । ଅସୀମ ଜଳରାଶିରେ ଜଳ ବିନ୍ଦୁଟିଏ ନିଜ ପରିଚୟ ହରାଇ ମିଳାଇଗଲେ ଅସୀମର ବ୍ୟାପ୍ତିକୁ ପ୍ରାପ୍ତ ହୁଏ । ଅସ୍ତିତ୍ୱ ବିଲୟର ମୁହୂର୍ତ୍ତଟି ଯେ ନିଃସୀମ ନିର୍ବାଧ ପୂର୍ଣ୍ଣତା ଲାଭର ପରମଲଗ୍ନ, ସତ୍ତାର ଏ ଅନୁଭୂତିଟି ତେଣୁ ନାସ୍ତି ଓ ବ୍ୟାପ୍ତି ରୂପରେ ଯୁଗପତ୍ ଉପଲବ୍ଧ ହୋଇଥାଏ । ଏ ଉଭୟସ୍ଥିତି ବିରୁଦ୍ଧାତ୍ମକ ଓ ଅସମ୍ଭବ୍ୟ ପ୍ରତୀୟମାନ ହେଉଥିଲେ ମଧ୍ୟ ରହସ୍ୟବାଦୀ ଅନୁଭବରେ ପୂର୍ଣ୍ଣ ଅନ୍ୱିତି ଲାଭକରିଥାନ୍ତି । ସତ୍ତା ବ୍ୟକ୍ତି ପରିଚୟକୁ ହରାଇ ବିଶ୍ୱସତ୍ତାର ଅନ୍ତର୍ଗତ ହୋଇ ଅଣୁଠାରୁ ଅସୀମ ପର୍ଯ୍ୟନ୍ତ ନିଜକୁ ବ୍ୟାପ୍ତ ଦେଖେ । ବିନ୍ଦୁଟିର ପରିସୀମା ବିଲୟର ବିସ୍ତୃତିକୁ ପରିବ୍ୟାପ୍ତ ହୁଏ । ଊର୍ଦ୍ଧ୍ୱତମ ଆକାଶକୁ ସ୍ପର୍ଶକରି ଓ ଆସମୁଦ୍ର ଧରଣୀର ତୃଣାବିନ୍ଦୁ ଘେରି ଅଧଃ ଊର୍ଦ୍ଧ୍ୱ ଅତଳ ବିତଳ ବିସ୍ତୃତ ଏହି ବିଶ୍ୱାତ୍ମତନ ହିଁ ଅହଂମୁକ୍ତ ଚେତନାର ବିଶ୍ୱପ୍ରସାରୀ ମହିମ୍ନରୂପ । 'ସୀମା'ର ନିଃସୀମତା ଲାଭ ।

ଚରମାନୁଭୂତିରେ ଆତ୍ମାର ଏ ରୂପ ସାକ୍ଷାତ୍କାର ଯେ ରହସ୍ୟବାଦୀ ପାଇଁ ବିସ୍ମୟକର ମନେହୋଇଥାଏ, ତାର କାରଣ ସେ ପୂର୍ବଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅଭିନବ ଏକ ରୂପଚେତନାରେ ନିଜକୁ ଆବିଷ୍କାର କରେ । ଊର୍ଦ୍ଧ୍ୱତନ, ପରିଚ୍ଛନ୍ନ, ପ୍ରସାରିତ ଓ ବିମୁକ୍ତ ଦିବ୍ୟଚେତନାକୁ ସତ୍ତା ଆତ୍ମଗତ କରି ନୂତନ ରୂପେ ଲାଭ କରେ ଯାହାକୁ ଆଧ୍ୟାତ୍ମବାଦୀ ତାର ଦ୍ୱିବଦ୍ଧ ପ୍ରକରଣ ବୋଲି କହିଥାଏ । ଅର୍ଥାତ୍ ଏ ଯାବତ୍ ଅଂଗାଗୀ ବହନ କରି ଆସିଥିବା ସତ୍ତାଗତ ସମସ୍ତ ଦୁର୍ବଳତା, ମାଳିନ୍ୟ ଓ ଅସାମର୍ଥ୍ୟକୁ ବର୍ଜନ କରି ବ୍ୟକ୍ତିଚେତନା ଆପଣାକୁ ଏକ ଶୁଦ୍ଧ, ଦିବ୍ୟ ଓ ନିର୍ମଳ ସ୍ୱରୂପରେ ଊର୍ଦ୍ଧ୍ୱମଣ୍ଡଳରେ ଅବସ୍ଥାପିତ ଦେଖେ । ଏହାହିଁ ତାର ପୂର୍ବତନ ସୀମାବୋଧର ଅତିକ୍ରମଣ; 'ଚତୁଷ୍କୋଟି ବିନିର୍ମୁକ୍ତା' ସ୍ଥିତି ।

ଅଧ୍ୟାତ୍ମବାଦୀ ଆତ୍ମାର ଏଇ ସୀମାବୋଧ ଅତିକ୍ରମଣ ଓ ନିଃସୀମତା ପ୍ରାପ୍ତିକୁ ଆତ୍ମାର ନିଜରୂପ ବୋଲି ବର୍ଣ୍ଣନା କରିବାବେଳେ ଆତ୍ମନକୁ ବ୍ରହ୍ମନର ସମପର୍ଯ୍ୟାୟରେ ଉପସ୍ଥାପିତ କରିଥାଏ ।[୮୩] ଏହି ଅବସ୍ଥାରେ ଆତ୍ମପୁରୁଷ ପରମପୁରୁଷ 'ସୋଽହମ୍'ର ଅଭିବ୍ୟକ୍ତି ଲାଭ କରିଥାନ୍ତି । ଅର୍ଥାତ୍ ପରମଙ୍କ ସହ ସଂଯୋଗରେ ସତ୍ତା ନିଜକୁ ପରମଙ୍କଠାରୁ ଅଭିନ୍ନ ଏକ ଅର୍ଥାତ୍ 'ଦିବ୍ୟାସ୍ମିତା' ଦେଖେ । ସେହି ଦିବ୍ୟା ବା ପରମଠାରୁ ଭିନ୍ନ ଓ ସ୍ୱତନ୍ତ୍ର ନିଜର କୌଣସି ସ୍ଥିତି ନଥାଏ ।[୮୪] ଏକହାର୍ଟ ଶଙ୍କରଙ୍କ ପ୍ରତିଧ୍ୱନି କଲାଭଳି ମନେହୁଅନ୍ତି, ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ଜାଣିବାକୁ ହେଲେ ବ୍ୟକ୍ତିକୁ ମଧ୍ୟ

---

୮୩ "ହେ ପୂଷନ୍ .... ଏବାର ପ୍ରକାଶକର ତୋମାର କଲ୍ୟାଣତମରୂପ
ଦେଖିତାରେ, ଯେ ପୁରୁଷ ତୋମାର ଆମାର ମାଝେ ଏକ ।
ରବୀନ୍ଦ୍ରନାଥ (ପ୍ରାନ୍ତିକ) 'ସଂଚୟିତା'—୭୭୮

୮୪ "The state of divine union consists in the total transformation of the will into the will of God, in such a way that every movement of the will shall always be the movement of the will of God only."
St. John of the Cross (Book-Chap 5) 'Mysticism and Philosophy'—P 222

Digitized by PPRACHIN, SOA

ଈଶ୍ୱରରେ ପରିଣତ ହେବାକୁ ପଡ଼ିବ । "ଈଶ୍ୱରଙ୍କ ସହ ମିଳିତ ହେଲେ ତାଙ୍କ ସହ ଏକ ହେବାକୁ ପଡ଼ିବ ।"[୮୫] ଏହାହିଁ ବ୍ରାହ୍ମୀସ୍ଥିତି, ଯେଉଁ ଅବସ୍ଥାରେ ବ୍ରହ୍ମାନୁଭୂତକୁ ସ୍ୱଅନୁଭୂତ ବୋଲିଜାଣେ । ଉପନିଷଦରେ ବର୍ଣ୍ଣିତ ଅଛି, "ବ୍ରହ୍ମୈବସନ୍ ବ୍ରହ୍ମାପ୍ୟେତି　ବ୍ୟକ୍ତି ବ୍ରହ୍ମରେ ପରିଣତ ହୋଇ ବ୍ରହ୍ମଲୀନ ହୁଏ ।"[୮୬]

ଏହାହିଁ ଆତ୍ମାର ରୂପାନ୍ତର ଲାଭ । ପାର୍ଥିବ ଚେତନାକୁ ଦିବ୍ୟତ୍ୱକୁ ଲାଭକରିବାର, ସୀମା ଅସୀମାୟିତ ହେବାର ଏ ନୂତନାନୁଭୂତ ଯେଉଁଥିରେ ସତ୍ତା ନିଜକୁ ଏକ ଦେଦୀପ୍ୟମଂଡ଼ଳରେ ନିଷ୍କଳଙ୍କ ଓ ସ୍ୱୟଂପ୍ରଭ ହୋଇ ଏକାକୀ ବିରାଜମାନ କରିବାର ଦେଖେ ।[୮୭] ରହସ୍ୟବାଦୀ ପରିଭାଷାର ଏହି ଦିବ୍ୟତ୍ୱସଂଘଟନ (deification) ରେ ବ୍ୟକ୍ତି ଆଉ ଆଲୋକ ରୂପ ପ୍ରତ୍ୟକ୍ଷ ନୁହେଁ, ସ୍ୱୟଂ ଆଲୋକାୟିତ ହୋଇଉଠିବାର ସମ୍ବାଦ ପରିବେଷଣ କରେ ।[୮୮] ଏ ରୂପାନ୍ତର ରହସ୍ୟକୁ ସାଧାରଣ ବୋଧଗମ୍ୟ କରିବା ପାଇଁ ମିଷ୍ଟିକ ଆଲକେମି* ବା ଗୁପ୍ତରସାୟନବିଦ୍ୟାକୁ ଅନୁସୃତ କରିଥିବା ଦେଖାଯାଏ । ସାଧାରଣ ଧାତୁ ସ୍ୱତଂତ୍ର ରସାୟନ ପ୍ରକ୍ରିୟାରେ ସୁବର୍ଣ୍ଣରେ ରୂପାନ୍ତରିତ ହେବାଭଳି ସତ୍ତା ଅଧ୍ୟାତ୍ମ-ରସାୟନ ମାର୍ଗରେ ପାର୍ଥିବତ୍ୱ ପରିହାରକରି ଦିବ୍ୟପରିଣତି ଲାଭକରେ । ଏ ପରିବର୍ତ୍ତନରେ ରୂପାନ୍ତର କେବଳ ବାହ୍ୟ ରୂପଭିନ୍ନତାକୁ (transformation) ନୁହେଁ, ଗୁଣାତ୍ମକ ଓ ସତ୍ତାତ୍ମକ ପରିବର୍ତ୍ତନକୁ (transmutation) ମଧ୍ୟ ସୂଚିତ କରିଥାଏ । **ମୋଟଉପରେ ଏହା ପୂର୍ବଚେତନାର ବିଲୁପ୍ତି ଓ ନବୀନଚେତନାର ଉନ୍ମେଷକୁ ଏକ ସଂଗରେ ସୂଚିତକରେ । ଅଗ୍ନିନିକ୍ଷିପ୍ତ ଇଂଧନ ତାର ମୂଳପରିଚୟ ହରାଇ ଅଗ୍ନିର ରୂପ ଓ ଗୁଣକୁ ଲାଭକରେ, ଲୌହ ଉତ୍ତପ୍ତ ହେଲେ ଅଗ୍ନିବର୍ଣ୍ଣ ଧାରଣକରେ, ପୁଣି ଚୁମ୍ବକ ସ୍ପର୍ଶରେ ଚୁମ୍ବକତ୍ୱ ପ୍ରାପ୍ତହୁଏ,

---

85 "We behold what which we are ."If I am to know God directly, I must become completely He and He I, so that this I become and one with I "

Ekchart-qt—'Mysticism' (E. Underhill)—P 420.

୮୬ ବୃହଦାରଣ୍ୟକ ୪।୪।୬

87 "In this seeing, we neither distinguish, nor there are two. The man..is merged with the Supreme. This is why the vision baffles telling; Beholder was one with beheld He is become the unity, having no diversity either in relation to himself or anything else.. This is a flight of the alone to the Alone.

Plotinus—qt Mysticism and Philosophy—(Stace) P 104

88 "He who is imbubed with or illumined by the eternal or divine love, is a deified man and a partaker of divine nature,"

Theologica Germanica. Mysticism—(Underhill) P 418.

★ Alchemy=a) 'The chemistry of the middle ages, the chief aim of which was to discover how to change ordinary metals into Gold."

— Oxford Advanced Learners' Dictionary of current English' P—21

b) 'The art of alchemist whether spiritual or physical, consists in completing the work of perfection. bringing forth and making indominant, as it were, in latent goldness which lies obscure in metal or man."

Evelyn—'Mysticism'—P 143

★★ The transformation of his salt, sulphur, and mercury into spiritual Gold."

Underhill, 'Mysticism'—P 143

Digitized by PPRACHIN, SOA

ନବନୀତ ଅଗ୍ନି ସ୍ପର୍ଶରେ 'ଘୃତ'ରେ ପରିଣତ ହୁଏ, ସେ ଘୃତ ବହ୍ନି ସଂଯୋଗରେ ଅଗ୍ନିଶିଖା ହୋଇ ଜଳିଉଠେ, ସ୍ପର୍ଶମଣି ସଂସ୍ପର୍ଶରେ ସାଧାରଣ ପ୍ରସ୍ତର ସୁବର୍ଣ୍ଣକୁ ପ୍ରାପ୍ତ ହୁଏ,—ଏ ସବୁ ରହସ୍ୟବାଦୀ ପ୍ରତୀକାଭିବ୍ୟକ୍ତ ବ୍ୟକ୍ତିସତ୍ତାର ଦିବ୍ୟସଂସର୍ଗ ଜନିତ ଦିବ୍ୟତାପ୍ରାପ୍ତିର ଭାବଚେତନାକୁ ଉଦ୍‌ବୋଧିତ କରନ୍ତି ।

ଅବଶ୍ୟ ଏ 'ଦିବ୍ୟରୂପାଂତର' ଘଟିତ 'ଦିବ୍ୟପ୍ରକରଣ' ଓ 'ଦିବ୍ୟାଂଶହରଣ' ସିଦ୍ଧାଂତମାନ ରହସ୍ୟବାଦୀ ସଂଯୋଗଚେତନା ସଂପର୍କରେ ବ୍ୟାଖ୍ୟାଗତ ବହୁ ମତାନୈକ୍ୟ ସୃଷ୍ଟିର ଅବକାଶ ଆଣି ଦେଇଥାଏ ।[୮୯] ଦର୍ଶନର ବିଚାରରେ ରହସ୍ୟବାଦୀ ଅନୁଭୂତ ଅଦ୍ୟତଃ ଏକ 'ଦ୍ୱୈତାଦ୍ୱୈତ-ଅତିକ୍ରାଂତ ଉପଲବ୍ଧି ଯାହାର ରୂପ ବିଶ୍ଳେଷଣ ଅଭେଦବାଦୀ 'ଅଦ୍ୱୈତ' ଭେଦବାଦୀ 'ଦ୍ୱୈତ' ଓ ସର୍ବରୂପବ୍ୟାପୀ 'ସର୍ବଦେବତତ୍ତ୍ୱ' ରେ ପ୍ରତିଫଳିତ । ବ୍ୟକ୍ତିର ଶାଶ୍ୱତକୁ ଏଇ ଯୁଗପତ୍ ଅଭେଦ ଓ ଭେଦଗତ ଦ୍ୱଂଦାତ୍ମକ ଉପଲବ୍ଧିରେ 'ପରମ ଏକାଧାରରେ ନିର୍ବିଶେଷ ପୁଣି ସବିଶେଷ ଏବଂ ତାଂକର ପ୍ରକାଶ-ରୂପର ସବିଶେଷତା ତାଂକ ନିର୍ବିଶେଷତାଠାରୁ ଭିନ୍ନ ତଥା ଅଭିନ୍ନ'[୯୦]—ସମଗ୍ର ରହସ୍ୟବାଦୀ ଅନୁସିଦ୍ଧାଂତ ଏଇ ବିରୋଧାଭାସର ତର୍କଣା ।

## ଭେଦାଭେଦ ସିଦ୍ଧାଂତ

ଶାଶ୍ୱତ ବା ପରମସତ୍ତାଙ୍କର ଏକ ପାର୍ଶ୍ୱରେ ଅସୀମଚେତନା ଓ ଅପର ପାର୍ଶ୍ୱରେ ସୀମାରୂପ ବିସୃଷ୍ଟି । ଏ ଅସୀମତ୍ୱ ପରମଙ୍କର ଅନଂତ ସତ୍ତାରୂପ (being) ଏବଂ ସୀମାରୂପମାନ ତାଙ୍କର ନିତ୍ୟସମ୍ଭୂତ (becoming) । ସକଳ ସମ୍ଭୂତ ସହ ପରମସତ୍ତାରୂପ ମୂଳତଃ ଅଭିନ୍ନ । ଅଂଶ ସ୍ୱରୂପରେ ତାହା କ୍ଷୁଦ୍ରାତିକ୍ଷୁଦ୍ର ଅଣୁଠାରୁ ଆରଂଭକରି ସମ୍ଭୂତର ଅସଂଖ୍ୟ ସୀମାହିନ ବିସ୍ତୃତି ଓ ପ୍ରସାର ମଧ୍ୟରେ ଅଂତର୍ନିହିତ । ପରମ ଶାଶ୍ୱତଚେତନା ବା 'ପରାତ୍ପର' ଏଇ ପରମସ୍ଥିତି ଓ ପରମସମ୍ଭୂତକୁ ଏକତ୍ର ଧାରଣ କରି ବିଦ୍ୟମାନ । ଏ ଦୁଇଙ୍କ ମଧ୍ୟରୁ ଗୋଟିକୁ ଛାଡ଼ି ଅନ୍ୟକୁ ଦେଖିବା ଅର୍ଥ ସେହି ସର୍ବଗତ ଏକରୂପ ସତ୍ୟର ଏକପାର୍ଶ୍ୱ ଦେଖି ଅନ୍ୟପାର୍ଶ୍ୱ ସମ୍ପର୍କରେ ଅଜ୍ଞ ରହିବା । ଅଦ୍ୱୈତତତ୍ତ୍ୱ ଓ ଦ୍ୱୈତତତ୍ତ୍ୱ ଉଭୟେ ଏ ଦୋଷଦୁଷ୍ଟ । 'ସବିଶେଷକୁ ନିର୍ବିଶେଷର ତାତ୍ତ୍ୱିକ ପରିଣତ ରୂପେ ଉପଲବ୍ଧି କରିବାହିଁ ସମ୍ୟକ ନିର୍ବିଶେଷ ଉପଲବ୍ଧି ବୋଲି ରହସ୍ୟବାଦର ଅଭିମତ । ଭିନ୍ନ ଓ ବିରୋଧାତ୍ମକ ପ୍ରତୀତ ସାବିତ୍ରୀୟ ଦ୍ୱଂଦାତ୍ମକଚେତନା ଯେତେବେଳେ ଏକ ଓ ଅଭିନ୍ନ ବିଂଦୁରୁ ଉଚ୍ଚାରିତ[୯୧] ବୋଲି ଜଣାପଡନ୍ତି

89 "When the soul is plunged in the fire of divine love, like iron, it first looses its blackness, and then growing to white heat it becomes like unto the fire itself. And lastly, it gives liquid and losing its nature is transmuted into an utterly differnt quality of being."
Richard of St. Victor : qt Mysticism (Evelyn) P 421

90 "God is both personal and impersonal and the personality is both identical and different from the impersonality.
W. T. Stace—'Mysticism and Philosophy'—P 247

91 "..a way in which silence and eloquence become identical, that is where negation and assertion were united in a higher form of statement."
D. T. Suzuki : 'Zen Buddhism'—P 66.

Digitized by PPRACHIN, SOA

ସେତେବେଳେହିଁ ଭେଦରେ ଅଭେଦ ଦର୍ଶନ ଘଟେ । ଅର୍ଥାତ୍ ସୃଷ୍ଟି ରୂପରେ ସୀମାପ୍ରକାଶରେ ପ୍ରତ୍ୟେକ ଭିନ୍ନ । ମାତ୍ର ସକଳ ଭିନ୍ନତା ସତ୍ତ୍ୱେ ସେମାନଙ୍କ ସାଂସ୍କୃତି ଐକ୍ୟଚେତନାବିଧୃତ ।[92] ଏ ସିଦ୍ଧାନ୍ତ ଅଭିନ୍ନତାକୁ ଗ୍ରହଣ କରିବା ଭିତରେ ଭିନ୍ନତାକୁ ଅସ୍ୱୀକାର କରେନାହିଁ । ମାତ୍ର କୌଣସି ଗୋଟିଏକୁ ପୂର୍ଣ୍ଣଜ୍ଞାନସ୍ୱରୂପର ସ୍ୱୀକୃତ ଦିଏନାହିଁ । ବରଂ ସେମାନେ ପରସ୍ପର ନିର୍ଭର ଓ ପରିପୂରକ ବୋଲି ସାବ୍ୟସ୍ତ କରେ । ବିଚାର ମୀମାଂସାରେ ଅସଂଗତ ଓ ଅସମ୍ଭବ ମନେହେଉଥିବା ଏ ବିବଦତର୍କଣାକୁ[93] ରହସ୍ୟବାଦୀ ରହସ୍ୟବାଦୀ ଉପଲବ୍ଧି ଅନାୟାସରେ ଚରମସତ୍ୟ ରୂପେ ଗ୍ରହଣ କରିଥାଏ । ରହସ୍ୟବାଦୀ ତର୍କଣା ତେଣୁ ଅଯୌକ୍ତିକ (Logic of Illogical) ବୋଲି ବହୁ ଯୌକ୍ତିକ ଆକ୍ଷେପ ରହିଆସିଛି । ଜେନ ଦର୍ଶନର ଆଧୁନିକ ପ୍ରବକ୍ତା ସୁଜୁକୀ ଏ ସିଦ୍ଧାନ୍ତକୁ A and Not A ବୋଲି ପ୍ରତିପନ୍ନ କରନ୍ତି ।[94] ଏହାର ଗାଣିତିକ ସମାଧାନର ପ୍ରଚେଷ୍ଟା ବିନ୍ଦୁ ଓ ବଳୟର ପ୍ରତୀକାତ୍ମକତାକୁ ଆଶ୍ରୟ କରି ବିସ୍ତାରିତ ।[95]

ଏହି ପର୍ଯ୍ୟାୟରେ ସତ୍ତ୍ୱ ଆଉ ନିଜକୁ ପରମସନ୍ଧାନୀ ବା ଶାଶ୍ୱତ-ଅଭିମୁଖୀ ଯାତ୍ରୀ ରୂପେ ଦେଖିପାରେନାହିଁ । ବରଂ ଲକ୍ଷ୍ୟସ୍ଥଳପ୍ରାପ୍ତି ଜନିତ ଯାତ୍ରାସମାପ୍ତି ଘୋଷଣା କରେ । ଆଉ ତୀର୍ଥାଟନ ନୁହେଁ, ଧାମ ନିବାସ । ମନ୍ଦିରାଳୟର ଅନ୍ୱେଷଣ ନୁହେଁ, ମଧୁଶାଳାର ମହୋତ୍ସବପୂର୍ଣ୍ଣ ଆସର । ଅଧ୍ୟାତ୍ମ ସିଦ୍ଧିର ଏହା ଚତୁର୍ଥ ବା ଶେଷପୀଠବୋଲି ରହସ୍ୟବାଦର ଅଭିମତ । ଏହା ଆଉ ଚେତନାର ଅଂଧକାର ଭିତରୁ ଆଲୋକକୁ ଯାତ୍ରା ନୁହେଁ; ବରଂ ଆଲୋକିତ କ୍ଷେତ୍ରରୁ ବୃହତ୍ତର ଆଲୋକମୟତାକୁ ନିଃସରଣ । ସାଧନା ସମାପ୍ତିର ନିଶ୍ଚିନ୍ତତା, ପରିପୂର୍ଣ୍ଣ ପ୍ରାପ୍ତିର ଆନନ୍ଦ ଓ ସମ୍ୟକ୍ ଜ୍ଞାନର ସମାହିତ ସ୍ଥିରତା ଏବଂ ନିର୍ଦ୍ୱନ୍ଦ୍ୱ ଶାନ୍ତି ଏହି ଅବସ୍ଥାର ଲକ୍ଷଣିକ ପ୍ରକାଶ ରୂପେ ସ୍ୱୀକୃତ । ଜ୍ଞାନ-ସାମର୍ଥ୍ୟ ପରି କର୍ମସାମର୍ଥ୍ୟ ଓ ପ୍ରେମସାମର୍ଥ୍ୟକୁ ସମ୍ପୂର୍ଣ୍ଣ ଲାଭ କରିବା ଏ ଅବସ୍ଥାର ବିଶେଷ ଆଶୀର୍ବାଦ ରୂପେ ବିବେଚିତ

---

92 "It (the soul) belongs to God and is one with Him like two concentric circles concurring they are one, but when they separate, they are two."
(Plotinus : Enneads) qt—Mysticism—P 72

93 'The Tao in its regular course does nothing, and so there is nothing which it doesnot do
Lao Zze—'The Sacred Book of China' (tr) Part 1, P 76

94 "Zen believes that the true meaning of A is A will be realised only when it will be realised that A is not A.
Suzuki—qt—Journal of 'Philosophy—East and West' 1974 P 22

95 Brahman can be represented in two nodal points of zero and infinity—' They are described as two nodal points of the something. The zero nodal point represents a state of potential or wound up state of affairs while the infinity nodal points represent the unwound spreadout state of affairs—Zero being nothing, anything else extending to Infinity should be outside it, Infinity is referred to as comprising of everything and hence there will be nothing outside infinity What is outside Zero is infinity and what is outside infinity is Zero..From the standpoint of Reality then there is absolutely no distinction in contact between Zero and Infinity and there can be nothing beween the two,
"The Cyclic Universe of Matter Energy Man and God." —by Sri V. M. Srikumaram Nayar
P 347/348/349

Digitized by PPRACHIN, SOA

## ଶକ୍ତି, ଆନନ୍ଦ

ସତ୍ତା ଏହି ନବଲବ୍ଧ ଚେତନାରେ ପୂର୍ବତନ ସୀମା ରୂପର ଅସାମର୍ଥ୍ୟ-ଜନିତ ଗ୍ଲାନିରୁ ମୁକ୍ତ ହୋଇ ଦିବ୍ୟଶକ୍ତିସମ୍ବଳିତ ଓ ଦିବ୍ୟସାମର୍ଥ୍ୟଯୁକ୍ତ ବୋଲି ଅନୁଭବ କରେ । ତାହାର ପ୍ରଥମ ଲକ୍ଷଣ ଅଭୀଷ୍ଟଙ୍କ ନିକଟରେ 'ସର୍ବସମର୍ପଣ'ର ସାମର୍ଥ୍ୟ । ଏହି ସର୍ବସମର୍ପଣ ମାର୍ଗରେ ଆତ୍ମ-ଅର୍ପଣ ପରେ ସତ୍ତା ନିଜକୁ ଦିବ୍ୟ-ଅଭିପ୍ରାୟ ଅଭିବ୍ୟକ୍ତି ନିମନ୍ତେ ଏକ ସମର୍ଥ ମାଧ୍ୟମ ବା ଉପଯୁକ୍ତ ନିମିତ୍ତରୂପେ ଅନୁଭବ କରିଥାଏ । କୌଣସି ଦୁର୍ବଳତା, ସଂକୋଚ ବା ଭୟ ତାହାର କର୍ମସଙ୍କଳ୍ପକୁ ଆଉ ପ୍ରତିହତ କରିପାରେ ନାହିଁ, କାରଣ 'ସ୍ୱକର୍ମ' ବୋଲି ତାହାର ଆଉ କିଛି ନଥାଏ । ଦିବ୍ୟସଂକଳ୍ପଜାତ ଦିବ୍ୟକର୍ମ ତାହାର ମାଧ୍ୟମରେ ରୂପାୟିତ ହେବାରେ ନିଜର ପ୍ରୟୋଜନୀୟ ଭୂମିକାକୁ ସେ କେବଳ ଅଂଗୀକାର କରେ । ଏହାର ଫଳସ୍ୱରୂପ ବ୍ୟକ୍ତିର ଆଉ କର୍ମବନ୍ଧନ ରୂହେ ନାହିଁ । ମାତ୍ର ଏହା ତାର ନିଷ୍କ୍ରିୟ ଅବସ୍ଥା ନୁହେ । ନିଷ୍କାମ ସାଧନାରେ ଅହେତୁକ ଆନନ୍ଦ-ସଂଜାତ ଉଲ୍ଲାସ ତାର କର୍ମପ୍ରେରଣାରୂପେ କ୍ରିୟାଶୀଳ ଥାଏ । କର୍ମ ସାଧନ ମାର୍ଗରେ ବ୍ୟକ୍ତିକର୍ମକୁ ଆଉ ଫଳ ସମ୍ପୃକ୍ତକରି ଦେଖିପାରେ ନାହିଁ । ବିଶ୍ୱକର୍ମରୂପ ମହାଯଜ୍ଞରେ ମହାପୁରୋଧାଙ୍କ ଦ୍ୱାରା ସେ ବରଂ ନିଜକୁ ହବ୍ୟରୂପେ ଯଜ୍ଞାଗ୍ନିରେ ନିବେଦିତ ହୋଇଥିବାର ଚରିତାର୍ଥତା ଲାଭ କରେ । ସବୁ କିଛି ଏକ ପରମାଶକ୍ତି ଦ୍ୱାରା ନିଷ୍ପନ୍ନ ହେଉଛି, ସେ ଶକ୍ତିକୁ ବ୍ୟକ୍ତି ଆଶ୍ରୟକରି ପ୍ରଚଣ୍ଡ ଉତ୍ସାହରେ ଜୀବନ ଓ ଜଗତର ସାର୍ଥକତା ବିଧାନରେ ବ୍ରତୀ ହେଉଛି, ଏହି ଶକ୍ତି ତେଣୁ ପ୍ରେରଣା ଓ କ୍ରିୟାତ୍ମକତା, ଉଭୟ ସ୍ୱରୂପରେ ତାର କର୍ମୋନ୍ମାଦନା ଭିତରେ ବିଚ୍ଛୁରିତ ହୋଇପଡ଼େ । ଗୀତାର କର୍ମବାଦ ମୁଖ୍ୟତଃ ଏହି ଶରଣାଗତିମୂଳକ ନିଷ୍କାମକର୍ମ ସମର୍ପଣବାଦ ।

ରହସ୍ୟବାଦୀ ପ୍ରକୃତପକ୍ଷେ କେବେ ବି ଜୀବନ ବିତୃଷ୍ଣ ନୁହେ । ସମଗ୍ର ସୃଷ୍ଟି ପ୍ରତି ପରମ ଶ୍ରଦ୍ଧା ଓ ସ୍ରଷ୍ଟା ପ୍ରତି ବିପୁଳ କୃତଜ୍ଞତାରେ ସେ ଅପଣାର ଅନ୍ତଃ ବହିଃ, ସର୍ବତ୍ର ପ୍ରାଣ-ପୁରୁଷଙ୍କ ସହ ନିତ୍ୟ ସମ୍ବନ୍ଧରେ ଘନିଷ୍ଠ ସଂଯୁକ୍ତ । ଏହାହିଁ ତାର ସବୁ ଅବସ୍ଥାରେ ଆନନ୍ଦସ୍ୱଭାବ ହୋଇ ରହିପାରିଥିବାର ବିଶେଷକାରଣ । ସେ ଆନନ୍ଦ ବାହ୍ୟତଃ ଅହେତୁକ; ପ୍ରକୃତପକ୍ଷେ ସୃଷ୍ଟି ପ୍ରତି ସ୍ରଷ୍ଟାର ନିତ୍ୟବର୍ଷିତ ଶ୍ରଦ୍ଧାମୃତବିଶ୍ଚନ ଉତ୍ସବରେ ଅଂଶଗ୍ରହଣକାରୀ ରୂପେହିଁ ମିଷ୍ଟିକ ପ୍ରାଣରେ ଏଇ ଅବିରତ ଆନନ୍ଦ ଉତ୍ସବ ।[୧୨] ତାର ଆକାଶବତାସ, ଧୂଳିଧରଣୀ, ସମୁଦ୍ର ଅରଣ୍ୟ ଓ ଜୀବମାନବ ଦେଇ ମହୋତ୍ସବର ଅଂଶୀଦାର । ସେ ଉତ୍ସବ ପ୍ରାଂଗଣରେ ସ୍ରଷ୍ଟାର ଆୟୋଜନକୁ ଉପଭୋଗ କରିବାପାଇଁ ସେ ବିଶେଷ ନିମନ୍ତ୍ରିତ ଅତିଥି, ପୁଣି ତାର କାର୍ଯ୍ୟକଳାପ, ଆଚରବିଚାର ଉପରେ ସେ ଉତ୍ସବର, ମର୍ଯ୍ୟାଦାପୂର୍ଣ୍ଣ ପରିଣତି ମଧ୍ୟ ନିର୍ଭରଶୀଳ । ଅପଣାର ଅଂତର୍ଯ୍ୟାମୀ ପୁରୁଷଙ୍କ ସହ ଏକାଂତ ବାସସ୍ଥଳରେ ସେ ଯେପରି ନିଭୃତ-ସୁଖ-ବିଳାସୀ, ସ୍ରଷ୍ଟାପୁରୁଷଙ୍କ ସୃଷ୍ଟି-ରୂପର ବହିଃପ୍ରାଂଗଣରେ ସେ ସେହିପରି ତାଙ୍କର ପ୍ରତିନିଧିପୁରୁଷ । ମିଷ୍ଟିକ ନିଜର ଜୀବନ ଓ କର୍ମକୁ ସ୍ରଷ୍ଟାଙ୍କର ସୃଷ୍ଟି ପ୍ରତି ସଂପ୍ରେରିତ ବିଶେଷ 'ସନ୍ଦେଶପତ୍ର' ବୋଲି ବିବେଚନା କରିବା ମୂଳରେ ନିଜକୁ ଈଶ୍ୱରୀୟ ସଂକଳ୍ପର ଅଭିବ୍ୟକ୍ତି ରୂପ ମାତ୍ର ବୋଲି ବିବେଚନା କରିଥାଏ । ଏହାହିଁ ଏକାଧାରରେ ଶରଣାଗତ ଓ ସଦ୍‌ଗତି । ଜୀବର ପରମ ପ୍ରେମପ୍ରାପ୍ତି ।

---

୧୨ "ଏ ଦ୍ୟୁଲୋକ ମଧୁମୟ, ମଧୁମୟ ପୃଥିବୀର ଧୂଳି..."
...ହିବାର୍ଥିତ ମିଥ୍ୟାକରି ଅଂତରର ଆନନ୍ଦ ବିରାଜେ ।"
ରବୀନ୍ଦ୍ରନାଥ—'ସଂଚୟିତା' (ଆରୋଗ୍ୟ) ପୃ ୮୩୩

Digitized by PPRACHIN, SOA

## ପ୍ରେମାନୁଭୂତି

ଚରମାନୁଭୂତିର ପ୍ରକୃତ ସ୍ୱରୂପଟି କିନ୍ତୁ କେବଳ ତତ୍ତ୍ୱାଶ୍ରୟୀ ବ୍ରହ୍ମବାଦଦ୍ୱାରା ପୂର୍ଣ୍ଣ ଉଦ୍‌ଘାଟିତ ହୋଇନଥାଏ । ରହସ୍ୟବାଦୀ ଯେତେ ଅଦ୍ୱୈତ ଅନୁଭବର କଥା କହିଲେ ବି ଈଶ୍ୱରଙ୍କ ସହ ଏକ ଭାବମୟ ସଂଯୋଗର ମଧୁରାନୁଭବ ହିଁ ଶୁଷ୍କ ଆଧ୍ୟାତ୍ମିକତାଠାରୁ ରହସ୍ୟବାଦକୁ ରସମୟ ସ୍ୱାଦ୍ୟତାରେ ଆପ୍ଲୁତ କରି ରଖେ । ନିର୍ବିଶେଷ ଶାଶ୍ୱତଙ୍କର ସବିଶେଷ ଅନ୍ତର୍ଯାମୀ ରୂପ ବ୍ୟକ୍ତିର ଆତ୍ମସତ୍ତା ସହ ଯେଉଁ ଶୃଙ୍ଗାରିକ ଲୀଳାବକାଶ ସୃଷ୍ଟି କରନ୍ତି, ତାହାହିଁ ରହସ୍ୟବାଦୀ ରସୋପଲବ୍ଧିର ଶ୍ରେଷ୍ଠ ଅଭିବ୍ୟକ୍ତି । ଦିବ୍ୟ ପରିଣୟ (spiritual marriage) ର ରୂପଚେତନା ଭିତରେ ଆତ୍ମାର ଏହି ଅନନ୍ତ ପ୍ରଣୟାଭିସାରର ଚିତ୍ର ଆଲେଖିତ ।

"Foundation of knowledge" ପୁସ୍ତକରେ Mr. Ormond ପ୍ରେମଭାବନାର ଉତ୍ସକୁ ଅନୁଶୀଳନ କରି କହିଛନ୍ତି—"ଅନ୍ୟ ସହ ନିଜର ଏକୀଭୂତ ହେବାର ପ୍ରବଣତାରୁ ପ୍ରେମର ସୃଷ୍ଟି ।"[୯୭] ରହସ୍ୟାନୁଭୂତ ପ୍ରେମଚେତନାର ଏଇ ପୂର୍ଣ୍ଣୋପଲବ୍ଧିକୁ କାମନା କରିଥାଏ । ଦିବ୍ୟ ବା ପରମ ସହ ପୂର୍ଣ୍ଣ ମିଳନ-ସ୍ୱରୂପରେ ସଂଯୁକ୍ତ ରହିବାର ଅନୁଭବ ହିଁ ରହସ୍ୟବାଦୀ ପ୍ରେମ-ଉପଲବ୍ଧିର ନିଷ୍କର୍ଷ[୯୮] ରହସ୍ୟବାଦୀର ଦିବ୍ୟସତ୍ତାସହ ମିଳନାନୁଭବର ପ୍ରଥମ ଉଚ୍ଚାରଣଟି ମୁଗ୍ଧ ଐକ୍ୟବୋଧର ।[୯୯] ଏକର ଅପରଠାରେ ନିମଜ୍ଜନ, ନିବିଡ଼ ସଂଯୋଗାନୁଭବରେ ସକଳ ବିଚ୍ଛିନ୍ନତାବୋଧର ଅପସାରଣ, 'ପରସ୍ପର ଏକ ଅପରହେତୁକ'—ଏ ଅବବୋଧରେ, 'ପରସ୍ପର' ଭିନ୍ନ ଅନ୍ୟସବୁ ପ୍ରୟୋଜନବୋଧ ଲୁପ୍ତ, ପରିପୂର୍ଣ୍ଣ ପ୍ରାପ୍ତି ଓ ନିତ୍ୟମିଳନସୁଖର ରୂପଚିତ୍ରରେ ଏହି ପ୍ରେମାନୁଭବର ଅଭିବ୍ୟଞ୍ଜନା ।[୧୦୦] ବୈଷ୍ଣବ ପ୍ରଣୟ ଚିତ୍ରରେ ରାଧାଙ୍କର କୃଷ୍ଣୈକ୍ୟଚେତନା ଏଇ ପ୍ରକାର । ବ୍ୟକ୍ତିସତ୍ତା ଶାଶ୍ୱତରେ ନିମଜ୍ଜିତ ରହି ଦିବ୍ୟ ପ୍ରେମସ୍ୱରୂପକୁ ଅହରହ ଅନୁଭବ କରେ । 'ଅଂଶଭୁକ୍ତ' ଓ 'ଅନ୍ତର୍ଗତ' ହୋଇରହିଥିବାର ଏ ଅନୁଭବରେ ବ୍ୟକ୍ତି ନିଜଠାରେ ଈଶ୍ୱରଙ୍କର ପୂର୍ଣ୍ଣ ଆଧିପତ୍ୟ ଅଧିକାରକୁ ସ୍ୱୀକୃତି ଦିଏ । ଏହାପରେ ଈଶ୍ୱରଙ୍କଠାରୁ କୌଣସି ବିଚ୍ଛିନ୍ନତାର ଅବକାଶକୁ ସେ ସମ୍ଭବ ମନେକରେନାହିଁ ।[୧୦୧] ସର୍ବତ୍ର ସବୁ ଅବସ୍ଥାରେ ହିଁ ନିଜକୁ ସେହି ବିପୁଳପ୍ରେମର ସ୍ପର୍ଶାବରଣବେଷ୍ଟିତ ଦେଖେ ।

---

97 "Love in its innermost motive is a unifying Principle "

Ormond : 'Foundation of Knowledge '—P 442

98 "Love is complete only when the lover and the Beloved are unified and difference is abolished in an ecstasy of a divine oneness, and yet in the mistery of this unification there is the sole existence of the Beloved but no extinction or absorption of the lover. It is the highest unity which is the direct expression of the path of knowledge...the call to absolute unity is its principle."

Sri Aurobindo : 'Synthesis of Yoga —P 349

99 "It is plain enough what union is two distinct things becoming one."

St Teresa—qt—'Mysticism and Philosophy'—P 221.

100 "All things then I forget./My cheek on Him who for my coming came. / All ceased and I was not / Leaving my cares and shame / Among the lilies and forgetting them "

St. John of the Cross qt— Mysticism'—P 371

101 "With my sweet soul, this soul of mine / Has mixed as water doth with wine / who can the wine and water part/Or me and Thee when we combine !"

Rumi : 'The Festival of Spring' —qt—Mysticism—P 426

Digitized by PPRACHIN, SOA

ପ୍ରେମସମ୍ପର୍କରେ ସର୍ବାପେକ୍ଷା ନିବିଡ଼ତମ ଅନୁଭବନାଟି ହେଲା 'ପରସ୍ପର ଏକାନ୍ତଭାବେ କେବଳ ପରସ୍ପର ପାଇଁ ଉଦ୍ଦିଷ୍ଟ ।' ପ୍ରଣୟୀଯୁଗଳ ଅନ୍ୟାନ୍ୟ ସକଳ ସଂପର୍କ ଭିତରେ ବି ପରସ୍ପର ସହ କେବଳ ଏକ ସ୍ୱତନ୍ତ୍ର ସମ୍ପର୍କରେ ସଂଯୁକ୍ତ, ଯେଉଁ ସମ୍ପର୍କରେ ଅନ୍ୟ କାହାର ପ୍ରବେଶାଧିକାର ରହିନପାରେ । ମିଳନାନୁଭୂତିରେ ବ୍ୟକ୍ତି ଈଶ୍ୱରଙ୍କୁ ତାର ହୃଦୟନିବାସୀ ଏକାନ୍ତ ପ୍ରିୟତମ ରୂପେ ଅନୁଭବ କରେ ଏବଂ ନିଜକୁ ସେ ଦିବ୍ୟପ୍ରେମର ଉପଭୋକ୍ତା ମନେକରିଥାଏ । ଈଶ୍ୱର ପରମପ୍ରେମିକରୂପେ ବ୍ୟକ୍ତି ହୃଦୟର ପ୍ରେମ ଭାବନାକୁ ଜାଣନ୍ତି, ସ୍ୱୀକୃତି ଦିଅନ୍ତି, ଗ୍ରହଣକରନ୍ତି ଓ ପ୍ରତିଦାନ ଦିଅନ୍ତି ।[୧୦୨] ସନ୍ତ ହୃଦୟର ପ୍ରେମ ଯେପରି ସହସ୍ର ରୂପରେ ଈଶ୍ୱରଙ୍କର ଅଜସ୍ର ଆଲିଂଗନର ସ୍ପର୍ଶ ସୁଖ ଅନୁଭବ କରୁଥାଏ । ପ୍ରୀତିର ଲୀଳାଖେଳାରେ ସୀମା ଓ ଅସୀମ ଯେପରିକି ସମାନ ରଂଗବିଳାସୀ ।[୧୦୩] ବ୍ୟକ୍ତି ପରମ-ପ୍ରେମ ସ୍ୱରୂପଙ୍କୁ ସମ୍ବୋଧନ କରି କୁହେ; ତୁମେ ଅଖଣ୍ଡ ଓ ଏକାନ୍ତ ଭାବେ ମୋର ହୋଇଯାଇଚ । ମୋର କ୍ଷୁଦ୍ର ସତ୍ତାଟି ମଧ୍ୟ ସମ୍ପୂର୍ଣ୍ଣ ଓ ସମଗ୍ରଭାବେ ତୁମର । ... ତୁମେ ମୋଠାରେ ଆପଣାକୁ ଉପଭୋଗ କରୁଚ ଏବଂ ତୁମର ଅନୁଗ୍ରହକୁ ମୁଁ ମୋଠାରେ ଏବଂ ମୋତେ ତୁମଠାରେ ଉପଭୋଗ କରୁଛି ।[୧୦୪] ଏଇ ଏକାଗ୍ର ଭାବତନ୍ମୟତାରେ ମିଷ୍ଟିକ୍ କେତେବେଳେ ଈଶ୍ୱରଙ୍କଠାରେ ନିମଜ୍ଜିତ ହୋଇ ଆତ୍ମ-ବିଲୋପର ଅନୁଭବ କରେ ତ କେତେବେଳେ ନିଜ ପ୍ରେମଶକ୍ତିବଳରେ ଈଶ୍ୱରଙ୍କୁ ମଧ୍ୟ ଆପଣାର ଅଂତର୍ଗତ କରିରଖେ ବୋଲି ଭାବିଥାଏ ।[୧୦୫] ସନ୍ତ ଯାହାକିଛି କରେ, ଯେଉଁଠାରେ ଥାଏ, ସର୍ବତ୍ର ଈଶ୍ୱରସାନିଧ୍ୟ ଲାଭକରୁଥିବାରୁ ତାର ଅନ୍ତର୍ଚେତନା ଓ ବହିର୍ଜୀବନ ସେଇ ରସମୟ ରସରାଜ 'ରସୋବୈସଃ'ଙ୍କୁ ଧାରଣକରି ଦିବ୍ୟ-ରସାପ୍ଳୁତ ହୋଇଯାଏ । ତାର ଅନ୍ତର୍ଦ୍ଧିର ସାମଗ୍ରିକ ଉଚ୍ଚାରଣଟି ଯେପରି ସେହି ପ୍ରିୟ-

---

୧୦୨ "ଆପଣାର ନିବିଡ଼ତମ ଅନ୍ତର୍ସଂଚରଣରେ ପ୍ରଦେଶରେ ସେ ସର୍ବୋଚ୍ଚ ପରମହଂସଙ୍କ ସହିତ ଏକରସ ହୋଇ ରହିଥାଏ । ଅର୍ଥାତ୍ ସେଠାରେ କେବଳ ତାର ଆତ୍ମା ଓ ପରମେଶ୍ୱରହିଁ 'ଏକତ୍ର ଓ ଏକାକୀ' ଅବସ୍ଥାନ କରୁଥାନ୍ତି ।"

ଶ୍ରୀ ଅରବିନ୍ଦ—'ଦିବ୍ୟଜୀବନ' (ଅ-ଚିତ୍ତରଂଜନ ଦାଶ)—ପୃ ୧୧୪୧

103 "What great wonder is that there should be Love (in me) to Thee and (in Thee) to me !"
Manik Verma—Tirubachhakam'—(P-108) 5/8/86.

104 "..Thou enjoyest Thyself in me, and that I by Thy grace enjoy Thee in myself and myself in Thee. And when in Thee I shall love myself, nothing else but Thee do I love because Thou art in me and I in Thee, glued together as one and the selfsame Thing which henceforth and forever cannot be divided:"
Gerelac petersen—qt—'Mysticism'—P 428.

105 "I captured Thee and left me within my core
And myself I subdued and kept it within Thyself !"
Manik Verma—Tirubachhakam—54/5 (P1—84)

Digitized by PPRACHIN, SOA

ରୂପର ସମ୍ବୋଧନ ।[୧୦୬] ପ୍ରେମମୟ ଦୁଇଟି ମୁଗ୍ଧ ଦୃଷ୍ଟିପାତରେ ଯେପରି ତାର ସର୍ବାଂଗ ଆଚ୍ଛାଦିତ । ତାର ସର୍ବତ୍ର ଯେପରି ସେହି ଅନଂତପ୍ରେମ ମୂର୍ତ୍ତୀସ୍ଥିତ ।[୧୦୭] ରହସ୍ୟବାଦୀପ୍ରେମର ସେହି ଆଚ୍ଛନ୍ନତା ଭିତରେ ଅହରହ ବୁଡ଼ି ରହିଥାଏ । ସେହି ପ୍ରେମରୂପ ଦେଖିଚାଲିଥାଏ । ବିମୋହନ ସ୍ୱରସଂଗୀତରେ ଲୀନ ନିବିଡ଼ ହୋଇଯାଇଥାଏ । ଅକ୍ଷୟ ଅମୃତଧାରାକୁ ପାନ କରି ଚାଲିଥାଏ । ଦିବ୍ୟପ୍ରେମର ମହାନ ଐଶ୍ୱର୍ଯ୍ୟ ଦୀପ୍ତୋଜ୍ଜ୍ୱଳ ଉଦ୍ଭାସନରେ ତାର ଜୀବନ ଓ ଜଗତକୁ ପ୍ରଦୀପ୍ତ କରି ରଖିଥାଏ ।

ଈଶ୍ୱର ପରିପୂର୍ଣ୍ଣ ପ୍ରାପ୍ତି ବୋଧହିଁ ଏ ମିଳନାନୁଭୂତି ସମ୍ପର୍କରେ ସବୁଠାରୁ ମୂଲ୍ୟବାନ ଅନୁଭବ । ମିଷ୍ଟିକର କହିବା ଅନୁସାରେ ଈଶ୍ୱର ତାର ନିଜତ୍ୱ-ବୋଧକୁ ଅପହରଣ କରିନେବାବେଳେ ତାର ନିଃସ୍ୱ-ତାକୁ ମଧ୍ୟ ଲେପକରି ନିଜ ଐଶ୍ୱର୍ଯ୍ୟରେ ଭରିଦିଅନ୍ତି । ତାର ସୁଖ ଦୁଃଖ, ମାନପ୍ରେମ ଭାବ ଅନୁଭବମାନ ମୋଟ ଉପରେ ତାର 'ସର୍ବସ୍ୱ'କୁ ନେଇଗଲାପରେ ସେ ଶୂନ୍ୟହୃଦୟକୁ ଅପାର ପ୍ରେମବର୍ଷଣରେ ପରିପୂର୍ଣ୍ଣ କରିଦିଅନ୍ତି । ଐଶ୍ୱରିକ ପ୍ରେମର ସେଇ ବିପୁଳ ପ୍ରାପ୍ତି ପରେ, ସ୍ୱୟଂ ଈଶ୍ୱରଙ୍କୁ ପ୍ରେମରୂପରେ ଲାଭକରିବାପରେ ବ୍ୟକ୍ତିର ଅନ୍ୟସବୁ ଅପ୍ରାପ୍ତି ଦୁଃଖ ଓ ପ୍ରୟୋଜନବୋଧ ମଧ୍ୟ ଲୋପ ହୋଇଯାଏ । ଏଇ ପ୍ରେମହିଁ ଶାଂତି ଓ ଆନଂଦର ଅଖଂଡ଼ ଆଧାର, ଅମରତ୍ୱ ଓ ଚିରଂତନତ୍ୱର ଅମୃତ ଆଶୀର୍ବାଦ । ଏହାହିଁ ମର୍ତ୍ତ୍ୟଜୀବନରେ ସର୍ବୋତ୍ତମ ସୁମହାନ ପ୍ରାପ୍ତି[୧୦୮] । ଏ ପ୍ରାପ୍ତି ପରେ ମିଷ୍ଟିକପାଇଁ ସ୍ୱର୍ଗ ଆଉ ମର୍ତ୍ତ୍ୟବିଚ୍ଛିନ୍ନ ନୁହେ । ଜୀବନ ମରଣ ଅବଚ୍ଛିନ୍ନ ନୁହେ । ଜୀବନକୁ ମୃତ୍ୟୁ କୋଳରେ ମଧ୍ୟ ମରଣହୀନ କରି, ମୃତ୍ୟୁକୁ ଜୀବନୋପମକରି ସ୍ୱର୍ଗ ଯେପରି ବରଂ ଧରାବତରଣ କରେ । ଧରା ସ୍ୱର୍ଗରେ ରୂପାଂତରିତ ହୁଏ ।

ମିଷ୍ଟିକର ଏ ଅନୁଭୂତି ସମ୍ପର୍କରେ ଶେଷକଥାଟି ହେଉଛି, ଏହି ପ୍ରାପ୍ତି ମର୍ତ୍ତ୍ୟଜୀବନର ଅନ୍ୟସକଳପ୍ରାପ୍ତି ତୁଲ୍ୟ ଭୋଗୈଶ୍ୱର୍ଯ୍ୟର ଏକକବିଳାସ ନୁହେ । 'ତେନ ତ୍ୟକ୍ତେନ ଭୁଂଜୀଥାଃ'ର ମର୍ମଗୂଢ଼ ସନ୍ଦେଶ ଯେପରି ଚରମ ସାର୍ଥକତାରେ ବ୍ୟକ୍ତି ଜୀବନରେ ରୂପ ପରିଗ୍ରହ କରେ । ବ୍ୟକ୍ତିର ଶାନ୍ତିଜୀବନରେ

---

106 "The Lord..has made my heart / His abode, and lighted it with love, His coming has left sorrow's bonds / Forever, and banished darkness from my Ken/what perfect bliss I experience !"

Manikverma—Tirubachhakam' (tru) 47–II

୧୦୭ " ସବୁ ଦୃଶ୍ୟ ଓ ସବୁ ରୂପରେ ସେତେବେଳେ କେବଳ ସେହି ପରମଶାଶ୍ୱତ ଓ ପରମସତ୍ୟର ଦର୍ଶନ ହୁଏ । ସକଳ ଶବ୍ଦ ଭିତରେ ତାହାର କଥା ଶୁଣାଯାଏ ଓ ସକଳ ସ୍ପର୍ଶରେ ତାହାର ଅନୁଭୂତି ମିଳେ ।"

ଶ୍ରୀ ଅରବିନ୍ଦ 'ଦିବ୍ୟଜୀବନ' (ଅ: ଚିତ୍ତରଂଜନ ଦାଶ)—ପୃ ୧୦୬୫

108 "Transcendent, it (the divine love) will seek him in the ecstasy of an absolute union : universal, it will seek him in the infinite quality and every aspect and in all beings with a universal delight and love, individual, it will enter into all human relations with them that love creates between person and person

Sri 'Aurobindo : Synthesis of Yoga'—P 514.

Digitized by PPRACHIN, SOA

ଅନନ୍ତତତ୍ତ୍ୱର ଅଖଣ୍ଡ ପ୍ରତିପାଦନ ଘଟିଯାଇଥାଏ । କ୍ଷୁଦ୍ର ଶିଶିର କଣାରେ ଅନନ୍ତ ସୂର୍ଯ୍ୟାକାଶର ରହସ୍ୟ ଉଦ୍‌ଘାଟିତ ହୋଇଯାଏ । ପରମ ବ୍ରହ୍ମଜ୍ଞାନୀ ସାଧକର ଅନନ୍ତ ପ୍ରେମସିକ୍ତ ହୃଦୟ ଯେପରି ଏକ ଅଖଣ୍ଡ ଉତ୍‌କୂଳ ଗାଂଗେୟ ପ୍ରବାହ, ଯାହାର କଣାକଣାଭରି ନିତ୍ୟପାବନପାଇଁ ସ୍ୱର୍ଣ୍ଣଧାର ସୁଧାନିଃସ୍ୟନ୍ଦୀ ପ୍ରବେଗ ପ୍ଳାବନ ଉଚ୍ଛ୍ୱସିତ ହୋଇଉଠେ । ତାର ସତ୍ତା ଯେପରି ଏକ ଆବେଗ କଂପିତ ସାରଂଗୀ-ସ୍ୱର ଯାର ବହ୍ମଳ ତଂତ୍ରୀରେ ଅଦୃଶ୍ୟ ସୁରକାରର ଅପୂର୍ବ ସୁରସଂଭାର ପ୍ରମୂର୍ଚ୍ଛିତ ହୋଇଯାଏ । ନଟରାଜଙ୍କ ସୃଷ୍ଟି ଉଲ୍ଲାସ ଛଂଦ-କଂପିତ ପଦ ନୂପୁର ପ୍ରାପ୍ତ ତାର ସ୍ପଂଦିତ ସତ୍ତାର ପ୍ରତିଟି ଶୀତ୍କାର ତରଂଗରେ ନନ୍ଦନନନ୍ଦନଙ୍କ ମୁଗ୍ଧ ନୃତ୍ୟାରତିର ଅବିରାମ ମହୋତ୍ସବ ବିରଚିତ ହୋଇଯାଏ ।[୧୦୯]



---

109 'Me Thou forever hast affirmed
That I may ever know Thee mine,
Thy love has pierced me through
Its thrill with Bone and Nerve entwine.
I rest a flute on Thy lips.
A flute, I on Thy breast recline.
Breathe deep in me that I may sign,
Yet strike my strigs, and tears shall shine.
Rumi : The Festival of Spring, qt— Mysticism'—P 428

Digitized by PPRACHIN, SOA

## ଦ୍ୱିତୀୟ ପରିଚ୍ଛେଦ

# ଆଧୁନିକ ଓଡ଼ିଆ କବିତାରେ ରହସ୍ୟବାଦୀ ଚେତନା

### ପ୍ରାରଂଭିକ ସୂଚନା

ଆଧୁନିକ ଓଡ଼ିଆ କବିତାର ପ୍ରାରଂଭ ଓ ବିକାଶକାଳରୁ ରହସ୍ୟଧର୍ମୀ କାବ୍ୟ ଚେତନାର ରୂପପ୍ରକାଶ ଦୁଇଟି ସ୍ପଷ୍ଟ ଆଭିମୁଖ୍ୟ ଗ୍ରହଣକରିଥିବା ଦେଖାଯାଏ ।

**କ) ପାରଂପରିକ ଅଧ୍ୟାତ୍ମ ଭାବନା :**

୧) ଦାର୍ଶନିକ ପୃଷ୍ଠଭୂମି— ଅର୍ଥାତ୍ ବ୍ୟକ୍ତିର ବିଶ୍ୱ—ବିଶ୍ୱାତୀତ ସଂବନ୍ଧର ଆଧ୍ୟାତ୍ମିକ ରହସ୍ୟକାଙ୍କ୍ଷା ।

୨) ଭକ୍ତି ଓ ଭାବାନୁଗ ରସସାହିତ୍ୟ ।

**ଖ) ପାଶ୍ଚାତ୍ୟ ଭାବାଦର୍ଶ**

୧) ନିଃସର୍ଗଚେତନା ଓ ମାନବିକତାବାଦ,

୨) ଅପାର୍ଥିବତା ଉନ୍ମୁଖୀ ବ୍ୟକ୍ତିଗତ ପ୍ରଣୟାନୁଭବ କିଂବା ପାର୍ଥିବ ପ୍ରେମଭାବନାର ଅଲୌକିକ ଉତ୍କ୍ଷେପ ପ୍ରୟାସ । ଅତି ସ୍ଥୂଳ ଭାଷାଆୟାସ ଓ ଭାବତରଳତାଠାରୁ ଆରଂଭକରି ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବ ଉପଲବ୍ଧି ପର୍ଯ୍ୟନ୍ତ ଏ ରହସ୍ୟବାଦୀ କାବ୍ୟ-ରୂପ ପ୍ରକାଶ ପ୍ରାୟ ଅର୍ଦ୍ଧଶତାବ୍ଦୀର ରଚନାବଳୀରେ ସୁସ୍ପଷ୍ଟ ।

ଓଡ଼ିଆ କବିତାର ଉନ୍ମେଷକାଳରେ ବୈଦିକ ଓ ଉପନିଷଦୀୟ ଉପଲବ୍ଧି ଏବଂ ପାଶ୍ଚାତ୍ୟ ରୋମାଣ୍ଟିକ ପ୍ରକୃତି ଭାବନା ନେଇ ଯେଉଁ ରହସ୍ୟବାଦୀ କାବ୍ୟଚେତନାର ଅଭ୍ୟୁଦୟ ଘଟିଥିଲା, ତାର କ୍ରମବିକାଶର ଧାରାଟି ମଧ୍ୟ ବିଭିନ୍ନ ସୂକ୍ଷ୍ମ ଅଥଚ ସ୍ପଷ୍ଟ ପରିବର୍ତ୍ତନ ମାର୍ଗରେ ସ୍ପଷ୍ଟକ୍ରମରୂପାଂତର ଲାଭକରିଛି । ଏ ଅତୀନ୍ଦ୍ରିୟ କାବ୍ୟଦର୍ଶନକୁ ବେଦବେଦାଂତ ଶାସ୍ତ୍ର ପୁରାଣଠାରୁ ଆରଂଭକରି ମଧ୍ୟଯୁଗୀୟ ଧର୍ମଧାରଣା (ଯଥା—ନିରାକାର ଦର୍ଶନ ଓ ଶୂନ୍ୟବ୍ରହ୍ମ ଚେତନା ପୁଣି ବୈଷ୍ଣବୀୟ ପ୍ରେମଭକ୍ତି ତତ୍ତ୍ୱ), ତଥା ନବଯୁଗର ରବୀନ୍ଦ୍ର ସାହିତ୍ୟ ଏବଂ ବିଦେଶୀ ସାହିତ୍ୟର ଦାଂତେ, ବନିୟାନ, ବ୍ଲେକ, ଓ୍ୱାର୍ଡସ୍‌ୱାର୍ଥ, ଶେଲି, କୀଟସ, କାଉପର, ଗେଟେ, ଟେନିସନ ଏବଂ ଏଲିଏଟ୍, ଇମରସେନ ଓ ହ୍ୱିଟ୍‌ମାନଙ୍କ ଭାବଚେତନା ବିଭିନ୍ନ ସମୟରେ ବହୁପ୍ରକାରେ ପ୍ରଭାବିତ କରିଛି । ଲକ୍ଷଣୀୟ, ସଂସ୍କୃତ କ୍ଷେତ୍ରରେ ଭାବବିନିମୟର

Digitized by PPRACHIN, SOA

ଅବଶ୍ୟଂଭାବୀ ଯୁଗପରିଣତିରୁ ଏ ନୂତନ କାବ୍ୟସ୍ୱରରେ ଯେଉଁ ରହସ୍ୟବାଦୀ ଆଭିମୁଖ୍ୟ ପ୍ରକଟିତ, ତାହା ପାରଂପରିକ ସ୍ୱରଧର୍ମ ସହ ସଂଯୋଗ ରକ୍ଷା କରିଥିଲେ ବି ପାଶ୍ଚାତ୍ୟମାନସ ଓ ରବୀନ୍ଦ୍ରିକ ଚେତନା ସହ ତାର ସ୍ୱରସାମ୍ୟ ଅଧିକ ।

ଆଧୁନିକ କାବ୍ୟଯୁଗର ଉନ୍ମେଷ ଓ ବିକାଶକାଳରେ ଓଡ଼ିଆ କବିତାରେ ତ୍ରିବିଧ ଭାବ-ପ୍ରବାହର ଗତିଛନ୍ଦ ସୁପରିସ୍ଫୁଟ । (୧) ରୂପ ଓ ସୌନ୍ଦର୍ଯ୍ୟାଦର୍ଶପର ପ୍ରେମଭାବନା ଓ ପ୍ରକୃତିଚେତନା, (୨) ଜାତୀୟତା ବୋଧ, (୩) ଭଗବତ୍ ଚେତନା । ପ୍ରାରଂଭକାଳରେ ବ୍ରହ୍ମବାଦୀ ଦାର୍ଶନିକ କବି ମଧୁସୂଦନ ରାଓଙ୍କ ଗଭୀର ବିଭୁପ୍ରାଣତା ଓ ନିର୍ମଳ ଆଧ୍ୟାତ୍ମିକତାର ପ୍ରତ୍ୟକ୍ଷ ଉପଲବ୍ଧିସଂଜାତ ଉଦାତ୍ତ କାବ୍ୟସ୍ୱର ଓଡ଼ିଆ କବିତା ସମ୍ପର୍କରେ ରହସ୍ୟବାଦୀ ଭାବାଦର୍ଶକୁ ଅତି ସଫଳ ଓ ନିଷ୍ଠାପରଭାବେ ଉପସ୍ଥାପିତ କରିପାରିଥିଲା । ମାତ୍ର ସମସାମୟିକ ସ୍ରଷ୍ଟା କବି ରାଧାନାଥରାୟଙ୍କ ରୂପପାୟୀ ଦର୍ଶନେନ୍ଦ୍ରିୟ ସୌନ୍ଦର୍ଯ୍ୟବୋଧ ଭିତରେ ଶାଶ୍ୱତସୌନ୍ଦର୍ଯ୍ୟର ଅତୀନ୍ଦ୍ରିୟ ସତ୍ୟକୁ କବି ସ୍ୱ ପ୍ରଦର୍ଶିତ ମାର୍ଗରେ ଯେତିକି ପ୍ରତ୍ୟକ୍ଷ କରିଛି [୧] ସେଥିରେ କଳାଗତ ବୈଦଗ୍ଧ୍ୟର ଅପୂର୍ବ ରସୋଲ୍ଲାସ ଫୁଟି ଉଠିଥିଲେ ବି ଭାବଲୋକର ଅତୀନ୍ଦ୍ରିୟ ଉଦ୍‌ବୋଧନଶୀଳ ରହସ୍ୟବୈଚିତ୍ର୍ୟ ରୂପାୟିତ ହୋଇପାରିନାହିଁ । ଅନୁଗାମୀ କାବ୍ୟଭାବନା ମଧ୍ୟ ମୁଖ୍ୟତଃ ଆଦର୍ଶଭିତ୍ତିକ ଓ ନୈତିକ ରୁଚି-ବଂଧିତ ହୋଇଥିବାରୁ କାବ୍ୟାନୁସୃତ ଭଗବତ୍ ଚେତନା ଓ ଆଧ୍ୟାତ୍ମିକତାର ସ୍ୱରୂପଟି ପ୍ରାୟଶଃ ପାରଂପରିକ ନୀତିଶୃଙ୍ଖଳା ଓ ଧର୍ମାଦର୍ଶ ଅନୁପ୍ରାଣିତ ଏବଂ ନିଗୂଢ଼ ରହସ୍ୟବାଦୀ ରସବ୍ୟଂଜନାର ଆଧ୍ୟାତ୍ମିକ ଉତ୍ତରଣ ଏ କାବ୍ୟସ୍ୱରରେ ନିତାଂତ ଦୁର୍ଲଭ । ରୋମାଣ୍ଟିକ ପ୍ରେମଭାବନା ଓ ନୈସର୍ଗଚେତନା ମଧ୍ୟ ଅତୀନ୍ଦ୍ରିୟତାର ରହସ୍ୟସଂକେତ ବର୍ଜିତ । ଆଧୁନିକ ଓଡ଼ିଆ କବିତାରେ ପାଶ୍ଚାତ୍ୟ ରୋମାଣ୍ଟିକ ରୂପାଦର୍ଶ ଓ 'ପରଂପରା ସହ ନୂତନତାର ସମନ୍ୱୟ' ସ୍ଥାପନାରେ ଜାତୀୟ ଗୌରବର ଭିତ୍ତି ସ୍ଥାପନ ଏ ସାହିତ୍ୟର ଯୁଗାଦର୍ଶରୂପେ ନିର୍ଣ୍ଣୀତ ହେବାର ଅବକାଶରେ ପାଶ୍ଚାତ୍ୟ ରୋମାଣ୍ଟିକ ଭାବଧର୍ମ ସହ ପାରଂପରିକ ଅତୀନ୍ଦ୍ରିୟ ଓ ରହସ୍ୟବାଦୀ ଜିଜ୍ଞାସା ମଧ୍ୟ ଅନ୍ତଃସ୍ରୋତ ରୂପେ ପ୍ରବାହିତ । ଯୁଗୀୟ କାବ୍ୟଚେତନାର ମୁଖ୍ୟପ୍ରେରଣା ଓ ସ୍ୱରରୂପେ ଜାତୀୟଭାବନାକୁ ବିଗ୍ରହକଲେ ଜାତୀୟତାବୋଧ ସହ ଏକ ଆଧ୍ୟାତ୍ମିକ ଆତ୍ମଖୋଜା ସତ୍ତ୍ୱ ସାହିତ୍ୟର ମୂଳ ପର୍ଯ୍ୟନ୍ତ ପରିଲକ୍ଷିତ ହୁଏ । ଅଧ୍ୟାତ୍ମ ପ୍ରଣୋଦିତ ଦାର୍ଶନିକ ଜିଜ୍ଞାସାମୂଳକ ଇନ୍ଦ୍ରିୟୋତ୍ତର ରହସ୍ୟଧର୍ମିତା ତାର ଅନ୍ୟତମ କାବ୍ୟସଂବେଗରୂପେ ପରିଗଣିତ ହୋଇପାରେ । ଏ ଆଭିମୁଖ୍ୟ ଗୋପବନ୍ଧୁଙ୍କ ଅତୀନ୍ଦ୍ରିୟ ପ୍ରଣୟାଦର୍ଶ ନୈସର୍ଗପ୍ରୀତି ଏବଂ ଅଧ୍ୟାତ୍ମ ଚିନ୍ତାରେ ଉଦ୍‌ବୁଦ୍ଧ ଏବଂ ପଣ୍ଡିତ ନୀଳକଂଠଙ୍କ ଦାର୍ଶନିକ ମନନଶୀଳତାରେ ପ୍ରବୁଦ୍ଧ । ଅବଶ୍ୟ ସତ୍ୟବାଦୀ କାବ୍ୟଭାବନାର ପରିଚ୍ଛେଦଟି ସ୍ୱଦେଶ ଓ ସ୍ୱଜାତିପ୍ରାଣତାରେ ପ୍ରବଳ ରିକ୍ତମୟ । ତଥାପି ଗଭୀର ଉପଲବ୍ଧି ଓ ମାର୍ମିକ ଆବେଗରୁ ସ୍ୱତଃସ୍ଫୂର୍ତ୍ତ ଏ କାବ୍ୟସଂବେଦନରେ ପ୍ରତିଫଳିତ ଗୋପବନ୍ଧୁଙ୍କ ଜୀବନାଦର୍ଶର ବିଭୁପ୍ରାଣତା ଓ ଆତ୍ମଚେତନ ପରବର୍ତ୍ତୀ ଓଡ଼ିଆ କାବ୍ୟାଦର୍ଶକୁ, ବିଶେଷ କରି ଲକ୍ଷ୍ମୀକାନ୍ତ, କୁଂତଳା ଓ ମାନସିଂଙ୍କ ରଚନାକୁ ରବୀନ୍ଦ୍ରାଦର୍ଶର ରହସ୍ୟଧର୍ମିତା ସହ ମିଳିତ କରାଇବାରେ ବଳିଷ୍ଠ ଭୂମିକା ଗ୍ରହଣ କରିଛି । ମୋଟଉପରେ ପ୍ରାକ୍ ସବୁଜ ରହସ୍ୟବାଦୀ କାବ୍ୟଚେତନା ପାଶ୍ଚାତ୍ୟ

---

୧ 'ଦୃଷ୍ଟିମୁଗ୍ଧ ହୋଇ ଅପୂର୍ବ ପ୍ରତୀତ ସୁଂଦର ପଣର ଚିରଂତନ ଗୀତ''
ରାଧାନାଥ—'ଚିଲିକା'

Digitized by PPRACHIN, SOA

ମେଟାଫିଜିକାଲ୍ ନୈସର୍ଗିକ ଅତୀନ୍ଦ୍ରିୟ ଚିନ୍ତାଧାରା, ରବୀନ୍ଦ୍ରଙ୍କ ଇନ୍ଦ୍ରିୟୋତ୍ତର ପ୍ରଣୟସାଧନା ଓ ମଧୁସୂଦନୀୟ ଉପନିଷଦ-ଭାବମାନସ ପରିପୋଷିତ ଥିଲା । ସବୁଜ ଓ ସମସାମୟିକ କାବ୍ୟସ୍ୱରରେ ବ୍ୟକ୍ତିଭାବନାର ରୋମାଣ୍ଟିକ ସୌନ୍ଦର୍ଯ୍ୟ ଓ ପ୍ରଣୟାଭିବ୍ୟକ୍ତିରେ ରୋମାଣ୍ଟିକ ଆବେଗ ପ୍ରାବଲ୍ୟ, ପ୍ରଗଳ୍‌ଭତା ଓ ଗଭୀର ଆସକ୍ତିଗତ ଅନ୍ତର୍ମଗ୍ନତା ସତ୍ତ୍ୱେ ତାହା ରହସ୍ୟଧର୍ମୀ ଅପାର୍ଥିବତା ପ୍ରତି ଉତ୍କଣ୍ଠିତ । ଏ ଉଚ୍ଚାରଣରେ ମଧୁସୂଦନଙ୍କ ସହ ରବୀନ୍ଦ୍ର କାବ୍ୟାଦର୍ଶର ଅନୁପ୍ରାଣନା ପ୍ରମାଣିତ । ବୈକୁଣ୍ଠନାଥ ଓ ମାନସିଂ-କବିତା ଯୁଗୀୟ ରହସ୍ୟବାଦୀ ଚେତନାର ବଳିଷ୍ଠ ପ୍ରତିନିଧି ।

ଖ୍ରୀ: ଅ: ୧୯୩୦ ରୁ ଖ୍ରୀ: ଅ: ୧୯୪୦ ମଧ୍ୟବର୍ତ୍ତୀ କାବ୍ୟଚେତନା ଅପାର୍ଥିବ ରହସ୍ୟଧର୍ମିତା ଓ ପ୍ରଗତିବାଦୀ ଅତି ବାସ୍ତବତା ଭିତରେ ଦୋଦୁଲ୍ୟମାନ । ୧୯୩୬ରୁ ୧୯୩୫ ମଧ୍ୟରେ ବାସ୍ତବବାଦୀ ଭାବଧାରା ଓ ସାମ୍ୟବାଦୀ ସ୍ଲୋଗାନ ଭିତରେ ରହସ୍ୟବାଦୀ କାବ୍ୟାକାଙ୍କ୍ଷା କ୍ରମଶଃ କ୍ଷୀଣ ହୋଇପଡ଼ିଛି । ୧୯୫୦ ପର୍ଯ୍ୟନ୍ତ ଏହିପରି ବିଭିନ୍ନ କବିଙ୍କ ରଚନାରେ ବଳିଷ୍ଠ କାବ୍ୟ-ପ୍ରତ୍ୟୟ ବିହୀନ ସ୍ଥୂଳ କଳ୍ପନାରୂପେ ଏହା ସାମୟିକ ଚର୍ଚ୍ଚିତ ହୋଇଛି । ପରବର୍ତ୍ତୀ କାଳରେ ଯୁଗ ଯନ୍ତ୍ରଣା କ୍ଷୁବ୍ଧ ଗଭୀର ଅନ୍ତର୍ଦ୍ୱନ୍ଦ୍ୱ ଭିତରୁ ଜୀବନ-ଜିଜ୍ଞାସାରୂପେ ଆଧ୍ୟାତ୍ମିକ ରହସ୍ୟବାଦୀ ସ୍ୱରର ଅନ୍ତଃପ୍ରକାଶରେ ପ୍ରବଣତା ଅଧିକାଧିକଭାବେ ଲକ୍ଷଣୀୟ ।



Digitized by PPRACHIN, SOA

# କାବ୍ୟାଲୋଚନା

## ମଧୁସୂଦନ ରାଓ (୧୮୫୩-୧୯୧୨)

ଖ୍ରୀଷ୍ଟାବ୍ଦ ୧୮୫୩ ମସିହା ଶ୍ରୀପଂଚମୀର ପୁଣ୍ୟତିଥିରେ କବି ମଧୁସୂଦନ ରାଓଙ୍କର ଜନ୍ମ । ଓଡ଼ିଆ ସାହିତ୍ୟରେ ତାଙ୍କର କାବ୍ୟଚେତନା ଓ ଭାବବୈଶିଷ୍ଟ୍ୟର ମୁଖ୍ୟସ୍ୱର ତାଙ୍କୁ 'ଭକ୍ତକବି' ରୂପେ ପରିଚିତ କରାଇଛି । ତାଙ୍କର ଆର୍ଷ ଦୃଷ୍ଟିଭଂଗୀ ଓ ମନନଶୀଳତା ସହ ଅନୁଭୂତିପ୍ରବଣ ଭକ୍ତିଭାବନାମୂଳକ, କାବ୍ୟାଦର୍ଶ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜୀବନଧାରାର ସମନ୍ୱିତ ଭାବାଦର୍ଶକୁ ପ୍ରକାଶ କରେ । ଭାରତୀୟ ଅଧ୍ୟାତ୍ମ-ଚେତନାର ସାରନିର୍ଯ୍ୟାସ ସହ ପାଶ୍ଚାତ୍ୟ ଚିନ୍ତାମାନସର ସମ୍ମିଶ୍ରଣ, ପୁଣି ପ୍ରକାଶ ଭଙ୍ଗିରେ ପାରଂପରିକ ତଥା ଯୁଗୋପଯୋଗୀ ବାଣୀବିନ୍ୟାସର ସଂଗଠିକରଣ କବି ମଧୁସୂଦନଙ୍କୁ ଉତ୍କଳ ସାହିତ୍ୟର ଅଭ୍ୟୁଦୟ କାଳରେ ନବଯୁଗର ଏକତମ ସାର୍ଥକ ପ୍ରତିନିଧିରୂପେ ସମ୍ମାନିତ କରିଛି ।

ଭାରତୀୟ ରହସ୍ୟଚେତନାର ଉତ୍ସ 'ପରତତ୍ତ୍ୱ' ଅର୍ଥାତ ପରମ—ସତ୍ତା ଅନ୍ୱେଷଣର ପୃଷ୍ଠଭୂମିରେ ନିହିତ । ପରତତ୍ତ୍ୱକୁ 'ଆତ୍ମତତ୍ତ୍ୱ' ରୂପେ ଉପଲବ୍ଧି ଓ ପ୍ରକାଶ ପ୍ରୟାସରେ ସମଗ୍ର ଭାରତୀୟ ଅଧ୍ୟାତ୍ମଚେତନାକୁ ଏକ ନିର୍ଦ୍ଦିଷ୍ଟ ରହସ୍ୟବାଦୀ ଦୃଷ୍ଟିଭଂଗୀ ମାଧ୍ୟମରେ ଅଭିବ୍ୟକ୍ତ ଦେଇଛି । ପାଶ୍ଚାତ୍ୟ ଚିଂତାଧାରାରେ ରହସ୍ୟଚେତନା ପରତତ୍ତ୍ୱ ଜିଜ୍ଞାସାମୂଳକ ବୌଦ୍ଧିକ ବିଚାରର ପଥ ଅବଲଂବନ କରି ଅନ୍ତିମରେ 'ସର୍ବତତ୍ତ୍ୱ'ରେ ପର୍ଯ୍ୟବସିତ ହୋଇଛି । ଉପଲବ୍ଧିରେ ଉଭୟ ଚେତନା ଏକ ଓ ଅଭିନ୍ନତାକୁ ପ୍ରାପ୍ତ । ଭିନ୍ନତା କେବଳ ପ୍ରକାଶ ଓ ପରିବେଷଣରୁ ଆଭିମୁଖ୍ୟରେ; ପ୍ରାଚ୍ୟ ଚେତନା ପ୍ରଥମେ ଆତ୍ମାବିଷ୍କାର କରି ଆତ୍ମା ମାଧ୍ୟମରେ ବିଶ୍ୱପ୍ରସାରଣର କଥା କହିଯାଏ । ପାଶ୍ଚାତ୍ୟ ମାନସର ପ୍ରଥମ ପର୍ଯ୍ୟବେକ୍ଷଣ ବିଶ୍ୱ-ରହସ୍ୟ, ଯାହାର ଅନ୍ୱେଷିତ ଅନ୍ତିମ ବିଶ୍ୱାତୀତ ଅନନ୍ତରୂପେ ଆତ୍ମସ୍ଥିତ । ମଧୁସୂଦନଙ୍କ ସାହିତ୍ୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ରହସ୍ୟବାଦୀ ଅଭିବ୍ୟକ୍ତି ପ୍ରତିଷ୍ଠା ଲାଭକରିଛନ୍ତି । ବୈଦିକ ବିଶ୍ୱ ପ୍ରକାଶର ସଂବର୍ଦ୍ଧନା ସହ ଉପନିଷଦୀୟ ଆତ୍ମା/ବ୍ରହ୍ମ-ତତ୍ତ୍ୱ ପରଂପରାନୁସୃତ ନିରାକାର ବ୍ରହ୍ମଧାରଣ ପୁଣି ସଗୁଣ ଭକ୍ତି ଉପାସନା ସହିତ ପାଶ୍ଚାତ୍ୟ ଏକେଶ୍ୱରବାଦ ଓ ପ୍ରେମଭକ୍ତିଭାବନା ତଥା ରସ ଓ ସୌନ୍ଦର୍ଯ୍ୟତତ୍ତ୍ୱର ଅମୂର୍ତ୍ତ ଚେତନାତ୍ମକ ଶୈଳିକ ଦୃଷ୍ଟିଭଂଗୀର ସାମଂଜସ୍ୟ ସ୍ଥାପନ ଭିତରେ ମଧୁସୂଦନଂକ କାବ୍ୟ-ପ୍ରେରଣା ଓତଃପ୍ରୋତ ଆଧ୍ୟାତ୍ମିକ । ତାଂକର ଜୀବନ ଓ ସାହିତ୍ୟରେ ରହସ୍ୟବାଦର ଅବତାରଣା ଧର୍ମଚେତନା ପ୍ରଣୋଦିତ ବୋଲି କହିବା ମୂଳରେ ବୋଧହୁଏ ଏହି ତାତ୍ପର୍ଯ୍ୟ ନିହିତ ଯେ—କବି ଜୀବନର ସର୍ବବିଧ ସ୍ୱରୂପରେ ଏକ ଅପାର୍ଥିବ ଦିବ୍ୟ ଈଶ୍ୱର ସଚେତନତା ସହ ନିରଂତର ଜଡ଼ିତ ରହିଥିଲା । ତାଂକର ସମଗ୍ର ଜୀବନର ଚିଂତାଧାରା ଓ କର୍ମପ୍ରବାହ ସେହି ଦିବ୍ୟ ପ୍ରେରଣାଜାତ ବୋଲି ସେ ଅନୁଭବ କରୁଥିଲେ ଏବଂ ସେହି ପ୍ରେରଣା ଲବ୍ଧ ନିର୍ଦ୍ଦେଶର ସଫଳ ରୂପାୟନ ତାଙ୍କର ଅଧ୍ୟାତ୍ମ ସାଧନାର ରହସ୍ୟ ଥିଲା । ତାଂକ ବ୍ୟକ୍ତିତ୍ୱରେ ଧର୍ମ ଓ ଜୀବନର ଅନୁଭୂତି ଏକାକାର ହୋଇଯାଇଥିଲା । ଫଳରେ ଏକ ନିର୍ଦ୍ଦିଷ୍ଟ ରୀତି ନିୟମ ପରିସୀମିତ ବାହ୍ୟିକ ଆଚାର ପଦ୍ଧତିର ଅନୁବର୍ତ୍ତୀନ ପରିବର୍ତ୍ତେ ଆତ୍ମାର ସ୍ୱରୂପ ଉପଲବ୍ଧି ତଥା କର୍ମମାଧ୍ୟମରେ ତାର ସାର୍ଥକତା ଆନୟନ—ତାଂକର ପ୍ରକୃତ ଧର୍ମ ସାଧନାର ସ୍ୱରୂପ ଥିଲା ।

Digitized by PPRACHIN, SOA

ଦର୍ଶନର 'ପରତତ୍ତ୍ୱ' ଧର୍ମାନୁଚିନ୍ତନରେ 'ଈଶ୍ୱରତତ୍ତ୍ୱ' ରୂପେ ଅଭିବ୍ୟକ୍ତ । ବ୍ୟକ୍ତିଗତ ଉପଲବ୍ଧିରେ ସେହି ଅବ୍ୟକ୍ତ, ଅରୂପ ଓ ସର୍ବସ୍ଥିତିଙ୍କୁ ଏକାନ୍ତ ଆତ୍ମିକ, ଅନ୍ତରତମ ଓ ଅନ୍ତର୍ଯାମୀ ରୂପେ ଉପଲବ୍ଧି କରିବାହିଁ ରହସ୍ୟୋପଲବ୍ଧି ! ତତ୍ତ୍ୱର ପରମ ଏହି ଅବସ୍ଥାରେ ହିଁ ଅନୁଭୂତିର 'ଏକତମ' ରୂପେ ରହସ୍ୟସାଧନାରେ ବ୍ୟକ୍ତ ହେବତ । ମଧୁସୂଦନଙ୍କ କାବ୍ୟଚେତନାରେ ଏହି ବ୍ୟକ୍ତ—ଅନୁଭୂତି ତାତ୍ତ୍ୱିକ ଜିଜ୍ଞାସାର ଭାଷାଭିବ୍ୟକ୍ତି ଲାଭକରିଛି । ତାହି ହିଁ ମଧୁସୂଦନ ସାହିତ୍ୟର ରହସ୍ୟବାଦୀ ପୃଷ୍ଠଭୂମି ।

ବାଲ୍ୟକାଳରୁ ଈଶ୍ୱରପ୍ରୀତି, ତାଙ୍କର ସମଗ୍ର ଜୀବନକୁ ଏକ ନିର୍ଦ୍ଦିଷ୍ଟ ଅଧ୍ୟାତ୍ମ ଆଦର୍ଶର ରୂପଦାନ କରିଥିଲା । ଖ୍ରୀଷ୍ଟାବ୍ଦ ୧୮୭୦ରେ ସେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । ଉପନିଷଦୀୟ ଅଧ୍ୟାତ୍ମ ଉପଲବ୍ଧିର ମୂଳଭିତ୍ତିରେ ପ୍ରାଣ ପ୍ରତିଷ୍ଠା ଲାଭ କରିଥିବା ବ୍ରାହ୍ମଧର୍ମରେ ପାଶ୍ଚାତ୍ୟ ଏକେଶ୍ୱର ଉପାସନାର ସାଧନାପାର୍ଶ୍ୱଟି ମଧୁସୂଦନଙ୍କୁ ଗଭୀର ଭାବେ ଆକୃଷ୍ଟ କରିଥିଲା ।

ଊନବିଂଶ ଶତକରେ ଭାରତବର୍ଷରେ ବ୍ରାହ୍ମଧର୍ମ ଓ ବ୍ରାହ୍ମସମାଜ ପ୍ରଚଳିତ ଧର୍ମଧାରଣା ଓ ସମାଜ ଜୀବନର ପ୍ରତିକ୍ରିୟାସଂଭୂତ ଏକ ଐତିହାସିକ ଅଭ୍ୟୁତ୍ଥାନ ରୂପେ ସୃଷ୍ଟିହୋଇଥିଲା । ରାଜା ରାମମୋହନରାୟଙ୍କ ଦ୍ୱାରା ଖ୍ରୀଷ୍ଟାବ୍ଦ ୧୮୨୮ ଅଗଷ୍ଟ ୨୦ରେ ବ୍ରାହ୍ମସମାଜର ପ୍ରତିଷ୍ଠା ଓ ୧୮୭୦ରେ ଜୋଡ଼ାସାଂକୋରେ ବ୍ରାହ୍ମମନ୍ଦିରର ଉଦ୍‌ଘାଟନ ହୁଏ । ପ୍ରତିମାପୂଜା ନିରୋଧ, ନିରାକାର ଏକେଶ୍ୱରଙ୍କର ଉପାସନା ଓ ପବିତ୍ର ନିର୍ମଳ ଅଧ୍ୟାତ୍ମ ଜୀବନ ବ୍ରାହ୍ମ-ଉପାସନା ପଦ୍ଧତିର ବିଶେଷତ୍ୱ ଥିଲା । ବ୍ରାହ୍ମଧର୍ମର ପ୍ରଧାନ ସ୍ରଷ୍ଟା ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କର ଚିନ୍ତା ଓ ଉପଲବ୍ଧିର ଉତ୍ସ ଥିଲା ଉପନିଷଦ । 'ଈଶୋପନିଷଦ୍'ର 'ଈଶାବାସମିଦଂସର୍ବଂ'କୁ ସେ ଜୀବନର ମନ୍ତ୍ର ସ୍ୱରୂପ ଲାଭ ଓ ଦେବନ କରିଥିଲେ । ଦେବେନ୍ଦ୍ରନାଥଙ୍କ ଉପାସନା ଓ ପ୍ରାର୍ଥନାସଂଗୀତଗୁଡ଼ିକ ଗଭୀର ଆତ୍ମନିବେଦନ ତଥା ପ୍ରକୃତିର ସୌନ୍ଦର୍ଯ୍ୟ ଶ୍ରୀର ଧ୍ୟାନଗମ୍ଭୀର ଭାବତନ୍ମୟତା ଉପରେ ଆଧାରିତ ଥିଲା । ପୁନଶ୍ଚ ସୁଫୀ କବି ହାଫିଜଙ୍କ ପ୍ରେମାତ୍ମକ ରହସ୍ୟ ଚେତନାର ପ୍ରଭାବ ତାଂକର ପ୍ରକାଶ ଭଂଗୀକୁ ପ୍ରଭାବିତ କରିଥିଲା । ଏହି ଜ୍ଞାନାତ୍ମିକା ଉପାସନାର ଗଭୀରତା ମଧୁସୂଦନଙ୍କ ଭାବଚେତନାକୁ ସ୍ପର୍ଶ କରିଥିଲା । ପୁନଶ୍ଚ କେଶବଚନ୍ଦ୍ର ସେନଙ୍କ ପ୍ରଭାବରେ ବ୍ରାହ୍ମଧର୍ମରେ ଖ୍ରୀଷ୍ଟୀୟ ଉପାସନା ଓ ବୈଷ୍ଣବ ଭକ୍ତି- ତନ୍ମୟତାର ଅନୁପ୍ରବେଶ ଘଟିଥିଲା । ମଧୁସୂଦନ ଦେବେନ୍ଦ୍ରନାଥ ପ୍ରବର୍ତ୍ତିତ ଆଦି ବ୍ରାହ୍ମସମାଜରେ ଦୀକ୍ଷିତ ହୋଇଥିଲେ ମଧ୍ୟ କେଶବଚନ୍ଦ୍ରଙ୍କ ଭକ୍ତିସାଧନା ଓ ମାନବତା ବାଦ ଦ୍ୱାରା ପ୍ରଭାବିତ ହୋଇଥିଲେ ।

ବ୍ରାହ୍ମଧର୍ମ ନିରାକାର-ଉପାସନାକୁ ଗ୍ରହଣ କରିଥିଲା ଏବଂ ବ୍ରହ୍ମୋପଲବ୍ଧିକୁ ଏକ ମାନସିକ ତତ୍ତ୍ୱ ଜିଜ୍ଞାସା ରୂପେ ଗ୍ରହଣ ନକରି ବ୍ରାହ୍ମଧର୍ମରେ ଆତ୍ମୋପଲବ୍ଧି ମାର୍ଗରେ ପ୍ରତିଷ୍ଠାର ସ୍ୱୀକୃତି ଦେଇଥିଲା । ଅମୂର୍ତ୍ତ ଈଶ୍ୱରଙ୍କର ତ୍ରିବିଧ ପ୍ରକଟ-ରୂପ ସ୍ୱୀକୃତ ଯଥା—ପ୍ରକୃତି, ଇତିହାସ ଓ ମାନବାତ୍ମା । ପ୍ରକୃତି ଓ ଇତିହାସ ଭିତରେ ଈଶ୍ୱରଙ୍କ ପ୍ରକାଶ ସ୍ଥାନକାଳକୁ ଅବଲଂବନ କରି ଅର୍ଥାତ୍ ଖଂଡ଼ିତ ମାନବର ଆତ୍ମା ଭିତରେ ହିଁ ତାଙ୍କର ସମୁଦାୟ ଅଖଂଡ଼ ପୂର୍ଣ୍ଣରୂପର ଉଦ୍‌ଭାସ । କୌଣସି 'ମଧ୍ୟବର୍ତ୍ତୀ ଉପସ୍ଥିତିର'

Digitized by PPRACHIN, SOA

ଚେତନାରହିତ ଆତ୍ମାରେ ପରମାତ୍ମାଙ୍କର ଆବିର୍ଭାବର ଉପଲବ୍ଧିହିଁ ବ୍ରହ୍ମୋପଲବ୍ଧି ।[୧] କେଶବସେନଙ୍କର ଉପସ୍ଥାପନାରେ ହିଁ ବ୍ରାହ୍ମ ଉପାସନା ଈଶ୍ୱରୋପଲବ୍ଧିର ରହସ୍ୟାତ୍ମିକତାକୁ ସ୍ୱୀକୃତ ଦେଇଥାଏ ।

ବ୍ରାହ୍ମଧର୍ମର ପ୍ରତିପାଦନରେ ବ୍ୟକ୍ତିର ନିର୍ମଳ ପବିତ୍ର ଜୀବନ ସହ ଅନ୍ତରର ଗଭୀର ବିଶ୍ୱାସ ଓ ଶ୍ରଦ୍ଧା ବ୍ରହ୍ମ ଉପଲବ୍ଧି ପାଇଁ ବ୍ୟକ୍ତିକୁ ପ୍ରସ୍ତୁତ କରେ । ବିଶ୍ୱାସର ଭିତ୍ତିଭୂମିରେ ହିଁ ପରମ ସହ ବ୍ୟକ୍ତି ଆତ୍ମାର ସଂଯୋଗ ସ୍ଥାପିତ ହୁଏ । ବିଶ୍ୱାସ ହେଉଛି ପ୍ରତ୍ୟକ୍ଷ-ଦର୍ଶନ ଈଶ୍ୱର ଓ ଶାଶ୍ୱତଙ୍କୁ ଏହା ସାକ୍ଷାତ କରେ ।[୨] କେଶବଚନ୍ଦ୍ର 'ଦିବ୍ୟଦୃଷ୍ଟି' ଓ ଦିବ୍ୟବାଣୀରେ ବିଶ୍ୱାସୀ । ଈଶ୍ୱରଙ୍କ ବାଣୀ ସ୍ୱରହୀନ, ଭାଷାହୀନ, ଭଂଗୀହୀନ ଅନ୍ତର୍ଧ୍ୱନି ରୂପେ ପ୍ରୀତିପୂର୍ଣ୍ଣ ବିଶ୍ୱାସ- ସ୍ଥିର ନୀରବ ହୃଦୟରେହିଁ ସଂଗୃହୀତ ଓ ସ୍ପନ୍ଦିତ ହୋଇଥାଏ । ଦିବ୍ୟଧ୍ୱନିର ସ୍ପର୍ଶମାତ୍ରେ ଆତ୍ମା ଆଲୋକିତ, ସଜୀବିତ ଓ ସମ୍ପ୍ରେରିତ ହୋଇଯାଏ ।[୩] ବ୍ରହ୍ମୋପାସନାର ଏହି ବିଶ୍ୱାସ, ଶ୍ରଦ୍ଧା, ଆଶା ଓ ଦିବ୍ୟଦୃଶ୍ୟ ଏବଂ ବାଣୀ ମାଧ୍ୟମରେ ଦିବ୍ୟସଂଯୋଗ ମଧୁସୂଦନଙ୍କ ରଚନାର ମୁଖ୍ୟ ବର୍ଣ୍ଣନୀୟ ।

ଖ୍ରୀଷ୍ଟାବ୍ଦ ୧୮୭୦ରେ ଧର୍ମାନ୍ତର ଗ୍ରହଣ ପରେ ବିଭିନ୍ନ ଉପାସନାକାଳୀନ ଉଦ୍‌ବୋଧନ ଓ ରଚନାମାନଙ୍କରେ ମଧୁ-ମାନସରେ ଧର୍ମଚେତନାର ଏକ ନିର୍ଦ୍ଦିଷ୍ଟ କ୍ରମ-ପରିଣାମୀ ଅଭିବ୍ୟକ୍ତି ଲକ୍ଷ୍ୟ କରାଯାଇପାରେ । 'ଜୀବନ ମଧ୍ୟରେ ବ୍ରହ୍ମକୃପା ରୂପ ମନ୍ଦିର ସଂଗଠନ'—କେବଳ ତାଂକର ଧର୍ମୀୟ ଅଭିଭାଷଣ ନଥିଲା, ଏହା ତାଙ୍କର ଆତ୍ମିକସାଧନା ଓ ଆଚରିକ ପାଳନା ମଧ୍ୟ ଥିଲା । ବିଶ୍ୱାସ, ତାଙ୍କର ଧର୍ମାନୁଚିନ୍ତା ନିର୍ଦ୍ଦିଷ୍ଟ ଧର୍ମଧାରଣାକେନ୍ଦ୍ରିକ ନହୋଇ ବରଂ ମାନବାତ୍ମାର ଧର୍ମରେ ପରିଣତ ହୋଇଥିଲା ବୋଲି ବୁଝାଯାଇପାରେ । ମଧୁସୂଦନଙ୍କ ଏ ଧର୍ମ 'ପୂର୍ଣ୍ଣଧର୍ମ'[୪] ରୂପେ ଅନୁଶୀଳିତ ଯାହା ଆତ୍ମଧର୍ମ ରୂପେ ହିଁ ଅଭିକଳ୍ପିତ ।

ମଧୁସୂଦନଙ୍କ ସାହିତ୍ୟର ଆତ୍ମିକ ବିଭବ ଓ ଆଂଗିକ ବିନ୍ୟାସରେ ଏ ଆଧ୍ୟାତ୍ମିକତା ଯୁଗୋପଯୋଗୀ ପ୍ରକାଶ ବୈଶିଷ୍ଟ୍ୟକୁ ଅନୁସରଣ କରିଛି । ଇତିହାସର ବିବେଚନାରେ ଊନବିଂଶ ଶତକର

---

1 "One highest revelation is the inspiration where spirit communes with spirit, face to face, without mediation what-so-ever."

Pratap Ch, Mazumdar—'Keshab Chandra Sen'—P 115

2 "Faith is the direct vision"—

K. C. Sen—qt—P. C Mazumdar:. K. C. Sen—P 118

3 "The voice of God is a clear communication of wisdom a quickening influence, an over powering impulse, a strong combination of events in life pointing to a lesson for guidance, as a sudden and awakening of the whole soul."

P.C. Mazumdar 'K. C. —Sen' — P 225

୪ ଆମ୍ଭେମାନେ ପୂର୍ଣ୍ଣଧର୍ମର ପ୍ରୟାସୀ—
ମଧୁସୂଦନ ରାଓ ଉଦ୍ଧୃତ—"ଆଧୁନିକ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି ଓ ଦିଗ୍‌ଦର୍ଶନ
(ଡ଼ଃ ନଟବର ସାମନ୍ତରାୟ)—ପୃ ୩୨୫

Digitized by PPRACHIN, SOA

ଦ୍ୱିତୀୟାର୍ଦ୍ଧ ଓଡ଼ିଶାର ସର୍ବତୋମୁଖୀ ଜାଗରଣ ପର୍ବ । ପୁରାତନ ପ୍ରତି ସଂଶୟ ଓ ନୂତନ ପ୍ରତି ଆକର୍ଷଣର ଦ୍ୱନ୍ଦ୍ୱ ଭିତରେ ପ୍ରାଚୀନର ବର୍ଜନ, ସଂସ୍କରଣ ତଥା ନୂତନର ଗ୍ରହଣ ସହ ପ୍ରାଚୀନ ଓ ନବତନର ସମନ୍ୱୟଜନିତ ରୂପାନ୍ତରର ପ୍ରୟାସ ମଧ୍ୟ ଉତ୍କଳର ନବୋଦିତ ଚେତନା ଭୂମିରେ ପରିଲକ୍ଷିତ ହେଉଥିଲା । ପାଶ୍ଚାତ୍ୟ ଭାବଧାରା ପ୍ରଭାବିତ ଏ ଦେଶର ଶିକ୍ଷିତ ରୁଚି ଉତ୍କଳର ନବନିର୍ମାଣ ପଥରେ ସମାଜ ଓ ସାହିତ୍ୟକୁ ଅଗ୍ରାଧିକାର ଦେଇଥିଲା । ସାହିତ୍ୟକ୍ଷେତ୍ରରେ ନବରୁଚିପ୍ରାପ୍ତ ଏହି ମାନସିକତା ପାରମ୍ପରିକ ରୀତିସାହିତ୍ୟରେ ଚର୍ଚ୍ଚିତ ସ୍ଥୂଳ ଆଦିରସର ଘୋର ବିରୋଧୀ ହୋଇପଡ଼ିଥିଲା । ପୁନଶ୍ଚ ଶିକ୍ଷାର ମାଧ୍ୟମ ରୂପେ ବିଦ୍ୟାଳୟର ପାଠ୍ୟ ହେବା ପାଇଁ ଏ ସାହିତ୍ୟ ଶୃଙ୍ଗାର-ବିରୋଧୀହେବା ଏ ଯୁଗ ଚେତନାର ଅନ୍ୟତମ ସ୍ୱାଭାବିକ ଅଭିପ୍ରାୟ ଥିଲା । ଏହି ପରିପ୍ରେକ୍ଷୀରେ ଏକ ଶୋଭନ, କଳାତ୍ମକ ଭଙ୍ଗୀ ସାହିତ୍ୟ ସୃଷ୍ଟିର ଦିଗ୍‌ଦର୍ଶକ ରୂପେ ଉତ୍କଳର ଶ୍ରଦ୍ଧା-ଅର୍ଘ୍ୟ ଭକ୍ତକବି ମଧୁସୂଦନଙ୍କର ଋଷି ବ୍ୟକ୍ତିତ୍ୱକୁ ହିଁ ଯଥାର୍ଥ ନିବେଦିତ ହୋଇଛି । ମଧୁସୂଦନଙ୍କ ଜୀବନଦର୍ଶନ ଓ ଧର୍ମାନୁଚିନ୍ତା ସ୍ୱରୂପତଃ ଏକ ଏବଂ ତାଙ୍କର କାବ୍ୟ-କୃତି ସେହି ଚେତନାର ସାହିତ୍ୟିକ ଅଭିବ୍ୟକ୍ତି ମାତ୍ର । ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ଶିଳ୍ପରୀତିର ପ୍ରବର୍ତ୍ତନା କରି ପାରମ୍ପରିକ ଅଧ୍ୟାତ୍ମ ଚେତନାସହ ନବଚିନ୍ତାମାନଙ୍କର ସମନ୍ୱୟରେ ସେ ଗଦ୍ୟ ପଦ୍ୟ ଉଭୟ କ୍ଷେତ୍ରରେ କ୍ରାନ୍ତିର ଦିଗ୍‌ବଳୟକୁ ଉନ୍ମୋଚନ କରିଛନ୍ତି ।

ମଧୁସୂଦନଙ୍କ ସାହିତ୍ୟ ସାଧନାର ସମୟ ଖ୍ରୀଷ୍ଟାବ୍ଦ ୧୮୭୩ ଠାରୁ ୧୯୧୨ ପର୍ଯ୍ୟନ୍ତ । ପ୍ରାଥମିକ ରଚନା 'ନିଶୀଥଚିନ୍ତା' ଓ 'ନିର୍ବାସିତାର ବିଳାପ'—ଦୁଇଟି ଇଂରେଜୀ କବିତାର ମର୍ମାନୁବାଦ । ଏଥିରେ ତାଙ୍କର ସହଜାତ ଅଧ୍ୟାତ୍ମସଚେତନତାର କିଛି ସଙ୍କେତ ରହିଛି । ଖ୍ରୀ ୧୮୭୮ର ପରବର୍ତ୍ତୀ ରଚନାମାନଙ୍କରେ ସେ ସଚେତନତାର ଏକ କ୍ରମପ୍ରସାରୀ ଓ କ୍ରମୋନ୍ନତ ବିକାଶଧାରାକୁ ଲକ୍ଷ୍ୟ କରାଯାଇପାରେ । ଖ୍ରୀ ୧୮୭୮ରେ ରଚିତ 'ଜୀବନଚିନ୍ତା' ରେ ସେ ଅଧ୍ୟାତ୍ମ ସଚେତନା ସ୍ପଷ୍ଟ ଅଭିବ୍ୟକ୍ତି ଲାଭକରିଛି ଏବଂ ତାର ବିକଶିତତମ ରୂପ 'ହିମାଚଳେ ଉଦୟ ଉତ୍ସବ' (୧୯୧୧) । ତାଙ୍କର ପ୍ରାୟ ସମସ୍ତ ପଦ୍ୟାତ୍ମିକ ରଚନା ଧର୍ମ ଓ ଈଶ୍ୱର ସମ୍ବନ୍ଧୀୟ ତଥାପି ଛନ୍ଦମାଳା, ପ୍ରଭାତ, ଆକାଶପ୍ରତି, ଆଶା, ଉଦ୍‌ବୋଧନ, ନବବସନ୍ତଭାବନା, ଋଷିପ୍ରାଣେ ଦେବାବତରଣ, ଏ ସୃଷ୍ଟି ଅମୃତମୟ, ଓ ହିମାଚଳେ ଉଦୟ ଉତ୍ସବ ପ୍ରଭୃତି କବିତାଗୁଡ଼ିକହିଁ ତାଙ୍କର ଅଧ୍ୟାତ୍ମୋନ୍ମୁଖୀ ହୃଦୟାନୁଭୂତିର ସ୍ୱାତନ୍ତ୍ର୍ୟ-ପରିମଣ୍ଡିତ ଓ ସମଗ୍ର କାବ୍ୟିକ ପ୍ରୟାସକୁ ଏକ ନିର୍ଦ୍ଦିଷ୍ଟ ରୂପଦାନ କରିବା ପାଇଁ ସମର୍ଥ।* ମଧୁସୂଦନଙ୍କ କବିତାଗୁଡ଼ିକରେ ଅଧ୍ୟାତ୍ମଚେତନାର ଦୁଇଟି ସ୍ୱରୂପ ପରିଲକ୍ଷିତ ହୋଇଥାଏ । ଗୋଟିଏ ହେଲା-ତାଙ୍କର ଅନୁଭୂତି, ଅପରଟି ତାଙ୍କର ଚିନ୍ତାଧାରା—ଯାହା ସେହି ଅନୁଭୂତି ଓ ମନନଶୀଳତାର ତାତ୍ତ୍ୱିକ ରୂପାୟନ । ଅର୍ଥାତ୍ ଗୋଟିଏ ଧାରା ଅଧ୍ୟାତ୍ମ ଉପଲବ୍ଧି — ଅପର ଧାରାଟି ଅଧ୍ୟାତ୍ମ-ତତ୍ତ୍ୱ-ବିଚାର । 'ଅଧ୍ୟାତ୍ମ ତତ୍ତ୍ୱ' ସମ୍ପର୍କରେ "ଅଧ୍ୟାତ୍ମ-ତତ୍ତ୍ୱ-ଚିନ୍ତା ² ନାମରେ ପ୍ରକାଶିତ ପ୍ରବନ୍ଧରୁ ତାଙ୍କର ସ୍ୱକୀୟଦର୍ଶନ

* "ଏଇ କବିତାମାନଙ୍କୁ ସେମାନଙ୍କର ରଚନା କାଳ ଅନୁସାରେ ସଜାଇ ସେମାନଙ୍କର ଧର୍ମାନୁଚିନ୍ତା, ରସଗ୍ରାହିତା ତଥା ଶିଳ୍ପ କୌଶଳର ନିର୍ଦ୍ଦିଷ୍ଟ କ୍ରମାଭିବ୍ୟକ୍ତିର ସୁପରିଣତ ଧାରାଟିକୁ ଆବିଷ୍କାର କରାଯାଇପାରେ ।"

ନଟବର ସାମନ୍ତରାୟ—'ଆଧୁନିକ ଓଡ଼ିଆ କବିତାର ପୃଷ୍ଠଭୂମି—ପୃ ୩୪୨

୨ 'ଉତ୍କଳ ସାହିତ୍ୟ ୧/୧ ୧ମ, ୨ୟ ଓ ୪ର୍ଥ ସଂଖ୍ୟା ଦ୍ରଷ୍ଟବ୍ୟ ।

Digitized by PPRACHIN, SOA

ଓ ଚିଂତାଧାରାର ସମ୍ୟକ୍ ପରିଚୟ ମିଳିଥାଏ । ଉକ୍ତ ପ୍ରବଂଧର ବ୍ୟାଖ୍ୟା ଅନୁସାରେ–(୧) ଆତ୍ମା ଯେଉଁ ପରମ ସତ୍ୟର ସଂଧାନ ପାଇଁ ନିତ୍ୟ ବ୍ୟାକୁଳ, ସେହି ପରମ ସତ୍ୟ 'ଗହ୍ୱରେଷ୍ଟ' ବା ହୃଦୟରେ ସ୍ଥିତ; ଐକାନ୍ତିକ ନିଷ୍ଠା ଓ ଅଧ୍ୟାତ୍ମ ଯୋଗରେ ତାଂକର ସଂଧାନ ମିଳିଥାଏ, ସେହି ସଂଧାନ ଲାଭହେଲେ ମାନବାତ୍ମା ନିଜକୁ ଅମୃତଜାତ ଓ ଅମରତ୍ୱର ଅଧିକାରୀବୋଲି ଜାଣେ ।' (୨) ଏହି ଉପଲବ୍ଧିର ପଥ ବିଶ୍ୱାସ ଓ ପ୍ରତ୍ୟୟ । ତର୍କ ଓ ଶାସ୍ତ୍ରର ମାର୍ଗରେ ଏହି ଜ୍ଞାନ ମିଳେ ନାହିଁ । (୩) ଏହି ସତ୍ୟ ବିଦେହି, ନିରାଲଂବ, ନିତ୍ୟ, ଏକ ଓ ଅଦ୍ୱିତୀୟ । ସେ ପୂର୍ଣ୍ଣ ଜ୍ଞାନ, ପ୍ରେମ ଓ ଆନଂଦ ସ୍ୱରୂପ । (୪) ବିଶ୍ୱଜଗତ ତାଙ୍କର ଅଭିବ୍ୟକ୍ତିର ରୂପାୟନ । ଜୀବ ଜଡ଼ ଓ ପରମାତ୍ମାଂକ ସହ ସ୍ନେହ ପ୍ରକଟନର ସୂତ୍ରରେ ସଂବଂଧିତ । (୫) ଜୀବ ଆପଣାର ସୀମାର ଅପୂର୍ଣ୍ଣତ୍ୱକୁ ଉଲ୍ଲଂଘନ କରି ପୂର୍ଣ୍ଣତାକୁ ଯାତ୍ରା କରିବାରେ ହିଁ ଏହି ସୃଷ୍ଟି କ୍ରିୟାର ସାର୍ଥକତା । (୬) ଜ୍ଞାନ ପ୍ରେମ ଓ କର୍ମ ମାଧ୍ୟମରେ ଅସୀମ ପ୍ରତି ସେହି ଅଭିମୁଖିତାର ସମ୍ପାଦନା ହୋଇଥାଏ । (୭) ଅସୀମ-ପ୍ରାପ୍ତିରେ ସକଳ ସୀମା ବଂଧନର ବିନାଶ, କାର୍ଯ୍ୟର ସମାପ୍ତି, ଆନନ୍ଦ, ଜ୍ଞାନ ଓ ପ୍ରେମର' ସମ୍ପୂର୍ଣ୍ଣ ବିକାଶ ।

ମଧୁସୂଦନଂକର ଏହି ଚିଂତାଧାରର କ୍ରମବିକାଶ ପର୍ଯ୍ୟାୟ ଆଲୋଚନା ପାଇଁ ତାଂକର ରଚନାଗୁଡ଼ିକର ଉପାଦେୟତା ବହୁମୂଲ୍ୟ । ଖ୍ରୀ ୧୮୭ଂରେ ଧର୍ମାଂତର ଗ୍ରହଣ ପରେ ତାଂକର ଅଧ୍ୟାତ୍ମ ଜିଜ୍ଞାସାର ପ୍ରଥମ ନିର୍ଦ୍ଦିଷ୍ଟ ସଙ୍କେତ ଦେଖିବାକୁ ମିଳେ ଖ୍ରୀ ୧୮୮୦ ର ମଧ୍ୟରେ । ଖ୍ରୀ ୧୮୭୮ ରେ ପ୍ରକାଶିତ 'ଜୀବନଚିଂତା' ଏହି ସମ୍ବନ୍ଧର ଏକ ପ୍ରତିନିଧି ସ୍ଥାନୀୟ ରଚନା । ଭିକ୍ତିବସ୍ତୁ ପାରଂପରିକ ଶାଂକର ଭାଷ୍ୟ ଓ ମନବୋଧ ଚଉତିଶା ପର୍ଯ୍ୟାୟବାଚୀ 'ମୋହମୁଦ୍‌ଗରୀୟ' 'ବ୍ରହ୍ମସତ୍ୟ ଜଗନ୍ମିଥ୍ୟା' ତତ୍ତ୍ୱ ଉପରେ ପର୍ଯ୍ୟବସିତ ହୋଇଥିଲେହେଁ କବିଂକ ବ୍ୟକ୍ତିଗତ ଜୀବନର ଏକ ବଳିଷ୍ଠ ଉପଲବ୍ଧିମୂଳକ ଆତ୍ମ-ଜିଜ୍ଞାସା ଓ ପ୍ରତ୍ୟୟବୋଧ ଏଠାରେ ରୂପଲାଭ କରିଛି । ଦୃଶ୍ୟମାନ ଜଗତର ଅନିତ୍ୟତା, ଏକ ଶାଶ୍ୱତର ଆକାଂକ୍ଷା ଓ ଅନୁସନ୍ଧାନ, ଅଂତର ଭିତରେ ଅମର ଆତ୍ମାର ଆବିଷ୍କାର ଓ ବିଭୂକୃପାର ଉପଲବ୍ଧି, ପରମଂକୁ ସେହି ଆତ୍ମାର ପୂର୍ଣ୍ଣ ସମର୍ପଣ ଦ୍ୱାରା ଜୀବନର ସାର୍ଥକତା ଲାଭ ପ୍ରଭୃତି ପ୍ରସଂଗରେ 'ଆତ୍ମୋଦୟ' ବା ରହସ୍ୟତତ୍ତ୍ୱର ପରିଭାଷାରେ ଉନ୍ମେଷ କାଳର ସୂଚନା ମିଳେ । ଅର୍ଥାତ୍ ଆତ୍ମାର ଅବିନାଶୀ ଶାଶ୍ୱତ ରୂପ, ପରମାତ୍ମାଙ୍କ ସାକ୍ଷାତଲାଭର ନିଶ୍ଚିତତା ଏବଂ ଏହି ସାକ୍ଷାତ୍କାର ପାଇଁ ବିଭିନ୍ନ ପନ୍ଥାର ନିର୍ଦ୍ଦେଶ ଭିତରେ କବିଂକ ଚେତନା ଭୂମିରେ ଅଧ୍ୟାତ୍ମ ଯାତ୍ରା ନିମନ୍ତେ ପ୍ରସ୍ତୁତି ପର୍ବର ଏକ ନିଶ୍ଚିତ ସଙ୍କେତ ମିଳେ । ଏ ଯାତ୍ରାର ଶେଷ ସଂଗୀତ କବିଂକ ଶେଷ ଜୀବନରେ ରଚିତ 'ହିମାଚଳେ ଉଦୟ ଉତ୍ସବ' । ବସ୍ତୁତଃ ଜୀବନଚିଂତା କବିଙ୍କ ଅଧ୍ୟାତ୍ମ ଜାଗୃତିର ପ୍ରଥମ ସ୍ପଷ୍ଟ ସଙ୍କେତ ରୂପ ।[୭]

---

୭ "ଜୀବନଚିଂତା ମଧୁସୂଦନ କିଂବା ଜାଗତିକ ଜୀବଂକ ଜୀବନଚିଂତାର କେବଳ ଦ୍ରଷ୍ଟାକ ନୁହେ । ଏହା ମଧୁସୂଦନଂକ ଅଧ୍ୟାତ୍ମ ଚିଂତାର ଆଦି ବର୍ତ୍ତିକାବହ ମଧ୍ୟ । × × ମଧୁସୂଦନଂକ ଅଧ୍ୟାତ୍ମତତ୍ତ୍ୱ ସଂବଂଧୀୟ କବିତାବଳୀର ଯଥାର୍ଥ ପର୍ଯ୍ୟାଲୋଚନା ପାଇଁ ଜୀବନଚିଂତାକୁ ଏକ ସାର୍ଥକ ପ୍ରଥମ କବିତା ରୂପେ ସହଜରେ ଗ୍ରହଣ କରାଯାଇପାରେ ।

ଡ: ନଟବର ସାମନ୍ତରାୟ, ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ପୃ– ୩୪୭

Digitized by PPRACHIN, SOA

ଖ୍ରୀ: ୧୮୮୧ ୯୦ ଭିତରେ ରଚିତ କବିତାଗୁଡ଼ିକ ମୁଖ୍ୟତଃ ପରମ ସତ୍ତାଙ୍କର ପ୍ରକାଶମୟ ରୂପାଭିବ୍ୟକ୍ତି ସମ୍ପର୍କରେ ଅନୁଭୂତି ଓ ଅନୁଶୀଳନର ବାର୍ତ୍ତା ବହନ କରନ୍ତି । ଏଗୁଡ଼ିକୁ ଜଗତ ଓ ଜୀବନ ସମ୍ପର୍କରେ କବିଙ୍କର ସ୍ୱକୀୟ ଚିନ୍ତାଧାରାର ଦାର୍ଶନିକ ବିଶ୍ଳେଷଣ ବୋଲି କୁହାଯାଇପାରେ । ଏହି କବିତାଗୁଡ଼ିକରେ ପ୍ରକୃତି ଓ ଜୀବଜଗତ ପରମ ଅଚିନ୍ତ୍ୟଙ୍କର ବ୍ୟକ୍ତରୂପ ଭାବରେ କବି-ଅନୁଭୂତିର ମହିମାନ୍ୱିତ ସ୍ୱୀକୃତି ଲାଭ କରିଛନ୍ତି । ଆକାଶପ୍ରତି, ନଦୀପ୍ରତି, ପଦ୍ମ, ଶୋଭା (ଗ୍ରୀଷ୍ମମାଳା) ପ୍ରଭୃତି ପ୍ରକୃତି ରୂପଚେତନା-ମୂଳକ ରଚନାମାନଙ୍କରେ ପ୍ରକୃତି-ରହସ୍ୟତତ୍ତ୍ୱର ସେଇ ସଙ୍କେତ ଲକ୍ଷ୍ୟ କରାଯାଇପାରେ ଯାହା 'ଉଦ୍-ବୋଧନ' ରିଷିପ୍ରାଣେ ଦେବାବତରଣ'ରେ ନିର୍ଦ୍ଦିଷ୍ଟ ରୂପାନ୍ତରିତ ଲାଭକରି 'କୁସୁମାଞ୍ଜଳି' ପର୍ଯ୍ୟାୟରେ ପୂର୍ଣ୍ଣବିକାଶ ଲାଭ କରିପାରିଛି । 'ଜୀବନଚିନ୍ତା' ବ୍ରହ୍ମସତ୍ୟ/ଜଗତମିଥ୍ୟା ସିଦ୍ଧାନ୍ତ ଉପରେ କେନ୍ଦ୍ରୀଭୂତ । ମାତ୍ର ପ୍ରକୃତି-ସ୍ତବନମୂଳକ କବିତାମାନଙ୍କରେ ବୈଦିକ ପ୍ରକୃତିଚେତନା ତଥା ପାଶ୍ଚାତ୍ୟ ଅତୀନ୍ଦ୍ରିୟବାଦୀ ସୌନ୍ଦର୍ଯ୍ୟତତ୍ତ୍ୱ ସମ୍ମିଶ୍ରିତ ହୋଇ ପ୍ରାଣୋପଲବ୍ଧିରେ ରସାଣିତ ପ୍ରକାଶ ଲାଭକରିଛି । ପ୍ରତୀକଧର୍ମୀ ଏହି ପ୍ରକୃତି-ମୂଳକ କବିତାଗୁଡ଼ିକରେ ଏହି ଜଗତ ପରମଙ୍କର ନିଜ ଇଚ୍ଛାରେ ନିଜଠାରୁ ଉଦ୍ଦେଶ୍ୟମୂଳକ ଭାବେ ସୃଷ୍ଟ ହୋଇଥିବାରୁ ତାହା ମଧ୍ୟ ଦିବ୍ୟାଂଶରୂପେ ମହିମମୟ—ଏହି ପ୍ରତ୍ୟାଶିତ ଦୃଷ୍ଟିଭଙ୍ଗୀ ମୂଳରେ ନୂତନ ଅନୁଭୂତିର ସ୍ୱାକ୍ଷରକୁ ଅସ୍ୱୀକାର କରିହୁଏ ନାହିଁ । ସେହି ଅନୁଭୂତିର ବ୍ୟାଖ୍ୟା ସ୍ପଷ୍ଟରୂପେ 'ଆଶା', ଧ୍ୱନି, ନବବସନ୍ତଭାବନା' ଓ 'ବସନ୍ତଗାଥା'ରେ ପ୍ରକାଶିତ' । ତାହାକୁ ଅଧ୍ୟାତ୍ମଯାତ୍ରାର ମୁଖ୍ୟ ସାଧନପର୍ବ ରୂପେ ବିଚାର କରାଯାଇ ପାରେ ।

'ଜୀବନଚିନ୍ତା' ପରିବେଷିତ ନୀରସ ବୈରାଗ୍ୟଧର୍ମିତା ଓ ତାପସ ପ୍ରବୃତ୍ତି ଏହି ପର୍ଯ୍ୟାୟରେ କ୍ରମଶଃ ଜୀବନବାଦୀ ଏକ ବିଶ୍ୱତୋମୁଖୀ ଅନୁରାଗପ୍ରବଣତାର କ୍ରମ-ରୂପାନ୍ତରେ ଲାଭକରୁଥିବା ଲକ୍ଷ୍ୟ କରାଯାଇପାରେ । ପରମବ୍ରହ୍ମଙ୍କ ସର୍ବକାରଣତ୍ୱ ଓ ଆନନ୍ଦମୟତ୍ୱର ମହତ୍ତ୍ୱ ସମ୍ପର୍କରେ କ୍ଷୁଦ୍ର ଜୀବ ହୃଦୟର ଆସ୍ଥା, ଆଶା ଓ ବିଶ୍ୱାସର ଦ୍ୟୋତନା ଏଠାରେ ପ୍ରକାଶିତ । ପୁନଶ୍ଚ ପ୍ରତୀକଧର୍ମୀ କବିତାଗୁଡ଼ିକ କବିବ୍ୟକ୍ତିତ୍ୱର ଅସୀମପ୍ରାପ୍ତି ସମ୍ପର୍କରେ ଏକ ମଧୁର ଆଶ୍ୱାସନାମୂଳକ ପ୍ରତ୍ୟୟଦୀପ୍ତ ଦୃଷ୍ଟିଭଙ୍ଗୀର ପରିଚାୟକ । ସେହି ଆଶା ଆକାଂକ୍ଷାର ବିସ୍ତୃତ ଗଗନରେ ଉଭା 'ଅନନ୍ତ ମହେଶ୍ୱର' ବ୍ୟକ୍ତିଗତ ଚିତ୍ତ ଭୂମିରେ 'ମୋ ପ୍ରାଣ ସାଇଁ'ର[୮] ନିବିଡ଼ ଏକାତ୍ମକାକୁ ଅବତୀର୍ଣ୍ଣ । ଏହି ଅଭିବ୍ୟକ୍ତି ଭିତରେ ଋଷିହୃଦୋପ-ଲବ୍ଧିର ଏକ ଦୁରୂହ ସିଦ୍ଧାନ୍ତ ରୂପଲାଭ କରିଛି । ତତ୍ତ୍ୱର ସାର୍ବଜନୀନ ସର୍ବମୟ ଅନନ୍ତବ୍ରହ୍ମ ବ୍ୟକ୍ତି ପ୍ରାଣର ଏକାନ୍ତ ନିବିଡ଼ ବ୍ୟକ୍ତିଗତ ସଂପର୍କ ଭିତରେ ପ୍ରାଣସଖା ରୂପେ ଅଭିନନ୍ଦିତ । ତେଣୁ ପୂର୍ବ ପର୍ଯ୍ୟାୟର ତତ୍ତ୍ୱ ଓ ଦର୍ଶନର ବ୍ୟାଖ୍ୟାକାର ଏଠାରେ ଅନୁଭୂତି-ସିଦ୍ଧ ରହସ୍ୟକବିର ଅନ୍ତର୍ଦୃଷ୍ଟି ଲାଭକରି ହୃଦୟର ସ୍ଥିର ପ୍ରତ୍ୟୟ ଏବଂ ନିଷ୍କମ୍ପ ବିଶ୍ୱାସଦ୍ୟୁତିରେ ପ୍ରତିଷ୍ଠିତ ପ୍ରାଣାରାମଙ୍କ ସମ୍ପର୍କରେ ସନ୍ଦେଶ ଲାଭ କରିଛନ୍ତି । ସେ ପ୍ରାଣାରାମ ଅବଶ୍ୟ ଏବେ ବି ଅପ୍ରାପ୍ୟ ଓ ସୁଦୂର । ମାତ୍ର ନିଖିଳ ସୃଷ୍ଟି ମୂଳର ଐକ୍ୟସୂତ୍ର, ଭୂମାଙ୍କର ଆଦିକାରଣତ୍ୱ, ସର୍ବବ୍ୟାପକତ୍ୱ, ସତ୍ୟ ଜ୍ଞାନ-ପ୍ରେମ ସୌନ୍ଦର୍ଯ୍ୟ ଓ ଆନନ୍ଦମୟ ପ୍ରକାଶ-ରୂପ ସମ୍ପର୍କରେ କବିଙ୍କର ନିବିଅଭିଜ୍ଞା ସହ ନିଜ ହୃଦୟର ଦୃଢ଼ତା, ଅନୁରାଗ ପ୍ରବଣତା, ପାର୍ଥିବ ଗ୍ଲାନିବୋଧ ଓ ପରିଶୁଦ୍ଧି ପ୍ରୟାସ—ଏଇ ସବୁ ଅନ୍ତଃସାଧନାତ୍ମକ ଉପାଦାନ କବିଙ୍କର ପ୍ରାକ୍ 'ଦେବାବତରଣ' ରଚନାକାଳର

---

୮ "ଅନନ୍ତ ମହେଶ୍ୱରେ ମୋ ପ୍ରାଣସାଇଁ / ବୋଲି ବର୍ଜିବ ସଦା ଥିବ ଅନାଇଁ ।"
'ପଦ୍ମ'— ଗ୍ରନ୍ଥାବଳୀ ପୃ—୨

ମାନସିକ ସ୍ଥିତାବସ୍ଥାର ପରିପ୍ରକାଶକ । ଲକ୍ଷଣୀୟ, ଏ ରଚନାମାନଙ୍କରେ ଜୀବାତ୍ମାରେ ପରମାତ୍ମାଙ୍କର ଅବତରଣର ପ୍ରସଂଗ କୁତ୍ରାପି ଉଲ୍ଲିଖିତ ନାହିଁ । ଅଥଚ 'ଦେବାବତରଣ' ଓ ତତ୍ପରବର୍ତ୍ତୀ ବହୁରଚନାରେ ଏ ଉପଲବ୍ଧି ପ୍ରସଂଗର ସ୍ପଷ୍ଟ ସଂକେତ ବିଦ୍ୟମାନ । 'ଆଶା', 'ଧ୍ୱନି', 'ସଂଗୀତମାଳା', 'କହଂତଗାଥା', 'କୁସୁମାଂଜଳି' ର ଅନେକତ୍ର ଏଇ ଅର୍ଥବୋଧକ ଶବ୍ଦ ଓ ପଂକ୍ତିବିନ୍ୟାସ ଦୃଷ୍ଟିଗୋଚର ହୋଇଥାଏ । ଅନ୍ତରାଲୋକ ଓ ଅନ୍ତର୍ବାଣୀର ସାଂକେତିକ ଅଭିବ୍ୟକ୍ତି ଭିତରେ ଏହାର ସୂଚନା, ପୁଣି ଆନଂଦସ୍ନିଗ୍ଧ ଗ୍ରହଣଶୀଳତାର ପ୍ରସାରିତ ଚେତନାଭୂମିରେ ଏହାର ସ୍ପଷ୍ଟ ସ୍ୱୀକୃତି । ମୋଟ ଉପରେ ପ୍ରାକ୍ ଦେବାବତରଣ କବିତାଗୁଡ଼ିକ ଉନ୍ମେଷ ଓ ପରିଶୁଦ୍ଧି ପର୍ବର ଭାବମାନସ ସଂବହନ କରୁଥିବା ବେଳେ 'ଋଷିପ୍ରାଣେ ଦେବାବତରଣ' ଠାରୁ 'ହିମାଚଳେ ଉଦୟ ଉତ୍ସବ' ପର୍ଯ୍ୟନ୍ତ ଆଲୋକ-ପର୍ବର ହିଁ ରୂପସଂକେତ ପ୍ରଦାନ କରନ୍ତି ।

ଭାବବିଭବ ସହ ବସ୍ତୁ ବିନ୍ୟାସ ମଧ୍ୟ କ୍ରମ-ଶିଳ୍ପ ସାର୍ଥକତାର ମୁଦ୍ରାଂକନ ବହନ କରିଛି । ନିଛକ ତାତ୍ତ୍ୱିକତା ନିବିଡ଼ ରସୋପଲବ୍ଧିରେ ପରିଣତ ହେବାର ନିଦର୍ଶନ ଧାରଣକରି ପ୍ରଖ୍ୟାପନମୁଖର ତତ୍ତ୍ୱଗର୍ଭିତ ପାଣ୍ଡିତ୍ୟପୂର୍ଣ୍ଣ ନୀରସ ବାକ୍‌ଭଂଗୀ କ୍ରମଶଃ କାବ୍ୟିକ ସରସତା ଓ ପ୍ରାଣମୟ ଭାବୋଚ୍ଛ୍ୱାସର ଆବେଗଧର୍ମୀ ସାବଲୀଳତାକୁ ଲାଭକରିଛି । ପ୍ରାକ୍ ଦେବାବତରଣ ରଚନାବଳୀ ଭାବଗୌରବ ଓ ରସାତ୍ମକତା ଦୃଷ୍ଟିରୁ କଳାସୃଷ୍ଟିର ଯେଉଁ ଶିଳ୍ପସଫଳତାକୁ ବହନ କରନ୍ତି, ଦେବାବତରଣ ପରବର୍ତ୍ତୀ ରଚନାମାନ ନିଶ୍ଚିତଭାବେ ତାଠାରୁ ଏକ ଗଭୀରତର ଓ ମହତ୍ତର ଚେତନା ଅନୁପ୍ରାଣିତ ଭାବମାନସକୁ ପ୍ରକାଶ କରନ୍ତି । ପ୍ରାକ୍-ଦେବାବତରଣ କବିତାଗୁଡ଼ିକ ସ୍ଥୂଳ ଧର୍ମତତ୍ତ୍ୱ ଓ ନୀତିଶାସ୍ତ୍ରର ପଦ୍ୟାତ୍ମକ ପ୍ରଖ୍ୟାପନ ମାତ୍ର । ମାତ୍ର ପରବର୍ତ୍ତୀ କବିତାଗୁଡ଼ିକ ଗଭୀର ଅନୁଭବ ଓ ବିସ୍ତାରିତ ଚେତନାର ଆଂତରିକତା ଦ୍ୟୋତକ । ସ୍ରଷ୍ଟାପ୍ରତି ଅନୁରାଗ, ସୃଷ୍ଟିପ୍ରତି ଶ୍ରଦ୍ଧା, ଆତ୍ମପ୍ରୀତି ଓ ବିଶ୍ୱପ୍ରୀତି ମୂଳରେ ଏକ ପରମ ସଂପ୍ରୀତିର ସ୍ୱୀକୃତି, ଏ ସବୁ ରହସ୍ୟୋପଲବ୍‌ଧିମୂଳକ ମାର୍ମିକ ରୂପାୟନ ସେ କବିତାମାନଂକୁ ଏକ ସ୍ନିଗ୍ଧ ଲଳିତ୍‌ଧର୍ମୀ ରହସ୍ୟ ଭାବଦୀପ୍ତତା ପ୍ରଦାନକରେ । ଶିକ୍ଷକ ରଚୟିତାଙ୍କର ଋଷି କବିରୂପେ ରୂପାଂତର ଲାଭର ଏମାନେ ସାକ୍ଷ୍ୟ ବହନ କରନ୍ତି ।

'ଜୀବନଚିଂତା' ଠାରୁ 'ହିମାଚଳେ ଉଦୟ ଉତ୍ସବ'—ଏକ ସୁନିର୍ଦ୍ଦିଷ୍ଟ ଗତିଧାରା—ଅଧ୍ୟାତ୍ମ ସାଧନାରେ ଆତ୍ମାଭିସାରର ଏକ କ୍ରମ-ବିକଶିତ ପଥ-ଯାତ୍ରା । 'ଜୀବନଚିଂତା'ରେ ଯାହା ସଂକେତ ଓ ସୂଚନା ରୂପେ ବିଦ୍ୟମାନ ଥିଲା—ତାହା କ୍ରମଶଃ ଆଶାବିଶ୍ୱାସର ପରମପ୍ରମାଣ ହୋଇ ତମିସ୍ରାଭିସାର ପଥରେ ଜଳି ଉଠିଥିଲା—ଋଷିପ୍ରାଣେ ଦେବାବତରଣରେ ସେ ଆଲୋକର ଉଦ୍ଭାସନରେ ଅଧ୍ୟାତ୍ମ ରହସ୍ୟର ସକଳ ଆବରଣ ଅପସାରିତ—ଏବଂ 'ହିମାଚଳେ ଉଦୟଉତ୍ସବ'ରେ ଆତ୍ମାରେ ପରମାତ୍ମାରୂପକ ଉପଲବ୍‌ଧିରେ ଅଧ୍ୟାତ୍ମ ସାଧନାର ସଫଳତମ ରୂପାୟନରେ ସେଇ ଦ୍ୟୋତନା ପରିପୂର୍ଣ୍ଣ ଅର୍ଥସଂଗତି ଲାଭକରିଛି ।

## କାବ୍ୟ ଚେତନାରେ ତତ୍ତ୍ୱ ଓ ଉପଲବ୍‌ଧି

ସାହିତ୍ୟରେ ରହସ୍ୟବାଦର ଅଭିବ୍ୟକ୍ତି ଦୁଇଟି ସ୍ୱରୂପକୁ ଆଶ୍ରୟକରି ଘଟିଥାଏ । ଗୋଟିଏ ରହସ୍ୟତତ୍ତ୍ୱ ଅନ୍ୟଟି ରହସ୍ୟ ଉପଲବ୍‌ଧି । ଈଶ୍ୱର ସାମଗ୍ରିକ ବୋଧଭୂମିରୁ ଉତ୍ସାରିତ ଅଧ୍ୟାତ୍ମ ଆକୂତି

Digitized by PPRACHIN, SOA

ମୁଖ୍ୟତଃ ଦୁଇଟି ରୂପ ଅବଲମ୍ବନରେ ପ୍ରକାଶ ଲଭ କରିଥାଏ । ଗୋଟିକର ସ୍ତର ହୃଦୟ, ଅପରଟି ତାର ମତି ବା ବୁଦ୍ଧି । ହୃଦୟରେ ଜାଗେ ଅନୁଭୂତି ଏବଂ ମନରେ ଉଠେ ଜିଜ୍ଞାସା । ଅନ୍ତଃଚେତନାର ଉପଲବ୍‌ଧିରେ ବହିର୍ବିଶ୍ୱର ରହସ୍ୟ ଉଦ୍‌ଘାଟିତ ହୁଏ । ତାତ୍ତ୍ୱିକତାର – ଉଚ୍ଚାରଣ ସେହି ଅନୁଭୂତି ସମ୍ପର୍କରେ ବିସ୍ମୟ ଓ ଜିଜ୍ଞାସାରୁ । ଲବ୍‌ଧାନୁଭୂତିର ସ୍ୱରୂପ ରହସ୍ୟ ସଂପର୍କରେ ଏହା ସେହି ମାନସ ଜିଜ୍ଞାସାର ବାଣୀରୂପ ପ୍ରୟାସ ।

ଅନ୍ତର୍ଲବ୍‌ଧ ଅନୁଭୂତି ବହିଃସ୍ଥ ଜଗତ ଓ ଜୀବନକୁ ଯେତେବେଳେ ରୂପ ଓ ଅର୍ଥଦ୍ୟୋତନାରେ ନବତନ କରି ଆବିଷ୍କାର କରି ବସେ, ବିଶ୍ୱର ରହସ୍ୟାବରଣର ଯେପରି ସ୍ତର ପରେ ସ୍ତର ଖସିପଡ଼େ । ଅନ୍ତରର ଉପଲବ୍‌ଧି ଓ ବହିଃଘଟଣାପ୍ରବାହ ଭିତରେ ଯେମିତି ଏକ ସମୟରେ ଏକ ସତ୍ୟର ଉଦ୍‌ଘାଟନ— ଗୋଟିଏ ଅନୁଭୂତିରେ ଓ ଅପରଟି ଚିନ୍ତାଧାରାରେ । 'କିଛି ଘଟୁଛି' ପୁଣି କି'ଣ ଓ 'କିପରି'—ଏସବୁ ଯେପରି ଏକ ବିନ୍ଦୁରୁ ଉତ୍‌ଥିତ—ଜଳାଧାରରେ ଏକ ଆଘାତ ଓ ତାପରେ ତରଂଗମାଳାର ସୃଷ୍ଟି ପରି ଏକ ଘଟଣା ସଂଘାତ ଓ ତଜ୍ଜନିତ ଅନେକ ଜିଜ୍ଞାସାର ତରଂଗ—ପୁଣି ସମାଧାନର ସ୍ଥିରତାରେ ସେହିଠାରେ ବିଲୟ ଭଜନ୍ତି । ପୁଣି ପରି ଏକ ପ୍ରଶ୍ନ—ନୂତନ ଏକ ଉପଲବ୍‌ଧି—ତାର ଉଦ୍‌ଘାଟନର ବ୍ୟାଖ୍ୟା—କିଏ କାହା ପରିର ଓ କିଏ କାହା ଉପରେ ନିର୍ଭରଶୀଳ....ତାହା ନିର୍ଦ୍ଦିଷ୍ଟ କରିହୁଏନାହିଁ । ଅନେକ ସମୟରେ ମନର ପ୍ରଶ୍ନ ହୃଦୟର ଉପଲବ୍‌ଧି ଭିତରେ ଉତ୍ତର ଖୋଜିପାଏ । ପୁନଶ୍ଚ ଉପଲବ୍‌ଧି ଜାତ ଚେତନା ମନପାଇଁ ନୂତନ ବିସ୍ମୟ, ନୂତନ ପ୍ରଶ୍ନର ଅବସର ମଧ୍ୟ ସୃଷ୍ଟି କରେ । ଯେପରିକି ହୃଦୟକୁ ଅନାଗତ ଏକ ଉପଲବ୍‌ଧି ପାଇଁ ପ୍ରସ୍ତୁତ କରି ରଖୁଥାଏ । ତେବେ ଏକଥା ନିଶ୍ଚିତ ଯେ ହୃଦୟ ଉପଲବ୍‌ଧିର ଅର୍ଥ ଖୋଜେ ନାହିଁ । ତୃପ୍ତିର କାରଣ ଖୋଜିବସେ । ଅନୁଭୂତିର ସ୍ୱରରେ ରହିଛି ଏକ ଆତ୍ମସମାଚ୍ଛନ୍ନତା । ସମଗ୍ର ଅସ୍ତିତ୍ୱର ଚେତନାକେଂଦ୍ରରୁ ଉଦ୍‌ଭୂତ ବାର୍ତ୍ତାହିଁ ତାର ଆତ୍ମାର ସଂଗୀତ ରୂପେ ଉଚ୍ଚାରିତ । ତେଣୁ, ଉପଲବ୍‌ଧିର ଅଭିବ୍ୟକ୍ତିରେ ଏକ ନିର୍ଦ୍ଦିଷ୍ଟ ଗତିଛଂଦ ଓ ପରିଣତି ରହିଛି — ଯାହା ଚଳମାନ ଜୀବନର ପ୍ରାତ୍ୟହିକତା ଭିତରେ ବି ସ୍ୱତଂତ୍ର ମୁହୂର୍ତ୍ତର ଏକ ବିଶେଷ ଭବାନୁଭୂତି ରଂଜିତ । ଏହି ଉପଲବ୍‌ଧିମାନ ତାର ଜୀବନର ସାଧନା କ୍ରମରେ ନିର୍ଦ୍ଦିଷ୍ଟ ଆଲୋକ ସ୍ତମ୍ଭ ସଦୃଶ । ଏହି ଉପଲବ୍‌ଧିସଂଜାତ ସତ୍ୟର ଭିତ୍ତିଭୂମିରେ ତାର ଦାର୍ଶନିକ ସିଦ୍ଧାଂତ ବ୍ୟାଖ୍ୟା ।

ମଧୁସୂଦନ ଉଭୟ ତତ୍ତ୍ୱ ଓ ଉପଲବ୍‌ଧିର କଥା କହିଛନ୍ତି । ତତ୍ତ୍ୱବ୍ୟାଖ୍ୟାରେ ସେ ଦାର୍ଶନିକ ଓ ଉପଲବ୍‌ଧିପ୍ରକାଶରେ ସତ୍ୟଦ୍ରଷ୍ଟା ଆବେଗଦଗ୍‌ଧ କବି । ଉପଲବ୍‌ଧିରେ ସେ ପାଇଛନ୍ତି ଆଲୋକ ଓ ବାଣୀ ନିର୍ଦ୍ଦେଶ, ପୁଣି ଆନଂଦ ଓ ପ୍ରେମ ସଂଦେଶ । ଏହି ଅନ୍ତର୍ସତ୍ୟକୁ ଆଶ୍ରୟ କରି ଏକପାର୍ଶ୍ୱରେ ଗଢ଼ିଉଠିଛି ତାଙ୍କର ଆତ୍ମତତ୍ତ୍ୱ ଓ ପରତତ୍ତ୍ୱମୂଳକ ଜୀବନଜିଜ୍ଞାସା, ଅପରଦିଗରେ ସୃଷ୍ଟିହୋଇଛି ପ୍ରେମାନଂଦମୟ ରସ ଓ ସୌନ୍ଦର୍ଯ୍ୟତତ୍ତ୍ୱ । ଏହି ତତ୍ତ୍ୱରୂପର ପ୍ରକାଶଭଂଗୀ ଯେଉଁ ପ୍ରତୀକଚେତନାକୁ ଆଶ୍ରୟ କରିଛି, ତାହା ବସଂତ, ସରସ୍ୱତୀ, ପଦ୍ମ, ନଦୀ ପ୍ରଭୃତିରେ ବ୍ୟଂଜିତ । ଏ ପ୍ରତୀକ ଗ୍ରହଣରେ ମନୋଭୂମିଟି ଏକାଂତ ବୈଦିକ ।

ବିଶ୍ୱାସ, ଆଶା, ଅଂତର୍ବାଣୀ, ଆଲୋକ, ଆନଂଦ, ଶାଂତି ଏବଂ ଅଦ୍ୱୈତବୋଧ ଅଧ୍ୟାତ୍ମ ଉଦ୍‌ବର୍ତ୍ତନ ପଥରେ ଏହି ବିଶେଷଚେତନାଗୁଡିକ ଏକ ଏକ ପ୍ରତ୍ୟକ୍ଷ ଉପଲବ୍‌ଧିରୂପେ ରହସ୍ୟ-ସାଧନାର

Digitized by PPRACHIN, SOA

କ୍ରମ ନିର୍ଦ୍ଦିଷ୍ଟ କରିଥାନ୍ତି । ପୁଣି ପ୍ରକୃତି ସହ ବ୍ୟକ୍ତିମାନସର ସମ୍ପର୍କ ଭିତରେ ମଧ୍ୟ ଚେତନାର ଏହି କ୍ରମ-ଉନ୍ମୋଚିତ ଦିଗ୍‌ବଳୟର ସଂକେତମାନ ଅଭିବ୍ୟକ୍ତ ହୋଇପାରନ୍ତି ! ବିଶ୍ୱପ୍ରକୃତି ପ୍ରତୀକ ଭାବରେ ନିର୍ଦ୍ଦିଷ୍ଟ ଅନ୍ତରୋପଲବ୍‌ଧିକୁ ହିଁ ସଙ୍କେତିତ କରିଥାଏ ।

ମଧୁସୂଦନ କାବ୍ୟଜିଜ୍ଞାସା ଓ ଅନ୍ତରୋପଲବ୍‌ଧିରେ ଉଭୟ 'ପ୍ରାଚ୍ୟ ଆଧ୍ୟାତ୍ମିକ ପ୍ରବଣତା ଓ ପାଶ୍ଚାତ୍ୟ ମନନଶୀଳତା ଏବଂ ତାର ଶିଳ୍ପାଭିବ୍ୟକ୍ତିରେ ମଧ୍ୟ ପ୍ରାଚ୍ୟ ରସତତ୍ତ୍ୱ ଓ ପାଶ୍ଚାତ୍ୟ ସୌନ୍ଦର୍ଯ୍ୟ ତତ୍ତ୍ୱର ସମ୍ମିଶ୍ରଣ ଘଟିଛି । ଭାଷା ଓ ଭାବ ଦୃଷ୍ଟିରୁ ସେ ଯେତିକି ଗମ୍ଭୀର ଦାର୍ଶନିକ, ଉପଲବ୍‌ଧିର ପ୍ରକାଶ ପ୍ରୟାସରେ ସେ ସେତିକି ଆବେଗବହୁଳ କବି । ଅଥଚ ଭାବପ୍ରାବଲ୍ୟ ତାଙ୍କର ଆର୍ଷଗାମ୍ଭୀର୍ଯ୍ୟକୁ କେଉଁଠାରେ କ୍ଷୁଣ୍ଣ କରିପାରିନାହିଁ । କବିଙ୍କର ଜୀବନଚନ୍ଦ୍ରାଠାରୁ 'ହିମାଚଳେ ଉଦୟ ଉତ୍ସବ' ପର୍ଯ୍ୟନ୍ତ ଅନ୍ତରର ଲବ୍‌ଧାନୁଭୂତି ଓ ତାର ପ୍ରକାଶ ରୂପରେ ଚେତନାବିକାଶର ଯେ କ୍ରମପ୍ରବାହଟି ସୁରକ୍ଷିତ, ତାର ସମ୍ୟକ୍ ଅନୁଧ୍ୟାନ କରିବାପାଇଁ ମଧୁମାନସରେ ବୈଦିକ ପ୍ରକୃତି ଓ ଉପନିଷଦୀୟ ଦର୍ଶନର ପ୍ରଭାବ ସମ୍ପର୍କରେ କିଞ୍ଚିତ ଆଲୋକପାତ ସ୍ୱାଗତଯୋଗ୍ୟ ।

**ମଧୁସୂଦନ ଓ ଉପନିଷଦ**

ମଧୁସୂଦନଙ୍କ ଜୀବନ ଓ ରଚନା ସତେ ଯେପରି ଉପନିଷଦର ଅନ୍ତର୍ନିହିତ ଭାବଧାରାକୁ ବାସ୍ତବ ଜୀବନର ସକଳ କର୍ମ ଓ ଉପଲବ୍‌ଧିର କ୍ଷେତ୍ରରେ ପ୍ରୟୋଗ କରିବାର ପ୍ରମୂର୍ତ୍ତ ପ୍ରଚେଷ୍ଟା । ଉପନିଷଦର ବାଣୀ ଯେପରି କବିତା, ସଙ୍ଗୀତ, ଗଦ୍ୟ ରଚନାରେ ବାରଂବାର ପୁନଃପୁନଃ ଧ୍ରୁବପଦ ପରି ଉଚ୍ଚାରିତ । ଜୀବନର ସମଗ୍ରତାକୁ ଘେରି ଏକ ଅନିର୍ବଚନୀୟ ଅନୁଭୂତିରୂପେ ନିତ୍ୟସ୍ଥିତ, ଏବଂ ଅଜସ୍ର ପ୍ରକାଶନସତ୍ତ୍ୱେ ତଥାପି ତାହା 'ଅଶବ୍ଦ', 'ବାକ୍ୟେ ଅଗୋଚର ।' ମନେହୁଏ କବି ଜୀବନର ପ୍ରତ୍ୟେକ ସ୍ତରରେ ନିଜର ଚିନ୍ତା ଓ ଚେତନା ଭିତରେ ଉପନିଷଦର ସ୍ୱରସଂଗତି ଲାଭ କରିଥିଲେ । ଉପନିଷଦର ସୂକ୍ଷ୍ମ ବ୍ୟଞ୍ଜନାମାନଙ୍କର ଭାବବିସ୍ତାର କରି ସେଥିରେ ନବନବ ଅର୍ଥଦ୍ୟୋତନା ସଂଯୋଜନା କରିବାର ପ୍ରୟାସ ସର୍ବତ୍ର ସୁଲଭ ।

ଉପନିଷଦର ଅନ୍ତଃସ୍ୱର ହେଉଛି ଜିଜ୍ଞାସା ଓ ଦର୍ଶନ । ଉପନିଷଦର ଅନ୍ତର୍ନିହିତ ବିସ୍ମୟ ଓ ଜିଜ୍ଞାସା ଆଜିର ମାନସ ସତ୍ତା ମଧ୍ୟ ଅତିକ୍ରମ କରିପାରିନାହିଁ । ଏହି ଜିଜ୍ଞାସା ଯେଉଁ ଉତ୍ତରର ଅପେକ୍ଷା ରଖେ—ତାହା ଉପଲବ୍‌ଧ ସତ୍ୟ, କିନ୍ତୁ ଅନିର୍ଦ୍ଦେଶ୍ୟ, ଅର୍ଥାତ୍ ସବୁ ପ୍ରକାର 'ହଁ ବା ନାହିଁ' ତାର ବର୍ଣ୍ଣନା ସମ୍ପର୍କରେ ପ୍ରଯୁଜ୍ୟ ହୋଇପାରେ । ତଥାପି ତାହାକୁ ପୂର୍ଣ୍ଣ ବ୍ୟକ୍ତ କରିହୁଏନାହିଁ । ଏ ସତ୍ୟ 'ଶ୍ରୁତ' ଓ 'ଦୃଷ୍ଟ' । 'ଦର୍ଶନ' ତେଣୁ ଭାରତୀୟ ଭାଷାବିଜ୍ଞାନରେ ତାତ୍ତ୍ୱିକ ଅନୁଶୀଳନ ନୁହେଁ, ଏହା ଆମୂଳଚୂଳ ପୂର୍ଣ୍ଣ କରି ଦେଖିବା । ଉପନିଷଦର ବାଣୀସମୂହ ଏକ ଦିବ୍ୟଦର୍ଶନର ସାନନ୍ଦ ଉଚ୍ଚାରଣ ।

ଉପନିଷଦର ମୁଖ୍ୟ ପ୍ରତିପାଦ୍ୟ ବ୍ରହ୍ମତତ୍ତ୍ୱ । ଏକ ବ୍ରହ୍ମ ଦୁଇ ସ୍ୱରୂପରେ ବିବକ୍ଷିତ । ଏକ ମୂର୍ତ୍ତ ଅନ୍ୟଟି ଅମୂର୍ତ୍ତ । ଶାଶ୍ୱତ ଏକ ଦିଗରେ ନିର୍ବିଶେଷ ଅପୌରୁଷେୟ; ଅପରଦିଗରେ ସେ ପରମପୁରୁଷ ଈଶ୍ୱର ବା ପରମାପ୍ରକୃତି ଈଶ୍ୱରୀ ।

Digitized by PPRACHIN, SOA

ଉପନିଷଦୀୟ ସାଧନାର ଚରମ ସ୍ୱରୂପ ଆତ୍ମତତ୍ତ୍ୱ ଉପଲବ୍ଧି । ଉପନିଷଦର ପ୍ରତିପାଦିତ ଆତ୍ମା ଈଶ୍ୱରଙ୍କ ବିଶ୍ୱାତ୍ମକ ଅଭିବ୍ୟକ୍ତିଠାରୁ ବିଚ୍ଛିନ୍ନ ନୁହେ । ମୋକ୍ଷର ଉପଲବ୍ଧି ହେଉଛି ଜୀବାତ୍ମାକୁ ପରମାତ୍ମା ଭିତରେ ନିତ୍ୟସ୍ଥିତ ଦେଖିବା, 'ଏକମେବ' ଓ 'ଇଦଂସର୍ବମ୍' ସମାର୍ଥବାଚକ ଜାଣିବା ।

ଏହି ପରମ ଏକ ହିଁ ପ୍ରକୃତିରେ ସୌନ୍ଦର୍ଯ୍ୟ ଓ ହୃଦୟରେ ପ୍ରେମ ରୂପେ ରସମୟ ନିତ୍ୟାନଂଦ ଅଭିବ୍ୟକ୍ତ ହେଉଛନ୍ତି । କବିବାଣୀରେ ଏହି ଆନଂଦ ଅନେକ ରସର ସାରସ୍ୱତବିଳାସ ରଚନାକରନ୍ତି । କବିର ଅଧ୍ୟାତ୍ମଦ୍ରଷ୍ଟା ବିଶ୍ୱଜୀବନର ଆନଂଦଲୀଳାରେ ଏକୀଭୂତ ହୋଇଗଲେ ତାର ଚେତନାବିମୁକ୍ତି ଘଟେ । କବିଧର୍ମ 'ଅନେକବିଳାସ' ବୈରାଗ୍ୟମୂଳକ ତାର ଆକାଂକ୍ଷା ନୁହେ । ଅଦ୍ୱୈତରେ ଦ୍ୱୈତର ଲୀଳା ଦର୍ଶନ ଯେ ରହସ୍ୟ ଦର୍ଶନ—ସେଇ ଲୀଳାଭିବ୍ୟକ୍ତି ହିଁ ରହସ୍ୟକବିର ମନ୍ତ୍ରୋଚ୍ଚାରଣ ।

ମଧୁସୂଦନଂକ ଅର୍ନ୍ତଦୃଷ୍ଟିରେ ସେ ରହସ୍ୟଦର୍ଶନ ଓ ତାଙ୍କର କବିତାରେ ସେ ରହସ୍ୟାଭିବ୍ୟକ୍ତି ଉପନିଷଦୀୟ ଭାବାନୁସରଣରେ ପରିପୂର୍ଣ୍ଣ ସମନ୍ୱୟ ଲଭିଛି । ତାଂକର ବ୍ୟକ୍ତିତ୍ୱ ଓ କବିମନର କ୍ରମାଭିବ୍ୟକ୍ତି ରୂପେ 'ଜୀବନଚିନ୍ତା' ରେ ରୂପପ୍ରାପ୍ତ ବୈରାଗ୍ୟ ଚେତନା କ୍ରମଶଃ ବିଶ୍ୱାନୁରାଗ ଓ ପ୍ରକୃତି ପ୍ରେମର ନିର୍ଦ୍ଦିଷ୍ଟ ସରଣୀ ଅନୁବର୍ତ୍ତନକରି ଅଂତିମରେ ବିଶ୍ୱକେଂଦ୍ରରେ ଅଧିଷ୍ଠିତ ବିଶ୍ୱରାଜନ୍‌ଙ୍କୁ 'ପ୍ରିୟପରମ' ରୂପେ ପ୍ରାପ୍ତହେବାର ସନ୍ଦେଶଟି 'ହିମାଚଳେ ଉଦୟ ଉତ୍ସବରେ ସନ୍ନିହିତ ।' ଏହି ଚେତନା ଯାତ୍ରାରେ ମଧୁମାନସରେ ବୈଦିକ ପ୍ରକୃତିତତ୍ତ୍ୱ ଓ ପାଶ୍ଚାତ୍ୟ ଅତୀଂନ୍ଦ୍ରିୟତତ୍ତ୍ୱ ଅନିବାର୍ଯ୍ୟଭାବେ ସମ୍ମିଳିତ ହୋଇଯାଇଛନ୍ତି ।

## ପ୍ରକୃତି ଓ ମଧୁସୂଦନ

ପ୍ରକୃତି ସହ ସଂବଂଧ ମୂଳରେ ମଧୁମାନସରେ ଏକାଂନ୍ତ ପ୍ରୀତିମୂଳକ ସମ୍ପର୍କର ସୂଚନା ନିହିତ ନାହିଁ, ବରଂ ଅନ୍ୟ ଏକ ଉତ୍ସରୁ ସଂଜାତ ଆତ୍ମୀୟତାର ସୌଖ୍ୟ ପ୍ରେରଣା ରୂପେ କାର୍ଯ୍ୟ କରିଛି । ମଧୁସୂଦନଙ୍କ ପ୍ରକୃତି ବିଚାରରେ ବିଶ୍ୱତତ୍ତ୍ୱ ଓ ଆତ୍ମତତ୍ତ୍ୱ ଭୂମାତତ୍ତ୍ୱର ଉପଲବ୍ଧି ଭିତରେ ସମ୍ମିଳିତ ହୋଇଯାଇଛନ୍ତି ।

ସୃଷ୍ଟିପ୍ରେରଣାର ଅଭିବ୍ୟକ୍ତ ପ୍ରୟାସର ପ୍ରଥମ ସାର୍ଥକତା ଏହି ନିଖିଳ ବିଶ୍ୱପ୍ରକୃତି । ଜଡ଼ ପୂର୍ଣ୍ଣ ଚେତନାର ସୁପ୍ତ ଅବସ୍ଥା ଓ ସଂକୁଚିତତମ ରୂପ । ଏହି ଚେତନା ପର୍ଯ୍ୟାୟ ପରେ ପର୍ଯ୍ୟାୟ ଦେଇ ଜଡ଼ରୁ ଚେତନ ପ୍ରାଣକୁ ବିକାଶ ଲଭ କରିଛି । ଜଡ଼ରୁ ପ୍ରାଣକୁ ପ୍ରାଣରୁ ମନକୁ ଏହି ବିକାଶଧାରା ବିବର୍ତ୍ତିତ ହୋଇ ଚାଲିଛି । ଜୀବର ପୂର୍ଣ୍ଣ ପରିଣାମ ଅପେକ୍ଷା କରି ରହିଛି ମନର ଊର୍ଦ୍ଧ୍ୱତର ଚେତନାର ବିକାଶକୁ । ଏ ବିଶ୍ୱ ପ୍ରକୃତି ମୂଳତଃ ଦିବ୍ୟଚେତନାର ବ୍ୟକ୍ତଚେତନା ସହ ସଂଯୋଗହେତୁ ସ୍ୱରୂପ ।

ପ୍ରକୃତିରେ ଈଶ୍ୱରଂକର ସ୍ୱପ୍ରକାଶର ଏଇ ଦୃଷ୍ଟିଭଂଗୀଟି ଏକାନ୍ତ ଅାଦିମ । ପୃଥିବୀର ପ୍ରାଚୀନତମ ଦୁଇଟି ଦୃଷ୍ଟିଭଂଗୀ ବୈଦିକ ତଥା ଚେଲଡିୟ (Chaldean) ରେ ଏହି ରହସ୍ୟବାଦୀ ଉପଲବ୍ଧି ଓ ଅନୁଚିଂତନର ପ୍ରୟାସ ଦେଖାଯାଏ । ପ୍ରକୃତିର ରୂପବଂଦନା ଭିତରେ ବ୍ୟକ୍ତ ହୃଦୟ ହେହି

Digitized by PPRACHIN, SOA

ନିତ୍ୟ ସତ୍ତାଙ୍କର ମୁଗ୍ଧ ବନ୍ଦନା କରେ ସିଏ କି ବହୁରୂପ ମଧ୍ୟରେ ନିଜକୁ ବିଭକ୍ତ କରି ମଧ୍ୟ ନିଜ ରୂପରେ ଅବିଭକ୍ତ ହୋଇ ବିଦ୍ୟମାନ ।

ନିଖିଳ ମାନବ ଓ ବିଶ୍ୱପ୍ରକୃତି ଦୁଇଟି ବିଚ୍ଛିନ୍ନ ବିରୁଦ୍ଧ ସତ୍ତା ନୁହଂତି । ଉଭୟଙ୍କ ମଧ୍ୟରେ ଏକ ଆଦି ପ୍ରାଣ ସ୍ପନ୍ଦନ ପ୍ରେମ ଓ ଆନନ୍ଦ 'ରୂପେ ଉଚ୍ଛଳିତ । ଜାଗତିକ ଏବଂ ଅତି ଜାଗତିକ ଚେତନାର ମଧ୍ୟବର୍ତ୍ତୀ ସଂଯୋଗ ସୂତ୍ର ରୂପେ ପ୍ରକୃତି ପରମଙ୍କର ଜୀବନ ଚକ୍ଷୁ ପୁଣି ବ୍ୟକ୍ତିର ସାଧନ ମନ୍ଦିର । ମଧୁସୂଦନଙ୍କ ସ୍ୱରଚିତ ଏକ ପ୍ରବଂଧରେ ତାଙ୍କର ଏରୂପ ପ୍ରକୃତି ବିଗ୍ରହର ଦୃଷ୍ଟିଭଂଗୀଟିକୁ ଆବିଷ୍କାର କରିହୁଏ । "ଏହି ପରିଦୃଶ୍ୟମାନ ଜଗତ ଗୋଟିଏ ମହାଚିତ୍ର ଏବଂ ଅନଂତ ଜ୍ଞାନମୟ ପରମେଶ୍ୱର ସେହି ମହାଚିତ୍ରକର । ଏହି ମନୋହାରିଣୀ ବୈଚିତ୍ର୍ୟମୟ ସୃଷ୍ଟି ଗୋଟିଏ ମହାକାବ୍ୟ ଏବଂ ଅନାଦି ଭୂମା ମହାନ୍ ପରମେଶ୍ୱର ତାହାର ଆଦି ମହାକବି ।" X X "ସ ତପସ୍ତପ୍ତ୍ୱା ଇଦଂ ସର୍ବମସୃଜତ" (ସେ ସଂକଳ୍ପ କରି ଏଇ ସବୁ ସୃଷ୍ଟି କଲେ, ଉପନିଷଦ)—"ତାହାହିଁ ସତ୍ୟ, ତାହାହିଁ ଗ୍ରହଣୀୟ ।"[୧୦] ★

* ଉକ୍ତ ଉକ୍ତିର ଭାଷା ଓ ଭାବ, ଉପଲବ୍ଧି ଓ ଉପସ୍ଥାପନା ଯେତିକି ବୈଦିକ, ତାହାର ଅଂତର୍ନିହିତ ଦୃଷ୍ଟିଭଂଗୀଟି ସେତିକି ରୋମାଣ୍ଟିକ ମଧ୍ୟ । ମଧୁସୂଦନଂକ ପ୍ରକୃତି-ଦର୍ଶନ ଭିତରେ ରୋମାଣ୍ଟିକ ଅତୀଂଦ୍ରିୟତାର ସ୍ପର୍ଶ ଅନସ୍ୱୀକାର୍ଯ୍ୟ । ଅବଶ୍ୟ ଏ ରୋମାଣ୍ଟିସିଜମ୍ ତାର ପାଶ୍ଚାତ୍ୟ ଭାବମୂର୍ତ୍ତିର ରହାବେଦନ ଅପେକ୍ଷା ପ୍ରାଚ୍ୟ ରହସ୍ୟବାଦିତା ପ୍ରତି ଅଧିକ ଉନ୍ମୁଖୀ । ଏ ସଂପର୍କରେ ଏଠାରେ ଏହା ସ୍ପଷ୍ଟ ହୋଇଯିବା ବାଂଛନୀୟ ଯେ, ମିଷ୍ଟିକ୍ ଓ ରୋମାଣ୍ଟିକ ଉଭୟ ପ୍ରକୃତି ସଂପର୍କରେ ଏକ 'ଅତୀଂଦ୍ରିୟ' ପ୍ରସଂଗର ସ୍ୱାଭାବିକ ଉପସ୍ଥାପନା କରିଥାନ୍ତି,—ମାତ୍ର ସେ 'ଅତୀଂଦ୍ରିୟ'ର ଉପସ୍ଥାପନା ରୋମାଣ୍ଟିସିଜମ୍‌ରେ 'ଅତିକଳ୍ପନା'କୁ ('Prophetic Imagination'—Blake) ଆଶ୍ରୟକରି ଓ ମିଷ୍ଟିସିଜମରେ ପ୍ରତ୍ୟକ୍ଷ ଉପଲବ୍ଧି ମାର୍ଗଦେଇ । ବସ୍ତୁତଃ ରୋମାଣ୍ଟିକର କଳ୍ପନା ମିଷ୍ଟିକର ନିଜସ୍ୱ ଅନୁଭବ-ସଚେତନତାକୁ ଅବଲଂବନକରି ପ୍ରତୀକାଶ୍ରୟୀ ଭାବନାରୂପେ ସଂପ୍ରକାଶିତ ।

ରୋମାଣ୍ଟିକ ଦୃଷ୍ଟି ପ୍ରକୃତିମଧ୍ୟରେ ଏକ ସର୍ବତୋବ୍ୟାପୀ ଚେତନାକୁ ପ୍ରତ୍ୟକ୍ଷ କରିଥାଏ, ତାହା ରୋମାଣ୍ଟିକ ଅତୀଂଦ୍ରିୟ ସୌଂଦର୍ଯ୍ୟ, ଆନଂଦ ବା ପ୍ରେମ । ଏଇ ଜଗତଲଭ ପ୍ରତି ଉତ୍ସୁକତାରୁ ରୋମାଣ୍ଟିକ ଚେତନାର ସୁଦୂର ମୋହ, ଅନାଗତ ପ୍ରତି ସ୍ୱପ୍ନାଚ୍ଛନ୍ନତା ଓ ଅତୀତପ୍ରତି ଆସକ୍ତି । ସ୍ମୃତିଭୂର୍ଣ୍ଣ ହେଉଛି ରୋମାଣ୍ଟିକର ଏ ଜଗତ ଚିର ଅପ୍ରାପଣୀୟ । ତେଣୁ ତାର କଳ୍ପନାବାହୁଲ୍ୟ ଓ ବିଷାଦବୋଧ । ମାତ୍ର ରହସ୍ୟବାଦରେ ଏ ଜଗତ ଅତୀଂଦ୍ରିୟ ହେଲେ ବି ଅଲଭ୍ୟ ନୁହେଁ, ଉପଲବ୍ଧି-ଗମ୍ୟ । ରୋମାଣ୍ଟିକ ଓ ମିଷ୍ଟିକର ଦୃଷ୍ଟି-ପରିଧିର କେନ୍ଦ୍ରବିଂଦୁ ଏକ ଓ ଅଭିନ୍ନ,

9 'The sky is my book, rustling leaves, my poems.',

Sri Aurobindo, Letters—Vol III P—50

୧୦ "ବିଚିତ୍ର ଜଗତ ବା ପ୍ରକୃତି"—ମଧୁସୂଦନ ଗ୍ରଂଥାବଳୀ—ପୃ ୪୧୩

Digitized by PPRACHIN, SOA

ମଧୁସୂଦନଂକର ପ୍ରକୃତପ୍ରତି ଦୃଷ୍ଟିଭଂଗୀଟି ଯେଉଁ ଭାବଭୂମି ଉପରେ ଆଧାରିତ, ତାହା ମୁଖ୍ୟତଃ ଅପାର୍ଥିବ ସହ ସମ୍ବଂଧ, ଗଭୀର ଈଶ୍ୱର ବିଶ୍ୱାସ ଓ ଆତ୍ମସଯୋଗର ଚିତ୍ର ପ୍ରଦାନ କରେ । ବୈଦିକ ମାନସ ଓ ରୋମାଣ୍ଟିକ ଦର୍ଶନର ମଧୁର ସମନ୍ୱୟରେ ମଧୁସୂଦନଙ୍କ ପ୍ରକୃତ ଆରାଧନା ସରସ ଗଂଭୀର । ଏ ସାଧନା କ୍ରମର ଅଭିବ୍ୟକ୍ତ ମଧୁସୂଦନଙ୍କ କାବ୍ୟସୃଷ୍ଟିରେ—ଦ୍ୱିଧାବିଭକ୍ତ । ଗୋଟିଏ ଭାବ-ସାଧନା ମାର୍ଗରେ, ଅପରଟି ବିଶ୍ୱ-ପୃଥିବୀ ସହ ସମ୍ବଂଧ ସୂତ୍ରରେ । ବହିର୍ଜଗତସହ ଅଂତର୍ଜୀବନର ଭାବବିନିମୟର ଭିତ୍ତିଭୂମିରେହିଁ ମଧୁସୂଦନଙ୍କ କାବ୍ୟପୁରୁଷର ରହସ୍ୟଯାତ୍ରା ଦୃଷ୍ଟିଗୋଚର କରିଛି । ଅନ୍ତର୍ଭୋପଲବ୍ଧି ସହ ବିଶ୍ୱକ୍ରମାର ସଂଗତି ସ୍ଥାପନ ଭିତରେ ବ୍ୟକ୍ତିସତ୍ତା ଏକ ଗ୍ରହଣଶୀଳ—ସାମର୍ଥ୍ୟର ମାର୍ଗଦେଇ ଅଧ୍ୟାତ୍ମ ପରିପୂର୍ଣ୍ଣି ପାଇଁ ପ୍ରସ୍ତୁତ ହୋଇଥାଏ । ଏ ଦୃଷ୍ଟିରୁ କବିଙ୍କର ଅଂତର୍ଗତ ଆଶାବିଶ୍ୱାସ ଓ ପ୍ରତ୍ୟୟଦୃଢ଼ତା ବହିଃପ୍ରକୃତରେ ନିଜର ଚରିତାର୍ଥତା ଯେ ଖୋଜିପାଇଛି ତାହା କବିଙ୍କର ପ୍ରତୀକ ଚୟନର ମନସ୍ତତ୍ତ୍ୱରେ ସ୍ପଷ୍ଟ । ଖ୍ରୀ ୧୮୭୩ ରୁ ଖ୍ରୀ ୧୮୭୮ ପର୍ଯ୍ୟନ୍ତ ରଚିତ କବିତାମାନ ଏକ ଅଧ୍ୟାତ୍ମ-ସଚେତନତାର କ୍ରମୋଦ୍‌ଘାଟନର ଚିତ୍ର ରୂପ । ଖ୍ରୀ—୧୮୮୧ ରୁ ଖ୍ରୀ ୧୮୯୧ ଭିତରେ ସେ ଚିଂତା ତତ୍ତ୍ୱରୁ ଉପଲବ୍ଧିର କ୍ଷେତ୍ରକୁ ପରିପୁଷ୍ଟ ହୋଇ ସମାଗତ । ଖ୍ରୀ ୧୮୯୦ରୁ ୧୯୦୦ ପର୍ଯ୍ୟନ୍ତ ରଚନାମାନ କବିସତ୍ତାର ଆଶାବିଶ୍ୱାସମୟ ସାଧନ-ତତ୍ପରତାର ସମ୍ବାଦ ବହନ କରନ୍ତି । ପରବର୍ତ୍ତୀ କବିତାଗୁଡ଼ିକରେ

---

ମାତ୍ର ପରିସୀମା ଭିନ୍ନ । ରୋମାଣ୍ଟିକ ବୃତ୍ତସୀମା ରହସ୍ୟବାଦୀ ଚେତନାବଳୟଠାରୁ କଳ୍ପିତ ଭାବରେ କ୍ଷୁଦ୍ରତର । ରୋମାଣ୍ଟିକର ଅପ୍ରାପ୍ୟବୋଧ ସହ ଶେଷହୀନ ସନ୍ଧାନର ବ୍ୟଥା ଜଡ଼ିତ । ମାତ୍ର ରହସ୍ୟବାଦୀ ସନ୍ଧାନ ପ୍ରାପ୍ତିର ସମ୍ଭାବନାସ୍ୱରଯୁକ୍ତ । ସୂକ୍ଷ୍ମାନୁଭୂତିର ସ୍ପଷ୍ଟ ଉଜ୍ଜ୍ୱଳତାରେ ରହସ୍ୟବାଦୀ ଚେତନା କଳ୍ପନା ସଂଜାତ ସକଳ ଭାବ-ବୈଚିତ୍ର୍ୟର ସୀମାକୁ ଅତିକ୍ରମକରି ଭାବାତୀତ ଅତୀନ୍ଦ୍ରିୟର ବାସ୍ତବତାକୁ ପ୍ରତ୍ୟକ୍ଷକରେ ।

ପ୍ରକୃତର ସାକ୍ଷାତ ବା ସ୍ପର୍ଶ ଭିତରେ ବ୍ୟକ୍ତ ଚେତନା ଇନ୍ଦ୍ରିୟଲୋକରୁ ଅତୀନ୍ଦ୍ରିୟତାକୁ ଅପସୃତ ହୋଇଯାଏ । ପ୍ରଥମେ ବହିଃପ୍ରକୃତର ସାକ୍ଷାତ୍‌କାର, ତା ଭିତରୁ ଭାବଲୋକରେ ଆଉ ଏକ ରୂପସନ୍ଦର୍ଶନ । ମୂର୍ତ୍ତରୂପରୁ ଅମୂର୍ତ୍ତ ଅରୂପକୁ ଏ ଉତ୍ତରଣରେ ବ୍ୟକ୍ତିଚେତନାର ଉପଲବ୍ଧି ଶକ୍ତି ବ୍ୟତୀତ ଆଉ କିଛି ଭିନ୍ନ ସ୍ୱଜ୍ଞାନ ରହିପାରେ-ନାହିଁ । ବସ୍ତୁଜଗତରୁ ଅତୀନ୍ଦ୍ରିୟ ଉପଲବ୍ଧିରେ ଭାବଚେତନାର ଏଇ ମାନସ-ସମ୍ପ୍ରସାରଣକୁ ରୋମାଣ୍ଟିସିଜମ୍ 'ଭାବକଳ୍ପନା' (Imagination) ବୋଲି ଏବଂ ରହସ୍ୟ-ବାଦୀ ଅଂତର୍ଦର୍ଶନ (Revelation) ବୋଲି ଜାଣେ । ଓ୍ୱାର୍ଡ଼ସଓ୍ୱାର୍ଥ ଓ କଲରିଜଙ୍କ imagination, Blake ଙ୍କ ଦିବ୍ୟଦୃଷ୍ଟି (Prophetic vision), ଏମରସେନଙ୍କ natural magic ଏଇ ଅତୀନ୍ଦ୍ରିୟ ଅପସାରଣର ଅନୁଭବକୁ ସମର୍ଥନ କରନ୍ତି ।[୧୧]

---

11 'Standing on the bare grounds my head bathed by a blithe air uplifted into infinite space, all mean egotism vanishes. I became a transparent eye-ball. I am nothing. I see all the currents of the universal Being circulate through me. I am part and parcel of God."

Emerson on 'Glance.'

qt—P. O Matthriaessen 'American Renaissance'—P 50

Digitized by PPRACHIN, SOA

ଆତ୍ମବିକାଶର ଉଦ୍ଭବୋତ୍ତର ପ୍ରତିଶ୍ରୁତି ଅବଶେଷରେ 'ହିମାଚଳେ ଉଦୟ' ଉତ୍ସବରେ ସାମଗ୍ରିକ ସିଦ୍ଧିଲାଭର ଉଦ୍‌ଘୋଷଣା କରିଛି ।

ପ୍ରଥମ ପର୍ଯ୍ୟାୟର ରଚନାମାନଙ୍କରେ (ଶ୍ମଶାନ, ନିଶୀଥଚିନ୍ତା, ସ୍ତୋତ୍ର ପୃଥିବୀପ୍ରତି,) ସୃଷ୍ଟି ଓ ସ୍ରଷ୍ଟାର ସମ୍ପର୍କ ରହସ୍ୟାବସ୍ଥାଜଡ଼ିତ । 'ଜୀବନଚିନ୍ତା'ରେ ଅପାର୍ଥିବର ଇଙ୍ଗିତ ଏବଂ କବିପ୍ରାଣରେ ଅପାର୍ଥିବ ଆକର୍ଷଣର ସଙ୍କେତ ବିଦ୍ୟମାନ । 'ଆକାଶ ପ୍ରତି'ରେ ଏ ଆକର୍ଷଣର ତତ୍ତ୍ୱ ବିଚାର । ସୃଷ୍ଟି-ତତ୍ତ୍ୱମୂଳକ ଏ ଦାର୍ଶନିକ କବିତାଟିରେ 'ଦିବ୍ୟାକର୍ଷଣ' ସମ୍ପର୍କରେ କବିମାନସର ସାନନ୍ଦ ବିସ୍ମୟ ଉଚ୍ଚାରଣ ଘଟିଛି । ବସ୍ତୁତଃ ପାର୍ଥିବ ଓ ଅପାର୍ଥିବର ଯୋଗସୂତ୍ର ରକ୍ଷାକରିଛି, 'ଆକାଶପ୍ରତି, 'ସ୍ତବ', 'ପ୍ରଭାତ' । 'ଏକମାତ୍ର ଈଶ୍ୱର'ରେ କବିଙ୍କର ଦିବ୍ୟାନୁରାଗର ପ୍ରାବଲ୍ୟ ପ୍ରକଟିତ । 'ମନୁଷ୍ୟର ପ୍ରତ୍ୟୁତ୍ତର'ରେ ପ୍ରକୃତି ଭିତରେ ପରମଙ୍କ ଆବିଷ୍କାର ଆନନ୍ଦ ଉଚ୍ଚାରିତ । ଏହି ପର୍ଯ୍ୟାୟରେ ରଚିତ 'ଆଶା' କବିତାଟିରେ ଅନ୍ତ ଓ ବହିଃ ଚେତନାର ଏକ ବିଚିତ୍ର ଭାବମିଳନର ଚିତ୍ର ରୂପାୟିତ ଯାହା କବିଙ୍କର ଅଧ୍ୟାତ୍ମ-ସମ୍ବିତ୍ତିର ନିର୍ଦ୍ଦିଷ୍ଟ ପରିଣତି-ଆଭିମୁଖ୍ୟକୁ ସୂଚିତ କରେ । ସେ ଅଧ୍ୟାତ୍ମ-ଉଦ୍‌ବୋଧନ 'ଋଷିପ୍ରାଣେ ଦେବାବତରଣ'ରେ ମୂର୍ତ୍ତି ପରିଗ୍ରହ କରିଛି । ପରବର୍ତ୍ତୀ 'କୁସୁମାଞ୍ଜଳି' ମଧୁର ଅନୁଭବର ଏବଂ 'ହିମାଚଳେ ଉଦୟ ଉତ୍ସବ' ଭାବତନ୍ମୟତାର ସଙ୍ଗୀତ ।

ଖ୍ରୀ ୧୮୭୩ ରେ 'ଉତ୍କଳ ଦର୍ପଣ'ରେ ମଧୁସୂଦନଙ୍କର ପ୍ରଥମ ପ୍ରକାଶିତ କବିତା 'ଶ୍ମଶାନ' କବିମାନସର ସ୍ୱାଭାବିକ ଭାବଭଙ୍ଗୀର ପରିଚୟ ଉଦ୍‌ଘାଟନ କରେ । ମୃତ୍ୟୁ-ଅନୁଚିନ୍ତା ଭିତରେ ଜୀବନ-ଜିଜ୍ଞାସାର ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ଗଢ଼ି ଉଠିବାର ପୃଷ୍ଠଭୂମି ଏଇଠାରୁ ହିଁ ଆରମ୍ଭ । ନୈରାଶ୍ୟ ଏବଂ ବୈରାଗ୍ୟ ଉତ୍‌ଥାପିତ ପ୍ରଶ୍ନ-ଆକୁଳତା ହିଁ ସମଗ୍ର ଜୀବନରୁ ତାଙ୍କର ଯେପରି ଉତ୍ତର ଖୋଜିବୁଲିଛି । ସଂଶୟ-ସଞ୍ଜାତ ସେ ସକଳ ପ୍ରଶ୍ନ କିନ୍ତୁ ଆଶା ଓ ବିଶ୍ୱାସର ଆଲୋକମୟ ଗତିପ୍ରମ୍ନ ନିକଟରେ ଅମୃତ ଓ ଅମରତ୍ୱର ପ୍ରତିଶ୍ରୁତି ଲାଭକରି ଆନନ୍ଦର ପ୍ରତିଧ୍ୱନି ହୋଇ କବିପ୍ରାଣକୁ ପୁଣି ଫେରିଆସିଛି । କବିଙ୍କ ଜୀବନ-ଜିଜ୍ଞାସାର ପ୍ରଥମ ତାତ୍ତ୍ୱିକ ପ୍ରୟାସ 'ଶ୍ମଶାନ'—ଗୋଟିଏ ନିର୍ଦ୍ଦିଷ୍ଟ ଉତ୍ତର ମାର୍ଗରେ ହିଁ ଗତିଶୀଳ-ତାହା ଅଧ୍ୟାତ୍ମ ଚେତନା । 'ନିଶୀଥଚିନ୍ତା' ସେଇ ଚେତନାର ଏକ ଧ୍ୟାନଗମ୍ଭୀର ପ୍ରତିକୃତି ।

ମୃତ୍ୟୁ ଅନୁଚିନ୍ତା, ବିଶ୍ୱରହସ୍ୟ ଓ ଈଶ୍ୱରାନୁଚିନ୍ତାର ଭୂୟୋପ୍ରକାଶ ଜୀବନଚିନ୍ତା । କବିତାର ପ୍ରଥମ ପର୍ଯ୍ୟାୟରେ ସତ୍ତ୍ୱର ପାର୍ଥିବତ୍ୱ ଓ ନଶ୍ୱରତ୍ୱର ସମ୍ବାଦ, ମୋହମୁଦ୍‌ଗରୀୟ ଅଭିଭାଷଣରେ ଜୀବନ ଦୁଃଖମୟ ସାବ୍ୟସ୍ତ ଏବଂ ଅଜ୍ଞାନତା ତାର ହେତୁ ରୂପେ ନିର୍ଣ୍ଣୀତ । ଦ୍ୱିତୀୟ ପର୍ଯ୍ୟାୟରେ ଏ ଅସାର ଜଗତର ଅତୀତ ଏକ ଶାଶ୍ୱତ ଲୋକର ସମ୍ବାଦ ପରିବେଷିତ । ମରଜଗତ ପ୍ରତି ଅନାସକ୍ତ ଏବଂ ଅମର ଲୋକପ୍ରତି ଆକାଂକ୍ଷା ଭିତରୁ କବି ସତ୍ତ୍ୱର ସେହି 'ଚକ୍ଷୁନ୍‌ମେଷ' ସଙ୍ଘଟିତ ଯାହା ପ୍ରାତିଭାସିକ ଜଗତର ଊର୍ଦ୍ଧ୍ୱରେ ମହତ୍ତର ଏକ 'ସୁଧାମ' ସମ୍ପର୍କରେ ପ୍ରତ୍ୟୟ ଲାଭକରିଛି । ସ୍ୱାଭାବିକଭାବେ ଏ ଅବସ୍ଥାରେ ବ୍ୟକ୍ତି-ଚିତ୍ତରେ ଜଗତ-ବିମୁଖତା ଓ ଅପାର୍ଥିବ—ଉନ୍ମୁଖତା ତୀବ୍ର ହୋଇ ପ୍ରକାଶପାଏ । ଅପାର୍ଥିବତାର ପ୍ରଥମ ପ୍ରତିଶ୍ରୁତିରୂପେ କବିଚିତ୍ତ 'ମହାସ୍ମର୍ଣ୍ଣ ରତନ' ଲାଭ କରିଛି, ତାହା ଅନ୍ତର୍ଗତ ଆତ୍ମାର ଅମରତ୍ୱରେ ଓ ଦିବ୍ୟତ୍ୱ ବିଶ୍ୱାସ । ଏଇ ଅଟଳ ଅନିବାର୍ଯ୍ୟ ପ୍ରତ୍ୟୟର ଅବଲମ୍ବନରେ ହିଁ ପ୍ରତିକୂଳ ପାର୍ଥିବ ପରିବେଶ ଭିତରେ ଆତ୍ମା ନିର୍ମଳ ନିଷ୍ଠାରେ ଜ୍ଞାନ ପ୍ରେମ କର୍ମମାର୍ଗରେ ଦିବ୍ୟାଶୀର୍ବାଦଲାଭ କରିପାରେ ।

Digitized by PPRACHIN, SOA

କବିତାରେ ବିଭ୍ରାନ୍ତିର ଆଶ୍ୱାସନା ଓ ଆତ୍ମସମର୍ପଣର ଭାବନା ଏକତ୍ର ଜାଗରିତ । ବ୍ୟକ୍ତିର ସୀମିତ ଆତ୍ମଶକ୍ତି ଓ ମର୍ତ୍ତ୍ୟର ଭୟଙ୍କର ପ୍ରତିରୋଧ ଭିତରେ ନିଷ୍ଠାପର ଭାବରେ ସାଧନା ପାଇଁ 'ଦିବ୍ୟକୃପାର' ଆବଶ୍ୟକତା ଅପରିହାର୍ଯ୍ୟ, — କବିତାର ଶେଷ ପର୍ଯ୍ୟାୟରେ ସେଇ କୃପା ଭିକ୍ଷା କରି କବି ଆତ୍ମସମର୍ପଣ ଭିତରେ ଅଧ୍ୟାତ୍ମଜୀବନର ପୂର୍ଣ୍ଣ ଉଦ୍‌ବୋଧନ ଦେଇଛନ୍ତି, 'ତୁମ୍ଭ ବିନା ଏ ସଂସାରେ, ମରଇ ମୁଁ ହାହାକାରେ ।" ଏହା କେବଳ ଏକ କାବ୍ୟିକ ଉଚ୍ଛ୍ୱାସ ଗାନ ନୁହେଁ, କବିଙ୍କ ପ୍ରାଣ ପୁରୁଷର ଅଧ୍ୟାତ୍ମଆକୂତି ଓ ପ୍ରାଣାରାମଙ୍କ ପାଇଁ ପ୍ରଣୟ-ଅପେକ୍ଷାର ସଂବାଦ ସୂକ୍ତ ମଧ୍ୟ ।

ବସ୍ତୁତଃ ଅଧ୍ୟାତ୍ମ-ଉନ୍ମେଷର (awakening) ପ୍ରଥମ ସାର୍ଥକ ବାର୍ତ୍ତାବହ 'ଜୀବନଚିନ୍ତା', ଅଧ୍ୟାତ୍ମ-ସାଧନାର ବିଚିତ୍ର ଅନୁଭବ ଓ ଭାବ-ଆବେଗର ଉତ୍ଥାନ ପତନର ଚିତ୍ର ଏହା ପରର କବିତା-ମାନଙ୍କରେ ବହୁଭାବରେ ଇଂଗିତମୟ ଓ ପ୍ରକାଶ-ସ୍ପଷ୍ଟ ହୋଇଉଠିଛି । ସମଗ୍ର ପୃଥିବୀ ଘେରି ସେହି ଆକୂତି ଏବଂ ସମୁଦାୟ ଜୀବନଭରି ସେହି ଅନ୍ୱେଷଣ ଏକ ଅଖଣ୍ଡ ସଂଗୀତ ରୂପେ କବି-ବାଣୀରେ ମର୍ମରିତ ହୋଇଛି ।

'ପୃଥିବୀପ୍ରତି' କବିତାରେ ସେହି ଅମର୍ତ୍ତ୍ୟ ଆସ୍ପୃହା ମୂର୍ତ୍ତରୂପ ଧାରଣ କରିଛି । ପୃଥିବୀ ଯେପରି ଅପାର୍ଥିବ ଅଭିଳାଷର ସ୍ଥୂଳ ବିଗ୍ରହରୂପା ହୋଇ କବିଙ୍କ ଅନ୍ୱେଷଣ ବ୍ୟାକୁଳତାକୁ ପ୍ରମୂର୍ତ୍ତ କରୁଛି । କବିପ୍ରାଣରେ ଆଶ୍ୱାସନା ପୃଥିବୀ ମାତାର ସ୍ନେହ ସ୍ପର୍ଶ ହିଁ ପାର୍ଥିବ ଜୀବନ ପ୍ରତି ଅନନ୍ତଙ୍କର ପ୍ରତିଶ୍ରୁତି । ବୈଦିକ ଚେତନା ସହ ଏ ଭାବନାର ଚିନ୍ତାସାମ୍ୟ ରହିଛି । ବେଦରେ ପୃଥିବୀ ମାତାରୂପେ ବନ୍ଦିତା ।[୧] ମାତୃଚେତନାର ମହାମହିମବିକାଶ ଜଗଜ୍ଜନନୀରୂପେ ବସୁନ୍ଧରାଙ୍କର । ବାତ୍ସଲ୍ୟର ଅସରନ୍ତି ଧାରାରେ ସେ ମହାଜନନୀ ଅନନ୍ତସ୍ରୋତା ।

ଏ କବିତାରେ ସୃଷ୍ଟି ଉଦ୍ଦେଶ୍ୟମୂଳକ ବୋଲି ମଧ୍ୟ ସଚେତନତା ପ୍ରକଟିତ । ମନେହୁଏ, ଏ ସୃଷ୍ଟି ରୂପ ବିରାଟ ଆୟୋଜନ ମୂଳରେ ବିଶ୍ୱଜନନୀଙ୍କର କୌଣସି ବିଶେଷ ଉଦ୍ଦେଶ୍ୟ ନିହିତ । ସୃଷ୍ଟ ଜୀବ ସହ ସ୍ରଷ୍ଟାର ସଂଯୋଗ ସ୍ଥାପନର ଅଭୀପ୍ସା ଓ ସଂବାଦ ପ୍ରେରଣର ବ୍ୟଗ୍ରତା ରହିଛି । ସ୍ରଷ୍ଟାର ସେ ଅଭୀପ୍ସାଟି ଅମୂର୍ତ୍ତ; ମାତ୍ର ରୂପ ମୂର୍ତ୍ତ ସୃଷ୍ଟିରେ ତାର ବ୍ୟଂଜନା ଜୀବ-ପ୍ରାଣରେ ଜାଗ୍ରତ କରିଦେବାର ଅଖଣ୍ଡ ଐଶ୍ୱରିକ ପ୍ରୟାସ ଭିତରେ ଏକ ଗଭୀର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ କବି ଉପଲବ୍ଧି କରିଛନ୍ତି । ଆଲୋଚ୍ୟ କବିତାରେ ପାର୍ଥିବ ସତ୍ତାର ଅପଣା ସୀମା ସଚେତନତା ଓ ତା ସତ୍ତ୍ୱେ ଅସୀମ-ସଂଯୋଗ ପାଇଁ ଅଭିଳାଷଟି ପ୍ରକଟିତ ହୋଇଛି ।

ପୃଥିବୀ ପ୍ରତି କବିତାର ଆନୁକ୍ରମିକ ପରିଣତି-ରୂପ 'ଆକାଶପ୍ରତି ।' ଏଥିରେ ମଧ୍ୟ- ବୈଦିକ ମାନସର 'ଆକାଶ ତତ୍ତ୍ୱ'ର ପ୍ରଭାବ ସ୍ପଷ୍ଟ । 'ନାସଦୀୟ' ସୂକ୍ତର ବିସ୍ମୟ ଜିଜ୍ଞାସା ଏହାର ଅନ୍ତସ୍ୱର ରୂପେ ନିର୍ଧାରିତ । ଉପନିଷଦର ସମଧର୍ମୀ ଅଭିବ୍ୟକ୍ତିରେ ଆକାଶ ଏଠାରେ ଶୂନ୍ୟର ନାମାନ୍ତର, ସୃଷ୍ଟିର ଆଦିକାରଣ ଓ ବିବର୍ତ୍ତନର ସାକ୍ଷୀରୂପ । ଅବ୍ୟକ୍ତ ବ୍ରହ୍ମଙ୍କର ପ୍ରଥମବ୍ୟକ୍ତରୂପ ଆକାଶ । ଜ୍ୟୋତି, ସୌନ୍ଦର୍ଯ୍ୟ ଓ ଆନନ୍ଦର ଉତ୍ସରୂପେ ବ୍ୟକ୍ତିର ଇନ୍ଦ୍ରିୟବୋଧ ଜଗତରେ ଅତୀନ୍ଦ୍ରିୟତାର ପ୍ରଥମ ରହସ୍ୟ-ଉଦ୍‌ବୋଧନ ଜଗାଇଥାଏ ଆକାଶ । ତାର ଅନନ୍ତତା, ବ୍ୟାପ୍ତି, ନିରାଲମ୍ବତ୍ୱ ଓ ଅରୂପତ୍ୱ ବ୍ୟକ୍ତିତ୍ୱରେ

୧ "ମାତା ଭୂମିଃ ପୁତ୍ରୋ ଅହଂ ପୃଥିବ୍ୟାଃ ।"   ଅଥର୍ବ—୧୨-୧ ୧୨

Digitized by PPRACHIN, SOA

ଅରୂପ-ଅଦେହର ପ୍ରଥମ ସଚେତନତା ସୃଷ୍ଟି କରେ । ସୀମାର ଅସୀମ ସହ ପ୍ରଥମ ଭାବ-ସଂଯୋଗ ଆକାଶ ମାଧ୍ୟମରେ ।

ଆକାଶ କେବଳ ମନଶ୍ଚେତନାରେ ତାତ୍ତ୍ୱିକ ଜିଜ୍ଞାସା ଜାଗ୍ରତ କରେନା, ଚିତ୍ତଭୂମିରେ ବହୁ ଭାବସ୍ପନ୍ଦନ ମଧ୍ୟ ଖେଳାଇଦିଏ । ଅତୀନ୍ଦ୍ରିୟର ପ୍ରକାଶ-ରୂପରେ ଇନ୍ଦ୍ରିୟଜଗତକୁ ତାହାର ପ୍ରସାର, ପୁଣି ଅତୀନ୍ଦ୍ରିୟର ବାର୍ତ୍ତାବହରୂପେ ହୃଦୟ ସହ ତାର ବାର୍ତ୍ତାଳାପ । ନିର୍ବାକ୍ ନୀରବତାରେ ତାର ସ୍ଥିତି, ପୁଣି ବାଙ୍ମୟ ଧ୍ୱନିରେ ତା ର ଉଲ୍ଲାସ ପ୍ରକଟିତ । ବ୍ୟକ୍ତିକୁ ତତ୍ତ୍ୱର ଶୁଷ୍କତାଠାରୁ ଅନୁଭବର ସରସ କ୍ଷେତ୍ରକୁ ଘେନିଯିବାର ଅପରସୀମ ଶକ୍ତିରହିଛି ମୌନ ଆକାଶର ନୀରବ ସଂବେଦ ଭିତରେ । ବ୍ୟକ୍ତିର ମନୋମୟ ଉପଲବ୍ଧି ଭିତରେ ହିଁ ତାର ଅଶ୍ରୁତ ଉଚ୍ଚାରଣ ।

'ଆକାଶପ୍ରତି' କବିତାରେ କବିପ୍ରାଣର ଏକ ଧ୍ୟାନ-ସମାହିତ ଭାବଗାମ୍ଭୀର ରୂପ ପ୍ରଦତ୍ତ । ଏଥିରେ 'ଜୀବନଚିନ୍ତା' ଚର୍ଚ୍ଚିତ ସାଂସାରିକ କ୍ଷୁଦ୍ରତ୍ୱବିର ନିପୀଡ଼ନ ଆଉ ନାହିଁ । ସଂସାର ପ୍ରତି ମାୟାବାଦୀର ଅନୁଦାର ଅସହିଷ୍ଣୁତା ନାହିଁ କି ପୃଥିବୀ ପ୍ରତି ବିରକ୍ତି-ବୈରାଗ୍ୟ ନାହିଁ । ଆକାଶ କବି ଚିତ୍ତରେ ଅନନ୍ତ ଉଦାରତା ଭରିଦେଇଛି । ସ୍ରଷ୍ଟାର ମହିମ୍ନ ବିଭୂତିରୂପେ ଆକାଶ ଦୃଶ୍ୟମାନ ଜଗତରେ ଅସୀମ ଓ ଅନନ୍ତ-ହିର ଏକ ମମତାସ୍ନିଗ୍ଧ ସ୍ୱୀକୃତି ଲାଭକରିଛି । (ସେଲିଙ୍କ 'Ode to Heaven' କବିତା ପ୍ରଭାବିତ ବୋଲି ଅନେକ ମତବ୍ୟକ୍ତ କଲେ ମଧ୍ୟ ଉପସ୍ଥାପନାରେ 'ଆକାଶପ୍ରତି' ଓତଃପ୍ରୋତ ବୈଦିକ ମାନସ ପ୍ରଭାବିତ । ଶେଲିଙ୍କ 'ସ୍ୱର୍ଗ' ଓ 'ମଧୁସୂଦନଙ୍କ 'ଆକାଶ'ର ଭାବରୂପ ସମ୍ପୂର୍ଣ୍ଣ ଭିନ୍ନ ।) କବି ଚିତ୍ତରେ ଏ ଉପଲବ୍ଧି 'ଜୀବନ ଚିନ୍ତାର' ବକ୍ତବ୍ୟଠାରୁ ଗୂଢ଼ତର ଓ ମହତ୍ତର ଜୀବନବାଦୀ ଆଭିମୁଖ୍ୟ ଲାଭ କରିଛି "ଅନନ୍ତ ସିନ୍ଧୁରେ ବିନ୍ଦୁ ହେବି ମୁଁ ମଗନ ।[୧୩] ଏଇ ଭାବଧାରା ପ୍ରଭାବିତ ପରବର୍ତ୍ତୀ ରଚନା 'ମନୁଷ୍ୟର ପ୍ରତ୍ୟୁତ୍ତର'ରେ ଅହଂର ସୀମା ସଚେତନତା ଓ ଅସୀମ-ସମୁଦ୍ରରେ ଲୀନ ହେବାର ମହାସ୍ୱପ୍ନ[୧୪] ପରେ ପରେ ନଦୀପ୍ରତି କବିତାରେ ବାଣୀରୂପ ଲାଭକରିଛି ।

ଏଇ ଆଭିମୁଖ୍ୟ ଏକ ବଳିଷ୍ଠ ଓ ପରିପୁଷ୍ଟ ଅଭିବ୍ୟକ୍ତି ଲାଭକରିଛି ଖ୍ରୀ ୧୮୮୮ ମସିହାରେ ରଚିତ 'ଆଶା' କବିତାରେ । ଏହି କବିତାର 'ମର୍ମ ବାଣୀ' ଉଦ୍‌ଘାଟନ ପୂର୍ବରୁ ଉତ୍କଳ-ବ୍ରାହ୍ମସମାଜର ଅଷ୍ଟାଦଶ ଆସାଢ଼ୋତ୍ସବରେ (ଜୁନ ୨୭-୧୮୮୮) ମଧୁସୂଦନଙ୍କ ନିମ୍ନୋକ୍ତ ଉଦ୍‌ବୋଧନାଂଶଟି ପ୍ରଣିଧାନ ଯୋଗ୍ୟ ।

"ଉଦ୍‌ବୋଧନର ମର୍ମ ଏହି ଯେ, ଜଗଜ୍ଜନନୀ ଆମ୍ଭମାନଙ୍କୁ ମୋହନିଦ୍ରାରୁ ଜାଗ୍ରତ କରି ନିରନ୍ତର ଆହ୍ୱାନ କରୁଛନ୍ତି । ଆକାଶର ଗ୍ରହ ନକ୍ଷତ୍ର, ପୃଥିବୀର ନଦୀ ସମୁଦ୍ର, ପର୍ବତ କାନନ, ବିଚିତ୍ର ଘଟଣାପୂର୍ଣ୍ଣ କାଳସମୁଦ୍ର ଇହଲୋକର ସାଧୁଭକ୍ତ ସମସ୍ତେ ଈଶ୍ୱରବିଷ୍ଟ ହୋଇ ତାଙ୍କର ମହାଆହ୍ୱାନବାଣୀ

---

୧୩ "ସନ୍ଧ୍ୟାର ବିଦାୟ ସଂଗୀତ—ରଚନାକାଳ—୧୮୮୩

୧୪ "ଉଲ୍ଲାସେ ଧାଇଁବି ମୁହିଁ ଯଥା ସ୍ରୋତସ୍ୱତୀ
ଅନନ୍ତ ସଂଗତେ ହୋଇବାକୁ ଏକାକାର ।"
ମନୁଷ୍ୟର ପ୍ରତ୍ୟୁତ୍ତର ।

Digitized by PPRACHIN, SOA

ପ୍ରତିଧ୍ୱନିତ କରୁଛନ୍ତି × × ଉପଦେଶର ମର୍ମ ଏହି ଯେ ପାପୀ ଦ୍ରୋହୀ ହୋଇ ପ୍ରଭୁଙ୍କ ସଂଗରେ ନିତ୍ୟ ଯୁଝୁଅଛି, କିନ୍ତୁ ବାରମ୍ବାର ପରାସ୍ତ ହେଉଅଛି ।"

ଅଧ୍ୟାତ୍ମ ସାଧନାର ଗତିପଥ ନିର୍ଦ୍ଧାରଣ ଓ ସ୍ୱତଂତ୍ର ମୁହୂର୍ତ୍ତମାନଙ୍କର ବିଶିଷ୍ଟ ଉପଲବ୍ଧିର ସଂକେତମୂଳକ ଚିହ୍ନ 'ଆଶା'ରେ ପ୍ରଦତ୍ତ । ରହସ୍ୟ ସାଧନାର ଚିତ୍ତୋନ୍ମେଷକାଳୀନ ଆଲୋକ ଚେତନାର ସଂକେତ ଚିତ୍ର ରୂପେ ଏହାର ଏକ ବିଶେଷ ଆଧ୍ୟାତ୍ମିକ ମୂଲ୍ୟ ରହିଛି ।

'ଜୀବନଚିଂତା' ରେ କବିଚିତ୍ତରେ ଯେଉଁ ଅଧ୍ୟାତ୍ମ ସଚେତନତାର ଇଂଗିତ ରହିଛି, ତାର ପ୍ରଥମ ସାର୍ଥକ ଉପଲବ୍ଧି 'ଆଶା' ର ଦିବ୍ୟ ଜାଗରଣର ମୁହୂର୍ତ୍ତରେ । 'ଆଶା' ହିଁ ଦିବ୍ୟାନୁଭୂତି ଲାଭର ପ୍ରଥମ ସ୍ପଷ୍ଟ ସମ୍ବାଦ । ଏ ଯାବତ୍ ସମସ୍ତ କାବ୍ୟ-ସାଧନା ଏଇ ଉଚ୍ଚାରଣ—ମୁହୂର୍ତ୍ତ ପାଇଁ ଏକ ପ୍ରସ୍ତୁତି ପର୍ବ ରଚନା କରୁଥିଲି ଯେପରି । ଆତ୍ମାର ଏ 'ଦିବ୍ୟୋପଲବ୍ଧି' ର ସ୍ୱରୂପଟି ଦୁଇଭାବରେ ପ୍ରକାଶିତ । ଗୋଟିଏ ଦିବ୍ୟବାଣୀ ଅପରଟି ଦିବ୍ୟ ଆଲୋକ । ପରବର୍ତ୍ତୀ ସମସ୍ତ ଅଧ୍ୟାତ୍ମ କବିତାରେ ଏଇ ବାଣୀର ରଣନ ଓ ଏଇ ଆଲୋକର ସ୍ଫୁରଣ କବିଂକର ଚେତନା ବିକାଶର କ୍ରମସ୍ୱରୂପ ପ୍ରକାଶ କରେ ।

ଏଇ କବିତାଟି ବିଖ୍ୟାତ ଅଧ୍ୟାତ୍ମ-ରୂପକ **'Pilgrim's Progress'** କୁ ସ୍ମରଣ କରାଇଦିଏ । ଦୁଃଖ ଓ ସନ୍ଦିଗ୍ଧତା ଭିତରୁ ଆରଂଭ ହୋଇ ଆଶା, ବିଶ୍ୱାସ, ଆଲୋକ ଓ ବିଶ୍ରମ୍ଭର ଆନଂଦରେ ଅଧ୍ୟାତ୍ମ-ଯାତ୍ରାର ପରିସମାପ୍ତି ଘୋଷିତ । ପ୍ରାରଂଭରେ କବି ଯାତ୍ରୀଙ୍କ ସନ୍ଦେହାକୁଳ ଅବସ୍ଥା । ଅରଣ୍ୟ-ଦୁର୍ଗମ ଭୟଙ୍କର ସଂସାର । ଅଂତଃଗହନର ଦିକ୍‌ବିଦିକ୍ ଅଂଧାର । ବ୍ୟଗ୍ରସତ୍ତ୍ୱ ଏକାକୀ ମାର୍ଗସଂଧାନୀ, ଶ୍ରାଂତ ପୁଣି ମାତୃହରା ଶିଶୁପ୍ରାୟ ନିରାଶ୍ରୟ ଓ ନିରୁପାୟ । 'ମୃତ୍ୟୁ ସଙ୍କଟ'ର ବର୍ଣ୍ଣନା ଭିତରେ ଜୀବ ହୃଦୟର ପ୍ରାଣର ବେଦନା ଓ ମନୋବିକଳନର ଚିତ୍ର ସ୍ପଷ୍ଟ । ଦ୍ୱିତୀୟ ପର୍ଯ୍ୟାୟରେ କବିଙ୍କର ମାତୃ-ସୁରକ୍ଷା ସମ୍ବଂଧରେ ଆଶା, ମାତୃଶକ୍ତିରେ ବିଶ୍ୱାସ ଏବଂ ଶରଣାଗତିର ଆଶ୍ୱାସନା ଲାଭ ।

ସହସା 'ଆକାଶବାଣୀ'ର ସ୍ଫୁରଣ । ଅଂତର୍ଜଗତରେ ତାହାର ଅଭୟ-ପ୍ରତିଧ୍ୱନି । ଏ 'ଆକାଶ ବାଣୀ', 'ସ୍ୱର୍ଗସଂଗୀତ' ପ୍ରଭୃତି ଶବ୍ଦପ୍ରୟୋଗ କବିଙ୍କର ସଚେତନ ଉଦ୍ଦେଶ୍ୟ-ମୂଳକ । କବି ଏ ଧ୍ୱନି ବିଶ୍ୱବ୍ୟାପ୍ତ ମହାଧ୍ୱନିର ଅଂଶରୂପେ ବର୍ଣ୍ଣନା କରିଛନ୍ତି । ପ୍ରଥମ ସାଂତ୍ୱନା ବାଣୀ 'ଉଠ ବିଶ୍ରି ଅଛି ପାଶେ' ଦୂରଦ୍ୱବୋଧ ଭ୍ରାଂତ ପ୍ରସୂତ । ତେଣୁ 'ନୟନ ଫିଟାଇ' ଦେଖିବାକୁ ନିର୍ଦ୍ଦେଶ । ଏ ନୟନ ଅଂତରର । ଏ ଦର୍ଶନ ଜ୍ଞାନ ଦୃଷ୍ଟିର; ଶାସ୍ତ୍ରବଚନ ବା ଉପଦେଶଜ୍ଞାନ ନୁହେ ।

ଆଶା ଓ ବିଶ୍ୱାସ ମାଧ୍ୟମରେ ଏହି ଶ୍ରବଣ ଦର୍ଶନ ସମ୍ଭବ ହୋଇଥାଏ । ଆଶାର ଆଲୋକରେ ଯେ ଅଦୃଶ୍ୟ ପରିଦୃଷ୍ଟ ହୁଅନ୍ତି । ତଥ୍ୟ ସତ୍ୟରୂପେ ହୃଦ୍‌ଗତ ହୁଏ । ବିଶ୍ୱାସ ହୃଦୟର ଅଂତଶକ୍ତି । ବିଶ୍ୱାସ-ହୀନ ଆଶା କ୍ଷଣସ୍ଥାୟୀ ଏବଂ ନିରାଶାର ଅଂଧାରଠାରୁ ତାର ସଂଶୟ ବୋଧ ଅଧିକ ବେଶି ପ୍ରବଂଚନା କରେ । ଲକ୍ଷ୍ୟ ପହଁଚାଏ । ଆଶା ଓ ବିଶ୍ୱାସର ସଂଗତ ସାଧନରେହିଁ ଅଧ୍ୟାତ୍ମ-ଜୀବନର ପୂର୍ଣ୍ଣ ଭିତ୍ତି-ପ୍ରତିଷ୍ଠା ।

'ଆଶା, ବିଶ୍ୱାସ' ର ଏଇ ସ୍ୱର୍ଣ୍ଣମଣି ଲାଭପରେ ପଥିକ ସମ୍ମୁଖରେ ଯେ ଗହନ ବନନାହିଁ, ଅଭ୍ୟଂତରର ଅଂଧକାର ବି ଅଂତର୍ହିତ । ସକଳ ସଂଶୟର ଅବସାନ ଘଟିଛି ଏଇ ଅପୂର୍ବ ମୁହୂର୍ତ୍ତରେ ।

Digitized by PPRACHIN, SOA

ସର୍ବତ୍ର ଏକ ସ୍ୱର୍ଗୀୟ ଆନନ୍ଦାନୁଭୂତ ।। ଦ୍ୟୁଲୋକ ଭୂଲୋକ ମାତୃମହିମାରେ ଉଜ୍ଜ୍ୱଳ ଉଦ୍‌ଭାସିତ । ସଚରାଚର ଏକ ଦିବ୍ୟସଙ୍ଗୀତର ବିମୁଗ୍ଧ ଆଳାପ । ଆକାଶ, ଅଂତରୀକ୍ଷ ଯେଉଁ ମହାଦେବୀଙ୍କର ଜୟଜୟକାର ।

ଏଇ କବିତାରେ ଦିବ୍ୟସନ୍ଦର୍ଶନର ବାର୍ତ୍ତାମୂଳରେ ନିହିତ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ସଙ୍କେତଟି ହେଉଛି, କବିଂକର ବିଶ୍ୱାସନିଷ୍ଠ ଓ ଅନୁରକ୍ତଦୃଷ୍ଟିର ଅଧ୍ୟାତ୍ମ ଦୃଷ୍ଟି ସର୍ବତ୍ର ଦିବ୍ୟ ଆଲୋକକୁ ପ୍ରତ୍ୟକ୍ଷ କରିଛି ଓ ଦିବ୍ୟସତ୍ତାଙ୍କ ସମ୍ପର୍କରେ ନିଃସନ୍ଦେହ ପ୍ରତ୍ୟୟ ଲାଭ କରିଛି । ପୂର୍ବରୁ 'ଆକାଶପ୍ରତି' କବିତାରେ ସଂକେତିତ ମହାଭାବ ଏଠାରେ ଉପଲବ୍ଧିରେ ହୃଦୟସ୍ପୃଷ୍ଟ । ମାତ୍ର ଚେତନା-ଭୂମିରେ ଦିବ୍ୟାବତରଣର ପୂର୍ଣ୍ଣ-ମହୋତ୍ସବ ଘଟିନାହିଁ । ତେବେ ତାର ଆଶ୍ୱାସନା ମିଳିଛି । ବିଶ୍ୱାସର ଆକାଶରେ ଆଶାର ଆଲୋକ ଯେଉଁ ଦିବ୍ୟସ୍ଥିତିର ନିଃସନ୍ଦେହ ପ୍ରମାଣ ବାଢ଼ିଛି, ସେ ଦିବ୍ୟ-ପୁରୁଷ ଏପର୍ଯ୍ୟନ୍ତ କାବ୍ୟ-ପୁରୁଷଂକ ହୃଦୟରେ ଅବତରଣ କରିନାହାନ୍ତି । କବି ତାଙ୍କୁ ବିଶ୍ୱର-ଈଶ୍ୱର ରୂପେ ଜାଣିବାକୁ ପାଇଛନ୍ତି, ଅଂତରର ଅଧୀଶ୍ୱରରୂପେ ଏପର୍ଯ୍ୟନ୍ତ ଲାଭ କରିନାହାନ୍ତି । କିନ୍ତୁ ଯେ ସର୍ବତ୍ରମୟ, ସେ ଅଂତର୍ଗତ ବି ହୋଇପାରନ୍ତି ଏ ଆଶ୍ୱାସନାର ଅବକାଶ କବିଚିତ୍ତ ଲାଭକରିଛି ।

ସେ ରକ୍ଷାକରନ୍ତି, ପଥ ଦେଖାନ୍ତି, ଆବିର୍ଭୂତ ହୁଅନ୍ତି । ମାତ୍ର ବ୍ୟକ୍ତିର ଏ ରୂପ ଲୋଡ଼ିବା ଆତ୍ମ ମୁକ୍ତି ପାଇଁ; ଭବ ଯଂତ୍ରଣାରୁ ନିଷ୍କୃତି ପାଇଁ । ଏହା ସ୍ୱାର୍ଥଜନିତ । ମାତ୍ର ସମର୍ପଣର ସାଧନା ହେଉଛି ଭଗବାଦ୍-ପ୍ରୀତ୍ୟର୍ଥ । 'ଆଶା' ପରବର୍ତ୍ତୀ କବିତାମାନଂକରେ ଏଇ ଆରାଧନାଭାବର ରୂପସଙ୍କେତ ସ୍ପଷ୍ଟ ବିଦ୍ୟମାନ ।

ରହସ୍ୟଚେତନାରେ ଏଇ 'ଆଲୋକ' ଓ 'ଧ୍ୱନି' ସହ 'ଦିବ୍ୟକୃପା'ର ସମ୍ବଂଧଟି ଅନିବାର୍ଯ୍ୟ । ବ୍ୟକ୍ତିର ଅନୁଭୂତ ସାମର୍ଥ୍ୟ, ଶୁଣିବା ଓ ଦେଖିବାର ଶକ୍ତି ମାଧ୍ୟମରେ ହିଁ ଏ ଉପଲବ୍ଧି ସଂଘଟିତ । ବ୍ୟକ୍ତି ~~କର୍ତ୍ତାରୂପେ~~ ଦେଖିଥାଏ ବା ଶୁଣିଥାଏ । ମାତ୍ର ତାର ଭୂମିକାଟି ଏଇ ପର୍ଯ୍ୟନ୍ତ । ସେ ଶ୍ରବଣ-ଶକ୍ତି ବା ଦୃଷ୍ଟି ଶକ୍ତିର ପ୍ରଭୁ ନୁହେ । ପୁଣି ଦର୍ଶନୀୟ ବା ଶ୍ରବଣୀୟର ସ୍ରଷ୍ଟା ମଧ୍ୟ ନୁହେ । ଦ୍ରଷ୍ଟା ବା ଶ୍ରୋତା ପରିଚୟରେ ବରଂ ତାର ପରୋକ୍ଷ ଓ ଗୌଣପରିଚୟଟି ହିଁ ସ୍ୱୀକୃତ ।

ମାତ୍ର ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ—ଶ୍ରବଣ ଦର୍ଶନର କ୍ରିୟା ବ୍ୟକ୍ତି ଉପଲବ୍ଧିରେ ହିଁ ସଂଘଟିତ ହୋଇଥାଏ । ବ୍ୟକ୍ତି ନିର୍ଦ୍ଦିଷ୍ଟ ମାଧ୍ୟମ ବିଶେଷ ନୁହେ । ଦେଖିବା ଶୁଣିବାର ଭାବାନୁଭୂତି ଟିକକ ତାର ନିଜସ୍ୱ । ବ୍ୟକ୍ତି ଉପଲବ୍ଧି ଭିତରେ ହିଁ ମୁକ୍ତିର ସୃଷ୍ଟି କ୍ରିୟା ଅର୍ଥାନ୍ୱିତ ହୋଇଥାଏ ।

ଅଧ୍ୟାତ୍ମ ସାଧନାରେ ଆଲୋକ ଓ ବାଣୀର ଉପଲବ୍ଧି 'ଦିବ୍ୟ ପ୍ରତିଶ୍ରୁତି'ର ତାତ୍ପର୍ଯ୍ୟ ବହନ କରନ୍ତି । ଯଥା (୧) ଅଦେଖା, ଅଜଣା ଓ ଅଶୁଣା ହେବା ସତ୍ତ୍ୱେ ବି ଭିନ୍ନ କିଛି ରହିଛି । (୨)ଆଲୋକ ଓ ବାଣୀ ତାହାର ସନ୍ଦେଶ । (୩) ନିଜଠାରେ ସେ ଭିନ୍ନ 'ପରମ'ଙ୍କୁ ଆବାହନ । (୪) ସେ ଆବାହନର ସଫଳତାର ପ୍ରତିଶ୍ରୁତି ରୂପେ ଚିତ୍ତରେ ଆଲୋକ ଓ ବାଣୀର ଉଦ୍‌ଘାଟନ । ମଧୁସୂଦନଙ୍କ 'ଅଧ୍ୟାତ୍ମ ତତ୍ତ୍ୱଚିନ୍ତା'[୧୫] ପ୍ରବଂଧରେ ଏହି ଭାବରାଶିର ତାତ୍ତ୍ୱିକ ଅନୁଶୀଳନ ଏଠାରେ ସ୍ମରଣୀୟ ।

---

୧୫ ଦ୍ରଷ୍ଟବ୍ୟ—'ମଧୁସୂଦନ ଗ୍ରନ୍ଥାବଳୀ'—ପୃ ୪୦୯-୪୧୬

Digitized by PPRACHIN, SOA

ରହସ୍ୟବାଦୀ ସାଧନାରେ ପ୍ରଥମରେ ଆସେ ଗ୍ଲାନିବୋଧ ଏବଂ ପରେ ପରେ ନୈଷ୍କ୍ରିୟ-ବୋଧ । ଜୀବ ସୀମାବଦ୍ଧ , ବୃତ୍ତିନିବନ୍ଧ,ଅଜ୍ଞାନତାଆବୃତ । ତଥାପି ତାର ଭିତରେ ଦିବ୍ୟଆଲୋକ ଓ ବାଣୀର ଆବିର୍ଭାବ । ଈଶ୍ୱରଙ୍କ କୃପା ବଳରେ ତାର ଦିବ୍ୟତ୍ୱ ସମ୍ପର୍କରେ ସଚେତନତା । ବ୍ୟକ୍ତି ଜାଣିବାକୁ ପାଏ, ସେ ଦିବ୍ୟତ୍ୱବର୍ଜିତ ନୁହେଁ, କେବଳ ଆପଣାର ଦିବ୍ୟତ୍ୱ-ବିସ୍ମୃତ । ସେହି ଦିବ୍ୟତ୍ୱର ପୂର୍ଣ୍ଣଜ୍ଞାନ ଲାଭ ପାଇଁ ପ୍ରେରଣା ଓ ସାଧନା ପଥରେ ଧୈର୍ଯ୍ୟ ସହାୟତାର ନିଶ୍ଚିତ ପ୍ରତିଶ୍ରୁତି—ଚେତନାରେ ଆଲୋକପର୍ବର ତାହାହିଁ ରହସ୍ୟବାଦୀ ତାତ୍ପର୍ଯ୍ୟ ।

କବି ଅନ୍ତରର ଏ ପ୍ରତ୍ୟକ୍ଷ-ଉପଲବ୍ଧି ଲବ୍ଧ ଆଲୋକାନୁଭୂତିର ବାର୍ତ୍ତା 'ଆଶା' ପରବର୍ତ୍ତୀ 'ଋଷିପ୍ରାଣେ ଦେବାବତରଣ', 'ଧ୍ୱନି', 'ନବବସନ୍ତଭାବନା' ପ୍ରଭୃତିରେ ଲିପିବଦ୍ଧ । ସେହିପରି ଧ୍ୱନି ମଧ୍ୟ 'ଧ୍ୱନି' କବିତାରେ ତତ୍ତ୍ୱରୂପ ଲାଭକରିଛି ।

ଏ ଆଲୋକ ଓ ଧ୍ୱନିତତ୍ତ୍ୱ ମୂଳରେ ମଧୁସୂଦନଙ୍କ ରହସ୍ୟଚେତନାର 'କୃପାତତ୍ତ୍ୱ' ପୂର୍ଣ୍ଣ ସ୍ୱୀକୃତ । 'ଦିବ୍ୟବିଧାନ' ରୂପ କୃପା ଜୀବ ପାଇଁ ଅହେତୁକ, ତାର ଦାବୀର ପରିସରଭୁକ୍ତ ନୁହେଁ । ସକଳ ଅଧ୍ୟାତ୍ମପ୍ରଚେଷ୍ଟାସମୂଳରେ ରହିଛି ସେହି କୃପାର ପ୍ରଚ୍ଛନ୍ନ ଓ ପ୍ରକାଶ୍ୟ ସହାୟତା ଏବଂ ଏ କୃପା ବ୍ୟତିରେକେ ସିଦ୍ଧିର ପୂର୍ଣ୍ଣତା ଅସମ୍ଭବ । ମଧୁସୂଦନଙ୍କ ଅନୁସୃତ ବ୍ରାହ୍ମ-ବାଦୀ କୃପାତତ୍ତ୍ୱରେ ଉଭୟ ଖ୍ରୀଷ୍ଟୀୟ-ଉପାସନା ଓ ବୈଷ୍ଣବ ଆରାଧନାର ଭାବପରମ୍ପରା ସମ୍ମିଳିତ ହୋଇଯାଇଛି – 'ନିଃଶବ୍ଦେ ମୋ କ୍ଷମାସିନ୍ଧୁ ଜଳେ ବୁଡ଼ିଯିବ / ଫିଙ୍ଗିଦେଲେ ମେରୁ ସମ ତୋର ପାପଭାର'[୧୬] ରସକଲ୍ଲୋଳକାର ଦୀନକୃଷ୍ଣଙ୍କ ନାମ ମହାତ୍ମ୍ୟ[୧୭] ଜ୍ଞାନକୁ ସ୍ମରଣ କରାଇ ଦିଏ । ଏ କୃପା ଅସୀମ ପ୍ରେମ ସଞ୍ଜାତ ଓ ବିଶ୍ୱପୂର୍ଣ୍ଣ ।[୧୮] 'ଆଶା' କବିତାରେ ଉପଲବ୍ଧ ସତ୍ୟଟିର ମହତ୍ତମ ବୈଭବ ହେଉଛି ଆତ୍ମାପରମାତ୍ମାଙ୍କ ନିତ୍ୟ ସମ୍ବନ୍ଧ । ବ୍ୟକ୍ତିସତ୍ତା ଦିବ୍ୟସତ୍ତାର ଅଂଶହିଁ—'ଆଶା'ର ଏ ସ୍ପଷ୍ଟ ଉଦ୍‌ଘୋଷଣ 'ଆତ୍ମସମର୍ପଣ' କବିତାକୁ ଉଦ୍‌ବୁଦ୍ଧ କରିଛି । ବ୍ୟକ୍ତିର ଯେଉଁ ଭ୍ରାନ୍ତବୋଧ ତାକୁ ପରମଙ୍କଠାରୁ ବିଚ୍ଛିନ୍ନ କରି ରଖିଥାଏ, ସେହି ଭ୍ରାନ୍ତିର ନିରସନ, ଜ୍ଞାନନୟନର ଉନ୍ମୀଲନରେ 'ନବପ୍ରାଣମନ୍ତ୍ର' ଚିତ୍ତଧାମରେ କେବଳ ଦିବ୍ୟସଂଗୀତର ଗୁଂଜରଣ, ଆଲୋକର ଉଦ୍ଭାରଣ ଓ ଆନନ୍ଦର ମହାପ୍ଲାବନ । କାବ୍ୟ-ପୁରୁଷ ଏଠାରେ ଯେଉଁ ଆଶୀର୍ବାଦର ଅମୃତ ଜୀବନର ସଧାନ ଲାଭକରିଛନ୍ତି, ତାପ୍ରତି କୃତଜ୍ଞତାରେ ତାଙ୍କର ସମଗ୍ର ସତ୍ତା ଯେପରି ଉଚ୍ଛ୍ୱସିତ ହୋଇଉଠିଛି । 'ଆତ୍ମସମର୍ପଣ' ସେହି ଆନନ୍ଦର ଉଚ୍ଛ୍ୱସିତ ଗାନ । ସେ ଉଚ୍ଛ୍ୱାସ ପରେ ପରେ ମୁଗ୍ଧ ଗଂଭୀର ସ୍ୱଗତାଳାପର ସ୍ତବରେ (ଛନ୍ଦମାଳା) ସମାହିତ ହୋଇଯାଇଛି ।

---

୧୬ 'କ୍ଷମାସାଗର' (ବସନ୍ତଗାଥା)—ମଧୁସୂଦନ ଗ୍ରନ୍ଥାବଳୀ—ପୃ ୧୦୪

୧୭ "କୃଷ୍ଣନାମରେ ପାପକ୍ଷୟ ଯେତେ / ପାପୀ କରି ନପାରେ ପାପ ତେତେ"
ରସକଲ୍ଲୋଳ ୫ମ ଛାନ୍ଦ—ଦୀନକୃଷ୍ଣ

୧୮ "ତୁମ୍ଭ କୃପାପୂର୍ଣ୍ଣ ଏହି ବସୁନ୍ଧରା ବିଶ୍ୱପୂର୍ଣ୍ଣ ତୁମ୍ଭ ପ୍ରେମେ
ସଙ୍ଗୀତମାଳା—ଗ୍ରନ୍ଥାବଳୀ ପୃ ୧୦୪

Digitized by PPRACHIN, SOA

'ଆତ୍ମସମର୍ପଣ' କବିତାଟି ଆମକୁ **Wiliam Cowper** ଙ୍କ 'କବିତା' **submission** ର ଭାବ ଓ ଚୈତନ୍ୟକ ଅଭିବୃଦ୍ଧି ସମ୍ପର୍କରେ ଅବହିତ କରାଇଦିଏ । ଏ କବିତାରେ କ୍ଷୁଦ୍ର ହେଲେ ମଧ୍ୟ ଭାବବିପୁଳ । ଏକ ଦୁର୍ଲଭ ମୁହୂର୍ତ୍ତର ଉଦ୍‌ବୋଧନରେ ହୃଦୟର ରସପ୍ରସ୍ରବଣ ଯେପରି ଗିରିଗୁହାରୁ ଉତ୍ସାରିତ ହୋଇ ଧରଣୀବକ୍ଷରେ ଅଜାଡ଼ି ହୋଇପଡ଼ିଛି । ସାଧନାର ସଂଭାବନା ସଂକେତରେ ଏହା ଆଶା-ଉଜ୍ଜ୍ୱଳ । ପରବର୍ତ୍ତୀ ନବୀପ୍ରଭ କବିତାର ଭାବବସ୍ତୁ ଓ ରୂପାଙ୍କନର ଅମୃତସ୍ପନ୍ଦନ ଏଥିରେ ପ୍ରଥମ ପ୍ରକାଶ ଲାଭ କରିଥିବା ପରି ମନେହୁଏ । ଏ କବିତାରେ ପରମେଶ 'ପ୍ରାଣେଶ' ରୂପେ ସଂବୋଧିତ; ତାଙ୍କୁ ବାଦଦେଇ କବିଙ୍କର ସ୍ୱତଂତ୍ର ଅସ୍ତିତ୍ୱ କଳ୍ପନା ଆଉ ସଂଭବ ନୁହେ । ସେ ତାଙ୍କର ଆତ୍ମଜ ରୂପେ ଅମୃତତ୍ୱର ଅଂଶହାରୀ, ପୁଣି ଉତ୍ତରାଧିକାରୀ ବି । କବିଙ୍କ ସୃଷ୍ଟି ମୂଳରେ ରହିଛି ଏକ ମହାଇଚ୍ଛାର ସଂକଳ୍ପ, ଏକ ଅକ୍ଷୟ ପ୍ରେମର ପ୍ରେରଣା ଓ ଏକ ଅଗାଧ ମହିମାର ଆଶୀର୍ବାଦ ଏବଂ ଏକ ଅନନ୍ତ ଜୀବନର ଇଂଗିତ । ବିହାୟସର ବକ୍ଷ ପ୍ରସାରିତ ନଥିଲେ ବିହଂଗର ପକ୍ଷର ସାର୍ଥକତା କିଛିନାହିଁ । ସୀମାର କ୍ଷୁଦ୍ର ପ୍ରାଣରେ ହିଁ ଅସୀମର ଜୟଗାନ । ସ୍ରଷ୍ଟାର ସ୍ନେହଦୃଷ୍ଟି, ଅଭୟ ଆଶ୍ରୟ କୋଳରେ କବି ଏକ ନିଶ୍ଚିନ୍ତ ଓ ଆନନ୍ଦତୃପ୍ତ ।

ଏହି ଆଲୋକ, ସଙ୍ଗୀତ, ଅମୃତ ଓ ଆନଂଦର ସଂଗୀତ ଭିତରେ କବିଙ୍କ ଅଂତଃଗହନର ଉଚ୍ଚାରିତ ଦୁଃଖର ସ୍ୱରଟି କ୍ଷୀଣ ହେଲେ ବି ଅଶ୍ରୁତ ରହିପାରିନାହିଁ । ଏ ଦୁଃଖଟି ପ୍ରସ୍ତୁତି ପର୍ବର (Purgationର) କବି ଜାଣୁଛନ୍ତି, ହୃଦୟ କମଳ ପ୍ରସ୍ଫୁଟିତ ହେବ, ଜୀବନ-ପ୍ରିୟଙ୍କ ପ୍ରୀତିସ୍ପର୍ଶ ଲାଭକରିବ ଏବଂ ଦିନେ ତାଂକ ଜୀବନ ସ୍ରଷ୍ଟାର ଜୈତ୍ର-ସଂକେତ ରୂପେ ସାର୍ଥକତା ଲାଭକରିବ । ମାତ୍ର ଏ ଜୀବନର ସାଧନ ସାମର୍ଥ୍ୟକୁ କବିସତ୍ତା ଏପର୍ଯ୍ୟନ୍ତ ଆୟତ୍ତ କରିପାରିନାହିଁ । ସୀମାର ବଂଧନକୁ ଛିନ୍ନ କରିପାରିନାହିଁ, ବରଂ ସ୍ପଷ୍ଟକରି ତାର ବଂଧନ-ଶକ୍ତିର ପରିଚୟ ପାଇଛି । ଆଲୋକ-ଚେତନାର ଏହାହିଁ ବୈଶିଷ୍ଟ୍ୟ ଯେ ସେ ବ୍ୟକ୍ତିକୁ ପରମଙ୍କ ସହ ନିବଂଧନର ସୂତ୍ରଟି ଦେଖାଇଦିଏ, ମାତ୍ର ସେଇ ସଂଗେ ତାର ସୀମାର ପାର୍ଶ୍ୱଟିକୁ, ଜୀବ ଅସହାୟତ୍ୱକୁ ସ୍ପଷ୍ଟତର କରିଦିଏ । ସତ୍ତାର ସେଇ ଦୈନ୍ୟ, ସଂକୋଚର ବେଦନା ଏଠାରେ ଆପଣାକୁ 'ଦୁଃଖୀ' ରୂପେ ଚହ୍ନାଇ ଦେଇଛି । ସେଇ ଦୁଃଖର ଉଦ୍‌ବୋଧନରୁ ସମର୍ପଣର ବ୍ୟାକୁଳତା ଜନ୍ମଲାଭ କରିଛି । କ୍ଷୁଦ୍ରପ୍ରାଣର ପ୍ରୀତି-ନିବେଦନ ଭୂମାଙ୍କ ପାଇଁ ସିନା ·ସାମାନ୍ୟ, ମାତ୍ର ତାର ତ ସମ୍ବଳ ସେତିକ, ଦୁଃଖୀଧନ ରୂପେ ସେତିକ ସେ ପ୍ରିୟପରମଙ୍କୁ ଅର୍ପଣ କରିପାରେ, ପଦତଳେ ସମର୍ପଣର ଆକୂତିସେନି ବ୍ୟଷ୍ଟିସତ୍ତା ଓ କବି ସତ୍ତା ଏକାତ୍ମତା ଲାଭ କରିଛନ୍ତି । ପରେ ପରେ ଛନ୍ଦମାଳାର ସ୍ତବ ଓ ସଂଗୀତ ମାଳାର ଅନେକତ୍ର ସୀମାର ଏ ଦୁଃଖ-ଦୈନ୍ୟ ଆହୁରି ସ୍ପଷ୍ଟ ଅଭିବ୍ୟକ୍ତି ଲାଭକରିଛି ।

'ଆଶା' କବିତାର ଅଂତର୍ନିହିତ ଉପଲବ୍ଧିପରେ କବିଙ୍କ ମାୟାବାଦ ଓ ସଂସାରବିରାଗର ତୀବ୍ରସ୍ୱର ଅଂତର୍ହିତ । ଆନଂଦ, ଅମୃତ ଓ ବିଶ୍ୱାସନିର୍ଭର 'ଆଶା'କୁ 'ଦେବାବତରଣ' ର ପୃଷ୍ଠଭୂମି ରୂପେ ବିବେଚନା କରାଯାଇପାରେ । ବସ୍ତୁତଃ 'ଆଶା' ର ଉପଲବ୍ଧିହିଁ 'ଦେବାବତରଣ'ର ଭାବମାନସକୁ ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି ଦାନକରିଛି । ଦେବାବତରଣର ଦିବ୍ୟମୁହୂର୍ତ୍ତରେ କବିଚେତନାରେ ପୂର୍ବତନ ସକଳ ଜିଜ୍ଞାସା ଯେପରି ସମାଧାନ ରୂପ ଲାଭ କରିଛନ୍ତି । ଏ ଯାବତ୍ ଜଗତ ଓ ଜୀବନ ସଂପର୍କରେ କବିମାନସର ଯାବତୀୟ ପ୍ରଶ୍ନ ଏଠାରେ ଯେପରି ଏକ ଅଦ୍ଭୁତ ଉତ୍ତରସ୍ୱର ଦିବ୍ୟୋଚ୍ଚାରଣ ଭିତରେ ପ୍ରବୁଦ୍ଧ ହୋଇଯାଇଛି । 'ଦେବାବତରଣ'ର ପରବର୍ତ୍ତୀ କାବ୍ୟସଂବାଦର ଜୀବ-ପରମଙ୍କ ନିତ୍ୟ ସମ୍ପର୍କର ସଂଦେଶ

Digitized by PPRACHIN, SOA

କାବ୍ୟପୁରୁଷର ପ୍ରାଣପୁରୁଷଙ୍କ ସହ ସମାହିତ ବାର୍ତାଳାପର ଗୁଂଜନଟି ସ୍ପଷ୍ଟ । 'ଦେବାବତରଣ' କବି ଚେତନାର ଏକ ସ୍ଥାୟୀ ଉପଲବ୍ଧି, ଏହାପରେ ଯେତେ କିଛି ଘଟଣା ଘଟିଛି ଓ ଉପଲବ୍ଧିମାନ ଉଚ୍ଚାରିତ ହବୁ ସେସବ ଏହି ଉତ୍ସରରୁ ଉତ୍ସାରିତ ।

* 'ଦେବାବତରଣ' ପରେ କବିଚେତନାରେ ଅନଂତବାଦ ଓ ଆନଂଦବାଦ ସମ୍ପର୍କୀୟ ଅବଧାରଣାର ସ୍ପଷ୍ଟ ଅଭିବ୍ୟକ୍ତି ଲାଭକରିଛନ୍ତି । ପ୍ରକୃତ ବିଶ୍ବରହସ୍ୟର ଗଂଭୀରତାକୁ ତାଙ୍କ ସମ୍ମୁଖରେ ଉନ୍ମୁକ୍ତ କରିଦେଇଛି । ଆର୍ଯ୍ୟଚେତନାର ବିଶ୍ଵଚେତନାକୁ ସଂପ୍ରସାରଣ ଘଟିଛି ଏବଂ ଆର୍ଯ୍ୟଜୀବନରୁ ବିଶ୍ୱଜୀବନକୁ ଅତିକ୍ରମଣ ହୋଇଛି । ଦେବାବତରଣର ଉଦ୍‌ବୋଧନ ମୂହୂର୍ତଟି ଆର୍ଯ୍ୟଚେତନାର । ପରିବେଶ ଓ ଭାବସଂପଦ ବୈଦିକ । ମାତ୍ର ଭୂମାବତରଣ ପରେ ଆର୍ଯ୍ୟମାନସ ଋଷି ପ୍ରାଣରେ ରୂପାଂତରିତ ହୋଇଛି । 'ଆର୍ଯ୍ୟ' ବ୍ୟକ୍ତି ସାଧନାର କଥା କହିପାରେ, ମାତ୍ର ବିଶ୍ୱାଲିଂଗନର ସାମର୍ଥ୍ୟ ଲାଭପରେହିଁ ବ୍ୟକ୍ତି ଋଷିରେ ରୂପାଂତରିତ ହୁଏ । ବୈଦିକ ଚେତନାର ନିର୍ଦିଷ୍ଟ ଭାବପ୍ରତୀକ ରବି, ଦେବହୃତି, ହିରଣ୍ୟଗର୍ଭ, ଉଷା, ସବିତା, ହିମାଳୟ ପ୍ରଭୃତି ଶବ୍ଦ ନିଖିଳ ଚେତନାର ବିଶ୍ୱପ୍ରସାରୀ ଇଙ୍ଗିତ ଲାଭକରିଛନ୍ତି । ଋଷିପ୍ରାଣେ ଦେବାବତରଣର ରଚନାକାଳ ୧୮୯୪ ଖ୍ରୀଷ୍ଟାବ୍ଦ । କବିତାଟି ବୈଦିକ ଭାବ-ସମ୍ପଦରେ ଉଦ୍‌ବୁଦ୍ଧ । ଦେବତାତ୍ମା ହିମାଳୟର ପରିବ୍ୟାପ୍ତ ନିର୍ଜନତା ଭିତରେ ପୁଣ୍ୟତୋୟା ସରସ୍ୱତୀର କଲୋଚ୍ଛ୍ୱାସ । ବ୍ରାହ୍ମମୁହୂର୍ତର ଉଜ୍ଜ୍ୱଳ ଆକାଶ, ଅସ୍ତୋନ୍ମୁଖ କାବ୍ୟତାରା, ସମାପ୍ତି-ପ୍ରାୟ ରାକାରଜନୀର ମୃଦୁ ଜ୍ୟୋତ୍ସ୍ନାରେ ଅଭିସ୍ନାତ ଶୁଭ୍ର ହିମଗିରି । ଏହି ଅବକାଶରେ ଦ୍ୟୁଲୋକ-ଦୁହିତା ଉଷାଙ୍କର ଭୁବନଭରା ଆଲୋକ ଉତ୍ସବମୟ ଆୟୋଜନ । ପରିବ୍ୟାପ୍ତ ପ୍ରଶାଂତ ଦ୍ୟାବାପୃଥିବୀର ଏ ମହାମିଳନରୂପ ଅମୃତଲଗ୍ନ । ଏ ପରିବେଶରେ ଋଷିପ୍ରାଣରେ ଦିବ୍ୟ ଚେତନାର ଉଦ୍‌ବୋଧନ ।

କବିତାଟିର ଭାବବସ୍ତୁ ଓ ପରିବେଷଣ ଭଂଗୀଟି ଏକାଂତ ବୈଦିକ । ପ୍ରସଂଗତଃ ଉଲ୍ଲେଖ-ଯୋଗ୍ୟ—କବିଂକ ଅନୂଦିତ ପ୍ରବଂଧ 'ଚଂଦ୍ର ଓ ତାରା'ର[୧୯] ନିମ୍ନୋକ୍ତ ପଂକ୍ତି ସହ ଏହାର ସ୍ୱରସାମ୍ୟ ଲକ୍ଷିତ-'ଚନ୍ଦ୍ରାସ୍ତର ପ୍ରାତଃକାଳରେ ଜଣେ ଦିବ୍ୟପୁରୁଷ ଧନୁସ୍ୱରୂପ ଚନ୍ଦ୍ରର ଦୁଇ କୋଟିରେ ଚରଣ ସ୍ଥାପନ କରି ଥରେ ସମୁଦାୟ ବ୍ରହ୍ମାଣ୍ଡକୁ ଅବଲୋକନ କଲେ । ଦେଖିଲେ, ତାଙ୍କ ପଛଆଡ଼େ ସୂର୍ଯ୍ୟ, ପଦତଳେ ଚନ୍ଦ୍ର, ସମ୍ମୁଖରେ ପୃଥିବୀ ଏବଂ ମସ୍ତକୋପରି ନକ୍ଷତ୍ରରାଜି, ଏହା ଦେଖିଲକ୍ଷଣି ଈଶ୍ୱରଙ୍କ ଅନନ୍ତମହିମାଚିନ୍ତାରେ ତାଙ୍କ ହୃଦୟ ସ୍ତବ୍ଧ ହୋଇଗଲା । ପ୍ରୀତିପୂର୍ଣ୍ଣ ଦିବ୍ୟସ୍ୱରରେ ସେ ଈଶ୍ୱରଙ୍କୁ ଆରାଧନା କଲେ ।''

ନିଷ୍କର୍ଷ ହେଉଛି— ମଧୁସୂଦନଙ୍କ ଭାଗବତବୋଧ ବିଶ୍ୱରହସ୍ୟ ଭିତରେ ବିଶ୍ୱାତୀତଙ୍କୁ ଉଦ୍‌ଘାଟିତ କରିପାରିଥିଲା । ତେଣୁ ପବିତ୍ର ମୂହୂର୍ତକୁ ପବିତ୍ରତର କରି ଉଷାର ଉତ୍ସବ-ପ୍ରାଂଗଣରେ

---

* ନିବନ୍ଧରେ ଦେବାବତରଣ ସବଂତ୍ର 'ଋଷିପ୍ରାଣେ ଦେବାବତରଣ' ଅର୍ଥରେ ଓ 'ହିମାଚଳେ'... 'ହିମାଚଳେ ଉଦୟ ଉତ୍ସବ' ଅର୍ଥରେ ପ୍ରଯୁକ୍ତ ହୋଇଛି ।

୧୯ ସାହିତ୍ୟପ୍ରସଂଗ—ମଧୁସୂଦନ ଗ୍ରନ୍ଥାବଳୀ—ପୃ ୩୪୨

Digitized by PPRACHIN, SOA

ବିଶ୍ୱାମ୍ୟମାନ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ, ହିରଣ୍ୟଗର୍ଭ ଦିବ୍ୟପୁରୁଷ/ଋଷିସୁବିକଙ୍କୁ ସେ ସହଜରେ ଗ୍ରହଣ କରି ନେଇଥିଲେ । କବିଙ୍କ କଳ୍ପନାଗ୍ରହଣ ଏହିଠାରେ ଆର୍ଷ ଭାବମାନସ ସହ ତାଦାତ୍ମ୍ୟ ଲାଭକରି ସୃଷ୍ଟିର ଶୋଭାସପଦ ଏବଂ ସ୍ରଷ୍ଟାର ବିପୁଳ ମହିମାକୁ ପ୍ରତ୍ୟକ୍ଷ କରିଛି । ଏକ ସରସ-ଅନୁଭବରେ ସେ ଭାବ-ମୁଗ୍ଧ ଋଷିପ୍ରାଣ ଅମୂର୍ତ୍ତ ଜ୍ୟୋତିଃଲାବଣ୍ୟକୁ ନିରୁପମ ସୁଷମାମଣ୍ଡିତ ହୋଇ ଝଳି ଉଠିବା ଦେଖିଛି । ସେ ଅନୁଭବର ପ୍ରକାଶ ପାଇଁ କାବ୍ୟପୁରୁଷ ବାଣୀସ୍ୱନ । ଏକ ବିଶ୍ୱପ୍ରସାରଣୀ ସଙ୍ଗୀତତାନ ନିଖିଳ ବିଶ୍ୱ-ତନ୍ତ୍ରୀରୁ ଝଂକୃତ ହୋଇ ବିଶ୍ୱାତୀତ ଅନିର୍ବଚନୀୟତାରେ ଋଷି-ମାନସକୁ ଅଭିଭୂତ କରିଦେଇଛି । ଅନିରୁଦ୍ଧ ହୃଦୟ ଉଚ୍ଛ୍ୱାସ ପ୍ରେମାଶ୍ରୁର ଜାହ୍ନବୀ-ଯମୁନା ହୋଇ ଝରିଆସିଛି । ସମ୍ମୁଖରେ ଚରାଚର ବିଶ୍ୱରୂପେ ବିଶ୍ୱମୟଂକର ଜ୍ୟୋତିଃପ୍ରଭ ପ୍ରକାଶ, ଅଂତରରେ ପ୍ରାଣ ସ୍ପଂଦନ ରୂପେ ଅଂତରତମଙ୍କର ଅମୃତମୟ ଆବେଗ,ଋଷିପ୍ରାଣର ଏହି ମଧୁର ଅନୁଭବରେ ଚରାଚର ପରମପ୍ରେମରେ ପୂର୍ଣ୍ଣ ହୋଇଯାଇଛି । ସ୍ଥାନ ଓ କାଳର ଅନନ୍ତ ପରିବ୍ୟାପ୍ତି ଭିତରେ ବିଶ୍ୱଚେତନା ଓ ବ୍ୟକ୍ତିଜୀବନ ଏକ ଖଣ୍ଡିତ ମୁହୂର୍ତ୍ତ ପାଇଁ ଏକ ହୋଇଯାଇଛନ୍ତି ।

ଏହା ସ୍ପଷ୍ଟ ଯେ, 'ଋଷିପ୍ରାଣେ ଦେବାବତରଣ' କବିଙ୍କର ବ୍ୟକ୍ତିଗତ ଅନୁଭବରୁ ଉଚ୍ଚାରିତ ନୁହେ ।–ଏ କବିତା ବର୍ଣ୍ଣିତ ଉପଲବ୍ଧିଟି ମଧୁସୂଦନଙ୍କ ବ୍ୟକ୍ତିସତ୍ତ୍ୱର ନୁହେ, କାବ୍ୟପୁରୁଷର ଭାବ-ଲୋକରେ ହିଁ ସଂଘଟିତ । ଋଷି ଏଠାରେ ଏକ ଆରୋପିତ ବ୍ୟକ୍ତିତ୍ୱ ଯାହାର ଚେତନାକୁ ଆଶ୍ରୟକରି ଏହି କାବ୍ୟୋପଲବ୍ଧିଟି କବିମାନସରେ ସଂଗୃହିତ । ମନେହୁଏ, ଆର୍ଷ ଅନୁଭୂତିର ଏକ ତାତ୍ତ୍ୱିକ ରୂପଦାନ ଏଇ ବାଣୀପ୍ରୟାସର ଉଦ୍ଦେଶ୍ୟ ଥିଲା । ମାତ୍ର ଏକଥା ମଧ୍ୟ ଅନୁମାନ କରାଯାଇପାରେ ଯେ, କବି ବ୍ୟକ୍ତିଗତ ଜୀବନରେ ଯେଉଁ ଉପଲବ୍ଧିକୁ ଚରମ ଆଧ୍ୟାତ୍ମିକ ସିଦ୍ଧି ବୋଲି ଜାଣନ୍ତି, ତାର ପାଇଁ ଏକ ଆଶା ଆଶ୍ୱାସନାମୟ ଲୋଭନୀୟ ବିଶ୍ୱାସ ରୂପେ ଏଇ କାବ୍ୟ-ଶ୍ରୁତି ସମାଗତ । ଜୀବନ ଯାହାକୁ ପରମକାମ୍ୟ ବୋଲି ମନେ କରିଥାଏ, ଯାହାପାଇଁ ଜୀବନ ସ୍ୱୟଂ ଏକ ପ୍ରସ୍ତୁତି ଓ ଏକ ପ୍ରତୀକ୍ଷାର ସାଧନାରେ ନିଜକୁ ଉତ୍ସର୍ଗ କରିଦିଏ—ହୃଦୟ ବେଳେ ବେଳେ ତାହାର ଉତ୍ସଂଗମୟ ଆନନ୍ଦର କଳ୍ପନା ନକରି ରହିପାରେନାହିଁ । କବି ଚିତ୍ତର ଏ ମୁହୂର୍ତ୍ତକୁ ନେଇ ଅପେକ୍ଷା ଓ ଉଦ୍‌ବେଗ ସ୍ୱତଃ କଳ୍ପନାଶ୍ରୟୀ ହୋଇ ଋଷିସତ୍ତ୍ୱରେ କାମନାର ପରିପୂର୍ତ୍ତି ଲୋଡ଼ନ୍ତି । ଋଷି ଚରିତ୍ର ଏକ ଆକ୍ଷେପ, ଏକ ଅବଲଂବନ—ଯାହା ମାଧ୍ୟମରେ କବିସତ୍ତ୍ୱ ବ୍ୟକ୍ତି ପରିଚୟର ସୀମା ବଂଧନରୁ ଅପସାରିତ ହୋଇ, ସମୟ ଓ ସ୍ଥାନର ଦିଗସୀମା ଅତିକ୍ରମ କରି ଅନାଦି ଅନଂତ ମଧ୍ୟରେ ବିଶ୍ୱାସ୍ଥିତ ହେବାର ସୁଯୋଗ ଖୋଜିଛନ୍ତି । 'ଋଷି ପ୍ରାଣେ ଦେବାବତରଣ' କବିଚେତନାର ଏକ ପ୍ରୟାସ, ଏକ ପଦକ୍ଷେପ, ଏକ ଉଲ୍ଲଂଘନ, ଯାହା ସିଦ୍ଧିପ୍ରାପ୍ତ ହୋଇଛି 'ହିମାଚଳେ ଉଦୟ ଉତ୍ସବ' ରେ । ସେଠାରେ ବ୍ୟକ୍ତିସତ୍ତ୍ୱ କବି ସତ୍ତ୍ୱାକୁ ଆଉ ଋଷିସତ୍ତ୍ୱର ବିକଳ୍ପରୂପେ ଆଶ୍ରୟ କରିନାହିଁ । ଉଦୟ ଉତ୍ସବର ମୁହୂର୍ତ୍ତରେ ବ୍ୟକ୍ତିଠାରେ ଋଷିସତ୍ତ୍ୱ ଓ କବିସତ୍ତ୍ୱାର ଏକାତ୍ମତା ଘଟିଛି, ଅତିକ୍ରମଣ ମଧ୍ୟ ଘଟିଛି ।

ଲକ୍ଷଣୀୟ ଯେ 'ଦେବାବତରଣ'ର ଋଷିସତ୍ତ୍ୱ ପରବର୍ତ୍ତୀ ରଚନା ' ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ଆର୍ଷ ବ୍ୟକ୍ତିତ୍ୱ ସହ ଅଭିନ୍ନତା ଲାଭକରିଛି ।[୨୦] ବ୍ୟକ୍ତିଗତ ଭାବେ ମହର୍ଷି ଓ ତାଙ୍କ

---

୨୦ "ଗାୟତ୍ରୀର ପୁଣ୍ୟଗାଥା ଓଁକାର ସାଧନା ଋଷି ହୃଦୟର ଉଦ୍‌ବୋଧନ ।
X X ସହସା ଅମୃତଜ୍ୟୋତି ପୁଣ୍ୟ ଅବସରେ ସ୍ଥିରପ୍ରାଣେ ତମଃ ପରପାରେ ।"
ମଧୁସୂଦନ ଗ୍ରନ୍ଥାବଳୀ—ପୃ ୧୭୮—୧୭୯

Digitized by PPRACHIN, SOA

ଉପନିଷଦୀୟ ଉପଲବ୍ଧି ଏବଂ ଜୀବନାଦର୍ଶ ମଧୁସୂଦନଙ୍କୁ ଗଭୀର ପ୍ରଭାବିତ କରିଥିଲା । କବି ଚେତନାରେ ସେଇ ପ୍ରଭାବର ଅମୃତ ପରିଣତି ଋଷୀୟ ଉପଲବ୍ଧିର 'ଦେବାବତରଣ' । ଉଭୟ କବିତାର ଭାବସାମ୍ୟ ସ୍ୱୀକରଣୀୟ । ଉଭୟ କବିତାରେ ଉଦାତ୍ତଚେତନା ଓ ଉଦାର ଆନନ୍ଦର ବର୍ଣ୍ଣନା ରହିଛି । ପରିବେଶ, ସ୍ଥାନ ଓ ସମୟ ନିର୍ବାଚନ, ଆର୍ଷ ଭାବଧାରାର ସ୍ଫୁରଣ ପାଇଁ ଯଥାଯଥ ନିରୂପିତ । କବିତା ଦ୍ୱୟର ପରିବେଶ ବୈଦିକ, ଅନୁଭୂତି ବୈଦିକ, ବାଣୀ ଭଙ୍ଗୀ ମଧ୍ୟ ବୈଦିକ । ତୁଷାରଧବଳ ହିମାଚଳରେ ମହାଭାବମୟୀ ନଦୀ ସରସ୍ୱତୀ ତଟରେ, ଶୁଭ୍ରଶୁଭ୍ର ଉଷାକାଳରେ ହିଁ ମୁଗ୍ଧ ଋଷିପୁ ବା ତଥା ମହର୍ଷିଙ୍କ ହୃଦୟରେ ଦିବ୍ୟାନୁଭୂତି ସଞ୍ଜାତ ହୋଇଛି । କବିସତ୍ତା ଋଷି ଓ ମହର୍ଷିଙ୍କ ନେପଥ୍ୟରେ ରହିଯାଇଛି । ସତେ ଯେପରି ମଧୁସୂଦନଙ୍କ ସୂକ୍ଷ୍ମ ଭାବଚେତନା ପଶ୍ଚାଦ୍‌ଗତିରେ କାଳାନ୍ତର ଗମନକରି ମହର୍ଷି-ସତ୍ତାର ଭାବୋପଲବ୍ଧି ଭିତରେ ବୈଦିକ ଚିନ୍ତାମାନସ ସହ ଏକାକାର ହୋଇଯାଇଛି । ପ୍ରସଙ୍ଗତଃ ସ୍ମରଣୀୟ, ମଧୁସୂଦନ ସରସ୍ୱତୀ ନଦୀକୁ ବୈଦିକଚେତନାର ଏକ ବିଶେଷ ଭାବୋଦ୍ଦୀପକ ପ୍ରଚ୍ଛଦପଟରୂପେ ପ୍ରଯୁକ୍ତ କରିଛନ୍ତି ଯେପରି ଇଂରାଜୀ କବି ଓ୍ୱାର୍ଡ଼ସ୍‌ୱାର୍ଥ 'The Prelude' ରେ Derwent' ନଦୀର କଲୋଚ୍ଛ୍ୱାସରୁ ଅନନ୍ତର ମହାସଙ୍ଗୀତ ରହସ୍ୟ ସଂପର୍କରେ ସଚେତନ ହୋଇଉଠିଛନ୍ତି ।

'ଦେବାବତରଣ' ଏକ ଦାର୍ଶନିକ ଉପଲବ୍ଧିର କବିତା । କବି ଏଠାରେ ଦାର୍ଶନିକର ବିଶେଷ ପରିଚୟ ଯୁକ୍ତ । ଏହା ରୋମାଣ୍ଟିକର ଭାବକଳ୍ପନାଠାରୁ ଗଭୀର, ମାତ୍ର ମିଷ୍ଟିକର ଅନ୍ତରାନୁଭୂତିର ଗଭୀରତର ସ୍ତରକୁ ସ୍ପର୍ଶକରିନାହିଁ; ବରଂ ଏହାକୁ ଏକ ଭାବୋପଲବ୍ଧିର କବିତା ବୋଲି କୁହାଯାଇପାରେ । ପାଶ୍ଚାତ୍ୟ metaphysical poetry ପରି ଏହା ତତ୍ତ୍ୱନିଷ୍ଠ ଓ ଭାବଗୂଢ଼ । ଧ୍ୟାନସ୍ଥିର ଐକ୍ୟଚେତନାର କାବ୍ୟକପ୍ରୟାସରୁ ଦାର୍ଶନିକ କବିତାର ସୃଷ୍ଟି । ଭାବାନୁଶୀଳନ ଭିତରେ ନିର୍ଦ୍ଦିଷ୍ଟ ଭାବୋପଲବ୍ଧିର ତାତ୍ତ୍ୱିକ ପ୍ରତିଷ୍ଠା ତାର ଉଦ୍ଦେଶ୍ୟ । ସମଗ୍ର କବିତାଟିର ଗୋଟିଏ ନିର୍ଦ୍ଦିଷ୍ଟ ଭାବଚେତନା ସହ ଧ୍ୟାନନିବିଡ଼ ଐକାନ୍ତିକତା ଭିତରୁ ଅଖଣ୍ଡ ରସ ଯେପରି ପ୍ରମୂର୍ତ୍ତ ହୋଇଉଠେ । ଏ ରୂପ କବିତାରେ ଜଗତ ଓ ଜୀବନ ସମ୍ବନ୍ଧୀୟ ଜିଜ୍ଞାସାମାନ କେବଳ ବିଶୁଦ୍ଧ ତତ୍ତ୍ୱର ପ୍ରକାଶ ନହୋଇ ବ୍ୟକ୍ତି ସମ୍ବନ୍ଧର ଅନୁଭବ ଭିତରୁ ହିଁ ଅର୍ଥ ଲାଭକରନ୍ତି । ଦାର୍ଶନିକ କବିତା ବ୍ୟକ୍ତିଗତ ଧର୍ମାନୁଚିନ୍ତା ବ୍ୟାଖ୍ୟା କରିପାରେ, କବିସତ୍ତାର ଧ୍ୟାନତନ୍ମୟ ମୁହୂର୍ତ୍ତିକୁ ମଧ୍ୟ ପ୍ରକାଶ କରିପାରେ । 'ଦେବାବତରଣ'ରେ କବିଙ୍କର ରହସ୍ୟବାଦୀ ଅନ୍ତରୋପଲବ୍ଧି ପରିବର୍ତ୍ତେ ଏ ପ୍ରକାର ମେଟାଫିଜିକାଲ ଭାବୋପଲବ୍ଧି ହିଁ ସମଧିକ ଅନୁଶୀଳିତ ।

'ଋଷିପ୍ରାଣେ ଦେବାବତରଣ'ଠାରୁ 'ନବବର୍ଷସଂଭାବନା' ପର୍ଯ୍ୟନ୍ତ ରଚନାଗୁଡ଼ିକ ମୁଖ୍ୟତଃ ପ୍ରକୃତିଭକ୍ତିକ । ଏହି ସମୟରେ ରଚିତ ପ୍ରବନ୍ଧ 'ଅଧ୍ୟାତ୍ମ-ଚିନ୍ତା' କବିମାନସର ତାତ୍କାଳିକ ଭାବ-ବର୍ତ୍ତୋରଣର ବିଶ୍ୱସ୍ତ ବାର୍ତ୍ତାବହ ଯାହା ସମସାମୟିକ କାବ୍ୟାବେଗରେ ଯତ୍ର ତତ୍ର ବିଚ୍ଛୁରିତ । ଏହି ହୃଦୟାବେଗ ପ୍ରସୂତ ପ୍ରଥିକ 'ଧ୍ରୁବ' କବିତାଟି (ଗ୍ରନ୍ଥମାଳା/୨ୟ ଭାଗ) କବିଙ୍କର ଆତ୍ମିକ ସାଧନାର ଏକ ମାର୍ମିକ ବାର୍ତ୍ତାଳାପ । ଏହା ଆତ୍ମସମର୍ପଣ କବିତାର ସମଧର୍ମୀ, ସମଭାବାପନ୍ନ, କିନ୍ତୁ ଅଧିକ ପ୍ରତ୍ୟୟ-ଦୀପ୍ତ ଓ ଭାବ ରସାଣିତ । ଆତ୍ମାର ଆକୂତି ଏଥିରେ ଗଭୀରତର ଓ ବସ୍ତୁତର । ପୂର୍ବରୁ କେବଳ ହୃଦୟରେ ଜାଗ୍ରତ ହୋଇଥିବା କ୍ଷୁଦ୍ର ଅଭିଳାଷଟି ଏ କବିତାରେ ସମଗ୍ର ସତ୍ତାର ଆବେଗମୟ ଆକୂତି ହୋଇ ପ୍ରସାରିତ । 'ଧ୍ରୁବ' ଏକ ମୁଗ୍ଧପ୍ରେମ ସରଳ ହୃଦୟର ପୂର୍ଣ୍ଣ ସମର୍ପଣ-ସଙ୍ଗୀତ ।

Digitized by PPRACHIN, SOA

ଏ କବିତାରେ ତତ୍ତ୍ୱପ୍ରୟାସ କିଛିନାହିଁ , ସର୍ବତ୍ର ଆବେଗ ଓ ଅନୁଭବର ବିହ୍ୱଳତା ସମାଚ୍ଛନ୍ନ । କବିଙ୍କର ପ୍ରାକ୍ 'ହିମାଚଳେ···' ଦିନଗୁଡିକର ଏହା ଏକ ରସାବେଶମୟ ଅଭିବ୍ୟକ୍ତି । କବିତା ଓ କବି-ସତ୍ତା ଉଭୟେ ଏଠାରେ ଛନ୍ଦମଧୁର ସାବଲୀଲତାରେ ପ୍ରବାହିତା । 'ଦେବାବତରଣଠାରୁ 'ହିମାଚଳେ···' ପର୍ଯ୍ୟନ୍ତ କାବ୍ୟକୃତିମାନ ଯେପରି ସଂଗମ ଉନ୍ମୁଖ । ସମୁଦ୍ରଗାମୀ ବିପୁଳା ବିହ୍ୱଳା ବେଗବତୀ ଉଚ୍ଛ୍ୱାସ ଧାରା ପ୍ରବାହମାନ, 'ସ୍ତବ' ସେଇ ଭାବପ୍ରବାହମାନଙ୍କର ସୁମଧୁର କଳଗୁଂଜରଣ । କବି ଯେ ଏକାଂନ୍ତ ଭାବରେ ଏକ ବିମୁଗ୍ଧ ଭକ୍ତ ଏବଂ ଦାର୍ଶନିକତା ସେଠାରେ ପ୍ରାସଙ୍ଗିକ, 'ସ୍ତବ' ଯେପରି ତାହାର ଉଦ୍‌ଘୋଷଣା । ଉତ୍ସାରିତ ପ୍ରସ୍ରବଣ ସଦୃଶ ପ୍ରେମଭକ୍ତି ଦ୍ରବିତ ହୃଦୟର ଉଚ୍ଛ୍ୱାସ-ଉଷ୍ମ ଏହି କାଂତ ସଂଗୀତ ଭିତରେ କବିଂକ ଭକ୍ତ-ସତ୍ତାର ଯାତ୍ରା-ସଂବାଦ ପରିବେଷିତ ।

"ଜୀବାତ୍ମା ସମ୍ପର୍କରେ ପରମାତ୍ମା ଅନଂତ ହିତପୂର୍ଣ୍ଣ—ପରମାତ୍ମାଙ୍କ ସଂପର୍କରେ ଜୀବାତ୍ମା ନାନା ଅଭାବଜନିତ । ସୁତରାଂ ପରମାତ୍ମାଙ୍କଠାରେ ଆଭାବମୋଚନ ନିମିତ୍ତ ଜୀବ ନିତ୍ୟ ଶରଣାଗତ ।"[୨୧] ଜୀବ ପରମ ସମ୍ବଂଧ ସଂପର୍କରେ କବିଙ୍କର ଏ ରୂପ ବିଶ୍ଳେଷଣରେ ସ୍ତବରେ କାବ୍ୟାୟିତ । ପ୍ରାରଂଭରେ 'ଅଖିଳବ୍ରହ୍ମାଂଡ଼ପତି'ଙ୍କୁ 'ମୋ ଜୀବନ ସ୍ୱାମୀ' ବୋଲି ସମ୍ବୋଧନ କରିବା ଭିତରେ ଈଶ୍ୱରଂକ ସହ କବିଙ୍କର ଆତ୍ମୀୟତାର ସମ୍ବଂଧ ସ୍ୱୀକୃତ । ଏଇ ସ୍ନେହଶୀଳ ପାଳନକର୍ତ୍ତାଙ୍କ ମଂଗଳ ଅଭିପ୍ରାୟରେ ବିଶ୍ୱଜୀବନ ପ୍ରସୂତ ବୋଲି କବି ଅନୁଭବ କରନ୍ତି । "ବିଦ୍ୱଜିତ ତୁହି ନାଥ ସକଳ ଜୀବନେ" ଏକ ଗଭୀର ଅନୁଭବ ସଂଜାତ ରହସ୍ୟବାଦୀ ଉଚ୍ଚାରଣ । ଏ କବିତାରେ ଈଶ୍ୱରଙ୍କର ଅନ୍ୟ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସମ୍ବୋଧନ ହେଉଛି 'ବିଶ୍ୱଗୁରୁ'। ଅଧ୍ୟାତ୍ମ ଯାତ୍ରାପଥରେ ମହାଦ୍ରଷ୍ଟା ରୂପୀ ବିଶ୍ୱଗୁରୁ ଈଶ୍ୱର ପ୍ରାଣର ପ୍ରୟୋଜନ ଜାଣନ୍ତି, ଓ ସେ ପ୍ରୟୋଜନ ପ୍ରାପ୍ତିର ଉପାୟ ନିର୍ଦ୍ଦେଶ କରନ୍ତି । ଭାରତୀୟ ସାଧନା ପରଂପରାରେ ଗୁରୁବାଦର ସ୍ୱୀକୃତି ଭିତରେ ଏଇ ବୈଶିଷ୍ଟ୍ୟ ହିଁ ଗୁରୁତ୍ୱପ୍ରାପ୍ତ । "ଗୁରୁ ମାଂ ବିଜାନୀୟାତ୍‌···" ଜଗତର ଗୁରୁକୁଳ ତାଙ୍କରି ପ୍ରତିଭୂ । ବେଦ ଉପନିଷଦ ପରଂପରାପୋଷିତ ବ୍ରାହ୍ମଧର୍ମରେ ମାନୁଷୀଗୁରୁର ସ୍ୱୀକୃତି ଆଦୌ ନାହିଁ । ସ୍ୱୟଂ ଈଶ୍ୱର ଅନ୍ତର୍ଯ୍ୟାମୀ ଗୁରୁ ରୂପେ ପ୍ରତ୍ୟେକ ଜୀବର ଶକ୍ତି ଓ ସାମର୍ଥ୍ୟ ଅନୁସାରେ ତାହାକୁ ଅଂତଃକରଣକୁ ମୁକ୍ତିର ମାର୍ଗ ନିର୍ଦ୍ଦେଶ କରିଥାନ୍ତି । ସେ ଦୀନବଂଧୁ, କୃପାସିଂଧୁ । ତେଣୁ, ଏ ପ୍ରକାର ପଥ ନିର୍ଦ୍ଦେଶ ସେ ଆପଣାର କରୁଣାବଶତଃ ହିଁ କରିଥାନ୍ତି । ସକଳର ପରିତ୍ରାଣ ହେତୁ ସକଳକର୍ମକୁ ସେ ମୁକ୍ତିର ମାର୍ଗ କରିଦିଅନ୍ତି । ଏପରିକି ମୃତ୍ୟୁକୁ ମଧ୍ୟ । ସେ ଆନଂଦମୟ । ତେଣୁ ତାଙ୍କର ସକଳ କର୍ମସଂକଳ୍ପ ଆପାତଃ କଷ୍ଟକର ହେଲେବି ପରିଣାମତଃ ମଂଗଳମୟ । 'ଦିବ୍ୟଜ୍ଞାନଦାତା' ସଂବୋଧନ ଭିତରେ କବି ଜାଗତିକ ଅଭିଜ୍ଞାନର ଅସାରତା ପ୍ରତିପାଦନ କରନ୍ତି । ଆନଂଦମୟଙ୍କ ଦିବ୍ୟ ଅଭିପ୍ରାୟର ରହସ୍ୟ ବୁଝିବା ପାଇଁ ଲୋଡ଼ା ଦିବ୍ୟଜ୍ଞାନ, ଯାହା ବ୍ୟତିରେକେ ବ୍ୟକ୍ତି ବାଳକ ତୁଲ୍ୟ ନିର୍ବୋଧ । କବି ଏ ଜ୍ଞାନ-ଆତ୍ମାର ସହଜ-ଜ୍ଞାନ ଲାଭ କରିନାହାନ୍ତି । ବ୍ୟକ୍ତି-ସାଧନାର ଏ ନିଷ୍କପଟ ଉଚ୍ଚାରଣ କବିଙ୍କର ଲକ୍ଷ୍ୟ ଅଭିମୁଖିତାକୁ ସୂଚିତ କରୁଛି । 'ବାଳକ' ଶବ୍ଦର ପ୍ରୟୋଗ ଭିତରେ ଅନ୍ୟ ଏକ କାବ୍ୟବ୍ୟଂଜନା ଅଭିନିହିତ ମଧ୍ୟ । ବାଳକଠାରେ ଏକ ନମନୀୟ ଗ୍ରହଣଶୀଳତା ଏବଂ ସରଳ ନିଷ୍ପାପ ଆତ୍ମନିବେଦନର ବିନମ୍ରତା ସଂଭବ, ଯାହା ସଂସ୍କାରବଦ୍ଧ ପରିଣତ ମାନସିକତା ପକ୍ଷେ ଦୁଃସାଧ୍ୟ । ବାଳକସୁଲଭ ଆର୍ତ୍ତି ନେଇ କବି ପରମ ଗୁରୁଙ୍କ ପଦତଳେ ଦିବ୍ୟ-ଜ୍ଞାନ ପ୍ରାର୍ଥୀ । ସେ ଜ୍ଞାନର ମାର୍ଗରେ ସତ୍ୟ ଓ ଧର୍ମରୂପକ ପାଦ ଦୁଇଟିରେ ଚାଲିବାକୁ ହୁଏ । ନିଜ ଚେଷ୍ଟାର

୨୧ ଅଧ୍ୟାତ୍ମତତ୍ତ୍ୱ'—ମଧୁସୂଦନ ଗ୍ରନ୍ଥାବଳୀ—ପୃ ୪୧୭

Digitized by PPRACHIN, SOA

ଯେ ପଥଯାତ୍ରା କ୍ୱଚିତ ସଫଳ ହୁଏ । ତେଣୁ କବିଙ୍କର ପଥଦ୍ରଷ୍ଟାଙ୍କୁ ସାହାଯ୍ୟ ପ୍ରାର୍ଥନା । ପୁଣି, ନିଜ ଇଚ୍ଛାକୁ ଜଳାଂଜଳି ନଦେଲେ ପରମ ଇଚ୍ଛାର ଅନୁକୂଳ ରାସ୍ତାରେ ଚାଲିବା ସଂଭବ ନୁହେଁ । ଜୀବ ଗୃହୀ ଥିଲେ ମଧ୍ୟ ତାର ପ୍ରାଣଗତ ବୃତ୍ତି ଓ ବାସନାମାନ ପୂର୍ବେ ଆତ୍ମସମର୍ପଣ ପଥରେ ବିଘ୍ନ ସୃଷ୍ଟି କରନ୍ତି । ତେଣୁ ଶରଣାଗତର ସାମର୍ଥ୍ୟ ପାଇଁ କବିଙ୍କର ନିବେଦନ । କାରଣ ସବୁ ଗତି ଭିତରେ ଶରଣାଗତି, ସବୁ ସମର୍ପଣ ତୁଳନାରେ ଆତ୍ମସମର୍ପଣହିଁ ସର୍ବାପେକ୍ଷା ଦୁଃସାଧ୍ୟ । ନିଜର 'ସ୍ୱ' କୁ ସମର୍ପିଦେବା ହିଁ ସ୍ୱର ଦୁଷ୍କରତମ ସାଧନା ଯେହେତୁ ଈଶ୍ୱର ଓ ଜୀବ ମଧ୍ୟରେ ଏ 'ସ୍ୱ' ଚେତନାହିଁ ଏକମାତ୍ର ଅଂତରାୟ ।

ସତ୍ୟ, ଧର୍ମ ଓ ପ୍ରେମର ମଂଗଳ ଯାତ୍ରା ପଥରେ କବି ଅଭିପ୍ରାୟ 'ସିଦ୍ଧି' ର ସ୍ପର୍ଦ୍ଧା କରନାହିଁ । କର୍ତ୍ତୃତ୍ୱର ଅହଂକାର କରନାହିଁ । ତାର 'ଘେନିଯାଅ'[୨୨] ମିନତି । ଅଧ୍ୟାତ୍ମ ବେଦନାର ଚରମତମ ସେଇ ଆକୂତି ଟିକକ କେବଳ ଆଉ କବିସତ୍ତାର କାବ୍ୟୋଚ୍ଛ୍ୱାସ ନୁହେଁ, ସମଗ୍ର ବ୍ୟକ୍ତିସତ୍ତାର ଉଚ୍ଛ୍ୱସିତ ଉଦ୍‌ପ୍ଲାବନ । "ନାଥ, ଆଉ ସ୍ୱେଚ୍ଛାଚାରିତା ଭଲ ଲାଗୁନାହିଁ, ଏବେ ମୋତେ ତୁମ୍ଭ ଇଚ୍ଛାର କ୍ରୀତଦାସ କରି ରଖ[୨୩]— କବିଙ୍କ ସମଗ୍ର କାବ୍ୟ ସାଧନା ଏଇ ଶରଣାଗତିର ମନ୍ତ୍ରାଳାପ ।

ଶଂସିତ ଦଶଂଧିରେ (୧୮୯୧-୧୯୦୧) ରଚିତ ଅନ୍ୟ କବିତାମାନ ଯଥା—ନଦୀପ୍ରତି, ଶୋଭା, ଧ୍ୱନି, ପଦ୍ମ, ନବବସଂତ ଭାବନା କବିଙ୍କର ଆନଂଦବାଦ ଓ ଅନନ୍ତବାଦକୁ ସ୍ପଷ୍ଟ ତତ୍ତ୍ୱାଭିବ୍ୟକ୍ତି ପ୍ରଦାନ କରିଛନ୍ତି, ଉଷା, ସରସ୍ୱତୀ, ଧ୍ୱନି, ବସଂତ, ମଧୁ, ଅମୃତ ପ୍ରଭୃତି ଶବ୍ଦ ସଂକେତ ଭିତରେ ଏଇ ଉତ୍ତରଣ ଚେତନାର ରୂପାୟନ ଘଟିଛି । ପୂର୍ବ କବିତାଗୁଡ଼ିକର ଅନ୍ତଃଗୂଢ଼ ଭାବଚେତନା ଏହି ରଚନାମାନଙ୍କରେ ପ୍ରାଂଜଳତା ଲାଭକରିଛନ୍ତି । ଜୀବନ ସହ ଜଗତର ସଂଯୋଗ ଘନିଷ୍ଠତର, ଗଭୀରତର ଓ ବ୍ୟାପକତର ହୋଇଛି । ପାର୍ଥିବ ସତ୍ତା ଭିତରେ ବି ଦିବ୍ୟାତ୍ମା ରହିଛି ଏବଂ ଊର୍ଦ୍ଧ୍ୱ ଜଗତରେ 'ବିଭୁ କୃପା' ଅଛି— 'ଆଶା' କବିତାରେ ଲବ୍ଧ ଏହି ବିଶ୍ୱାସର ପୃଷ୍ଠଭୂମିରେ ସମାରବ୍ଧ ଅଧ୍ୟାତ୍ମ ସାଧନାର ଏକମୁଖୀ ଯାତ୍ରାସଂବାଦ ଏଇ କବିତାଗୁଡ଼ିକରେ ପ୍ରଦର୍ଶିତ । ସ୍ୱାଭାବିକଭାବେ ଏ କବିତାମାନ ଯାତ୍ରାନୁଭୂତିର ହର୍ଷ ବିଷାଦ ଭାବରସାଣିତ, ଚେତନାର ଅଭିଜ୍ଞତାରେ ସମୃଦ୍ଧ ଓ କବି ମାନସର ବଳିଷ୍ଠ ପ୍ରତ୍ୟୟ ଶାଣିତ । ପ୍ରସଙ୍ଗତଃ ଉଲ୍ଲେଖ୍ୟ—'ଶୋଭା' ଓ 'ଧ୍ୱନି' ରେ ସୌଂଦର୍ଯ୍ୟ ଓ ମାଧୁର୍ଯ୍ୟର ରୂପାଭିବ୍ୟକ୍ତି ଏବଂ ନଦୀ, ପଦ୍ମ ବସନ୍ତର ପ୍ରତୀକରେ ଜୀବନର ଅମରତ୍ୱ ଓ ଆନଂଦର ରୂପାୟନରେ କବିଙ୍କର ବୈଦିକ ଦୃଷ୍ଟିଭଂଗୀଟି ସୁସ୍ପଷ୍ଟ ।

ନଦୀ ଓ ପଦ୍ମସହ କବି ମାନସର ଚେତନାର ଗଭୀରତମ ସ୍ତରରେ ସଂସାଧିତ ବୋଲି ମନେହୁଏ । ଉଭୟେ ପ୍ରତୀକ ରୂପେ ବ୍ୟବହୃତ ଗୋଟିଏ ଜନ୍ମ ଓ ଜୀବନଧାରାର, ଅପରଟି ସତ୍ତାସାର ଆତ୍ମାର । ସ୍ୱୀକାର୍ଯ୍ୟ, ଏ ପ୍ରତୀକ ନିର୍ବାଚନରେ କିଛି ଅଭିନବତ୍ୱ ନାହିଁ । ଭାରତୀୟ କଳା ଓ ଅଧ୍ୟାତ୍ମ ପରଂପରାରେ ନଦୀ ଓ ପଦ୍ମର ଏଇରୂପ ସାଂକେତିକ ପ୍ରୟୋଗ ରହିଆସିଛି । କାଳଗତ ପ୍ରବାହଧର୍ମିତା ପାଇଁ ଜୀବନଧାରା ସ୍ରୋତସ୍ୱିନୀ ସହ ତୁଳିତ ହୋଇଥିବା ବେଳେ ପଦ୍ମ 'ପଂକଜ' ର ସ୍ୱତଂତ୍ର ଅଭିବ୍ୟକ୍ତିରେ

---

୨୨ "ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମୋତେ ।"

୨୩ ତାଏଣି—"ଶ୍ରୀପଂଚମୀ"—ମଧୁସୂଦନ ଗ୍ରନ୍ଥାବଳୀ ପୃ—୪୩ (ମୁଖବଂଧ)

Digitized by PPRACHIN, SOA

ହିଁ ଶୁଭ୍ରତା, ସୁଗଂଧି ଓ ପବିତ୍ରତାର ଆଧାରରୂପେ ଭାରତୀୟ ଅଧ୍ୟାତ୍ମ-ଚେତନାରେ ଏକ ସ୍ୱତଂତ୍ର ମର୍ଯ୍ୟାଦାର ଅଧିକାରୀ । (ପାଶ୍ଚାତ୍ୟ ଚେତନାରେ ନଦୀ ସହ ଜୀବନର ସାମଂଜସ୍ୟବୋଧଟି ମଧ୍ୟ ଅବହେଳିତ ନୁହେ—ଉଲ୍ଲେଖ୍ୟ- Tennysonଙ୍କ The Brooke) । ସେ ଯାହାହେଉ,କବିଚେତନାରେ ନଦୀ ଓ ପଦ୍ମ ପ୍ରକୃତିର ସେଇ ଅଭିବ୍ୟକ୍ତି-ତତ୍ତ୍ୱ ଉପରେ ପ୍ରତିଷ୍ଠିତ—ଯାହା ଆପଣାର ସୃଷ୍ଟି ରୂପରେ ଯେତିକି ସାର୍ଥକ, ତାଠାରୁ ଏକ ଉଚ୍ଚତର ଓ ମହତ୍ତର ଭାବସଂଦ୍ଧିର ଇଂଗିତ ସାମର୍ଥ୍ୟରେ ଅଧିକ ପ୍ରଭାବଶାଳୀ । ପ୍ରଥମଟିରେ ପ୍ରତ୍ୟକ୍ଷ-ଦର୍ଶନ, ଇଂଦ୍ରିୟ-ଗ୍ରାହ୍ୟ ରୂପରସ ଅନୁଭୂତି ଓ ଦ୍ୱିତୀୟଟିରେ ଅତୀନ୍ଦ୍ରିୟ ଚେତନାଲୋକରେ ଅମୂର୍ତ୍ତ ଅପାର୍ଥିବର ଅଭିବ୍ୟଂଜନା । ସାଧାରଣ ବ୍ୟକ୍ତି ଚକ୍ଷୁରେ ପ୍ରକୃତିର ରୂପରଂଗ ଯେଉଁ ଉଲ୍ଲାସ ମଧୁର ଅନୁଭବ ଆଣିଦିଏ, ତାହା କବିର ସୁଦୂରପ୍ରସାରୀ କଳ୍ପନାଦୃଷ୍ଟିରେ ଏକ ବିସ୍ମୟକର ରୂପ-ଲୋକ ଉଦ୍‌ଘାଟନ କରେ । ପୁଣି ସେଇ କଳ୍ପନା ପ୍ରତ୍ୟକ୍ଷ ଜଗତ ଭିତରେ ଏକ ଅମୂର୍ତ୍ତ ବାସ୍ତବତା, ଏକ ନିର୍ଦ୍ଦିଷ୍ଟ ଅଭିପ୍ସା ଓ ସୃଷ୍ଟି-ପ୍ରୟାସର ବିପୁଳ ଇଂଗିତକୁ ସ୍ପଷ୍ଟ ବିଦ୍ୟମାନ ବୋଲି ପ୍ରତ୍ୟକ୍ଷ କରିଥାଏ ରହସ୍ୟବାଦୀ ଅନ୍ତର୍ଦୃଷ୍ଟି । ସାଧାରଣ କବି-ଦୃଷ୍ଟିରେ 'ସୃଷ୍ଟି'ରେ ହିଁ ସୃଜନ-କ୍ରିୟାର ସାର୍ଥକତା ନିହିତ । ଫୁଲଟିଏ ଫୁଟି ଉଠିବାରେ ହିଁ ସାର୍ଥକ । ଆକାଶ, ପୃଥିବୀ ଆପଣାରୂପର ଅଭିବ୍ୟକ୍ତିରେ ହିଁ ସ୍ୱତଃ ସୁନ୍ଦର ଓ ସାର୍ଥକ । ତାର ସୃଷ୍ଟି ମୂଳର ଅଂତର୍ନିହିତ ତାତ୍ପର୍ଯ୍ୟ ସେଠାରେ ଗୁରୁତ୍ୱପୂର୍ଣ୍ଣ ହେବା ଅପରିହାର୍ଯ୍ୟ ନୁହେ । ମାତ୍ର ମିଷ୍ଟିକ ଚେତନାରେ ସକଳ ପ୍ରକାଶ ରୂପ ଅପ୍ରକଟର ସ୍ୱ-ପ୍ରକାଶକାମନାର ଅଭିବ୍ୟକ୍ତି ପ୍ରୟାସ ମାତ୍ର । ବ୍ୟକ୍ତଠାରେ ଅତୀନ୍ଦ୍ରିୟର ଉଦ୍‌ବୋଧନ ଓ ରୂପମୟର ଅଂତରାଳସ୍ଥ ରୂପାତୀତ ପ୍ରତି ଆକର୍ଷଣ ଜାତ କରାଇବାରେ ସେ ସୃଷ୍ଟିର ସାର୍ଥକତା । ବୈଦିକ-ପ୍ରକୃତି 'ଦିବ୍ୟ-ରୂପିଣୀ' ଭାବରେ ଏଇଥିପାଇଁ ଯଜ୍ଞ ସ୍ତବର ଅଧିକାରିଣୀ ଥିଲି, କାରଣ ତାର ଅଂତରାଳରେ ଏକ ପରମଇଂଗିତପ୍ରତି ଶ୍ରଦ୍ଧା ଓ ବିସ୍ମୟର ଉଚ୍ଚାରଣ ଥିଲା । ବୈଦିକ 'ଋତ' ପ୍ରକୃତିର ଗତିଛଂଦକୁ ବୁଝାଉଥିଲା । ଉପନିଷଦରେ ପ୍ରକୃତି ଅବ୍ୟକ୍ତ ଭୂମାଙ୍କର ବ୍ୟକ୍ତ-ସ୍ୱରୂପା ରୂପେ ବଂଦନୀୟା ଥିଲି । ଭାରତୀୟ ଚିଂତା ଓ ଚେତନାରେ ଏବଂ ଶିଳ୍ପ ଓ ସାହିତ୍ୟରେ ପ୍ରକୃତିର ଯେଉଁ ପରିଚୟମୁଦ୍ରିତ ତାହା ଏଇ 'ବ୍ରହ୍ମାଭିବ୍ୟକ୍ତି' ଉପଲବ୍ଧିର ସଙ୍କଳନ । ଭାରତୀୟ ସିଦ୍ଧାଂତରେ ସଚରାଚର ପ୍ରକୃତି ବ୍ରହ୍ମ ସଂକଳ୍ପା ଚିନ୍ମୟୀ ମହେଶ୍ୱରୀ; ମାତ୍ର ଆଧ୍ୟାତ୍ମିକତା ବର୍ଜିତହେଲେ ତାହା ଜଡ଼-ସ୍ୱରୂପା ଏବଂ କାବ୍ୟ-ବର୍ଣ୍ଣିତ ପ୍ରକୃତି ତାର ଜଡ଼ ଓ ଇଂଦ୍ରିୟ ଗ୍ରାହ୍ୟ ରୂପ-ମୂର୍ତ୍ତିରେ ଗୌଣସ୍ଥାନର ଅଧିକାରିଣୀ ।

ମଧ୍ୟମାନସରେ ପ୍ରକୃତିର ଏ ଅଧ୍ୟାତ୍ମ ଇଂଗିତ ସହ ପାଶ୍ଚାତ୍ୟ ରୋମାଣ୍ଟିକ ଅତୀନ୍ଦ୍ରିୟ ପ୍ରକୃତି ଦର୍ଶନର ସମନ୍ୱୟ ଘଟିଛି । ସେଇ ବିଚାରରେ ପ୍ରକୃତି ସଜୀବ ; ତାର ଅଂତରାଳରେ ପ୍ରାଣ-ସ୍ପନ୍ଦନର ଧୃତି, ବାହ୍ୟ ପ୍ରକାଶରେ ମଧ୍ୟ ସେଇ ପ୍ରାଣର ଅଭିବ୍ୟକ୍ତି । ପ୍ରକୃତି ବ୍ୟକ୍ତିଚିତ୍ତ ସହ ପୂର୍ଣ୍ଣ ସଂବେଦନଶୀଳ, ପ୍ରତିକ୍ରିୟାପର ଓ ଉପଲବ୍ଧି ମାର୍ଗରେ ସମ୍ବନ୍ଧ ସ୍ଥାପନ କରିବାକୁ ସମର୍ଥ ।

ମଧୁସୂଦନଙ୍କ ରଚନାର ପ୍ରାରଂଭିକ କାଳରେ ପ୍ରକୃତିଚିତ୍ରଣ ମୁଖ୍ୟତଃ ଇଂଦ୍ରିୟଗ୍ରାହ୍ୟ ରସାନୁଭୂତି ଉପରେ ପର୍ଯ୍ୟବସିତ ଏବଂ ଜଡ଼ ରୂପେ ତାର ସ୍ୱୀକୃତି । ସେ ଦୃଷ୍ଟିଭଂଗୀର କ୍ରମ-ରୂପାଂତରରେ ପଦ୍ମ, ନଦୀ, ଉଷା, ବସଂତ, ଶଙ୍ଖ, ବୀଣା ପ୍ରଭୃତି ଜୀବଂତ ଓ ଚେତନସତ୍ତା ରୂପେ କବି-ଉପଲବ୍ଧିରେ ସ୍ୱତଂତ୍ର ମର୍ଯ୍ୟାଦା ଓ ମମତାର ଅଧିକାରୀ ହୋଇଛନ୍ତି । ଶେଷରେ ପ୍ରକୃତିର ପ୍ରାଣମୟତା

Digitized by PPRACHIN, SOA

ଭିତରେ ଏକ ମହାନ୍ ଉଦ୍ଦେଶ୍ୟ ଓ ସ୍ରଷ୍ଟାର ଭୂମିକା ପ୍ରତି ପ୍ରବଳ ସଚେତନତା ଏବଂ ଗଭୀରତର ଉପଲବ୍ଧିରେ ପ୍ରକୃତି ସ୍ୱୟଂ ପରମ ଚିନ୍ମୟୀ ତଥା ପରମ ସ୍ରଷ୍ଟାଙ୍କର ମହାସ୍ୱପ୍ନର ଲୀଳାଭିବ୍ୟକ୍ତିରୂପିଣୀ ସୀମ ଓ ଅସୀମର ସଂଯୋଗସେତୁ ହୋଇ ପ୍ରତିଭାତ ।

'ନଦୀପ୍ରତି' ଓ 'ପଦ୍ମ' କାବ୍ୟପୁରୁଷର ସେଇ ଚେତନାଭୂମିରୁ ଉଚ୍ଚାରିତ । ଯେଉଁଠି ଜୀବନର ସୃଷ୍ଟି ପ୍ରବାହ ଓ ପରିଣତି ସମ୍ପର୍କରେ ଏକ ସ୍ପଷ୍ଟବୋଧ ବିଦ୍ୟମାନ । ଏଠାରେ କବିଦୃଷ୍ଟି 'ସଂପ୍ରତି' ଠାରୁ 'ଶାଶ୍ୱତ' ପ୍ରତି ସଂପ୍ରସାରିତ । ସ୍ରଷ୍ଟାର ସୃଜନ ସ୍ୱପ୍ନ, ସୃଷ୍ଟି ପ୍ରେରଣା, ବ୍ୟକ୍ତି ଜୀବନର ଅଂଶସ୍ୱରୂପ ରୂପେ ସକଳ ଅବସ୍ଥାରେ ସୃଷ୍ଟି ସହ ତାଙ୍କର ନିତ୍ୟ ସମ୍ବନ୍ଧ, ସୃଷ୍ଟି ପ୍ରବାହ ତାଙ୍କର ପରିଣତିମୁଖୀ ଓ ଅନ୍ତିମରେ ସ୍ରଷ୍ଟାଠାରେ ଅନ୍ତର୍ଭୁକ୍ତିବିଲୟ; ପୁନଶ୍ଚ ସେହି ମହାନ ପ୍ରେରଣାପ୍ରତି ବ୍ୟକ୍ତି ହୃଦୟର ଆକର୍ଷଣ ଏବଂ ଦିବ୍ୟସଂଗମର ଅଭିଳାଷା—ଏଇ ନିର୍ଦ୍ଦିଷ୍ଟ ସାଧନାମାର୍ଗର ଅଭିବ୍ୟକ୍ତି ରୂପେ ଏ କବିତାଦ୍ୱୟଙ୍କୁ ଅନୁଶୀଳନ କରାଯାଇପାରେ । 'ନଦୀପ୍ରତି' କବିତାରେ ଜୀବନର ଏହି ବାର୍ତ୍ତା ପରୋକ୍ଷ ପ୍ରକାଶ ଲାଭ କରିଚି । ନଦୀ ଅନନ୍ତ ବିଶ୍ୱପ୍ରବାହ ପୁଣି ଏକକ ଜୀବନଧାରାର ପ୍ରତୀକ । 'ପଦ୍ମ' କବି ହୃଦୟାନୁଭବର ପ୍ରତ୍ୟକ୍ଷ ଚିତ୍ରରୂପ ବହନ କରିଛି । ପଦ୍ମସହ କବି ଆତ୍ମାର ଆକୂତି ଓ ଭାବରୂପାୟନ ଆମୂଳଚୂଳ ସମଚିନ୍ତା ଓ ସମରୂପତା ଲାଭକରିଛି । ପଦ୍ମ କବିଙ୍କର ପ୍ରିୟ ପୁଷ୍ପ ଥିଲା ଏବଂ କାବ୍ୟ ପୁରୁଷଙ୍କର ମଧ୍ୟ ପରମ ସ୍ନେହଧନ ବୋଲି ମନେହୋଇଥାଏ । ପୂର୍ବବର୍ତ୍ତୀ 'ସ୍ତବ' କବିତାର ଭାବଉଚ୍ଛ୍ୱାସ—ନଦୀ ପ୍ରତି ଓ ପଦ୍ମରେ ଗଭୀର କାବ୍ୟିକ ଅଭିବ୍ୟଂଜନା ଲାଭ କରିଛି ବୋଲି ମନେହୁଏ ।

'ନଦୀପ୍ରତି' ରେ ଧ୍ୱନିତତ୍ତ୍ୱ ଓ ଶାଶ୍ୱତବାଦର ସଙ୍କେତ-ଚିତ୍ର ପ୍ରତିଫଳିତ । 'ପଦ୍ମ' ସେ ଧରଣର କୌଣସି ତାତ୍ତ୍ୱିକ ପ୍ରୟାସ ନୁହେ । ସେଠାରେ ପଦ୍ମ ଓ ଆତ୍ମା ଅଭେଦାତ୍ମକ ରୂପେ ପ୍ରଦର୍ଶିତ । ପ୍ରକୃତିରେ ଫୁଲ ଓ ମାନବସତ୍ତାରେ ଆତ୍ମା ବିଧାତାର ଅନନ୍ତ ପ୍ରେମ, ଆନନ୍ଦ ଓ ପବିତ୍ରତାର ସମ୍ବାଦ ବହନ କରନ୍ତି । ଏମାନେ ଆପଣା ସୃଷ୍ଟିରେ ସାର୍ଥକ । ଯେପରି ମନେହୁଏ, ବ୍ୟକ୍ତ ସୃଷ୍ଟିରେ ଫୁଲ ଓ ଅନ୍ତଃସତ୍ତ୍ୱରେ ପ୍ରେମ ସ୍ରଷ୍ଟା ସମ୍ପର୍କରେ ଶେଷ କଥାହିଁ କହୁଥାନ୍ତି । ଦିବ୍ୟ ସୌନ୍ଦର୍ଯ୍ୟରେ ପ୍ରଫୁଲ୍ଲିତ ପୁଷ୍ପ ଓ ଦିବ୍ୟ ପ୍ରେମରେ ଉଦ୍‌ଭାସିତ ଆତ୍ମା । ଫୁଲ ଆନନ୍ଦ ଦାନରେ ଓ ଆତ୍ମା ନିଜକୁ ଉତ୍ସର୍ଗ କରି ହିଁ ଦିବ୍ୟ-ପ୍ରେମର ସାଧନା କରିଥାଏ । ସକଳ ପ୍ରେମର ଉଦ୍‌ବୋଧନ ଆତ୍ମାରେ, କାରଣ ଆତ୍ମାହିଁ ଦିବ୍ୟପ୍ରେମର ଅଧିକାରୀ । ପ୍ରେମ ପାତ୍ର ନିକଟରେ ନିର୍ବିଘ୍ନର ଆତ୍ମନିବେଦନ—ଏହାହିଁ ଶ୍ରେଷ୍ଠ ପ୍ରେମ ନିବେଦନ; ଫୁଲ ଓ ଆତ୍ମା ଏଇ ନିବେଦନର ସାମର୍ଥ୍ୟ ବହନ କରିଥାନ୍ତି । ପୁଷ୍ପ ଶ୍ରେଷ୍ଠ ପଦ୍ମ ତେଣୁ ସତ୍ତ୍ୱର ଶ୍ରେଷ୍ଠ ଧନ ଆତ୍ମ ସହ ଅଭେଦ ରୂପକରେ ତୁଳିତ ।

## ପଦ୍ମ

'ପଦ୍ମ' ସହ ଭାରତୀୟ ଆଧ୍ୟାତ୍ମ-ମାନସର ସମ୍ପର୍କଟି ଅତି ଘନିଷ୍ଠ । ପୁଷ୍ପ ଜଗତରେ 'ଅନୁପମ' ରୂପେ ଅଭିନନ୍ଦିତ ଏହି ପୁଷ୍ପବିଶେଷଟିରେ ଭାରତୀୟ ଆଧ୍ୟାତ୍ମିକତା 'ଦିବ୍ୟତା'ର ମୋହର ଲଗାଇ ଦେଇ ଜୀବନର ସୁନ୍ଦରତମ, ମଧୁରତମ ଓ ପବିତ୍ରତମ ଅଭୀପ୍‌ସାର ଯେପରି ସାର୍ଥକତମ ବାଣୀ ପ୍ରୟାସ ଭିତରେ ନିଜେ ଧନ୍ୟ ଧନ୍ୟ ହୋଇଯାଇଛି । 'ପଦ୍ମ' ସହ ଭାରତୀୟ ପ୍ରାଣର ଏଇ ହୃଦ୍ୟ ଆତ୍ମିକତା ଯୁଗେ

Digitized by PPRACHIN, SOA

ଯୁଗେ ତାର କାବ୍ୟୋଚ୍ଛ୍ୱାସ ଭିତରେ ପ୍ରୀତ ମଂକଣ୍ଡ ହୋଇ ପ୍ରସଣ୍ଠ ଆସିଛି;—ଏକ ପରିଚିତ ବାଉଲ ଗାନ ଅଛି "ହୃଦୟ କମଲ ଚଲିତେଛେ ଫୁଟି କତ ଯୁଗ ଧରି / ତାତେ ତୁମି ଓ ବାଁଧା, ଆମି ଓ ବାଁଧା, ଉପାୟ କି କରି।"

ଏହା ବାଉଲର ସ୍ୱତଂତ୍ର ସଂଗୀତ ନୁହେ । ସକଳ ମିଷ୍ଟିକ୍ ଉପଲବ୍ଧିର ମର୍ମବାଣୀ । ପରମଙ୍କର ପବିତ୍ର ମାନସ ସରୋବରରେ ବ୍ରହ୍ମ-କମଲ ରୂପେ ପ୍ରତି ଜୀବର ଏକ ଏକ ଆତ୍ମା-କମଳ ପ୍ରସ୍ଫୁଟିତ । ତା ସହ ସଂଯୋଗ-ସୂତ୍ରରେ ନିତ୍ୟବଂଧନରେ ଧରା ପଡ଼ିଛନ୍ତି ପରମପୁରୁଷ ପୁଣି ବ୍ୟକ୍ତି-ପୁରୁଷ । ଉଭୟଙ୍କର ସମ୍ପର୍କର ବିକାଶ ସେଇ କମଳକୁ ହିଁ ଅବଲମ୍ବନ କରି । ଅନ୍ତର୍ଯାମୀ ଜୀବନଦେବତା ଯୁଗଯୁଗାନ୍ତ ବିଶ୍ୱକମଳ ଫୁଟାଇ ଚାଲିଛନ୍ତି । ତାହାର ସଙ୍ଗେ ସଙ୍ଗେ ସମସ୍ତ ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ପ୍ରେମରେ ନିଜେ ମଧ୍ୟ ବ୍ୟକ୍ତି ଚେତନାରେ ବିକଶିତ ହୋଇଉଠୁଛନ୍ତି ।

ଜୀବର ପରମଙ୍କୁ ଅନ୍ୱେଷଣ ଯେତିକି ଅପରିହାର୍ଯ୍ୟ, ପରମଙ୍କର ଜୀବପ୍ରେମର ପ୍ରୟୋଜନ ମଧ୍ୟ ସେତିକି ଅନିବାର୍ଯ୍ୟ । ଏ ଦାୟ ଉଭୟଙ୍କର । ଅପୂର୍ଣ୍ଣ ବୋଲି ଜୀବକୁ ବାଦ୍ ଦେଇ ପୂର୍ଣ୍ଣ ପୂର୍ଣ୍ଣ ହୋଇ ରହିପାରିବେ ନାହିଁ; ଅପୂର୍ଣ୍ଣ ମଧ୍ୟ ପୂର୍ଣ୍ଣକୁ ଲାଭ ନ କରିବା ପର୍ଯ୍ୟନ୍ତ ସ୍ୱସ୍ତି ଓ ତୃପ୍ତି ଲାଭ କରିପାରିବ ନାହିଁ । ଉଭୟଙ୍କରହିଁ ଯନ୍ତ୍ରଣା, ଅଶାନ୍ତି ଏବଂ ନିଜ ଭିତରୁ ଅପର ନିକଟକୁ ଯାତ୍ରାରମ୍ଭ ।

ସତ୍ତାରେ 'ଆତ୍ମା'ର ଏକ ସ୍ୱତଂତ୍ର ସ୍ଥାନ । ଏହା 'ଶାଶ୍ୱତ । ଏହା ଦିବ୍ୟଭାବାପନ୍ନ, ପବିତ୍ର ଓ ସୁନ୍ଦର । ଏହା ବ୍ୟତୀତ ସାଂତଠାରେ ଅନଂତବିଳାସ, ସଂଭବ ହୁଅନ୍ତା ନାହିଁ । ଜୀବ ଆପଣାର ସୀମା-ବଂଧନକୁ ଅତିକ୍ରମ କରିବାର ପ୍ରେରଣା ଓ ସାମର୍ଥ୍ୟ ପାଆନ୍ତା ନାହିଁ । 'ଆତ୍ମା' ସୀମାର ଅସୀମ ସନ୍ଧାନ ଦିଗରେ ଏକମାତ୍ର ଆଶ୍ୱାସନା ।

ଏହି ଆତ୍ମାର ବିଶେଷତ୍ୱ ହେଉଛି ଯେ—ଏହା ପରମ ଦିବ୍ୟଙ୍କର ଅନୁରୂପ । ନଷ୍ଟଶୀଳ ଦେହ ଓ ପ୍ରାଣବୃତ୍ତି ସତ୍ତ୍ୱେ ଏହା ଶାଶ୍ୱତଙ୍କର ଦିବ୍ୟ ଉପାଦାନରେ ନିର୍ମିତ । ଆତ୍ମା ଜୀବର ଦାବୀ ନୁହେ । ଦେବତାର ଦାନ । ବ୍ୟକ୍ତିଠାରେ ଏହାର ଆବିର୍ଭାବ ଜୀବଶକ୍ତି ପ୍ରୟାସ ବହିର୍ଭୂତ ।

ମାନବର ଶ୍ରେଷ୍ଠ ଐଶ୍ୱର୍ଯ୍ୟ ଏଇ ଆତ୍ମାକୁ ପଦ୍ମ ସହ ତୁଳନା କରିବାର ମାନସିକତା ଭିତରେ ଏକ ସୂକ୍ଷ୍ମ ବ୍ୟଂଜନା ନିହିତ । ପଦ୍ମର ସୃଷ୍ଟି ଆବର୍ଜନାମୟ ପଙ୍କରେ । ମାତ୍ର ପଦ୍ମ ଆବିଳତା ମୁକ୍ତ । ସକଳ ମାଳିନ୍ୟ ଭିତରେ ସେ ଅମଳିନ । ଦୂଷିତ ଅଚେତ ଜାତ ହୋଇ ମଧ୍ୟ ସୌରଭମୟ । ତାର ଉଜ୍ଜ୍ୱଳକାଂତ, ସ୍ନିଗ୍ଧ ରୂପଲାବଣ୍ୟ ଓ ମଧୁର ସୁରଭିସମ୍ପଦ ତାର ପରିବେଶ ଜଗତଠାରୁ ଭିନ୍ନ ଏକ ଅପାର୍ଥିବତାର ସଂକେତ ବହନ କରିଆଣେ ।

ସେହିପରି ଏ ବ୍ୟକ୍ତିଜୀବନ । ସଂସାରର ଆବର୍ତ୍ତ ଭିତରେ ଅନେକ ଗ୍ଲାନିମାଳିନ୍ୟ ଅସହାୟତା ଓ ଦୈନ୍ୟ ସଂକୋଚନ । ଅନେକ ଅନେକ ପ୍ରାଣିକ ବାସନାଜଂଜାଳ, ଅନେକ କୁତ୍ସିତ ଜୈବିକ ଦାବୀର ଅନିବାର୍ଯ୍ୟତା । ସବୁ ସତ୍ତ୍ୱେ ବି ପଦ୍ମପରି ତାର ଆତ୍ମା ସୌଂଦର୍ଯ୍ୟ ଓ ନିର୍ମଳତାର ଅକ୍ଷୟ ଐଶ୍ୱର୍ଯ୍ୟମଣ୍ଡିତ ।

Digitized by PPRACHIN, SOA

ମୁକୁଳିତ ହେବା ପୂର୍ବରୁ ପଦ୍ମ ପଙ୍କ ଭିତରେ ପଙ୍କ ହିଁ ହୋଇ ରହିଥାଏ । ପଙ୍କରୁ ଜନ୍ମହୋଇ ସକଳ ମାଳିନ୍ୟ ବର୍ଜନକରି ଆଲୋକପରିସ୍ନାତ ହୋଇ ହିଁ ସେ ସୂର୍ଯ୍ୟର ନୀରାଜନା ରଚେ । ସେହିପରି ଜଗତ ଓ ଜୀବନର ପଙ୍କିଳତା ଭିତରୁ ଆତ୍ମା-ପଦ୍ମର ବିକାଶରେ ବ୍ୟକ୍ତିର ଅଧ୍ୟାତ୍ମ ଜାଗରଣ ଘଟେ । ସେ ଆପଣାର ଦିବ୍ୟାତ୍ମିର ସବାଦ ଲାଭକରେ । ପବିତ୍ର ସୌନ୍ଦର୍ଯ୍ୟ ଓ ନିର୍ମଳ ପ୍ରଶାନ୍ତିର ସନ୍ଧାନ ପାଏ । ପଦ୍ମର ରୂପବାସ ଜଗତରେ ବିଚ୍ଛୁରିତ ହୁଏ । ବ୍ୟକ୍ତିର ଆତ୍ମଜାଗରଣ ସେହିପରି ସତ୍ତ୍ୱାର ସାମଗ୍ରିକତାକୁ ଦିବ୍ୟାଭିମୁଖୀ କରାଏ । ପରେ ଚେତନାରେ ଦିବ୍ୟ-ସ୍ପନ୍ଦନ ସୃଷ୍ଟି ହେଲେ, ଜାଗତିକ ବିଷୟବାସନା ଆଉ ତାକୁ ଧର୍ମଭ୍ରଷ୍ଟ କରିପାରେନାହିଁ । ତାର ଚେତନା ସର୍ବଦା ଆଲୋକ ସନ୍ଧାନୀ, ଅମୃତାଭିଳାଷୀ ହୋଇ-ରହେ ।

ପଦ୍ମ ପୃଥିବୀର । ସୂର୍ଯ୍ୟ ଆକାଶର । ଉଭୟଙ୍କ ମଧ୍ୟରେ ଅସୀମ ଦୂରତ୍ୱ, ଅମାପ ବ୍ୟବଧାନ । ତା ସତ୍ତ୍ୱେ ପଦ୍ମର ଅଭିମୁଖୀନତା ବା ସୂର୍ଯ୍ୟର ଆଲୋକସ୍ପର୍ଶ—ପରସ୍ପରର ଏ ଭାବ ବନ୍ଧନମୟ ବ୍ୟାହତ ହୁଏ ନାହିଁ । ବ୍ୟକ୍ତିର ଆତ୍ମା ଏହିପରି ଅନନ୍ତ ଆଶୀର୍ବାଦରେ ବିଶ୍ୱାସୀ । ଦେହ ବନ୍ଧନ ସତ୍ତ୍ୱେ ପାର୍ଥିବ ସ୍ଥିତି ସତ୍ତ୍ୱେ ପରମଙ୍କର ଅପାର୍ଥିବ ସ୍ନେହାକର୍ଷଣର ଶକ୍ତି ଓ ପରିଣତି ବିଷୟରେ ସେ ନିଃସନ୍ଦେହ ରହିଥାଏ ।

ଆଶା ଓ ବିଶ୍ୱାସ, ଅଭିଳାଷ ଓ ଆକୂତି ଭିତରେ ହିଁ ଏଇ ସମ୍ପର୍କର ରୂପାୟନ ।

ମଧୁସୂଦନଙ୍କ କବିତାରେ ତାଙ୍କ ଅଧ୍ୟାତ୍ମ ଉପଲବ୍ଧିର ଧାରାବାହିକତା ଦୃଷ୍ଟିରୁ ପଦ୍ମଚେତନାର କ୍ରମବିକାଶ ତାତ୍ପର୍ଯ୍ୟପୂର୍ଣ୍ଣ । ମାନବାତ୍ମାର ପ୍ରତୀକ ଓ ଜୀବନ-ସାଧନାର ଉଚ୍ଚାରଣ ରୂପେ ପଦ୍ମ କବି-ମାନସରେ ପ୍ରଥମ-ସାର୍ଥକ ପ୍ରକାଶ ଲାଭ କରିଛି 'ଜୀବନ ଚିନ୍ତା' କବିତାରେ । ଏହି କବିତାର ନୈରାଶ୍ୟ ଏବଂ ବୈରାଗ୍ୟର ତମିସ୍ରାବରଣ ଭିତରେ ଆନନ୍ଦ ଓ ଆଶାର ଚେତନାଲୋକରେ ପଦ୍ମର ବିକାଶ । ପଙ୍କିଳ ଜୀବନସରରେ ଦିବ୍ୟସୌନ୍ଦର୍ଯ୍ୟମୟୀ ଆତ୍ମା-ପଦ୍ମର[୨୪] ସନ୍ଦର୍ଶନରେ କବିଙ୍କର ବିକ୍ଷୁବ୍ଧ ମାନସ 'ପ୍ରାଣାରାମ-ଧନକୁ ଦୂର ଭବିଷ୍ୟତରେ ପାଇ ପାରିବ ବୋଲି ସାନ୍ତ୍ୱନା ଦେଉଛି । ଏହି ଅବକାଶରେ ଜୀବାତ୍ମା କୁସୁମର ଗୁଣଗାନ । ପଦ୍ମପରି ସେ ପବିତ୍ର ଏବଂ ପୁଣ୍ୟ ସୂର୍ଯ୍ୟ ଈଶ୍ୱରଙ୍କ ଆଶୀର୍ବାଦ ଆଲୋକରେ ହର୍ଷୋତ୍‌ଫୁଲ୍ଲ, ତେଣୁ ସେହି ପୁଷ୍ପକୁ ତାଙ୍କର ପଦତଳେ ନିବେଦନକରି ଅନନ୍ତ ଜୀବନର ଆଶୀର୍ବାଦ ଭିକ୍ଷା, ହୃଦୟକୁ ହୃଦୟେଶଙ୍କ ନିକଟରେ ସମର୍ପଣ କରିଦେବାର ସିଦ୍ଧାନ୍ତ ।

ଏହି ଆତ୍ମା-ପଦ୍ମ ଅଭିଳଷିତ ପରମେଶ ଆଉ କବିଙ୍କ ପାଇଁ ନୈର୍ବ୍ୟକ୍ତିକ ଅନାସକ୍ତ ବ୍ରହ୍ମତତ୍ତ୍ୱ ନୁହନ୍ତି । ଏବେବି ସୁଦୂର ଓ ଅପ୍ରାପ୍ୟ ସତ୍ତ୍ୱେ ସେ "ନାଥ, ସନ୍ତାପିତ ପ୍ରାଣର ଚନ୍ଦନ ।" ଆତ୍ମା-କମଳର ଆରାଧ୍ୟ ଓ ପ୍ରତୀକ୍ଷାର ଦେବତା ରୂପେ ତାଙ୍କର ମଧ୍ୟ କବି ହୃଦୟ ସହ ଘନିଷ୍ଠତାର ନିବିଡ଼ପରିଚୟର ସୂତ୍ରପାତ ଘଟିଛି ।

---

୨୪ 'ବିରାଜେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ—କମଳ ଶୋଭଇ ଯଥା ପଙ୍କମୟ ସରେ ।"
ଜୀବନଚିନ୍ତା—ପଦ ୧୬

Digitized by PPRACHIN, SOA

ଗ୍ରନ୍ଥମାଳା'ର ଦ୍ୱିତୀୟ ଭାଗରେ ପ୍ରକାଶିତ 'ପଦ୍ମ' କବିତା କବିଙ୍କର ଯେଉଁ ସୌନ୍ଦର୍ଯ୍ୟ ଚେତନା ଉପରେ ଆଧାରିତ, ସେଥିରେ ଭାରତୀୟ ସୌନ୍ଦର୍ଯ୍ୟଭାବନା ସହ ପ୍ଲାଟୋନିକ୍ ସୌନ୍ଦର୍ଯ୍ୟତତ୍ତ୍ୱର ଚମତ୍କାର ସମନ୍ୱୟ ଘଟିଛି । ପ୍ଲାଟୋ ଚେତନାରେ ସୌନ୍ଦର୍ଯ୍ୟ, ମଙ୍ଗଳ ଓ ପ୍ରେମ ଏକ ଓ ଅଖଣ୍ଡ ଶାଶ୍ୱତ ତତ୍ତ୍ୱରୂପେ ପ୍ରତିପାଦିତ । ଅତୀନ୍ଦ୍ରିୟ କବିଚେତନା ବିଶ୍ୱପ୍ରକୃତି ମାଧ୍ୟମରେ ବିଶ୍ୱାତୀତ ସୌନ୍ଦର୍ଯ୍ୟର ଯେଉଁ ସ୍ପର୍ଶ ଲାଭକରିଥାଏ, ତାହାରି ଉପଲବ୍ଧିରେ ହିଁ କୀଟ୍ସଙ୍କର 'ସତ୍ୟ ହିଁ ସୌନ୍ଦର୍ଯ୍ୟ ସୌନ୍ଦର୍ଯ୍ୟ ହିଁ ସତ୍ୟ'ର ମୁଗ୍ଧ ଉଚ୍ଚାରଣ । ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ପ୍ରକୃତି ସୌନ୍ଦର୍ଯ୍ୟମାର୍ଗରେ ତାଙ୍କୁ ଏକ ଅପାର୍ଥିବ ମହନୀୟତାକୁ ଯୋଗାଇଲା ପରି, ବ୍ଲେକଙ୍କ 'ସନଫ୍ଲାୱାର' ତାଙ୍କ ନିକଟରେ ସୃଷ୍ଟି ତତ୍ତ୍ୱର ଗୋପନତମ ରହସ୍ୟ ଉଦ୍‌ଘାଟନ କଲାଭଳି ମଧୁସୂଦନ ପଦ୍ମ ଭିତରେ ସୌନ୍ଦର୍ଯ୍ୟଲୀଳାର ଅମୃତ ରସାସ୍ୱାଦନ କରିଛନ୍ତି ଓ ବିହ୍ୱଳ୍ଲୀଳାକୁ ବିସ୍ମୟ ଚକିତ ହୋଇ ନିରୀକ୍ଷଣ କରିଛନ୍ତି ।

ପଦ୍ମର ସ୍ଥିତି ଏବଂ ପରିବେଶ ବର୍ଣ୍ଣନାରେ ଏକ ମୁଗ୍ଧ କାବ୍ୟ-ଦୃଷ୍ଟି ରହିଛି । ପଦ୍ମ ଢଳଢଳ; କବିଂକ ଭାବତନ୍ମୟ ହୃଦୟ ମଧ୍ୟ ପୂର୍ଣ୍ଣାନଂଦ ଛଳଛଳ ! ସର୍ବତ୍ର ଏକ ଉଚ୍ଛଳ ଆବେଗୋଚ୍ଛଳ ଭାବ-ପ୍ରବାହ । ଜଳରେ, ସ୍ଥଳରେ, ପବନରେ ଓ କବିପ୍ରାଣରେ ରୂପଛଳଛଳ ଲାବଣ୍ୟ ବିଭା ।

ତୃତୀୟ ଓ ଚତୁର୍ଥ ପଦ ଦୁଇଟିରେ ପଦ୍ମର ସୂର୍ଯ୍ୟ ପ୍ରତି ଅନୁରାଗର ଚିତ୍ର । ପୁଣି ସୂର୍ଯ୍ୟର ପ୍ରତିଦାନର ସଂବାଦ । ଅନୁରାଗର ଗାନ ପ୍ରତିଧ୍ୱନିବିହୀନ ନୁହେ । ପଦ୍ମ ପାଖୁଡ଼ାରେ ସୂର୍ଯ୍ୟର ପ୍ରେମମୁଗ୍ଧ ରଶ୍ମି ସଂପାତ ଓ ସେ ସ୍ପର୍ଶରେ ପଦ୍ମର ଲାବଣ୍ୟସ୍ନିଗ୍ଧ ଦିବ୍ୟ ଶିଖା ଲାଭ । ଦାନ ପ୍ରସଂଗରେ ଦାତା ପରି ଗ୍ରହୀତା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଗ୍ରାହକର ପାତ୍ରତ୍ୱରେ ହିଁ ଦାନ ଶତପାଦ ହୋଇ ଉଜ୍ଜ୍ୱଳ ପଡ଼େ । ପଦ୍ମ ସୂର୍ଯ୍ୟ ପ୍ରୀତିର ସାର୍ଥକତାକୁ ଯେପରି ଆପଣାର ତନୁଲାବଣ୍ୟକରି ପ୍ରକାଶ କରେ । ପ୍ରେମରେ ସବୁ କିଛିର ଅପୂର୍ବ ରୂପାଂତର ଘଟେ । ପ୍ରଖର ସୂର୍ଯ୍ୟାଲୋକରୁ ସ୍ନିଗ୍ଧ ଲାବଣ୍ୟ ଝରେ । ମାଳିନ୍ୟ ଜାତ ପଦ୍ମପାଖୁଡ଼ାରେ ବି ସୁରଭି ଭରିଯାଏ । ପଦ୍ମର ପବିତ୍ର ହୃଦୟର ଅନୁରାଗ ଓ ଗ୍ରହଣ-କ୍ଷମ ପ୍ରେମ ଭିତରେ ହିଁ ରୂପାଂତର ସଂଘଟିତ ।

'ଭକତ ପ୍ରେମିକର ରୂହ ସଂବଳ'—ପଦ-ଭିତରେ କବି ହୃଦୟର ମଧୁର ଅନୁରାଗର ସ୍ପଷ୍ଟାଭିବ୍ୟକ୍ତି । ଭକ୍ତ ଓ କବି ଏଠାରେ ଏକ-ବ୍ୟକ୍ତିତ୍ୱ । ଭକ୍ତ ଓ ପ୍ରେମିକ ଏକ ଭାବମାନସଯୁକ୍ତ । କବି ଦିବ୍ୟ-ପୁରୁଷଙ୍କର ଭକ୍ତ ଓ ଦିବ୍ୟ ପ୍ରେମର ସାଧକ । ଏହାହିଁ ତାଙ୍କର ରହସ୍ୟବାଦୀ ପ୍ରେମ-ସାଧନାର ବାର୍ତ୍ତାରୂପ । ପଦ୍ମ ଭକ୍ତ ଓ ପ୍ରେମିକର ହୃଦୟରେ ସ୍ୱତଂତ୍ର ଭାବସଂବେଗର ସୃଷ୍ଟିକାରୀ । ଭକ୍ତ ସହ ଭଗବାନଙ୍କର ସମ୍ପର୍କର ପ୍ରତିଷ୍ଠା ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ପବିତ୍ରତା ଭିତରେ । ଆତ୍ମା ପଦ୍ମ ପରି ନିର୍ମଳ ଓ ଦିବ୍ୟାନୁରାଗୀ । ତେଣୁ ଏହି ଗୋଟିଏ ପଂକ୍ତିରେ ଯେପରି କବିପ୍ରାଣର ବ୍ୟାକୁଳତା ପଦ୍ମ-ପ୍ରତୀକରେ ସାର୍ଥକ ଅଭିବ୍ୟକ୍ତି ଲାଭକରିଛି ।

ଦଶମ ପଦରେ "ତୋର ସଂଗେ ନିଗୂଢ଼ ଯୋଗ ଅଛଇ ମୋର"—ଏହା ଏକ ପୂର୍ଣ୍ଣ ସ୍ୱୀକାରୋକ୍ତି । ପଦ୍ମ ସହ ପ୍ରାଣପଦ୍ମର ଅଭେଦତ୍ୱ ପ୍ରତିପାଦନରେ ଆତ୍ମାର ପରମାତ୍ମା ଅନ୍ୱେଷଣ ଅପେକ୍ଷା

Digitized by PPRACHIN, SOA

ବିଶ୍ୱାସର ଦୃଢ଼ୀଭୂତ ସ୍ୱରଟି ଅଧିକ ମୁଖର । ସୂର୍ଯ୍ୟ ପୃଥିବୀଠାରୁ ବହୁଦୂର ଆକାଶରେ ଥିଲେ ବି ଓ ସମସ୍ତଙ୍କୁ ଅକୁଣ୍ଠିତ କିରଣଦାନ କଲେ ବି କବିମାନସରେ ପଦ୍ମ ସହ ସ୍ୱତନ୍ତ୍ର ସମ୍ପର୍କରେ ବାନ୍ଧା । ସେହିପରି 'ଅନନ୍ତ ମହେଶ୍ୱର' ହେଲେ ବି ପରମ ସ୍ରଷ୍ଟା 'ମୋ ପ୍ରାଣ ପାଇଁ' ଅଭିବ୍ୟକ୍ତିରେ କବି-ଆତ୍ମାର ଏକାନ୍ତ ଘନିଷ୍ଠ ସଂପର୍କରେ ଆବଦ୍ଧ । 'ତାଙ୍କର ପାଇଁ ଥିବ ଅନାଇଁ' ଉଚ୍ଚାରଣରେ ଅନ୍ତର୍ଭୂମିରେ ନିରବଚ୍ଛିନ୍ନ ସାଧନା ସଂକଳ୍ପର ସ୍ପଷ୍ଟ ଅଂଗୀକାର । ପରମସତ୍ତା ବିରାଟ ଓ ମହାନହେଲେ ବି ବ୍ୟକ୍ତିର କ୍ଷୁଦ୍ର ହୃଦୟରେ ଆପଣା ଜାଗା ବାଛିନେଇପାରନ୍ତି, କବିପ୍ରାଣ ଏଇ ଗଭୀର ବିଶ୍ୱାସ—ଉଜ୍ଜ୍ୱଳ । ସଙ୍ଗୀତ-ମାଳାରେ ମଧ୍ୟ ତାହାର ପ୍ରତିଧ୍ୱନି—"ଫୁଟାଅ ଏ ପ୍ରାଣ ପଦ୍ମ ଅପୂର୍ବ ବିକାଶେ ।" ଏପର୍ଯ୍ୟନ୍ତ ପଦ୍ମ ସହ ସଂପର୍କରେ ଭାବ-ସଂବେଗ ରହିଛି । ଅନୁଭୂତିର ଉଜ୍ଜ୍ୱଳତାର ଆତ୍ମାଠାରେ ସେ ପଦ୍ମ-ଛବିର ବିକାଶର ସମ୍ବାଦ 'ନବବସନ୍ତଭାବନା'ରେ ସ୍ପଷ୍ଟ ହୋଇଯାଇଛି । ଏକ ନିର୍ଦ୍ଦିଷ୍ଟ ଉପଲବ୍ଧି, ଆଲୋକାନୁଭୂତିର ସ୍ପଷ୍ଟ ଉଲ୍ଲେଖ ଭିତରେ କବି ଆତ୍ମା-ପଦ୍ମର ବିକାଶକୁ ଇଂଗିତ କରିଛନ୍ତି । 'ଦେବାବତରଣ'ପର୍ଯ୍ୟାୟରେ ଆତ୍ମା ପଦ୍ମର ଏ ଉତ୍ତରଣ ବିକାଶର ଉଜ୍ଜ୍ୱଳ ପ୍ରକାଶ ଘଟିଛି । 'ଜ୍ୟୋତିର ଜ୍ୟୋତି' ଋଷିଙ୍କ ସହସ୍ରାର ଶୀର୍ଷ ଭେଦକରି ଅବତୀର୍ଣ୍ଣ । ଏହି ଜ୍ୟୋତି ସଂପାତରେ ଋଷିଙ୍କ ମୁଖ ପଦ୍ମ-ପ୍ରାୟ ବିକଶିତ । "କମଳ ଜ୍ୟୋତିର କିବା ପ୍ରଫୁଲ୍ଲ ପୁଷ୍କର" ବର୍ଣ୍ଣନା ଭିତରେ ପଦ୍ମ ସହ ଋଷିମୁଖର ବାହ୍ୟ ସୌନ୍ଦର୍ଯ୍ୟ ତୁଳନା କରିବାର ଅଭିପ୍ରାୟ କବିଙ୍କର ରହିଛି ବୋଲି ମନେହୁଏନାହିଁ । ଋଷି ପ୍ରାଣର ପବିତ୍ରତା, ଉଜ୍ଜ୍ୱଳତା ଓ ଦିବ୍ୟପ୍ରାପ୍ତିର ଆନନ୍ଦ ଏବଂ ସ୍ୱର୍ଗୀୟ ଆଭାରେ ତାଙ୍କର ବଦନମଣ୍ଡଳ ଝଟକି ଉଠିଛି । ପୁନଶ୍ଚ ଋଷିଙ୍କ 'ଲୋଚନକମଳ'ର ସୁବିମଳ ଜ୍ୟୋତିଃପ୍ରକାଶ ଭିତରେ ସେହି ଦିବ୍ୟମାଧୁରୀର ଅନିର୍ବଚନୀୟତା ଫୁଟିଉଠିଛି ।

ପଦ୍ମ ପ୍ରତୀକିତ କବି ଚେତନାର ପରିପୂର୍ଣ୍ଣବିନ୍ୟାସ 'ହିମାଚଳେ ଉଦୟ ଉତ୍ସବ', ଉପଲବ୍ଧିର ପ୍ରତ୍ୟକ୍ଷ ସଂବାଦ ଭିତରେ କବି ଆତ୍ମାର ପଦ୍ମ ସହ ତୁଳନାତ୍ମକ ରୂପଚେତନାର ଯେଉଁ ଅଭ୍ୟୁଦୟ ଘଟିଥିଲା ତାହାର ପ୍ରତୀତ ଓ ଭାବବିନ୍ୟାସର ପୂର୍ଣ୍ଣ ଅଭିବ୍ୟକ୍ତି ଏହି କବିତାରେ ସାର୍ଥକ ବାଣୀ-ରୂପ ଲାଭକରିଛି ।

"ଅରୁଣ କିରଣ ସ୍ପର୍ଶେ ଶୁକ୍ଳ ଶତଦଳ
ଅବା ଭକ୍ତିଯୋଗେ ଭକ୍ତ ପ୍ରାଣ ସୁକମଳ
ଯେସନ ଉଠଇ ଫୁଟି ମହା ପୁଲକରେ ।"[୨୯]

ପାଷାଣ ହିମାଦ୍ରିର ଶୁଭ୍ର ଗାତ୍ରରେ ଉଷାର ଆଦ୍ୟରଶ୍ମି ସଂପାତ—ତାପରେ ହିମାଦ୍ରି କିନ୍ତୁ ଆଉ ପାଷାଣ ନୁହେଁ, ଜଡ଼ ଶିଳାଖଣ୍ଡ ନୁହେଁ । ଜୀବନ ଛଳଛଳ, ପ୍ରାଣର ସ୍ପନ୍ଦନରେ ସଜୀବ ସରସ, ସୂର୍ଯ୍ୟ-ମୁଗ୍ଧ ପଦ୍ମପରି ଲୀଳାୟିତ, ଭକ୍ତି-ବିହ୍ୱଳ ଭକ୍ତ ପରି ପୁଲକ କଂପିତ । 'ଢଳଢଳ' ବାତାବରଣରେ ହିମାଦ୍ରିମଣ୍ଡଳ ଛଳଛଳ ହୋଇଉଠିଛି, ସର୍ବତ୍ର ଏକ ଦ୍ରବୀଭୂତ ତରଳତା । ଜୀବନର କୋଲାହଳ ଭିତରେ ପ୍ରବାହିତ ପ୍ରେମାନନ୍ଦର ମଧୁସ୍ରାବଣ । ବହିଃପ୍ରକୃତି ପରିସ୍ପନ୍ଦିତ ହୋଇଉଠିବାର ଏ ମହୋତ୍ସବ-ମୟ ଚିତ୍ରସଙ୍କେତ ।

---

୨୯ ମଧୁସୂଦନ ଗ୍ରନ୍ଥାବଳୀ—ପୃ ୧୨୭

Digitized by PPRACHIN, SOA

ଆକାଶ ଓ ଅବନୀର ଏଇ ବିପୁଳ ଆଲୋକସଜ୍ଜାଭିତରେ କବିପ୍ରାଣର ଉତ୍ସବ ଆୟୋଜନ ଆତୁର ସମାରୋହ ପୂର୍ଣ୍ଣ । ଆତ୍ମାର ପରମାତ୍ମାଙ୍କ ସାକ୍ଷାତକାର ବର୍ଣ୍ଣନାଟି କବି ଉପମାରେ "କିରଣ କସ୍ପିଟି ରବି ବିମ୍ବେ କିବା ଯଥା—ଅନାଏ ପଦ୍ମିନୀ ପଦ୍ମମୟୀ ଟେକି ମଥା" 'ପଦ୍ମ' କବିତାର ସେହି ସୂର୍ଯ୍ୟ ଓ ତାର କିରଣପ୍ରସଙ୍ଗ, ସେହି ପଦ୍ମ ଓ ଊର୍ଦ୍ଧ୍ୱାଲୋକନ, ମାତ୍ର ଏଠାରେ ଆଉ ବ୍ୟବଧାନ ନାହିଁ, ଅପେକ୍ଷା ନାହିଁ, ଭାବବିନିମୟର ମୌନ ଆକୁଳତା ନାହିଁ । ପ୍ରାଣ ସମ୍ଭାଷଣର ନିବିଡ଼ତାରେ ପଦ୍ମର ଆବାହନ ଓ ସୂର୍ଯ୍ୟରଶ୍ମିର ଅବତରଣ ଏଠାରେ ଏକାତ୍ମ ହୋଇଛନ୍ତି । ପଦ୍ମମୟୀ ପଦ୍ମିନୀ ଏଠାରେ ଆତ୍ମା ରମଣୀ—ଏକମାତ୍ର ପୁରୁଷୋତ୍ତମ ହିଁ ତାର ପ୍ରାଣପୁରୁଷ । ନାରୀତ୍ୱର ଆବେଗ ଓ ଆତ୍ମୋତ୍ସର୍ଗମୂଳକ ଗ୍ରହଣଶୀଳତା ନେଇ ପରମଙ୍କୁ ପୁରୁଷରୂପେ କାମନାକରିବା ରହସ୍ୟବାଦୀ ପ୍ରେମଚେତନାର ମୁଖ୍ୟସ୍ୱର । ଏ ପରିପ୍ରେକ୍ଷୀରେ ପଦ୍ମ ଆଉ ପୁଷ୍ପବିଶେଷ ନୁହେଁ, ଉପମା ବିଶେଷ ନୁହେଁ, ଆତ୍ମାର ପ୍ରତୀକ-ଧର୍ମୀ ରୂପକ ବିଶେଷ ନୁହେଁ । ପଦ୍ମ ଏଠାରେ ସ୍ୱୟଂ ଆତ୍ମା । ରମଣୀ ଶ୍ରେଷ୍ଠା ପଦ୍ମିନୀ ନାରୀ ପରି ସେ ଲାବଣ୍ୟ-ମୟୀ, ସୌରଭମୟୀ ଓ ଗୌରବମୟୀ । ନାରୀତ୍ୱର ସବୁ ଐଶ୍ୱର୍ଯ୍ୟ, ପବିତ୍ରତା ଓ ମାଧୁର୍ଯ୍ୟରେ ପରିପୂର୍ଣ୍ଣ ଆତ୍ମା ପରମାତ୍ମାଙ୍କ ସହ ସାକ୍ଷାତ ଲାଭର ମୁହୂର୍ତ୍ତରେ ପଦ୍ମପରି ଅନନ୍ୟା, ସୁନ୍ଦରୀ, ପବିତ୍ରା, ପ୍ରୀତିଶୀଳା ଓ ନିଷ୍ଠାବତୀ ।

## ଅନନ୍ତବାଦ, ଆନନ୍ଦତତ୍ତ୍ୱ

ମଧୁସୂଦନଙ୍କ ଦାର୍ଶନିକ-ମାନସରେ ଅମରତ୍ୱ, ଆନନ୍ଦ ଓ ଅନନ୍ତତତ୍ତ୍ୱ 'ମୃତ୍ୟୁ' କଳ୍ପନାକୁ କେନ୍ଦ୍ରକରି ବିସ୍ତାରିତ । ଏଦୃଷ୍ଟିରୁ ନଦୀପ୍ରତି, ଶୋଭା, ଧ୍ୱନି, ନବବସନ୍ତଭାବନା ପ୍ରଭୃତି କବିତାଗୁଡିକ ଅନ୍ତର୍ନିହିତ ଭାବ-ବସ୍ତୁ ବିଚାରରେ ପରସ୍ପର ସହ ଗଭୀରଭାବେ ସଂପୃକ୍ତ । କବିଙ୍କ ଚିନ୍ତାଧାରାର ଏକ ନିର୍ଦ୍ଦିଷ୍ଟ ଉତ୍ତରଣ ଓ ବ୍ୟାପକତାର କ୍ରମ ପ୍ରସାରଣରେ ଏଗୁଡିକ ସମୃଦ୍ଧ । ମଧୁସୂଦନଙ୍କ ଚିନ୍ତାଧାରାରେ ଆନନ୍ଦବାଦ ଓ ଅନନ୍ତବାଦର ସ୍ପଷ୍ଟ ରୂପାଲେଖ୍ୟ ମୃତ୍ୟୁତତ୍ତ୍ୱ ଓ ଧ୍ୱନିତତ୍ତ୍ୱ ମାଧ୍ୟମରେ ନଦୀ, ବସନ୍ତ, ସରସ୍ୱତୀ ପ୍ରତୀକରେ ପ୍ରକଟିତ (ପ୍ରେମ ଓ ପବିତ୍ରତାର ପଦ୍ମ ପ୍ରତୀକ ପରି) । ଆଭାସ-ଇଙ୍ଗିତରେ କବି ଚେତନାର ଯେଉଁ ଭାବଉନ୍ମେଷ ଅସ୍ପଷ୍ଟ ଜିଜ୍ଞାସାରୂପେ ପ୍ରାଥମିକ ରଚନାମାନଙ୍କରେ ଦେଖାଦେଇଥିଲା, ଏହି ପର୍ଯ୍ୟାୟରେ ସେମାନଙ୍କର ରୂପାଙ୍କନ ସ୍ପଷ୍ଟ ଓ ପରିଚ୍ଛନ୍ନ ।

## ମୃତ୍ୟୁ ଓ ଅମରତ୍ୱ

ଉପନିଷଦର ବର୍ଣ୍ଣନାନୁସାରେ ଶାଶ୍ୱତ ଚିର ପୂର୍ଣ୍ଣ । ଏହି ପୂର୍ଣ୍ଣର ଯଥାବଶେଷମଧ୍ୟ ସଦାପୂର୍ଣ୍ଣ । ଅର୍ଥାତ୍ ଏ ପୂର୍ଣ୍ଣତା ଭିତରେ କିଛି ହଜିଯିବାର ସମ୍ଭାବନା ନଥାଏ । ଏ ପୂର୍ଣ୍ଣର ଅର୍ଦ୍ଧେକ ଜୀବନ ହେଲେ ଅପରାର୍ଦ୍ଧ ମୃତ୍ୟୁ । ଜୀବନ ଓ ମୃତ୍ୟୁ ପରସ୍ପର ଭିନ୍ନ ନୁହନ୍ତି, ରୂପାନ୍ତର ମାତ୍ର । ବ୍ୟକ୍ତି ନିଜକୁ କେବଳ 'ଜୀବିତ' ବା 'ମୃତ' ର ଖଣ୍ଡଚେତନା ଭିତରେ ସୀମାବଦ୍ଧ ନକରି ସକଳ ପୂର୍ଣ୍ଣ ଭିତରେ ଅସୀମ ପ୍ରସାରିତ ହୋଇପାରିଲେ ଆଉ ବିନାଶର ଭୟ ରହେ ନାହିଁ । ମୃତ୍ୟୁ ଜୀବନପାଇଁ ଅମରତ୍ୱର ପ୍ରବେଶଦ୍ୱାର ହୁଏ ।

୧୭ ମଧୁସୂଦନ ଗ୍ରନ୍ଥାବଳୀ—ପୃ ୧୨୮

Digitized by PPRACHIN, SOA

ମୃତ୍ୟୁ ତେଣୁ ଏକ ଆଶୀର୍ବାଦ ଯାହା ଅସୀମ ଓ ଅନନ୍ତ ସହ ସତ୍ତାର ପ୍ରତ୍ୟକ୍ଷ ଯୋଗାଯୋଗ ଘଟାଏ । ମୃତ୍ୟୁ ମାଧ୍ୟମରେ ବ୍ୟକ୍ତିର ବିଶ୍ୱସହ ଏକାତ୍ମତା ଘଟେ । ମୃତ୍ୟୁର ଭୟକୁ ଜୟ କରିପାରିଲେ ମହା ଅଜଣାର ନିର୍ଭୟ ପରିଚୟ ମିଳେ । ବିରାଟ ବିଶ୍ୱ ଓ କ୍ଷୁଦ୍ର ମର୍ତ୍ତ୍ୟ ସତ୍ତା ଭିତରେ ଗୋଟିଏ ଧ୍ରୁବ ସଂଯୋଗ—ଆତ୍ମା-ଯାହାକୁ ମୃତ୍ୟୁର ମାର୍ଗ ଦେଇ ଅମରତ୍ୱ ଲାଭ କରିବାକୁ ହୁଏ । ମରଣ କବି-ଚେତନାରେ ଅମୃତ ସୋପାନ[୨୨] ହେବାର ରହସ୍ୟ ଏଇଠାରେ ।

ମଧୁସୂଦନଙ୍କ ମୃତ୍ୟୁ ସଚେତନତାର ପ୍ରାଥମିକ ପର୍ଯ୍ୟାୟଟି ଭୀତିଜନିତ । ଏ ମୃତ୍ୟୁ-ଭୀତି ହିଁ 'ଜୀବନଚିନ୍ତା'ରେ କବିଙ୍କ ଅତୃପ୍ତ ପ୍ରାଣକୁ ଅମର ଆତ୍ମା-ଚେତନା ନିକଟରେ ପହଞ୍ଚାଇ ଦେଇଛି । ସଂସାର ବିରାଗର ଭାବନାତ୍ମକ ଏଇ ଜାତୀୟ କବିତାଗୁଡ଼ିକରେ ମୃତ୍ୟୁପ୍ରତି ବର୍ଜନଶୀଳ ପ୍ରତିକ୍ରିୟା ସୁସ୍ପଷ୍ଟ । ମାତ୍ର 'ଜୀବନଚିନ୍ତା' ପରବର୍ତ୍ତୀ ଭାବମାନସରେ କ୍ରମଶଃ ଏହାର ପରିବର୍ତ୍ତନ ଘଟିଛି ଓ ମୃତ୍ୟୁ ଚେତନା ଭିତରେ ଆଶା-ଆନନ୍ଦର ଆବିର୍ଭାବ ଘଟିଛି । ଏହାର ସୁପରିଣତ 'ଏ ସୃଷ୍ଟି ଅମୃତମୟ ହେଁ' । ନିରାଶାର ସ୍ୱର ଏଠାରେ ପ୍ରଚଣ୍ଡ ଆଶା-ବିଶ୍ୱାସରେ ଉଦ୍ଭାବିତ ।

ମୃତ୍ୟୁ ସମ୍ପର୍କରେ କବିଙ୍କର ପ୍ରଥମ ସଚେତନ ଅନୁଚିନ୍ତା 'ଶ୍ମଶାନ' । ଏଥିରେ ଶ୍ମଶାନ ଦର୍ଶନରେ ମୃତ୍ୟୁ ପ୍ରତି ସାଧାରଣ ବ୍ୟକ୍ତିମନର ପ୍ରତିକ୍ରିୟା ରୂପାୟିତ । 'ଜୀବନ-ଚିନ୍ତା' ରେ ମୃତ୍ୟୁସହ ଜୀବନର ଏକ ସମ୍ପର୍କ ନିର୍ଦ୍ଧାରଣର ପ୍ରଚେଷ୍ଟା ପରିଲକ୍ଷିତ । ମୃତ୍ୟୁ ଏଠାରେ ଏକକ ବ୍ୟକ୍ତିଜୀବନର ଖଣ୍ଡ ମୁହୂର୍ତ୍ତରେ ଘଟଣା ବିଶେଷ ପରିବର୍ତ୍ତେ ମହାକାଳରୂପୀ ଅଖଣ୍ଡ ବ୍ୟାପ୍ତ ସମୁଦ୍ର ରୂପରେ ଉଦ୍ଭାସିତ । ମୃତ୍ୟୁର ଏ ମହାକାଳଗତିକ ଭୀତିପ୍ରଦ ବିସ୍ତୃତିରେ ପାର୍ଥିବ ଜୀବରେ ସକଳ ଗତି ପ୍ରବାହ ବିଲୀନ ହୋଇଯିବା ଭାବନାରେ କବି ଚିତ୍ତ ଉଦବେଗ-ଚଞ୍ଚଳ । ମୃତ୍ୟୁ ଏଠାରେ ତମୋ-ରୂପୀ ମହାବ୍ୟାପ୍ତ ମହାକାଳ 'ଲୋକକ୍ଷୟକୃତ୍ପ୍ରବୃଦ୍ଧିଃ (ଗୀତା) ଯାହା ନିକଟରେ ଜୀବନର ସବୁ ଆବେଦନ ଅପହଞ୍ଚ । 'ଜୀବନ ଚିନ୍ତା'ରେ ମୃତ୍ୟୁ ପରର ସମ୍ବାଦ ମୌନ । ଜୀବନ ପାଇଁ ଏକ ଜାଗ୍ରତ ସଚେତନତାରୂପେ ହିଁ ସେ ମୃତ୍ୟୁ ପ୍ରୟୋଜନ-ଭିତ୍ତିକ । ଜୀବନ ସମ୍ପର୍କରେ ଅନୁଚିନ୍ତା ଓ ମୁକ୍ତ ଅଭିଳାଷ ଏଠାରେ ଶ୍ମଶାନ ବୈରାଗ୍ୟରୁ ଜାତ । ମାତ୍ର ଏ କବିତାର ସମଗ୍ର ଅନ୍ତଃସ୍ୱର ଏହି ନିଷ୍କରୁଣ ହତାଶାର ବ୍ୟଞ୍ଜନା ନୁହେଁ । ମୃତ୍ୟୁ ମଧ୍ୟରେ ଅମରତ୍ୱର ରହସ୍ୟ ଓ ସେଇ ଅଦ୍ଭୁତ ରହସ୍ୟର ସୂତ୍ରଧରଙ୍କ ସମ୍ପର୍କରେ ଆଧ୍ୟାତ୍ମିକ ସଚେତନତା ହିଁ ଏ କବିତାର ଅନ୍ତର୍ନିହିତ ପ୍ରତିପାଦ୍ୟ । ନଶ୍ୱର ଦେହ ଓ କ୍ଷୟଶୀଳ ସଂସାର ଭିତରେ ବି ଅବିନଶ୍ୱର ଆତ୍ମା ବିରାଜିତ ଯାହା ମୃତ୍ୟୁ ନିକଟରେ ମଧ୍ୟ ପରାଜୟ ମାନେ ନାହିଁ । ଆତ୍ମାର ଏହି ଶକ୍ତି ବିଭୁକୃପା-ଲବ୍ଧ । ମୃତ୍ୟୁର ସମସ୍ତ ଅନ୍ଧକାର ଓ ଭୟଙ୍କରତା ଭିତରେ ଆତ୍ମାର ଏ ଜ୍ୟୋତିର୍ମୟ ଅମୃତ ସମ୍ବାଦ କେବଳ ଆଶାଜନକ ନୁହେଁ, ପରମାତ୍ମାଙ୍କ ସହ ଜୀବର ଆତ୍ମିକ ମିଳନ ସମ୍ପର୍କ ଭିତରେ ସତ୍ତା ମୃତ୍ୟୁଞ୍ଜୟୀ ହୋଇଉଠିବାର ସ୍ଥିରବିଶ୍ୱାସ ଉପରେ ମଧ୍ୟ ପ୍ରତିଷ୍ଠିତ ।

---

୨୨ "ତୋର ମଙ୍ଗଳ ବିଧାନ / କରିଅଛି ମରଣକୁ ଅମୃତ ସୋପାନ ।"
'ସ୍ତବ'—ଗ୍ରନ୍ଥାବଳୀ ପୃ—୧୨

Digitized by PPRACHIN, SOA

'ଜୀବନଚିନ୍ତା'ର ଏ ସମୁଦ୍ର-କଳ୍ପ ମୃତ୍ୟୁ କାଳକ୍ରମେ କବି ଉପଲବ୍ଧିରେ ତାର ଏଇ ଭୟଙ୍କରତାକୁ ହରାଇବସିଛି ।

ଜଗତ ଯଦି କଙ୍କାଳ ଓ ତଟ ଯଦି ପଞ୍ଜର, ତେବେ ସ୍ଥାନ-କାଳର ବନ୍ଧନ ହେଉଛି ଜୀବନ-ନଦୀ ପାଇଁ କେବଳ ତଟର ବନ୍ଧନ, ସୀମା-ସଂକେତ; ମୃତ୍ୟୁ ମାଧ୍ୟମରେ ତାର ଉଲ୍ଲଂଘନ ଘଟେ । ପ୍ରବାହ ପାଇଁ ତଟର ଆବଶ୍ୟକତା ରହିଛି, ନହେଲେ ଉତ୍ସ-ନିସୃତ ସ୍ରୋତୋଚ୍ଛ୍ୱାସ ଶଯ୍ୟାଧାର ବିହୁନେ ନିଃଶେଷ ହୋଇ ମିଳାଇଯିବ । ତଟଯୋଗୁ ହିଁ ତଟିନୀର ରୂପଲାଭ ଓ ପ୍ରବହମାନତା ସମ୍ଭବ ହୁଏ । ସେହିପରି ଜୀବନର ସୃଷ୍ଟି ଓ ବିକାଶ ମଧ୍ୟ ମୃତ୍ୟୁର ସୁନିର୍ଦ୍ଦିଷ୍ଟ ସୀମାରେଖା ଭିତରେ । ମୃତ୍ୟୁ ରୂପକ ଘଟଣା ନ ଘଟିଲେ ଜୀବନର ଅଭିବ୍ୟକ୍ତି ସମ୍ଭବ ହୁଏ ନାହିଁ । ମାତ୍ର ସାଗର-ସଂଗମକାଳରେ ନଦୀ ପୁନଶ୍ଚ ସମସ୍ତ ତଟବନ୍ଧନ ଓ ରୂପସ୍ୱାତନ୍ତ୍ର୍ୟକୁ ଅସ୍ୱୀକାର କରି ଅସୀମ-ବିଲୀନ ହୋଇଯାଏ । ନଦୀର ଏ ସାଗର ସଂଗମର ମୁହୂର୍ତ୍ତ ତାର ମୃତ୍ୟୁର ମୁହୂର୍ତ୍ତ, ଅମରତ୍ୱର ମୁହୂର୍ତ୍ତ ବି । ମୃତ୍ୟୁ,—କାରଣ ନଦୀ ନିଜସ୍ୱ ପରିଚୟ ହରାଇ ବସେ । ତାପରେ ବିସ୍ତୀର୍ଣ୍ଣ ଜଳାର୍ଣ୍ଣବ ଭିତରୁ, ଲବଣାକ୍ତ ଅତଳତା ଭିତରୁ ନଦୀର ସ୍ୱତନ୍ତ୍ର ସ୍ରୋତଧାରକୁ ବିଚ୍ଛିନ୍ନ କରିହେବନାହିଁ । ତାର ଭିନ୍ନ ରଂଗ ଓ ସ୍ୱାଦ ବାରିହେବନାହିଁ । ସମୁଦ୍ରରେ ବିଲୟ ନଦୀର ଆତ୍ମବିଲୟ, ସ୍ୱ ପରିଚୟର ସମାପ୍ତି, ସ୍ୱତନ୍ତ୍ର ଚେତନାର ମୃତ୍ୟୁ ।

ମାତ୍ର ନଦୀ-ହି ମରିଯାଏ କିନ୍ତୁ ନଦୀ ମରେ ନାହିଁ—ତାର କ୍ଷୁଦ୍ର ସ୍ରୋତ ଜଳଧିର ଅନନ୍ତ ପ୍ରବାହ ସହ ଏକାକାର ହୋଇଯାଏ । ତାର ଅନ୍ତରର କୁଳୁକୁଳୁତାନ ସମୁଦ୍ରର ମହାନାଦ ସହ ଏକତାନରେ ଧ୍ୱନିତ ହୋଇଉଠେ । ନଦୀ ସମୁଦ୍ରର ରୂପାନ୍ତର ଲାଭକରେ । ତାର ବିସ୍ତୀର୍ଣ୍ଣତା, ଅତଳତା, ଗାମ୍ଭୀର୍ଯ୍ୟ ଓ ପୂର୍ଣ୍ଣାଂଶକୁ ମଧ୍ୟ ଲାଭକରେ । ତେଣିକି ସେ ଜଳଧାରର ସଂଗୀତରେ ଖଣ୍ଡିତ ଚେତନାର ସ୍ୱର ନଥାଏ । ଥାଏ ଅଖଣ୍ଡ ସମୁଦ୍ରର ମନ୍ଦ୍ର ଓଁକାର । ନଦୀର ସମୁଦ୍ରରେ ଏ ରୂପ ଘଟଣା ହିଁ ମୃତ୍ୟୁର ଅମରତ୍ୱରେ ପରିଣତି । ମୃତ୍ୟୁ ତେଣୁ ଏକ ମାଧ୍ୟମ, ଏକ ସୋପାନ, ଯାହା ଦେଇ ବୃହତ୍ତର ଜୀବନ-ବଳୟକୁ ନିଷ୍କ୍ରମଣ ପାଇଁ ଅବଶ୍ୟ ଲଙ୍ଘନୀୟ । ମୃତ୍ୟୁକୁ ଭୟକରି ନଦୀସ୍ରୋତ ଯଦି ସମୁଦ୍ରର ବିପରୀତ ଅଭିମୁଖୀ ହୁଏ, ତା ଜୀବନରେ ଆଉ ଚିରନ୍ତନତ୍ୱ, ଅମରତ୍ୱ କେବେ ବି ସମ୍ଭବ ହୁଅନ୍ତା ନାହିଁ । ମୃତ୍ୟୁ 'ଅନିବାର୍ଯ୍ୟ' ରୂପରେ ହିଁ ବିଧାତାର ଏ ପ୍ରଚ୍ଛନ୍ନ ଆଶୀର୍ବାଦ ବହନ କରିଥାଏ ।

'ନଦୀପ୍ରତି' କବିତାରେ ମୃତ୍ୟୁର ଏଇ ତାତ୍ତ୍ୱିକ ବ୍ୟାଖ୍ୟା ଅବଶ୍ୟ ନାହିଁ । କେବଳ ତାର ସଙ୍କେତ ରହିଛି ନଦୀକୁ ଜୀବନର ପ୍ରତୀକ ରୂପେ ବ୍ୟକ୍ତ କରିବାର ଦୃଷ୍ଟିଭଂଗୀ ଭିତରେ । ଗିରିଗୁହାସ୍ଥିତ କଳଗୀତିର ବହିର୍ଗମନ ପାଇଁ ଆବେଗ ଓ ଆକୁଳତା ଭିତରେ ବ୍ୟକ୍ତିଜୀବନର ସୀମାଜଗତରୁ ଅସୀମ ଉତ୍ସାରିତ ହେବାର ସମ୍ବାଦ, ଯାତ୍ରା ପଥର ବର୍ଣ୍ଣନାରେ ଜୀବନର ବହୁ ଘାତପ୍ରତିଘାତ, ସାଗରେ ଅଭିମୁଖିନତାରେ ଜୀବନର ଅନନ୍ତ ଆସ୍ପୃହା ଏବଂ ସାଗର ସଂଗମରେ ଆତ୍ମାର ପରମାତ୍ମା ସଂଗତ—ଏ ଚିତ୍ରମାନ ଅଧ୍ୟାତ୍ମ ରୂପଚେତନାରେ ସ୍ୱତନ୍ତ୍ର ଅର୍ଥର ବ୍ୟଞ୍ଜନା ବହନ କରନ୍ତି । 'ସ୍ରୋତଧାର ସଦୃଶ ଜୀବନର ଗତି'—ଏ ଉତ୍ପ୍ରେକ୍ଷା ପୃଥିବୀର ସକଳ ଜୀବନବାଦୀ ଅଧ୍ୟାତ୍ମ-ସାଧନ ଚର୍ଯ୍ୟାର । ରବୀନ୍ଦ୍ରନାଥଙ୍କ 'ନିର୍ଝରେର ସ୍ୱପ୍ନଭଙ୍ଗ', କବି ଟେନିସନଙ୍କ ' The Brooke ' ଏଇ ଜୀବନ ଧର୍ମର କାବ୍ୟରୂପ ବୋଲି ମତବ୍ୟକ୍ତ କଲାବେଳେ

Digitized by PPRACHIN, SOA

ସାଂପ୍ରତିକ କବି-ମନର ଏ ଏକ ବିଶେଷ ଦୃଷ୍ଟିଭଙ୍ଗୀ ବୋଲି ନିଃସନ୍ଦେହରେ ଉପସ୍ଥାପନା କରାଯାଇ-ପାରେ । ମଧୁସୂଦନଙ୍କ ଅଧ୍ୟାତ୍ମ-ମନସ୍ତତ୍ତ୍ୱର ଏ ଦୃଷ୍ଟିଭଙ୍ଗୀଟି ତାଙ୍କର ସକଳ କାବ୍ୟପ୍ରୟାସ ଭିତରେ ଯତ୍ରତତ୍ର ଉତ୍କୀର୍ଣ୍ଣ ।

କବି ଜୀବନର ଅଖଣ୍ଡ ଅନୁଭୂତିକୁ ଯେଉଁ କ୍ରମଶଃ ଏ ଭାବୋପଲବ୍ଧିର କାବ୍ୟୋଚ୍ଚାରଣ ଘଟିଛି । 'ବସନ୍ତଗାଥା'ରୁ 'ହିମାଚଳେ...' ଭିତରେ ଏହାର ପୂର୍ଣ୍ଣ ପରିପୁଷ୍ଟି ସମ୍ପାଦିତ । କବି-ମାନସରେ ମୃତ୍ୟୁ ସହ ଅନନ୍ତ ତତ୍ତ୍ୱ ଅଙ୍ଗାଙ୍ଗୀ ଜଡ଼ିତ । ମୃତ୍ୟୁ ସ୍ଥାନକାଳର ଘଟଣା ବିଶେଷ । ମୃତ୍ୟୁର ଆରମ୍ଭ କାଳବକ୍ଷରେ । ମାତ୍ର ଆତ୍ମା ସହ ପରମାତ୍ମାଙ୍କର ନିତ୍ୟସମ୍ବନ୍ଧ । ମୃତ୍ୟୁ ଜୀବର ସବୁ ପ୍ରାପ୍ତି କ୍ଷୟ କରି ଦେଇପାରେ, ମାତ୍ର ଜୀବନର ସେ ସମ୍ବନ୍ଧକୁ ସ୍ପର୍ଶ କରିପାରେନାହିଁ । କାରଣ ସେ ସମ୍ପର୍କର ପ୍ରତିଷ୍ଠା ଅନାଦି କାଳରୁ । ଦେହର ବିନାଶ ପରେ ମଧ୍ୟ ଆତ୍ମାର ସେଇ ଅବିନାଶୀ-ସମ୍ପର୍କ ନିକଟରେ ମୃତ୍ୟୁ ପରାହତ । "କାଳର ଆରମ୍ଭ ଆଗୁ"[୨୮] ବାକ୍ୟରେ କେବଳ ମୃତ୍ୟୁର ଅସ୍ୱୀକାର ନାହିଁ—ଅମରତ୍ୱର ଜୟଗାନ ମଧ୍ୟ ରହିଛି । ଜଗତରେ ସୀମା-ଅସୀମର ନିତ୍ୟ ଲୀଳା ଉତ୍ସବରେ ମୃତ୍ୟୁ ହିଁ ପୁରୋଧା ।[୨୯]

ମୃତ୍ୟୁ ଯେ ସୀମାଠାରେ ଅସୀମର ଉଦ୍‌ବୋଧନ ଦ୍ୱାର—'ହିମାଚଳେ' ତାହାରି ସନ୍ଦେଶ । ପୁରାତନରୁ ନବତନମାର୍ଗରେ ବ୍ୟକ୍ତ ଚେତନାର ବିଳୟ ଓ ବିଶୁଦ୍ଧି-ପ୍ରାପ୍ତି—ସେହି ଅନୁଭୂତିର ସ୍ପଷ୍ଟ ଉଦ୍‌ଘୋଷଣା "ମୃଣ୍ମୟର ତିରୋଧାନେ ନିଃଶେଷେ ଚିନ୍ମୟ ।"

## ଉଷା, ସରସ୍ୱତୀ, ବସନ୍ତ, ଜ୍ୟୋତି, ଧ୍ୱନି, ମଧୁ, ଦର୍ଶନ, ଶ୍ରବଣ, ଆନନ୍ଦ

"ନିଷ୍ଠିକ୍ ତାହାର ଧ୍ୟାନଶକ୍ତି ଓ ଫଳାସକ୍ତିବିହୀନ ସାଧନା ଦ୍ୱାରା ବାସ୍ତବର ଆବରଣକୁ ଗୋଟିକ ପରେ ଗୋଟିଏ ଯେତେ ମୋଚନ କରିଛି ସେ ସେତିକି ପରିମାଣରେ ରସଲୋକ ଓ ଅଧ୍ୟାତ୍ମ-ଲୋକରେ ଭୂମାର ସନ୍ଧାନ ପାଇଛି ।"[୩୦]

---

୨୮ 'ହିମାଚଳେ ଉଦୟ ଉତ୍ସବ'—ଗ୍ରନ୍ଥାବଳୀ— ପୃ ୧୨୯

୨୯ "ମାରାତ୍ମକ ନୁହେ ମୃତ୍ୟୁ ବିଧାନ
ମୃତ୍ୟୁ ଅଟେ ଅମୃତର ସୋପାନ,
ଜୀବନ ମୃତ୍ୟୁର ଲୀଳା ରହସ୍ୟ
ମୃତ୍ୟୁ ମୃତ୍ତିକାରେ ଜୀବନ-ଶସ୍ୟ
ବଢ଼ଇ ବିଚିତ୍ର ଭାବେ
ଲୋକ ଲୋକାନ୍ତରେ କାଳକାଳାନ୍ତରେ
ଆବିର୍ଭାବେ ତିରୋଭାବେ ।"
'ଶୋକ—ଶ୍ଲୋକ'— ଗ୍ରନ୍ଥାବଳୀ—ପୃ ୧୩୨

୩୦ ରବୀନ୍ଦ୍ରନାଥ—ନିବନ୍ଧମାଳା—୨ୟ ଭାଗ (ଅ) ପୃ—୨୧୦

Digitized by PPRACHIN, SOA

ଅମୂର୍ତ୍ତ ଆନନ୍ଦ ସୌନ୍ଦର୍ଯ୍ୟ ଓ ସ୍ୱରର ମୂର୍ତ୍ତ ରୂପାୟନ ମଧୁ, ଆଲୋକ ଏବଂ ସଙ୍ଗୀତ । ବସନ୍ତ ମଧୁକାଳ, ଉଷା ଦିବ୍ୟାଲୋକ ଏବଂ ସରସ୍ୱତୀ ଦିବ୍ୟବାଣୀର ଦ୍ୟୋତକ । ବୈଦିକ ଚେତନାର ଏ ଉଷା, ସରସ୍ୱତୀ ଏବଂ ବସନ୍ତ ମଧୁ ମାନସରେ ସେଇ ସେଇ ନିର୍ଦ୍ଦିଷ୍ଟ ଅର୍ଥ ବହନ କରିଛନ୍ତି । ନିର୍ଗୁଣ ବ୍ରହ୍ମଙ୍କର ସଗୁଣ ଅଭିବ୍ୟକ୍ତି ଯେ ସଚ୍ଚିଦାନନ୍ଦ ସ୍ୱରୂପ ତାହା ମଧ୍ୟ ଅମୂର୍ତ୍ତ ଭାବଚେତନା ସେଇ ଅମୂର୍ତ୍ତ (ସତ୍‌ଚିତ) ଙ୍କ ବ୍ୟକ୍ତ ପ୍ରକାଶ ଆଲୋକ ଓ ସ୍ୱର ଏବଂ ବିଗ୍ରହ ରୂପାନ୍ତର ରୂପ ଏବଂ ବାକ୍ । ଅନ୍ୟ ସ୍ୱରୂପ ଆଂନନ୍ଦର ପ୍ରତୀତ ରୂପ-ବିଗ୍ରହରେ ସ୍ୱତଂତ୍ର ଅଭିବ୍ୟକ୍ତି ଲଭ କରିନାହିଁ, ବରଂ ରୂପ ଓ ବାକ୍‌ର ଅନ୍ତଃସଂଗୃହୀ ଅନୁପ୍ରେରଣା ରୂପେ ଓ ଉପଲବ୍ଧ ରସ ସ୍ୱରୂପରେ ସକଳ ସୃଷ୍ଟି କ୍ରିୟା ଏବଂ ଅଭିବ୍ୟକ୍ତିରେ ପ୍ରସାରିତ ରହିଛି । ରୂପ ଓ ବାକ୍ ସହ ବ୍ୟକ୍ତିସତ୍ତ୍ୱର ସଂବଂଧର ସୂତ୍ର ତାର ଇଂନ୍ଦ୍ରିୟ ସଂବେଦନଶୀଳତା । ଇନ୍ଦ୍ରିୟ ସଂବେଦ୍ୟ ଅନୁଭୂତ ଆନନ୍ଦରୂପେ ପ୍ରୀତିତତ୍ତ୍ୱରେ ବିରାଜିତ । ସେ ଅମୃତ ଆନନ୍ଦର କାବ୍ୟିକ କଳ୍ପନାମୟ ସର୍ବୋତ୍କୃଷ୍ଟ ବିଗ୍ରହାନ୍ୱିତ ନିର୍ଯ୍ୟାସ—'ମଧୁ' । ସବୁ କିଛିର ସାର ରସ ବା ନିର୍ଯ୍ୟାସ ମଧୁମୟ ରସସ୍ୱରୂପରେ ସୃଷ୍ଟିର ଆଦ୍ୟପ୍ରାନ୍ତ ସଂଗୃହିତ । ତାହାହିଁ ଅମୂର୍ତ୍ତ ଆନନ୍ଦର ମୂର୍ତ୍ତ ରୂପ ପ୍ରତୀକ । ଜୀବନର ସକଳ ଅଭିବ୍ୟକ୍ତି ପ୍ରୟାସରେ ଏହି ମଧୁପ୍ରଧାନ ରୂପଶବ୍ଦମୟ ଜଗତରେ ପ୍ରକାଶ ଲୋଡି ଚାଲିଛି ।

ତତ୍ତ୍ୱତଃ ଆଲୋକ, ଆନନ୍ଦ, ଧ୍ୱନିର ବ୍ୟାଖ୍ୟା ଯାହା ହେଉନା କାହିଁକି, ରହସ୍ୟଚେତନାରେ ଏଇ ତିନୋଟିର ଉପଲବ୍ଧି ପରମସତ୍ତ୍ୱର ପ୍ରତୀକ୍ଷତା ସମ୍ପର୍କରେ ଅତି ବିଶ୍ୱସ୍ତ ପ୍ରମାଣ ରୂପେ ସ୍ୱୀକୃତ । ରହସ୍ୟବାଦୀ ଅନୁଭୂତି-ସମ୍ପର୍କରେ ଆନନ୍ଦକୁ ଶେଷକଥା ବୋଲି କହିଥାଏ । ସେଇ ଆନନ୍ଦର ଅନୁଭୂତି ସହ ଆଲୋକ ଓ ଧ୍ୱନିର ସମ୍ପର୍କଟି ମଧ୍ୟ ଅଂଗାଂଗୀ ଭାବେ ଜଡିତ ରହିଥାଏ । ପ୍ରତ୍ୟକ୍ଷ ଭାବରେ ଏକ ଦିବ୍ୟ ଆଲୋକର ଉଦ୍‌ଭାସନ, ଏକ ଦିବ୍ୟ ବାଣୀର ସମ୍ଭାଷଣ ଏବଂ ପ୍ରାଣରେ ଆନନ୍ଦର ଜାଗରଣ ମିଷ୍ଟିକର ଉଚ୍ଚାରଣରେ । ଏ ତିନୋଟି ସମ୍ବଂଧ ସୂତ୍ର ପରସ୍ପର ସହ ଘନିଷ୍ଠ ଭାବେ ସଂଯୁକ୍ତ ।

ବୈଦିକ ଚେତନାରେ ଏଇ ଆନନ୍ଦ ଆଲୋକ ବାକ୍ ଭିତରେ ସମଗ୍ର ପ୍ରକୃତ ତତ୍ତ୍ୱର ଅଭିବ୍ୟକ୍ତି । ଆନନ୍ଦହିଁ ମଧୁରୂପେ ସର୍ବତ୍ର ଉତ୍‌ସାରିତ ଓ ନିଷିକ୍ତ । ସେହିପରି ଆଲୋକ ତେଜୋମୟ ପ୍ରାଣଶକ୍ତିରୂପେ ସର୍ବତ୍ର ସଂଚରିତ ଏବଂ ଧ୍ୱନି ବାକ ରୂପେ ସେ ସଂଗୁପ୍ତ ପ୍ରାଣଶକ୍ତିକୁ ରୂପାତ୍ମକ ଅଭିବ୍ୟକ୍ତି ପ୍ରଦାନ କରୁଛି । ତେଣୁ ଋଷିର ସୃଷ୍ଟି ସମ୍ବର୍ଦ୍ଧନା ଯଜ୍ଞରେ ମଧୁବଂଦନା, ଅଗ୍ନି ବଂଦନା ଓ ବାଣୀବଂଦନା ।

ଆଲୋକରେ ସବୁକିଛିର ପ୍ରକାଶ । ସେ ପ୍ରକାଶର ଆଭାସ ଉଷା । ସେ ପ୍ରକାଶର ସ୍ୱରୂପ ଜ୍ଞାନ । ତାହାର ବାଣୀମୟ ରୂପମୂର୍ତ୍ତି ସରସ୍ୱତୀ । ଏହିପରି ବୈଦିକ ଉପଲବ୍ଧିରେ ଜ୍ଞାନ ଆଲୋକ ଓ ଶବ୍ଦ ଏକ ଅଚ୍ଛେଦ୍ୟ ସମ୍ପର୍କ ସୂତ୍ରରେ ଉଷା ସରସ୍ୱତୀଙ୍କର ସମନ୍ୱୟ ଘଟାଇଛନ୍ତି ।

ମଧୁସୂଦନଂକ ରଚନାରେ ବୈଦିକ ଚିଂତାମାନସର ପ୍ରଭାବ ଲକ୍ଷିତ । ଆଲୋକ ଆନନ୍ଦ ଓ ଧ୍ୱନିର ଦିବ୍ୟାନୁଭୂତି ସମ୍ପର୍କରେ 'ମଧୁବସନ୍ତ ଉଷା-ଆଲୋକ ସରସ୍ୱତୀ ପ୍ରସଂଗ ଉତ୍‌ଥାପିତ ହୋଇଛି ।

Digitized by PPRACHIN, SOA

ବିଶେଷ ଲକ୍ଷଣୀୟ, ଆଲୋକ ଓ ଅନ୍ତଃସ୍ୱର ବା ଆକାଶବାଣୀ ଏକ ସମୟରେ ଚେତନା ଭୂମିରେ ଉପସ୍ଥିତ ଓ ତାହାର ପ୍ରଭାବ 'ଆନନ୍ଦ' ବୋଲି କବିଙ୍କ ବର୍ଣ୍ଣନା ରହିଛି ।

ବାଣୀ ଓ ଆଲୋକର ଶ୍ରବଣ / ଦର୍ଶନ ସମ୍ପର୍କରେ ରହସ୍ୟବାଦୀର ବିଶିଷ୍ଟ ମନସ୍ତତ୍ତ୍ୱଟି ହେଉଛି ଯେ ଏହା ତାର ସତ୍ତା ବହିଃସ୍ଥ ଘଟଣା । ଅର୍ଥାତ୍ ତାର ସତ୍ତା ଶକ୍ତି ନୁହେ । ସେ ଏ ଚେତନାକୁ କଳ୍ପନା କରନାହିଁ ଆରୋପ କରନାହିଁ । ଏ ସବୁ ତାର ସ୍ୱତଂତ୍ର ଚେତନା ନିରପେକ୍ଷ ଅନନ୍ତ ଶକ୍ତିର ସ୍ୱୟଂପ୍ରକାଶ । ବ୍ୟକ୍ତି-ଚେତନା ଏହି ପ୍ରକାଶର ଆଧାର, କ୍ଷେତ୍ର ବିଶେଷ ମାତ୍ର ।

## ମଧୁସୂଦନ ଓ ଧ୍ୱନିତତ୍ତ୍ୱ

ଅବ୍ୟକ୍ତ ସୃଜନେଚ୍ଛାର ଆଦି ବ୍ୟକ୍ତ ସୃଷ୍ଟି-ସଂକଳ୍ପ ନାଦ/ଧ୍ୱନି/ବାକ୍‌ରୂପାଶ୍ରିତ । ନିଖିଳ ବିଶ୍ୱ ପରିବ୍ୟାପ୍ତ ନାଦ ଧ୍ୱନି ହିଁ ବ୍ୟକ୍ତି-ସତ୍ତାଶ୍ରୟୀ ପ୍ରାଣସ୍ପଂଦନ ରୂପେ ଜାଗ୍ରତ । ତାହାର ଉପଲବ୍ଧି 'ଶବ୍ଦ ବ୍ରହ୍ମତତ୍ତ୍ୱ' ର ସମ୍ୟକ୍ ଉପଲବ୍ଧି ।

ମଧୁସୂଦନଂକ କବିତାରେ ଧ୍ୱନିତତ୍ତ୍ୱ, ପ୍ରଥମେ ଏକ ମାନସ ଚିଂତାର ଅଭିବ୍ୟକ୍ତି ରୂପେ ଆତ୍ମ ପ୍ରକାଶ କରିଛି । କ୍ରମଶଃ ସେ ଚେତନା ଉପଲବ୍ଧି ଭିତରେ ଏକ ବାଣୀରୂପ ଲାଭ କରିଛି । ଅମୂର୍ତ୍ତ ବ୍ୟାପ୍ତ ଧ୍ୱନି ଶବ୍ଦ ରୂପେ ଶୂନ୍ୟମଣ୍ଡଳରୁ ସଂଜାତ ହେବାର ପରିକଳ୍ପନାର କ୍ରମ ରୂପାଂତର ଘଟିଛି ବ୍ରହ୍ମା-ମାନସ-ସରୋବର-ବାସିନୀ-ପଦ୍ମବାସିନୀ ଭାରତୀ ରୂପେ ।

ପ୍ରାଥମିକ ରଚନା କାଳ ବିଗ୍ରହରେ—'ପ୍ରଭାତ' କବିତାରେ ଜ୍ୟୋତିର ବିରାଜ ସହ ଜୀବନର ନାଦମୟ ଜାଗରଣ [୩୧] ।'ପୃଥ୍ୱୀପ୍ରତି'ରେ ଆଦେଶ ସ୍ୱରୂପରେ ସେହି ଅଜଣା ଧ୍ୱନି ହିଁ ଜୀବସୃଷ୍ଟି ଆୟୋଜନର ମୂଳକାରଣ ରୂପେ କଳ୍ପିତ [୩୨] । ଭାରତୀ-ଭାବନାର ଅନଂତ ମାନସ କମଳ—ବାସିନୀ ଅମୃତବର୍ଷିଣୀ ଅରୂପା 'ଭାରତୀ' ର ରୂପାଂତରରେ ସୃଜନ-କାରଣୀ ବା ସୃଷ୍ଟି-ସଂଭବା ରୂପେ ସଂବୋଧିତା । ମାତ୍ର ଏଇ 'ଶବ୍ଦ' ବା ଧ୍ୱନି କେବଳ ଏକ ନୈର୍ବ୍ୟକ୍ତିକ ଇତର ବିଶେଷ ପର୍ଯ୍ୟବେକ୍ଷଣ । ତାହା ତାତ୍ତ୍ୱିକ ଗାଂଭୀର୍ଯ୍ୟକୁ ଉନ୍ନୀତ ହୋଇଛି 'ନିଶୀଥ ଚିଂତା'ରେ । ନିଶୀଥର ନିର୍ଜନତା ମୂଳରେ ରହିଛି ପ୍ରକୃତିର ଏକ ଗ୍ରହଣଶୀଳ ଆବେଦନ—ସେ ନୀରବତା—"ପ୍ରଭୁଙ୍କ ଗଂଭୀରାଦେଶ ଶ୍ରବଣ କାରଣ [୩୩] ।" ସ୍ତବ୍ଧ ନୀରବତା ଭିତରେ ପ୍ରକୃତି ଯେପରି ଅକୁହା ଶବ୍ଦକୁ ଶୁଣିବାର ଅପେକ୍ଷାରେ ରହିଛି । ବୋଧହୁଏ କବିଙ୍କ ଅନ୍ତଃ ଚେତନାର ସୁଷୁପ୍ତି ଓ ନିଶୀଥ ସମ ଅଂଧକାର ଭିତରେ ଏକ ଗଭୀର ନୀରବତାର ମୁହୂର୍ତ୍ତ ସମାଗତ,— ଯାହା ସ୍ରଷ୍ଟାପୁରୁଷଙ୍କର କିଛି ନିର୍ଦ୍ଦେଶଲାଭ କରିବାକୁ ଉତ୍କର୍ଣ୍ଣ । ଅଲକ୍ଷ୍ୟରେ କବିପ୍ରାଣର ଏହି ପ୍ରସ୍ତୁତ ଚେତନାର ନୀରବତା ଭିତରେ ସ୍ୱତଃସାଧିତ । ସେହି ପ୍ରସ୍ତୁତିର ଫଳରେ 'ଆକାଶପ୍ରତି'ର ଧ୍ୱନିତତ୍ତ୍ୱ

---

୩୧ ପ୍ରଭାତ—ଗ୍ରନ୍ଥାବଳୀ ପୃ ୫—ଗ୍ରନ୍ଥମାଳା-୧

୩୨ କାହାର ଆଦେଶେ···ଜୀବପାଇଁ ଆୟୋଜନ—ଗ୍ରନ୍ଥାବଳୀ ପୃ ୯

୩୩ ଗ୍ରନ୍ଥାବଳୀ – ପୃ ୫୬

Digitized by PPRACHIN, SOA

ଅର୍ଥାନ୍ୱିତ ହୋଇଉଠିଛି । ତାପରେ 'ଆଶା' କବିତାରେ ଧ୍ୱନିତତ୍ତ୍ୱ ଉପଲବ୍ଧିର ଉଚ୍ଚାରଣ ରୂପେ ପ୍ରକାଶ ଲାଭ କରିଛି । ଏହିଠାରେ ହିଁ ଅରୂପ ବାକ୍‌ର ଶିଳ୍ପୀ-ହୃଦୟ୍ରର-ଗ୍ରାହ୍ୟ ବାଣୀମୂର୍ତ୍ତିର ପ୍ରଥମ ପ୍ରତ୍ୟକ୍ଷ ସନ୍ଦର୍ଶନ ।

'ଆଶା' କବିତାରେ ସେହି ଆକାଶବାଣୀରେ ଶୁଣା ଓ ଅଭୁତ ଆଲୋକରେ ଦେଖା ଚିତ୍ତଗଗନରେ ଯେଉଁ ମୂର୍ତ୍ତି ତାହା ଉପନିଷଦର ହିରଣ୍ମୟ ପୁରୁଷ ନୁହନ୍ତି—ସେ ଶକ୍ତିରୂପ ପ୍ରଭାମୟୀ ମହାଦେବୀ । ତେଜୋମୟୀ, ଶ୍ରୀମୟୀ, ସୁହାସ ସୌରଭମୟୀ ମଧୁର ସେ ଦିବ୍ୟରୂପିଣୀଙ୍କ ଆନନ୍ଦ ସମଗ୍ର ବିଶ୍ୱ ପୂର୍ଣ୍ଣ କରି ପରିବ୍ୟାପ୍ତ । ସେ ଦେବୀ ପୁଣି "ସ୍ୱର୍ଣ୍ଣ ବୀଣାମୟୀ ବ୍ରହ୍ମାଣ୍ଡ ପାବନୀ"—ସରସ୍ୱତୀ ନାମୋଲ୍ଲେଖ ନଥିଲେ ବି ପାରଂପରିକ କବି ବର୍ଣ୍ଣନାର ଏହି ଜ୍ଞାନ-ପୂତ ଧାରା ପ୍ଲାବନକାରିଣୀ ବୀଣାବାଦିନୀ ବୀଣାପାଣିଙ୍କୁ ସୂଚିତ କରାଯାଇଛି । ଦେବୀଂକ ଆଗମନରେ କବି ହୃଦୟରେ ଆଲୋକର ଆବିର୍ଭାବ ଅଂଧକାର ତିରୋହିତ ଉଦବୋଧନ କବିତା ଏହାର ସ୍ପଷ୍ଟ ପ୍ରମାଣ ।

'ଉଦ୍‌ବୋଧନ' କବିତାଟି ଋଷିପ୍ରାଣେ 'ଦେବାବତରଣ'ର ଅନ୍ତଃସର୍ଗୀତା ରୂପେ ରଚିତ । କବିଚେତନାର ଏକ ବିଶିଷ୍ଟ ମୁହୂର୍ତ୍ତର ଉନ୍ମୋଚନ ଏଥିରେ ରୂପ ପାଇଛି । ଧ୍ୱନି ଓ ଆଲୋକର ମୂର୍ତ୍ତ ବିଗ୍ରହ ରୂପେ ଏଠାରେ ସରସ୍ୱତୀଙ୍କର ଉଦ୍‌ବୋଧନ । ଏ ବାଣୀ-ବନ୍ଦନା ମୃଣ୍ମୟ ଉପାସନା ଘଟିତ ନୁହେଁ । ମଧୁସୂଦନ ଜଣେ ନିଷ୍ଠାପର ବ୍ରାହ୍ମ ହିସାବରେ ସର୍ବବ୍ୟାପ୍ତ ନିରାକାର ବ୍ରହ୍ମଙ୍କର ହିଁ ଉପାସକ ଥିଲେ । ମଧୁସୂଦନଂକ ସରସ୍ୱତୀ ଭକ୍ତି ଉପାସନାର ସାକାର ନାମ ରୂପକୁ ଆଶ୍ରୟ କରି ସଂକେତିତା ହେଲେ ବି ସେ ସାକାର ଉପାସନାର ପ୍ରତୀକତ୍ୱକତାକୁ ହିଁ ଆଶ୍ରୟ କରିଛନ୍ତି । ବାହ୍ୟିକ ଧ୍ୟାନୁଷ୍ଠାନ ମୂଳକ ବିଧି ଆଚରଣୀୟ 'ପୂଜା' ଏହା ନୁହେଁ । 'ଉଦ୍‌ବୋଧନ'ର ସରସ୍ୱତୀ ଭାବ କଳ୍ପନାଟି ସମ୍ପୂର୍ଣ୍ଣ ବୈଦିକ ଯାହା କାଳକ୍ରମେ ଜ୍ଞାନ ଓ ଶୁଦ୍ଧତା ଏବଂ ଆନନ୍ଦର ପ୍ରତୀକ ରୂପେ ଭାରତୀୟ ଅଧ୍ୟାତ୍ମ-ମାନସରେ ବିଦ୍ୟାର ଅଧିଷ୍ଠାତ୍ରୀ ରୂପେ ସମ୍ବୋଧିତା ହୋଇ ଆସିଛନ୍ତି । ସଚରାଚର ବାଗ୍‌ଦେବୀ କବିକୁଳର ବଂଦିତା; ଏଠାରେ ମଧୁସୂଦନ କବି ପରିଚୟରେ ହିଁ ତାଙ୍କର ବାଣୀ ଶକ୍ତିର ଆଶ୍ରିତ । 'ଆଶ୍ରୟ'ର ଭାବଟି ଏଠାରେ ତାତ୍‌ପର୍ଯ୍ୟ ପୂର୍ଣ୍ଣ- କାରଣ, ମଧୁସୂଦନଂକ ବର୍ଣ୍ଣନୀୟ ଅନୁଭୂତ ସାଧାରଣ ଚିଂତାମାନସ ପ୍ରସୂତ ଭାବ କଳ୍ପନା ଓ ଭାଷା ମଧ୍ୟରେ ବ୍ୟକ୍ତ କରିବା ଦୁଃସାଧ୍ୟ । ସେଥିପାଇଁ ଦିବ୍ୟ ଶକ୍ତିମୟୀଙ୍କର ଆବାହନ ।

ଉଦ୍‌ବୋଧନ ଓ ତତ୍‌ସମ୍ପୃକ୍ତ ଦେବାବତରଣ ତଥା ସମଭାବାପନ୍ନ ହିମାଚଳେ ଉଦୟ ଉତ୍ସବ ମୁଖ୍ୟତଃ ବୈଦିକ ଉପଲବ୍ଧି ଓ ଦର୍ଶନର କାବ୍ୟ-ରୂପାୟନ । ଏଠାରେ ଭାବ, ଭାଷା, ବ୍ୟଞ୍ଜନା ଓ ଭଂଗୀ-ସବୁଥିରେ ବୈଦିକ ପ୍ରଭାବ ପରିଲକ୍ଷିତ । ଏକ ବୈଦିକ ବାତାବରଣର ସୃଷ୍ଟି କଳ୍ପନା । ଆର୍ଯ୍ୟଋଷି, ଆଲୋକମୂର୍ତ୍ତି, ଅମୃତ ଆନନ୍ଦ, ସୋମରସ, ପ୍ରଣବ ଓଁକାର, ବିଶ୍ୱଂଭରୀ ବାଣୀ, ହିମାଳୟ, ହିରଣ୍ମୟ ପୁରୁଷ, ଯୋଗ ଇତ୍ୟାଦି ଶବ୍ଦ ପ୍ରୟୋଗ କେବଳ କଥନ ଭଙ୍ଗୀ ଦୃଷ୍ଟିରୁ ନୁହେଁ, ଭାବ ସଂଯୋଜନା ଦୃଷ୍ଟିରୁ ମଧ୍ୟ ବୈଦିକ । ଏହି ପୃଷ୍ଠଭୂମି ଉପରେ ହିଁ କବିଙ୍କର 'ସରସ୍ୱତୀ' ରୂପକଳ୍ପନା ।

ମଧୁସୂଦନଂକର 'ସରସ୍ୱତୀ' କଳ୍ପନା ବିଶୁଦ୍ଧ ଜ୍ଞାନତତ୍ତ୍ୱ ସୌନ୍ଦର୍ଯ୍ୟର ଆଧାର ଉପରେ ପ୍ରତିଷ୍ଠିତ । ଏ ସରସ୍ୱତୀ ତତ୍କାଳର ସରସ୍ୱତୀ ମୂର୍ତ୍ତି । ମଧୁସୂଦନଂକ କାବ୍ୟ ଚେତନାରେ ସରସ୍ୱତୀଂକର ଦ୍ୱିବିଧ ରୂପର ଉପଲବ୍ଧି ଘଟିଛି । ଗୋଟିଏ କବିଦୃଷ୍ଟି ଅପରଟି ଯୋଗୀ ଦୃଷ୍ଟି । କବି ଦୃଷ୍ଟିରେ ସେ

Digitized by PPRACHIN, SOA

ଆନନ୍ଦ ରୂପିଣୀ, ଅମୂର୍ତ୍ତ ସୌନ୍ଦର୍ଯ୍ୟର ସାରଭୂତା ଓ ଜ୍ଞାନ ପ୍ରକାଶିକା । ଯୋଗୀର ଉପଲବ୍ଧିରେ ସେ ଐକ୍ୟବିଧାୟିତ୍ରୀ, ନିତ୍ୟସତ୍ୟରୂପା, ଚୈତନ୍ୟ ମଧ୍ୟରେ ଅଖଣ୍ଡରୂପିଣୀ, ନିତ୍ୟ ଓ ବିଶ୍ୱରୂପା ଜଗନ୍ମୟୀ ମୂର୍ତ୍ତି । କବିକୁଳ ବନ୍ଦିତା ଓ ଯୋଗୀଗଣ ଆରାଧ୍ୟ ଏହି ମହାଦେବୀ ଜ୍ୟୋତି ଓ ଶକ୍ତି ମୂର୍ତ୍ତିରେ ସୃଷ୍ଟି ପ୍ରେରଣା ରୂପେ ବ୍ୟକ୍ତି ହୃଦୟରେ ବିରାଜିତା ।

ବୈଦିକ ରଚନାରେ 'ସରସ୍ୱତୀ' ମୁଖ୍ୟତଃ ଏକ ନଦୀର ନାମ—ପରେ ଏହି ନାମ ଧ୍ୟାନ ଓ ଜ୍ଞାନର ପ୍ରବହମାନ ସ୍ୱରୂପ ପ୍ରତୀକ ରୂପେ ପ୍ରଯୁକ୍ତ । କ୍ରମଶଃ ସରସ୍ୱତୀ ସେହି ନଦୀର ଅଧିଷ୍ଠାତ୍ରୀ ଦେବୀ ଓ ତତ୍ପରେ ବାଗ୍‌ଦେବୀଙ୍କ ସମ୍ପର୍କରେ ସୂଚିତ ହେଲେ । ଆଲୋଚକମାନଙ୍କ ମତରେ ଏହି ଜ୍ଞାନ ରୂପା ଜ୍ୟୋତିର୍ମୟୀ ବାଗ୍‌ଦେବୀ ସରସ୍ୱତୀ ଗାୟତ୍ରୀ ସହିତ ମିଶି ଯାଇଛନ୍ତି । ଗାୟତ୍ରୀ-ମନ୍ତ୍ରର ବରେଣ୍ୟ ଭର୍ଗ ବ୍ରହ୍ମାଙ୍କର ଶକ୍ତି କବି ଚେତନାରେ ସେ ହିଁ ବ୍ରହ୍ମାଙ୍କ ମାନସ ସରୋବର ସୁବର୍ଣ୍ଣ କମଳବାସିନୀ । ସ୍ୱର୍ଣ୍ଣ ରଙ୍ଗ ଅଧ୍ୟାତ୍ମ ଚେତନାରେ ସର୍ବଦା ଦିବ୍ୟ ଜ୍ଞାନର ପ୍ରତୀକ ରୂପେ ପ୍ରଯୁକ୍ତ ।

'ଚଣ୍ଡୀ'ରେ ମହାସରସ୍ୱତୀଙ୍କର ଧ୍ୟାନ ପ୍ରସଙ୍ଗରେ ବର୍ଣ୍ଣିତ ଅଛି । "ଘନାନ୍ତବିଳସଚ୍ଛୀତାଂଶୁ ତୁଲ୍ୟ ପ୍ରଭାମ୍" ୩୪ । ସେ ମେଘମଧ୍ୟସ୍ଥିତ ଚନ୍ଦ୍ରତୁଲ୍ୟ ସ୍ନିଗ୍ଧ ପ୍ରଭାଯୁକ୍ତ । ଚିନ୍ମୟୀ ଜ୍ୟୋତିରୂପା । ସେ ପୁଣି ସାବିତ୍ରୀ, ସୃଷ୍ଟିକାରିଣୀ ଆଦ୍ୟମାତା । ୩୫ ଏହି ସୂତ୍ରରେ ସେ ସୂର୍ଯ୍ୟ-ଶକ୍ତିରେ ରୂପାନ୍ତରିତା । ଏହି ଉଜ୍ଜ୍ୱଳ ଦେବୀ ହିଁ 'ଉଷା' ରୂପେ ବନ୍ଦିତା । ଉଷାଙ୍କର ଅଭ୍ୟୁଦୟରେ ଧରଣୀ ଉଦ୍‌ବୁଦ୍ଧ ହୁଏ । ମାନସ ସରୋବରରେ କମଳ କାନନ ପ୍ରଫୁଲ୍ଲ ହୋଇଉଠେ । ଉଷା ଚୈତନ୍ୟସ୍ୱରୂପା, ଜଡ଼ତା ଓ ଅନ୍ଧକାର ବିନାଶ କରି (ଜାଡ୍ୟାପହା) ଆନନ୍ଦ ଉପଜାତ କରନ୍ତି । ମଧୁସୂଦନଙ୍କ କବିତାରେ ସରସ୍ୱତୀ ଆବିର୍ଭାବ ସହ ଆଲୋକ ବିଳାସ ବର୍ଣ୍ଣିତ ହୋଇଛି ।

ଜଗତର କବିକୁଳ ଏହି ଆଲୋକ ଓ ବାଣୀରୂପ ସରସ୍ୱତୀଙ୍କୁ କାବ୍ୟକଳାର ଜନନୀ ରୂପେ ଆରାଧନା କରିଛନ୍ତି । ଏହି କାବ୍ୟ-ସରସ୍ୱତୀ ହିଁ ପ୍ରକାଶିତା ଜଗତଲକ୍ଷ୍ମୀ, ସୌନ୍ଦର୍ଯ୍ୟମୟୀ, ଜ୍ୟୋତିସ୍ନିଗ୍ଧା, ଏଇ ଦେବୀ ଆପଣର ରୂପଲାବଣ୍ୟରେ ବିମୁଗ୍ଧ ହୋଇ ତାର ଉଚ୍ଚାରଣ ନିମନ୍ତେ କବିର ଚିତ୍ତଭୂମିକୁ ଦିବ୍ୟ-ପ୍ରେରଣା ହୋଇ ପ୍ରସରି ଆସନ୍ତି । ପୁଣି କବି-ବାଣୀ ରୂପେ ଉଦ୍‌ଧାର ଲଭ କରନ୍ତି । କବି Keats ଙ୍କର ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କ ଅନ୍ତରାଳରେ ଏହି ସତ୍ୟପ୍ରେମରୂପାଙ୍କର ଉଦ୍‌ବୋଧନ । ସୌନ୍ଦର୍ଯ୍ୟ ରୂପିଣୀରେ ଆନନ୍ଦମୟୀ ଓ ଆନନ୍ଦରେ ହିଁ ସତ୍ୟର ଆବିଷ୍କାର ।୩୬

---

୩୪ ଦ୍ରଷ୍ଟବ୍ୟ— ଭାରତର ଶକ୍ତିସାଧନା ଓ ଶାକ୍ତ ସାହିତ୍ୟ - ଶ୍ରୀ ଶଶିଭୂଷଣ ଦାଶଗୁପ୍ତ ।

୩୫ ତ୍ୱମେବ ସା ତ୍ୱଂ ସାବିତ୍ରୀ ତ୍ୱଂ ଦେବଜନନୀପରା
ତ୍ୱୟୈ ବ ଧାର୍ଯ୍ୟ ତେ ସର୍ବଂ ତ୍ୱୟୈତତ୍ ସୃଜ୍ୟତେ ଜଗତ୍ ।

36 We have occasional moment of insight when something presented to our sense or imagination will, from its own character or from some exaltus mood of our own, seem like a perfectly comprehended universe in miniature– What is Beauty E. T. Carnigh.

Digitized by PPRACHIN, SOA

ମଧୁସୂଦନଙ୍କ ସରସ୍ୱତୀ ତ୍ରିଗୁଣାତ୍ମିକା, ତିନି ରୂପେ ପ୍ରକଟିତା । ଆନଂଦ ରସଘନରସେଶ୍ୱରୀ କବି କୁଳର ପ୍ରେରଣାଦାତ୍ରୀ, ଚିଦାନଂଦମୟୀ ଅବ୍ୟକ୍ତରୂପିଣୀ ପୁଣି ବିଚିତ୍ରରୂପା ଯୋଗେଶ୍ୱରୀ । ମଧୁସୂଦନଂକ ଉତ୍ତୁଂଗକଳ୍ପନା ମହିମ୍ନ ଭାବ ଓ ଉଦାତ୍ତ ଅନୁଭୂତିର ଭାବଗାଂଭୀର୍ଯ୍ୟମୟ ଧ୍ୱନିସଂପଦରେ ଏହି ସରସ୍ୱତୀଙ୍କ ସ୍ତବଗାନ ବୈଦିକ ପ୍ରଭାବ ପୁଣି ପରଂପରାର ସ୍ପର୍ଶ ଜଡିତ । ବାଲ୍ମୀକି-କାଳିଦାସ ବଂଦିତ, ହୋମର ମିଲ୍‌ଟନ୍ ଉଦ୍‌ବୋଧିତ, ମାଇକେଲ ମଧୁସୂଦନ ଓ କବିବର ରାଧାନାଥଙ୍କ ସଂବୋଧିତ 'କବିଜନନୀ' ସରସ୍ୱତୀ ରୂପ ସହ ବୈଦିକ ସରସ୍ୱତୀ ଚେତନାର ସମ୍ମିଶ୍ରଣରେ ମଧୁସୂଦନଙ୍କର ଏହି ଜ୍ଞାନ ଓ ବାଣୀ-ସ୍ୱରୂପା ଭାରତୀଂକର ଐଶ୍ୱର୍ଯ୍ୟମୟୀ ରୂପାୟନ । ପ୍ରସଂଗତଃ ଉଲ୍ଲେଖଯୋଗ୍ୟ ବଂଗୀୟ ପ୍ରକୃତି ରହସ୍ୟବାଦୀ କବି ବିହାରୀଲାଲ ଚକ୍ରବର୍ତ୍ତୀଙ୍କର 'ସାରଦା ମଂଗଳ' କାବ୍ୟ ବର୍ଣ୍ଣିତ ସରସ୍ୱତୀ ଚେତନା ସହ ଭାଗବତ ଓ ରୂପଗତ ଚିତ୍ର ସାମ୍ୟର ନିଦର୍ଶନ ମଧ୍ୟ ମଧୁସୂଦନଂକ ରଚନାରେ କିଛି ପରିମାଣରେ ରହିଛି । ବିଶେଷ କରି ସରସ୍ୱତୀଂକୁ 'ଅନନ୍ତ-ମାନସ-କମଳବାସିନୀ' ରୂପେ ଉପସ୍ଥାପନା କରିବା ଭିତରେ ।[୩୭]

ମଧୁସୂଦନଂକ ଧ୍ୟାନ ଚେତନାରେ ଉଦ୍‌ଭାସିତ ସରସ୍ୱତୀଙ୍କ ରୂପ-ଟି ଅମଳଚୂଳ ଜ୍ଞାନ ଓ ସୃଷ୍ଟି ପ୍ରେରଣାମୟୀ ଓଁକାରମୟୀ ସାବିତ୍ରୀ ଗାୟତ୍ରୀ । ତାଙ୍କ କାବ୍ୟରେ ସଚରାଚର ଆଲୋକ, ଆନନ୍ଦ ଓ ଓ ଧ୍ୱନିସହ ଏହି ସରସ୍ୱତୀ ରୂପଚେତନାର ଆବିର୍ଭାବ । 'ଉଦ୍‌ବୋଧନ' କବିତାରେ ଏହି ଭାବରୂପର ପ୍ରଥମ ସ୍ପଷ୍ଟ ଆଲେଖ୍ୟ ।

'ଭାରତ ଭାବନା' ରେ ସରସ୍ୱତୀ ନଦୀ ସହ ଜ୍ଞାନପୁଣ୍ୟଭାବ ଓ ଋଷିଂକ ଉଦାତ୍ତ ଛନ୍ଦସ୍ତୁତିର ବେଦରୂପ ପ୍ରସ୍ରବଣର ଚେତନା ସୁଦୂର କଳ୍ପନାଶ୍ରୟୀ । 'ଆଶା' ରେ ସେହି ଜ୍ଞାନ ଓ ଆଲୋକ ସମ୍ପର୍କରେ ପ୍ରତିଶ୍ରୁତିର ସଂବଂଧ । 'ଉଦ୍‌ବୋଧନ' ସେହି ପ୍ରତିଶ୍ରୁତିର ସାର୍ଥକତା ବହନ କରିଛି । ଏହି କବିତାରେ ସ୍ପଷ୍ଟରୂପେ ସେହି ଜ୍ୟୋତିର୍ମୟୀଂକର ଉଦ୍‌ବୋଧନ ଯିଏ କି କାବ୍ୟପୁରୁଷଂକ ହୃଦୟରେ ଆଲୋକ, ସୌଂଦର୍ଯ୍ୟ ଓ ଅମୃତ ସଙ୍ଗୀତର ମଧୁର ମୁହୂର୍ତ୍ତ ସୃଷ୍ଟି କରିଛନ୍ତି ।[୩୮]

ଆର୍ଯ୍ୟ ଋଷି ପ୍ରାଣରେ 'ଦେବାବତରଣ'ର ଚିତ୍ର ସେହି ଉପଲବ୍ଧିର ପୃଷ୍ଠଭୂମି ଉପରେ ସଂଘଟିତ । ସେହି ଅନୁଭୂତିର ପୁନର୍ବିନ୍ୟାସଜଡିତ ଭାବକଳ୍ପନାରେ ହିଁ କବିସତ୍ତାର ଅନ୍ତର୍ଲୋକକୁ ତାହାର ପ୍ରସାରଣ, ସେହି ପୃଷ୍ଠଭୂମିରେ ଋଷିପ୍ରାଣର ନିବିଡ଼ ଉପଲବ୍ଧିକୁ ରୂପଦାନର ପ୍ରଚେଷ୍ଟା ।

'ଋଷିପ୍ରାଣେ ଦେବାବତରଣ'ରେ ସରସ୍ୱତୀ ନଦୀ ବିଶେଷ ମାତ୍ର ସାଧାରଣୀ ନୁହନ୍ତି । ଏହା ସ୍ୱର୍ଣ୍ଣଦୀ ତୁଲ୍ୟ ପାବନୀ, ଜ୍ଞାନଦାୟିନୀ । ପୁଣି ଦେବାବତରଣର ମୁହୂର୍ତ୍ତରେ ସେ "ମହାସରସ୍ୱତୀ/ସ୍ୱସ୍ତିପୂର୍ଣ୍ଣ ସୁଗଂଭୀରବାଣୀ ଭଗବତୀ"[୩୯] ତାଙ୍କର ଅମୃତ ସ୍ତନିତନାଦରେ ଚରାଚର ପୂର୍ଣ୍ଣ । କବି ହୃଦୟ ମଧ୍ୟ ବିଦୀର୍ଣ୍ଣ ।

---

୩୭ "ବ୍ରହ୍ମାଣ୍ଡ-ମାନସ ସରେ ସୁବର୍ଣ୍ଣ ନଳିନୀ"—(ସାରଦା ମଂଗଳ/ବିହାରୀଲାଲ) ପୃ ୧୩୮

୩୮କ) ବଦନେ ସ୍ପନ୍ଦିତ ଥିଲ ପ୍ରାଣେ ତୋ ଶୋଭା ସଂସାର"

ଖ) ଅମୃତସ୍ରାବୀ କଂଠସଙ୍ଗୀତ—"ନାଦେ କରିଥିଲ ପ୍ରାଣ ମନ ପୁଲକିତ" ଗ୍ରନ୍ଥାବଳୀ ପୃ ୬୧

୩୯ ଗ୍ରନ୍ଥାବଳୀ—ପୃ ୧୯୩

Digitized by PPRACHIN, SOA

ସେ ମହାନାଦମୟୀ, ବିଶ୍ୱପ୍ରହ୍ଲାଦିନୀ, ଯାହାର ବୀଣାତାନରେ ସମଗ୍ର ବ୍ରହ୍ମାଣ୍ଡତନ୍ତ୍ରୀ ବାଜେ ଏକ ତାନେ [୪୦]। ତାଙ୍କର ପୁଣ୍ୟ ପ୍ରବାହରେ ଋଷିକଣ୍ଠରୁ ଉଚ୍ଚାରିତ ବାଣୀ ମଧ୍ୟ ପବିତ୍ର ଓ ନିର୍ବାଧସ୍ୱଚ୍ଛନ୍ଦ।

'ଦେବାବତରଣ'ର ପରବର୍ତ୍ତୀ 'ଶୋଭା', 'ଧ୍ୱନି', 'ନଦୀପ୍ରତି' 'ନବବସନ୍ତଭାବନା' 'ଏ ସୃଷ୍ଟି ଅମୃତମୟ ହେ' ପ୍ରଭୃତି କବିତା ଏହି ଭାବାନୁଭୂତି ଉପରେ ପର୍ଯ୍ୟବସିତ। 'ଶୋଭା' କବିତାରେ ସୌନ୍ଦର୍ଯ୍ୟ ଲକ୍ଷ୍ମୀ ରୂପରେ ତାଙ୍କର ବିଶ୍ୱପ୍ରକାଶ। 'ଧ୍ୱନି'ରେ ଏହି ଆଦିମୂଳ ଅନାଦି ପରମଧ୍ୱନି ବିଶ୍ୱରନ୍ଧ୍ରେ ସଂଗୋପନେ ଉଚ୍ଛ୍ୱସିତ"[୪୧] ହେବାର ଉଦ୍‌ଘୋଷଣା ଏବଂ "ସୃଷ୍ଟି ସ୍ଥିତି ଲୟେ ନିତ୍ୟ ଉଚ୍ଚାରିତ ବାଣୀ"[୪୨] ର ସମ୍ବର୍ଦ୍ଧନା। ଅନ୍ତର ମନ୍ଦିରରେ ସେହି ଅନ୍ତରବାସିନୀଙ୍କର ବାଣୀ, 'ନବବସନ୍ତ ଭାବନା'ର ଆକାଶ-ସମ୍ଭବା ଭାରତୀଙ୍କୁ ସ୍ମରଣ କରାଇଦିଏ; କାରଣ ଉଭୟ ବାଙ୍ମୟର ସାରତତ୍ତ୍ୱ ଏକ— "ସେହି ଅନ୍ତଃ ପ୍ରଦେଶରେ ଜାଗ୍ରତ ଧ୍ୱନି, ପ୍ରେମ ଓ ସୁରକ୍ଷାର ଅଭୟ ଆଶ୍ୱାସନା ଅନନ୍ତ ପ୍ରେମରେ ନିତ୍ୟ ଆଲିଙ୍ଗନେ ଧରିଅଛି ସଦା ତୋତେ।"[୪୩] ସେଇ "ଜୀବନ-ଜାହ୍ନବୀ ଧାରି ଗଗନ ଭୁବନ ପ୍ରସାରିତ" ପୁଣି "ଅଶବ୍ଦ ଶବଦ ମୁଁ ତୋ ପ୍ରାଣେ ଅଛି ଧାୟୀ"।[୪୪] 'ଦେବାବତରଣ' ଉଲ୍ଲିଖିତ ଅଶବ୍ଦ ଶବ୍ଦ ଘଟିତ ବିସ୍ମୟ ଝଙ୍କାରରେ ଏହା ଯେପରି ଆହ୍ଲାଦଦାୟୀ ଉତ୍ତର। ସେଇ ଉତ୍ତର ସହସ୍ରସ୍ୱରରେ ଝଙ୍କାରିତ ହୋଇଛି, 'ଏ ସୃଷ୍ଟି ଅମୃତମୟ'ରେ ଏବଂ ପରିପୂର୍ଣ୍ଣ ସାର୍ଥକତା ଲଭିଛି 'ହିମାଚଳେ'ର 'ଶ୍ରାବଣୋତ୍ସବ' ରୂପକ ଅଭାବନୀୟ ଅଭିଭୂତିର ମୁହୂର୍ତ୍ତରେ।

ଏ ଧ୍ୱନିତତ୍ତ୍ୱର ରୂପକାଲେଖ୍ୟ 'ନଦୀପ୍ରତି'। ଏଥିରେ ଧ୍ୱନି ସୃଷ୍ଟିକାରଣରୂପେ କାବ୍ୟିକ ମହତ୍ତ୍ୱ ଲାଭକରିଛି।

ଗିରିଗୁହାସ୍ଥ ନଦୀକର୍ଣ୍ଣରେ ଏ 'ଧ୍ୱନି' ବହିର୍ଜଗତର ଡାକରୂପେ ପ୍ରବେଶକରି ତାର ନିଦ୍ରାଭଙ୍ଗ କରିଛି। ଜନ୍ମ ପୂର୍ବର ଜୀବନ ଅପ୍ରକଟମୟ ଅଚେତନ ସ୍ଥିତି ଏବଂ ପ୍ରଥମ ଜାଗରଣର ମୁହୂର୍ତ୍ତ ନିଦ୍ରୋତ୍ଥିତ ହେବାର ସଚେତନ ମୁହୂର୍ତ୍ତ ନଦୀର ସେ ନିଦ୍ରା ଭାଙ୍ଗିଛି। କେଉଁ ଜଗତର ଡାକରେ—ସେଇ ଡାକ ମୂଳରେ ରହିଛି ଏକ ଅନିର୍ଦ୍ଦେଶ୍ୟ ନିର୍ଦ୍ଦେଶ। ସେଇ ଡାକ ପୁଣି ନଦୀର ବହିଃଉତ୍ସାରଣ ପରେ ବହିର୍ବିଶ୍ୱର ଆହ୍ୱାନ ରୂପେ ପକ୍ଷୀର କାକଳିରେ, ମେଘର ଗର୍ଜ୍ଜନରେ, ତାର ପ୍ରାଣରେ ଉଚ୍ଚାଟନ ଭରି ଦେଇଛି। ତାର ପ୍ରତିଧ୍ୱନି ଜାଗିଛି ନଦୀବକ୍ଷରେ 'ହୃଦ ଦେବି ଢାଳି' ଅନୁଚ୍ଚାରିତ ହେଲେ ବି ତାହା ଭାଷାହୀନ ନୁହେ ବାଣୀମୟ କଳନାଦରେ ଅନର୍ଗଳ ଗୀତହୋଇ ନଦୀର ପ୍ରାଣପ୍ରବାହ ମିଶି ତାହା କଲ୍ଲୋଳ—ଉଚ୍ଛଳ ହୋଇ ନିଃସରି ଆସିଛି। ନଦୀପ୍ରାଣର ଆନନ୍ଦ ଓ ଆବେଗମିଶ୍ରିତ କଳନାଦସହ ସମଛନ୍ଦ ସମତାନ ତୋଳି ଅନ୍ତରୀକ୍ଷ ଓ ଧରିତ୍ରୀର କୋଣେ କୋଣେ ମଙ୍ଗଳଧ୍ୱନି ସ୍ଫୁରିତ ହୋଇଯାଇଛି। ତାପରେ ନଦୀର ଚଳପଥ କେତେବେଳେ ସାବଲୀଳ ତ କେତେବେଳେ ବିଘ୍ନବହୁଳ ହୋଇଉଠିଛି ମାତ୍ର ପ୍ରାଣର ସେଇ ଛଳଛଳ ସଙ୍ଗୀତରେ ମର୍ମରିତ ସୃଷ୍ଟିମୂଳର ଆଦ୍ୟଧ୍ୱନି ଆଉ ଅଶ୍ରୁତ ରହିପାରିନାହିଁ।

ସୃଷ୍ଟି ଆଦ୍ୟ ସେଇ ଶବ୍ଦ ସମଗ୍ର ଜୀବନରେ ପରିବ୍ୟାପ୍ତ ରହି ଅନ୍ତିମରେ ମଧ୍ୟ ତାହା ସହ ଏକାକାର ହୋଇଯାଇଛି। ଯେଉଁ ଧ୍ୱନି ଦୂର ଅତୀତରେ କେଉଁ 'ସୁଦୂର ଡାକ' ହୋଇ ଗିରିକନ୍ଦରରେ

---

X ପ୍ରସଙ୍ଗତଃ ଉଲ୍ଲେଖନୀୟ—ଋକ୍‌ବେଦରେ ଉଷା 'ସୁନୃତାବରୀ' ରୂପେ ସମ୍ବୋଧିତା
୪୦ ଗ୍ରନ୍ଥାବଳୀ—ପୃ ୧୯୩, ୪୧/୪୨— ୨୪, ୪୩/୪୪—ପୃ ୨୫

Digitized by PPRACHIN, SOA

ନଦୀ ଶ୍ରବଣରେ ପ୍ରବେଶ କରିଥିଲା ତାହା ଏବେ ସମୁଦ୍ରର 'ଘୋଷ' କବିଂକ ଜୀବନ ନଦୀକୁ ଉଚ୍ଛ୍ୱସିତ କରିଛି । ଏ ଡ଼ାକ ମଧ୍ୟ ଏକ ଲକ୍ଷ୍ୟ ପାଇଁ । ଗତି ପାଇଁ । ମାତ୍ର ଏ ଲକ୍ଷ୍ୟ, ଏ ଯାତ୍ରା ଆଉ ନିଜ ପାଇଁ ନୁହେ । ନଦୀ ନିଜ ଆନଂଦ ପାଇଁ ଆଉ ସ୍ରୋତସ୍ୱିନୀ ନୁହେ, ସମୁଦ୍ର ପାଇଁ ସେ ଦ୍ରୁତଗାମିନୀ, ଉନ୍ମାଦିନୀ, ଅଂତିମରେ ତାର ମୃଦୁ ସଂଗୀତ ସାଗରର ଗଂଭୀର ନାଦ ଭିତରେ ପ୍ରଲୀନ । ଧ୍ୱନିର ଧ୍ୱନିରେ ନିମଜ୍ଜନ, ଅରଂଭ ଓ ବିଳୟର ଏକତାନ ସଂଶ୍ଳେଷଣ ।

## ସରସ୍ୱତୀ / ଉଷା

ବୈଦିକ ଚେତନାର ସମାଂତରାଳ ପଛଭୂମିରେ ମଧୁସୂଦନଂକ କାବ୍ୟ-ଚେତନାରେ ସରସ୍ୱତୀ ଧ୍ୱନି ପରି 'ଆଲୋକ'ର ଘନୀଭୂତ ପ୍ରତିମାରୂପେ ଅଭିବ୍ୟକ୍ତି ଲଭି କରିଛନ୍ତି । ସେହି ଆଲୋକ ଚେତନା ଭିତରେ ବୈଦିକ ଉଷା କଳ୍ପନାଟି ମଧ୍ୟ ସରସ୍ୱତୀ ସହ ସ୍ୱାଭାବିକ ମିଶିଯାଇଛି । 'ଅଶବ୍ଦ ଶବ୍ଦ' ସହ 'ଅରୂପ ଜ୍ୟୋତି'ର ଆବିର୍ଭାବ କବି ଚିତ୍ତରେ ସମକାଳୀନ । ସେ ଜ୍ୟୋତିର ବର୍ଣ୍ଣନା ଅବକାଶରେ ସରସ୍ୱତୀ ଓ ଉଷା ପ୍ରସଂଗରେ କବିଂକ ବାଣୀଭଂଗୀ ବୈଦିକ ପ୍ରଭାବକୁ ସ୍ୱୀକାର କରିଛି ।

ବେଦରେ ଉଷା, ସାବିତ୍ରୀ, ସୂର୍ଯ୍ୟ ଓ ଅଗ୍ନି-ସୂକ୍ତଗୁଡିକରେ ଋଷି ଆଲୋକ-ଅନୁଭୂତିର ରୂପ ପ୍ରଦାନ କରିଛନ୍ତି । ଆଲୋକର ବାର୍ତ୍ତାବହ ଉଷା ଉଭୟ ସାବିତ୍ରୀ ଓ ସରସ୍ୱତୀ ରୂପେ ଅଭିନଂଦିତା । ସୂର୍ଯ୍ୟ ଏହି ଆଲୋକର ଜ୍ୟୋତିଃଶଙ୍କର ଓ ଅଗ୍ନି ଚେତନାଦେନ ଧାରଣୀଶକ୍ତି ରୂପେ ପରିକଳ୍ପିତ ଓ ବେଦରେ ଉଷା ସର୍ବଦା ଜାଗୃତିର ବା ଉନ୍ମେଷର, ଦିବ୍ୟ ଚେତନାର କର୍ମ ଓ ଅଭିବୃଦ୍ଧି ସଂବାହିକା, ବୈଦିକ ଉପଲବ୍ଧିର ସେ ପ୍ରଥମ ଅବସ୍ଥା । ପ୍ରଭାତର ଉଷାଲୋକରେ ପ୍ରକୃତି ସ୍ପଷ୍ଟ ଓ ମାନବ ଚେତନା ରାଜ୍ୟ ଆଲୋକ-ପରିଚ୍ଛନ୍ନ । ଉଷାଂକ ସାହାଯ୍ୟରେ ଚେତନାର ସତ୍ୟକୁ ଅଭିଗମନ ଓ ଆର୍ଷଚେତନାର ଏହି ଦିବ୍ୟ ଉଷା ଶୁଭ୍ର ଆଲୋକର ସ୍ଫୁରଣରେ ପଛପରେ ପଛ ରହସ୍ୟର ଆବ୍ରୁ ଅପସାରଣ କରି ସେ ଭାସ୍ୱର ସତ୍ତାକୁ ଉନ୍ମୋଚିତ କରଂତି ।

ଉଷାଂକ ସ୍ତୁତି ସଂକଳିତ ଋକ୍‌ମାନଂକରେ ଉଷା ରଶ୍ମିଧାରିଣୀ ରୂପେ ବର୍ଣ୍ଣିତା । ସେ ଆଲୋକର ଧାରୟିତ୍ରୀ ପୁଣି ଦାତ୍ରୀ । ବେଦରେ ଉଷା ଆଦିଜନନୀ ଅଦିତିଂକର ଶ୍ରେଷ୍ଠ ଆଲୋକ ଓ ପରମାଶକ୍ତିରୂପେ ଉଦ୍‌ବୋଧିତା [୪୫] । ଉଷା ପୁଣି ଋତାବରୀ (ସତ୍ୟପୂର୍ଣ୍ଣା ଓ ସୁନୃତାବରୀ ସତ୍ୟର ପ୍ରକାଶକାରୀ ମଧୁରବାକ୍) । ଏଥିରେ ଉଷାଂକଠାରେ ବାକ୍ ପ୍ରକାଶର ଶକ୍ତି ବ୍ୟଂଜିତ । ବୈଦିକ ମାନସରେ ଉଷା, 'ଗୋମତୀ-ଅଶ୍ୱାବତୀ ବିଭାବରୀ ସୁନୃତାବରୀ [୪୬] (ଦିବ୍ୟ ଆଲୋକଧାରିଣୀ, ଆଲୋକମୟ ଗତି, ଉଜ୍ଜ୍ୱଳ ପ୍ରଭାମୟୀ ଓ ମଧୁର ସତ୍ୟ ବାକ୍‌ମୟୀ ରୂପେ ପରିସ୍ତୁତା) ।

---

୪୫ "ମାତା ଦେବାନାମ୍ ଅଦିତେର ଅନୀକମ୍" । ଋକ୍—୧ ୧୧୩ : ୧୯

୪୬ ଋକ୍—୧ ୯୨ ୧୪

ଋଷି 'ଗୋମତ ବହୁଗୁଣ' ଉଷାଙ୍କୁ ସବୁଠାରେ ବାକ୍‌ଶକ୍ତିର ସଂଗ୍ରହିଣୀ [୪୭] (ବିଶ୍ୱସ୍ୟବାତମ୍ ଅବୋଧନ ମନାସ୍ତୋଃ) ରୂପେ ପ୍ରତ୍ୟକ୍ଷ କରିଛନ୍ତି । ମନ ଓ ବାକ୍‌ର ପରିପୂର୍ଣ୍ଣ ବିଶ୍ରୁତି ଘଟାଇ ସେ ପରମ ସତ୍ୟର ଉଜ୍ଜ୍ୱଳ ପ୍ରକାଶ ଓ ଉପଲବ୍ଧି ଘଟାଇଥାନ୍ତି । ବେଦରେ ଉଷା ସୂକ୍ତଗୁଡ଼ିକରେ ଦୃଶ୍ୟ ବା ଉପଲବ୍ଧି ଅର୍ଥରେ 'କେତୁ' [୪୮] (ପ୍ରତ୍ୟକ୍ଷ ଅବବୋଧ) ଶବ୍ଦର ପ୍ରୟୋଗ ରହିଛି । କେତୁ ଚେତନାଗତ ସ୍ପଷ୍ଟୋପଲବ୍ଧିକୁ ବୁଝାଇଥାଏ । ଉଜ୍ଜ୍ୱଳ ଆଲୋକଧାରିଣୀ ଉଷା ମନରେ ସତ୍ୟୋପଲବ୍ଧିର ଦିବ୍ୟଦୃଶ୍ୟ ସୃଷ୍ଟି କରନ୍ତି । ଏହିପରି ଉଷା ବାକ୍ ସହ ସଂପୃକ୍ତା ।

ହୃଦୟର ଦିବ୍ୟାନଂଦମୟ ଅନୁଭବ ସହ ମଧ୍ୟ ଉଷା ସଂପର୍କିତା । ସେ 'ସୋମସୂତ୍ରା', ଆନଂଦବର୍ଦ୍ଧନକାରିଣୀ ପୁଣି 'ଚଂଦ୍ରରଥା' ! ପ୍ରେମର ଦେବତା ଓ ମନର ଅଧିପତି ଚଂଦ୍ରଙ୍କର ପ୍ରେମ ପଥରେ ହିଁ ସତ୍ୟରୂପା ବାଗେଶ୍ୱରୀ ଆନଂଦମଧୁରା ଉଷାଙ୍କର ଆଲୋକମୟ ଅନୁବର୍ତ୍ତନ । ବେଦରେ ରାତ୍ରି ଅବିଦ୍ୟାପୂର୍ଣ୍ଣ, ଅନ୍ଧକାରମୟ ଶତ୍ରୁର ପ୍ରତୀକ, ଦୁର୍ଗତିର କାରଣ । ଉଷା ରାତ୍ରିକୁ ଦୂର କରି ସମାଗତା ଓ ସୁବିତମ୍ ' ବା ଆଲୋକ ମଂଗଳ ପ୍ରଭୃତି ଦିବ୍ୟ ଐଶ୍ୱର୍ଯ୍ୟର ଅଧିଶ୍ୱରୀ ! ଏହି ରୂପେ 'ବାକ୍' ସାହାଯ୍ୟରେ ସୌନ୍ଦର୍ଯ୍ୟ ମଂଗଳ ଆନଂଦ ଓ ସତ୍ୟର ପ୍ରତିଷ୍ଠା ପାଇଁ ବାଗେଶ୍ୱରୀ ଉଷାଙ୍କୁ ହିଁ ବୈଦିକ କାବ୍ୟକାରଙ୍କର ମଂଗଳାଚରଣ ସମର୍ପିତ ।

ମଧୁସୂଦନଙ୍କ କାବ୍ୟୋଚ୍ଚାରଣରେ ଉଷା / ସରସ୍ୱତୀଙ୍କ ଅଭେଦକଳ୍ପନା ଏ ବୈଦିକ ଚେତନା ପ୍ରଭାବିତ । 'ବସଂତଗାଥା'ର ବାଣୀ ସ୍ତବକ କବିତାଟି ଏ ଦୃଷ୍ଟିରୁ ପ୍ରଣିଧାନଯୋଗ୍ୟ ।' ଅନ୍ୟାନ୍ୟ ରଚନାରେ ଏ ବିଚିତ୍ରଭଂଗୀଟିର ସୂଚନା ରୂପ ମଧ୍ୟ ଉପେକ୍ଷଣୀୟ ନୁହେ ।

'ଆଲୋକ', ଧ୍ୱନି ବା ବାକ୍ ପରି 'ଜାଗରଣ' ଚେତନା ମଧ୍ୟ ସମ୍ମିଶ୍ରିତ । ସରସ୍ୱତୀ 'ଜାଡ୍ୟାପହା' । ମଧୁସୂଦନଙ୍କ ଆଲୋକର ଆବିର୍ଭାବ ରାତ୍ରି ଓ ଜଡ଼ତାର ଅପସାରଣ ପୂର୍ବକ ଚୈତନ୍ୟ-ଜାଗୃତି ମଧ୍ୟ ସନ୍ଦଂଧାନିତ । ଜାଗରଣ ମୂଳରେ ଆଲୋକସ୍ପର୍ଶ ପରି 'ଆହ୍ୱାନ'ର ଧ୍ୱନିମୟ ଭୂମିକାଟି ମଧ୍ୟ ସ୍ୱୀକାର୍ଯ୍ୟ । ଏ ପରିପ୍ରେକ୍ଷୀରେ ମଧୁସୂଦନଙ୍କ କାବ୍ୟଚେତନାରେ ଉଷା ସରସ୍ୱତୀ ପରି ବାକ୍, ଧ୍ୱନି, ଆଲୋକ ଓ ଜାଗରଣ ମଧ୍ୟ ପରସ୍ପର ସନ୍ନିଷ୍ଟ—ଯେପରି ଆଲୋକର ଆବିର୍ଭାବ, ଆହ୍ୱାନ ଓ ତାର ଶ୍ରବଣରେ ଉତ୍ଥାନ ।

'ପ୍ରଭାତ'ରେ (ଶିଶୁସଂଗୀତ)—ପ୍ରଭାତର ମଂତ୍ରରେ ପୃଥିବୀର ନବପ୍ରାଣ ଲଭ [୪୯] ପ୍ରଭାତର ଆଲୋକଦର୍ଶନ ଓ ବାଣୀଶ୍ରବଣରେ ଜଡ଼ପ୍ରାୟ ପୃଥିବୀର ଜୀବନ-ଚଂଚଳ ରୂପାଂତର । ସେହି ଜାଗରଣରେ

---

୪୭ ଋକ ୧ ୧୧୩ ୧୮

୪୮ "ଶୁଭ ଉଷାରାଣୀ, ବାଗୀଶ୍ୱରୀ ବାଣୀ" ('ବାଣୀ'-ବସନ୍ତଗାଥା-ଗ୍ରନ୍ଥାବଳୀ)—ପୃ ୧୦୩

୪୯ "କି ମନ୍ତ୍ର ପଢ଼ିଲ ପ୍ରଭାତ....ନବପ୍ରାଣ ଲଭି ଜାଗି ଉଠିଲେ ସର୍ବେ ପୃ—୬

Digitized by PPRACHIN, SOA

ପ୍ରକାଶ ହେଉଛି ଆକାଶ ପୃଥିବୀର 'ମହାଆନନ୍ଦରବ' । ସେ 'ରବ'ରେ କବି ପ୍ରାଣ ବି ପ୍ରତିଧ୍ୱନି ତୋଳିଥିବ । 'ଗ୍ରନ୍ଥମାଳା' ଅଂତର୍ଭୁକ୍ତ 'ପ୍ରଭାତ' ରେ ମଧ୍ୟ ଜ୍ୟୋତି ସହ ଜାଗରଣ ଚେତନା ସମ୍ପୃକ୍ତ [୫୦] । 'ଜୀବନଚନ୍ଦ୍ରା'ରେ ସେଇ ଆଲୋକ-ତତ୍ତ୍ୱ ନିଶାର ଅଂଧକାରରେ ଆକୁଳିତ ଭକ୍ତିକୁ ଆନନ୍ଦର ଆଶ୍ୱାସନା ଶୁଣାଇଛି । 'ସୁଧାମ'ର ସମ୍ବାଦ ଦାନକରିଛି । 'ଆକାଶପ୍ରତି'ରେ ସୃଷ୍ଟି କ୍ରିୟାର ପ୍ରଥମ ନାଦସ୍ପଂଦନରୂପେ ଆକାଶରେ ଜ୍ୟୋତିଧାରାର ସଞ୍ଚରଣ । ଏ ଭାବର ସମ୍ପ୍ରସାରଣ ଘଟିଛି···'ଦେବାବତରଣ'ରେ "ଅବତୀର୍ଣ୍ଣ ଭାଗୀରଥୀ ମହାନାଦମୟୀ" ବାକ୍ୟରେ । 'ନଦୀପ୍ରତି'ରେ ଗିରିଗୁହାସ୍ଥିତ ନିଦ୍ରାବିହ୍ୱଳ ନଦୀ ବକ୍ଷରେ ସ୍ୱର୍ଣ୍ଣରେଖାପରି ଉଜ୍ଜ୍ୱଳ ରବିକିରଣର ପ୍ରତିଭାସନରେ ତାର ନୂତନ ଜୀବନର ପୁଲକ ଜାଗରଣ । ପାର୍ଥିବ ଜ୍ୟୋତିଃପ୍ରକାଶ ପାର୍ଥିବ ତମସା-ରାତ୍ରିର ସମାପ୍ତି ସୂଚନା କେବଳ କରୁନାହିଁ, ଶାଶ୍ୱତ କାଳବକ୍ଷରେ ମାନବଚିତ୍ତକୁ ମୋହମୟୀ ରାତ୍ରିରୂପକ ତମସାବରଣକୁ ବିନାଶକରି ଏହିପରି ଯୁଗେଯୁଗେ ଜ୍ଞାନପୂର୍ଣ୍ଣର ସତ୍ୟଶୁଭ୍ରାଲୋକ ଉଦିତ ହୋଇଥାଏ ।

'ଆଶା' ଓ 'ନବବସନ୍ତଭାବନା'ରେ ଏହି ତତ୍ତ୍ୱ-ଚିଂତନର ରୂପ ଉପଲବ୍ଧି ଘଟିଛି । 'ଆଶା'ରେ ଉନ୍ମୀଳିତ ନୟନ ସମ୍ମୁଖରେ "ଆଲୋକପ୍ରବାହ, ଦଶ ଦିଶେ ଉଚ୍ଛୁଳଇ" [୫୧] । ତାହା ଅବିଶ୍ୱାସ, ଜଡ଼ତା, ହତାଶା ଓ ଅଜ୍ଞାନଅଂଧକାର ନାଶ କରେ । 'ନବବସନ୍ତଭାବନା'ରେ ମଧ୍ୟ 'ମହାଜ୍ଞାନମିହିର'ଙ୍କର ଉଦୟ ସୂଚନା । ଏଠାରେ ଏହି ଆଲୋକ ଓ ଜ୍ୟୋତି କାବ୍ୟପୁରୁଷଙ୍କ ଚିତ୍ତଭୂମିରୁ ସଂଶୟଜନିତ ମୋହାବରଣ ଦୂରକରି ଆଶା-ବିଶ୍ୱାସ ସଞ୍ଚାର କରିଛି । ସମର୍ପଣ ଦୃଢ଼ତା ସୃଷ୍ଟି କରିଛି । ଅଧ୍ୟାତ୍ମ-ସାଧନାରେ ଏହି ଉପଲବ୍ଧିର ଭୂମିକା ହେଉଛି ପ୍ରଥମତଃ ଆଲୋକମୟ ପରମସତ୍ତାଙ୍କ ସମ୍ପର୍କରେ ବ୍ୟକ୍ତିକୁ ଆସ୍ଥାବାନ କରିବା, ତାପରେ ସେହି ଆଲୋକରେ ସତ୍ତାର ଚେତନାମାଳିନ୍ୟକୁ ଆବିଷ୍କାର କରି ତାର ବର୍ଜନପ୍ରୟାସ କରିବା । ଏ ଆଲୋକ 'ଦିବ୍ୟସହାୟତା'ର ପ୍ରତିଶ୍ରୁତି ରୂପେ ହିଁ ବ୍ୟକ୍ତିଠାରେ ଲବ୍ଧ ।

'ନବବସନ୍ତ ଭାବନା'ରେ ନବଜ୍ଞାନର ସୂର୍ଯ୍ୟ ଜୀବକୁ ସେହି ପରମଙ୍କର ଅନ୍ୱେଷଣ କରିବାକୁ ପ୍ରେରଣା ଦେଇଛନ୍ତି । ଏଥିରେ ସନ୍ଦେଶ ରହିଛି । ସମ୍ବାଦ ରହିଛି । ଯାତ୍ରା ସଂକେତ ଓ ଅଭୀପ୍ସାର ବ୍ୟଂଜନା ରହିଛି । ଏ ସବୁର ପ୍ରତିଶ୍ରୁତି ତେଣୁ ସେଇ ଆଲୋକ ଓ ବାଣୀ ମାଧ୍ୟମରେ ପ୍ରକଟିତ [୫୨] ମୁଖ୍ୟତଃ 'ଆଶା ଓ 'ନବବସନ୍ତଭାବନା' ପରମ 'ସମ୍ଭାବନା'ର ସଙ୍ଗୀତ । ସେ ସମ୍ଭାବନାର ସଫଳ ରୂପାନୁଭୂତି 'ହିମାଚଳେ ଉଦୟ ଉତ୍ସବ ।'

ଚକ୍ଷୁ ବ୍ୟକ୍ତିର । ମାତ୍ର ଚକ୍ଷୁର 'ଜ୍ୟୋତି'—ଯାହା "ଏ ମୋର ଲୋଚନେ ଦେଇଥିଲୁ ?" ପୁଣି ତାହା ସାଧାରଣ ଦୃଷ୍ଟି ଶକ୍ତି ନିଶ୍ଚୟ ନୁହେ । କବି ଅଂଧ ଥିବାର କୌଣସି ପ୍ରସଙ୍ଗ ଜୀବନୀରେ

---

୫୦ "ପୂର୍ବ ଆକାଶରେ ବିରାଜିଲ ଜ୍ୟୋତି
ଛଣିକେ ଜାଗିଲ ସର୍ବ ବସୁମତୀ— ଗ୍ରନ୍ଥାବଳୀ-ପୃ ୫

୫୧ ଆଶା ପୃ ୮୮

୫୨ "ଅନନ୍ତ ଜୀବନ ଯୌବନ ମହାନନ୍ଦ ବିଭବ
ଲେଖିଛନ୍ତ ତୋର ଲଲାଟେ ପ୍ରାଣ ବିଧାତା ତୋର" —ଗ୍ରନ୍ଥାବଳୀ-ପୃ ୮୨

Digitized by PPRACHIN, SOA

ଉଲ୍ଲେଖ ନାହିଁ । ଅଥଚ କବିଙ୍କ ବର୍ଣ୍ଣନାରେ, କିଶୋର ଯୌବନରେ ସେ ଜ୍ୟୋତି, ଅଂତର୍ଜ୍ୟୋତି, ଯାହା ମଂଦ ବା ଦୁର୍ଗତିକାରୀ ପ୍ରବୃତ୍ତି ଓ ପ୍ରଭାବବଶତଃ ଅନ୍ତର୍ହିତ ହୋଇଯାଇଛି—ଯାହାଫଳରେ ବିଶ୍ୱଭୂବନରେ ଆଉ ବିଶ୍ୱମୟୀଙ୍କର ମାତୃରୂପ ଦୃଷ୍ଟ ହେଉନାହିଁ—ଏଇ ସବୁ ପ୍ରସଂଗ ଭିତରେ ରହସ୍ୟ ସାଧନାର ଗ୍ରୀଷ୍ମା-ଲୋକମୟ ଉତ୍ଥାନ ପତନ ଜଡିତ ଚେତନା-ସଙ୍କେତ ହିଁ ନିହିତ [୫୩] ।

ଅନୁତାପଦଗ୍ଧ ଓ ଅଶ୍ରୁଧୌତ ହୋଇ ଚିତ୍ତ ପୁଣି ନିର୍ମଳ ହୁଏ, ତାର ଜ୍ୟୋତି ଦର୍ଶନ ଘଟେ । ସେ ଜ୍ୟୋତି 'ସତ୍ୟ ଶିବ ଧ୍ରୁବ ଶୁଭ୍ରାଲୋକ'' । ସରଳ କୈଶୋରର, ମୁଗ୍ଧ ଯୌବନର, ସ୍ୱତଃ ଜୀବନାବେଗର ବିଶ୍ୱାସ-ଉଜ୍ଜ୍ୱଳ ଜ୍ୟୋତି ନୁହେ, ବରଂ ବ୍ୟକ୍ତିର 'ଦ୍ୱିଜ' ଚିତ୍ତରେ ବିଭୁକୃପାର ଅନାହୂତ ଜ୍ୟୋତି । ପ୍ରାରଂଭରେ ସେ ଜ୍ୟୋତି ଥିଲା ଅନ୍ତର୍ଗତ ସହଜାତ । ତାହା 'ଈଶ୍ୱରୀୟ' ବୋଲି କିନ୍ତୁ ଉପଲବ୍ଧ ହୋଇନଥିଲା । ମାତ୍ର ଜୀବନର ଯଂତ୍ରଣା ଓ ସଂସାରର ତାଡ଼ନା ଭିତରେ ପରିଶୁଦ୍ଧ ଚେତନାରେ ସେଇ ଜ୍ୟୋତିର ପୁନରାବିର୍ଭାବ ଏକ କବି ଉପଲବ୍ଧିରେ ନବମୂଲ୍ୟାୟନ ଲାଭକରିଛି ।

## ବସଂତ : ପ୍ରେମ ଓ ସୌଂଦର୍ଯ୍ୟ

ଆଲୋକ ଓ ଧ୍ୱନି ସହ ସତ୍ୟ ଓ ଜ୍ଞାନର ସମ୍ଭାବିତା ପରି ମଧୁମାନସରେ ବସଂତର ରୂପ-ଚେତନା ସହ ପ୍ରେମ, ସୌଂଦର୍ଯ୍ୟ ଓ ମାଧୁର୍ଯ୍ୟର ଭାବାନୁଭୂତିଗୁଡିକ ମଧ୍ୟ ଏକରୂପତା ଲାଭକରିଛନ୍ତି । ମାନବର ହୃଦୟାନୁଭୂତି ସହ ବସଂତର ଏକ ଭାବ-ଗୂଢ଼ ମଧୁର ସଂପର୍କ ବିଦ୍ୟମାନ । ବସଂତ ଋତୁଚକ୍ର ପରିକ୍ରମାରେ ଶ୍ରେଷ୍ଠ ସମୟ—'ଋତୁରାଜ !' ତାର ମହିମା ମଧ୍ୟ ସେହିପରି ରାଜକୀୟ । ମାନବ ହୃଦୟ ସହ ବହିଃପ୍ରକୃତିର ମିଳନ ପୀଠ—ବାସଂତୀ ପୃଥିବୀ । ଜୀବନରେ ଯେପରି ଯୌବନ ସାର୍ଥକତମ ଅବସ୍ଥା, ଋତୁ ମଧ୍ୟରେ ସେହିପରି ବସଂତ ମଧୁରତମ ସମୟ । ଯୌବନ ଓ ବସଂତର ସଂପର୍କ ସୁନିବିଡ଼ । ଯୌବନର ଆବିର୍ଭାବରେ ମାନବ ପ୍ରାଣରେ ଯେଉଁ ଯେଉଁ ବିଶେଷ ଭାବବୃତ୍ତିମାନଙ୍କର ବିକାଶଘଟେ, ବସଂତ ପ୍ରକୃତିଠାରେ ସେହି ସେହି ଭାବ ସଂବେଦନାମାନଙ୍କର ସ୍ପଂଦନ-ପ୍ରତୀକ । ଗୋଟିଏ କଥାରେ ବସଂତ ମାନବ ଜୀବନର ସର୍ବଶ୍ରେଷ୍ଠ ସମୟ ତାରୁଣ୍ୟର ପ୍ରତୀକ । ସୌଂଦର୍ଯ୍ୟ, ମାଧୁର୍ଯ୍ୟ ଓ ଆନଂଦ ଯୌବନର ପୁଣି ବସଂତର ସବିଶେଷ ବିଭବ, ଏ ସବୁ କିଛିର ପ୍ରକାଶ ପ୍ରେମକୁ ଆଶ୍ରୟକରି ।

ବସଂତ ପ୍ରେମର ଉତ୍ସବ । ପରିପୂର୍ଣ୍ଣ ଆନଂଦର ଉତ୍ସବ । ଜଡ଼ ଓ ଚେତନ, ବହିଃଜଗତ ଓ ଅନ୍ତର୍ଲୋକ, ନୈସର୍ଗ ପ୍ରକୃତି ଓ ପ୍ରାଣ-ପୁର-ସର୍ବତ୍ର ତାର ମହୋଲ୍ଲାସକର ଆବିର୍ଭାବ । ବସଂତର ଉଲ୍ଲାସ ଫୁଲ ଫୁଟିବାର ଅହେତୁକ ଉଲ୍ଲାସ, ଜୀବନକୁ ସାର୍ଥକ ମଣିବାର ଉଲ୍ଲାସ । ତା ର ସ୍ନିଗ୍ଧ ବାତାବରଣ ମୃଦୁ ମଳୟାନିଳ, ସ୍ୱଚ୍ଛ ଜଳାଧାର, ରମଣୀୟ ଉଦ୍ୟାନ ଅଟବୀରେ ପୁଷ୍ପଫଳ ସମାରୋହ, ପରିଚ୍ଛନ୍ନ ଆକାଶ ଓ ଶ୍ୟାମସୁଂଦର ପୃଥିବୀ—ସର୍ବତ୍ର ରୂପର, ରଂଗର, ରସର, ମହୋତ୍ସବ । ସେଇଥିପାଇଁ ହିଁ

---

୫୩ 'ବସନ୍ତଗାଥା'

ବସଂତର ଉତ୍ସବ ରଂଗର ଉତ୍ସବ, ହୋଲିର ବର୍ଣ୍ଣୋତ୍ସବ । ବସଂତ ରୂପମୟ । ମୁଗ୍ଧା ପ୍ରକୃତିରେ ରୂପରାଶିର ହାଟ । ସେହିପରି ରୂପ ଛଳଛଳ ବି ହୃଦୟର ଯୌବନ । ବସଂତରେ ନବପତ୍ରର ଉଦ୍‌ଗମନ, ନବଜୀବନର ସଂଚାରଣ; ହୃଦୟରେ ନବୀନ ଆଶାର ସ୍ୱପ୍ନ-ମୁଗ୍ଧ ଆନଂଦ । ନବ-କିଶଳୟ, ନବ-ବୃଂତ, ନବପୁଷ୍ପ ସମାବୃତ ନବବର୍ଷର ନୂତନ ସୂର୍ଯ୍ୟସକାଳରେ ନବୀନ ପ୍ରେମ ଅନୁଭବର ଆସ୍ୱାଦନ-ମୁଗ୍ଧ ପୁଲକ-ଚକିତ ମାନବର ନବଯୌବନ !

ଅତଏବ ବସଂତର ସମସ୍ତ ଯେପରି ଯୌବନ, ସେପରି ସେଭଳି ହୃଦୟ । ଐଶ୍ୱର୍ଯ୍ୟ ତାର ପ୍ରେମ ଓ ରଂଗ ତାର ଅନୁରାଗ । ବସଂତର ନୃତ୍ୟ ଲାସ୍ୟ, ରସ ଶୃଂଗାର । ତାର ସଂଗୀତ ଛଂଦ ଲଳିତ, ଭାଷା ଗୀତି ମଧୁର । ବସଂତ ତନ୍ମୟ ହେବାର ଭାବ-ମତ୍ତ ମୁହୂର୍ତ୍ତ ।

ବସଂତ ପୁଣି ପରିପୂର୍ଣ୍ଣତାର ଉତ୍ସବ-ମୁହୂର୍ତ୍ତ । ଯାତ୍ରା ଶେଷର ଉତ୍ସବ, ଲକ୍ଷ୍ୟସିଦ୍ଧିର ଉତ୍ସବ । ମାସ ମାସ ଧରି ସଂଚିତ ମଧୁ ସଂଭାରର ପାନ-ମୁହୂର୍ତ୍ତର ଉତ୍ସବ ରୂପେ ବସଂତ ସମାଗତ, ମାତ୍ର ଅମରତ୍ୱ ମୃତ୍ୟୁ କବଳିତ ପାର୍ଥିବ ସତ୍ତାର ସମ୍ପତ୍ତି ନୁହେ । 'କ୍ଷଣିକ' ରୁ ଜାତ ହେତୁ ଏହା ପରିଣତଧର୍ମୀ ଏବଂ ବିନାଶଶୀଳ । କିନ୍ତୁ ପାର୍ଥିବ ସତ୍ତାର ଏହି ବିନାଶଶୀଳତ୍ୱ—'ମୃତ୍ୟୁ' ଜୀବନ ପାଇଁ ଚରମବାର୍ତ୍ତା ନୁହେ । ସତ୍ତାର ଉତ୍ସ ଅମୃତରେ । ଅମୃତ-ଜାତ ଆତ୍ମା ବ୍ୟକ୍ତିର ଅନ୍ତରରେ ଅଛନ୍ତି । ଚେତନାରେ ଅନ୍ତରସ୍ଥ ହେଲେ ସେହି ଅମର ଆତ୍ମାଙ୍କର ଉପଲବ୍ଧି ହୁଏ । ସେହି ଉପଲବ୍ଧି ପରେ ମୃତ୍ୟୁ ସ୍ଥୂଳ ଦେହକୁ କବଳିତ କରିପାରେ, ମାତ୍ର ମୃତ୍ୟୁ ଚେତନା ବ୍ୟକ୍ତିକୁ ଆଉ ଉଦ୍‌ବେଜିତ କରିପାରେନାହିଁ । କାବ୍ୟାଲୋକରେ ହୃଦୟର ଅନ୍ତର୍ବାଣୀରେ କବି ଅମରତ୍ୱର ସଂଧାନ ଲାଭକରିଛନ୍ତି, ଆନନ୍ଦ ଓ ଅମୃତର ଆଧାର ପ୍ରଭୁଙ୍କର ମଧୁର ପ୍ରେମରେ ସେ ଅନ୍ତରରେ ନିତ୍ୟ ବସନ୍ତୋତ୍ସବ । ପ୍ରକୃତି ଜଗତରେ ବସନ୍ତ କ୍ଷଣସ୍ଥାୟୀ, ମାତ୍ର ଅଂତରର ଆନଂଦଧାମରେ ସବୁ ଋତୁ ବସନ୍ତ, ସବୁ ଦିନ ଯୌବନ, ସବୁ ଅନୁଭୂତି ପ୍ରେମ ଏବଂ ସବୁ ରସ ମଧୁ । ବହିର୍ଜଗତର ରୂପାସକ୍ତି ଓ ମୋହବଂଧନରୁ ମୁକ୍ତ ଅନ୍ତର୍ଲୋକରେ ଏହି ଅମୃତସ୍ପର୍ଶ ୬୪ ।

'ନବବସନ୍ତ' ବୋଲି କବିତାର ନାମକରଣର ତାତ୍ପର୍ଯ୍ୟ ବୋଧହୁଏ ଏଇଠାରେ । ବହିଃପ୍ରକୃତିରେ ବସନ୍ତ 'ନବୀନ' ହେଲେ ମଧ୍ୟ ତାହା ଅନେକ 'ନବୀନ' ମଧ୍ୟରୁ ଏକତମ, ପୁଣି କ୍ଷଣସ୍ଥାୟୀ, ଅନ୍ତର୍ଜଗତରେ କିନ୍ତୁ ଏ ବସନ୍ତର ଉଦ୍‌ବୋଧନ ପ୍ରଥମଥର ପାଇଁ । ଯେପରି—ବ୍ୟକ୍ତିର ପ୍ରଥମ ତାରୁଣ୍ୟରେ ସମାଗତ ବସନ୍ତର ପ୍ରଥମ ଉନ୍ମେଷ ଏକ ବିଶିଷ୍ଟ ଉପଲବ୍ଧି ଭିତରେ ଅପୂର୍ବ, ଆକସ୍ମିକଭାବେ ଘଟିଥାଏ—ଋତୁଚକ୍ରର ଚିରଂତନତା ସତ୍ତ୍ୱେ ବ୍ୟକ୍ତି ଜୀବନରେ କୌଣସି ଏକ ସ୍ୱତଂତ୍ର ମୁହୂର୍ତ୍ତରେ ସ୍ୱତଂତ୍ର ଅନୁଭୂତି ଭିତରେ ବସନ୍ତ ପ୍ରଥମଥର ପାଇଁ ରୂପରଂଗ ଓ ପ୍ରେମ ଆନନ୍ଦର ଅନିର୍ବଚନୀୟତା ଘେନି ଆସ୍ୱାଦମଧୁର ହୋଇ ଆବିର୍ଭୂତ ହୋଇଥାଏ, ସେହିପରି କବିଙ୍କର ଆତ୍ମ ସତ୍ତାଟି ଏଠାରେ ଯେପରି ପ୍ରଥମ ପ୍ରୀତିର ଉନ୍ମେଷରେ ପ୍ରଥମଥର ପାଇଁ ଅନ୍ତଃଚେତନାର ଏକ ନୂତନ ରୂପାଲୋକକୁ ସୂକ୍ଷ୍ମାନୁଭୂତିରେ ଲାଭ କଲା ।

---

୬୪ ଅନନ୍ତ ଜୀବନ—ଆଧାର ସତ୍ୟ ଶିବ ସୁନ୍ଦରେ
ଅନନ୍ତ ସରସ ବସନ୍ତ ମଧୁମୟ ଉତ୍ସବ
ଅନନ୍ତ ଜୀବନ ଯୌବନ ମହାନନ୍ଦ ବୈଭବ—ନବବସଂତଭାବନା ପୃ ୮୬

Digitized by PPRACHIN, SOA

ନୂଆକରି ସୀମା—ଅସୀମର ପ୍ରୀତି ତତ୍ତ୍ୱକୁ ଲାଭ କଲା—ଉପଭୋଗ ଆସ୍ୱାଦନର ନୂତନ ଦ୍ୟୋତନାକୁ ଲାଭ କଲା । ଏହି ନବବ୍ୟଂଜନା ଯେଉଁ ଅସୀମ ପ୍ରେରଣାରୂପେ ବାଙ୍ମୟ ହୋଇ ତାଙ୍କର କାବ୍ୟଚେତନାର ବାଣୀ ରୂପ ବହନ କଲା—ସେଥିରେ ସେହି ମୁଗ୍‌ଧ ଦୃଷ୍ଟିର ଆଚ୍ଛନ୍ନତା, ନୂତନ ପ୍ରେମାକୁଳ ହୃଦୟର ବହ୍ୱଳତା ହିଁ ଫୁଟି ଉଠିଛି । ପ୍ରୀତି ପାତ୍ର ସହ ସାକ୍ଷାତ ଓ ମିଳନକୁ ଏଠାରେ ଭବିଷ୍ୟତର ସମ୍ଭାବନା ଗର୍ଭରେ ରଖି-ଦିଆଯାଇଛି । ପ୍ରେମ ସାଧନର ଧନ ଏବେବି ସୁଦୂର, ଅପ୍ରାପ୍ୟ । ମାତ୍ର ମର୍ମସ୍ଥଳରେ ତାଙ୍କର ବଂଶୀର ସ୍ୱର ବାଜୁଛି । ସେ ଷଡ଼ଋତୁର ସମାପ୍ତି କେବଳ ନୁହେଁ, ପୂର୍ଣ୍ଣତା ବି । ସେ ଏକାଧାରରେ ପୂର୍ଣ୍ଣ ଓ ନବୀନ । ପୂର୍ଣ୍ଣତାରୁ ହିଁ ତାର ନବୀନତାର ଉଦ୍‌ଗମ । ସେଇଥିପାଇଁ ବସନ୍ତ ଅମୃତ ବା ଅମରତ୍ୱ, ନବୀନତ୍ୱର ଅଧିକାରୀ । ଏଇ ଅମୃତର ମଧୁ ପ୍ରବାହରେ ବସଂତ ଅମର ଜୀବନର ସଂଦେଶବାହୀ ରହୋଇଛଲ ସଲ୍‌ଗୁଧାର ।

ମଧୁସୂଦନଙ୍କ କାବ୍ୟଚେତନାରେ ବସଂତର ଜୟଗାନ ଏଇ ଅମୃତତ୍ୱର ଭିତ୍ତି ଭୂମିରେ । ତାଙ୍କ ବସଂତ ଯେଉଁ ରୂପକଳା ବିମଂଡିତ, ତାହା ନିଛକ ରୂପମୁଗ୍‌ଧତାର କାବ୍ୟଚର୍ଚ୍ଚା ନୁହେଁ, ରୂପ-ପ୍ରୀତି ଭିତରେ କବିଙ୍କର ଅରୂପାନୁଭୂତିର ମଧୁ ସ୍ତବ-ସଂଗୀତ । କେଳିବିଳାସପ୍ରମତ୍ତ ଚିତ୍ତମୋହକାରୀ ସ୍ୱରାଳାପ ସେଥିରେ କ୍ଷୀଣ । ଭକ୍ତକବିଂକ ବସନ୍ତ ଭାବନା ଚିତ୍ତକୁ ବସନ୍ତର ବାହ୍ୟ ବୈଭବ ଭିତରେ ମୁଗ୍‌ଧ କରିଦିଏନାହିଁ, ବରଂ ତାର ଅଂତର୍ଗତ ଐଶ୍ୱର୍ଯ୍ୟସ୍ୱରୂପରେ ଧ୍ୟାନସ୍ଥ କରି ରଖେ । କବି ସମ୍ମୁଖରେ ବସନ୍ତର ଯେଉଁ ଲୀଳାବିଳାସମୟ ଉତ୍ସବ ତାହା ନିତ୍ୟ ଯୌବନ ଶୋଭିତ ଅମରଜୀବନର । ସ୍ରଷ୍ଟାର ମଧୁମୟ ସୃଜନ ଉଲ୍ଲାସ କବି-ଚିତ୍ତରେ ନିତ୍ୟ ବାସର ବସନ୍ତୋତ୍ସବ ରଚନା କରିଛି । ମଧୁସୂଦନଂକ ବ୍ୟଞ୍ଜିତ ବନାର ନିଗୂଢ଼ ଆନନ୍ଦ ତାଙ୍କ କବିସତ୍ତାର ଏହି ବାସରସମୟ ନିତ୍ୟବସଂତ ରୂପେ ସମାର୍ଚ୍ଚିତ ।

କବିଙ୍କ ଅଧ୍ୟାତ୍ମ ଚେତନାର କ୍ରମବିକାଶ ଶହ ବସଂତର ରୂପୋପଲବ୍‌ଧିମୟ ଭାବ ପ୍ରକାଶ ମଧ୍ୟ କ୍ରମ ଗଭୀରତା ଲାଭ କରିଛି । ପ୍ରାରଂଭିକ କାବ୍ୟକୃତିରେ (ଛନ୍ଦମାଳା ପ୍ରଥମଭାଗ) ବସନ୍ତ କେବଳ ଏଇ ଋତୁ ସଙ୍କେତ । ଏହି କବିତାର "ସୌନ୍ଦର୍ଯ୍ୟ ତରଙ୍ଗେ ଭାସଇ ମହୀ"—ଉକ୍ତିଟି କାଳିଦାସୀୟ ଋତୁସଂହାର ପରଂପରାରେ କେବଳ ଏକ ରୂପଗତ ଓ ଭାବଗତ ତଥ୍ୟ ଉପସ୍ଥାପନା ଏବଂ ତାହାହିଁ ସମୁଦାୟ କବିତାର ଅଂତର୍ବାଣୀ ।

'କବିତାବଳୀ'ର ପ୍ରଥମ ଭାଗରେ ଅଂତର୍ଭୁକ୍ତ 'ସ୍ତୋତ୍ର' କବିତାରେ ବସଂତର ଏ ରମଣୀୟତା ଓ ଆନଂଦମୟତା ପରମସତ୍ତାଙ୍କ ଅନଂତ ପ୍ରେମର ପ୍ରତୀକ ରୂପେ ବର୍ଣ୍ଣିତ ।[**] ପାର୍ଥିବ ଜଗତ ପ୍ରତି ମନୁଷ୍ୟର ମୋହାସକ୍ତ ଓ ବଂଧନ ମୂଳରେ ଇଂଦ୍ରିୟ-ପ୍ରୀତିପଦ ରୂପ-ଜଗତର ଆକର୍ଷଣ ଏବଂ ପ୍ରାଣରେ ଆନଂଦର ଅନୁଭୂତି ହିଁ ମୁଖ୍ୟ ସ୍ଥାନ ଅଧିକାର କରିଥାନ୍ତି । ଏଇ ରୂପ ଓ ଆନଂଦର ଘନୀଭୂତ ଭାବାନୁଭୂତ

---

** "ତୁମର ବିଶାଳ ପ୍ରୀତି ରମ୍ୟ ବସନ୍ତରେ ଅବତରି ଧରିତଳେ ଆନନ୍ଦ ବିତରେ ।"
ଗ୍ରନ୍ଥାବଳୀ—ପୃ ୪୯

Digitized by PPRACHIN, SOA

ପ୍ରେମ । ପ୍ରୀତି ସମ୍ପର୍କର ସ୍ଥାୟିତ୍ୱ ଓ ନିଗୂଢ଼ତ୍ୱ ମୂଳରେ ଏ ଉଭୟ ଉପାଦାନଙ୍କୁ ଆବିଷ୍କାର କରାଯାଇ ପାରେ । ମଧୁସୂଦନଙ୍କ କାବ୍ୟଚେତନାରେ ସେ ପ୍ରୀତି ସ୍ୱରୂପର ଗ୍ରସ୍ତ୍ୱା ଯେ ଧରା ନପଡ଼ିଛି ନୁହେଁ, (ଦ୍ରଷ୍ଟବ୍ୟ: ଯୌବନର ସ୍ୱପ୍ନ), ମାତ୍ର ତାଙ୍କ କବିସତ୍ତା ରୂପର ବହିରଂଗ ବିଳାସରେ ମାତି ନଯାଇ ଅଂତର୍ଲୋକ ରୂପ-ରହସ୍ୟରେ ମଜ୍ଜି ଯାଇଛି । ଏହି ଧ୍ୟାନମୟତା ତାଙ୍କର ସଚେତନ ପ୍ରୟାସ ସାପେକ୍ଷତା ନୁହେଁ, ବରଂ ଧ୍ୟାନୀ ପୁରୁଷର ସହଜାତ ପ୍ରବଣତା ରୂପେ ସ୍ୱାଭାବିକ ଦେଖାଦେଇଛି । ସାଧାରଣ ବ୍ୟକ୍ତି ଓ ସାଧକର ଦୃଷ୍ଟି ଭଙ୍ଗୀରେ ଯେଉଁ ବିଶେଷ ତାରତମ୍ୟଟି ବିଦ୍ୟମାନ, ତାହା ହେଲା, ସଚରାଚର ବ୍ୟକ୍ତି ତାର ପ୍ରତ୍ୟକ୍ଷବୋଧସମ୍ବାଦର ତାତ୍କାଳିକତାକୁ ହିଁ ସ୍ୱୀକୃତ ଦେଇଥାଏ । ଏହା ବାହ୍ୟ, ଏକ ଆପାତଃ ମୂଲ୍ୟାଂକନ । ମାତ୍ର ରହସ୍ୟ ସନ୍ଧାନୀର ଅନ୍ତର୍ବୋଧରେ ସେଇ ସଙ୍ଗେ ସଙ୍ଗେ ଅନାୟାସରେ ଏକ ଗୂଢ଼ ଅବ୍ୟକ୍ତ ଇଂଗିତ ପ୍ରକାଶିତ ହୋଇପଡ଼େ । ବସନ୍ତର ରୂପମାଧୁରୀ ସ୍ମରଣ ଭିତରେ କବି ଚିତ୍ତରେ ସ୍ରଷ୍ଟାଙ୍କର ପରମ ପ୍ରୀତିର ସମ୍ବାଦ ସ୍ପଷ୍ଟତର ହୋଇଛି । ସାଧାରଣ ରୂପପାୟୀ ଏକ କବି ବାଙ୍ମୟରେ ଯେଉଁ ବସନ୍ତ 'ମନ୍ମଥ ବିଳାସ' ମାତ୍ର, ଋଷିକବିଙ୍କ ଭକ୍ତ ଜଡ଼ିତ ହୃଦୟରେ ତାହା ବିଶାଳ ପ୍ରୀତିର ଦିବ୍ୟପ୍ରକାଶ । ସେହି ଅନଂତ ପ୍ରୀତିହିଁ ପୃଥିବୀର ସକଳ ସୌନ୍ଦର୍ଯ୍ୟ ଏବଂ ଆନଂଦବୋଧର ହେତୁ ଏବଂ ବସନ୍ତରେ ତାର ଅପାର୍ଥିବ ସ୍ୱରୂପର ପରିପୂର୍ଣ୍ଣ ଆୟୋଜନ । ସେ ମହାନପ୍ରେମର ପ୍ରତିଦାନରେ ଜୀବ କେବଳ 'ମୁଗ୍ଧତା'ର କେବଳ ଗୋଟିଏ ସ୍ୱୀକୃତି ଦେଇପାରେ । ମନେହୁଏ, କ୍ଷୁଦ୍ର ସୃଷ୍ଟିର ଏଇ ଗୋଟିଏ ସାମାନ୍ୟ ସ୍ୱୀକୃତି, କ୍ଷୀଣ ପ୍ରତି-ସ୍ପନ୍ଦନ କଂପିତ ହୃଦୟଟିର ପାଇଁ ଯେପରି ସ୍ରଷ୍ଟା ପୁରୁଷର ଯୁଗ ଯୁଗ ଧରି ଆୟୋଜନ, ସେଇ ସ୍ୱୀକୃତି ଲାଭରେ ତାର ସବୁ ସୃଷ୍ଟି ପ୍ରୟାସର ସାର୍ଥକତା । ଏଇ ସ୍ୱୀକୃତିଟି ଦେବା ଓ ନେବା ଭିତରେ ଉଭୟଙ୍କ ମଧ୍ୟରେ ଯେପରି ଏକ ଯୋଗସୂତ୍ର ସ୍ଥାପିତ ହୋଇଯାଏ । ଉଭୟେ ଯେପରି କୃତାର୍ଥ ହୋଇଯାନ୍ତି । ଏଇ ସମ୍ବଂଧ ସୂତ୍ରରେ ହିଁ ଚେତଣିକ ଯୁଗ୍ମ ସତ୍ତାର ନିରବଧି ଭାବବିନିମୟ ଘଟିଚାଲେ ।

ମାତ୍ର ଏ ଯାବତ୍ କବିର ଧ୍ୟାନୀଚିତ୍ତ କେବଳ ବହିଃପ୍ରକୃତିରେ ବସନ୍ତୋତ୍ସବକୁ ଲକ୍ଷ୍ୟ କରିଛି । ତାର ଅଂତର୍ଚେତନାର ପରିଚିତ ଧରଣୀ ଜୀର୍ଣ୍ଣ । ସେଠାରେ ନବ-ପୁଲକର ସଂଚରଣ ନାହିଁ, ବସନ୍ତର ଆଗମନ ଘଟିନାହିଁ, କିଂବା ଜୀର୍ଣ୍ଣ ଧରଣୀ ନଂଦନବନରେ ରୂପାନ୍ତରିତ ହୋଇନାହିଁ । ଜଡ଼ ସଂସାରରେ ବସନ୍ତ ନବ ଯୌବନର କୋଟି କୋଟି ସୁନ୍ଦର ମୂର୍ତ୍ତି ଧାରଣ କରିଛି, ମାତ୍ର ପ୍ରାଣରେ ତାର ମଧୁ ମଂଦାକିନୀ ଦାବଲୀଳ-ସୋତା ହୋଇପାରିନାହିଁ । ବହିଃପ୍ରକୃତିରେ ନବବସନ୍ତର ସନ୍ଦର୍ଶନରେ ଜୀର୍ଣ୍ଣପ୍ରାଣ ଧରଣୀ ବିଷାଦନମାଗ୍ନରେ ନବଜୀବନ ପାଇଁ ଅଭିଳାଷିତା ହୋଇଛି । ସେହି 'ନବଜୀବନ'ର ପ୍ରତିଶ୍ରୁତି ଦେଇଛି ଅଂତର୍ଗତ ଧ୍ୟାନଚେତନାର ଅଲୋକ ବାର୍ତ୍ତା । ନବବସନ୍ତ ଭାବନାରେ ତାହାରି ପ୍ରତିଫଳନ ।

'ନବବସନ୍ତ ଭାବନା' ପ୍ରକୃତରେ 'ଆଶା' କବିତାର ଅଂତର୍ନିହିତ ଭାବବାଣୀ ଓ ଅନୁଭୂତିର ପ୍ରତିଧ୍ୱନି ସଦୃଶ ଆତୁର ପ୍ରତ୍ୟୟ—ଗଭୀର ସ୍ୱର ଓ ନିଃସଂଶୟ ପ୍ରତିପାଦନଯୁକ୍ତ । ବହିଃପ୍ରକୃତିରେ ବସନ୍ତୋତ୍ସବ । ଏ ମଧୁବାର୍ତ୍ତା ସସାଗରା ଧରଣୀରେ ମଧୁ ଦେଇଛି । ତରୁଲତା, ପୁଷ୍ପପଲ୍ଲବ, କୀଟପତଂଗ ପଶୁପକ୍ଷୀ, ନରନାରୀ ସର୍ବତ୍ର ବସନ୍ତର ଉନ୍ମାଦନା, ଯୌବନର ଉଦ୍ଦାମଉଲ୍ଲାସ । ଭୁବନ ବ୍ୟାପି ବସନ୍ତର ମଦିରା ମାଧୁରୀ ପାନୋତ୍ସବ ।

Digitized by PPRACHIN, SOA

କିନ୍ତୁ କବିଙ୍କ ଅଂତର୍ଲୋକରେ ବିସର୍ଜନ-ସଂଗୀତର କୌଣସି ଅଶ୍ରୁରେଖା ନାହିଁ । ସତ୍ତା ଜୀର୍ଣ-ଦେହାଧୀନ । ଯୌବନର କମନୀୟତା ଶୁଷ୍କ । ତାରୁଣ୍ୟର ଉନ୍ମାଦନା ଅଂତର୍ହିତ । ନଷ୍ଟ ଶୀଳ, ଦେହ-ଯଂତ୍ରଣା ସହ ପ୍ରାଣରେ ମଧ୍ୟ ବାସନା-ଲୁବ୍ଧ ଇଂଦ୍ରିୟ ବିପାକ । ତୃଷ୍ଣାର ତୃଷାନଳରେ ଜୀବନର ସକଳ ସୁଧା-ପ୍ରବାହ କ୍ଷୀଣସ୍ରୋତ, ଅମୃତଜାତ ଓ ଅମୃତର ଅଧିକାରୀ ହୋଇମଧ୍ୟ ମୃତ୍ୟୁ-ଜାତ ମାନବ ଅମୃତର ସେ ଆନଂଦକୁ ଉପଭୋଗ କରିବାର ସୌଭାଗ୍ୟ ମନପ୍ରାଣଦେହ—କେଉଁଠାରେ ବି ଲାଭ କରିପାରୁନାହିଁ ।

ହତାଶା-କ୍ଷୁଭିତ ଏଇ ଚିଂତାକୁଳ ହୃଦୟରେ ସହସା ଜ୍ଞାନ-ସୂର୍ଯ୍ୟର ଅଭ୍ୟୁଦୟ ଘଟିଛି । ଅଂତଃଚକ୍ଷୁର ଉନ୍ମୀଳନ ଏବଂ ଅଭୂତ ଦୃଶ୍ୟ ବିଲୋକନ ସଂଭବ ହୋଇଛି । ପ୍ରାଣରେ ନବ ସଂଗୀତର ଆଶାବର୍ତ୍ତ ମୂର୍ଚ୍ଛିତ ହୋଇଛି, ଧ୍ୱନି ମଂଡ଼ଳରୁ ଉଦ୍‌ସାରିତ ହୋଇଛି ଅପୂର୍ବ ସମ୍ବାଦ । କବି ଉପଲବ୍ଧି କରିଛନ୍ତି, ଅମରତ୍ୱ ଏ ମୃତ୍ୟୁ-କବଳିତ ପାର୍ଥିବ ସତ୍ତାର ସ୍ୱୋପାର୍ଜିତ ନୁହେଁ । ସତ୍ତା ବିନାଶ-ଶୀଳ । କିଂତୁ ଏଇ ବିନାଶଶୀଳତା, ମୃତ୍ୟୁ—ଜୀବନପାଇଁ ଶେଷସମ୍ବାଦ ନୁହେଁ । ସତ୍ତାର ଉତ୍ସ ଅମୃତରେ । ସେ ଅମୃତ-ଜାତ ଆତ୍ମା (Psychic/soul)ବ୍ୟକ୍ତିର ଅଂତରସ୍ଥିତ । ବ୍ୟକ୍ତି ଅଂତରେ ଚେତନାଯୁକ୍ତ ହେଲେ ସେଇ ଅମର ଆତ୍ମାଙ୍କ ଉପଲବ୍ଧି ପାଏ । ସେ ଉପଲବ୍ଧି ପରେ ମୃତ୍ୟୁ ସ୍ଥୂଳଦେହକୁ ଅଧିକାର କରିପାରେ, ମାତ୍ର ମୃତ୍ୟୁ-ଚେତନା ବ୍ୟକ୍ତିକୁ ଆଉ ସଂତ୍ରସ୍ତ କରିପାରେନାହିଁ । କବି ସେ ଅମରତ୍ୱର ସନ୍ଧାନ 'ଦିବ୍ୟବାଣୀ' ଓ 'ଦିବ୍ୟାଲୋକ' ସାହାଯ୍ୟରେ ନିଜ ହୃଦୟରେ ଲାଭକରିଛନ୍ତି । ଆନନ୍ଦ ଓ ଅମୃତର ରୂପାଧାର ଈଶ୍ୱରଂକ ମଧୁର ପ୍ରେମରେ କବି ଅଂତରରେ ନବୀନ ବସନ୍ତର ନିତ୍ୟୋତ୍ସବ ସୃଷ୍ଟି ହୋଇଛି । ନିଃସର୍ଗବସ୍ତ କାଳାଧୀନ । ମାତ୍ର ଅଂତରର ଆନଂଦଧାମରେ ସବୁ ଋତୁ ବସନ୍ତ, ସବୁ ଦିନ ଯୌବନ, ସବୁ ଅନୁଭବ ପ୍ରଣୟ ଓ ସବୁ ରସ ମଧୁ । ଭବ ମରୁର ଉପାନ୍ତରେ ରହି ମଧ୍ୟ ହୃଦୟ 'ନିତ୍ୟୋତ୍ସବମୟ' ବସଂତର ପ୍ରତିଶ୍ରୁତି ପାଇଛି । ନବବସନ୍ତଭାବନା ଏଇ ପ୍ରତିଶ୍ରୁତିର କବିତା । ସୁଂଦରର, ଅମୃତର, ଆନନ୍ଦର ପ୍ରତିଶ୍ରୁତି ।[୮୨] ପ୍ରେମର ରହସ୍ୟ ସାଧନାରେ ଏ ପ୍ରତିଶ୍ରୁତିଟି ହିଁ ଏକ ତାତ୍ପର୍ଯ୍ୟମୟ ଅଭିବ୍ୟଂଜନା । ରହସ୍ୟମୟଙ୍କ ରହସ୍ୟାତ୍ମକ ସଂପର୍କର ନିଗୂଢ଼ତା ଏଇ 'ପ୍ରତିଶ୍ରୁତି'ଟିରେ ନିବଦ୍ଧ । ଅପାରକାଳ ଶାଶ୍ୱତଙ୍କର ଅନଂତପ୍ରେମର ଏକ ଅଖଂଡ଼ ପ୍ରତିଶ୍ରୁତି ଅସୀମ ଧରଣୀ ବକ୍ଷରେ ଅହରହ ପରିସ୍ପଂଦିତ ହୋଇ ଚାଲିଛି । ସସୀମର ଶାଂତ ପ୍ରାଣରେ ତାର ଆବାଜ ଯେଉଁ ଉଚାଟନ ଜଣାଇଦେଉଛି, ଯୁଗ ଯୁଗଧରି ସେ ପ୍ରାଣ-ପିପାସାର ଚରିତାର୍ଥତା ପାଇଁ ସୃଷ୍ଟିବକ୍ଷରେ ଅହରଂତ ଅନ୍ୱେ-ଷଣରେ ବ୍ୟାକୁଳତା ଗଗନପବନ ଶିହରିତ କରି ରଖିଛି । ସେଇ ଶିହରଣର ସ୍ପଂଦନରେ ସ୍ରଷ୍ଟାର ଅଂତରରେ ପ୍ରଣୟମୟ ପ୍ରତିଧ୍ୱନିଟି ଯେ ନିଶ୍ଚେ ଜାଗିଉଠିବ—ସେଇ ପ୍ରତ୍ୟୟ ହିଁ ଅଧ୍ୟାତ୍ମ-ସାଧନାର ଅବଲଂବନ ରୂପେ ପ୍ରତିଟି ସତ୍ତାର ପ୍ରୀତି ବେଦନାରେ ରୂପାଂତର ଲାଭ କରୁଛି ।

---

୮୬ "ଅମୃତ ସଂଗୀତ ଝଙ୍କାରେ ପୂରିଯିବ ଅନ୍ତର" । ଗ୍ରନ୍ଥାବଳୀ—ପୃ ୮୬

୮୭ "ନଗରୀର କଥା ଛି ଛି କହିବି କେମନ୍ତେ,
ହୃଦୟରେ ଅନୁଭବ ଅନଂତ ବସନ୍ତେ ।
'ଜରା ଆକ୍ରମଣେ' —ଗ୍ରନ୍ଥାବଳୀ ପୃ ୧୧୦

Digitized by PPRACHIN, SOA

ଏହି ପ୍ରତିଶ୍ରୁତି କାବ୍ୟପୁରୁଷର ଚିତ୍ତଲୋକକୁ ଆଶା-ଆଶ୍ୱାସନାରେ ଭରିଦେଇଛି । ସକଳ ଭବଯନ୍ତ୍ରଣା ଭିତରେ ବି ସେ ମୁକ୍ତିର ଆଶାବାଣୀ ଗାନକରିଛି । ଖ୍ରୀ: ୧୯୦୧ରେ ପ୍ରକାଶିତ 'ବସଂତ ଗାଥା'ର ଖଣ୍ଡକବିତାଗୁଡ଼ିକରେ ତାର ଚିହ୍ନ ଆଭାସ ଇଂଗିତରେ ବିଦ୍ୟମାନ । 'ବସଂତ ପୂର୍ଣ୍ଣିମା ଅର୍ଦ୍ଧରାତ୍ରରେ', 'କୁସୁମାଂଜଳି'ର ଆତ୍ମିକ ଅନୁଭୂତିରେ ଅନଂତ ବସଂତର ଅମୃତ ମାଧୁରୀ ଦ୍ୟାବା ପୃଥିବୀରେ ନିଃସରିତ ହୋଇଯାଇଛି । 'ହିମାଚଳେ ଉଦୟ-ଉତ୍ସବ'ରେ ସେହି ପ୍ରତିଶ୍ରୁତ ବସଂତ ଯେପରି କବିସତ୍ତାର ସମଗ୍ରତାକୁ ଅଖଂଡ ରସଧାରାରେ ପ୍ରସାରିତ ହୋଇଆସିଛି । 'ହିମାଚଳେ ଉଦୟ-ଉତ୍ସବ'ର ଉପଲବ୍ଧ ମୁହୂର୍ତ୍ତଟି ଏକାଂତଭାବେ ବସଂତର । ସେ ସମୟର ଅନୁଭୂତି, ଆନଂଦ ଓ ପ୍ରେମଭାବନାର ଅଖଂଡ ଆବେଶ ବସଂତକୁ ଇଂଗିତ କରାଇଦିଏ; ଅର୍ଥାତ୍ ତାହା ଭୌଗୋଳିକ ବର୍ଷର ଯେଉଁ ସମୟ, ଯେଉଁ ଋତୁର ଘଟଣା ହୋଇଥାଉନା କାହିଁକି, ପରିବେଶ ଓ ଅନୁଭବରେ ତାହା କେବଳ ବସଂତର ମଧୁରନ୍ଦା, ବାସଂତୀର ପରିପାଟୀରେ ସୁଶୋଭିତ; ମଧୁର ପ୍ଲାବନରେ "ଆଦି ଅଂତ ରସେ ନିମଗନ ।" ବସଂତ ବାହାରଜଗତ୍‌ରେ ପୁଣି ଅଭ୍ୟଂତରରେ । ବସଂତ ଯେ ପ୍ରେମର ଋତୁ, ରୂପର ଉତ୍ସବ, ଆନନ୍ଦର ଉଲ୍ଲାସ, ଜୀବନର ଜୟଗାନ; ଏଇ ଗୋଟିଏ ମୁହୂର୍ତ୍ତରେ ଯେପରି ସେସବୁ କିଛି ଅପୂର୍ବ ମହନୀୟତାରେ ଏକୀଭୂତ ହୋଇଯାଇଛଂତି । ଏଇ ମୁହୂର୍ତ୍ତଟି ଶ୍ରେଷ୍ଠ ବସଂତର ନିଜସ୍ୱ । ଏକ ଅନନ୍ୟ ଅନୁଭୂତିର ପୃଷ୍ଠଭୂମିରେ ଏ ଜୟଗାନ ଋତୁ ବସଂତର । 'ଉଦୟ-ଉତ୍ସବ' ଏଇ ଋତୁ-ଉଦୟର ହିଁ ଉତ୍ସବ । ନବ ବସଂତର, ନବ ଜୀବନର, ନବୀନ ଉଦୟକାଳର ମଧୁର ମହୋତ୍ସବ ।

ଆନଂଦବାଦ —"ତୁମ୍ଭେ ପରିପୂର୍ଣ୍ଣ ଆନଂଦସ୍ୱରୂପ ମୁଁ ଯେ ଆନଂଦ ସଂତତି ।" (୫୮)—ଏହା କେବଳ କବି ମଧୁସୂଦନଙ୍କର ଏକ ନିଚ୍ଛକ ତାତ୍ତ୍ୱିକ ଭାବାଭିବ୍ୟକ୍ତି ନଥିଲା; ତାଙ୍କ ଋଷି-ସତ୍ତାରେ ଆନଂଦର ଉପଲବ୍ଧିମୂଳକ ଉପନିଷଦୀୟ ଅନୁବାକ୍‌ମାନ ଯେପରି ପ୍ରତ୍ୟକ୍ଷ ରୂପାବିର୍ଭାବ ଲୋଡ଼ିଥିଲେ । ତାଂକର କାବ୍ୟସୃଷ୍ଟି ଉପନିଷଦସୂଚିତ "ଆନଂଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ"—ସୃଷ୍ଟି-ତତ୍ତ୍ୱର ପ୍ରତିଧ୍ୱନି-ତତ୍ପର,—ଏହା ତ ସର୍ବବାଦୀସମ୍ମତ । ଜୀବନର ପ୍ରତ୍ୟକ୍ଷ ଉପଲବ୍ଧି ଭିତରେ ପରମାନଂଦର ନିତ୍ୟ ପଦସଂଚାର ତାଂକ କାବ୍ୟକ-ସତ୍ୟକୁ ଭାବଶାଣିତ କରିଛି ମାତ୍ର ।

ମାନବପ୍ରାଣର ଅନୁଭୂତି ଦ୍ୱିବିଧ : ସୁଖାତ୍ମକ ଓ ଦୁଃଖାତ୍ମକ । ସୁଖ ଓ ଦୁଃଖ ଦୁଇଟି ଭାବ ଯେପରି ଅନୁଭୂତିର ଦୁଇ ବିପରୀତ କୋଟୀରେ ଅବସ୍ଥାନ କରି ମାନବଚିତ୍ତକୁ ଆଜନ୍ମରୁ ନିଜ ନିଜ ଆଡ଼କୁ ଅଭିକର୍ଷିତ କରି ନିତ୍ୟ ଦ୍ୱଂଦ୍ୱାକୁଳିତ କରିଥାନ୍ତି । ମାତ୍ର ଗଭୀରତର ଓ ବ୍ୟାପକତର ଚେତନାଭୂମିରେ ଏମାନେ ଏଇ ଭିନ୍ନ ଓ ବିପରୀତବୋଧର ଦୁଇ ସତ୍ୟ ରୂପେ ଆଉ ପ୍ରତୀତ ହୁଅଂତି ନାହିଁ; ବରଂ ଏକ ମୂଳ ଆନଂଦ ଚେତନାର ରୂପାଂତର ତଥା ଅବସ୍ଥାଂତର ରୂପେ ପ୍ରତିପନ୍ନ ହୁଅଂତି । ଏହି ଆନଂଦହିଁ ପରମ ସତ୍, ଆଦି ଶାଶ୍ୱତ, ଅନଂତ ଓ ଅଖଂଡସ୍ୱରୂପ । ସତ୍ତାର ପାର୍ଥିବ ଚେତନାରେ ଏହାର ପୂର୍ଣ୍ଣରୂପ ଅବଧାରିତ ହୋଇ ନ ପାରିଲେ ବିଭକ୍ତ, ବିବିକ୍ତ ଓ ଖଂଡଚେତନାର ଗ୍ଲାନିକର ଦୁଃଖବୋଧ ଜାଗ୍ରତ ହୁଏ । ଅର୍ଥାତ୍ ସତ୍ତାର କ୍ଷୁଦ୍ରତା ଯେଉଁ ବିପୁଳତାକୁ ଧାରଣ କରି ନପାରେ, ତାହାକୁ ଅସହ୍ୟ ଦୁର୍ଭାର ବୋଲି ବର୍ଜନ କରେ; ପୁଣି ସତ୍ତା ଆପଣାର ସୀମାର ଖର୍ବତ୍ୱକୁ ମାନିନେବାକୁ ପ୍ରସ୍ତୁତ ହୋଇପାରେ-ନାହିଁ; ଅଥଚ ସୀମାତ୍ୱକୁ ଅତିକ୍ରମ କରି ନପାରି ଏକ ଶ୍ୱାସରୋଧୀ ଅସହାୟତା ଅନୁଭବ କରେ । ଏହି ଉଭୟ ପ୍ରକ୍ରିୟା ଭିତରେ ସତ୍ତାର ଯେଉଁ ସୂକ୍ଷ୍ମ ଚେତନାଟି କ୍ରିୟାକରେ, ତାହା ହେଲା ଆପଣାର

(୫୮) 'ଆତ୍ମ-ସମର୍ପଣ'—ମଧୁସୂଦନ ଗ୍ରଂଥାବଳୀ, ପୃ: ୮୯ ।

Digitized by PPRACHIN, SOA

ସୀମାକୁ ଉଲ୍ଲଂଘନ କରି ଅସୀମ ହୋଇଉଠିବାର ସଂକଳ୍ପ । ଏହି ପ୍ରୟାସ ଯେତେବେଳେ ଓ ଯେଉଁ ପରିମାଣରେ ସିଦ୍ଧି ଲାଭକରେ, ବ୍ୟକ୍ତିର ଆନଂଦାନୁଭୂତିର ଦିଗ୍‌ବଳୟ ସେତେ ସଂପ୍ରସାରିତ ହୋଇଯାଏ; ସତ୍ତାର ଆନଂଦ ଗ୍ରହଣ ଓ ଧାରଣର ସାମର୍ଥ୍ୟ ସେତେ ବଢ଼ିଯାଏ । ମାନବପ୍ରାଣରେ ଏ ଆନଂଦବୋଧ ସହଜାତ । ମନେହୁଏ, ଯେପରି ସକଳ ଦୁଃଖବୋଧ ଏ ଆନଂଦକୁ ନିଜ ଭିତରେ ସଂଗୁପ୍ତ କରି ରଖିଥାଏ । ଚେତନାରେ ତା'ର ଆବିଷ୍କାର ପାଇଁ ସତ୍ତ୍ୱପ୍ରତି ଦୁଃଖ ଯେପରି ଏକ ଆହ୍ୱାନ । ଏକାଧାରରେ ସେଇ ବାଧା, ପ୍ରତିରୋଧୀ-ଶକ୍ତି, ପୁଣି ସେଇ ପ୍ରତିକାର ଶକ୍ତି । ଅନୁଭବର ମାର୍ଗରେ ଦୁଃଖର ହେତୁ ହିଁ ଆନଂଦଲାଭର କ୍ଲେଶକର ପଥକୁ ସହଜ କରିଦିଏ । ଦୁଃଖର ଅନୁଭବ ବିନା ଆନଂଦ ମଧ୍ୟ ନିରର୍ଥକ; ଯେହେତୁ ଦୁଃଖ ନ ଭୋଗି ଆନଂଦର ସ୍ୱରୂପ ଉପଲବ୍‌ଧି କରିବା ସମ୍ଭବ ନୁହେଁ ।

ମଧୁସୂଦନଂକ ରଚନାର ଆନଂଦତତ୍ତ୍ୱ ଏଇ 'ବିଶ୍ୱାନଂଦ' ଚେତନା ଉଦ୍‌ବୋଧିତ । 'ବ୍ରହ୍ମସୁଖରେ ନିରଂତର ଜଡ଼ିତହୋଇଥିବାରୁ ଜଗତଜଂଜାଳ ତାଂକୁ ସ୍ପର୍ଶ କରିପାରିନାହିଁ (୬୯)—ପଣ୍ଡିତ,—ନୀଳକଂଠ ଦାସଂକ ଏହି ରୂପ ମଂତବ୍ୟରେ ସଂସାର-ବୈରାଗ୍ୟ ଓ ଜୀବନ-ବିମୁଖତା ତାଂକ ଆନଂଦର ସ୍ୱରୂପାଦର୍ଶ ବୋଲି ପ୍ରତିପାଦିତ ହେଉନାହିଁ; ସେ 'ବ୍ରହ୍ମସୁଖ' ଜଗନ୍ମୟ—ଯେହେତୁ ଜାଗତିକତା-ନିର୍ଲିପ୍ତ ଏଇ ରହସ୍ୟ ହିଁ ଉଦ୍‌ବୋଧିତ ହେଉଛି । ଚରାଚର ପୂର୍ଣକରି ବ୍ରହ୍ମଂକର ଯେ ଆନଂଦ ରୂପ ପ୍ରକାଶ, ମଧୁସୂଦନ ସମଗ୍ର ଜଗତ୍‌କୁ ସେଇ ବ୍ରହ୍ମରୂପରେ ଉପଲବ୍‌ଧି କରିଛଂତି ଓ ଅଂତର୍ଲୋକରେ ବିଶ୍ୱପ୍ରାଣ ସହ ପୂର୍ଣ ମିଳିତ ହୋଇଛଂତି । ପାର୍ଥିବ ବେଦନା ଭିତରେ ଆନଂଦର ସଂଧାନ ଏବଂ ଆତ୍ମାର ଗଭୀର ଆଶା ଓ ବିଶ୍ୱାସ ବଳରେ ଚରମ ଦୁଃଖାନୁଭୂତି ଭିତରେ ବି ତାଂକର ଆନଂଦରେ ପ୍ରତ୍ୟୟ ଆସିଛି । ପରିଶେଷରେ ସେ ପରମାନଂଦ ତାଂକର ସର୍ବାନୁଭବରେ ଅନୁଲିପ୍ତ ହୋଇଛି । କବିଂକ ରଚନାର ପୂର୍ବାପର ଧାରାବାହିକତାରେ ଆନଂଦାନୁଭୂତିର ଏ ଅନୁକ୍ରମ ସ୍ପଷ୍ଟ ସୁରକ୍ଷିତ ।

ସହଜାନଂଦର ସେ ଗଦ୍‌ଗଦତା ଶିଶୁପ୍ରାଣର ସହଜ ସଂଗୀତ ରୂପେ 'ବର୍ଣବୋଧ'ର ବିଖ୍ୟାତ ଭାବମୁଗ୍‌ଧ "କି ସୁଂଦର ଆହା କି ଆନଂଦମୟ ଏହି ବିଶାଳ ସଂସାର"—ପଙ୍‌କ୍ତିଟିରେ ଆଦ୍ୟ ଉଚ୍ଛ୍ୱସିତ । ଆନଂଦତତ୍ତ୍ୱର ଏକ ନିର୍ଦ୍ଦିଷ୍ଟ ଉପନିଷଦୀୟ ରୂପାୟନ 'ଅକାଶପ୍ରତି' କବିତାରେ ଲଭ୍ୟ; ଯେଉଁଠାରେ ସମଗ୍ର ଆକାଶ ପରିପୂର୍ଣ ଆନଂଦରୂପରେ ନିଖିଳ ସୃଷ୍ଟିକୁ ଧରିରଖିଛି, (୭୦) 'ଆଶା' ଓ 'ଉଦବୋଧନ'ରେ ସେହି ଆନଂଦଲାଭର ପ୍ରତିଶ୍ରୁତିଜନିତ ପୁଲକ । 'ନଦୀପ୍ରତି'ରେ ନଦୀର ଜନ୍ମ, ଯାତ୍ରା ଓ ସମୁଦ୍ରପ୍ରାପ୍ତି ଭିତରେ ଏକ ଅଖଂଡ ଆନଂଦ-ପ୍ରବାହର ସଂବାଦ ରଚିତ । 'ନବ ବସଂତଭାବନା' ଓ 'ବସଂତଗାଥା'ରେ ସେହି ଆନଂଦ କବିପ୍ରାଣର ଏକମାତ୍ର ଅନ୍ୱେଷିତ ରୂପେ ସଂକେତିତ । ମାତ୍ର ଏଯାବତ୍ ସେ ଆନଂଦ-ସଂବାଦ କବିଚିତ୍ତରେ ଏକ ଭାବଗତ ସତ୍ୟ ରୂପେ ଅନୁଶୀଳିତ ହୋଇଛି । 'ଦେବାବତରଣ'ରୁ 'ନବବସଂତଭାବନା' ମଧ୍ୟବର୍ତ୍ତୀ କବିତାଗୁଡ଼ିକରେ କବିଚେତନାରେ ବିଶୁଦ୍ଧ ଆନଂଦର ପୂର୍ଣ ମଧୁରାନୁଭବ ଘଟିଛି ବୋଲି କୁହାଯାଇ ନ ପାରେ; ବରଂ ପ୍ରାଣର ବ୍ୟାକୁଳତା, ଜଗତର ଯାତନା ଓ ଜୀବନର ସଂଘର୍ଷ କବିସ୍ୱରରେ ସେ ଆନଂଦର ପ୍ରାପ୍ତିକାମନାକୁ ଆହୁରି ପ୍ରବଳ

(୬୯) "ବ୍ରହ୍ମମିଳନସୁଖ ନିରଂତର ଜାଗ୍ରତ ରହି ସେ ବେଳେବେଳେ କେବଳ ବିଶ୍ୱ-ସଂସାରକୁ ଶୂନ୍ୟଦୃଷ୍ଟି ବିହଂଗମ ପରି ଟିକିଏ ଆଖି ପକାଇ ଦେଇ ଗୃହୁଁ ଗୃହୁଁ ଅତୀନ୍ଦ୍ରିୟ ଦେଶକୁ ଉଠିଯାଇଅଛଂତି ।" ନୀଳକଂଠ ଦାସ—'ଓଡ଼ିଆ ଭାଷା ଓ ସାହିତ୍ୟ'—ପୃ: ୨୩୦ ।

(୭୦) "କୋହ୍ୟେବାନ୍ୟାତ କଃ ପ୍ରାଣ୍ୟାତ୍ ଯଦେଷ ଆକାଶେ ଆନନ୍ଦୋ ନ ସ୍ୟାତ୍"— ତୈତ୍ତିରୀୟ ଉପନିଷଦ ୨/୭ ।

Digitized by PPRACHIN, SOA

କରିଦେଇଛି । ତତ୍ତ୍ୱକୁ ଉପଲବ୍‌ଧିରେ ପ୍ରାପ୍ତ ହେବାର ଏ ବ୍ୟାକୁଳତା ଖଣ୍ଡକବିତାମାନ ବିଶେଷକରି 'ସଙ୍ଗୀତମାଳା'ରେ ପ୍ରମୂର୍ଚ୍ଛିତା ହୋଇଯାଇଛି ।

ଏଇ ପର୍ଯ୍ୟାୟର କାବ୍ୟସ୍ୱରରେ କବିଚେତନାରେ ଆନନ୍ଦରୂପର ଆଉ ଏକ ଉପଲବ୍‌ଧି-ଧାରା ମଧ୍ୟ କ୍ରମାଭିବ୍ୟକ୍ତ ଲାଭକରୁଥିବାର ଦେଖାଯାଏ । କବିଙ୍କ ଅନ୍ତରରେ ଯାହାଙ୍କୁ ଆନନ୍ଦଦାୟୀ ପ୍ରିୟ ରୂପେ ପ୍ରାପ୍ତ ହେବାର ବ୍ୟାକୁଳତା ଜାଗିଛି, ବହିଃ ଜଗତ୍ତରେ ପ୍ରସାରିତ ଚେତନା ତାଙ୍କୁ ବିଶ୍ୱାନନ୍ଦମୟ ରୂପେ ଦେଖିବାକୁ ଆରମ୍ଭ କରିଛି । ଏ ଦେଖା ସୌନ୍ଦର୍ଯ୍ୟ ଓ ପ୍ରେମଚେତନା ମାଧ୍ୟମରେ ସଙ୍ଘଟିତ ହୋଇଛି । ଜଡ଼ ଜଗତ୍ତରେ, ପ୍ରକୃତି ଭିତରେ, ପୁଣି ସାଂସାରିକ ସମ୍ପର୍କ ଓ ଆତ୍ମୀୟତା ଭିତରେ ପରମ ଶାଶ୍ୱତଙ୍କର ନବରୂପତାକୁ କବି ପ୍ରତ୍ୟକ୍ଷ କରିଛନ୍ତି (୭୧) ଆନନ୍ଦର ଭାବ-ସମ୍ବାହକ ହେଉଛି ପ୍ରେମ ଏବଂ ତାହାର ପ୍ରକାଶିତ ରୂପ ହେଉଛି ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟ-ପ୍ରତୀତି ଇନ୍ଦ୍ରିୟ-ପ୍ରତ୍ୟକ୍ଷତା ସଞ୍ଜାତ । ସେହି ପ୍ରତୀତିରୁ ଅନ୍ତରରେ ପ୍ରେମୋପଲବ୍‌ଧି । ଯାହା କିଛି ସୁନ୍ଦର ମନେହୁଏ, ତାହା ବ୍ୟକ୍ତିଚିତ୍ତରେ ଏକ ତାତ୍‌କାଳିକ ଆକର୍ଷଣ ଜାତକରେ । ସକଳ ପାର୍ଥିବ ଆକର୍ଷଣର ଅନ୍ତରାଳରେ ଏକ ଅପାର୍ଥିବ ପ୍ରେମ-ରୂପ ବିଦ୍ୟମାନ । ପ୍ରେମାନୁରାଗ ସହ ତେଣୁ ଆନନ୍ଦମୟ ଅନୁଭବଟି ବିଜଡ଼ିତ । ସେହି ଆନନ୍ଦର ଶକ୍ତିରେ ହିଁ ବ୍ୟକ୍ତି ତାତ୍‌କାଳିକତାକୁ ଉଲ୍ଲଙ୍ଘନ କରିଥାଏ । ଆନନ୍ଦ ଏହିପରି ସୀମାକୁ ଅସୀମ ଦିଗରେ ଅଗ୍ରସର କରାଇନିଏ । ନିଃସର୍ଗ ସୌନ୍ଦର୍ଯ୍ୟବିଳାସ ମଧ୍ୟରେ ଆନନ୍ଦତତ୍ତ୍ୱର ଏହି ନିଗୂଢ଼ତା ବିଦ୍ୟମାନ । ଏ ଅବକାଶରେ ପ୍ରକୃତି-ରୂପରେ ଆନନ୍ଦ-ପ୍ରକାଶର ପୂର୍ଣ୍ଣାଭିବ୍ୟକ୍ତି ରୂପେ କବିଙ୍କ 'ଶୋଭା' କବିତାକୁ ବିଚାର କରାଯାଇପାରେ । ଏହି କବିତାରେ ରୂପଗତ ସୌନ୍ଦର୍ଯ୍ୟ ଓ ଆନନ୍ଦଭାବନାର ମୁଗ୍‌ଧତା ଉଚ୍ଛଳିତ । କେବଳ ଉଜ୍ଜ୍ୱଳ ଜ୍ଞାନ ଉଦ୍‌ଭାସରେ ନୁହେଁ; ରସ-ରୂପ ଉଦ୍‌ଘାଟନରେ ମଧ୍ୟ 'ଶୋଭା'ର ରାତ୍ରି ଚନ୍ଦ୍ରାଲୋକସ୍ନିଗ୍‌ଧ । ଏହି କବିଙ୍କର ଭାବବସ୍ତୁ ଅବଲମ୍ବନରେ ବହିଃ ପ୍ରକୃତି କେବଳ ସୁନ୍ଦର ନୁହେଁ; କବିଙ୍କ ଚିତ୍ତଲୋକ ମଧ୍ୟ ବିମୋହନ ସୁନ୍ଦର । 'ସ୍ନିଗ୍ଧ ସୌଦାମିନୀ'ର ଚନ୍ଦ୍ରୋପମାରେ ରସତତ୍ତ୍ୱର ଯେଉଁ ବିରୋଧାଭାସମୂଳକ ସୌନ୍ଦର୍ଯ୍ୟ ବ୍ୟଞ୍ଜନା, ତାହା ହିଁ ଏ ଉପଲବ୍‌ଧିର ଭାବ-ବୈଶିଷ୍ଟ୍ୟ । ସୌନ୍ଦର୍ଯ୍ୟପ୍ରକାଶରେ କ୍ଷଣପ୍ରାୟ ପ୍ରତୀତ ହେଲେହେଁ ଆନନ୍ଦର ଅଖଣ୍ଡ ରସାନୁଭୂତିରେ ନିଃସର୍ଗର ଆବେଦନ ସାର୍ବକାଳିକ । 'ଶୋଭାରାଣୀ' ଏଠାରେ କବି ସମ୍ମୁଖରେ ଶାଶ୍ୱତ ସୁଷମାର ବିମଳ ଆନନ୍ଦରୂପିଣୀ ରସଂଭରା ପ୍ରକାଶ-ମୂର୍ତ୍ତି ।

କବିଚିତ୍ତରେ ଏହି ରସାନୁଭୂତିର ପରିପ୍ଲୁତ ପ୍ରକାଶ 'ଏ ସୃଷ୍ଟି ଅମୃତମୟ ହେ' । ସକଳ ଆପାତ-ବିରୋଧ ଭିତରେ, ବୈଷମ୍ୟ ଓ ଅସଂଗତିମୂଳକ ସକଳ ଦୁଃଖ-ରୂପରେ ଏକ ଅଖଣ୍ଡ ସାମଞ୍ଜସ୍ୟବୋଧର ମଧୁର ଉପଲବ୍‌ଧି ଏଥିରେ ଶ୍ଳୋକାୟିତ । 'ଏ ସୃଷ୍ଟି ଅମୃତମୟ'ର ମଧୁରାନୁଭବ ବୈଦିକ ଉପଲବ୍‌ଧି "ମଧୁବାତା ଋତାୟନ୍ତେ'ର ମୁଗ୍‌ଧ ଉଚ୍ଚାରଣ ସହ ଏକତାନ ହୋଇଯାଇଛି । 'ଏ ପୃଥିବୀ ସର୍ବଭୂତର ମଧୁ, ସର୍ବଭୂତ ଏ ପୃଥିବୀର ମଧୁ'—ମିଷ୍ଟିକ କବିର ଏହାହିଁ ତ ଚିରନ୍ତନ ସାମଗାନ !

**ସଂଗୀତମାଳା**—ଭକ୍ତକବିଙ୍କର ଭକ୍ତିଭାବନା ଓ ହୃଦୟାବେଗର ପ୍ରକାଶ ରୂପ ଭାବରେ ପରମ୍ପରାନୁସୃତ କୀର୍ତ୍ତନ-ଭଜନଧର୍ମୀ 'ସଂଗୀତମାଳା'ର ଏକ ସ୍ୱତନ୍ତ୍ର ଆଧ୍ୟାତ୍ମିକ ଆବେଦନ ରହିଛି । କୌଣସି ନିର୍ଦ୍ଦିଷ୍ଟ ଦେବଦେବୀଭଜନ ବା ଭକ୍ତିତତ୍ତ୍ୱର ବ୍ୟାଖ୍ୟାନରୂପ ନ ହୋଇ ଏହା ଏକ ବିଶ୍ୱମୟ ପରମସତ୍ତାଙ୍କଠାରେ ବ୍ୟକ୍ତିଚିତ୍ତର ଶ୍ରଦ୍ଧା ନିବେଦନର ପୁଷ୍ପମାଳା ରୂପେ ସମର୍ପିତ ହୋଇଛି । ଏହା

---

(୭୧) "ଏ ସର୍ବ ସମ୍ବନ୍ଧ / ତୋର ଦୟା ନିଦର୍ଶନ ···।"
'ସ୍ତବ' (ଛନ୍ଦମାଳା) ଗ୍ରନ୍ଥାବଳୀ : ପୃ ୧୭

Digitized by PPRACHIN, SOA

କବି-ଆତ୍ମାର ସଂଗୀତ । ପ୍ରାଣସତ୍ତାର ପ୍ରାଣାରାମଂକଠାରେ ଆତ୍ମ-ନିବେଦନମୟର ସଂବାଦ । ସୁଖ-ଦୁଃଖ, ହର୍ଷ-ବିଷାଦ ଓ ଆଶା-ନିରାଶାର ଗୁମ୍ଫିତାଲୋକମୟ ସ୍ନିଗ୍ଧତା ଏ ସଂଗୀତ-କୁଂଜ-କାନନଟିକୁ ବିଚିତ୍ରବର୍ଣ୍ଣ କରିଛି । କବିଂକ ଅଧ୍ୟାତ୍ମ ଅନୁଭବର ରହସ୍ୟବାଦୀ ଉଚ୍ଚାରଣଟି ଏଥିରେ ଏକ ଆଂତରିକ ସ୍ପର୍ଶାନୁରାଗ ପାଇଛି ।

'ସଂଗୀତମାଳା'ର କୌଣସି ତାତ୍ତ୍ୱିକ ଆଡ଼ଂବର ନାହିଁ; କାବ୍ୟିକ ଐଶ୍ୱର୍ଯ୍ୟ ମଧ୍ୟ କ୍ଷୀଣ । ଏକ ମୁଗ୍‌ଧଚିତ୍ତର ନିଷ୍କପଟ ଭାବାନୁଭୂତିମାନ ସଂଗୀତ ରୂପରେ ପ୍ରସରିଯାଇଛଂତି । ଜୀବନ ଦେବତାଂକ ମଂଦିର ପ୍ରାଂଗଣରେ କବି-ଆତ୍ମାର ଭାବ-ସୌରଭ ଗୁଚ୍ଛ ପୁଷ୍ପକଳି ସମ ବିଚ୍ଛୁରିତ ହୋଇପଡ଼ିଛି । ଅନ୍ୟ ସର୍ଜନ କାବ୍ୟ-ଦର୍ଶନରେ ପ୍ରକଟିତ ମଧୁସୂଦନଂକର ଦାର୍ଶନିକ-କବିର ସଚେତନ ପରିଚୟଟି ଏଠାରେ ଏକ ନିରୋଳା ବ୍ୟକ୍ତିଚେତନାରୁ ଖସିପଡ଼ିଛି । କବିଂକ ବ୍ୟକ୍ତିଜୀବନର ବିଭୂତିଚେତନା, ଅଧ୍ୟାତ୍ମ ପ୍ରୟାସ, ଯାତନାନୁଭୂତି ଓ ଆଶାଭିଲାଷମାନ ଅସଂକୋଚ ପ୍ରକାଶ ରୂପ ଲଭ କରିଛଂତି । 'ସଂଗୀତମାଳା'ରେ କବିଂକ ଜୀବନ-ଦର୍ଶନର ଯେଉଁ ପ୍ରତିଫଳନ ଘଟିଛି, ତାହା ତାଂଙ୍କ କାବ୍ୟକଥନର ପୁନରାବୃତ୍ତି କରିଛି ମାତ୍ର । ତାଂକର ଜୀବନଦର୍ଶନ ଓ କାବ୍ୟାଦର୍ଶ ଯେ ଅଭିନ୍ନ, ତାଂକର କର୍ମାଚରଣ ଓ ଚଂତାଧାରା ଯେ ସମପର୍ଯ୍ୟାୟରେ ଗତିଶୀଳ ଓ ପରସ୍ପରର ପରିପୂରକ, 'ସଂଗୀତମାଳା'ର ଅକପଟ ଆତ୍ମ-ନିବେଦନ ଭିତରେ ସେ ସବୁ ସ୍ୱତଃ ପ୍ରମାଣିତ ହୋଇଛଂତି ।

ଏହି ସଂଗୀତମାନଂକରେ ସୃଷ୍ଟିର ମହତ୍ତ୍ୱ, ଆଲୋକ, ବାଣୀ, ଆନଂଦ, ଅନଂତତ୍ୱ ଏବଂ କୃପାତତ୍ତ୍ୱ ପ୍ରଭୃତି ଅଭିବ୍ୟକ୍ତ ସାର୍ଥକତା ଲଭ କରିଛଂତି । ସ୍ରଷ୍ଟା ସହ ମିଳନ-କାମନା, ସୀମାର ଅକ୍ଷମତା, ସତ୍ତ୍ୱ-ପ୍ରାଣର ଆଶାବିଶ୍ୱାସ, ଭରସା ଓ ସମର୍ପଣ ପ୍ରଭୃତି ଭାବଚେତନା ଈଶ୍ୱରଂକୁ ଉଭୟ ଆତ୍ମଗତ ଓ ସର୍ବଭୂତ କରି ଅନୁଭବ କରିବାର ପ୍ରବଣତା ପ୍ରକଟିତ କରିଛି । ସଂଗୀତମାଳା ବସ୍ତୁତଃ ଏକ ସାଧନା-ପଂଥର ସଂଗୀତ; ପଥଚଲାର ସଂଗୀତ (୬୨) ଅଧ୍ୟାତ୍ମପଥର ଭାବନାନୁଭୂତି ରହିଛି; ମାତ୍ର ସିଦ୍ଧିର ସଂବାଦ ଉଲ୍ଲିଖିତ ହୋଇନାହିଁ । ଲକ୍ଷଣୀୟ, ଆଶା, ନବ ବସଂତଭାବନା, ଆତ୍ମ-ସମର୍ପଣ, ସ୍ତବ, ଗୁଂଦମାଳା (୨ୟ), କ୍ଷମାସାଗର, ଏ ସୃଷ୍ଟି ଅମୃତମୟ ହେ ପ୍ରଭୃତି ଅଂତରାନୁଭୂତିନିଷ୍ଠ କବିତାଗୁଡ଼ିକର ବିଷୟ ଭାବ ଓ ସ୍ୱରଗତ ସାମ୍ୟ ଏଥିରେ ରହିଛି । ସଂଗୀତଗୁଡ଼ିକ ବିଭିନ୍ନ ଉଚ୍ଛ୍ୱାସ ଓ ଆବେଗମୟ ମୁହୂର୍ତ୍ତର ସୃଷ୍ଟି; ପୁଣି ଭିନ୍ନ ଭିନ୍ନ ଅବକାଶରେ ଗାନହେବା ପାଇଁ ରଚିତ । ଏଣ୍ଡୁ ଅନେକ ଭାବ ପୁନରାବୃତ୍ତ ଓ ପ୍ରତିଧ୍ୱନିମୂଳକ ହୋଇପଡ଼ିଛି । କାବ୍ୟକଳାଦୃଷ୍ଟିରୁ ବିଚାର ନକରି ଏଗୁଡ଼ିକୁ ହୃଦୟାନୁଭବର ବିମଳ ପଦ୍ୟାଲେଖ ରୂପେ ବିବେଚନା କରାଯାଇପାରେ । ତଥାପି କଳାଗତ ମଂଜୁଳତା ଏଥିରେ ବିରଳ ନୁହେଁ; ଅବଶ୍ୟ ଏଗୁଡ଼ିକର ଯଥାର୍ଥ ମୂଲ୍ୟ ନିର୍ଦ୍ଧାରଣ ହୋଇଛି କବିଂକ ଅଧ୍ୟାତ୍ମ-ସାଧନାର ପଥ-ସଂକେତ ରୂପରେ, ନିସଂକୋଚ ମର୍ମୋଦ୍‌ଘାଟନର ସ୍ୱଗତବାଣୀ ରୂପରେ ।

ସଂଗୀତମାଳାର ଅଂତର୍ନିହିତ ଭାବଚେତନାକୁ ଏକ ସଂକ୍ଷିପ୍ତ ଓ ସଂହତ ରୂପସଜ୍ଜା ଦିଆଯାଇପାରେ; ଯଥା : (୧) ସୃଷ୍ଟି ଓ ସଂସାରର ମୂଲ୍ୟ ବିଚାର, (୨) ସ୍ରଷ୍ଟାସହ ସତ୍ତାର ପ୍ରେମ-ସଂପର୍କ, (୩) ଆଲୋକ ଓ ସଂଗୀତ ମାଧ୍ୟମରେ କୃପାର ପ୍ରକାଶ ଏବଂ ଆଶା ଓ ବିଶ୍ୱାସର ପ୍ରତ୍ୟେଦନା, (୪) ସଂସାରର ସ୍ଥୂଳତା ଓ ସୀମାର ପାପବୋଧ, (୫) ସମର୍ପଣ ବ୍ୟାକୁଳତା ଇତ୍ୟାଦି । ଏହି ସଂଗୀତମାନଙ୍କରେ ସଂସାର ପ୍ରତି କବିଚିତ୍ତର ଦ୍ୱିବିଧ ପ୍ରତିକ୍ରିୟା ସ୍ପଷ୍ଟ । ଏକ ପକ୍ଷରେ ସଂସାର ପ୍ରତି ବିରାଗ, ବିତୃଷ୍ଣା, ଭୟ

(୬୨) ରଚନାକାଳ ୧୮୧୭ ଖ୍ରୀ:—'ଦେବୀବନ୍ଦଚରଣ'ର ପରବର୍ତ୍ତୀ ଓ 'ହିମାଚଳେ'ର ପୂର୍ବବର୍ତ୍ତୀ ।

Digitized by PPRACHIN, SOA

(ଶ୍ମଶାନ, ଅରଣ୍ୟ, ମରୁକାଂତାର, ବିଷ ଇତ୍ୟାଦି ବିଶେଷଣାକ୍ରାଂତ); ଏହା ସଂଗେ ସଂଗେ ପୃଥିବୀ ସହ କବିଚିତ୍ତର ଏକ ଅନୁରାଗ-ସମ୍ପର୍କର ସ୍ୱୀକୃତି ମଧ୍ୟ ରହିଛି । ପ୍ରଥମ ସଂଗୀତରେ ହିଁ ଜଗତକୁ 'ଶିକ୍ଷାକ୍ଷେତ୍ର' ରୂପେ ଗ୍ରହଣ କରିନେବା ଭିତରେ ଏ ଦୃଷ୍ଟିଭଂଗୀ ପ୍ରତିଫଳିତ । (୭୩) ସଂସାର ସହ ବିରୋଧ ଉପଜାତ ହୁଏ ସତ୍ତାକୁ ସଂଗ୍ରାମୀର ଭୂମିକାରେ ଶକ୍ତିମଂତ ରୂପେ ଉଦ୍‌ବୋଧିତ କରିବାପାଇଁ; ଅପରଟି ସଂସାର ପ୍ରତି ଆସକ୍ତିରହିତ ହୋଇ ଶୁଦ୍ଧାନୁରାଗ ଭିତରେ ସଂସାରକୁ ବିଭୁସାଧନାର ମାର୍ଗ ରୂପେ ଗ୍ରହଣ କରିନେବାପାଇଁ । ରହସ୍ୟବାଦୀ ପ୍ରକୃତପକ୍ଷେ ସଂସାରକୁ ଅସ୍ୱୀକାର କରେନାହିଁ । ସଂସାରକୁ ପୂର୍ଣ୍ଣକରି ଓ ତାର ଅତୀତ ହୋଇ ଆଉ ଏକ ପରମ ସତ୍ୟ ରହିଛି, ସେଇ ସତ୍ୟମୟଂକର ପ୍ରକାଶ-ରୂପ ଓ ଇଚ୍ଛାବିଳାସ ରୂପେ ସଂସାରକୁ ଉପଲବ୍ଧି କରିବା ହିଁ ରହସ୍ୟବାଦୀ ସାଧନା । ମିଷ୍ଟିକ୍‌ର ପ୍ରୀତିସାଧନାରେ ସଂସାରପ୍ରତି ଅନୁରକ୍ତି ବର୍ଜନୀୟ; ସଂସାର ନୁହେଁ । ଲୋଭସକ୍ତିବର୍ଜିତ ଶ୍ରଦ୍ଧାଲିଂଗନ ଜଣେ ବିଶ୍ୱାନୁରାଗୀ ଏ ବିଶ୍ୱକୁ ଦେଇପାରେ । ବିଶ୍ୱ-ଦ୍ୱେଷୀର ଘୃଣାଭିତରେ ବିଶ୍ୱ ନଥାଏ; ବିଶ୍ୱମୟ ମଧ୍ୟ ଆସିପାରନ୍ତି ନାହିଁ । ମଧୁସୂଦନଂକର ଏହି ସାଧନାନୁଭବଟି 'ସଂଗୀତମାଳା'ରେ ରୂପାୟିତ । ଆଦ୍ୟ ସଂଗୀତସ୍ତରରେ ଜଗତର ପ୍ରତିରୋଧ, ସଂଗ୍ରାମର ଭୀଷଣତା, ଜୀବର କ୍ଷୀଣଶକ୍ତି ଏବଂ ଜୀବନର ଯଂତ୍ରଣା ରୂପାୟିତ । ଅହଂକାରର ଅସାରତ୍ୱ ଉପଲବ୍ଧି ପରେ (୭୦) ଅସହାୟ ସତ୍ତା ଏକ ପରମଶକ୍ତିର ଆଶ୍ରୟ ଓ ସୁରକ୍ଷା ଲୋଡ଼େ । (୭୫) ସେ ଶକ୍ତି ଈଶ୍ୱରଂକ କୃପା ରୂପେ ବିଶ୍ୱର ସ୍ତରେ ସ୍ତରେ ପ୍ରକଟିତ । (୭୬) ସେ ପରମପୂର୍ଣ୍ଣ ଅପୂର୍ଣ୍ଣ ଜଗତ୍ ସମ୍ପର୍କରେ ଅନାସକ୍ତ ନୁହଂତି । ନିଜେ ଅସୀମ ବୋଲି ସୀମା-ଧୀନ ସତ୍ତା ସଂପର୍କରେ ଅନୁଦାର ନୁହଂତି । ଅପୂର୍ଣ୍ଣର ପରିପୂର୍ଣ୍ଣତା ଲାଭ ପାଇଁ ବରଂ ସେ ସତତ ଯତ୍ନଶୀଳ । (୭୭) ବ୍ୟକ୍ତିର ଆଶା-ବିଶ୍ୱାସର ପ୍ରୀତିପାତ୍ରରେ ହିଁ ସେ ଆପଣାର କୃପାଦାନ କରଂତି ।

ସଂଗୀତମାଳା ଏକ ଆଧ୍ୟାତ୍ମିକ ଯଂତ୍ରଣାର ସଂଗୀତ । (୭୮) ତଥାପି ଏଥିରେ ଆଶା ବିଶ୍ୱାସ ଓ ଶରଣାଗତିର ଆନଂଦଗାନ ମଧ୍ୟ ରହିଛି । (୭୯) ସିଦ୍ଧିପ୍ରାପ୍ତିର ଆଶ୍ୱାସନା ଓ ବିଭୁକୃପାର ଜୟଗାନ ରହିଛି । କୃତଜ୍ଞତା ଓ ସମର୍ପଣର ଉଲ୍ଲାସ-ତୃପ୍ତ ସ୍ୱର ବି ଅଶ୍ରୁତ ରହିନାହିଁ । ବିଶ୍ୱେଶ୍ୱରଂକୁ ହୃଦୟ-ବଲ୍ଲଭ ରୂପେ ଲାଭ କରିବାର ବ୍ୟାକୁଳତା ରହସ୍ୟବାଦୀ ଭାବସାଧନାକୁ ସୁ-ନିରୂପିତ କରିଛି । (୭୦)

(୭୩) "ଏ ଜୀବନ ନୁହେଁ ବୃଥାଖେଳା
ଏ ଜଗତ ନୁହେଁ ମିଛ ମେଳା
ଏ ମହାଶିକ୍ଷାର ନିକେତନ"—ଗୀତ ୧

(୭୪) "ନିଜବଳେ ତରିବାକୁ ସଂସାର-ସାଗର / ଭାବିଥିଲି ଭାଜଗଲି ସେ ଦମ୍ଭ ନିକର ।"—ଗୀତ : ୩୮

(୭୫) "ନାହିଁରେ ଉପାୟ ଆନ / ବିନା ସେ କୃପାନିଧାନ ।"—ଗୀତ : ୨୩

(୭୬) "ଜୀବର ମୁକ୍ତି ସଂବାଦ, ସ୍ୱର୍ଗର ବିଜୟ ନାଦ /
ରହିଅଛି ପୂରି ଆଜ ଏ ପୃଥ୍ୱୀ ଗଗନ ।"—ଗୀତ : ୪

(୭୭) "ଛନ୍ତି ସନ୍ନିଧାନେ / ସତ୍ୟ ସୁନ୍ଦର ସଖା / ଦଗ୍ଧ ପ୍ରାଣର ବିଶ୍ରାମ / ଆତ୍ମାର ଆନନ୍ଦ ଧାମ ।"—ଗୀତ : ୯

(୭୮) "ପାପର ଜ୍ୱାଳା ଆଉ କେତେ ସହିବ ।"—ଗୀତ : ୭୪

(୭୯) "ଲଭିଛ ପରମାଶ୍ରୟ ଯା ହେବାର ହେଉ ।"—ଗୀତ : ୨୪

(୭୦) "ପ୍ରେମର ଆଲୋକେ ଦ୍ୟୁଲୋକେ ଭୂଲୋକେ ଦେଖିବି ଏ ଶ୍ରୀଚରଣ ।" ଗୀତ : ୯୫

Digitized by PPRACHIN, SOA

ଆରାଧନାର ଗାଢ଼ତ୍ୱରେ ସମର୍ପଣର ବ୍ୟାକୁଳତା ଆସେ । ତା'ପରେ ଦେବତାଂକ ଦିବ୍ୟଜ୍ୟୋତି ଦର୍ଶନ ଓ ଦିବ୍ୟବାଣୀର ଶ୍ରବଣ ଘଟେ । (୭୧) କିନ୍ତୁ ଦେବତାଂକ ଦାନ ଅପେକ୍ଷା ପ୍ରିୟ ଦେବତାଂକ ପରିତୃପ୍ତି ଶ୍ରେୟତର ହୋଇପଡ଼େ । ପରମ ଇଚ୍ଛା ନିକଟରେ ନିଜକୁ ନିବେଦନ କରି ସେ ଇଚ୍ଛାମୟଂକ ଇଚ୍ଛାଧୀନ ହୋଇଯାଏ । (୭୨) ତା'ପରେ ଆଉ ସମର୍ପଣ ଦ୍ୱିଧାଗ୍ରସ୍ତ ହୁଏନାହିଁ । ଏକ କଲ୍ୟାଣ-ତୃପ୍ତ ମଂଗଳ-ସ୍ପର୍ଶ ହିଁ ଉପଲବ୍ଧିରେ ନିବଦ୍ଧ ହୋଇଯାଏ । (୭୩)

## ହିମାଚଳେ ଉଦୟ-ଉତ୍ସବ

ଋଷିକବିଂକର ରହସ୍ୟବାଦୀ ଭାବଚେତନାର ସର୍ବୋତ୍କୃଷ୍ଟ କାବ୍ୟାଲେଖ୍ୟ 'ହିମାଚଳେ ଉଦୟ ଉତ୍ସବ' । ମଧୁସୂଦନଂକ ବ୍ୟକ୍ତିସତ୍ତା ଓ କବିସତ୍ତା ଉପଲବ୍ଧିର ଭୂମିରେ ଏକତାନତା ଲାଭ କରିଥିବା ଏଇ କବିତାର ଛନ୍ଦେ ଛନ୍ଦେ ପ୍ରକୃତି ଓ ବ୍ୟକ୍ତିଆତ୍ମାର ଯେଉଁ ପରିପୂର୍ଣ୍ଣମିଳନ ଚିତ୍ର ପ୍ରଦତ୍ତ—ତାହାରି ଭିତରେ କବିମାନସର ଶାଶ୍ୱତ ସିଦ୍ଧ ଭାବସଂଯୋଗର ସାମଗ୍ରିକତା ଉଦ୍‌ଘାଟିତ । ମିଷ୍ଟିକ୍ କବିର ଅନୁଭୂତି ବୈଚିତ୍ର୍ୟରେ ପରମ ଅନଂତ 'ତତ୍ତ୍ୱ' ଏକାଂତ ପ୍ରାଣାରାମ ରୂପେ ବ୍ୟକ୍ତି 'ମୁଁ'ର ନିତ୍ୟଦୋସର ହୋଇଉଠଂତି । ସେଇ ଭାବସାଧନାର ଜୈବ-ସଂଗୀତ 'ହିମାଚଳେ ଉଦୟ ଉତ୍ସବ' ।

ତତ୍ତ୍ୱାଶ୍ରୟୀ ନିଃସର୍ଗଚେତନାରେ ପ୍ରକୃତି ମୁଖ୍ୟତଃ ଚୈତନ୍ୟରୂପିଣୀ, ବ୍ରହ୍ମମୟୀ । ତାକୁ ସେଇଭଳି ପ୍ରାପ୍ତହେବା ପ୍ରକୃତିର ସାଧନତତ୍ତ୍ୱ; ମାତ୍ର କାବ୍ୟୋପଲବ୍ଧି ଭିତରେ ନିଃସର୍ଗ ସହିତ ମାନବାତ୍ମାର ଭାବ-ସାଯୁଜ୍ୟ ପ୍ରତିଷ୍ଠିତ ହୁଏ । କଳାକାରର ଦୃଷ୍ଟିଭଙ୍ଗୀ ନେଇ ଦେଖିବସିଲେ, "ଜଗତ୍ ବଡ଼ କିଂବା ଆଧ୍ୟାତ୍ମିକ ବିକାଶ—ଏ ଦୁଟୋ ମତେର୍ ମଧ୍ୟେ କୋନଟା ସତ୍ୟ ସାହିତ୍ୟ ତା ନିୟେ ତର୍କ କରେନା; କିଂତୁ ଏଇ ଦୁଟୋ ଭାବେର୍ ମଧ୍ୟେ କୋନ ଭାବେ ମନୁଷ୍ୟେର ସ୍ଥାୟୀ ଏବଂ ଗଭୀର ଆନଂଦ, ସେଇ ଟୁକୁଇ କବିର ସତ୍ୟ, କାବ୍ୟେର ସତ୍ୟ ।" (୭୪)

କବି ନିକଟରେ ପ୍ରକୃତି କେବଳ ଶୋଭାର ସାମଗ୍ରୀ ନୁହେଁ କିଂବା କେବଳ ତାର ସୌଂଦର୍ଯ୍ୟକୁ ଆଶ୍ରୟ କରି କବିଚିତ୍ତର ଉଲ୍ଲାସ ଉତ୍ସାରିତ ହୋଇନାହିଁ । ପ୍ରକୃତି ମଧ୍ୟରେ କବି ପରମ ପ୍ରାଣସତ୍ତାକୁ ପ୍ରତ୍ୟକ୍ଷ କରିଛଂତି । ଉପଲବ୍ଧି-ବିସ୍ମିତ ବିହ୍ୱଳ ଆନଂଦ ଜିଜ୍ଞାସା କରିଛି "କେ ତୁମେ ?" ଏହାର ଉତ୍ତର କୌଣସି ତତ୍ତ୍ୱବିଗ୍ରହରେ ନୁହେଁ, ବୋଧିର ଆଲୋକରେ ହିଁ ଉପଲବ୍ଧ ହୋଇପାରେ ।

କବିଂକ ମାର୍ମିକ ଉପଲବ୍ଧିରେ ଏକ ଗଭୀର ସତ୍ୟରୂପେ ପ୍ରତିଭାତ ହୋଇଛି ଯେ—ଏକ ବିଶେଷ ପ୍ରଭାତର ସୂର୍ଯ୍ୟୋଦୟରେ କବିଚେତନା ଯେଉଁ ସତ୍ୟର ସାକ୍ଷାତ୍‌କାର କରିଛି, ସେ ସତ୍ୟ ସେଇ ମୁହୂର୍ତ୍ତର ଏକ ବିଶେଷ ତାତ୍‌କାଳିକ ଉପଲବ୍ଧି; ଯଦିଓ 'ନିତ୍ୟ ସତ୍ୟ' ରୂପେ ତାହା ନିର୍ବିଶେଷ ଏବଂ ସାର୍ବକାଳିକ । ସେଇ ମୁହୂର୍ତ୍ତ ହିଁ ଏକ ବିଶେଷ ଉପଲବ୍ଧିର ଉଦୟ-ମୁହୂର୍ତ୍ତ, ନୂତନ ସତ୍ୟ ଦୃଷ୍ଟିର ପ୍ରଥମ ଜାଗ୍ରତ ମୁହୂର୍ତ୍ତ; ଏବଂ ଏଇରୂପ ମୁହୂର୍ତ୍ତ-ସଂଜାତ ବ୍ୟକ୍ତି-ଉପଲବ୍ଧି ଭିତରେ ହିଁ ପରମ ଅନଂତ ଆପଣାର ଶାଶ୍ୱତ ପରିଚୟକୁ ନିଜ ପାଖରେ ନିତ୍ୟ ନୂତନ କରି ଲାଭକରଂତି ।

---

(୭୧) "ଦେଖ୍ଚୁ କି ତୁମ୍ହାର ଜ୍ୟୋତି ମଂଗଳର ଆଜ ହେ ପ୍ରାଣ ଉଜଳେ ।"—ଗୀତ : ୩୦
(୭୨) "ଲଗିଥାଉ ପ୍ରାଣେ ତୁମ୍ଭ ଉତ୍ସବ ।"—ଗୀତ : ୨୧
(୭୩) "ଆଜ ଏ ଆକାଶ ପୁରି ଅମୃତ ମଧୁର ରବେ / କି ବୀଣା ବାଜଇ ଘୋଷି × × ×
ତଥି ମଧ୍ୟେ ଯେତେକେ କେବଳ ମଂଗଳ ଦେଖୁ ଏ ନେତ୍ର ମୋହର ।" ଗୀତ : ୬୪
(୭୪) ଶ୍ରୀ ଭବାନୀ ଗୋପାଲ ସାନ୍ୟାଲ—'ସାରଦା ମଂଗଲ' (ଆଲୋଚନା)—ପୃ. ୧୦୦

Digitized by PPRACHIN, SOA

ଅଧ୍ୟାତ୍ମ-ସାଧନାର ପରମ ସିଦ୍ଧି-ସ୍ୱରୂପ ସମ୍ପର୍କରେ ଉପନିଷଦ୍‌ରେ ସଙ୍କେତିତ ଅଛି : 'ଧୀର ବ୍ୟକ୍ତି ସର୍ବବ୍ୟାପୀଙ୍କୁ ସକଳ ଦିଗରୁ ଲାଭକରି ଯୁକ୍ତାତ୍ମ ହୋଇ ସର୍ବତ୍ର ପ୍ରବେଶ କରନ୍ତି ।' ବ୍ୟକ୍ତି ଓ ବିଶ୍ୱ-ଚେତନାର ଏଇ ଏକାତ୍ମ ହେବାର ଅବକାଶରେ ଜୀବସତ୍ତା ବିଶ୍ୱବ୍ୟାପ୍ତି ଲାଭକରି ନିତ୍ୟମୁକ୍ତିର ଉତ୍ସବଲୋକରେ ପ୍ରବେଶାଧିକାର ପାଆନ୍ତି ।

'ହିମାଚଳେ ଉଦୟ ଉତ୍ସବ' ସେହିପରି ଏକ ମୁକ୍ତିଲୀଳାର ଉତ୍ସବ । ଦ୍ୟୁଲୋକ ଭୂଲୋକ ସର୍ବତ୍ର ସେ ମୁକ୍ତିର ପରିପୂର୍ଣ୍ଣ ଆୟୋଜନ । ଉଷାର ପ୍ରଥମ ଆଲୋକସମ୍ପାତରେ ରଜନୀର ତମିସ୍ରାବରଣ ଭେଦକରି କବିଚେତନାରେ ନୂତନ ଆଲୋକ ସମ୍ବାଦ ପ୍ରାପ୍ତ ହୋଇଛି । ରାତ୍ରିର ସେ ଅନ୍ଧକାର ପ୍ରାଣ-ସ୍ପନ୍ଦନର ଯାବତୀୟ ଭାବଗ୍ରନ୍ଥିର ଚାଞ୍ଚଲ୍ୟରହିତ ନିସ୍ତରଙ୍ଗ ଥିଲା । କବିଚିତ୍ତରେ ରହସ୍ୟବାଦୀ 'ଅନ୍ଧତାମସୀ'ର ସଙ୍କେତ ସ୍ପଷ୍ଟ । ରାତ୍ରିର ଆକାଶରେ ସୂର୍ଯ୍ୟ ଉଠେନାହିଁ; ମାତ୍ର ସୂର୍ଯ୍ୟ ସମାଗମପରେ ରାତ୍ରି ମଧ୍ୟ ଆଉ ପୃଥିବୀର ଆକାଶରେ ରହିପାରେ ନାହିଁ । ଅଚେତନ ଆତ୍ମାରେ ଈଶ୍ୱରଙ୍କ ଦିବ୍ୟୋପଲବ୍‌ଧି ହୁଏ ନାହିଁ; ମାତ୍ର 'ଯାମିନୀର ଶେଷଭାଗେ'-ଚେତନାରୁ ରାତ୍ରିରୂପିଣୀ ଅଜ୍ଞାନ-ତାମସୀ ଅବସାନରେ ଦିବ୍ୟ ଜାଗରଣମୟୀ ଉଷା ଆବିର୍ଭୂତା ହୁଅନ୍ତି । କବିଙ୍କ ଚିତ୍ତଲୋକରେ ଏଇ ଉଷାକାଳୀନ ଉଜ୍ଜ୍ୱଳତା, ଆକାଶର ନୀଳ ନିର୍ମଳତା ଓ ପୃଥିବୀର ପ୍ରଶାନ୍ତ ପ୍ରଫୁଲ୍ଲତା ନବ ସମୁଦିତ । ଭାସମାନ ଧବଳ ବଳାହକର ପ୍ରାନ୍ତଦେଶ ନବାରୁଣ ସ୍ପର୍ଶରେ ସ୍ୱର୍ଣ୍ଣରଞ୍ଜିତ । ଶୁଭ୍ର ଗିରିଚୂଡ଼ାରେ ପ୍ରଭାତର ରକ୍ତରାଗ ବିଚ୍ଛୁରିତ । ସର୍ବତ୍ର ଏକ ରଙ୍ଗୋଜ୍ଜ୍ୱଳ ସ୍ୱର୍ଣ୍ଣିମାର ବର୍ଣ୍ଣାଢ଼୍ୟ ପ୍ରସାରଣ । ଏଇ ସକଳ ବିଚ୍ଛିନ୍ନ ଖଣ୍ଡ ସୁଷମା ମିଳିତ ହୋଇ ଉଷାଲୋକର ଯେଉଁ ଏକ ଅଖଣ୍ଡ ଐଶ୍ୱର୍ଯ୍ୟ ଦୀପ୍ତି ଫୁଟିଉଠିଛି, ତାହା ଦୃଶ୍ୟାତୀତ ଆଉ ଏକ ଚେତନାଲୋକରେ ଭିନ୍ନ ଏକ ପ୍ରଭାତର ପ୍ରତୀକ-ରୂପ । ସେ ଅପରୂପ-ରାଜ୍ୟର ଉଦ୍‌ଭାସନ କବି-ଉପଲବ୍‌ଧିରେ । କାବ୍ୟୋକ୍ତିରେ କଳ୍ପନାର ସମ୍ବାଦ ନାହିଁ, ସମ୍ପୂର୍ଣ୍ଣ ଉପଲବ୍‌ଧିର ପ୍ରସଙ୍ଗ ହିଁ ଦୃଢ଼ୋକ୍ତି—"ଉଦୟ ଉତ୍ସବ-ଲୀଳା ଦେଖିଲି ପ୍ରତ୍ୟକ୍ଷେ ।"

ଶୈଳରାଜ 'ହିମାଳୟ' ଏ କବିତାରେ ସାର୍ଥକତମ ରୂପ-ପ୍ରତୀକରେ ବିରାଜିତ । କବି ଯେଉଁ ଉପଲବ୍‌ଧି-ସ୍ଥଳକୁ ସଙ୍କେତ କରିଛନ୍ତି, ତାହା ମର୍ତ୍ତ୍ୟର ହିମାଳୟ ନୁହେଁ । ସେ ଦୃଷ୍ଟିରେ ସବୁ କେବଳ କବି-କଳ୍ପନାର ରୋମାଣ୍ଟିକ ସୁଦୂରାଭିସାର ବୋଲି ମନେହୁଅନ୍ତା, ମାତ୍ର 'ହିମାଚଳେ ଉଦୟ ଉତ୍ସବ' ଭୌଗୋଳିକ ହିମାଳୟରେ ସୂର୍ଯ୍ୟୋଦୟର କାବ୍ୟ-ସମ୍ବାଦ ନୁହେଁ । ଏହା କବିଚେତନାର ଏକ ଅଧ୍ୟାତ୍ମ-ସଙ୍କେତବାଦୀ ରଚନାଲେଖ୍ୟ । କବିଚିତ୍ତର ଏକ ଆଧ୍ୟାତ୍ମିକ ଉତ୍ତରଣତାକୁ ଭାଷା-ସଙ୍କେତରେ ବ୍ୟକ୍ତ କରିବାର ପ୍ରୟାସ ଏଠାରେ ହିମାଳୟ ରୂପ-ପ୍ରତୀକକୁ ଆଶ୍ରୟ କରିଛି । ସାଧାରଣତଃ ଅଧ୍ୟାତ୍ମ-ସାଧନା ପ୍ରସଙ୍ଗରେ ସତ୍ତାର ମୁକ୍ତିପ୍ରୟାସୀ ଚେତନାର ଅଭିବ୍ୟକ୍ତି ପ୍ରାୟଶଃ ପର୍ବତର ରୂପକାଶ୍ରିତ ହୋଇଥାଏ । ପର୍ବତ ଊର୍ଦ୍ଧ୍ୱମୁଖୀ, ପୁଣି ଗିରି ଆରୋହଣ ଏକ କ୍ରମ-ଆୟାସସାଧ୍ୟ ଦୁଷ୍କର ସାଧନା । ମନେହୁଏ, ଯେପରି ଧରଣୀର ଊର୍ଦ୍ଧ୍ୱାୟିତ ହେବାର, ଆକାଶର ଅପାର୍ଥିବତାକୁ ସ୍ପର୍ଶ କରିବାର ସବୁ ପାର୍ଥିବ ବ୍ୟାକୁଳତା ପର୍ବତ-ପ୍ରତୀକରେ ନିରନ୍ତର ସ୍ଥିରମୁଖୀ ରହିଯାଇଛି । ରହସ୍ୟବାଦୀ ବିଶ୍ୱର ସବୁବେଳେ ଜଡ଼ରୁ ଊର୍ଦ୍ଧ୍ୱଚେତନାକୁ ସତ୍ତାର ଅଭିଯାତ୍ରା ପର୍ବତାରୋହଣ ସହ ସମାନ୍ତରାଳ କରି ଦେଖିଛି । ପୁଣି ଭାରତୀୟ ଚେତନାରେ ହିମାଳୟର ସ୍ୱତନ୍ତ୍ର ଭାବ-ଆବେଦନ ରହିଛି । ପ୍ରାଚ୍ୟ ଆଧ୍ୟାତ୍ମିକ ଉପସ୍ଥାପନାରେ ହିମାଳୟ ନଗାଧିରାଜ ଏବଂ ଦେବତାତ୍ମା ରୂପେ ଅଭିନନ୍ଦିତ । ଏହାର ବିଶାଳ ଶୈଳଶ୍ରେଣୀ, ତୁଷାରାବୃତ ଶୃଙ୍ଗରାଜି ଓ ଶୀତଳ ସ୍ତବ୍‌ଧ ନୀରବତା ଏକ ପ୍ରଶାନ୍ତ, ମହାନ୍, ବିରାଟ ଓ ବିସ୍ମୟକର ଭାବାବେଶରେ ଚିତ୍ତକୁ ପ୍ରସାରିତ କରିଦିଏ । ହିମାଳୟ ଦର୍ଶନରେ ବ୍ୟକ୍ତି ପ୍ରାଣରେ

Digitized by PPRACHIN, SOA

ଅସୀମ-ଭୂମାଂକ ପ୍ରତି ଏକ ଅନଂତ ଆକର୍ଷଣର ସଂବେଗ ଜାତ ହୁଏ । ଏ ପରିପ୍ରେକ୍ଷୀରେ ହିମାଳୟ ସଚରାଚରର ଏକ କବିର ଆଧ୍ୟାତ୍ମିକ ଭାବବିଳାସର ଉପାଦାନ ହୋଇପାରେ; ମାତ୍ର ଆଲୋଚ୍ୟ କାବ୍ୟ-ପ୍ରସଂଗରେ ହିମାଳୟରେ ଉଦୟ ଉତ୍ସବ କବିଂକର ନବଲବ୍ଧ ଦିବ୍ୟୋପଲବ୍ଧିର ମୁଗ୍ଧ ଆଲୋକ-ଗାନ । ଏ ଉଦୟ-ଚିତ୍ର ଏଠାରେ ଏକ କବି-ମନର କଳ୍ପନା ଦୃଷ୍ଟି ସଂଜାତ ନୁହେଁ । ଚିତ୍ର ପରିବେଷଣର ମାଧ୍ୟମଟି କେବଳ କାବ୍ୟକଳ୍ପନାର ଆଧାରାଶ୍ରିତ । ଏ ହିମାଳୟ ସ୍ୱୟଂ ଭକ୍ତ-କବିଙ୍କ ଆତ୍ମଚେତନା । ସେ ଚେତନାର ଏକ ନବାରୂଢ଼ ସ୍ୱର୍ଣ୍ଣ ଶିଖରରେ 'ହିମାଚଳେ ଉଦୟ ଉତ୍ସବ'ର ଉପସ୍ଥାପନା ।

ନୀଳକାଂତ ଗଗନବକ୍ଷରେ ପ୍ରଫୁଲ୍ଲବର୍ଣ୍ଣା ଉଷାଂକର ଆଲୋକସଜ୍ଜା କବିଚେତନାରେ ମଧ୍ୟ ଏକ ଅପୂର୍ବ ଜାଗରଣରେ ମୁହୂର୍ତ୍ତ ସମାଗତ । ଏ ମୁହୂର୍ତ୍ତକୁ କବି 'ଅମୃତଲଗ୍ନ' ବୋଲି ସଂଭାଷଣ କରିଛଂତି । ଏ ଲଗ୍ନ କ୍ୱଚିତ୍ ଆସେ । ଏହି ମଧୁର ଉପଲବ୍ଧି କ୍ୱଚିତ୍ ଦୁର୍ଲଭ ମୁହୂର୍ତ୍ତକୁ ଅମୃତାୟିତ କରି ଆସେ । ରସ-ମାଧୁରୀସିକ୍ତ ସେ ଅମୃତ ଆନଂଦ ପୂର୍ତ୍ତି ମୃତ୍ୟୁଭୀତି ଅତିକ୍ରାଂତ । ଏହିପରି ଏକ ମୁହୂର୍ତ୍ତର ସ୍ଥିରବିଂଦୁ ଉପରେ ମହାକାଳର ରଥଚକ୍ର ଯେପରି ହଠାତ୍ ସ୍ତବ୍ଧ ରହିଯାଏ ।

ଏ ଲଗ୍ନକୁ କବି ଆକାଶ-ଅବନୀର ପରିଣୟ ମୁହୂର୍ତ୍ତ ବୋଲି ବର୍ଣ୍ଣନା କରିଛଂତି । ବୈଦିକ ଗାନରେ ଦ୍ୟାବାପୃଥିବୀ ଚିର ଦାଂପତ୍ୟରେ ଗ୍ରଂଥିତ । ଶାଶ୍ୱତ କାଳବକ୍ଷରେ ଏହି ମିଳନର ଚିରଂତନ ଉତ୍ସବ ନିତ୍ୟ ସଂଘଟିତ । ବହୁ ଆଗରୁ ତାର ଆରମ୍ଭ, ତେଣୁ ସେ ପୁରାତନ; ପୁଣି ବ୍ୟକ୍ତି ଉପଲବ୍ଧିର ବିଶିଷ୍ଟ ମୁହୂର୍ତ୍ତରେ ତାହା ସଦ୍ୟତନ ଏବଂ ନବତନ ହୋଇ ପ୍ରକଟିତ । ବ୍ୟକ୍ତିର ସ୍ୱତଂତ୍ର ଅନୁଭବରେ ସେହି ପୁରାତନ ମିଳନୋତ୍ସବର ନିତ୍ୟ ନୂତନ ମଧୁର ଉପଲବ୍ଧି । ଆକାଶ-ପୃଥିବୀର ଏ ମିଳନୋତ୍ସବକୁ କବି ବିଶ୍ୱର ବହିଃ ପ୍ରାଂଗଣରେ ପ୍ରତ୍ୟକ୍ଷ କରିଛଂତି; କବିଂକ ଚିତ୍ତଲୋକରେ ମଧ୍ୟ ଆଉ ଏକ ମାଂଗଳିକର ଆୟୋଜନ-ଉତ୍ସବ ସଂଘଟିତ, ତାହା କବିପ୍ରାଣ ସହ ଶାଶ୍ୱତ-ପ୍ରିୟଂକର ପରିଣୟ । ପ୍ରକୃତିର ଶାଶ୍ୱତ ବେଦୀପରେ ପ୍ରାଣର ଏ ଉତ୍ସବ ଉଲ୍ଲାସ କାବ୍ୟ-ବ୍ୟଂଜନାରେ ନୂତନ ଅର୍ଥଦୀପ୍ତି ଲାଭ କରିଛି ।

କବିତାର ପ୍ରାରଂଭରୁ ମହାମିଳନର ସାର୍ଥକ ଲଗ୍ନଟି ପ୍ରତ୍ୟାଶିତ । ପାର୍ବତ୍ୟ ପ୍ରକୃତି ପ୍ରତୀକ୍ଷମାଣା । ସେ ପ୍ରତୀକ୍ଷାର ଏକାଗ୍ରତା ନିସ୍ତବ୍ଧ ଶୈଳସାନୁରେ ଘନୀଭୂତ ହୋଇଯାଇଛି । ପ୍ରତୀକ୍ଷାର ଏ ନିଶ୍ଚଳତା ସମଗ୍ର ବାତାବରଣରେ, ପୁଣି କବିସତ୍ତାରେ । ପ୍ରତୀକ୍ଷା ସହ ସଚରାଚର ପ୍ରାପ୍ତିର ଆକାଂକ୍ଷା, ପୁଣି ପ୍ରାପ୍ତିର ସଂଭାବନା ଜଡ଼ିତ । ନିଖିଳ ପ୍ରକୃତିର ଏକାଗ୍ର ଧ୍ୟାନମୟତାରେ ବ୍ୟାପ୍ତ ଚେତନାର ଏ ଏକ ଲୟ-ନିବଦ୍ଧ ପରିସ୍ପଂଦ ପ୍ରତୀକ୍ଷା, କବିଚିତ୍ତର ସୂକ୍ଷ୍ମାନୁଭୂତିରେ ଆତ୍ମାର ନିଃଶବ୍ଦ ଜାଗ୍ରତ ପ୍ରତୀକ୍ଷା ସହ ଏକତାନତା ଲଭକରିଛି ।

ଆକାଶରେ ହିରଣ୍ମୟ ସୂର୍ଯ୍ୟଂକର ଆଲୋକମୟ ଆବିର୍ଭାବ । ପ୍ରାଚୀ ଦିଗଂତର ଆଲୋକବାର୍ତ୍ତା ଘୋଷଣାରେ ପଶ୍ଚିମାଶାରୁ ରାତ୍ରିର ଶେଷ ଅଂଧକାରଟିକକ ମଧ୍ୟ ଅଂତର୍ହିତ । ଚେତନାରେ ଆଲୋକର ଉଦ୍ଭାସନ ହେଲେ ସମଗ୍ର ସତ୍ତା ଆଲୋକିତ ହୁଏ । ହୃଦୟର ପୂଜାବେଦୀରେ ପବିତ୍ର ଜ୍ଞାନପ୍ରେମର ହୋମାଗ୍ନି ଜଳିଉଠିଲେ ସମଗ୍ର ଜୀବନରେ ସେ ଯଜ୍ଞ-ସୌରଭର ପବିତ୍ର ସ୍ପର୍ଶ ବାଜେ । କବିଂକ ମୁଗ୍ଧ ଚେତନା ଏକ ବିଶ୍ୱଯଜ୍ଞକୁ ପ୍ରତ୍ୟକ୍ଷ କରିଛି; ଯାହାର ପ୍ରଜ୍ୱଳିତ ଅଗ୍ନି ନଭୋମଂଡଳରେ ପୁଣି ହୃଦୟାକାଶରେ ମଧ୍ୟ ଦେଦୀପ୍ୟ । ଦାନ ଓ ଆବାହନ ମାଧ୍ୟମରେ ଯଜ୍ଞକ୍ରିୟାରେ ଆପଣାର ଶ୍ରଦ୍ଧାଦାନ ଏବଂ ଆପଣାର ଦେବ୍ୟତାର ଆବାହନ ସଂପାଦିତ ହୋଇଥାଏ । କବିସତ୍ତାରେ ଉଭୟ କ୍ରିୟା ସୁସଂପନ୍ନ ।

Digitized by PPRACHIN, SOA

'ଅମୃତଲଗ୍ନ' ଉଚ୍ଚାରଣର ପ୍ରତିଧ୍ୱନି କରି ସେ 'ପରମକ୍ଷଣ'ରେ ହିମାଦ୍ରିର ପଦ୍ମ-ଶୁଭ୍ରଗାତ୍ର ରବି-ରଶ୍ମିରେ ପ୍ରଭାମୟ ହୋଇଉଠିଛି । ପାଷାଣ ଯେପରିକି ପୁଷ୍ପ-କୋମଳ ଓ ସରସ ସଜୀବ ହୋଇଉଠିଛି ଜଡ଼ ଜୀବନମୟ ହୋଇଉଠିଛି । ପ୍ରସ୍ତର ଫୁଲ ଫୁଟାଇ ଦେଇଛି । ସବୁ ମୁହୂର୍ତ୍ତରେ ଫୁଲ ଫୁଟେନାହିଁ । ସବୁ ମୁହୂର୍ତ୍ତ ଫୁଲ ଫୁଟାଇ ପାରନ୍ତି ନାହିଁ । ପ୍ରକୃତିରେ ଫୁଲ ଫୁଟିବା ଏକ ନିର୍ଦ୍ଦିଷ୍ଟ ସାର୍ଥକ ମୁହୂର୍ତ୍ତର । ତରୁର ପ୍ରସ୍ତୁତି ଅନେକ ଦିନର । ବହୁ ନୀରବ ଅପେକ୍ଷା ପରେ ହଠାତ୍ ଏକ ଶୁଭ ଲଗ୍ନରେ ତା ଜୀବନରେ ପୁଷ୍ପର ଉଦ୍‌ଗମ । ତରୁ ସତେ ଯେପରି ନିଜ ହୃଦୟର ପ୍ରେମକୁ, ପ୍ରାଣର ଆନନ୍ଦକୁ ଫୁଲ ରୂପେ ପ୍ରକାଶ କରିଦିଏ ।

ତରୁର ପ୍ରସ୍ତୁତି, ଜୀବନର ସାଧନା ଅନେକ ଆୟାସର; ମାତ୍ର ଫୁଲ-ଫୁଟାର ମୁହୂର୍ତ୍ତଟି ପୁଲକର ତୃପ୍ତିର, ସାର୍ଥକତାର । ହିମାଦ୍ରିର ପାଷାଣ-ଗାତ୍ର ମଧ୍ୟ ସେ ପୁଲକମୟ ମୁହୂର୍ତ୍ତରେ ରୋମାଂଚବିହ୍ୱଳ । ଫୁଲ ପରି ସ୍ୱତଃ ଉନ୍ମେଷ ଓ ବିକାଶ ମାଧ୍ୟମରେ ବ୍ୟକ୍ତିର ସ୍ରଷ୍ଟା ପ୍ରତି ହୃଦୟାନୁରାଗ ପ୍ରକଟିତ । ଆକାଶବକ୍ଷରେ ବର୍ଣ୍ଣ ପରେ ବର୍ଣ୍ଣର ଶୋଭାଯାତ୍ରା । କବିଙ୍କ ବର୍ଣ୍ଣନାରେ ଏ ରଂଗସଭାର କ୍ରମସଜ୍ଜାର ବର୍ଣ୍ଣନାଟି ମଧ୍ୟ ଇଂଗିତପୂର୍ଣ୍ଣ । ପାଟଳବର୍ଣ୍ଣ ଗାଢ଼ ଲୋଲରଂଗରେ, ତାହା କ୍ରମଶଃ ବାସନ୍ତୀ ଓ ପରିଶେଷରେ ଧବଳରେ ପରିଣତ ହେବା ଚେତନାଲୋକର ଭାବ-ପ୍ରତୀକ ରୂପେ ପ୍ରଯୁକ୍ତ । କବି ହୃଦୟର ନବାନୁରାଗ ଗାଢ଼ପ୍ରୀତିରେ ପରିଣତ, ତାହା କ୍ରମଶଃ ପବିତ୍ର ପ୍ରେମରେ ଶୁଚିମନ୍ତ ଓ ଜ୍ଞାନାଲୋକରେ ଶୁଭ୍ରାନ୍ବିତ ହୋଇଛି ।

ପ୍ରକୃତିର ପବିତ୍ର ପ୍ରାଂଗଣରେ 'ପରମାଶ୍ଚର୍ଯ୍ୟ' ଏହି ଜ୍ୟୋତିର ଲୀଳାବିଳାସ କବିଚିତ୍ତରେ ଅନନ୍ତ ମୁଗ୍ଧତା ଭରିଦେଇଛି । ବିଶ୍ୱ ସଙ୍ଗୀତର ମହାରାଗିଣୀ କ୍ଷୁଦ୍ରସତ୍ତାର ପ୍ରାଣପୁରରେ ବାଜୁଛି, ଆତ୍ମାରେ ପ୍ରତିଧ୍ୱନି ଜାଗିଛି । ପ୍ରକୃତି ସହ ଚେତନାଗତ ଏକାତ୍ମକତା ଲାଭ କରି ବ୍ୟକ୍ତି ପ୍ରାଣ ମଧ୍ୟ ପ୍ରକୃତି ମାଧ୍ୟମରେ ବିଶ୍ୱଜୀବନକୁ ସଂପ୍ରସାରିତ ହୋଇଯାଇଛି । ପ୍ରକୃତି ସହ ବ୍ୟକ୍ତିର ଏହି ମିଳନର ପୃଷ୍ଠ-ଭୂମିରେ ହିଁ ପ୍ରାଣ ଭିତରକୁ ସଂଗୃହିତ ହୋଇଛି । ଏ ମିଳନାନନ୍ଦର ଅନୁଭବ କବିଙ୍କ ଜୀବନରେ ପ୍ରଥମଥର ପାଇଁ ଆସିଛି ।

କବିଙ୍କ ଅଭିବ୍ୟକ୍ତିରେ ଏ ଲଗ୍ନ ମଂଗଳ, ତୀର୍ଥ ପରମ ଓ ଉତ୍ସବ ନବବିବାହର । ଅନୂଢ଼ା କୁମାରୀର ପବିତ୍ରତା ନେଇ କବି-ଆତ୍ମା ସ୍ୱୟଂବର ସାଜିଛି । ରହସ୍ୟବାଦୀ ପ୍ରୀତିତତ୍ତ୍ୱରେ ଆତ୍ମା କୁମାରୀ କନ୍ୟାତୁଲ୍ୟ ନିଷ୍କଳୁଷ ଓ ପବିତ୍ର । ଏକମାତ୍ର ପରମଙ୍କ ପାଇଁ ସେ ଅଭିପ୍ରେତ ଏବଂ ତାଙ୍କୁ ହିଁ ଅବଶେଷରେ ପ୍ରେମାସ୍ପଦ ରୂପେ ସେ ଲଭି କରେ । ସେଥିପାଇଁ ତାର ଜନ୍ମଜନ୍ମାନ୍ତ ତପସ୍ୟା । ଶୁଭମୁହୂର୍ତ୍ତର ସମାଗମ ପର୍ଯ୍ୟନ୍ତ କଳ୍ପକଳ୍ପାନ୍ତ ନିରବଚ୍ଛିନ୍ନ ପ୍ରସ୍ତୁତି । ରହସ୍ୟବାଦୀ ବିଗ୍ରହରେ ଜୀବସତ୍ତା ନାରୀତ୍ୱର ସାଧନାରେ ପରମଙ୍କ ପ୍ରଣୟ-ସିଦ୍ଧ ନହେବା ପର୍ଯ୍ୟନ୍ତ ତାର ସାଧନା ସମାପ୍ତ ହୁଏନାହିଁ । ଆତ୍ମା ଏକମାତ୍ର ପୁରୁଷ ଓ ପ୍ରେମମୟ ବୋଲି ପରମଙ୍କୁ ହିଁ ଜାଣେ । ଅନୂଢ଼ା କନ୍ୟା ଭାବରେ ଗ୍ରହଣଶୀଳତା ଏବଂ ସମର୍ପଣ ଚେତନାରେ ନିଜକୁ ସେହି ପ୍ରିୟ-ପରମଙ୍କ ନିକଟରେ ପୂର୍ଣ୍ଣ ଉତ୍ସର୍ଗ କରିବାହିଁ ରହସ୍ୟ-ସାଧନାର ମୂଳଭୂତ ଚେତନା । ସକଳ ବ୍ୟକ୍ତିପ୍ରାଣରେ ନାରୀତ୍ୱର ଏହି ଆବେଦନ, ଶାଶ୍ୱତ-ପ୍ରିୟଙ୍କ ପାଇଁ ଏହି ଅପେକ୍ଷା ଓ ପ୍ରସ୍ତୁତିର ନୀରବ ସାଧନା ତାର ଅଗୋଚରରେ ଘଟିଚାଲିଛି । ସମର୍ପଣର ମୁହୂର୍ତ୍ତରେ ପୁଣି ପରମଙ୍କୁ ଗ୍ରହଣର ମୁହୂର୍ତ୍ତରେ ଜୀବସତ୍ତାରେ ନାରୀତ୍ୱର ଏହି ଚେତନା ପୂର୍ଣ୍ଣ ଅଭିବ୍ୟକ୍ତି ଲାଭ କରିଥାଏ । ପ୍ରେମ-ସ୍ୱରୂପଙ୍କ ପୂର୍ଣ୍ଣୋପଲବ୍ଧି ପାଇଁ ନାରୀ-ଚେତନା ଲାଭ ବ୍ୟତୀତ ଦୟିତ-ଦୟିତା ଭାବସାଧନା ବ୍ୟତୀତ ବ୍ୟକ୍ତିର ଅନ୍ୟ ଉପାୟ ନାହିଁ ବୋଲି ରହସ୍ୟବାଦୀର ଦୃଢ଼ବିଶ୍ୱାସ ।

Digitized by PPRACHIN, SOA

ଏହି ଅବକାଶରେ କବିଚେତନାରେ ଶାଶ୍ୱତଂକର ଚିନ୍ମୟ ଆବିର୍ଭାବ ଘଟିଛି । କବିପ୍ରାଣ ସକଳ ମୃଣ୍ମୟ ସତ୍ତାର ଚିନ୍ମୟ ରୂପାଂତର ପ୍ରତ୍ୟକ୍ଷ କରିଛି । ଏକ ପ୍ରାଣମୟ ପରିସ୍ପଂଦନରେ ସବୁକିଛି ଜୀବନ-ଛଳଛଳ ହୋଇଉଠିଛି । ଏ ଉପଲବ୍ଧିରେ ଯେମିତି 'ଜଡ଼' ବୋଲି ଆଉ କେଉଁଠି କିଛି ନାହିଁ; 'ଜଡ଼' ହୋଇ ରହିବା ସଂଭବ ନୁହେଁ । ଏ ଅନୁଭବରେ ଯେପରି 'ମିଥ୍ୟା', 'ମାୟା' 'ଭ୍ରାଂତି'ର ପ୍ରଶ୍ନ ଉଠେ ନାହିଁ । ପରମ ଚିନ୍ମୟ ଶାଶ୍ୱତ ସହ ଆତ୍ମା ଐକ୍ୟ-ବିଧୃତ, ପୁଣି ସେ ଐକ୍ୟର ଉପଲବ୍ଧି-ଭୂମିରେ ଦ୍ୱୈତଚେତନାରେ ମଧ୍ୟ ଅବସ୍ଥିତ, ଏଇ ରହସ୍ୟବାଦୀ ବିରୋଧାଭାସକୁ କବି ସ୍ପଷ୍ଟ ଅନୁଭୂତି-ରୂପ ଦେଇଛଂତି, "ଦ୍ୱୈତ ଅଦ୍ୱୈତର ଅନୁଭବ ମହୋତ୍ସବେ ।" (୭୫) କେବଳ ସୃଷ୍ଟିଚକ୍ରକତା ନୁହେ, ପ୍ରାଣ-ପଦ୍ମିନୀ ସୃଷ୍ଟିବିଳାସକୁ ମଧ୍ୟ ଉପଭୋଗ କରିଛି । ଅସୀମ ସହ ଅଦ୍ୱୈତିକୁ ଲାଭ କରି ମଧ୍ୟ ସତ୍ତାର ସୀମାତ୍ୱ ଅସୀମ-ଅନ୍ୱେଷିତ ହୋଇଛି । ପ୍ରୀତି-ତତ୍ତ୍ୱର ଦ୍ୱୈତ ଅଦ୍ୱୈତ ଭୂମିକାରେ ସୀମା ସହ ଅସୀମଂକର ତତ୍ତ୍ୱ-ସଂଗମ ଘଟିଛି । ଏ ଅବସରରେ 'ନଦୀପ୍ରତି'ର କାବ୍ୟତତ୍ତ୍ୱ ଯେପରି କବି-ଜୀବନର ଉପଲବ୍ଧି ସହ ମିଶିଯାଇଛି । (୭୬) କବିଚିତ୍ତରେ ଏ ମହାମିଳନ ସଂପର୍କରେ ଆଉ ଦ୍ୱିଧାବୋଧ ନାହିଁ । ଜୀବନ ପରି ଏହା ସତ୍ୟ ଓ ସ୍ପଷ୍ଟ ହୋଇ-ଯାଇଛି । କବିଙ୍କର ସ୍ପଷ୍ଟ ଉଚ୍ଚାରଣ "ଅନଂତ ଅପାର ତବ ପ୍ରାଣେ ପ୍ରାଣ-ଗୁଣ / ମିଳିଛି ନିଭୃତେ ଆଜି ଏ ମୋର ପରାଣ" । (୭୭ ଓଡ଼ିଆ କାବ୍ୟୋଚ୍ଚାରଣରେ ଏଯାବତ୍ ଯେତେକିଛି ରହସ୍ୟା-ନୁଭବର ଉଲ୍ଲେଖ ଘଟିଛି, ଠିକ୍ ଏହିପରି ଈଶ୍ୱରଂକ ସହ ପୂର୍ଣ୍ଣ ଆତ୍ମିକ ମିଳନର ସ୍ପଷ୍ଟ ସଂବାଦଟି ଆଉ କାହାରି କେଉଁଠାରେ ଏମିତି ଉଦ୍‌ଘୋଷିତ ହୋଇପାରିନାହିଁ । ମଧୁସୂଦନଂକ ଆଧ୍ୟାତ୍ମିକ ସାଧନା ଯେଉଁ ତତ୍ତ୍ୱାଭିମୁଖୀ ଓ ପଥାନୁସାରୀ ହୋଇଥାଉନା କାହିଁକି, 'ହିମାଚଳେ ଉଦୟ ଉତ୍ସବ'ର ଏ କାବ୍ୟୋପଲବ୍ଧି ଓତଃପ୍ରୋତ ରହସ୍ୟୋପଲବ୍ଧିମୂଳକ ।

ଏ ମିଳନ ଅନଂତଂକ ସହ ପୁଣି ତାର ଆବାହନ କବିଂକ ସମଗ୍ର ସତ୍ତାରେ । ଏହା କେବଳ ମନର ମିଳନ-କଳ୍ପନା ନୁହେଁ; ନିଛକ ଭାବ-ଉଲ୍ଲାସର ଆବେଗ ଉତ୍‌ସାରଣ ନୁହେ । ଉପଲବ୍ଧିର ପ୍ରତ୍ୟକ୍ଷତାରେ ଏ ମହାମିଳନ ସତ୍ତାର ସମଗ୍ର ପାର୍ଥିବ ଆକୃତିକୁ ମଧ୍ୟ ଉଚ୍ଛାଟିତ କରିରଖିଛି । ଏ ମହାମିଳନ ଚରମିଳନ; ନିତ୍ୟମିଳନ ମଧ୍ୟ । ଏହାର ରୂପ ସଦାବହନ୍ତ; ଅନଂତ ରସରାଜ ସ୍ୱୟଂ ରସଧାର ହୋଇ ନୂତନ କବିହୃଦୟକୁ ନିଷିକ୍ତ କରିଦେଇଛଂତି । ସେ ରସମାଧୁରୀର ଉପଲବ୍ଧି ପାର୍ଥିବ ଚେତନାସ୍ତରକୁ ମଧ୍ୟ ନିଃସରି ଆସିଛି । ଅପାର୍ଥିବ ପାର୍ଥିବକୁ ସ୍ପର୍ଶ କରିଛଂତି । ଆନଂଦର ବିହ୍ୱଳତା ଭିତରେ ଅଜ୍ଞାଂତ୍ ସ୍ୱ ଇଂଦ୍ରିୟବିମୋହନ ହୋଇ ଧରିଦେଇଛଂତି। 'ନେତ୍ରୋତ୍ସବ'ର ମୂହୂର୍ତ୍ତରେ କବିଂକ ମୁଗ୍ଧ ନୟନ ସମ୍ମୁଖରେ ପ୍ରେମ-ସ୍ନିଗ୍ଧ ନୟନାଭିରାମ । ତାଂକ ଚକ୍ଷୁ ମଧ୍ୟ ଜୀବଚକ୍ଷୁରେ ନିବଦ୍ଧ । ପରସ୍ପର ପରସ୍ପରକୁ ଦେଖିବା ଭିତରେ ଅପରର ଚକ୍ଷୁବିଂବରେ ନିଜେ ଯେପରି ଅଟକି ଯାଇଛଂତି । କବିଂକର ଦୃଷ୍ଟି ଏକାଗ୍ର; ସେ କେବଳ ପ୍ରିୟ-ସ୍ୱରୂପକୁ ଦେଖଂତି, ପୁଣି ସଚରାଚର ତାଂକରି ପ୍ରତିଛବି ଦେଖଂତି । ପ୍ରାଣୋପମଂକୁ ବିଶ୍ୱମୋହନ କରି ଦେଖିବାପରେ ହିଁ "ଏ ନିଖିଳ ବିଶ୍ୱ ଆଜି

---

(୭୫) ମଧୁସୂଦନ ଗ୍ରଂଥାବଳୀ—ପୃ. ୧୨୮

(୭୬) "ମର୍ମରି ଉଠିଲା ମର୍ମଭେଦୀ ସ୍ତବଗାନ / ଉଷ୍ଣ ପ୍ରାୟେ ଉଷ୍ଣାଶତ ବିଦାରି ପାଷାଣ" —ମଧୁସୂଦନ ଗ୍ରଂଥାବଳୀ—ପୃ. ୧୨୮ ।

(୭୭) ମଧୁସୂଦନ ଗ୍ରଂଥାବଳୀ—ପୃ. ୧୨୯ ।

Digitized by PPRACHIN, SOA

ନିଜସ୍ୱ ମୋହର" (୭୮) ବୋଲି କହିବା ସମ୍ଭବ ହୁଏ । ପରର ସାମ୍ରାଜ୍ୟରେ ପତ୍ନୀ ସାମ୍ରାଜ୍ଞୀ ହୋଇଯାଏ ।

ଆଖି ଯାହାଙ୍କୁ ଦେଖୁଛି, କାନରେ ମଧ୍ୟ ତାଙ୍କରି ମଧୁର ସ୍ୱର ବାଜୁଛି । ସେ ମଧ୍ୟ 'ଶ୍ରବଣୋତ୍ସବ' ରଚନାକରିଛି । ସ୍ରଷ୍ଟାର ଅନନ୍ତ ସଙ୍ଗୀତ ହୃଦୟସ୍ଥ-ସଙ୍ଗୀତ ରୂପେ କବିଙ୍କୁ ଛନ୍ଦକମ୍ପିତ କରିଛି । ପ୍ରାଣର ତନ୍ତ୍ରୀରେ ସ୍ରଷ୍ଟାପ୍ରାଣର ଆନନ୍ଦ ଧ୍ୱନି ମଧୁର ପ୍ରତିଧ୍ୱନି ଆଣି ନିଖିଳ-ପ୍ରସାରିତ ହୋଇଯାଇଛି; ଯେପରିକି ବିଶ୍ୱ-ଯଜ୍ଞରେ ବ୍ୟକ୍ତି-ପ୍ରାଣର ପୂର୍ଣ୍ଣାହୁତିପର୍ବ ଅନୁଷ୍ଠିତ ହୋଇଯାଇଛି । ବିଶ୍ୱ-ଯଜ୍ଞର ପୁରୋଧା-କଣ୍ଠରେ ବ୍ୟକ୍ତି-ଜୀବନ ରୂପକ ସାମଗାନର ଗାୟତ୍ରୀ ଉଦ୍‌ଗୀତ ହୋଇଛି । 'ବସନ୍ତଗାଥା' ସଙ୍କଳନର 'ହୃଦୟସ୍ଥ-ସଙ୍ଗୀତ' କବିତାରେ କବିଜିଜ୍ଞାସା "ଅନ୍ତରେ ମିଳିବ କି ରେ ଅନ୍ତର-ସଙ୍ଗୀତ ?" (୭୯) ଏଠାରେ ଯେପରି ସାର୍ଥକ ଉତ୍ତର ଲାଭ କରିଛି ।

ଏ ସ୍ୱରଟି କବି-ଅନ୍ତରର । ବାଦ୍ୟ ଯନ୍ତ୍ରର; ମାତ୍ର ସଙ୍ଗୀତଟି ବାଦକର । ବାଦ୍ୟଯନ୍ତ୍ରର ପରିପୂର୍ଣ୍ଣ ସହଯୋଗ ଓ ସୁନିର୍ଦ୍ଦିଷ୍ଟ ସ୍ୱରଗ୍ରାମ ଭିତରେ ତାର ସୁମଧୁର ସ୍ୱରାଳାପ; ମାତ୍ର ବାଦକର କରସ୍ପର୍ଶରେ ତା'ର ପ୍ରାଣର ଆବେଗ ହିଁ ନିର୍ଜୀବ ଯନ୍ତ୍ର ଦେହରେ ସଙ୍ଗୀତ-ରାଗିଣୀ ସୃଷ୍ଟି କରେ । ଏଠାରେ ବାଦକ ଓ ବାଦ୍ୟଯନ୍ତ୍ର ଯେପରି ପରମଆତ୍ମୀୟତାରେ ଗୁନ୍ଥା । ଜଣେ ନିଜକୁ ଉତ୍ସର୍ଗ କରିଦିଏ; ଅପର ଜଣକ ସେଇ ଉତ୍ସର୍ଗକୁ ସାର୍ଥକ କରି ଆନନ୍ଦର ଗୀତଟିଏ ବଜାଇଦିଏ । ନିର୍ଜୀବ ତନ୍ତ୍ରୀ ସେ ସ୍ୱରାଘାତରେ ପୁଲକ-କମ୍ପିତ ହୋଇଯାଏ । ଯନ୍ତ୍ରର ସ୍ୱରସୃଷ୍ଟି ଅହଙ୍କାର ନଥାଏ; କେବଳ ସ୍ୱରାଳାପର ମଧୁର ଆବେଶ ଜାଗ୍ରତ ଥାଏ । ସେ ଆନନ୍ଦ ଯେତିକି ସ୍ୱରସୃଷ୍ଟିର, ସେତିକି ନିଜକୁ ସମର୍ପି ଦେବାର । ସେଇ ଆନନ୍ଦ ଭିତରେ ହିଁ ଯନ୍ତ୍ର ଓ ବାଦକ, ତାର ଓ ଅଙ୍ଗୁଳି ଏକ ହୋଇଯାନ୍ତି । ବ୍ୟକ୍ତିର ଜୀବନବୀଣାରେ ପରମଙ୍କ ପ୍ରେମସଙ୍ଗୀତ ମୂର୍ଚ୍ଛିତ ହୋଇଯାଏ— "ମୋହରି ତୁହି ମୋହରି ମୋହରି"— ବ୍ୟକ୍ତିସ୍ୱରରେ ମଧ୍ୟ ପ୍ରତିଧ୍ୱନି ଜାଗିଉଠେ "ମୋହରି ତୁହି ମୋହରି ।" (୮୦) ଏହି ମମତ୍ୱ ଅଧିକାରର ପରିଚୟ ଏଠାରେ ବିଶ୍ୱ-ବିଚ୍ଛିନ୍ନ-ଚେତନାର ନୁହେ, ଈଶ୍ୱରଙ୍କୁ ନିଖିଳ ବିଶ୍ୱଠାରୁ ଭିନ୍ନକରି କେବଳ ନିଜ ପାଇଁ ରଖିନେବାର 'ମୋର' ନୁହେ । ସମଗ୍ର ସଂସାର ସହ ବାଣ୍ଟି ହୋଇ ଅସରା ରହିଯାଇଥିବା ଏକଙ୍କୁ ହିଁ ବିଶ୍ୱାସ୍ଥିତ ରୂପେ ଲାଭ କରିବାର, ନିଖିଳ ପ୍ରୀତିପାତ୍ର ସହ ପରମାମୃତକୁ ବାଣ୍ଟି ଭୋଗକରିବାର, ଅନନ୍ତ ପ୍ରେମର ଅଂଶୀଦାରରେ 'ଏ ମୋର'ର ଉପଲବ୍ଧି । ସେଥିପାଇଁ 'ଏ ମୋର' ଉଚ୍ଚାରଣ ପରେ ପରେ ହିଁ 'ବିଶ୍ୱଦେବ' ସମ୍ବୋଧନ । ଯେ ବିଶ୍ୱର, ପୁଣି ଯେ 'ଆତ୍ମ-ଧବ'—ସମସ୍ତଙ୍କର ହୋଇ ରହିବା ତାଙ୍କ-ପାଇଁ କଷ୍ଟ ଦୁଷ୍କର ବା ବିଚିତ୍ର ନୁହେ । ସେଇ ଉପଲବ୍ଧିରେ ସମର୍ପଣର ଆନନ୍ଦ ଏତେ ଗଭୀର ସନ୍ତୃପ୍ତି ଭରିଦିଏ ଯେ, ବ୍ୟକ୍ତି ଆଉ ସ୍ୱତନ୍ତ୍ରତା କାମନା କରେ ନାହିଁ; ଭିନ୍ନ ସ୍ୱର ରଚିବାକୁ ଚାହେ ନାହିଁ । ସେ ଚାହେଁ, ତାର ଆଶା-ଆକାଂକ୍ଷାର ଅତଳବିତଳ ପରିପୂର୍ଣ୍ଣ କରି ରସମୟତାର ଏଇ ଅନନ୍ତ ଉତ୍ସବ ଯୁଗ-ଯୁଗଲାଗି ରହିଥାଉ ।

---

(୭୮) ପୃ. ୧୨୯ – ଗ୍ରନ୍ଥାବଳୀ ।
(୭୯) ପୃ. ୧୦୪—ଗ୍ରନ୍ଥାବଳୀ ।
(୮୦) ପୃ. ୧୨୯—ଗ୍ରନ୍ଥାବଳୀ ।

Digitized by PPRACHIN, SOA

'ହିମାଚଳେ ଉଦୟ-ଉତ୍ସବ' ରହସ୍ୟବାଦୀ କବିତାର ସମସ୍ତ ଲକ୍ଷଣ ବହନ କରିଛି ବୋଲି କୁହାଯାଇପାରେ । ରହସ୍ୟ-ଅଭିବ୍ୟକ୍ତିର ସବୁ ସ୍ୱାତଂତ୍ର୍ୟ, ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟରେ ଏହା ପରିପୂର୍ଣ୍ଣ । ଏକ ବିଶ୍ୱାତ୍ମକ ଅବବୋଧ, ସ୍ଥାନକାଳ ପରିବ୍ୟାପ୍ତି । ଆଲୋକ ଆନଂଦ ଅନୁଭୂତି ଓ ଏକ ଅପାର୍ଥିବ ମିଳନଚେତନା ରହସ୍ୟବାଦୀ ବିରୋଧାଭାସର ପୂର୍ଣ୍ଣ ବ୍ୟଂଜନା ଉପରେ ଅବସ୍ଥାପିତ । ଏହି କବିତାର ଆଦ୍ୟପ୍ରାଂତ ବିଶ୍ୱବୋଧର ସମାଚ୍ଛନ୍ନତା, ଅଖଂଡ଼ ଜ୍ୟୋତି ପାରାବାରରେ ବ୍ୟକ୍ତି ଓ ବିଶ୍ୱ ପରସ୍ପର ଲୀନ-ବୋଧ, ଆନଂଦ ତୃପ୍ତି ଓ ଶାଂତିର ଅନୁଭବ, ବହିର୍ଜଗତରେ ମଧ୍ୟ ନିସ୍ତବ୍ଧତା, ସ୍ଥିରତା ଓ ପ୍ରଶାଂତିର ଭାବ 'ନବ ବସଂତ ଭାବନା'—କାଳର ପ୍ରତିଶ୍ରୁତ (୮୧) ମଧୂମିତ ବସଂତ ଓ 'ନିତ୍ୟରାସ'ର ଆନଂଦ ଏଠାରେ ପୂର୍ଣ୍ଣ ଆବିର୍ଭୂତ ।

ରହସ୍ୟବାଦର ବିରୋଧାଭାସଗୁଡ଼ିକ ମଧ୍ୟ ଏଠାରେ ଉପଲବ୍‌ଧିର ଯଥାର୍ଥତା ପ୍ରମାଣ କରଂତି । ଏକ ଦିଗରେ କବି ବହିର୍ମୁଖୀ ରହସ୍ୟଚେତନାର ବିଶ୍ୱ-ବ୍ୟାପ୍ତ ଐକ୍ୟ ସୂତ୍ରଟିକୁ ଯେପରି ଆବିଷ୍କାର କରିଛଂତି, ଅପର ପକ୍ଷରେ 'ଅଂତର୍ମୁଖୀ ରହସ୍ୟବାଦ' ପ୍ରତିପାଦିତ 'ଅଂତର୍ଗତ କେବଳ ଏକ' ସହି ନିଜର ଏକାତ୍ମକତାଟିକୁ ମଧ୍ୟ ସେହିପରି ଉପଲବ୍‌ଧି କରିଛଂତି । ଏ ଉପଲବ୍‌ଧିର ସ୍ୱରୂପଟି ମଧ୍ୟ ଦ୍ୱୈତା-ଦ୍ୱୈତର ବିରୋଧାତ୍ମକତାକୁ ଲାଭକରିଛି । ଦ୍ୱୈତ ସ୍ଥିତିର ମିଳନ ଓ ଅଦ୍ୱୈତ ସ୍ଥିତିର ବିଲୟ—ଉଭୟ ଚେତନାର ସମକାଳୀନ ଉପଲବ୍‌ଧି କାବ୍ୟ-ରୂପରେ ବିଶ୍ଳିଷ୍ଟ ପ୍ରକାଶ ଲୋଡ଼ିଛି । କବି ବହିର୍ବିଶ୍ୱ ସହି ଏକାତ୍ମ ହୋଇଯାଇଥିବା ଯେପରି ଏକ ସତ୍ୟୋପଲବ୍‌ଧି; ଅଂତରର ଗଭୀରତାରେ 'ଅଂତର୍ଯାମୀଂକୁ ନିଜସ୍ୱ ଏକ' ରୂପେ ମିଳନାନଂଦ ମଧ୍ୟରେ ଅଂତରତମ କରି ଲାଭ କରିଥିବା ମଧ୍ୟ ସେହିପରି ଏକ ବାସ୍ତବାନୁଭୂତି । କବିଂକ ସମଗ୍ର ପ୍ରସାରୀ ଚେତନାଭୂମିରେ ଆଉ କୌଣସି ବିରୋଧ ନାହିଁ, ସଂଘର୍ଷ ନାହିଁ; ଗୋଟିଏ କେବଳ ନିର୍ଦ୍ୱଂଦ ଅଭିଳାଷ, "ନିତ୍ୟେ ଲାଗିଥାଉ ଏହି ମହାମହୋତ୍ସବ" ।

ଏଇ ପରିପ୍ରେକ୍ଷୀରେ ପୂର୍ବରଚିତ 'ଋଷିପ୍ରାଣେ ଦେବାବତରଣ'ରେ ସଂକେତିତ ଆତ୍ମାରେ ପରମାତ୍ମାଂକ ଭୂମା ଆବିର୍ଭାବଟିକୁ ବିଚାର କରାଯାଇପାରେ । 'ଦେବାବତରଣ'ରେ ମଧ୍ୟ ବିଶ୍ୱସହି ଐକ୍ୟବୋଧର ଗାନ ରହିଛି । ଏକ ଅଖଂଡ ଅନଂତ ବ୍ରହ୍ମ ଅଂତବହିଃ ପରିବ୍ୟାପ୍ତ ରହିଥିବାର ପ୍ରସଂଗ ଉଲ୍ଲେଖ ଅଛି । ସେଥିର ଋଷିଚେତନା ପରମଂକୁ ଠିକ୍ କବିଂକପରି ଉପଲବ୍‌ଧିରେ ପାଇଛି । 'ଜୀବାତ୍ମାରେ ପରମାତ୍ମା ଭୂମା ଆବିର୍ଭାବ' ଅବକାଶରେ ଋଷିଂକର ବାହ୍ୟ ଅଭ୍ୟଂତର ଏକାକାର ହୋଇଯିବା ସୂଚିତ ଅଛି । 'ବ୍ରହ୍ମାଂଡ଼ ହୃଦୟ-ତଂତ୍ରୀ' ଗୋଟିଏ ତାନରେ ବାଜିଛି । ସେହି ତାନରେ ଋଷିପ୍ରାଣର ସ୍ୱର ମଧ୍ୟ ମିଶିଯାଇଛି । ମାତ୍ର ଲକ୍ଷ୍ୟ କରିବାର କଥା, ଏସବୁ ଉଚ୍ଚାରଣ ଭିତରେ ଈଶ୍ୱରଙ୍କୁ ପ୍ରିୟ ପରମ ରୂପେ 'ଏକାଂତ ଓ ଏକକ' କରି ପାଇବାର ଅନୁଭୂତି ସଂପର୍କରେ କେଉଁଠାରେ ବି ଉଲ୍ଲେଖ ନାହିଁ । ମିଷ୍ଟିକ୍‌ର ସ୍ୱତଂତ୍ର ଉପଲବ୍‌ଧିରେ ଯେ ବିଶ୍ୱମୟ, ସେ ପୁଣି ବ୍ୟକ୍ତିଗତ; ସେହି ବ୍ୟକ୍ତିଗତ ଈଶ୍ୱରଂକ (Personal God) ସହି ସଖ୍ରର ମିଳନର ମୂହୂର୍ତ୍ତ ଏକାଂତ ନିଭୃତ; ସେଠାରେ ସାମାନ୍ୟ କିଛି ବାହ୍ୟର ପ୍ରବେଶ ସୁଯୋଗ ନାହିଁ । ଜୀବ ଓ ପରମଂକ ମଧ୍ୟବର୍ତ୍ତୀ ହୋଇ ଆଉ କିଛି ବି ରହିପାରେ ନାହିଁ । 'ଦେବାବତରଣ'ରେ କବି ଯେଉଁ ଋଷି-ଉପଲବ୍‌ଧିର ଚିତ୍ର ଆଙ୍କିଛଂତି, ତାହା ନିଜସ୍ୱ ଉପଲବ୍‌ଧି-ନୁହେଁ; ଆରୋପିତ । ଚିତ୍ର-ପରିବେଷଣର ଭୂମିକାଟି କେବଳ କବିମାନସର । ଏକ ମାନସିକ

(୮୧) "ଅନଂତ ସରସ ବସଂତ ମହାନଂଦ ବିଭବ
ଲେଖିଛଂତି ତୋର ଲଲାଟେ ପ୍ରାଣବିଧାତା ତୋର ।"—ଗ୍ରଂଥାବଳୀ, ପୃ. ୮୭

Digitized by PPRACHIN, SOA

ଭାବୋପଲବ୍ଧିର ସଂପ୍ରସାରିତ ପୃଷ୍ଠଭୂମି ଉପରେ (୮୨) ଏହାର ଉଦ୍‌ବୋଧନ । ତେଣୁ ଏଥିରେ ବିଶ୍ୱ-ବିସ୍ତାରର ବାର୍ତ୍ତା ରହିଛି; ମାତ୍ର ପ୍ରାଣସଂଗମର ସଂବାଦ ନାହିଁ । କବିଂଙ୍କ ଅନୁଭବର ପ୍ରତ୍ୟକ୍ଷ ଭୂମିରେ ସେ ଉପଲବ୍ଧିର ସ୍ୱରୂପ ଉନ୍‌ମୋଚିତ ହୋଇନାହିଁ । କବି ଋଷିଙ୍କର କଥା ହିଁ କହିଛଂନ୍ତି । ଆର୍ଯ୍ୟଚେତନା ସହି ନିଜକୁ ଏକାତ୍ମକରି ଭାବକଳ୍ପନାରେ ବିଶ୍ୱାବେଶ ଲାଭ କରିଛଂନ୍ତି । ମାତ୍ର ସତ୍ତାର ଚିଂତାକଗତ୍ରରେ ଯାହା ସଂସାଧିତ ହୋଇଛି ତାହା ବ୍ୟକ୍ତିସତ୍ତାର ହୃଦୟକୁ ସଂସ୍ପର୍ଶିତ ହୋଇନାହିଁ । ଆକାଶର ଅମୃତ ତେଜ କବିଂକ ମାନସଲୋକକୁ ନିଃସରି ଆସିଛି; ମାତ୍ର ଆତ୍ମଚେତନାଭୂମିରେ, ସତ୍ତାର ସ୍ୱ-ପ୍ରାଂଗଣରେ ସେହି ବିଶ୍ୱଦେବଙ୍କୁ 'ପ୍ରାଣଧବ' ରୂପେ ମାଲ୍ୟାର୍ପଣ କରିବାର ମାଂଗଳିକଟି ଅନୁଷ୍ଠିତ ହୋଇନାହିଁ: ପରିଣୟବେଦୀ ରଚନା ହୋଇନାହିଁ । ସେ ମଂଗଳୋତ୍ସବଟିର ଶୁଭ ଆୟୋଜନ 'ହିମାଚଳେ'ରେ । ସେଥିରେ କବି ନିଭୃତ ମିଳନ ଉପଲବ୍ଧିର କଥା କହିଛଂନ୍ତି ଏବଂ ଆଶ୍ଚର୍ଯ୍ୟ ଭାବରେ ପ୍ରତ୍ୟକ୍ଷ କରିଛଂନ୍ତି ଯେ ଏହି ପ୍ରାଣର ମିଳନରେ ଲାଭକରିଥିବା ଏକାଂତ ପ୍ରେମଧନଟି ତାଂକର ସେହି ପୂର୍ବ-ଶ୍ରୁତ ଦେବାବତରଣର ବିଶ୍ୱରାଜନ୍ । ବିଶ୍ୱସହି ଯାହାର ବଂଧନ ଚିରଂତନ, ବ୍ୟକ୍ତି ପାଖକୁ ସେ ଏହିପରି ସ୍ୱତଂତ୍ର ମୁହୂର୍ତ୍ତରେ ସ୍ୱତଂତ୍ର ସଂପର୍କ ରଚନା କରି ଆସଂନ୍ତି; ବ୍ୟକ୍ତିକୁ ବ୍ୟକ୍ତିଗତ ହୋଇ ଧରାଦିଅଂନ୍ତି । (ତାହାହିଁ ରହସ୍ୟବାଦୀ ପ୍ରେମୋପଲବ୍ଧିର ଆମୂଳାଂତ ପ୍ରତିପାଦ୍ୟ) । ନିତ୍ୟପ୍ରତି ଏ ଲୀଳାଖେଳା ଭିତରେ ସେ ଏକାଧାରରେ ଚିର-ବିଶ୍ୱ-ନିର୍ବଂଧିତ ଓ ନିତ୍ୟ-ନବପରିଣୀତ । ତାଂକର ଏ ଦ୍ୱୈତ ପ୍ରକାଶରେ କିଛିବି ବିରୋଧାଭାସ ନାହିଁ । ସେ ବିଶ୍ୱକୁ ବିସ୍ତାରିତ ସ୍ପର୍ଶ ଦେବାର ଅବକାଶରେ ବ୍ୟକ୍ତିକୁ ନିଭୃତ ଆଲିଂଗନ ମଧ୍ୟ ଦେଇପାରଂନ୍ତି ।

'ଋଷିପ୍ରାଣେ ଦେବାବତରଣ' ଓ 'ହିମାଚଳେ ଉଦୟଉତ୍ସବ'ର ପୃଷ୍ଠଭୂମିରେ ଏକ ମୌଳିକ ପାର୍ଥକ୍ୟ ରହିଛି । ତାହା ଠିକ୍ ବିଷୟବସ୍ତୁ ବା ରଚନାଗତ ନୁହେଁ; ବରଂ ରଚୟିତା-ସଂପର୍କିତ । 'ଦେବାବତରଣ'ର ରଚୟିତା ଏକ ଦାର୍ଶନିକ । ସେଥିରେ ମଧୁସୂଦନଂକର ବ୍ୟକ୍ତିତ୍ୱର ସ୍ୱତଂତ୍ର ପରିଚୟ ସୁଲଭ ନୁହେଁ । ଏକ ଚିଂତାଶୀଳ ଭାବୁକ ଓ ଦାର୍ଶନିକର କାବ୍ୟମାନସିକତାରୁ 'ଦେବାବତରଣ' ଉଚାରିତ । ମାତ୍ର 'ହିମାଚଳେ···' ଓତପ୍ରୋତ ଏକ ବ୍ୟକ୍ତିଆତ୍ମାର ସଂଗୀତ । ସେଠାରେ ଯଦି ଦାର୍ଶନିକତା ଓ କାବ୍ୟିକତା କିଛି ଫୁଟିଉଠିଥାଏ, ତାହା ସରଳ ସହଜ କବି-ଆତ୍ମାର ତନ୍ମୟତାରୁ ସଂଜାତ । ସାଧାରଣତଃ ଦାର୍ଶନିକର ମନଃଚେତନାରେ ଯେଉଁ ତତ୍ତ୍ୱସବୁ ରୂପଲାଭ କରଂନ୍ତି, ମିଷ୍ଟିକ୍ ସେହି ସତ୍ୟକୁ ଅଂତର୍ସତ୍ୟରୂପେ ଉପଲବ୍ଧି କରିଥାଏ । ଦାର୍ଶନିକର ଚିଂତା ଏକ ଭିନ୍ନ, ବିଛିନ୍ନ ଅମୂର୍ତ୍ତ ଜଗତ୍ରରେ ଜ୍ଞାନ ରୂପର ଜିଜ୍ଞାସା ଲୋଡ଼ିଥାଏ । ଏ କ୍ଷେତ୍ରରେ ଦାର୍ଶନିକ ତଟସ୍ଥ, ଅସଂପୃକ୍ତ ରହି ନୈର୍ବ୍ୟକ୍ତିକ ସତ୍ୟର ଜ୍ଞାନଲାଭ କରିଥାଏ । ଜ୍ଞେୟ ଓ ଜ୍ଞାତା ଉଭୟ ଭିନ୍ନ ଏବଂ ସ୍ୱତଂତ୍ର କ୍ଷେତ୍ରନିବାସୀ । ଏହି ଜ୍ଞାନ ଅରୂପ; ମାତ୍ର ମିଷ୍ଟିକ୍ ସତ୍ୟର ନିଜ ରୂପ ଦେଖେ; ରୂପମାଧ୍ୟମରେ ଦେଖେ । ମିଷ୍ଟିକ୍-ଉପଲବ୍ଧିରେ ତେଣୁ ଦର୍ଶନ / ଶ୍ରବଣର ବା ଅତୀଂଦ୍ରିୟର ଇଂଦ୍ରିୟ-ପ୍ରତୀତିବୋଧକ 'ରୂପାତ୍ମକ ସାକ୍ଷାତ୍କାର'ର ସିଦ୍ଧାଂତଟି ଅନିବାର୍ଯ୍ୟତା ଲାଭକରିଥାଏ । ନିଷ୍କର୍ଷ ହେଉଛି ଦାର୍ଶନିକର ଦର୍ଶନରେ ବ୍ୟକ୍ତି ଦ୍ରଷ୍ଟା ମାତ୍ର । ଦୃଶ୍ୟ ସହ ତାର ଭାବସଂପୃକ୍ତ ରହିବା ଅପରିହାର୍ଯ୍ୟ ନୁହେଁ; ମାତ୍ର ମିଷ୍ଟିକର ଅଂତଃଚେତନାରେ ପରମତତ୍ତ୍ୱ ସତ୍ତାଗତ ସତ୍ୟ ରୂପରେ ଉଦ୍‌ଭାସିତ ହୋଇଥାଏ । ଏହି ସ୍ୱତଃ ପ୍ରତ୍ୟକ୍ଷିତ ଅଂତରୋପଲବ୍ଧିର ଭିତ୍ତିଭୂମିରେ ହିଁ ସେ ସତ୍ୟ ତେଣୁ ଶୁଷ୍କ ଦାର୍ଶନିକର ଅମୂର୍ତ୍ତ ଭାବନା ନ ହୋଇ

(୮୨) "ଆର୍ଯ୍ୟ ଋଷି ମୁଗଧ ପ୍ରାଣେ ଦେବାବତରଣ"—'ଉଦ୍‌ବୋଧନ'—ଗ୍ରଂଥାବଳୀ, ପୃ. ୯୨

Digitized by PPRACHIN, SOA

ସ୍ପଷ୍ଟ ବାଗ୍‌ବିମଂଡିତ ହୋଇଯାଏ । ଆଲୋକର ପ୍ରତ୍ୟକ୍ଷ ଦର୍ଶନ, ବାଣୀର ପ୍ରତ୍ୟକ୍ଷ ଶ୍ରବଣର ଦୁର୍ଭେଦ୍ୟ କେବଳ ମିଷ୍ଟିକ୍ ହିଁ କରିପାରେ; ଅଥଚ ଦାର୍ଶନିକର ସଂଶୟାର୍ତ୍ତିକା ବୁଦ୍ଧି ଆଲୋକ-ତତ୍ତ୍ୱ ଧ୍ୱନି-ତତ୍ତ୍ୱର ବିଚାର କରିବସେ । ମାତ୍ର ଦର୍ଶନ ବା ଶ୍ରବଣ—ଏମାନେ ମନନ ଭଳି ଅମୂର୍ତ୍ତ ନୁହଂତି । ଇଂଦ୍ରିୟ ଚେତନାମାଧ୍ୟମରେ ଦର୍ଶନୀୟ ବା ଶ୍ରବଣୀୟର ପ୍ରତୀତି । ଦୃଶ୍ୟ ବା ଶ୍ରୁତ ରୂପେ ପ୍ରତ୍ୟକ୍ଷ ପ୍ରାପ୍ତି; ଏବଂ କେବଳ ଆଖିରେ ହିଁ ଦେଖିହୁଏ । କାନରେ ଶୁଣି ହୁଏ । ରହସ୍ୟବାଦୀର ଅଂତଃଦୃଷ୍ଟି, ଅଂତଃଶ୍ରୁତିର କଥା ଯେତେ ଅତୀଂନ୍ଦ୍ରିୟ ହେଲେ ବି ଇଂଦ୍ରିୟର ସମାଂତର ଚେତନାଭୂମିରେ ସେମାନଙ୍କର ଉପସ୍ଥାପନା । ଅଂତଃଚକ୍ଷୁ ମଧ୍ୟ ଚକ୍ଷୁ; ଦୃଷ୍ଟିଶକ୍ତିସଂପନ୍ନ । ତାର କାର୍ଯ୍ୟ ମଧ୍ୟ ପ୍ରତ୍ୟକ୍ଷ କରିବା । ଏହିଠାରେ ଚେତନାଭୂମିରେ ଅମୂର୍ତ୍ତର ମୂର୍ତ୍ତିକୁ ଲଂଘ କିମ୍ବା ସ୍ଥିତି ସାଧିତ ହୁଏ । ଏହା ହିଁ କବିର ପ୍ରେରଣା ଦୃଷ୍ଟି, ଆର୍ଷ ଅନୁଭବ, ମିଷ୍ଟିକ୍‌ର ଧ୍ୟାନ । 'ନେତ୍ରୋତ୍ସବ', 'ଶ୍ରବଣୋତ୍ସବ'ର ତାତ୍ପର୍ଯ୍ୟ ଏଇଠାରେ ଉଦ୍‌ଘାଟିତ ।

'ଦେବାବତରଣ'ରୁ 'ହିମାଚଳେ ଉଦୟ ଉତ୍ସବ' ଏକ ଲଂଘ । ସେ ଲଂଘ କଳ୍ପନାରୁ ଉପଲବ୍‌ଧିକୁ, ବୁଦ୍ଧିରୁ ଭାବକୁ, ମନରୁ ହୃଦୟକୁ ଓ ଅମୂର୍ତ୍ତରୁ ମୂର୍ତ୍ତିକୁ । 'ଦେବାବତରଣ'ରେ ତତ୍ତ୍ୱ ଓ ତାତ୍ତ୍ୱିକ ପୃଥକ୍; କବିଙ୍କର ଦିବ୍ୟ କଳ୍ପନା ଓ ମନନଶୀଳତାରେ ଆର୍ଷ ଅନୁଭବର ଅବଧାରଣ ଓ ବ୍ୟାଖ୍ୟା ପ୍ରୟାସ । 'ଦେବାବତରଣ' ଋଷି-ଉପଲବ୍‌ଧିର ତାତ୍ତ୍ୱିକ ବ୍ୟାଖ୍ୟା; 'ହିମାଚଳେ...'ରେ ସେ ଉପଲବ୍‌ଧିର ବାସ୍ତବତା ସହ କବିସତ୍ତ୍ୱାର ପ୍ରତ୍ୟକ୍ଷ ସଂପୃକ୍ତି । ଏଇ କବିତାରେ କବି ଓ ଋଷି ଭିନ୍ନ ସତ୍ତ୍ୱାଦ୍ୱୟ ମଧୁସୂଦନଙ୍କ ବ୍ୟକ୍ତିସତ୍ତ୍ୱାରେ ଏକ ଓ ଅଭିନ୍ନ ହୋଇ ଅବତୀର୍ଣ୍ଣ । 'ହିମାଚଳେ...'ରେ ଭୂମା ଓ ସୀମା ସଂପର୍କରେ କୌଣସି ଜିଜ୍ଞାସା ନାହିଁ; ଅଛି କେବଳ ବିସ୍ମୟସ୍ତବ୍‌ଧ ମୁଗ୍‌ଧତା । ଅନୁଭୂତି-ବିହ୍ୱଳ ନିର୍ବାକ୍ ଗ୍ରହଣଶୀଳତା, ପ୍ରଶ୍ନହୀନ ଆତ୍ମମଗ୍ନ ଧ୍ୟାନସମାହିତତା ।

'ଦେବାବତରଣ'ରେ ଋଷି-ବ୍ୟକ୍ତିତ୍ୱ କବି-ବ୍ୟକ୍ତିତ୍ୱର ପ୍ରତିନିଧି ସ୍ୱରୂପ । 'ହିମାଚଳେ...'ର କାବ୍ୟପୁରୁଷ ଓ ବ୍ୟକ୍ତିପୁରୁଷ ଏକୀଭୂତ ଚେତନାଗତ । 'ଦେବାବତରଣ'ରେ ବାଣୀ-ଆବାହନ ରହିଛି କଳ୍ପନାଲୋକରେ ଋଷିପ୍ରାଣରେ 'ଦେବାବତରଣ'ର ଅନୁଭବକୁ ରୂପଦେବାପାଇଁ; କାରଣ ସେଠାରେ ବ୍ୟକ୍ତି-କବିଙ୍କର ନିଜସ୍ୱ ଉପଲବ୍‌ଧି-ଜ୍ଞାନର ସାମର୍ଥ୍ୟ ନାହିଁ । ପୁଣି ଭିନ୍ନ ବ୍ୟକ୍ତିତ୍ୱର ଆରୋପ ଅବଲମ୍ବନ ହେତୁ କବିଙ୍କର ନିଜର କେଂଦ୍ରଠାରୁ ଏକ ଅନିବାର୍ଯ୍ୟ ବିଚ୍ୟୁତି ରହିଛି; ସତ୍ତ୍ୱାଂତରକୁ ଯାତ୍ରା ଓ ଚେତନାଂତରକୁ ଅପସାରଣର ପ୍ରୟାସ ରହିଛି । କାବ୍ୟରଚନାରୂପକ ସଚେତନ ପ୍ରୟାସ ଓ କବି-ବ୍ୟକ୍ତିର ଆରୋପ ଏଥିପାଇଁ ମଧୁସୂଦନଂକ ପକ୍ଷେ ଅପରିହାର୍ଯ୍ୟ ହୋଇପଡ଼ିଛି । ମାତ୍ର 'ହିମାଚଳେ...'ରେ ଏ ଯାତ୍ରାଂତର ନାହିଁ, କେଂଦ୍ରଚ୍ୟୁତି ନାହିଁ । ଆତ୍ମପୁରୁଷର ଆତ୍ମସମାହିତ ଧ୍ୟାନମଗ୍ନ ଚେତନାରୁ ଆତ୍ମସଂଗୀତର ଉଚ୍ଚାରଣ, ଉପଲବ୍‌ଧିର ସ୍ପଷ୍ଟ ଉଚ୍ଚାରଣ ଘଟିଛି । ଦିବ୍ୟକଳ୍ପନାର ଆବେଶ, କାବ୍ୟବ୍ୟଂଜନାର ଛଦ୍ମବେଶ ଲୋଡ଼ା ହୋଇନାହିଁ ।

ଲକ୍ଷଣୀୟ, 'ଦେବାବତରଣ'ରେ ବ୍ୟକ୍ତି, କବି ଓ ଋଷି ତ୍ରିବିଧ ବ୍ୟକ୍ତିତ୍ୱର ସମାହାର ଘଟିଛି; ତିନୋଟି ବ୍ୟକ୍ତି ଯେପରି ଏକସ୍ୱରରେ ଗୋଟିଏ କଥା କହିବାକୁ ଚେଷ୍ଟା କରିଛନ୍ତି । ବ୍ୟକ୍ତିସତ୍ତ୍ୱା କବି-ସତ୍ତ୍ୱାକୁ ଅପସୃତ ହୋଇଛି । ସେ ଭକ୍ତକବିଙ୍କ ଚେତନାରେ ପୁଣି ଋଷିସତ୍ତ୍ୱାର ଆରୋପ ଘଟିଛି; ଅର୍ଥାତ୍ ଋଷିର ଉପଲବ୍‌ଧିକୁ କବିର ବାଣୀରେ ଫୁଟାଇବାକୁ ଚେଷ୍ଟା କରିଛି ମଧୁସୂଦନଂକ ବ୍ୟକ୍ତି-ପୁରୁଷ । ମାତ୍ର 'ହିମାଚଳେ...'ରେ ଏଇ ତ୍ରୟୀ ଚେତନା ଅନୁପସ୍ଥିତ । ଏଥିରେ ଋଷି, କବି ଓ ବ୍ୟକ୍ତି ଅଭିନ୍ନଭାବେ ଏକାତ୍ମ ହୋଇଯାଇଛଂତି । ତେଣୁ ସମୁଦାୟ କଥା ବ୍ୟକ୍ତିପୁରୁଷର ନିଜସ୍ୱ

Digitized by PPRACHIN, SOA

ସ୍ୱଗତୋକ୍ତି ହୋଇଉଠିଛି । ତାହା କବି-କଳ୍ପନା ବା ଋଷି-ଦର୍ଶନର କଥା ନୁହେଁ । ପୁନଶ୍ଚ 'ଦେବାବତରଣ'ର ବକ୍ତବ୍ୟ ଅତୀତର ପୃଷ୍ଠଭୂମିରେ । ଏହା ପ୍ରାକ୍ତନ ଋଷି-ଉପଲବ୍ଧିକୁ ବର୍ତ୍ତମାନରେ ଉପସ୍ଥାପନା କରିବାର କାବ୍ୟିକ ପ୍ରୟାସ । ମାତ୍ର 'ହିମାଚଳେ'ର ବଙ୍କାପ୍ତି ବର୍ତ୍ତମାନ । ବ୍ୟକ୍ତି-ଉପଲବ୍ଧି କବି-ବାଣୀରେ ପ୍ରସ୍ଫୁରିତ ହେବା ଅବକାଶରେ ବ୍ୟକ୍ତି ଏଠାରେ ନିଜେ ଋଷି, ନିଜକୁ ଅତିକ୍ରମ କରି ମଧ୍ୟ ଦେଖୁଛନ୍ତି; ପୁଣି କବି ସେ ଦୃଶ୍ୟକୁ ରୂପଦାନ କରୁଛନ୍ତି । ସବୁ ପରିଚୟ ଭିତରେ ବ୍ୟକ୍ତିଭାବନାଟି ପରିଚ୍ଛନ୍ନ ହୋଇ ଫୁଟିଉଠିଛି । ଆଉ ଋଷିର କଥା କିଛି ନାହିଁ; କବିର କଥା ମଧ୍ୟ କିଛି ନାହିଁ । 'ହିମାଚଳେ···' ଆମୂଳାଂତ ମଧୁସୂଦନଂକ ଆତ୍ମୋପଲବ୍ଧିର ହିଁ ବିମୁଗ୍ଧ ସ୍ୱଗତାଳାପ ।

'ହିମାଚଳେ···' ତେଣୁ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର କଥନ; ପ୍ରାଣୋପଲବ୍ଧିର ଆବେଗ ସଂଶ୍ଲେଷଣ । 'ଦେବାବତରଣ' ଏପରି କୌଣସି ମୁହୂର୍ତ୍ତର କଥା ନୁହେ ନାହିଁ । 'ଦେବାବତରଣ'-ବର୍ଣ୍ଣିତ ମୁହୂର୍ତ୍ତ କାବ୍ୟପୁରୁଷର ପ୍ରାଣୋପଲବ୍ଧିର ମୁହୂର୍ତ୍ତ ନୁହେଁ । ତାହା ମଧୁସୂଦନଂକ ଚିଂତନ-ପ୍ରୟାସର ଊର୍ଦ୍ଧ୍ୱକ୍ଷେପଣ । ମାତ୍ର 'ହିମାଚଳେ···'ରେ ସେହି ଚିଂତନପ୍ରୟାସ ସ୍ତବ୍ଧ; କାବ୍ୟ-କଳ୍ପନା ମୂକ । ମିଷ୍ଟିକ୍ ଉପଲବ୍ଧିର ପରମ ମୁହୂର୍ତ୍ତଟି ସକଳ ସଚେତନ ମାନସିକ ପ୍ରୟାସର ଊର୍ଦ୍ଧ୍ୱରେ । ସେ ମୁହୂର୍ତ୍ତରେ ତେଣୁ ଅନଂତ ନୀରବତା । ମନର କିଛି ପ୍ରଶ୍ନ ନାହିଁ । ଚିତ୍ତରେ ଉଦ୍‌ବେଳନ ନାହିଁ । ସମଗ୍ର ସତ୍ତ୍ୱରେ ଏକ ପରିପୂର୍ଣ୍ଣ ନୀରବ ଗ୍ରହଣଶୀଳତା । ବଂଶୀ ଶୂନ୍ୟ; ସେଇଥିପାଇଁ ସେଥିରେ ଅନାହତ ସ୍ୱର-ଝଂକାର । ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ହିଁ ନିର୍ଦ୍ଦିଷ୍ଟ ସ୍ୱରଲହରୀ ସୃଷ୍ଟି ହୋଇପାରେ । 'ହିମାଚଳେ···' ସେଇ ମୁହୂର୍ତ୍ତର ନିର୍ଦ୍ଦିଷ୍ଟ ଶାମ-ସଂଗୀତ; ତାହା ଉଦୟ-ଉତ୍ସବର, ନେତ୍ରୋତ୍ସବର, ଶ୍ରବଣୋତ୍ସବର 'ମହାମହୋତ୍ସବମୟ' ଦୁର୍ଲ୍ଲଭ ମୁହୂର୍ତ୍ତ !

ଦେବାବତରଣ ଏକ ବକ୍ତବ୍ୟ, ଯେକୌଣସି କାଳରେ, ଯେକୌଣସି ସ୍ଥାନରେ, ଯେକୌଣସି ବ୍ୟକ୍ତି ଏଇ ଆର୍ଷଚେତନା ସମ୍ପର୍କରେ ପ୍ରବୁଦ୍ଧ ଜିଜ୍ଞାସା କରିପାରେ, କାବ୍ୟୋକ୍ତି କରିପାରେ । 'ହିମାଚଳେ···'ର ଉପଲବ୍ଧି କିଂତୁ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ, ନିର୍ଦ୍ଦିଷ୍ଟ ବ୍ୟକ୍ତିସତ୍ତ୍ୱର ନିର୍ଦ୍ଦିଷ୍ଟ ଉପଲବ୍ଧିରେ ହିଁ ସମାଗତ ହୋଇଥାଏ । ଏହା ପ୍ରବୁଦ୍ଧ ମନନତାର ନୁହେଁ; ଉଦ୍‌ବୁଦ୍ଧ ଅଂତରାତ୍ମାର ସମ୍ପଦ । ତେଣୁ ଏଥିରେ ଆତ୍ମାର ସ୍ୱର ଧ୍ୱନିତ, ମର୍ମମୂଳରେ ଆକୂତି ସ୍ପଂଦିତ ।

Digitized by PPRACHIN, SOA

# ଗୋପବଂଧୁ ଦାଶ (ଖ୍ରୀ: ୧୮୭୭-୧୯୨୮)

ପୁଣ୍ୟାତ୍ମା ଗୋପବଂଧୁଂକ ଆର୍ଷ-ବ୍ୟକ୍ତିତ୍ୱର ମହାନ୍ ପରିଚୟଟି ତାଂକର କାବ୍ୟ-ଭାବନା ବିସ୍ତୃତ ଅବକାଶରେ ସ୍ପଷ୍ଟତର ପ୍ରତିଭାତ ହୋଇଥାଏ । ଗୋପବଂଧୁଂକ ଜୀବନୀ ଓ କର୍ମ, ଭାବ ଓ ବାଣୀ ସହିତ ଏକ ଆଦର୍ଶବାଦୀର ଗୁରୁଗଂଭୀର ରୂପ ସହ ଏକ ପ୍ରେମିକ ବ୍ୟକ୍ତିତ୍ୱର ଶାଂତକୋମଳ ଓ ସ୍ନେହ-ମଧୁର ଛବିଟି ମଧ୍ୟ ଫୁଟିଉଠେ । ଏଇ ପ୍ରେମର ମହାନ୍ ଇଂଗିତ ହିଁ ତାଙ୍କ ଜୀବନର ଗତିଛଂଦ, କର୍ମାଭିବ୍ୟକ୍ତି ଓ କାବ୍ୟପ୍ରେରଣା ରୂପେ ଉପଲବ୍ଧ ହୋଇଥାଏ ।

ଓଡ଼ିଆର ମୁଗ୍ଧ ପ୍ରାଣରେ ଗୋପବଂଧୁ କର୍ମଯୋଗୀ ରୂପେ ଅଭିନଂଦିତ । ଓଡ଼ିଆ ସାହିତ୍ୟର ବିସ୍ତୃତ କ୍ଷେତ୍ରରେ ସେ କବି-ଯୋଗୀ, ଋଷି-ମନୀଷୀ ରୂପେ ସମାଦୃତ । ତାଙ୍କର କାବ୍ୟ-ବାଣୀରେ ଯେଉଁ ଜୀବନ-ବାର୍ତ୍ତା ପ୍ରକଟିତ, ତାର ଆବେଦନ ଯେ ମାନବର ସାମଗ୍ରିକତା ପ୍ରତି ଉନ୍ମୁଖ, ଲୌକିକରୁ ଲୋକୋତ୍ତର ପର୍ଯ୍ୟଂତ ତାର ବଳୟ ବିସ୍ତାରିତ । ଏହି କାବ୍ୟ-ସଂବାଦ ସ୍ୱଳ୍ପରେ ଭୂମାର ସଂଦେଶ ବହନ କରେ; ତାଙ୍କ ଚେତନାର ବିପୁଳାବଧାରଣର ସାମର୍ଥ୍ୟ ମଧ୍ୟ ପ୍ରକଟ କରେ । ତାଂକ ରଚନାର ଅସୀମ ଜିଜ୍ଞାସା କେବଳ କାବ୍ୟଭାବନାରୂପେ ନୁହେଁ, ଅଂତର୍ଲବ୍ଧ ଜୀବନ-ସତ୍ୟ ରୂପେହିଁ ରହସ୍ୟବାଦୀ ରୂପପରିଚୟକୁ ଉପସ୍ଥାପିତ କରେ ।

ଗୋପବଂଧୁଂକ କବିତାର ରହସ୍ୟବାଦୀ ସ୍ୱରୂପର ମୂଳ ସଂବେଗଟି ଆଧ୍ୟାତ୍ମିକତା ଏବଂ ତାର ଆଦ୍ୟ ଉନ୍ମେଷ ରୂପ ପ୍ରେମଭାବନାତ୍ମକ । ଅଗ୍ରଜ କବି ମଧୁସୂଦନଙ୍କ ଆର୍ଷ-ଉପଲବ୍ଧିଶାଣିତ ପ୍ରୋଜ୍ଜ୍ୱଳ ବିଶ୍ୱାସ ଓ ଗଭୀର ପ୍ରତ୍ୟୟ ଏବଂ ପରବର୍ତ୍ତୀ କାଳରେ ଦରଦୀ କବି ଲକ୍ଷ୍ମୀକାଂତଂକ ପ୍ରଭୁ-ଅନୁଗତ୍ୟର ମାର୍ମିକତା ଏଇ ରହସ୍ୟ ଭାବନାରେ ଉପଲବ୍ଧ ହୋଇଥାଏ । 'ଅଧ୍ୟାତ୍ମଦୀପ୍ତି'ଂକୁ ନେଇ ଗୋପବଂଧୁଂକର ରହସ୍ୟବାଦୀ କାବ୍ୟଜିଜ୍ଞାସା ତାଙ୍କର ଅନ୍ୟାନ୍ୟ ସାମାଜିକ ଉଦ୍ଦେଶ୍ୟ-ପ୍ରଣୋଦିତ କାବ୍ୟାଦର୍ଶ ମୂଳରେ ଅନୁଚ୍ଚାରିତ ଜୀବନ-ଜିଜ୍ଞାସା ରୂପେ ବିଦ୍ୟମାନ । ଗୋପବଂଧୁ ସମାଜବାଦୀ, ସାମ୍ୟବାଦୀ, ହିତବାଦୀ, ନୀତିବାଦୀ, ବିଶ୍ୱବାଦୀ, ଜାତୀୟବାଦୀ, ମାନବବାଦୀ ଆଦି ଯେତେ ବିଶେଷଣ-ମଂଡିତ ହେଲେ ବି ଆମୂଳାଂତ ସେ ଜୀବନବାଦୀ । ରହସ୍ୟବାଦୀ ଜୀବନଦର୍ଶନର ମୂଳ ସ୍ୱରରୁ ଚେଷ୍ଟ ଏମାନଂକ ରୂପାଦର୍ଶ ଉଚ୍ଚାରିତ । ଭକ୍ତି ଓ ଆଧ୍ୟାତ୍ମିକତା, ପ୍ରୀତି ଓ ଆଂତରିକତା, ଶ୍ରଦ୍ଧା ଓ ସହୃଦୟତା ତାଂକ ଚେତନାରେ ଧର୍ମ, ଈଶ୍ୱର, ପ୍ରେମର ରୂପନିର୍ଧାରଣ କରିଛି; କର୍ମର ମାଗସଂକେତ ବାଢ଼ିଛି । କଠୋର କର୍ମ ଓ କୋମଳ ପ୍ରେମର ସାଧନା-ବୈଚିତ୍ର୍ୟ ଭିତରେ ସେ ଏକାଧାରରେ ସନ୍ନ୍ୟାସୀ ପୁଣି ସଂସାରୀ; ଆତ୍ମବିରାଗୀ ମାତ୍ର ନିଖିଳ ଅନୁରାଗୀ । କର୍ତ୍ତବ୍ୟର ମରୁପଥରେ ସେ ଶୁଷ୍କପ୍ରାଣର ଜ୍ୱାଳାମାନଙ୍କୁ ବକ୍ଷରେ ସଂଗୋପିତ କରି ଧରାପାଇଁ ପ୍ରେମ-ଜାହ୍ନବୀ ବୁହାଇବା ପାଇଁ ଭଗୀରଥ-ସାଧନା କରିଛଂତି । ଏ ଗୋପବଂଧୁ ମହାନ୍ ପ୍ରେମୀ : କଳାପ୍ରେମୀ ଓ କର୍ମପ୍ରେମୀ, ଜୀବନପ୍ରେମୀ ଓ ବିଶ୍ୱପ୍ରେମୀ । ତାଂକର କବି ଓ ଭାବୁକସତ୍ତା ପ୍ରେମର ରସସାଧନା ଓ ରହସ୍ୟ ସଂଧାନରେ ଅନୁବ୍ରତୀ । ଏହା ସ୍ୱଦେଶପ୍ରୀତି, ବିଶ୍ୱପ୍ରୀତି ଓ ବିଭୁପ୍ରୀତି ରୂପେ ପୁଣି ମାନବପ୍ରୀତି, ଜୀବପ୍ରୀତି ଓ ପ୍ରକୃତି-ପ୍ରୀତି ରୂପେ ତାଂକ ସାଧନାଦର୍ଶକୁ ସୂକ୍ଷ୍ମରୂପିତ କରିଛି । ଗୋପବଂଧୁଂକ ଆଚରିତ ସାଧନାଦର୍ଶ ବସ୍ତୁତଃ ଏକ କବିର ହିଁ ଜୀବନାଦର୍ଶ । "ବୈରାଗ୍ୟ ସାଧନେ ମୁକ୍ତି"—ଗୋପବଂଧୁ ସେ ମୁକ୍ତିକୁ କବିର ଦୃପ୍ତ

Digitized by PPRACHIN, SOA

ନାସ୍ତିବାଣୀ ("ସେ ଆମାର ନୟ'—ରବୀନ୍ଦ୍ରନାଥ) ଶୁଣାଇଦେଇଥିଲେ । ଆତ୍ମବିରାଗୀ ଏଇ ବ୍ୟକ୍ତିତ୍ୱର ପ୍ରଚଣ୍ଡ ଆକର୍ଷଣୀୟ ପାଶ୍ୱର୍ତି କେନ୍ଦ୍ର ଥିଲା ବିଶ୍ୱାନୁରାଗ । ନିଖିଳାନୁରାଗ ତାଙ୍କର କର୍ମପ୍ରେରଣା ଥିଲା; ଆଉ ଜୀବନାନୁରାଗ ତାଙ୍କର କାବ୍ୟପ୍ରେରଣା ଥିଲା । କବିତା ଲେଖିବାପାଇଁ ଗୋପବନ୍ଧୁଙ୍କର ଜୀବନରୁ ପ୍ରେରଣା ସଂଗ୍ରହ କରିବା ପ୍ରୟୋଜନ ହେଉନଥିଲା । ସ୍ୱୟଂ ଜୀବନ ତାର ସକଳ ବ୍ୟକ୍ତ ରୂପ ଓ ଅବ୍ୟକ୍ତ ଭାବନା, ପ୍ରକାଶିତ ଓ ଆଭାସିତ ଯାବତୀୟ ରହସ୍ୟକୁ ନେଇ ଗୋପବନ୍ଧୁଙ୍କ ନିକଟରେ ମନ୍ତ୍ର ରହସ୍ୟ ରୂପେ ଉଦ୍‌ବୋଧିତ ହେଉଥିଲା ଏବଂ କର୍ମଜୀବନର ମନ୍ତ୍ର ଶ୍ଳୋକ ରୂପେ ସମୁଚ୍ଚାରିତ ହେଉଥିଲା । ଏଇ ଦୃଷ୍ଟିରେ ହିଁ ଗୋପବନ୍ଧୁ ଋଷି-କବି ।

ଗୋପବନ୍ଧୁ ଜଣେ ରହସ୍ୟବାଦୀ କବି କେବଳ ନୁହନ୍ତି, ଅର୍ଥାତ୍ ତାଙ୍କର ରହସ୍ୟଧର୍ମିତା କେବଳ କାବ୍ୟସାଧନାମାର୍ଗରେ ସାହିତ୍ୟିକ ଫଳଶ୍ରୁତି ନଥିଲା । ତାହା ଏକ ପ୍ରମୂର୍ତ୍ତ ମିଷ୍ଟିକ ବ୍ୟକ୍ତିତ୍ୱ । ଜାତି-ସିଦ୍ଧ ଜନକ ସଦୃଶ ବିଶ୍ୱ ଯାହାର ସାଧନାବେଦୀ, ଜୀବନ ଯଜ୍ଞ ନୈବେଦ୍ୟ ଏବଂ ପ୍ରେମ ସାଧନାମନ୍ତ୍ର । ସେ ପ୍ରେମ ଆସକ୍ତ ବା ଅନାସକ୍ତ ନୁହେଁ; ଅନୁରାଗସିକ୍ତ । ଜଗତର ଅନୁରାଗରେ ଜୀବନ ଉତ୍ସର୍ଗର ଆତ୍ମ-ନିର୍ଲିପ୍ତ ଏ ମୌନ ସାଧନା ।

ଗୋପବନ୍ଧୁଙ୍କ କାବ୍ୟମାନସ ସେହି ସାରସ୍ୱତ ପରମ୍ପରାର ଉତ୍ତରାଧିକାରୀ; ଯାହା ବୈଦିକ ଚିନ୍ତନ ଓ ବେଦାନ୍ତ ବ୍ୟାଖ୍ୟାନ ନିର୍ଦ୍ଦିଷ୍ଟ ଆତ୍ମସାକ୍ଷାତ୍କାର ମାର୍ଗରେ ବିଶ୍ୱଦର୍ଶନକୁ ଲକ୍ଷ୍ୟ ରଖୁଥିଲା ଏବଂ ଭକ୍ତି-ପ୍ରୀତିର ବୈଷ୍ଣବୀୟ ଆନୁଗତ୍ୟରେ ପ୍ରେମ-ସମର୍ପଣକୁ ଉତ୍ସର୍ଗମନ୍ତ୍ର ରୂପେ ଉଚ୍ଚାରଣ କରୁଥିଲା । ଜନ୍ମଭୂମି 'ସ୍ୱର୍ଗାଦପି ଗରୀୟସୀ'ର ଦୃପ୍ତ ଘୋଷଣା ଭିତରେ ସେ 'ଭୂମି-ପୁତ୍ର, ଅକାଶ-ସୁତ'ର ଆଭିଜାତ୍ୟ ଉଦ୍‌ବୋଧିତ କରୁଥିଲା; ପୁଣି ସେ କୌଳିନ୍ୟର ମହାନ୍ ଗୌରବକୁ ବିଶ୍ୱ ସହ ଭାଗବାଣ୍ଟି ଭୋଗ କରିବାକୁ ପୁଣ୍ୟୋଚିତ କର୍ମ ଓ କୁଳୋଚିତ ଧର୍ମ ବୋଲି ମାନିନେଉଥିଲା ।

ଦେଶମାତୃକାକୁ କବିଙ୍କର ଜାତି-ପ୍ରୀତି ରୂପ ପ୍ରଥମ ଶ୍ରଦ୍ଧାଞ୍ଜଳି ନିବେଦନ ସମଗ୍ର ପୃଥିବୀକୁ ଭୂମି-ସୁତର ପ୍ରଣାମ ସ୍ୱରୂପ ଥିଲା । ଯେଉଁ ମାଟି, ଯେଉଁ ସୀମା-ସରହଦଚିହ୍ନିତ ପାରିପାର୍ଶ୍ୱିକର ବିଶେଷ ସମ୍ପର୍କରେ ତାଙ୍କ ପାର୍ଥିବ ସତ୍ତାର ଜନ୍ମ ଓ ପୁଷ୍ଟି, ଜୀବନର ବିବିଧ ପ୍ରକାଶର ସମାବେଶ ଓ ବିକାଶର ଆୟୋଜନ, ସ୍ୱତନ୍ତ୍ର ମମତାସୂତ୍ରରେ ଯାହା ସହ ପ୍ରାଣର ବିଶେଷ ଏକ ବନ୍ଧନଯୋଗେ ଏ ପୃଥିବୀ ସହ ଅପାର୍ଥିବ ମାନବାତ୍ମାର ସମ୍ପର୍କ ସ୍ଥାପନ, ସେହି ଉତ୍କଳଜନନୀର ସ୍ନେହାଞ୍ଚଳ ଭିତରେ ହିଁ କବି ବିଶ୍ୱମାତୃକାର ମମତା-ମଧୁର ସ୍ପର୍ଶ ଓ ଦିବ୍ୟଜନନୀଙ୍କର କଲ୍ୟାଣମୟ କରୁଣାକୁ ଅନୁଭବ କରିଥିଲେ; ସେଇ ମିଷ୍ଟିକ୍ ଅନୁଭବର ସାମଗ୍ରିକ ସ୍ୱୀକୃତି ଭିତରୁ ହିଁ ତାଙ୍କର କର୍ମଦର୍ଶନର ଧାରା ଏଭଳି ସାରସ୍ୱତ ଉଦ୍‌ଯୋଗରେ ପ୍ରମୂର୍ତ୍ତିତ ହୋଇପାରିଥିଲା ।

ଗୋପବନ୍ଧୁଙ୍କ ରଚନାବଳୀରୁ ତାଙ୍କ ଚିନ୍ତା ଓ ଦର୍ଶନର ଯେଉଁ ରୂପ-ପରିଚୟ ମିଳିଥାଏ, ତାହା ମୁଖ୍ୟତଃ ରହସ୍ୟବାଦୀ ଭାବାନୁସୃତ ଆଧ୍ୟାତ୍ମିକ ସିଦ୍ଧାନ୍ତର ସମର୍ଥନ ପ୍ରାପ୍ତ; ଯଥା :

୧ । ମନୁଷ୍ୟର ଦିବ୍ୟ ଉତ୍ସ ।

୨ । ପାର୍ଥିବ ଚେତନାରେ ଏ ଦିବ୍ୟ-ସୌଭାଗ୍ୟ ବଞ୍ଚିତ ହୋଇ ରହିବାର କାରଣ ସୀମାବନ୍ଧନ, ଅର୍ଥାତ୍ ଯାବତୀୟ ପରାଧୀନତା ।

୩ । ଏ ପରାଧୀନତା ବାହ୍ୟ, ପୁଣି ଆତ୍ମିକ । ରାଜନୈତିକ ତଥା ସାମାଜିକ ସ୍ତରରେ ବ୍ୟକ୍ତି-ସ୍ୱାଧୀନତାର ଖର୍ବତ୍ୱ ଏହାର ବାହ୍ୟରୂପ । ଆତ୍ମିକ-ସ୍ତରରେ ବିଷୟବାସନାର ଉଗ୍ରତା ଅହଂମନ୍ୟତା ଓ ଆତ୍ମପ୍ରତ୍ୟୟହୀନତା ତାକୁ ଶୃଙ୍ଖଳିତ କରିଥାନ୍ତି ।

Digitized by PPRACHIN, SOA

୪ । ନିର୍ବାଧ-ଆତ୍ମାରେ ଦୈବତ ସଂଭାବନା ଜାଗ୍ରତ ହୁଏ । ନିଷ୍କାମ କର୍ମସାଧନାରେ ସେ ଦେବ୍ୟତ୍ୱର ଅଧିକାର ଆସେ । ଏ କର୍ମସାଧନାର ଉତ୍ସ ବ୍ୟକ୍ତିର ସ୍ୱ-ହୃଦୟ ଏବଂ ପରିବୃତ୍ତି ଦେଶ, ସମାଜ ଓ ବିଶ୍ୱ । ସାମାଜିକ ଓ ରାଜନୈତିକ ସ୍ୱାଧୀନତା ବିନା ସ୍ୱାଧୀନ କର୍ମ-ଉଦ୍ୟୋଗ ସଂଭବ ନୁହେଁ; ପୁଣି ନିର୍ମଳ ଚିତ୍ତ ଓ ନିଃସ୍ୱାର୍ଥ ମନୋଭାବ ବ୍ୟତୀତ ସେ ସ୍ୱାଧୀନତା ଫଳପ୍ରସୂ ହୋଇ-ପାରେନାହିଁ । ଆଧ୍ୟାତ୍ମିକତା ତେଣୁ ଆତ୍ମିକ ଓ ବାହ୍ୟିକ ଉଭୟ ସ୍ୱାଧୀନତା ବା ବିମୁକ୍ତିର ଅଭିଳାଷୀ । ସେଇଥିପାଇଁ ଭାରତୀୟ ସ୍ୱାଧୀନତା-ସଂଗ୍ରାମର ମୂଳପ୍ରେରଣା ବୈଦିକ ଋଷିକବିର ବାଣୀରୁ ତିଳକ, ଗାଂଧୀ, ଶ୍ରୀ ଅରବିଂଦ ଓ ରବୀଂଦ୍ରନାଥଙ୍କଠାରେ ଆଧ୍ୟାତ୍ମିକ, ଦେଶାତ୍ମକ ତଥା ବିଶ୍ୱାତ୍ମକ ସଂବୋଦ୍‌ବୋଧନ ଲାଭ କରିଥିଲା । ଆଧ୍ୟାତ୍ମିକତାର ଆଲୋକ-ଆଶୀର୍ବାଦଦୀପ୍ତ ଏ ମନଶ୍ଚେତନା ହିଁ ଗୋପବଂଧୁଂକ ଉଦାର ଦେଶପ୍ରାଣତା ସହ ଗଭୀର ଜାତୀୟତାର ସମନ୍ୱୟମୂଳକ ରୂପାଦର୍ଶଟି ସୁନିରୂପିତ କରିଥିଲା । (୧) ତାଂକ ମତରେ "ଜନ୍ମଭୂମିର ଉନ୍ନତିରେ ଯଥାସଂଭବ ଆତ୍ମନିୟୋଗ କରିପାରିଲେ ବିଶ୍ୱସେବା କଲୁଁ ବୋଲି ଆଶ୍ୱସ୍ତ ହେବୁ, ଆଂଭେମାନେ ଉତ୍କଳସେବାରେ ଭାରତ ଓ ବିଶ୍ୱସେବା କରିପାରିବୁ, ଉତ୍କଳପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ, ଉତ୍କଳ-ହୃଦୟ-ତଂତ୍ରୀରେ ବିଶ୍ୱମାନବର ହୃଦୟର ଗୀତ ଶୁଣିବୁ ।" (୨)

ଏ ଜାତୀୟତା-ନିଷ୍କର୍ଷିତ ବିଶ୍ୱତୋମୁଖିତା ଗୋପବଂଧୁଂକ କର୍ମଜୀବନର ଉଦାର ବିଶ୍ୱାନୁଭବରୁ ସଂପ୍ରେରିତ ଓ ଉଦାର-ମାନବିକତାର (୩) ବିଶ୍ୱଜାଗତିକ (Cosmic) ଭାବାଦର୍ଶ-ପ୍ରଣୋଦିତ ବୋଲି ବିବେଚନା କରାଯାଇପାରେ । ତାଂକ କାବ୍ୟୋଚ୍ଚାରଣରେ ହିଁ ସେ ଜୀବନାନୁଭବର ମିଷ୍ଟିକ୍ ସଂକେତଟି ମର୍ମ-ଗୁଢ଼ ।

୫ । ବିଶ୍ୱକଲ୍ୟାଣର ମୂଳ ମନସ୍ତତ୍ତ୍ୱଟି ହେଉଛି ବିଶ୍ୱପ୍ରେମ । ତାର ସମ୍ୟକ୍ ଉଦ୍‌ବୋଧନ ବିଶ୍ୱ-କରୁଣାରେ । ବିଶ୍ୱ-ଦୁଃଖକୁ ନିଜ ହୃଦୟର ସଂବେଦନା ଭିତରେ ଲାଭ କରି ସିଦ୍ଧାର୍ଥ ଗୌତମ ବୁଦ୍ଧତ୍ୱର ସାଧନା କରିଥିଲେ ଓ ଯୀଶୁ ଅନଂତ ପ୍ରେମର ଖ୍ରୀଷ୍ଟୀୟ ପ୍ରତିଶ୍ରୁତି ଦେଇପାରିଥିଲେ । ଗୋପବଂଧୁ ନିଜ ଦୁଃଖାନୁଭୂତିରେ ବିଶ୍ୱଦୁଃଖର ପ୍ରତିଫଳନ ଦେଖିଛଂତି । ବ୍ୟକ୍ତିଗତ ଭାବେ ଚିରଦୁଃଖୀ ସେ; ଦୁଃଖାତୀତର ସାଧନା ତେଣୁ ତାଂକର ଅପର ପାଇଁ । ତାହା ଓଡ଼ିଆ ପାଇଁ, ଭାରତୀୟ ପାଇଁ ଏବଂ ସେଇ ସୂତ୍ରରେ ବିଶ୍ୱଜନ ପାଇଁ । ଓଡ଼ିଶାର ଜଗନ୍ନାଥଂକୁ ମୈତ୍ରୀଦେବ ରୂପେ ଗ୍ରହଣ କରିବା ଓ ଇଷ୍ଟଦେବରୂପେ ବରଣ କରିବା ମୂଳରେ ବିଶ୍ୱ-ସ୍ୱୀକୃତିର ବିପୁଳ ଆକୂତିଟି ବଳବତ୍ତର । ବିଶ୍ୱଗତ ଭାଗବତ ଐକ୍ୟବୋଧ ତାଙ୍କ କର୍ମଜୀବନର ମହାଶ୍ଳୋକ ରୂପେ ଉଦ୍‌ବୋଧିତ ହୋଇଛି । ତାଙ୍କ ହୃଦୟରେ ଲୋକହିତ ଓ ନିଖିଳପ୍ରୀତି, ଜାତିପ୍ରେମ ଏବଂ ଜଗତ୍‌ଭାବନା ବିମିଶ୍ରିତ ହୋଇ ରହିଛି । ଏ ଚେତନାରେ ଉପନିଷଦ୍‌ର ଆତ୍ମା ବ୍ରହ୍ମ ଅନୁଭବ ଓ ବିଶ୍ୱୈକ୍ୟ ଭାବଧାରା ଅଂତଃସଂଗୁପ୍ତ ରହିଛି । ପରବର୍ତ୍ତୀ ଓଡ଼ିଆ କାବ୍ୟଚେତନାର ମାନବତାବାଦ, ସାମ୍ୟବାଦ ଓ ପ୍ରଗତିବାଦ ଗୋପବଂଧୁଙ୍କର ଏଇ ଜୀବନାଦର୍ଶ-ଉଦ୍‌ବୁଦ୍ଧ ।

---

(୧) "ଜାତୀୟତା ପୋତେ ଜୀବନ ବୋଇତ
ଯୋଜିବା ତ୍ରିପ୍ରତି ଜନର ବିହିତ ।"—ଅବକାଶଚିନ୍ତା-ପୃ. ୬୦

(୨) ଗୋପବଂଧୁ ପରିକ୍ରମା—ପୃ. ୨୩୭

(୩) "ନିଜ ସୁଖ ଲାଗି ଜାତ ନୁହେ ହିନ୍ଦୁ,
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।"—ଅବକାଶଚିନ୍ତା-ପୃ. ୬୨

Digitized by PPRACHIN, SOA

ଗୋପବଂଧୁଂକ କବିତା ଜାତୀୟତାର ତୀବ୍ର ଚାପ ସଂଗ୍ରୁ ଅବକାଶରେ ବି ବ୍ୟକ୍ତିର ମାନବତ୍ୱ ଓ ଆତ୍ମାର ଦିବତ୍ୱର ମହିମାକୁ ବାରବାର ଉଦ୍ଘାଟନ କରିଛି । ଏଇ ଦିବ୍ୟ-ଉତ୍ସତ୍ୱ ଓ ଦିବ୍ୟ-ସଂଭାବନାର ଆଧ୍ୟାତ୍ମିକ/ରହସ୍ୟବାଦୀ ପୃଷ୍ଠଭୂମିରେ କର୍ମ-ଅନ୍ୱେଷାର ମୂଳ ପ୍ରେରଣାଟି ପ୍ରଚଂଡ଼ ଉତ୍ସାହ, ଅଦମିତ ବିଶ୍ୱାସ, ନିଷ୍ଠା ଓ ପ୍ରତ୍ୟୟ ସହ ଈଶ୍ୱରେଚ୍ଛାକୁ ରୂପାୟିତ କରିବାପାଇଁ ତାଂକ ବ୍ୟକ୍ତିଗତ ଜୀବନକୁ ଜାତି, ଦେଶ ଓ ବିଶ୍ୱ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦେବାର ଅମିତ ଶକ୍ତିରେ ସଂପ୍ରେରିତ କରିଦେଇଛି । "ବିଶ୍ୱ-ପିତାଂକ ରାଜ୍ୟରେ ପ୍ରକୃତ ମନୁଷ୍ୟ ହୋଇ ତାଂକ ଉଦ୍ଦେଶ୍ୟ ପୂର୍ଣ କରିବା" (୪) ଶିକ୍ଷା, ସେ ଥରେ ମନ୍ତବ୍ୟକ୍ତ କରିଥିଲେ । ରାଜ୍ୟ 'ବିଶ୍ୱପିତାଂକର', ସାଧନା 'ମନୁଷ୍ୟତ୍ୱ'ର ଏବଂ ଲକ୍ଷ୍ୟ 'ଈଶ୍ୱରଇଚ୍ଛାପୂର୍ଣ' ଏ ମଂଜ ରହସ୍ୟ ଭିତରେ ତାଙ୍କର କର୍ମ-ପ୍ରାଣନାର ଭୂୟୋଦର୍ଶନଟି ସ୍ୱୀକୃତ । ପୁଣି 'ପୂର୍ଣ ମାନବତ୍ୱ' ଯେଉଁ ଚେତନା ସାମର୍ଥ୍ୟକୁ ଆତ୍ମସ୍ଥ କରେ ତାହା ଦିବ୍ୟଚେତନାର ସମୁଚ୍ଚ ଶିଖର । ପୂର୍ଣମାନବତ୍ୱର ସାଧନା ଦିବ୍ୟତ୍ୱର ଏଇ ସମୁନ୍ନତ କୋଟୀରୁ ଆରୋହଣ ସାମର୍ଥ୍ୟ ଲଭ ପାଇଁ ଅଭିଳାଷୀ ଓ ଅପେକ୍ଷିତ । ଗୋପବଂଧୁଂକର ଜୀବନସାଧନାରେ ସେହି ରହସ୍ୟାଦର୍ଶ ପ୍ରତିଫଳିତ । ତାଂକର ଭୁବନପ୍ରୀତି ଓ ମାନବତାବାଦ, ଜାତୀୟଗାନ ଓ ସ୍ୱଦେଶାନୁରାଗ, ବ୍ୟକ୍ତିଗତ ପ୍ରଣୟ ଓ ହୃଦୟାନୁଭବ, କର୍ମଫଳ-ବିରତି ଓ କର୍ମସଂଗୀତ ସବୁ କିଛି ଈଶ୍ୱରଙ୍କୁ ସମର୍ପିତ । ଏ ସମର୍ପଣରେ ତାଂକ ଅଧ୍ୟାତ୍ମିକ-ନିଷ୍ଠାଲୋକର ଦୃଢ଼ ଦୁର୍ଗଂସ୍ତରଟି ଉଦ୍‌ଭାସିତ । ଉଦାସୀନତା, ବୈରାଗ୍ୟ, ସଂଶୟ ଓ ପ୍ରତିକ୍ରିୟା-କ୍ଷୁବ୍ଧ ବିଭଂଗ ରୂପଚିତ୍ର ପରିବର୍ତ୍ତେ ସେ ଦୀପ୍ତ ସ୍ତଂଭରେ ତାଂକ ଅଂତରର ସରସୋଜ୍ଜ୍ୱଳ ଭାବଲୋକଟି ପ୍ରମୂର୍ତ୍ତିତ ।

ନିଷ୍କାମ କର୍ମର ସଂଗ୍ରାମ-କଠୋରତା ଭିତରେ ସନ୍ନ୍ୟାସୀର ଗୈରିକ ପଥରେ ଏକାକୀ ଚାଲିବାବେଳେ ଗୋପବଂଧୁ ସାମୟିକ ଯେଉଁ ଗୃହାଶ୍ରୀତଳ ଆର୍ଦ୍ର ତାର ସ୍ୱର୍ଣଟିକକ ପାଇଁ ଆଶାୟୀ ଥିଲେ; ତାହା ତାଙ୍କର କାବ୍ୟଲୋକର ମେଘଗ୍ରସ୍ତ । ତାଂକ କବିତା, ସ୍ୱଦେଶଭାବନା ଉଦ୍‌ବୁଦ୍ଧ ଥିଲା; ମାତ୍ର ତାଙ୍କ ସହଜ କବିତ୍ୱ ଦେଶ-ସୀମା ଲଙ୍ଘନକରି ବ୍ୟକ୍ତିଗତ ଓ ସାର୍ବଜନୀନତାର ଆକାଶ-ପୃଥ୍ୱୀରେ ସଂଚରଣଶୀଳ ଥିଲା । ଦେଶଭାବନା ସ୍ୱଏତ ତାର ଉପଲକ୍ଷ୍ୟ ଥିଲା; ମାତ୍ର ରସବ୍ୟଂଜନା ତାର ମାର୍ମିକ ଅଭିପ୍ରାୟ ଥିଲା । ଏ ରସାତ୍ମକତା ଯେ ରସ-ସାର ଶୃଂଗାରକୁ ଉପଜୀବ୍ୟ କରି—ଗୋପବଂଧୁଂକ କାବ୍ୟ-ଆତ୍ମାର ସଂଗୀତ ଉଲ୍ଲାସରେ ତାହାହିଁ ଉଚ୍ଛ୍ୱସିତ । ଏ ପ୍ରେମ ଆଦ୍ୟପ୍ରାଂତ ଆଧ୍ୟାତ୍ମିକତା-ଉଦ୍ଦୀପ୍ତ ।

ଗୋପବଂଧୁଂକ ପ୍ରେମଭାବନାର ରୂପାନୁଭୂତିରେ ପାର୍ଥିବ ପ୍ରେମର ଅପାର୍ଥିବ ଉତ୍ତରଣ ସଂବାଦଟି ପ୍ରମୁଖ ମନେହୁଏ । ତ୍ରିବିଧ ସ୍ତରରେ ଏ ଉଦାତ୍ତ ସାଧନା ଗତିଶୀଳ, (କ) ବ୍ୟକ୍ତିଗତ ପ୍ରେମାନୁଭବ : (ଖ) ପ୍ରକୃତିପ୍ରୀତି ଓ (ଗ) ବିଶ୍ୱାନୁରାଗୀ । ଗୋପବଂଧୁଂକ ରଚନାର ରହସ୍ୟବାଦୀ ଅଭିବ୍ୟକ୍ତି ଏଇ ପ୍ରେମାନୁଭୂତି, ନୈସର୍ଗିକ ଉପଲବ୍ଧି ଏବଂ 'ବିଶ୍ୱ-ଈଶ୍ୱର' ଚେତନାକୁ ଆଶ୍ରୟ କରିଛି । ବିଶେଷକରି ତାଂକ ବ୍ୟକ୍ତିନିଷ୍ଠ କବିତାଗୁଡ଼ିକରେ ପ୍ରେମଭାବନା, ପ୍ରକୃତିତତ୍ତ୍ୱ ଓ ଆଧ୍ୟାତ୍ମିକତାର ରହସ୍ୟାଦର୍ଶ ପରସ୍ପରକୁ ଭେଟିଥିବାର ମନେହୁଏ । ବିଦ୍‌ଗଧ ରସଶିଳ୍ପୀ ଶ୍ରୀ ବାମାଚରଣ ମିଶ୍ର ଥରେ ମନ୍ତବ୍ୟକ୍ତ କରିଥିଲେ, "ସାହିତ୍ୟରେ ଭାଗବତ ଐକ୍ୟବୋଧ ପ୍ରେମରୂପେ ପ୍ରକାଶିତ । ଏହି ଐକ୍ୟବୋଧ ବା ପ୍ରେମକୁ କେହି ବ୍ୟକ୍ତିସ୍ତରରେ, କେହି ଦେଶ ବା ଜାତିସ୍ତରରେ, କେହି ବା ସମଗ୍ର ବିଶ୍ୱସ୍ତରରେ ପ୍ରକାଶ କରୁଛି ।" (୫) ଗୋପବଂଧୁଂକ କାବ୍ୟଭାରତୀ ଏ ଅବକାଶରେ ନିଃସଂଦେହରେ ତ୍ରିପଥଗା ।

---

(୪) 'ଗୋପବନ୍ଧୁ ପରିକ୍ରମା'-ପୃ. ୧୬

(୫) 'ଜୀବନ ସାହିତ୍ୟ ଓ କଳା'—ବାମାଚରଣ ମିଶ୍ର-ପୃ. ୧୮ ।

Digitized by PPRACHIN, SOA

## କବିଧର୍ମ ଓ କାବ୍ୟଭାବନା

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଓ ବିଶ୍ୱରର ଅବଧାରଣା ପାଇଁ, ତାଙ୍କ କର୍ମଜୀବନର ଅନ୍ତରାଳରୁ ବ୍ୟକ୍ତି-ଜୀବନର ମାନସଲୋକକୁ ପ୍ରବେଶ କରିବା ପାଇଁ 'ଅବକାଶଚିନ୍ତା' ଓ 'କାରାକବିତା' ସଙ୍କଳନଦ୍ୱୟକୁ ଗବାକ୍ଷମାର୍ଗ ରୂପେ ଗ୍ରହଣ କରାଯାଇପାରେ । ଏ ଦୁଇଟି (କ) କବିଙ୍କର ପ୍ରତିନିଧି ସ୍ଥାନୀୟ କବିତା-ମାନଙ୍କ ସମାହାର ଓ (ଖ) କବିଙ୍କ ଜୀବନକାଳର ଦୁଇଟି ବିଶିଷ୍ଟ ପର୍ଯ୍ୟାୟର ମାନସ ଚିତ୍ରରୂପ । ଗୋଟିଏ ନବୋଦ୍‌ଗତ ତାରୁଣ୍ୟର, ଅପରଟି ପରିଣତ ବୟସର; ଅଥଚ ଉଭୟ ରଚନାର ଭାବସାମ୍ୟ, ଚିନ୍ତାମେଳ ଓ ପ୍ରକାଶ-ସାଦୃଶ୍ୟ ଆଶ୍ଚର୍ଯ୍ୟଜନକଭାବେ ସୁନିରୂପିତ ଏବଂ ନିର୍ଦ୍ଦିଷ୍ଟ ପଥରେ କ୍ରମୋତ୍ତରିତ । ଗୋପବନ୍ଧୁଙ୍କ ଯୌବନର ବିଶେଷ ବିଶେଷ ସ୍ୱପ୍ନଗୁଡ଼ିକ 'ଅବକାଶଚିନ୍ତା'ରେ ଯେପରି ଆଭାସିତ, ଜୀବନର ହର୍ଷବିଷାଦଜନିତ ବିଚିତ୍ର ଭାବାନୁଭୂତିମାନ ସେହିପରି 'କାରାକବିତା'ରେ ବିଚ୍ଛୁରିତ । 'ଅବକାଶ-ଚିନ୍ତା'ର ପୃଷ୍ଠଭୂମିରେ 'କାରାକବିତା'ର ଉପସ୍ଥାପନା, ତାର 'ତାରକିତ ଗିରିଶିଖଚୂଳ'(୬)ରେ 'କାରାକବିତା'ର ସୁରମ୍ୟ 'ମିଳନଲୋକ-କଳ୍ପନା' । (୭) ମନେହୁଏ, ଗୋପବନ୍ଧୁଙ୍କ ଜୀବନାଦର୍ଶର କାବ୍ୟରୂପାୟନ ଯଦି 'ଅବକାଶଚିନ୍ତା', ତେବେ 'କାରାକବିତା' ତାର ସାଧନା-ରୂପ, ଆଦର୍ଶକୁ କର୍ମରେ ରୂପାନ୍ତରିତ କରିବାର ଯଜ୍ଞ-ସଂଗୀତ ।

ସ୍ୱୀକାର୍ଯ୍ୟ ଯେ, ଗୋପବନ୍ଧୁଙ୍କ ବହୁ ରଚନା କାବ୍ୟେତର ଉଦ୍ଦେଶ୍ୟପ୍ରଣୋଦିତ । ଦେଶ, ଜାତି ଓ ବିଶ୍ୱ ପାଇଁ ସଂଦେଶପ୍ରେରଣରେ କବିତା ମାଧ୍ୟମ, ଲକ୍ଷ୍ୟାନୁସାରୀ ପଥ ମାତ୍ର । କର୍ମୀସତ୍ତା ସେଠାରେ କବିସତ୍ତାର ସାହାଯ୍ୟ କେବଳ ଲୋଡ଼ିଛି । ମାତ୍ର 'ଅବକାଶଚିନ୍ତା' ଓ 'କାରାକବିତା'ର ସୃଷ୍ଟି ନିଗୂଢ଼ କାବ୍ୟାବେଗରୁ । କବିସତ୍ତା ସେଠାରେ କର୍ମୀସତ୍ତାକୁ ଆତ୍ମସାତ୍ କରି କାବ୍ୟଲୋକର ରସ-ସନ୍ଧାନମଗ୍ନ । ନିର୍ମଳ ନିରୋଳ କବିଚିତ୍ତର ପ୍ରାଣ-ସଂଗୀତ ରୂପେ ଏ ଲିରିକ୍‌ଧର୍ମୀ ଖଣ୍ଡଗୀତିଗୁଡ଼ିକହିଁ କବିଙ୍କ ଏକାନ୍ତ ବ୍ୟକ୍ତିଗତ ଭାବନାର ରୂପ-ଅଭିବ୍ୟକ୍ତି । ଦେଶ, ଜାତି ବା ବ୍ୟକ୍ତି ପାଇଁ ସେଥିରେ ଯାହା ବା ସଂଦେଶ ରହିଛି, ତାହା ଏକ ସ୍ୱଭାବକବିର କ୍ରାନ୍ତଦର୍ଶନ-ଲବ୍‌ଧ ସତ୍ୟ ସଂଦେଶ । ଚିରକାଳର ମାନବାତ୍ମାପାଇଁ ତାହା ଚିରକବିର ଆର୍ଷବାଣୀ । 'ଗୋମହାତ୍ମ୍ୟ', 'ଧର୍ମପଦ', 'ନଚିକେତା ଉପାଖ୍ୟାନ' ଆଦି ଗୋପବନ୍ଧୁଙ୍କ ଜୀବନାଦର୍ଶକୁ କାବ୍ୟରୂପାୟିତ କରିବାକୁ ଅଭିପ୍ରେତ; କର୍ମପ୍ରେରଣା ଜାଗ୍ରତ କରିବା ସେମାନଙ୍କ ସୃଷ୍ଟି-ମୂଳ ଉଦ୍ଦେଶ୍ୟ । ସେମାନେ ଗୋପବନ୍ଧୁଙ୍କୁ କର୍ମୀ, ଦାର୍ଶନିକ ଓ ସଂଗଠନର ସମ୍ମାନ ଦେଇଥାନ୍ତି । ମାତ୍ର କବି ଗୋପବନ୍ଧୁଙ୍କ ପାଇଁ ବିଦଗ୍‌ଧ ଓଡ଼ିଆର ରସମାନସରୁ ଯେ ଶ୍ରଦ୍ଧାନିବେଦିତ, ତାହା 'ଅବକାଶଚିନ୍ତା' ଓ 'କାରାକବିତା'ର ରଚୟିତା ଭାବରେ । କାରଣ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ସତ୍ତ୍ୱେ, ଏଥିରେ ଗୋପବନ୍ଧୁ ଏକ ସାଧାରଣ ମାନବନ୍ତରକୁ କବିତାର କୁହୁକ ମନ୍ତ୍ରରେ, ସ୍ୱରର ମାଧୁର୍ଯ୍ୟ ଓ ଭାବର ଅନ୍ତରଙ୍ଗତା ଭିତରେ ଏକାତ୍ମ ହୋଇ ଫେଣ୍ଟିଆସିଛନ୍ତି । ସାଧାରଣ ହୃଦୟର ଭାବ ଅନୁଭବ, ଆତ୍ମାର ନିଷ୍କପଟ ଅଭିବ୍ୟକ୍ତି ଭିତରେ ପ୍ରତିଟି ମାନବାତ୍ମା ପାଇଁ, ଜଗତ ପୀଡ଼ିତ ଜୀବନ ପାଇଁ ଚିରନ୍ତନ କବିତା ଯେଉଁ ସତ୍ୟର ପ୍ରତିଶ୍ରୁତି ବହନ କରିଆଣେ, ସେଇ କାଳଜୟୀ ସତ୍ୟର ସାରସ୍ୱତ-ବିନ୍ୟାସ 'ଅବକାଶଚିନ୍ତା' ଓ 'କାରାକବିତା' । ଗୋପବନ୍ଧୁଙ୍କ ରଚନାରେ ରହସ୍ୟଚେତନାର ଭୂୟୋପ୍ରକାଶ ବିଶ୍ୱର ଅବକାଶରେ ବସ୍ତୁତଃ ଏଇ ଗ୍ରନ୍ଥ-ଦ୍ୱୟର ଅନୁଶୀଳନ ପ୍ରଣିଧାନଯୋଗ୍ୟ ।

---

(୬) 'ଗିରିଶିଖେ ଲକ୍ଷ୍ୟ ରଖି ଗୃହବି ମୁକର'—'ଅବକାଶଚିନ୍ତା'ର୍ ଶେଷ କବିତା ।

(୭) 'ବିଶ୍ୱର ମିଳନଚିତ୍ର'—'କାରାକବିତା'ର୍ ଶେଷ କବିତା ।

Digitized by PPRACHIN, SOA

ଏ ରହସ୍ୟବାଦୀ କାବ୍ୟାଭିବ୍ୟକ୍ତ ପ୍ରେମଚେତନାର ମୂଳତତ୍ତ୍ୱ ଆଧାରିତ । ପ୍ରୀତି-ନମନୀୟତା (Elasticity in Love) ଗୋପବଂଧୁଂକ ସ୍ୱତନ୍ତ୍ରିକ ବୈଶିଷ୍ଟ୍ୟ । ତାଂକ କାବ୍ୟସ୍ୱର ମଧ୍ୟ ପ୍ରେମଭାବନାର ମୂଳ ଲକ୍ଷ୍ୟ-ଆଧାରିତ ଓ ଶେଷପର୍ଯ୍ୟଂତ ପ୍ରୀତିସ୍ୱର ଆଳାପରତ । ପ୍ରୀତି ସଂବେଗ ତାଙ୍କ କାବ୍ୟାନୁଭବର ପ୍ରବଳତମ ସଂବେଗ ରୂପେ ପ୍ରକଟିତ । ସେ ବିପୁଳ ପ୍ରୀତି କେବଳ ଯୁଗ-ଜୀବନ-ଆସକ୍ତ-ଆବଦ୍ଧ ହୋଇ ସ୍ଥିର ରହିନାହିଁ । ତାର ବିଶାଳ ହୃଦୟକୁ ମନୁଷ୍ୟ, ପ୍ରକୃତି, ପଶୁପକ୍ଷୀ, ଗିରିନଦୀ, ବଂଧୁ, ଆତ୍ମୀୟ, ଦେଶ, ଜାତି, ଅନୁଷ୍ଠାନ ପର୍ଯ୍ୟଂତ ସମଗ୍ର ବିଶ୍ୱସୃଷ୍ଟି ପହଁରି ଆସିଛି । ତାଂକ ପ୍ରେମାଭିବ୍ୟକ୍ତିରେ ତେଣୁ ବ୍ୟକ୍ତିଗତ ଓ ନୈର୍ବ୍ୟକ୍ତିକ, ନୈସର୍ଗିକ ଓ ମହାଜାଗତିକ, ପାର୍ଥିବ ଓ ଅପାର୍ଥିବ ଭାବସ୍ପନ୍ଦନର ପ୍ରଚୁର ପ୍ରସ୍ଫୁରଣ ଘଟିଛି ।

କବିଚେତନାରେ ସୃଷ୍ଟି-ଆଦ୍ୟ ସଂବେଗ ରୂପେ ସ୍ୱୀକୃତ ପ୍ରେମର ଦ୍ୱିବିଧ ଶୃଂଗାରିକ ରୂପ ପରିଚୟ ମଧ୍ୟ ମିଶ୍ରିକଧର୍ମୀ ହୋଇପଡ଼ିଛି । ଏହା ନରନାରୀସଘଟିତ ପ୍ରଣୟ ତଥା ଈଶ୍ୱରଙ୍କ ପ୍ରତି ମାନବାତ୍ମାର ଆକର୍ଷଣ ଭାବକୁ ଅବଲଂବନ କରି ପ୍ରକଟିତ । ନରନାରୀଙ୍କ ପାର୍ଥିବ ପ୍ରଣୟ ସଂପର୍କ-ଭିତରେହିଁ ପ୍ରେମର ଅପାର୍ଥିବତାର ସାଧନାଭୂମି ନିର୍ଦ୍ଦିଷ୍ଟ । ବ୍ୟକ୍ତିଜୀବନର ରକ୍ତସଂପର୍କ ଯଥା ପାରିବାରିକ ଓ ସାମାଜିକ ତଥା ଭାବ ଆବେଗସୃଷ୍ଟ ମାନସିକ ସଂପର୍କର (Emotional relationship) ଆଦ୍ୟ ପ୍ରବଣତା ରୂପେ, ଅର୍ଥାତ୍ ବାତ୍ସଲ୍ୟ, ଦାଂପତ୍ୟ, ବଂଧୁତ୍ୱ ଓ ହୃଦୟ ସଂପର୍କ ଭିତରେ ଏଇ ଉତ୍ସାତ୍ମକ ପ୍ରେମର ବିସ୍ତୃତି ଓ ପ୍ରସାରଣ । ପୁଣି ବ୍ୟକ୍ତିପ୍ରାଣରେ ସ୍ରଷ୍ଟାପ୍ରତି ସଂଜାତ ଗୂଢ଼-ଆକର୍ଷଣ ଏ ପ୍ରେମଚେତନାର ଗହ୍ୱରତମ ଅଭିବ୍ୟକ୍ତି । ପ୍ରଥମ ଦୁଇଟି ଅବସ୍ଥାରେ ପ୍ରେମ ପାର୍ଥିବ; ପ୍ରେମକୁ ଅପର ସହ ବା ବିଶ୍ୱସହ ଭାଗବାଣ୍ଟି ଭୋଗକରିବାକୁ ହୁଏ । ଶେଷଟିରେ ପ୍ରେମର ଅଖଣ୍ଡ, ଅଭଂଗ ଓ ସମଗ୍ର ସ୍ୱରୂପର ରହସ୍ୟ ଭେଦକରି ତାର ଆପାର୍ଥିବତାକୁ ଲାଭକରିବାକୁ ହୁଏ । ଏହାହିଁ ପ୍ରେମର କସ୍‌ମିକ (Cosmic) ରହସ୍ୟାବଧାରଣ । ଏ ମହାଜାଗତିକ ସ୍ୱରୂପରେ ହିଁ ପ୍ରେମ ସ୍ୱୟଂ ଈଶ୍ୱର । (୮)

ଗୋପବଂଧୁ ଆଦ୍ୟାଂତ ଆଦର୍ଶବାଦୀ; ମାତ୍ର ତାଂକର ପ୍ରେମତତ୍ତ୍ୱର ଜୀତିବାଗୀଶର ସଂକୀର୍ଣ୍ଣ ଦୃଷ୍ଟିକୋଣରୁ ନୁହେଁ । ପ୍ରେମ ତାଂକ ରଚନାରେ କେବଳ ଜୈବିକ ବା ଭାବବୃତ୍ତିମୂଳକ ଭୋଗ-ସଂପର୍କ ନୁହେଁ । ମାତା, ପିତା, ପରିବାର, ଭ୍ରାତାଭଗିନୀ, ବଂଧୁ, ସମାଜ ତଥା ପ୍ରତ୍ୟେକ ବ୍ୟକ୍ତି ଆତ୍ମାର ଅପର ସହ ନିବିଡ଼ ସଂପ୍ରୀତିକୁ ସେ ପ୍ରେମ ଆଖ୍ୟା ଦେଇଛନ୍ତି । ବିଶ୍ୱର ସକଳ ସଂବଧ ମୂଳରେ ସ୍ରଷ୍ଟାର ପରମପ୍ରେମ ଉତ୍ସକୁ, ଅପାର୍ଥିବ ପ୍ରେମର ପାର୍ଥିବ ସ୍ୱୀକୃତିକୁ ସେ ବିମୂର୍ତ୍ତ

---

୮. "Love's secret lies in the heart of unfathomable, and also has an unfathomable connection with the whole of existence. As the peaceful lake is grounded deep in the hidden spring which no eyes can see, so man's love is grounded even deeper in the love of God. If there were at the bottom no will-spring, if God were not love, then there would be no quiet lake of human love. So the life of love is hidden but its secret life is itself in motion and has eternity in it."
—Kierkegard'—qt.—Musticism in love & sex'—
by R. C. Mazumdar, P-28.

Digitized by PPRACHIN, SOA

ଦେଖିଛନ୍ତି । (୯) ଏହାହିଁ ଗୋପବନ୍ଧୁଙ୍କର ପ୍ରେମାନୁଭବର ରହସ୍ୟାନୁଗ ପରିଣତି । କବିଙ୍କ ଅନୁଭବରେ—

"ସର୍ବ ଅନୁଭୂତି ସର୍ବଭୂତେ ଯାର
ତା ଆଖିରେ ବିଶ୍ୱ ଏକ ପରିବାର ।
ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି
ଅନ୍ୟ ହୋଇ ତାର ଆଉ କେହି ନାହିଁ ।" (୧୦)

ତାଙ୍କ ପକ୍ଷେ ଏହାହିଁ ପ୍ରେମର ନିଖିଳ ଉଦ୍‌ବୋଧନ; ବିଶ୍ୱରୂପ ! ଏ ବିଶ୍ୱପ୍ରେମ ମହନୀୟତା (Grand and Sublime) ପୁଣି ବିଶ୍ୱୋତ୍ତରତା (transcendent) ଆଡ଼କୁ ପ୍ରସାରଣଶୀଳ । ପ୍ରେମକୁ ଏ 'ସୃଷ୍ଟି-ଆଦ୍ୟ ସଂବେଗ' ରୂପେ ଗ୍ରହଣ କରିବାରେ ଭାରତୀୟ ଦର୍ଶନର ମୂଳ ରହସ୍ୟବାଦୀ ସିଦ୍ଧାନ୍ତଟି ପ୍ରତିଫଳିତ । ଊନବିଂଶ ଶତାବ୍ଦୀର ମାନବତାବାଦ ଓ ହିତବାଦ—ଯାହା ଗୋପବନ୍ଧୁଙ୍କ କର୍ମାଭିମୁଖ୍ୟରେ ନିରନ୍ତର ପରିସ୍ଫୁଟ—ଏହି ଦର୍ଶନର ଏକ ପାଶ୍ଚାତ୍ୟ ପ୍ରାୟୋଗିକ ଭାବସଂସ୍କରଣ ରୂପେହିଁ ଆବିର୍ଭୂତ । ଏହି ପ୍ରେମ ଯୀଶୁଙ୍କର ଅନନ୍ତ ପ୍ରେମ, ବୁଦ୍ଧଙ୍କର ବିଶ୍ୱକରୁଣା, ଋଷି-ହୃଦୟର ବିଶ୍ୱାଲିଙ୍ଗନ । ଏହାହିଁ ମିଷ୍ଟିକ୍‌ର ବିଶ୍ୱପ୍ରସାରୀ ଆତ୍ମପ୍ରେମ ।

ଗୋପବନ୍ଧୁଙ୍କ କାବ୍ୟଚେତନାରେ ବ୍ୟକ୍ତିଗତ ପ୍ରେମାନୁଭବର ଯେଉଁ ସ୍ୱରୂପ ଅଙ୍କିତ, ତାହା ପାର୍ଥିବ; ମାତ୍ର ଅପାର୍ଥିବତା ଉନ୍ମୁଖୀ । ବିରହରସାଣିତ ଏ ସୁବର୍ଣ୍ଣ-ପ୍ରେମ ତ୍ୟାଗ ଓ ନିଷ୍ଠାରେ ଅଗ୍ନି-ଶାଣିତ । କାମକୁ ପ୍ରେମରେ ରୂପାନ୍ତରିତ କରିବାର ଏ ରହସ୍ୟବାଦୀ-ରସାୟନ ପ୍ରକ୍ରିୟାରେ ପ୍ରାଚ୍ୟ ଆଧ୍ୟାତ୍ମିକତା ସହ ପାଶ୍ଚାତ୍ୟ ଅତୀନ୍ଦ୍ରିୟ ଭାବନା ମଧ୍ୟ ପ୍ରତିଫଳିତ । ରତିର (Eros) ପ୍ରେମକୁ (Love) ଏ ଉତ୍ତରଣ ବା ସବ୍‌ଲିମେଶନର ସାଧନା-ସଂବାଦ ପ୍ଲେଟୋ, ଦାନ୍ତେ, ଡନ୍, ଶେଲି, ଗେଟେ ପ୍ରଭୃତି କାବ୍ୟଦର୍ଶନକୁ ଅନୁପ୍ରାଣିତ କରିଛି । ପାଶ୍ଚାତ୍ୟମାନସ ସହ ଭାବସଂଯୋଗ ମାର୍ଗରେ ପ୍ରାଚ୍ୟ ଆଧ୍ୟାତ୍ମିକ ପ୍ରେମ-ଦର୍ଶନର ଉତ୍ତରାଧିକାରୀ ଗୋପବନ୍ଧୁ ସେ ଚେତନାର ସନ୍ନିକଟବର୍ତ୍ତୀ । ବୈଷ୍ଣବ-ପ୍ରୀତିର ଅପାର୍ଥିବ ରହସ୍ୟ ଓ ରବୀନ୍ଦ୍ର-ପ୍ରଣୟାଦର୍ଶ ତାଙ୍କ ପ୍ରେମଭାବନାକୁ ଉଦ୍ଦୀପିତ କରିଥିବା ଅସମ୍ଭବ ନୁହେଁ । ଲକ୍ଷଣୀୟ 'ଅବକାଶଚିନ୍ତା' ତାଙ୍କର ସ୍ୱପ୍ନମୟ ତାରୁଣ୍ୟର ରଚନା ହେଲେ ବି, ସେଥିରେ ଅଭିବ୍ୟକ୍ତ ପ୍ରଣୟଭାବନା ଦେହଧର୍ମୀ ସଂଭୋଗାସକ୍ତିରେ ଉଚ୍ଛ୍ୱସିତ ନୁହେଁ; ବରଂ ପ୍ରେମ-ସଂପର୍କର ଭାବ-ମଧୁର ଶାଶ୍ୱତ-ପାର୍ଶ୍ୱଟିହିଁ ସେଠାରେ ଉଦ୍‌ଘାଟିତ । 'କାରାକବିତା'ର ଗମ୍ଭୀର ପ୍ରତ୍ୟୟାନୁଭୂତିରେ ସେ ଶାଶ୍ୱତପ୍ରେମ ଜୀବନର ଉପଲବ୍ଧି କ୍ଷେତ୍ରକୁ ସ୍ଥାୟୀ ଚେତନା ରୂପେ ସମାଗତ ।

ପ୍ରେମଭାବନାର ଏ ରୂପ-ଉତ୍ତରଣ ପ୍ରୟାସରେ ବ୍ୟକ୍ତିପ୍ରେମ ସ୍ୱତଃ ବିଭୁପ୍ରେମର ରୂପାନ୍ତର ଲାଭକରେ । ଆତ୍ମ-ରତି ବିଶ୍ୱ-ଅନୁରକ୍ତିରେ ଏବଂ ଶେଷରେ ଭଗବଦ୍-ପ୍ରୀତିରେ ପରିଣତ ହେବାହିଁ ପ୍ରେମସାଧନାର ରହସ୍ୟବାଦୀ ଫଳଶ୍ରୁତି ।

---

(୯) "ବିଶ୍ୱଭାବେ ଯା'ର ଅନ୍ତର ପୂରିତ /
ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ ।" ଅବକାଶଚିନ୍ତା-ପୃ.

(୧୦) ଅବକାଶଚିନ୍ତା-ପୃ. ୯୦

Digitized by PPRACHIN, SOA

ସ୍ରଷ୍ଟା ସହ ସଷ୍ଟିର ଏ ସ୍ୱରାନୁଗ ସଂପର୍କର ରହସ୍ୟବାଦୀ ତାତ୍ପର୍ଯ୍ୟଟି ସକଳ ଅଧ୍ୟାତ୍ମ-ସାଧନା-ସ୍ୱୀକୃତ ଏବଂ ଗୋପବଂଧୁଙ୍କ କାବ୍ୟସ୍ୱରରେ ମଧ୍ୟ ଆଧ୍ୟାତ୍ମିକ ଭାବୋତ୍ତରଣର ପ୍ରସ୍ୱାନୁକ୍ରମରେ ଏକ ପରମପ୍ରେମକାମନାର ରୂପାବିର୍ଭାବ ପ୍ରସଂଗ ଲକ୍ଷଣୀୟ ।

ଏଇ ପ୍ରେମକୁ ଉପଲକ୍ଷ୍ୟ କରି ଗୋପବଂଧୁ ଓଡ଼ିଆ ଭାଗବତକାରଂକ ଉଦ୍ଦେଶ୍ୟରେ ତାଂକ ପ୍ରାଣର ଶ୍ରଦ୍ଧାଂଜଳି : ବାଢ଼ି ଥିଲେ, 'ଅସଂଖ୍ୟ ନାସ୍ତିକ ହୋଇବେ ପ୍ରେମିକ ତୁମ୍ଭ ମଧୁମୟ ଗୀତେ' (୧୧) । ଏଠାରେ ପ୍ରେମିକ ରୂପଚେତନାଟି ଆଧ୍ୟାତ୍ମିକତା ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ମୋକ୍ଷମୁକ୍ତ ପାରତ୍ରିକ-ବିଳାସ ସ୍ୱର୍ଗସୁଖକୁ କବି ଭାଗବତପାଠର 'ବାଂଛା ଫଳୋଦୟ' ବୋଲି କହିନାହାଂତି । ଭାଗବତର ମୂଳ ସଂଦେଶଟି ଯେ ପ୍ରତି ମାନବାତ୍ମାକୁ ଭଗବତ୍ପ୍ରୀତିରେ ଉଚ୍ଚକିତ କରିବା, ତାହା ଗୋପବଂଧୁଂକ ନିର୍ମଳ ପ୍ରେମାପ୍ଲୁତ ଚେତନାରେ ସ୍ପଷ୍ଟ ଅଭିବ୍ୟକ୍ତି ଲାଭକରିଛି । ଭାଗବତ-ଦର୍ଶନ ନୀତିଶାସ୍ତ୍ର ବା ଧର୍ମଗ୍ରଂଥ ରୂପେ ସୁଶ୍ରାବ୍ୟ ନୁହେଁ; ଏକ ଦିବ୍ୟପ୍ରଣୟ-ସଂଗୀତ ରୂପେହିଁ କବି-ଶ୍ରୁତିରେ ମଧୁମୟ । ଆଧ୍ୟାତ୍ମିକ ପ୍ରେମହିଁ ତାଂକ ପାଇଁ ଈଶ୍ୱରଭକ୍ତି । ଆଲୋଚକଙ୍କ ଯଥାର୍ଥ ବିବେଚନାରେ—"ଏଇ ଈଶ୍ୱରଭକ୍ତିହିଁ ଗୋପବଂଧୁଂକ ସକଳ କାର୍ଯ୍ୟ, ଚଂତା ଓ କବିତା ଭିତରେ ଅମୃତଧାରା ରୂପେ ରହି ତାଂକୁ ଜୀବଂତ ରଖିଛି ।" ଭକ୍ତକବି ମଧୁସୂଦନଂକ କାବ୍ୟଚେତନା-ଲବ୍ଧ ଭାବୋପଲବ୍ଧି ପରି ଏ ଆଧ୍ୟାତ୍ମିକତାର ରହସ୍ୟବାଦ ଉପସ୍ଥାପନାରେ ଭିତରେହିଁ ଶୁଚିତା, ନିର୍ମଳତା ଓ ନିଷ୍ଠାଚରଣ ଦ୍ୱାରା ଅପାର୍ଥିବତାକୁ ପାର୍ଥିବ ଜୀବନରେ ଲାଭକରିବାର ପ୍ରରୋଚନାଟି ବ୍ୟଂଜିତ ।

ଏ ଭାବସାଧନାଟି କଂବୁ ଏକାଂତ ରସୋପଲବ୍ଧିର ବ୍ୟାପାର; ଅଥଚ କେବଳ କାବ୍ୟ-କଳ୍ପନାରେ ଭାରତୀୟ ଆତ୍ମାର ଦିବ୍ୟାଭିଳାଷ ଚରିତାର୍ଥ ହୁଏନା । ମନ ଓ ଭାବନା, କର୍ମ ଓ ଅନୁଭବ ଭିତରେ ଦିବ୍ୟ-ଆବାହନରେ ସେ ବିଶ୍ୱାସୀ । ତାର ଭାବସାଧନା ତେଣୁ ଜୀବନ-ସାଧନା; ଶୁଚିତା, ପବିତ୍ରତା, ଏକନିଷ୍ଠତା ଓ ମହାନତା ତାର ପ୍ରେମସାଧନା ସହ ଅଂଗାଂଗୀ ଜଡ଼ିତ । ଉତ୍ତମାନୁବ୍ରର୍ତ୍ତୀ ହିଁ ଧ୍ରୁବ ସାଧନାରେ ଶରଣାଗ୍ରିନପାଦ । ବୈଦିକ କାଳରୁ ଏ ଦିବ୍ୟ-ସାଧନାରହସ୍ୟ ଯେ ଭାରତୀୟ ଚେତନାକୁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଇଆସିଛୁ, ଆଧୁନିକ ଓଡ଼ିଆ ସାହିତ୍ୟରେ ତାର ମୁଖ୍ୟ ଉଦ୍‌ଗାତା ରୂପେ ମଧୁସୂଦନଂକ ଆବିର୍ଭାବ ଘଟିଥିଲା । ଗୋପବଂଧୁ ସେଇ ଗାନପ୍ରେରଣା ଉଦ୍‌ବୁଦ୍ଧ । ବ୍ୟକ୍ତିଗତ ଭାବରେ ଭାରତୀୟ ସାହିତ୍ୟର ଆତ୍ମା ଅନୁଶୀଳନ କରି ତେଣୁ ସେ ଆଧ୍ୟାତ୍ମିକତାରେ ହିଁ ତାର ପ୍ରାଣପ୍ରତିଷ୍ଠା କରିଛନ୍ତି । 'ସତ୍ୟବାଦୀ'ର ୧ମ ଖଣ୍ଡ ୪ର୍ଥ ସଂଖ୍ୟାରେ 'ଉତ୍କଳ ସାହିତ୍ୟ ସମାଜ' ପ୍ରସଂଗରେ ସେ ଆଲୋଚନା କରିଥିଲେ, "ସମସ୍ତ ପ୍ରାଦେଶିକ ସାହିତ୍ୟ ମଧ୍ୟରେ ଗୋଟିଏ ଭାରତୀୟ ସୂକ୍ଷ୍ମ ପ୍ରାଣର ଧାରା ପ୍ରବାହିତ ହେଉଛି ।" ଏ ଅବକାଶରେ ସେ ନାନକ, ତୁଳସୀ, ରାମକୃଷ୍ଣ, କବୀର, ଉତ୍କଳର ପଞ୍ଚସଖା ଓ ରାଣାଡ଼େଙ୍କୁ ଉଲ୍ଲେଖ କରିଛନ୍ତି । ଲକ୍ଷଣୀୟ, ଏମାନେ ସମସ୍ତେ ବ୍ୟକ୍ତିଗତ ବିଶ୍ୱାସ ଓ ସାହିତ୍ୟ ସାଧନାରେ ରହସ୍ୟବାଦୀ ଉପାସକ ରୂପେ ହିଁ ଆଧ୍ୟାତ୍ମିକ ପରଂପରାରେ ଅଭିନଂଦିତ ।

ତଥାପି ମଧୁସୂଦନଂକ ଆଧ୍ୟାତ୍ମିକତାରେ ଜୀବନରହସ୍ୟର ଅମୂର୍ତ୍ତ ଉଦ୍‌ବୋଧନ ସମଧିକ । ଗୋପବଂଧୁଂକ ବ୍ୟକ୍ତିତ୍ୱ ମଧ୍ୟ ଋଷି ଆଦର୍ଶରେ ଅନୁପ୍ରାଣିତ । ମାତ୍ର ସେ ଆଦର୍ଶକୁ ବହିର୍ଜଗତରେ କର୍ମ-ଜୀବନରେ ପ୍ରମୂର୍ତ୍ତ କରିବାର ସାଧନାପ୍ରୟାସ ତାଂକର ଏକକ ବୈଶିଷ୍ଟ୍ୟ । ମଧୁସୂଦନ ପ୍ରଥମେ ଋଷି; ପରେ କବି । ଗୋପବଂଧୁ ପ୍ରଥମେ କର୍ମୀ; ପରେ କବି । ଉଭୟ କବିଂକ ପାଇଁ କବିତା କେବେ ହେଲେ ବି କେବଳ ରସ-ସାଧନା ନଥିଲା । ମାତ୍ର ଗୋପବଂଧୁଂକ କର୍ମସାଧନା ମୂଳରେ କାବ୍ୟ

(୧୧) 'ଅବକାଶଚଂତା'-ପୃ. ୧୦

Digitized by PPRACHIN, SOA

ପ୍ରେରଣାର ଅବଦାନ ମହତ୍ତର ଓ ବଳବତ୍ତର ଥିଲା । (୧୨) କବିତାରେ ତାଂକର ଅନ୍ତର୍ଦର୍ଶୀ ରୂପାୟିତ ହେବା ସଂଗେ ସଂଗେ କବିତାର କାବ୍ୟଧର୍ମ ମଧ୍ୟ ସୁରକ୍ଷିତ ରହିଛି । ଉଭୟଙ୍କ କାବ୍ୟପ୍ରୟାସର ଲକ୍ଷ୍ୟ ଅନୁଭୂତିଲବ୍ଧ ସତ୍ୟର ପ୍ରତିଷ୍ଠା; ମାତ୍ର ସେ ସତ୍ୟସାଧନାରେ ମଧୁସୂଦନ କାବ୍ୟକବିତାକୁ ଏକ ପାର୍ଶ୍ୱ ପ୍ରବାହରୂପେ ଦେଖିଛନ୍ତି । ଗୋପବଂଧୁ କବିତାର ସ୍ରୋତରେ ଆତ୍ମାର ଆବେଗକୁ ମିଶାଇଦେଇ ଜୀବନର ଦୂରଲକ୍ଷ୍ୟ ପ୍ରତି ଗତିଶୀଳ ହୋଇଛନ୍ତି । ମଧୁସୂଦନଂକର ନିତ୍ୟାନନ୍ଦବିହାରୀ ବ୍ରହ୍ମ-ତଦ୍‌ଗତ ଚେତନା ମୂଳ ଆନଂଦ-ଅନୁଭବରେ ସମାହିତ ରହିଥିଲା ଓ ସାହିତ୍ୟ ତାର ସାମୟିକ ପ୍ରକାଶ-ଉତ୍ସାର ଥିଲା । ପକ୍ଷାଂତରେ ଗୋପବଂଧୁଂକ କବିତାର ମୂଳସ୍ୱରଟି ବିଷାଦ-ବୋଧର । ଏ ବିଷାଦବୋଧର ଅଂତର୍ଗତ ଆବେଗଟି ହେଉଛି ଆତ୍ମଗତ ନିଃସଂଗତାର, ଏକାକୀତ୍ୱର; ଗୋଟିଏ କଥାରେ ପ୍ରେମାକୁଳତାର । କବିତା ତାଂକର ମର୍ମ-ସଂତାପ ଓ କର୍ମକ୍ଲାଂତି ଭିତରୁ ସମୁଦ୍‌ଭୂତ ହୋଇ କାବ୍ୟଧର୍ମର ସଂବେଦନ-ଶୀଳତା ଭିତରେ ତାଂକୁ ସାଂତ୍ୱନା ଓ ଶକ୍ତି ଦାନ କରୁଥିଲା । ଉଭୟଙ୍କ କାବ୍ୟସାଧନାର ଆଭିମୁଖ୍ୟ ଭିନ୍ନ ଥିଲା । ମଧୁସୂଦନଂକ କବିତା ଆଧ୍ୟାତ୍ମିକତାର ଅନୁଚିଂତନ ଓ ସତ୍ୟପ୍ରତିଷ୍ଠାର ଉଦ୍ଦେଶ୍ୟମୂଳକତା ଉପରେ ପ୍ରତିଷ୍ଠିତ ଥିଲା । ବ୍ୟକ୍ତିଗତ ଜୀବନର ବିମଳ ଉପଲବ୍ଧିମାନ ସେଥିରେ ଅବଲୀଳାକ୍ରମେ ସହଜପ୍ରକାଶ ଲୋଡ଼ୁଥିଲେ । ଗୋପବଂଧୁଂକ କବିତା ମଧ୍ୟ ତାଙ୍କ ଆତ୍ମାନୁଭୂତିର ବ୍ୟକ୍ତିତ୍ୱର ଆବେଗସଂଭୂତ ଥିଲା । ସେ ଆବେଗର ଆଦର୍ଶ ଥିଲା କିଂତୁ କାବ୍ୟାନଂଦ ପ୍ରତିଷ୍ଠା । ଗୋପବଂଧୁଂକ ବ୍ୟକ୍ତିତ୍ୱରେ ସତ୍ୟ ଓ ଆନଂଦ, ଆଧ୍ୟାତ୍ମିକତା ଓ ବିଶ୍ୱରହସ୍ୟର ସହଜ ସମାଧାନଟି ଏକ ମିଳିତ ବିଂଦୁ ଲାଭ କରିଥିବାରୁ ତାଂକ କାବ୍ୟଧର୍ମରେ ତାଂକ ପ୍ରାଣଧର୍ମର ସ୍ୱୀକୃତିଟି ମଧ୍ୟ ସତ୍ୟାଶ୍ରୟୀ ରୂପ ଲାଭକରିଛି ।

କବି-ଆତ୍ମାର ଉପଲବ୍ଧ ସତ୍ୟରେ ଯେଉଁ ବାର୍ତ୍ତା ଆବିର୍ଭୂତ, ତାର ସଂଧାନ 'ବାଣୀ' ଓ 'କବିତା' ପ୍ରଭୃତି କାବ୍ୟକଳା ସଂପର୍କିତ ରଚନାମାନଂକରେ ସୁରକ୍ଷିତ । କବି ସ୍ପଷ୍ଟ କରିଦେଇଛଂତି— 'ଦେଶବଂଦନାବାଣୀ' ତାଙ୍କ କାବ୍ୟ-ଉଦ୍‌ବୋଧନର ସୀମିତ ଉଦ୍ଦେଶ୍ୟ ନୁହେଁ । ସୃଷ୍ଟି ଆଦ୍ୟରୁ ସତ୍ୟର ବାକ୍-ରୂପ ପ୍ରକାଶିନୀ ରୂପେ ଯିଏ ସରସ୍ୱତୀ ପରିକଳ୍ପନାରେ ବେଦବଂଦିତା, ଏ ସେହି ଶୁଭ୍ରା, ସୁବେଶା ମନୋମୟୀଂକର ଆରାଧନା । ଦିବ୍ୟଜ୍ଞାନର ଆଲୋକରେ ପୃଥିବୀକୁ ସେ ସତ୍ୟସ୍ୱରୂପା ଉଦ୍‌ଭାସିତ କରିଥାଂତି । କବିଂକ ଖେଦୋକ୍ତିରେ ସାଂପ୍ରତିକ ଭାରତୀୟ ଚେତନା ସେ ସତ୍ୟବଂଚିତ ହେତୁ ତମସାବୃତା ସେ ସତ୍ୟ ସ୍ୱାଧୀନତାର ସତ୍ୟ । ଆତ୍ମ-ବିକାଶ ସୃଷ୍ଟିର ମୂଳ ପ୍ରବୃତ୍ତି ଓ ଆଦ୍ୟ ଅଧିକାର; ବାହ୍ୟ ଓ ଆନ୍ତରୀଣ ସ୍ୱାଧୀନତା ବ୍ୟତିରେକେ ଚେତନାର ଭୂୟୋବିକାଶ କିଂବା ବ୍ୟକ୍ତିଗତ ଓ ସାମାଜିକ ବିକାଶ କେବେ ସହଜ ଅନୁକୂଳତା ଲାଭ କରିପାରେ ନାହିଁ । ସେ ସତ୍ୟକୁ ସ୍ୱାଧୀନ ଭାରତ ତାର ଅଂତରାତ୍ମାରେ ପୁଣି ରାଜନୈତିକ ଓ ସାମାଜିକ ସ୍ୱରୂପରେ ହରାଇବସିଛି; ତେଣୁ 'ମୃତପ୍ରାୟ' (୧୩) ।

ଲକ୍ଷଣୀୟ, ଏଠାରେ ବାଣୀଙ୍କୁ ଯେଉଁ ଦିବ୍ୟ ସଂବାଦ ପ୍ରଦାୟିନୀ ଓ ଦିବ୍ୟ ସତ୍ୟ ରହସ୍ୟ ଉଦ୍‌ଘାଟିନୀ ବୋଲି ସଂବୋଧନ କରାଯାଇଛି, ତାହା ରାଜନୈତିକ ସ୍ୱାଧୀନତା-ଅପେକ୍ଷିତ ଭାରତବର୍ଷର ଭବିଷ୍ୟତ ସ୍ୱରୂପ ସଂପର୍କରେ ନୁହେ, "ସ୍ୱର୍ଗୀୟ ସୁଷମା ଆଉ ସ୍ୱର୍ଗୀୟ ରହସ୍ୟ" ଏକ ପୂର୍ଣ ମୁକ୍ତିଲୋକର ରହସ୍ୟ; ଯାହା ଯୁଗେ ଯୁଗେ ଭାରତୀୟ ପ୍ରାଣକୁ ପାର୍ଥିବ କର୍ମବିଧାନ ଭିତରେ ସତ୍ୟାନୁସଂଧୀ ଓ ଅଧ୍ୟାତ୍ମ-ଉନ୍ମୁଖୀ କରି ଆସିଛି । 'କବିତା(୧୪)ରେ ବାଣୀଂକର ଏ ରୂପାଲେଖ୍ୟଟି ସ୍ପଷ୍ଟତର । ଶୁଦ୍ଧ

(୧୨) 'ଅବକାଶଚିଂତା'-ପୃ. ୧

(୧୩) 'ଅବକାଶଚିଂତା'-ପୃ. ୫

(୧୪) ଅବକାଶଚିଂତା-ପୃ. ୬

Digitized by PPRACHIN, SOA

ସରଳତା କବିତାର ବାହ୍ୟ ଆଭରଣ କିଂତୁ 'ଦିବ୍ୟ ରସମୟୀଭାବେ ଅଂତର ପୂରିତ ।" ସେ ଜ୍ଞାନଦାତ୍ରୀ ଓ ସତ୍ ଆଶ୍ରୟା । ପ୍ରକୃତିର ବିଚିତ୍ରତା ଭିତରେ ସେ ମାନବାତ୍ମାର ରୂପ ପ୍ରତିଫଳନ କରନ୍ତି । ଏ ଦେବୀଙ୍କୁ 'ରଜୋଗୁଣମୟୀ' ବୋଲି କବି ପ୍ରତିପାଦନ କରିଛନ୍ତି । ସ୍ମରଣୀୟ, ମଧୁସୂଦନଂକ ବାଣୀ ଶୁଦ୍ଧ ସତ୍ତ୍ୱରୂପା, ଯୋଗାନଂଦମୟୀ । କାବ୍ୟ-ସୌଂଦର୍ଯ୍ୟ-ଲକ୍ଷ୍ମୀଂକୁ ସାଲଂକରି କରିବାରେ ମନୋହାରିଣୀ ବାଣୀଂକୁ ଯେ ରାଜସିକ ଆୟୋଜନ କରିବାକୁ ହୁଏ । ଗୋପବଂଧୁଂକ କବିଦୃଷ୍ଟି ସେ ଆୟୋଜନ ସମାରୋହ ଦେଖିଛି । ସୃଷ୍ଟି ରଜୋଗୁଣରେ ହିଁ ସଂଭବ । ସତ୍ୟ ତତ୍ତ୍ୱ ରୂପେ ସତ୍ତ୍ୱଭାବାବିଷ୍ଟ; ମାତ୍ର ପ୍ରକାଶରେ ରଜୋରୂପାଶ୍ରିତ । କାବ୍ୟ-ପ୍ରେରଣା ରୂପ କର୍ମ-ଉନ୍ମାଦନା କବିତାର ରାଜସିକ କ୍ରିୟା-ଚଂଚଳତା ସଂଜାତ । ଚେତନାର ସାତ୍ତ୍ୱିକ ବିକାଶ କର୍ମପ୍ରକାଶ ପାଇଁ ଏ ରାଜସିକତାକୁ ଅପେକ୍ଷା ରଖେ ଏବଂ ଏହି ଉପଲବ୍ଧି ବିନା ଗୋପବଂଧୁ ହୁଏତ କବିରୂପେ କେବଳ କର୍ମ-ଉନ୍ମାଦନାର ଗାନ କରିପାରିଥାଂତେ; ମାତ୍ର କର୍ମୀ ହୋଇପାରିନଥାଂତେ ।

ଗୋପବଂଧୁଂକ କର୍ମର ସାଧନା ଓ କାବ୍ୟ-ସାଧନାର ପୃଷ୍ଠ-ପୀଠିକା ଏକ; ତାହା ସତ୍ୟର ସାଧନା । ସତ୍ୟୋପଲବ୍ଧିର ପ୍ରକାଶ ସାମର୍ଥ୍ୟକୁ କବି ରୂପେ ପ୍ରାପ୍ତ ହେବାକୁ ହିଁ ସେ ବାଣୀ ଆବାହନ କରିଛନ୍ତି । ତାଙ୍କ ଭଳି ବିକଶିତ-ବ୍ୟକ୍ତିତ୍ୱସଂପନ୍ନ ଦ୍ରଷ୍ଟା ଓ ସ୍ରଷ୍ଟା କବିମନର ଚିରାୟିତ ଆବେଗ ଓ ସ୍ୱପ୍ନକୁ ଜୀବନର ସକଳକ୍ଷେତ୍ରରେ କର୍ମ ରୂପରେ ପ୍ରସାରି ଦେଖିବା ସ୍ୱାଭାବିକ । ସମର୍ଥ-କବିଦୃଷ୍ଟି ପାର୍ଥିବ ଜଗତ୍ତରେହିଁ ଅପାର୍ଥିବ-ଲୋକର ରହସ୍ୟ ଲାଭକରିଥାଏ ଓ ସେହି ରହସ୍ୟ-ଦୀପ୍ତ ଦୃଷ୍ଟିରେ ଜୀବନାନଂଦର ମଧୁକୁ ସବିଂଶ ଆବିଷ୍କାର କରିଥାଏ । ଗୋପବଂଧୁଂକ ବାଣୀ-ଆବାହନ ସେହି ମଧୁର ମୂର୍ତ୍ତିର ସାମଗାନ; ଯିଏ କି ଅମୂର୍ତ୍ତ-ସତ୍ତ୍ୱର ବାକ୍-ରୂପିଣୀ ମୂର୍ତ୍ତି ପରିଗ୍ରହ କରି କବିକଣ୍ଠରେ ସମାରୂଢ଼ା ହୁଅଂତି ।

'ବାଣୀ' କବିତା ଏହି ଦୃଷ୍ଟିରୁ କବିଧର୍ମ ଓ ଋଷିକର୍ମକୁ ଗୋପବଂଧୁ-ମାନସରେ ଏକ ସମନ୍ୱିତ ରୂପବିଗ୍ରହ ଦାନ କରିଛି । ବେଦରେ ବାଣୀ ମଂତ୍ରାରୂଢ଼ା । ଏହି ସତ୍ୟ-ସ୍ୱରୂପା ବାଙ୍ମୟୀ ଆଧ୍ୟାତ୍ମିକ ଚେତନାର ନିର୍ମଳ ଉପଲବ୍ଧିରେ କେବଳ ପ୍ରାପ୍ତ ବୋଲି କବି ସ୍ୱୀକାର କରି କାବ୍ୟପ୍ରୟାସକୁ ସେଇ ସତ୍ୟୋପଲବ୍ଧିର ପ୍ରକାଶ-କ୍ଷମ କରିବାପାଇଁ ବାଣୀ-ଆରାଧନା କରିଛନ୍ତି । ଆଧ୍ୟାତ୍ମିକତା ଓ କାବ୍ୟ-ମନୋହାରିତାର ସଂଗତିବିଧାନକୁ କବି ମାନିନେଇଛନ୍ତି । ସତ୍ୟ ପ୍ରକାଶରେ ହିଁ ଶବ୍ଦ-ଶକ୍ତିର ସାର୍ଥକତା ସେ ସତ୍ୟ ବାସ୍ତବଜୀବନର ପ୍ରତ୍ୟକ୍ଷତା ଓ କବି-ଉପଲବ୍ଧିର ଅପ୍ରତ୍ୟକ୍ଷ ବାସ୍ତବତାକୁ ସମାନ ସ୍ୱୀକୃତି ଦିଏ, ଏହାର ସ୍ପଷ୍ଟ ଅଭିବ୍ୟକ୍ତି ବାଢ଼ି ଗୋପବଂଧୁ ଏକ ନିରୋଳା କବିମନର ଅନ୍ତରଂଗ ଅଭିଳାଷଟିକୁ ହିଁ ଉନ୍ମୋଚିତ କରିଦେଇଛଂତି : "ବାସ୍ତବ ବିଶ୍ୱର ଯେତେ ନୀରସ ଘଟଣା / ପ୍ରବେଶ ନକରୁ କେବେ ମୋ ସୁଖ ପ୍ରାସାଦେ" । ପ୍ରକୃତପକ୍ଷେ ଗୋପବଂଧୁଂକ ନିରବକାଶ କର୍ମଜୀବନ ସହ ତାଙ୍କ ନିରଳସ କବିସତ୍ତ୍ୱର କୌଣସି ଭାବ-ବିରୋଧ; କୌଣସି ଅସମଂଜସ ସ୍ୱର ଆଳାପ ନାହିଁ । ନିରୋଳା କବିମନର ନିତ୍ୟ କାମନାର ଏ ନିଷ୍କପଟ ଅଭିବ୍ୟକ୍ତି ତାଙ୍କ କାବ୍ୟସାଧନାର ରହସ୍ୟ-ଗଭୀରତାଟିକୁ ଉନ୍ମୋଚିତ କରିଛି ମାତ୍ର ।

ଅଥଚ ଗୋପବଂଧୁଂକ ଜୀବନ ଓ କର୍ମ ବାସ୍ତବତା ସହ ପୂର୍ଣ୍ଣ ଜଡ଼ିତ । ବାସ୍ତବଜଗତ୍ତର ସମସ୍ୟା ନିରୀକ୍ଷଣରେ ସେ କର୍ମ ଓ ବିଚାର ଅହରହ ସକ୍ରିୟ । ସୁଖର ସରସଲୋକରେ ତାଙ୍କର କବିସୁଲଭ ବିହାର-କାମନା ଜଗତ୍‌ବିମୁଖ ପଳାୟନପରତା ନୁହେଁ, ବିରାଗୀର ନୁହେଁ; ବରଂ ଅନୁରାଗୀ କବି-ମନର ସବୁକାଳର ଏହା ସଂଗୋପିତ ଅଭିଳାଷ । ଯେତେ ବାସ୍ତବତାର କଥା କହୁନା କାହିଁକି,

Digitized by PPRACHIN, SOA

ଭାବଲୋକରେ ଏକ ନିଜସ୍ୱ ଓ ଗୋପନ ନୀରବ କୋଣ ପ୍ରତି ଶିଳ୍ପୀସତ୍ତାର ପ୍ରବଣତାଟି ଚିର-ଉଚ୍ଛ୍ୱସିତ । ଏ ଏକାକୀତ୍ୱ ଓ ସ୍ୱପ୍ନାକୁଳତା ବ୍ୟତିରେକେ କଳାସୃଷ୍ଟି ଅସଂଭବ । ଶିଳ୍ପୀସତ୍ତାର ଏ ଚିରଂତନ ଅଂତର୍ମଗ୍ନତା ବାରବାର ବହିଃସ୍ତରରୁ ଚେତନାକୁ ସଂହୃତ କରି ଆଣି ନିଜ ଭିତରେ ଧ୍ୟାନସ୍ଥ ଓ ଲୟ ନିବିଡ଼ କରିରଖେ । ରୋମାଣ୍ଟିକ ନହୋଇ, ସୁଦୂର ସମ୍ମୋହୀ, ଅସୀମ ପାଇଁ ଆବେଗାତ୍ମକ ନହୋଇ କବି ନାହିଁ—ଆଶାତୀତ ପାଇଁ ଆଶାମୟ ଭାଷା ନ ବାଢ଼ି କବିତା ନାହିଁ । ଏଠାରେ କବିକଳ୍ପିତ ଆଲୋଚ୍ୟ 'ସୁଖପ୍ରାସାଦ'; କିନ୍ତୁ କାଳ୍ପନିକ, ଆକାଶୀମହଲ ବୋଲି ମନେହୁଏ ନାହିଁ ଯାହା ପାର୍ଥିବ ଭୋଗାଭିଳାଷର ଚିରଂତନ ସ୍ୱପ୍ନ । ଏହା କବି ଆତ୍ମାର ସେହି ନିତ୍ୟଗୃହଧାମ, ସେହି ଅମର୍ତ୍ତ୍ୟ ସ୍ୱପ୍ନ ଯାହାପାଇଁ ମର୍ତ୍ତ୍ୟଜୀବନ ଚିର ଉଚ୍ଛ୍ୱସିତ ଓ ଅହରହ ସାଧନାରତ । ସେ ସ୍ୱର୍ଗୀୟ ରହସ୍ୟରାଜ୍ୟର ମାନସବିହାର ଗୋପବନ୍ଧୁଙ୍କ ଭାବ-ରାଜ୍ୟରେ ସଂଭବପର ହୋଇଛି । ସେଥିପାଇଁ ନିଷ୍ଠୁର କର୍ମକ୍ଷେତ୍ରର ସୂର୍ଯ୍ୟ-ଦଗ୍ଧ ମଧ୍ୟାହ୍ନରେ ବି କବି ତାର ଗ୍ରାମ୍ୟାଂଚଳର ଶୀତଳତାକୁ ସ୍ମରଣ କରିଛଂତି ।

କବିତାହିଁ ସେହି ଶୀତଳ ସ୍ନେହର ମୂର୍ତ୍ତିମତୀ ଧାରାରୂପେ କବିହୃଦୟକୁ ସ୍ପର୍ଶକରିଛି । 'ବାଣୀ' କବିତାରେ ଗୋପବନ୍ଧୁଙ୍କ କବିମନର ସଂଗୋପିତ ଅଭିଳାଷଟି କେବଳ ମର୍ମରିତ ହୋଇନାହିଁ, ବା 'କବିତା'କୁ ହୃଦୟର କେବଳ ସ୍ନେହ ନିବେଦନ ନାହିଁ— ଜୀବନ ସହ ସତ୍ୟର ପ୍ରେମମୂଳକ ସଂଯୋଗ ସ୍ଥାପନାରେ କବିତାର ଭୂମିକା ଓ କବିର ଆସ୍ଥାର ପ୍ରତି ସଂଭ୍ରମତାପୂର୍ଣ୍ଣ ସ୍ୱୀକୃତି ବି ରହିଛି ।

ଚେତନାର ଯେଉଁ ରହସ୍ୟଲୋକରେ ପ୍ରେମ-ଆନଂଦର ନୀରବବାର୍ତ୍ତାଟି ବାଣୀହୀନ ସଙ୍ଗୀତ ଲାଭକରିଥାଏ, ସେହି ବିଶୁଦ୍ଧ ଭାବତନ୍ମୟତା ଭିତରେ ଗୋପବନ୍ଧୁଙ୍କ ଋଷିସତ୍ତାଟିର କବିହୃଦୟ ସହ ଭାବକୋଲାକୋଳି ତାଙ୍କ କାବ୍ୟସ୍ୱରରେ ଧ୍ୱନିତ ।

## ନୈସର୍ଗିକ ରହସ୍ୟଚେତନା :

ଗୋପବଂଧୁଂକର ନିସର୍ଗ-କବିତାଗୁଡ଼ିକରେ ବ୍ୟକ୍ତିଗତ ନିଃସଂଗତା, ପ୍ରେମାକୁଳତା ଓ ଅତୀନ୍ଦ୍ରିୟ ଜିଜ୍ଞାସା ଉଚ୍ଚାରିତ । ପ୍ରେମଭାବନାର ରହସ୍ୟମୂଳକତା ତାର ଆଧ୍ୟାତ୍ମିକ ଉପସ୍ଥାପନା ଓ ଶାଶ୍ୱତ ରୂପଚେତନା ଉପରେ ଆଧାରିତ । (୧୫) ଏ କବିତାଗୁଡ଼ିକ ପ୍ରାୟଶଃ ଜାତୀୟବୋଧାତ୍ମକ, କବିଙ୍କ ସ୍ୱଭାବ ବୈଶିଷ୍ଟ୍ୟରୁ ତତ୍କାଳ-ଭାବ-ଉଦ୍‌ବୋଧୀ ହୋଇଛନ୍ତି । ଏସବୁ କିନ୍ତୁ ମୂଳ ଏକ ବ୍ୟାପକ ରୋମାଣ୍ଟିକ ସଂବେଗପ୍ରସୂତ । ପ୍ରକୃତି ସହ ଆଧ୍ୟାତ୍ମିକତାର ସଂଯୋଗ ରହସ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାବାଦର୍ଶ ପରିପୁଷ୍ଟ । ନିସର୍ଗର ସୌଂଦର୍ଯ୍ୟ-ରୂପ ଅଂତରାଳରେ ଯେ ଅମୂର୍ତ୍ତ ସତ୍ୟର ଉଦ୍‌ବୋଧନ, ତାର ବାଣୀସାଧନା ବୈଦିକକାଳରୁ ଛଂଦରୂପାଶ୍ରିତ । ତାରି ଉତ୍ତରାଧିକାରିତ୍ୱ ସହ ପାଶ୍ଚାତ୍ୟ ଭାବମାନସର ପ୍ରକୃତିଚେତନା ଓ ଅତୀନ୍ଦ୍ରିୟ ରୋମାଣ୍ଟିକ ଦିଗ୍‌ଦର୍ଶନ ବ୍ଲେକ, ଓ୍ୱାର୍ଡସ୍‌ଓ୍ୱାର୍ଥ ଓ

---

(୧୫) ବାହ୍ୟ ଆବରଣ ଫେଡ଼ି ପ୍ରକୃତି ଅନ୍ତରେ,
ଦିବ୍ୟ ଜ୍ଞାନ ନେତ୍ରେ ହେଲେ ଦେଖିଥାନ୍ତି ଥରେ,
ଅପ୍ରାକୃତ ପ୍ରେମରୂପ ସତ୍ୟ ସନାତନ
ଅନନ୍ତ ବାସନା ହୋଇଥାଆନ୍ତା ପୂରଣ ।"—ଅବକାଶଚିନ୍ତା-ପୃ. ୩୫

Digitized by PPRACHIN, SOA

କୀଟ୍‌ସଙ୍କ ରଚନାମାଧ୍ୟମରେ ଏବଂ ମଧୁସୂଦନଂକ ପ୍ରତ୍ୟକ୍ଷ ପ୍ରଭାବରୁ ଗୋପବଂଧୁଂକ ପ୍ରକୃତିଭାବନାର ରୂପାଦର୍ଶକୁ ନିରୂପିତ କରିଥିବା ସଂଗତ ମନେହୁଏ । ଓ୍ୱାର୍ଡସ୍‌ଓ୍ୱାର୍ଥଂକ ପ୍ରକୃତିତତ୍ତ୍ୱ ଓ ମଧୁସୂଦନଂକ ଆର୍ଷ ଜିଜ୍ଞାସାମୂଳକ ମନନୋପଲବ୍‌ଧି ଭିତରେ ପ୍ରକୃତି କବିଂକ ପ୍ରତ୍ୟକ୍ଷିତ ଦୃଶ୍ୟର ଅଂତରାଳରେ, ସୁଂଦର ରୂପଛବି ଭିତରେ ବିମୋହନ ଅପାର୍ଥିବ ସୌଂଦର୍ଯ୍ୟକୁ ଉଦ୍‌ଭାସିତ କରିଦିଏ । ପୁଣି ଆଧୁନିକ ଓଡ଼ିଆ କାବ୍ୟଚେତନାରେ ରୋମାଣ୍ଟିକ ପ୍ରକୃତିପ୍ରାଣତାର ସୌଂଦର୍ଯ୍ୟାଦର୍ଶ ଗୋପବଂଧୁଂକ କାବ୍ୟ-ମାନସରେ ଭଂଜ/ରାଧାନାଥ ପ୍ରକୃତି-ପ୍ରୀତିର ରୂପସାଧନାକୁ ଅଂଗୀକାର କରିନେବା ଭିତରେ ଯେଉଁ ସତ୍ୟାଦର୍ଶକୁ ମୁଖ୍ୟ ଉପସ୍ଥାପନା ରୂପେ ଗ୍ରହଣ କରିନେଲା; ତାହା କିଂରୁ କୀଟ୍‌ସ / ରାଧାନାଥଂକ 'ସୌଂଦର୍ଯ୍ୟହିଁ ସତ୍ୟ'ର ସିଦ୍ଧାଂତ ପରିବର୍ତ୍ତେ ବରଂ 'ସତ୍ୟହିଁ ସୌଂଦର୍ଯ୍ୟ'—ଏ ମଧୁସୂଦନୀୟ ଉପଲବ୍‌ଧିର ନିକଟତର ମନେହୁଏ । ପ୍ରକୃତିର କୋଳରେ ତାଙ୍କର ଆବାଲ୍ୟ ମାତୃ-ମମତା-ବଂଚିତ ସ୍ନେହ-କାଂଗାଳ ହୃଦୟ ବାତ୍ସଲ୍ୟର ମଧୁର ସ୍ପର୍ଶ ଲାଭକରେ । (୧୬) ଜାଗତିକ ଜଂଜାଳଜାତ ମାନସିକ ସଂତାପକୁ ଦୂରକରେ । (୧୭) ସ୍ୱର୍ଗୀୟ ପ୍ରେରଣାରେ ଉଦ୍‌ବୁଦ୍ଧ କରେ । ପ୍ରକୃତି କବିଙ୍କୁ ଈଶ୍ୱରଙ୍କ ସ୍ମରଣ କରାଇଦିଏ । (୧୮) ଜୀବନ-ରହସ୍ୟ ସଂବଂଧରେ ଉଦ୍‌ବୋଧିତ କରିଦିଏ । (୧୯) 'ଚଂଦ୍ରପ୍ରତି' ଉଦ୍ଦିଷ୍ଟ 'ଓଡ଼'ରେ ଚଂଦ୍ରକୁ ଉପଲକ୍ଷ୍ୟ କରି ଯେ "ଚନ୍ଦ୍ରେ ହୁଏ ଅନୁମିତ, ଗାଉ ତୁ ବିଭୁସଂଗୀତ × × × ନିର୍ଜୀବ ବୋଲି ତୋତେ ବୋଲିବି କେମନ୍ତେ ?" ତାହା କବିଙ୍କ ସମଗ୍ର ପ୍ରକୃତି-ଭାବନାର ଅନ୍ତର୍‌ବାଣୀ ।

ପ୍ରକୃତିମାଧ୍ୟମରେ ଏ ସତ୍ୟଦର୍ଶନ, ପ୍ରୀତିଭାବନା ଓ ବିଶ୍ୱବୈଚିତ୍ର୍ୟର ରୂପାନୁଭୂତି 'ଭାର୍ଗବୀପ୍ରତି', 'କାଠଯୋଡ଼ୀ' ଶୀର୍ଷକ କବିତାମାନ ଓ 'ବନ୍ଦୀର ସ୍ୱଦେଶଚିନ୍ତା', 'ବିଶ୍ୱର ମିଳନଚିହ୍ନ', 'ନୀରବ' ପ୍ରଭୃତି କବିତାରେ ପ୍ରତିଫଳିତ । 'ନୀରବ' ଏକ ପ୍ରତିନିଧିଶ୍ରେଣୀୟ ରଚନା ବୋଲି ମନେ-ହୋଇଥାଏ ।

'ନୀରବ' କବିତାଟି ଗଭୀର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ-ସମୃଦ୍ଧ । କବିଂକ ଜୀବନ-ଦର୍ଶନ ଓ କାବ୍ୟୋ-ପଲବ୍‌ଧିର ମଧୁର ସମନ୍ୱୟରେ ଏ କବିତା ଋଷିକବିର ବିପୁଳ ଅନୁଭବକୁ ମାଂତ୍ରିକ ପ୍ରକାଶ ଦେଇଛି । ମଧୁସୂଦନଙ୍କ 'ଆକାଶପ୍ରତି'ର ଭାବ ସାମଂଜସ୍ୟ ଓ ଶେଲିଙ୍କ 'Ode to heaven'ର ରୂପଚେତନା ଏ ସ୍ୱରଗାଂଭୀର୍ଯ୍ୟରେ ପରିସ୍ଫୁଟ ହେଲେହେଁ କବିଙ୍କ ଆତ୍ମୋପଲବ୍‌ଧି ଏହା ଭିତରେ ଏକ ଚମତ୍କାର କାବ୍ୟଭାବନା ରୂପେ ବିଶ୍ୱର ରହସ୍ୟ ସଂଧାନୀ ହୋଇପଡ଼ିଛି । ଅଧ୍ୟାତ୍ମବାଦୀ କାବ୍ୟାମୋଦୀଂକ ରସବୋଧ

(୧୬) 'ଭାର୍ଗବୀ ପ୍ରତି'—ଅବକାଶ ଚିନ୍ତା-ପୃ. ୩୭

(୧୭) ସଂସାରର ଲଜ୍ଜା ଘୃଣା ପ୍ରବଂଚନା ଜାଲେ / ପ୍ରପୀଡ଼ିତ ହୁଏ ମୋର ମାନସ ଯେ କାଳେ
ନିଭୃତେ ତୋ ତୀରେ ଆସି କରେ ବିଚରଣ / କି ମୋହନ ମନ୍ତ୍ରେ କରୁ ସକଳ ହରଣ ।
ବିବିଧ ସ୍ୱର୍ଗୀୟ ଚିନ୍ତା ନାନା ପ୍ରିୟ ଭାବ / କଳୁଷିତ ହୃଦେ ମୋର କରାଉ ଉଦ୍ଭବ ।"
—'ଅବକାଶଚିଂତା'-ପୃ. ୩୭

(୧୮) "ଜାଣିଲି ମାନବ ହୃଦ ସଂଗେ ଆଦ୍ୟକଂଦ / ସ୍ଥାପିଛଂତି ପ୍ରକୃତିର ବିଚିତ୍ର ସଂବନ୍ଧ ।"
—'ଅବକାଶଚିନ୍ତା'-ପୃ. ୩୭

(୧୯) "ପ୍ରକୃତିର ବିଚିତ୍ରତା ତୋ ପବିତ୍ର ଅଂଗେ / ହୋଇଣ ପ୍ରତିଫଳିତ ଆହା କେଡ଼େ ରଂଗେ,
ନାନାବିଧ ମାନବର ବିଭିନ୍ନ ସ୍ୱଭାବ / ଉପୁଜାଏ ହୃଦକ୍ଷେତ୍ରେ ନବ ନବ ଭାବ ।"
—'ଅବକାଶଚିନ୍ତା'-ପୃ. ୭

Digitized by PPRACHIN, SOA

ବିଷୟରେ "ଗୋପବନ୍ଧୁଙ୍କ ସର୍ବଶ୍ରେଷ୍ଠ କବି-କୃତି ହେଉଛି 'ନୀରବ ଶୀର୍ଷକ' କବିତାଟି । (୨୦) ଦିବ୍ୟଜ୍ୟୋତି ଓ ଦିବ୍ୟବାଣୀର ରହସ୍ୟବାଣୀ ସଂବାଦରେ ଏଥିରେ କବିଂକ ଦିବ୍ୟୋପଲବ୍‌ଧିର ସ୍ପଷ୍ଟ ସ୍ୱାକ୍ଷର ବିଦ୍ୟମାନ । କବିତାଟି କବିଂକ ଜୀବନଦର୍ଶନକୁ ମଧ୍ୟ ସ୍ପଷ୍ଟ ଓ ସୁବୋଧ କରେ । ନୀରବ କର୍ମସାଧନା କବିଙ୍କ ଜୀବନ-ଦର୍ଶନ । ଏହା ବିଶ୍ୱ-ସୃଷ୍ଟିର ରହସ୍ୟ-ଦର୍ଶନ ମଧ୍ୟ : "ନୀରବ ନିଖିଳ ବିଶ୍ୱ ନିଗୂଢ଼ ମନ୍ତ୍ର ।" ଅଂତଃଚେତନାରେ କବି ଏ ମଂତ୍ର-ସତ୍ୟକୁ ଉପଲବ୍‌ଧି କରିଛନ୍ତି । ସାରା ଜୀବନ ଅଂତରରେ ଓ ଉଚ୍ଚାରଣରେ, କର୍ମରେ ଓ ପ୍ରେମରେ (ବିଶ୍ୱକୁ ପ୍ରେମମାର୍ଗରେ ହୃଦୟ-ନିହିତ କରିବାରେ ଓ ଆପଣାକୁ କର୍ମମାର୍ଗରେ ବିଶ୍ୱପ୍ରସାରିତ କରିବାରେ) ପୁଣି ଆପଣାର ଅଂତଃ ବହିଃ ସବୁକୁ ବିଶ୍ୱ ସହ ଏକ କରି ବିଶ୍ୱମୟଙ୍କୁ ଅର୍ପଣ କରିବାର ନୀରବ ସାଧନାରେ ସେ କର୍ମଜୀବନର ମଂତ୍ରସ୍ମରଣୀ ଓ ବ୍ରତପାଳନା ।

ସମୟର ନିସ୍ତବ୍ଧ ପ୍ରବାହରେ, ପାର୍ଥିବ ଜଗତ୍ ଓ ଅନ୍ତଂରୀକ୍ଷରେ, ନିଶ୍ଚେତନ ଓ ଚେତନ ସର୍ବତ୍ର ଏହି ନିଗୂଢ଼ 'ସତ୍ୟ-ତତ୍ତ୍ୱ'ହିଁ ଋତ୍ ଶକ୍ତି ରୂପେ କ୍ରିୟାଶୀଳ । ବୈଦିକ ଋତ୍‌ଚିନ୍ତର ଏହି କର୍ମାଭିବ୍ୟକ୍ତି ମାର୍ଗରେ ସତ୍ୟୋପଲବ୍‌ଧିହିଁ ଗୋପବଂଧୁଂକ ଜୀବନକୁ ବିଶ୍ୱଯଜ୍ଞରେ ହବିନୀୟ କରିଛି ଓ ତାଙ୍କ ପୂତ ଆର୍ଷ ବ୍ୟକ୍ତିତ୍ୱକୁ ଏକାଧାରରେ ହୋତା, ଉଦ୍‌ଗାତା, ଅଧ୍ୱର୍ଯ୍ୟୁର ନିର୍ଦ୍ଦିଷ୍ଟ ଆସନରେ ଉପବିଷ୍ଟ କରାଇଛି, ପୁଣି ସେ ସକଳ କର୍ମ ଅଦୃଷ୍ଟ-ଯଜ୍ଞଦେବତା ପରାତ୍ପର ବ୍ରହ୍ମଂକୁ ନିବେଦିତ କରାଇ ବ୍ରହ୍ମାବରଣ ଦେଇଛି । ଗୋପବଂଧୁ ଊର୍ଦ୍ଧ୍ୱସ୍ଥ ଚେତନାଲୋକରୁ ଯେ ସତ୍ୟର ମଂତ୍ର ଲାଭ କରିଛଂତି, ତାହାହିଁ ଏ କବିତାରେ ସଂକେତିତ ଅଂତରୀକ୍ଷରୁ ନୀରବ ସଂସ୍ମୃତ ଦିବ୍ୟମଂତ୍ର; ଅଂତରରେ ତାହାର ପ୍ରତିଧ୍ୱନି ଓ ଜୀବନରେ ତାହାର ସ୍ୱଗତାଳାପ, ବାହ୍ୟ ଓ ଅଭ୍ୟଂତରରେ, କର୍ମ ଓ ଭାବନାରେ ସେହି ଜୀବନ-ସତ୍ୟର ଅଶ୍ରୁତ ଉଦ୍‌ବୋଧନ ।

**ଆଧ୍ୟାତ୍ମିକତା ଓ ଧର୍ମବିଚାର**—ଧର୍ମକୁ କବି ଆତ୍ମିକ ଓ ଆନ୍ତରିକ ବୋଲି ଗ୍ରହଣ କରିଛନ୍ତି । ଆତ୍ମାରୁ ତାହା ଉଚ୍ଚାରଣ ଲାଭ କରି ଜୀବନର କର୍ମଧାରାରେ ପ୍ରକାଶିତ ହୁଏ । ନୈଷ୍କର୍ମ୍ୟକୁ କବି ଧର୍ମପାଳନ ବୋଲି ଗ୍ରହଣ କରନ୍ତି ନାହିଁ । ପୁଣି ଧର୍ମକୁ ବାହ୍ୟ କର୍ମ ସୀମିତ ମଣନ୍ତିନାହିଁ । କବିଙ୍କ ବିବେଚନାରେ କର୍ମସାର କେବଳ ଧର୍ମସାର ହୋଇପାରେ; କାରଣ କର୍ମ ହିଁ ଧର୍ମ । ଫଳାସକ୍ତିବିହୀନ କର୍ମ ମାଧ୍ୟମରେ ହିଁ ନିଷ୍କାମ ଧର୍ମାଚରଣ ସଂଭବ । ନିଷ୍କାମ ମନ ଓ ଶୁଦ୍ଧ ଚିତ୍ତ, 'କର୍ମେ ଅନାସକ୍ତ, ଧର୍ମେ ଦିବ୍ୟରତି' ତାଙ୍କର ଜୀବନ-ମଂତ୍ର ଥିଲା ।

ଏ ଧର୍ମଦର୍ଶନ ଓ ଆଧ୍ୟାତ୍ମିକତାର ଭାବଚେତନା 'ଶିବରାତ୍ରି' କବିତାରେ ସୁସ୍ପଷ୍ଟ । ଏ କବିତାଟି ମଧ୍ୟ ଅଧ୍ୟାତ୍ମ-ଉପଲବ୍‌ଧିର ରହସ୍ୟୋଚ୍ଚାରଣ ଉପରେ ବିଲଂବିତ । ରହସ୍ୟ-ଯାମିନୀର ଅଂଧକାର ସଚେତନତା ଓ ଆଲୋକ-ଅନ୍ୱେଷା ଏଥିରେ ରୂପାୟିତ । ସେ ଆଲୋକ-ସଂଧାନ ମଧ୍ୟ ଫଳ-ପ୍ରତିଶ୍ରୁତ । ପ୍ରଥମ ପର୍ଯ୍ୟାୟରେ ସଂଶୟ, ପ୍ରତ୍ୟୟହୀନତା ଆଧ୍ୟାତ୍ମ-ସାଧନାର ସ୍ୱାଭାବିକ ଭାବାନୁସଂଗ ରୂପେ ସଂଜାତ । ମୃଣ୍ମୟପୂଜାର ଆନୁଷ୍ଠାନିକତାରେ କବିଙ୍କ ମନଃପୂତ ନୁହେଁ । ପାପକଳୁଷିତ ଚେତନାକୁ ଦେବଯୋଗ୍ୟ ନୈବେଦ୍ୟ ରୂପେ ଅର୍ପଣ କରିବାକୁ ସେ କୁଣ୍ଠିତ । ଏକ ପକ୍ଷରେ

---

(୨୦) 'ନୀରବ' ପର୍ଯ୍ୟାୟର କବିତା କେବଳ ଭାରତୀୟ ସାହିତ୍ୟରେ ନୁହେଁ, ବିଶ୍ୱ-ସାହିତ୍ୟରେ ବିରଳ ।'

ମନୋଜ ଦାସ—'ଗୋପବନ୍ଧୁ ପରିକ୍ରମା'-ପୃ. ୧୦୩

Digitized by PPRACHIN, SOA

ଆତ୍ମଦୈନ୍ୟର ଗ୍ଲାନି; ଅପର ପକ୍ଷରେ ଦୈବତ ସଂଶୟ । 'ଚିଦାନଂଦ'ର ସଂଦେଶ ବିନା ଚିନ୍ମୟ ଆରାଧନା କିପରି ସଂଭବ ହେବ ? ସମସ୍ତ ଜୀବନ ଅଜ୍ଞାନ-ନିଦ୍ରା-ବିମୋହିତ ରହିଥିବାବେଳେ ବାହାରେ ଗୋଟିଏ ସୋପାନ୍ୱିତ ରାତ୍ରି ଆତ୍ମାର ଅଂଧକାରକୁ କିପରି ବିନାଶ କରିବ ? ସେଥିପାଇଁ "ସଂଦେହେ ବ୍ୟାକୁଳ ମୋର ଦୁର୍ବଳ ପରାଣ / ନିରାଶ ବିଷାଦେ ଏକା ମଗ୍ନ ମୋର ଜ୍ଞାନ ।" ଏ ପଙ୍‌କ୍ତିମାନ ରହସ୍ୟବାଦୀ ଅନଳ-ସାଧନାର ସଂଘର୍ଷ, ଆର୍ତ୍ତନାଦ, ଅଧ୍ୟାତ୍ମଯାତ୍ରୀର ପଥକ୍ଲେଶର ସ୍ପଷ୍ଟ ରୂପସଂକେତ । ଏ ବେଳେ ହୃଦୟ ନୀରସ, ମନ ସଂଶୟାକୁଳ, ଚିତ୍ତ ବ୍ୟାକୁଳିତ, ବିଶ୍ୱଭୁବନ ମଧ୍ୟ ନିରାନଂଦମୟ ।

ବାହାରର ଅଂଧାର ସହ ଭିତରର ଅଂଧାର ମିଶିଛି । ବାହାରେ ଅମାବାସ୍ୟା ତିଥିର ନିଶ୍ଛିଦ୍ର ଅଂଧକାର, ଭିତରେ ଜ୍ଞାନ ଓ ପ୍ରେମର ପ୍ରତ୍ୟୟରହିତ ଅସ୍ପୃଶ୍ୟ, ଅଜସ୍ର ତମିସ୍ରିତ ଚେତନାକାଶ । ଅଂତରର ନିରାନଂଦ ସହ ବାହାରର ନୀରସତା ମଧ୍ୟ ରୂପସାମ୍ୟ ଲାଭ କରିଛି । ଆଶ୍ୱାସନାର, ବିଶ୍ୱାସର କ୍ଷୀଣ ଜ୍ୟୋତିରେଖାଟିଏ ମଧ୍ୟ କେଉଁଠି ନାହିଁ । ଏହି ଘୋର ବିଷାଦମଗ୍ନ ଭାବସ୍ଥାଣ୍ଡୁତ୍ୱ ଭିତରେ ଦିବ୍ୟଚେତନାର ଆକସ୍ମିକ ରୂପୋପଲବ୍‌ଧି (୨୧) ସଂଜାତ ହୋଇଛି । ଏହାହିଁ ରହସ୍ୟବାଦୀ ଦିବ୍ୟବାଣୀ, ଅଦ୍‌ଭୁତର୍ କିଂବା ବା ମିରାକ୍ଲ । ଜଡ଼ ଭିତରେ ଚିନ୍ମୟ ସଂଗୁପ୍ତ, ମୃଣ୍ମୟ ଚିନ୍ମୟର ଜଡ଼ ରୂପାଂତର, ସର୍ବତ୍ର ଶକ୍ତି ଜାଗ୍ରତ । ହୃଦୟରେ ସେ ଦିବ୍ୟ ଶକ୍ତି ପ୍ରତିମା ରୂପ ପାଇ ଉଠିଲେ ହୃଦୟ ଦେବାଳୟ ପାଲଟିଯାଏ, ହୃଦୟର ପ୍ରେମ ମଂଦାକିନୀରେ ଦେବାଭିଷେକ ସମ୍ପନ୍ନ ହୁଏ । ଜ୍ଞାନଦୀପ ଜାଳି, ପ୍ରାଣପୁଷ୍ପ ଅର୍ପଣ କରି ନିଷ୍କାମ ମଂଚ ଉପରେ ଏ ଦେବତାଂକୁ ନିତ୍ୟ ଆରାଧନା କରିବାକୁ ହୁଏ । ତାହାହିଁ "ସମସ୍ତ ଜୀବନ କରି ଏକ ଶିବରାତ୍ରି"ର ତାତ୍ପର୍ଯ୍ୟ । ଆତ୍ମଜାଗରଣ, ଅତଂଦ୍ରିତା, ଚେତନାର ଆଲୋକ ଅଭିଳାଷ ଓ କର୍ମରେ ଅନଳ-ପ୍ରଖରତା ଏଥିପାଇଁ ଏତେ ପ୍ରୟୋଜନ । କବିତାରେ ଏ ଦେବତା 'ଆତ୍ମଦେବତା' ଓ 'ବିଶ୍ୱଦେବତା'ଙ୍କ ଏକତ୍ର ରୂପ ଉଦ୍‌ବୋଧନ ଆଣିଂଛି । ଆତ୍ମକଲ୍ୟାଣ ଓ ବିଶ୍ୱମଂଗଳର ପଥଟି ଯେ ଏକ ଓ ଅଭିନ୍ନ—ଆତ୍ମଦେବ ଓ ବିଶ୍ୱଦେବ ସଂବଂଧୀୟ ଯାବତୀୟ ରହସ୍ୟବାଦୀ ତତ୍ତ୍ୱ ଏଇ ଉପଲବ୍‌ଧି ଭିତରୁହିଁ କବିଚେତନାରେ ଉଚ୍ଚାରିତ ।

କବି ଦେବତାଂକ ସଂପର୍କରେ 'ଶିବ' ପ୍ରତୀକକୁ ବ୍ୟବହାର କରିଛଂତି । ବହୁ ସ୍ଥଳରେ ଈଶ୍ୱରଂକୁ 'ଶିବ' ଭାବରେ ଦେଖିବାରେ କବିଂକ ଚିତ୍ତପ୍ରବଣତା ଓ ଭାବଦୁର୍ବଳତା ଲକ୍ଷ୍ୟ କରିହୁଏ । ('ନିରାଜ୍', 'କ୍ରୋଧ' ପ୍ରଭୃତି) । ଏ ଶିବ ଯୋଗେଶ୍ୱର, ଧ୍ୟାନମୌନ, ଆତ୍ମବିରାଗୀ, ବିଶ୍ୱକଲ୍ୟାଣପାଇଁ ତପସ୍ୟାରତ । ସେ ଶକ୍ତିଯୁକ୍ତ—ଏ ଶକ୍ତିର ବିଶେଷ ପ୍ରକାଶ କର୍ମ । କର୍ମୀ ଗୋପବଂଧୁଂକ ଅଂତରର ଆରାଧ୍ୟ ରୂପ ଯେ ଏହି ଶିବଂକ ଅବିଚଳିତ, କଲ୍ୟାଣମୟୀ, ସମାହିତ ଯୋଗ-ସ୍ଥିରତାକୁ ଆତ୍ମସାଧନାର ଲକ୍ଷ୍ୟ ରୂପେ ଓ ତାଙ୍କର ଶକ୍ତି ପ୍ରକାଶକୁ ବିଶ୍ୱଜୀବନ ମଧ୍ୟରେ ସଂପ୍ରସାରିତ କରିବାର ଚିହ୍ନଟି ଆଂକି ନେଇଥିବ, ତାଂକର ବ୍ୟକ୍ତିଗତ ଜୀବନ ତ ଏହାର ସାକ୍ଷ୍ୟ । ଆତ୍ମପୁରୁଷ ତାଂକର ଭାବସ୍ଥିର, କର୍ମ ଜୀବନ ବିଶ୍ୱବେଦନା ଉତ୍କଳ ।

'ଶିବରାତ୍ରି' ମୁଖ୍ୟତଃ ଅଧ୍ୟାତ୍ମ ଜାଗରଣର ସମ୍ବାଦ । ଏହା ଚେତନାର ସେହି ଉଦ୍‌ବର୍ତ୍ତନକୁ ଆତ୍ମ ହାକରେ, ଯେଉଁଠି ସକଳ ଅଦିବ୍ୟ ଦିବ୍ୟ ରୂପାଂତର ଲାଭ କରନ୍ତି । ମନସ୍ତାତ୍ତ୍ୱିକ ବିବର୍ତ୍ତନ ବିଗ୍ରହରେ ଏହା ଏକ ପ୍ରାରଂଭିକ ସିଦ୍ଧାଂତ ରୂପେ ଗୃହୀତ ଯେ, ମାନବର ଚିତ୍ତଭୂମିରେ ଜାଗ୍ରତ ବାସନାଲୋକର ସକଳ ବୃତ୍ତିଭାବନା ତାର ଚେତନାର ଶୀର୍ଷଭୂମିରେ ପ୍ରକୃତରେ ବିନଷ୍ଟ ହୁଅନ୍ତି

(୨୧) "ଅଂତରୁ ନୀରବେ ଏବେ ହେଲା ଦିବ୍ୟବାଣୀ"—'ଅବକାଶଚିଂତା'—ପୃ. ୮୭.

Digitized by PPRACHIN, SOA

ନାହିଁ; ଊର୍ଦ୍ଧ୍ୱାୟନ ଗତି ପ୍ରକ୍ରିୟା ଭିତରେ ରୂପ ପରିବର୍ତ୍ତନ କରନ୍ତି ମାତ୍ର । ମାନବତ୍ୱ ଦିବ୍ୟତ୍ୱ ଲାଭ କଲେ ସକଳ ପାର୍ଥିବତା ମଧ୍ୟ ଅପାର୍ଥିବ ରୂପ ଲାଭ କରନ୍ତି; କାମ ପ୍ରେମରେ, କ୍ରୋଧ ବିଘ୍ନ-ସଂହାର ଶକ୍ତିରେ ପରିଣତ ହୁଅନ୍ତି । ଧର୍ମ ଓ ନୈତିକତା ଚେଷ୍ଟା ମାନବର ସ୍ୱଭାବ ଇତିହାସରେ ପାର୍ଥିବ ବୃତ୍ତିବାସନା ବିରୁଦ୍ଧରେ 'ଯୁଦ୍ଧଂ ଦେହି' ଡାକରା ଦେଇଥିଲାବେଳେ ରହସ୍ୟବାଦର ମର୍ମଗତ ଦର୍ଶନରେ ମାନବୀୟ ସବୁକିଛି ଚେତନା ଦିବତ୍ୱ ଲାଭ କରିବାକୁ ଉଦ୍‌ବୋଧିତ । ବିବର୍ତ୍ତନର ରହସ୍ୟକୁ ସ୍ୱୀକାର କରି, ଅତୀତକୁ ଏଇଭଳି ଭବିଷ୍ୟତ ସହ ସଂଯୁକ୍ତ ଓ ଏକୀଭୂତ କରି ଦେଖିବାର ବିପୁଳ ସାମର୍ଥ୍ୟ ହେତୁ ରହସ୍ୟବାଦ ଏ ରୂପାଂତର ଓ 'ପୁଣର୍ଜୀବନ'ର ବିସ୍ତାରକୁ ଯେପରି ଅକୁଣ୍ଠ ସ୍ୱୀକୃତି ଦେଇପାରେ ଓ ସକଳ ସୀମାଦୈନ୍ୟ ସତ୍ତ୍ୱେ ମାନବାତ୍ମାକୁ ଯେଉଁ ସଶ୍ରଦ୍ଧ ଅଭିନଂଦନ ଡାଳିପାରେ, ଖଂଡିତ ଧର୍ମଧାରଣା ଓ ନୈତିକ-ବିସ୍ତାର ସେପରି କରିପାରନ୍ତି ନାହିଁ ।

କବିଂକର ଏ ରହସ୍ୟବାଦୀ ଭାଗ୍ୟଚକ୍ରଭାବନା 'କାମ' ଓ 'କ୍ରୋଧ' (୨୨)ରେ ପୂର୍ଣ୍ଣ ଫଳପ୍ରସିତ । କବିଂକ ବିସ୍ତାରରେ କ୍ରୋଧ ହେଉଛି ରୁଦ୍ରଂକର ସେଇ ସଂହାରଶକ୍ତି, ଯାହା ସତ୍ୟର ବିରୋଧ ସମ୍ମୁଖରେ ଉଗ୍ର ପ୍ରଚଂଡ ହୋଇ ଦଂଡାୟମାନ । (୨୩) ଋଗ୍‌ବେଦର ବିଷ୍ଣୁ-ସୂକ୍ତରେ ଏ ରୁଦ୍ରରୂପର (୨୪) ସଂକେତ ରହିଛି ।

'କାମ'କୁ ସଂବୋଧନ କରି କବି କହିଛଂତି, "ତୁମ ମଧୁଭାବେ ଜ୍ଞାନୀକରେ ଅନୁଭୂତ / ଶୁଭ ଦିବ୍ୟ ବିଭୁପ୍ରେମ ଜଡ଼ ପ୍ରତିକୃତି ।" ପ୍ଲାଟୋନିକ୍ ପ୍ରେମର ସ୍ତରଗତ ବ୍ୟାଖ୍ୟା ଏଠାରେ ସ୍ମରଣକୁ ଆସେ । 'ସହଜ ପରିଚୟ', ସ୍ୱତଃ ଉତ୍ସାରିତ ଆତ୍ମଭୂତ ପ୍ରେମହିଁ ଦିବ୍ୟପ୍ରେମର ଆଦ୍ୟ ପାର୍ଥିବ ପ୍ରକାଶ । କାମ ଓ ପ୍ରେମର ଐକ୍ୟ ଉପଲବ୍‌ଧିରେ ରହସ୍ୟବାଦୀ ପ୍ରେମସିଦ୍ଧାଂତର ମୂଳଧାରଣାଟି ଅବଲଂବିତ । ଏହି ପ୍ରେମକୁ ଲକ୍ଷ୍ୟକରି କବି କହିଛଂତି, "ପ୍ରଣୟର ସ୍ଥାନ ନୁହେଁ ଏ ସଂସାରେ ଏକା / ପ୍ରେମେ ପ୍ରଣୟୀ ସଂଗତେ ସ୍ୱର୍ଗେ ହେବ ଦେଖା ।" (୨୫) ପାର୍ଥିବ ପ୍ରେମର ସ୍ୱର୍ଗୀୟ ପ୍ରେମରେ ଏ ରୂପାଂତରର ସଂବାଦ 'ଡିଭାଇନ୍ କମେଡ଼ି' ବର୍ଣ୍ଣିତ ପ୍ରୀତିବିକାଶର ସମାଂତରାଳ ଭାବଚେତନାରେ ସଂଯୋଜିତ । ଟେନିସନଂକ 'ପ୍ରୀତିସ୍ମୃତି'ର (In Memorium) ଭାବଗ୍ରନ୍ଥୀ ସମ୍ପୃକ୍ତ ଏ ରୂପାନୁଭବ କବିଂକ ପରିଣତ ଉପଲବ୍‌ଧିରେ ପ୍ରଣୟନିଷ୍ଠାର ସକଳ ଆନୁଗତ୍ୟ ବହନ କରି 'ବିଶ୍ୱର ମିଳନ ଚିହ୍ନ'ରେ (କାରାକବିତା) । ପୂର୍ଣ୍ଣ ଓ ବ୍ୟାପକ ଭାବପ୍ରତିଷ୍ଠା ଲାଭକରିଛି । ଗଭୀର ଉପଲବ୍‌ଧିରୁ ଉଚ୍ଚାରିତ 'ଗିରିଶିଖେ' ଲୟ ରଖି ଓ 'ବିଶ୍ୱର ମିଳନ ଚିହ୍ନ' ଗୋପବନ୍ଧୁଂକ ରହସ୍ୟାଶ୍ରୟୀ ପ୍ରେମଭାବନାର ସାମ-ସଂଗୀତ ବୋଲି କୁହାଯାଇପାରେ ।

'କାମ' କବିତା ପ୍ରସଂଗରେ ପୁନର୍ବାର ସ୍ମରଣୀୟ ଯେ କାମଚେତନାର ଶୃଂଗାରିକତା ସଂଭୋଗ ଓ ବିପ୍ରଲଂଭ ଉଭୟ ମାର୍ଗରେ ରହସ୍ୟବାଦୀ ରୂପପରିଣତିକୁ ଲାଭକରିପାରେ । ଗୋପବନ୍ଧୁଂକ କାବ୍ୟ-

---

(୨୨) ଅବକାଶ ଚିଂତା—ପୃ. ୬୩ ଓ ୬୪

(୨୩) 'ମହାକାଳରୂପୀ ଦେବ । × ×
ସତ୍ୟ ଧର୍ମ ନ୍ୟାୟ ସଖା ରୁଦ୍ର-ରୂପୀ କ୍ରୋଧ ।"—ଅବକାଶ ଚିଂତା—ପୃ. ୬୪.

(୨୪) ଋକ୍—୧/୧୫୪/୨

(୨୫) 'ଅନାଥା କଳିକା'—ଅବକାଶ ଚିନ୍ତା—ପୃ. ୮୫

Digitized by PPRACHIN, SOA

ରଚନାର ମୂଳ ଆବେଗଟି ନିଃସଙ୍ଗତା ଓ ବିଷାଦବୋଧ । ତାଂକ ବିଷାଦବାଦ ଅପ୍ରାପଣୀୟ ପ୍ରଣୟ ଖେଦରେ ବିରହ ଧୂସର ଏବଂ ଅଶାଂତ୍ରିୟ ପ୍ରେମବ୍ୟାକୁଳତାରେ ସଂଚାରିତ । ପୃଥିବୀର ସବୁ ସମ୍ପର୍କ ଓ ଅପାର୍ଥିବ ପାଇଁ ପ୍ରୀତିସମ୍ବେଗ ଏହାର ଅନ୍ତର୍ଭୁକ୍ତ । ପ୍ରସଙ୍ଗ ଅବକାଶରେ ଅନେକ ସ୍ଥଳରେ କବି ତାଙ୍କ ଆତ୍ମ ନିଃସଙ୍ଗତା ଓ ପ୍ରୀତିବ୍ୟାକୁଳତାର ପୃଷ୍ଠଭୂମିଟିକୁ ସଙ୍କେତିତ କରିଛଂତି । ଜୀବଦଶାରେ ମର୍ତ୍ତ୍ୟ-ସ୍ନେହବଂଚିତ କାରାକବିତାର ଅଶ୍ରୁଳ ସ୍ୱର ଏହାର ସାକ୍ଷୀ । (୨୬) ଛବିଶ ବର୍ଷ ବୟସରେ ତାରୁଣ୍ୟର ସମ୍ମୋହିତ ସ୍ୱଗଲାପ ପରିବର୍ତ୍ତେ ସେ ସ୍ୱପ୍ନଭଂଗର ଗାନ କରିଛଂତି : "ଅଜ୍ଞାତ କେବଳ ମୋର ରୂକ୍ଷ ସଙ୍କେତ ।" ଆଉ ସେଇଥିପାଇଁ "ମଧ୍ୟାହ୍ନେ ପ୍ରଦୋଷ ଚନ୍ଦ୍ରା ପଡ଼ଇ ମୋ ମନେ ।" ଇଂରେଜ କବି ରୋସେଟିଙ୍କ ସନେଟ୍‌ଗୁଡ଼ିକରେ ଏ ସ୍ୱପ୍ନଭଂଗର ହତାଶା (୨୭) ଗୋପବନ୍ଧୁଂକ ବ୍ୟର୍ଥ ସ୍ୱପ୍ନ ସହ ଚମତ୍କାର ଭାବସାମ୍ୟ ପ୍ରତିଷ୍ଠା କରିଛି ।

ସ୍ନେହସ୍ୱଜନବିୟୋଗ କବିଂକୁ ମର୍ତ୍ତ୍ୟପ୍ରୀତିର ସୌଭାଗ୍ୟବଂଚିତ କରାଇଛି । ଅଥଚ ସେ ପ୍ରେମହିଁ ଏକମାତ୍ର ଧରାସାର ।(୨୮) ଏ ପ୍ରେମ ତତ୍ତ୍ୱତଃ ଯେତେ ଅମର୍ତ୍ତ୍ୟ, ଅପାର୍ଥିବ, ଅସୀମ ବିଶାଳ ହୋଇ ଥାଉନା କାହିଁକି, ତାର ଏକମାତ୍ର ସାର୍ଥକତା ଆସେ ଧରାପ୍ରୀତିର କ୍ଷୁଦ୍ର ଆୟୋଜନ ଭିତରେ । ମର୍ତ୍ତ୍ୟ-ମମତାବଂଚିତ କବି ତେଣୁ ସେ ପ୍ରୀତିକୁ ବଡ଼ ଦୁର୍ଲଭ ମନେକରଂତି ! କ୍ଷୁଦ୍ର ଜୀବନରେ ଏଇ ସାମୟିକ ପ୍ରେମ ପାଇଁ ଯେ ହୃଦୟର ଅସଂଖ ଅତୃପ୍ତି ଭରିହୋଇ ରହିଥାଏ, ତାର କାରଣ, ଜୀବନକୁ ମୁହୂର୍ତ୍ତକ ପାଇଁ, ସାମାନ୍ୟ ଭାବରେ ହେଲେ ବି, ସାର୍ଥକତାର ସ୍ୱାଦ ଓ ତୃପ୍ତି ଏଇ ପ୍ରେମହିଁ ଦାନ କରିଥାଏ । ସବୁକିଛି ସବୁଦିନ ପାଇଁ ମିଳିଲେ ମଧ୍ୟ ତାହା ଜୀବନକୁ ସେଇ ସାର୍ଥକତାଟିକକ ଦେଇପାରଂତା ନାହିଁ; ଯାହା ସ୍ନେହମୟ ଏକ କ୍ଷୁଦ୍ର ହୃଦୟ ଗୋଟିଏ ଜନ୍ମର କ୍ଷଣପ୍ରୀତି ଭିତରେ ଦେଇଥାଏ । ଜୀବନରେ ଏ ଦୁଲଭ ପ୍ରୀତିସମ୍ପର୍କମାନଂକୁ କବି ତେଣୁ ଉପମାୟିତ କରିଛଂତି : "ଭିନ୍ନ ବେଳି ଯଥା ମହାସାଗର ତରଂଗେ / ଭାସିଆସି କ୍ଷଣେ ମିଳି ହୁଏ ଅନ୍ତର୍ହିତ" ଓ "ବେଳି ତୃଣ ବାରେ ଯେବେ ଭେଟି ପରସ୍ପରେ / ଅନନ୍ତ ଭ୍ରମଣ ପଥେ କରନ୍ତି ଗମନ ।' (୨୯) ଏ ଧରାଧାମରେ ମରଣାଂତ ପ୍ରେମ ସହ ଜୀବନର ମୁଗ୍ଧ ସାକ୍ଷାତ୍କାର ଆଉ ଥରେ ସଂଭବ ହୁଏନା । ତଥାପି ହୃଦୟବଂଧନ କବି ତୁଟାଇ ପାରଂତି ନାହିଁ । କ୍ଷଣିକରୁ ଉଦ୍‌ଭୂତ, କ୍ଷଣିକରେ ବିନାଶ । ଏ ମର୍ତ୍ତ୍ୟପ୍ରୀତି ତେବେ କେଉଁ ଅଂତର୍ଗତ ଶକ୍ତିରେ ସ୍ଥିତ ରୂପେ ଅନଂତତା ପ୍ରାପ୍ତ ହୁଏ ! (୩୦) ଶାଂତ ଜୀବନକୁ

---

(୨୬) "ଶୈଶବେ ବିୟୋଗ ଦୁଃଖେ ଗଢ଼ା ଏ ଜୀବନ / ଦେଖିନାହିଁ ମାତୃମୁଖ / ପିତା ପୁତ୍ର ପତ୍ନୀ ବଂଧୁ ବିୟୋଗ ବିଘାତ / ଅଳପ ବୟସେ ମୋର ବହୁ ଅନୁଭବ / ହୃଦ ନିକ୍ଷେପିତ ମୋର ବିରହ-କଷଣେ ।'
—କାରାକବିତା ପୃ. ୫୩

(୨୭) Look in my face, my name is might-have been'
am also called "No more,—Too late, Fair well"
—Morris Bowra—Romantic Imagination—p. 117.

(୨୮) କଂଟକ ସଂକୁଳ ପଥେ କୁସୁମ ବିତାନ / ମରୁଭୂମେ ପ୍ରେମସ୍ନିଗ୍ଧ ସଲିଳ ସମାନ
ମରତିଂତେ ପ୍ରେମ ଏକା ଅମର ସଂସ୍କାର / ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାଧାର
—'ପ୍ରେମର କି ଏହି ପରିଣାମ'—ଅବକାଶଚଂତା-ପୃ. ୫୮

(୨୯) 'କାରାକବିତା'—ପୃ. ୫୩

(୩୦) "ଫୁଲପରି ପ୍ରେମ ଝାଉଁଳେ କି କବେ / ପ୍ରେମ ଯେ ଅନନ୍ତ ଅକ୍ଷୟ କାର ।"
—'କାରାକବିତା'-ପୃ. ୪

Digitized by PPRACHIN, SOA

ଉଦ୍‌ଭୂତ ଏ ପ୍ରେମର ଅନଂତ ରହସ୍ୟ ଉପରି ସଉବ—ଏହିଠାରୁ ହିଁ କବିଂକର ପ୍ରେମ-ଜିଜ୍ଞାସା, ଶାଶ୍ୱତ ସନ୍ଧାନର ଅଦ୍ୟମାରଂଭ : "ଚିତାନଳେ ଭସ୍ମ ନୁହେ ସେନେହ ବଂଧନ / ଶ୍ମଶାନ ନୁହେ ଏ ଜୀବ ଶେଷ ପରିସୀମା ।" ନିଶ୍ଚିତଭାବେ ଏହା ମର୍ତ୍ତ୍ୟ ପ୍ରୀତିର ସମ୍ବାଦ । ତଥାପି କବି ଆଶାକରନ୍ତି, କେବେ ପୁଣି କେଉଁ ଅମର୍ତ୍ତ୍ୟଧାମରେ ଏ ପ୍ରେମର ଚରିତାର୍ଥତା ଆସିବ ? ଏହା ଭିତରେ ଏ ଜନ୍ମ । ଏ ଜୀବନ କାଳରେ ପୂର୍ବ ରୂପ, ପୂର୍ବ ପରିଚୟ ଘଟିତ ପୂର୍ବ ସମ୍ପର୍କର ଦେହଳୀ ଭିତରୁ ସେହି ପ୍ରୀତିଲଭର ସମ୍ଭାବନା ପ୍ରଶ୍ନ—ସବୁ ତ ଅବାଂତର । ତେଣୁ ପୁନର୍ମିଳନର ସମ୍ଭାବନା କରି କବି ନିଶ୍ଚିତ ଭାବେ ଆତ୍ମାର ଅମରତ୍ୱ ଓ ପ୍ରେମସଂବେଗର ଚିରଂତନତ୍ୱକୁ ଇଂଗିତ କରିଛଂତି । ଜନ୍ମ-ମରଣର କାଳଘଟିତ ଛଂଦପତନ ଭିତରେ ଆତ୍ମାର ଅଜରାମରତ୍ୱ ଓ କାଳଜୟୀ ନିତ୍ୟତାର ସଂବାଦ ଏଠାରେ ଉଦ୍‌ଘାଟିତ; ଯାହା ଭିତରେ ଧରାପ୍ରୀତି ତାର ସକଳ ମର୍ତ୍ତ୍ୟବଂଧନ, ମୃତ୍ୟୁଚ୍ଛେଦର ବିଘ୍ନ ଅତିକ୍ରମ କରିବାକୁ ସମର୍ଥ ହୁଏ ।

ପ୍ରେମର ଉଦ୍‌ବୋଧନ ମାଟିର ଅଂଗନରେ । ତାର ସଂଚରଣ କିଂତୁ ଚେତନାର ଅଂତରୀକ୍ଷରେ । ସେ ପ୍ରେମର ସିଦ୍ଧିରୂପ ତାର ସ୍ୱରାଜ୍ୟରେ, ଅମର୍ତ୍ତ୍ୟ ରାଜ୍ୟରେ । ଏ ପରିପ୍ରେକ୍ଷୀରେ 'ପଥିକ' କବିତାଟିର ଭାବାଦର୍ଶ ବିସ୍ମରଣୀୟ । ମଧୁସୂଦନଂକ 'କୌଣସି ପରଲୋକବାସିନୀ ପ୍ରତି' କବିତା ସହ ଏହାର ସ୍ୱରସାମ୍ୟ ଓ ଭାବସାଦୃଶ୍ୟ ପର୍ଯ୍ୟାପ୍ତ । ଏହା ନିଃସଂଦେହରେ ଏକ ମର୍ତ୍ତସଂଭୂତା ବିଗତାଂକ ପ୍ରତି କବିଂକର ସମର୍ପିତ ପ୍ରେମ-ସ୍ମୃତିର ସଂଗୀତ । (୩୧) ସେ ପରଲୋକଗତା ପ୍ରେମାସ୍ପଦା (ପତ୍ନୀ ହୋଇ-ପାରଂତି) 'ସ୍ମୃତି' ରୂପେ ଅଂତରରେ ଚିର ଜାଗରୂକା, କର୍ମପ୍ରେରଣାରୂପେ କବିଂକ ଜୀବନରେ ସଂପୃକ୍ତା । ସ୍ମୃତି-ସ୍ମରଣ ଅବଶ୍ୟ ଏ କବିତାର ରହସ୍ୟବାଦୀ ରୂପପରିଚୟ ନୁହେ । ଏ କବିତାର ରହସ୍ୟବାଦୀ ବ୍ୟଂଜନାଟି ରହିଛି ପ୍ରେମର ଜୀବନକୁ ନବଭାବେ, ଦିବ୍ୟଭାବେ ଗଂତବ୍ୟପଥରେ ସଂଚାଳିତ କରାଇନେବାର ଶକ୍ତି-ରୂପରେ । ଦାଂତେଂକ ପ୍ରେମଭାବନାରେ, ସୁଫୀ ପ୍ରେମ କବିତାରେ, ସେଲି-ଟେନିସନ-ରବୀଂଦ୍ର ରଚନାର ସ୍ମୃତିବିଳାସରେ ଯେଉଁପରି ବ୍ୟକ୍ତିପ୍ରେମ ପାର୍ଥିବ ପ୍ରଣୟାନୁଭୂତି, ବ୍ୟକ୍ତିର ଉତ୍ସର୍ଗନିଷ୍ଠା ଭିତରେ ଦଗ୍‌ଧ କାଂଚନତୁଲ୍ୟ ବାସନାମୁକ୍ତ ପବିତ୍ର ଆଭା ଲାଭ କରି ଅପାର୍ଥିବତାକୁ ଉନ୍ନୀତ ହୋଇଥିବା ଚିତ୍ରିତ, ଏ କବିତାରେ ଗୋପବଂଧୁଂକ ପ୍ରେମଚେତନାର ମର୍ମଭାବନା ସେଇ ଅପାର୍ଥିବ ଲୋକରୁ ଉଚ୍ଚାରିତ ବୋଲି ମନେହୋଇଥାଏ । ପ୍ରେମର ଦିବ୍ୟ ଉପଲବ୍‌ଧିଟି ମାନବଚେତନାର ଯେଉଁ ବିମଳଲୋକରେ ସଂଘଟିତ ହୋଇଥାଏ, ଏ କବିତା ସେହି ଚେତନାଲୋକର ସଂଗୀତ ସାଧନା ବୋଲି ସହଜରେ ବାରିହୋଇଯାଏ । ପ୍ରେମର ଏଇ ଭାବ-ସାଧନା ଗୋପବଂଧୁଂକ ସରସ କାବ୍ୟସାଧନାରେ ଯେ ରୂପାଭିବ୍ୟକ୍ତି ଲାଭ କରିଛି, ତାହା ପରବର୍ତ୍ତୀ ବହୁ ଓଡ଼ିଆ କବିଙ୍କ ପ୍ରଣୟାଦର୍ଶର କାବ୍ୟ ସିଦ୍ଧାଂତକୁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଇଛି ।

କବିତାଟିର ଉପସ୍ଥାପନା ମଧ୍ୟ ରହସ୍ୟବାଦୀ ପ୍ରଭାବ ପରିପୁଷ୍ଟ ସୁଫୀ ପ୍ରେମ-କବିତା ଅନୁରୂପରେ କାବ୍ୟ-ସାଧନା-କୌଶଳ ରୂପେ ପ୍ରଯୁକ୍ତ ଅଜ୍ଞାତ ଉଦ୍‌ବୋଧୀ ବିଶେଷଣଗୁଡ଼ିକ ଅରୂପ ଓ ଅପାର୍ଥିବ ପ୍ରଣୟ-ସମ୍ବାଦର ସଂକେତ ବହନ କରନ୍ତି । ଅଦୃଶ୍ୟ କେହି ମନୋରମା ରୂପରେ, ପୁଣି ମଧୁମୟ ବାଣୀରେ କବିଂକ ନୀରସ ମରୁଜୀବନର ଯାହାରେ ବାରବାର ସଜଳ ଆକାଶର ଶୀତଳସ୍ପର୍ଶ ହୋଇ ଆବିର୍ଭୂତା । "ଏଣିକି ତେଣିକି ବୁହଇ ନିରେଖି କେହି" ଅଥଚ ଏ ଆକର୍ଷଣ ଯେପରି ଅଜଣା ନୁହେ;

(୩୧) ଯେବେ ମୂର୍ତ୍ତିମତୀ, ପୂର୍ବ ପ୍ରୀତି ସ୍ମୃତି ନ ଦିଅନ୍ତା ଦରଶନ ।"

—'ଅବକାଶଚିଂତା'-ପୃ. ୯୦

Digitized by PPRACHIN, SOA

"କାହିଁ କେବେ ପରି ଏ ରୂପମାଧୁରୀ ଆସ୍ୱାଦ ତୋଷିଥିଲୁ ପ୍ରାଣେ ।" ମାତ୍ର କବିଙ୍କ ପାଇଁ ସେ ପ୍ରଣୟ-ସ୍ମୃତିର ସାର୍ଥକତା ସ୍ୱପ୍ନାଚ୍ଛନ୍ନତାର ସଂମୋହ ସଂଜାତ ନୁହେଁ; ବାସ୍ତବ ଜୀବନର କର୍ମପ୍ରେରଣା ଓ ଗତିଶକ୍ତି ରୂପେ ତାହା ଆବିର୍ଭୂତ : "କିଏ ବା ଗୃଳଂତା ନ ଲଭିଲେ ଏଇ ସ୍ୱର୍ଗୀୟ ସ୍ନେହ ସାଂତ୍ୱନା ।" କାରଣ ଏ ପ୍ରୀତି-ସ୍ମୃତି ଦିବ୍ୟସହାୟରୂପୀ, "ବିଭୁ ଆଶ୍ୱାସନା ପବିତ୍ର ବାସନା, ଶ୍ରଦ୍ଧା, ସୁଧା, ସ୍ନେହାନନା"—ବନୟାନ୍‌ଙ୍କ (Bunyan) ଖ୍ରୀଷ୍ଟିୟାନବର୍ଣ୍ଣିତ 'ଶୁଭଶ୍ରୀ ମୁଖ' ରୂପ ସଦୃଶ । ପ୍ରେମର ଏତେ ସୁଂଦର ରୂପ, କଲ୍ୟାଣ ସ୍ପର୍ଶ ପାଂଥକୁ କର୍ମର ମହାପଥରେ ସ୍ଥାନେ ସ୍ଥାନେ ଅଭ୍ୟର୍ଥନା କରି ଲକ୍ଷ୍ୟସ୍ଥଳକୁ ଘେନିଯିବାକୁ ଉପସ୍ଥିତ । ଏହି 'କିଏ' କବିଂକ ବାହ୍ୟ ଓ ଅଂତର ପୂରି, ଘେରି, ସାଂତ୍ୱନା ଓ ବରାଭୟ ଦାନରେ କବିଂକୁ କର୍ମସାଧନାରେ ଅନୁବ୍ରତୀ କରିଛି । ଯେ ପ୍ରେମାସ୍ପଦା ସିଏ ହେଉଁପଛେ, କବିଙ୍କ ଚିତ୍ତଲୋକରେ ତାର ମାର୍ମିକ ରୂପଟି ଅପରୂପ; ତାକୁଇ କେଂଦ୍ରକରି ଜୀବନର ସାଧନା, କବିର ଭାବସାଧନା ରହସ୍ୟଲୋକର ପ୍ରେମସାଧନାର ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଗୌରବମଂଡିତ ହୋଇଯାଏ ।

ହୋଇପାରେ, ପ୍ରିୟଜନ ବିୟୋଗରେ ପ୍ରାଣର ଅଚରିତାର୍ଥ ବାସନାବେଗ କବିଙ୍କ ପ୍ରେମାନୁଭବକୁ ଅଧିକ ନିବିଡ଼, ଗଭୀର, ସାଂଦ୍ର ଓ ଗାଢ଼ କରି ତୋଳିଛି । ମନସ୍ତତ୍ତ୍ୱର ଇଂଗିତ ଏଠାରେ ଉପେକ୍ଷଣୀୟ ନୁହେ । ଜୀବନର ଅପ୍ରାପ୍ତି ରୂପଗୁଡ଼ିକ ଯେ ପ୍ରାୟଶଃ ଅବଚେତନରେ ଏକ ପ୍ରାପ୍ତି-ରୂପର ମୂଳ ଧାରାକୁ ଆପେ ବିନ୍ତଃସୃତ ହୋଇଯାଂତି, ସେ ପ୍ରାପ୍ତି ସ୍ୱରୂପ କୌଣସି ଆଦର୍ଶ ବା 'ଈଶ୍ୱର-ସତ୍ତା'କୁ ଅବଲଂବନ କରିନିଏ । କବିଂକ ପାଇଁ ସକଳ ପ୍ରେମ ଅନୁରାଗର ସସ୍ନେହ ପ୍ରତିମା 'ଈଶ୍ୱର'ଠାରେ ପୁଂଜୀଭୂତ ହୋଇଛି । କାବ୍ୟଭାବନା ଅଂତର୍ଚେତନାରେ ଓ କର୍ମସାଧନା ବିଶ୍ୱପ୍ରାଂଗଣରେ ତାଂକୁ ପ୍ରେମର ରହସ୍ୟ ସଂଧାନୀ କରିଛି । ଗୋପବଂଧୁ ମର୍ତ୍ତ୍ୟଜୀବନର ଉପଲବ୍ଧି ଭିତରେ ସକଳ ଅମର୍ତ୍ତ୍ୟାଦର୍ଶକୁ ରୂପାୟିତ କରିବାର ଯେଉଁ କର୍ମସାଧନା ଗ୍ରହଣ କରିଥିଲେ, ପ୍ରେମସାଧନା ତହିଁରୁ ବହିର୍ଭୂତ ନୁହେ । ସେ ପ୍ରେମ ନିଖିଳକୁ ଆବୋରିଛି, ଧରାମାନବ—ମାତା, ପିତା, ବଂଧୁ, ପତ୍ନୀ, ସଂତାନର ନିର୍ଦ୍ଦିଷ୍ଟ ରୂପରେ ହିଁ ଶାଶ୍ୱତ ପ୍ରଣୟର ପ୍ରତ୍ୟକ୍ଷ ସଂବାଦବାହୀ ରୂପେ କବି ହୃଦୟରେ ସଂବର୍ଦ୍ଧିତ ହୋଇଛି । ଜୀବନରେ ଗୋଟି ଗୋଟି କରି ହରାଇଥିବା ଅନେକ ଅନୁରାଗ-ମଧୁର ମୂର୍ତ୍ତି କବିଙ୍କ ପାଇଁ ଶେଷକୁ ଗୋଟିଏ ପ୍ରେମ-ବିଗ୍ରହରେ ଘନୀଭୂତ ହୋଇଯାଇଛଂତି, ସେ ଉପଲବ୍ଧିର ସଂବାଦ 'ବିଶ୍ୱର ମିଳନଚକ୍ର'ରେ ପ୍ରଦର୍ଶିତ ।

ଏକଥା ସ୍ପଷ୍ଟ କରି କୁହାଯାଇପାରେ ଯେ, ଆଧୁନିକ ଓଡ଼ିଆ କବିତାରେ କୁଂତଳାକୁମାରୀ, ବୈକୁଂଠନାଥ, ମାନସିଂ ଓ ପରେ ପରେ ବହୁ କବି ମର୍ତ୍ତ୍ୟପ୍ରୀତିର ଅମର୍ତ୍ତ୍ୟ ରୂପାଦର୍ଶପ୍ରୟାସ କରିଥିଲେ ବି, ପ୍ରଥମକରି ଗୋପବଂଧୁଂକ କାବ୍ୟଚେତନା ଧରାପ୍ରେମକୁ ପାପକଳୁଷିତ ଓ ଗ୍ଲାନିପୀଡ଼ିତ ନ ଦେଖି ସୌଂଦର୍ଯ୍ୟ ଓ ମାଧୁର୍ଯ୍ୟ ମାର୍ଗରେ ତାର ଅସୀମ ଅଭିଯାତ୍ରା ଏବଂ ସତ୍ୟ ଓ ଶାଶ୍ୱତ ଲୋକରେ ତାର ଅମର୍ତ୍ତ୍ୟ ରୂପାଂତରର ସଂଭାବନାକୁ ପୂର୍ଣ ପ୍ରତିଷ୍ଠିତ କରିଛି । ମଧୁସୂଦନ ପବିତ୍ର ଅମର୍ତ୍ତ୍ୟ ପ୍ରଣୟର ଜୟଗାନ କରିଥିଲେ; ମାତ୍ର ମର୍ତ୍ତ୍ୟପ୍ରୀତି ସଂପର୍କରେ ତାଙ୍କ କାବ୍ୟସ୍ୱର ବିଶେଷ ଉତ୍ସାହୀ ନୁହେଁ । ଗଂଗାଧର ମର୍ତ୍ତ୍ୟପ୍ରଣୟର ଅମର୍ତ୍ତ୍ୟ ତତ୍ତ୍ୱ-ସଂଧାନ-ମଗ୍ନ । ରାଧାନାଥ ମର୍ତ୍ତ୍ୟପ୍ରଣୟର ପାର୍ଥିବ ସାର୍ଥକତାକୁ କାବ୍ୟାଦର୍ଶ ମାନିଛନ୍ତି । ମର୍ତ୍ତ୍ୟପ୍ରେମର ଅମର୍ତ୍ତ୍ୟ ସାଧନା ସଂବାଦ ଓ ଅପାର୍ଥିବ ଉତ୍ତରଣ ସଂଗୀତ କିନ୍ତୁ ଗୋପବଂଧୁଂକ ସ୍ୱରରେ ପ୍ରଥମ କରି ଆଧୁନିକ ଓଡ଼ିଆ କବିତା-ରାଜ୍ୟକୁ ସମାଗତ ହୋଇଛି ।

ମନେହୁଏ, ରବୀଂଦ୍ରନାଥଂକ ପ୍ରତ୍ୟକ୍ଷ ରୋମାଂଟିକ / ରହସ୍ୟବାଦୀ ପ୍ରଣୟାଦର୍ଶ ଓଡ଼ିଆ କାବ୍ୟସ୍ୱରକୁ ବହୁଦିନଧରି ଯେଉଁ ସମ୍ମୋହନରେ ଜଡ଼ିତ କରି ରଖିଥିଲା ଏବଂ ସେ ସମ୍ମୋହନର ସୁଦୂର ଧ୍ୱନି

Digitized by PPRACHIN, SOA

ଗୋପବନ୍ଧୁଙ୍କ କବିତାରେ ଯେଉଁ ରହସ୍ୟବାଦୀ ସଙ୍କେତରେ ବିଦ୍ୟମାନ ତାହା ଯେପରି ଓ୍ୱାର୍ଡସର୍ଓ୍ୱାର୍ଥ, ଶେଲି, ଟେନିସନ୍ ଭାବପ୍ରଣୋଦିତ, ସେହିପରି ବେଦ ଉପନିଷଦର ଅଧ୍ୟାତ୍ମ-ଆକର୍ଷଣ-ଚେତନା ପ୍ରଭାବିତ; ପୁଣି ସମସ୍ତରରେ ବୈଷ୍ଣବ କବିତାର ପ୍ରୀତିରସ ବ୍ୟଂଜନା-ଶାଣିତ । ବିରହ ସାଧନାରେ ପ୍ରେମକୁ ବିଦେହିଲୋକକୁ ଉତ୍ତୀର୍ଣ୍ଣ କରାଇନେବାରେ ତାଙ୍କର କାବ୍ୟ ସଫଳତା ପ୍ରାକ୍ତନ ବିମୁଗ୍ଧ କବି ଅଭିମନ୍ୟୁଙ୍କ ବିଦଗ୍ଧ ରସକୁଶଳତା ସ୍ମରଣ କରାଇଦିଏ । ଗୋପବଂଧୁଙ୍କ ପ୍ରୀତିସାଧନା ଯେପରିକି ଦାନ୍ତେ ବର୍ଣ୍ଣିତ ମର୍ତ୍ତ୍ୟପ୍ରୀତିର ଅମର୍ତ୍ତ୍ୟ ଯାତ୍ରାପଥରେ ଶେଲି ଓ ଅଭିମନ୍ୟୁଙ୍କ ପ୍ରଣୟାଦର୍ଶକୁ ଦୁଇଟି ଅଶ୍ରୁସିକ୍ତ-ପକ୍ଷ ସଜାଇ ଅପାର୍ଥିବ ପ୍ରେମର ଉଜ୍ଜ୍ୱଳ ଆକାଶରେ ସୂର୍ଯ୍ୟବିରଣ କରିଛି । ପରବର୍ତ୍ତୀ ଓଡ଼ିଆ ରହସ୍ୟବାଦୀ କାବ୍ୟଧାରା ଏ ପ୍ରଣୟାଦର୍ଶରୁ ପ୍ରେରଣା ନେଇଛି ।

ପ୍ରେମ ଓ ଅଧ୍ୟାତ୍ମକତାର ରହସ୍ୟବାଦୀ ରୂପଭାବନା 'କାହିଁ ଅଛ', 'ଆହା ଚାଲିଗଲେ' ଓ 'ଦେଖା-ଦିଅ ବାରେ' (କାରାକବିତା) କବିତା ତିନୋଟିରେ ସ୍ପଷ୍ଟ ଅଭିବ୍ୟକ୍ତ ଲାଭ କରିଛି । 'କାହିଁ ଅଛ'ରେ ଭକ୍ତିଭାବନାଯୁକ୍ତ ବିଭୁପ୍ରାଣତାର ମାର୍ମିକ ଆବେଦନ ସୁସ୍ପଷ୍ଟ । "କାହିଁ ଅଛ ନାଥ ପରାଣଦେବତା" ପ୍ରଭୃତି ସମ୍ବୋଧନ ଆସଙ୍ଗଲିପ୍ସା ଓ 'ବିଶ୍ୱନାଥ ତ ଅଂତରେ, ଦେଖାଦେବ କି ମଂତରେ" ପ୍ରଭୃତି ପଙ୍କ୍ତିମାନ ବିଚ୍ଛେଦ ଭାବନା ପ୍ରକଟିତ କରେ । "ସାରା ବିଶ୍ୱ ଭରି ପ୍ରକାଶିଛ ହରି ବେଦବଂଦେ ସଙ୍ଗୀତରେ'—ଏହା ବିଶ୍ୱାତ୍ମକ ରୂପବନ୍ଦନା । ପୁଣି "ରୂପରେଖ ନାହିଁ, ଏବେ ଦିଶୁ ନାହିଁ, ବାହାରେ କିଂବା ଭିତରେ"—ଈଶ୍ୱର ଅରୂପ ଆକାଂକ୍ଷା ଅଭିବ୍ୟକ୍ତ । ସେହିପରି "ତବ ଜ୍ୟୋତିରେଖା ଦେଇ ପ୍ରାଣେ ରେଖା, ଆଜ ସଖା ଅଂଧକାରେ—"ଅନୁଯୋଗ ଭିତରେ ଆତ୍ମାର ଅଂଧାର ଯନ୍ତ୍ରଣା, ଆଲୋକ ପାଇଁ ବ୍ୟାକୁଳତା ଓ ବିଶ୍ୱମୟଙ୍କୁ ପ୍ରାଣବଂଧୁରୂପ ଲାଭ କରିବାର ନିଭୃତ କାମନାଟି ରୂପାୟିତ । ପ୍ରାଣସଖାଙ୍କ ପାଇଁ ଚିତ୍ତବ୍ୟାକୁଳତା 'ଆହା ଚାଲିଗଲେ'ରେ ଅଧିକ ମାର୍ମିକ, ବିଧୁର । ରବୀନ୍ଦ୍ରନାଥ, ଲକ୍ଷ୍ମୀକାଂତ, ବୈକୁଂଠନାଥ ସମ୍ବୋଧିତ ସେଇ ଦୂରାଗତ ଆଗଂତୁକ / ଅଜଣା ବଂଧୁ ଅତିଥିଂକଠାରୁ ଏହି କବିତା ବର୍ଣ୍ଣିତ 'ସେ' କିଛି ଭିନ୍ନ ମନେହୁଅଂତି ନାହିଁ ।

"ମୋହ ନିଦ୍ରା ଘୋଟିଥିଲି", "ପାପ ଆଖି ନ ଫିଟିଲି"—ଏ ଉକ୍ତିମାନ ଓ ଏ ସଚେତନତା ନିଶ୍ଚିତ ଭାବେ ପାର୍ଥିବ—ଆଗଂତୁକ ସମ୍ପର୍କରେ ଉଦ୍ଦିଷ୍ଟ ନୁହେଁ; ବରଂ କବିଂକ ନିଜ ଜୀବନର କ୍ଳେଦମଖା ଗ୍ଳାନି ଓ ଅନୁଶୋଚନା ବୋଲି ବିଚାରିବା ଯୁକ୍ତିସଂଗତ ମନେହୁଏ; ଅଥଚ ପାଖରେ ବସି ଚାରୁମୋହନ ବଂଶୀ ବଜାଇବା କହି ସେ ସ୍ପଷ୍ଟ ସାନ୍ନିଧ୍ୟ ଓ ଶ୍ରୁତିର ସମ୍ବାଦ ଦିଅଂତି । ଏ ବଂଶୀ ନିଶ୍ଚେତନାର ଅତଳ ବିସ୍ମୃତି ନିଦ୍ରାରୁ ଯୁଗେ ଯୁଗେ ପାର୍ଥିବ ସତ୍ତାକୁ ଜାଗିବାକୁ ଆହ୍ୱାନ ଦେଇଥାଏ । "ପଦେ ଉତ୍ତର ନ ପାଇ" ଚାଲିଯିବାର ଦୁର୍ଭାଗ୍ୟ ମଧ୍ୟ ବହୁବାର ତାର ଆସିଥାଏ । ଏ ସବୁ ସ୍ୱୀକୃତି ଭିତରେ କବିଂକର ଦ୍ୱୟ ଅଦ୍ୱୟ ସଚେତନତା ସ୍ପଷ୍ଟ ପ୍ରକଟିତ । "ମୋ କକ୍ଷ ଅଂଧକାରେ, ସେ ପ୍ରଭାମୟ ରୂପ" ଆଲୋକର ବିପୁଳ ଉଦ୍‌ଭାସକୁ, ପୁଣି ଅକସ୍ମାତ୍ ନିର୍ବାପିତ ହୋଇଯିବାର ସମ୍ବାଦରେ ଚେତନାର ଆଲୋକଧାରଣର ଅକ୍ଷମତା ଓ ସୀମାଦୈନ୍ୟ ରୂପାତ୍ମକତା ଲାଭ କରିଛି । 'ନ ମେଲିଲି ନୟନ, ଏ ଭାଗ୍ୟହୀନ ନେତ୍ର' ସେ ଆତ୍ମଗ୍ଳାନିର ଅଂତର୍ଦ୍ଦାହ । 'ପଥେ ପଡ଼ିବା ଧନ', ଦରିଦ୍ର ଚିତ୍ତର ଐଶ୍ୱର୍ଯ୍ୟ-ବ୍ୟାକୁଳତା, ପୁଣି ମର୍ତ୍ତ୍ୟସତ୍ତାର ଭୂମାପ୍ରାପ୍ତିର ସୌଭାଗ୍ୟ ସମ୍ଭାବନାକୁ ସୂଚିତ କରେ । ଏଇଭଳି ସ୍ତବରେ ଆତ୍ମାର ଦ୍ୱୟତ୍ୱ, ଜୀବର ଅଜ୍ଞାନ-ଅଂଧାର-ଆବୃତ ଚେତନା, ପ୍ରାଣର ଶାଶ୍ୱତ ଅଭୀପ୍ସା, ଅସୀମଆଲୋକର ଆକର୍ଷଣ ଓ ଦିବ୍ୟ ଆଶୀର୍ବାଦ—ଏ ସମସ୍ତ ରହସ୍ୟବାଦୀ ଭାବନା ଏଇ କ୍ଷୁଦ୍ର କବିତାଟିରେ ସାଂଦ୍ର ହୋଇଯାଇଛି । ପରବର୍ତ୍ତୀ ଓଡ଼ିଆ ରହସ୍ୟବାଦୀ କବିତାର ଭାବଧର୍ମକୁ ଏ ରୂପଚେତନା ଓ ସ୍ୱର-ଆଳାପ ବହୁଭାବେ ପ୍ରଭାବିତ କରିଛି ।

Digitized by PPRACHIN, SOA

'ଦେଖାଦିଅ ବାରେ' କବିତାଟି 'ଆହା ଶୃଙ୍ଖଳେ'ର ଘନୀଭୂତ ଭାବାଳାପ ବୋଲି ମନେହୁଏ । ବିରହାନୁଭବ ତୀବ୍ରତର, ଚିତ୍ତବ୍ୟାକୁଳତା ପ୍ରବଳତର, ଅଂଧାରର ଭାର ଅସହ୍ୟତର । ପ୍ରେମ-ବନ୍ଧୁଂକ ସାନ୍ନିଧକାମନା ମଧ୍ୟ ପ୍ରଗାଢ଼ତର : "କାହିଁ ମୋର ସେହି ପ୍ରାଣ ପ୍ରେମଧାର / କାହିଁ ସୁଧାମୟ ମୋ ହୃଦୟହାର ।' କବି ଅନୁଯୋଗ କରଂନ୍ତି, 'ଦେଖା ଦିଅ ବାରେ' । ମର୍ତ୍ତର ଘୋର ଅଂଧାରରେ ଆଲୋକପୁଞ୍ଜ, ଦିବ୍ୟ-ପ୍ରଣୟଭୋଗୀ ମାନବାତ୍ମା କି ଦୁର୍ଦ୍ଦଶାଗ୍ରସ୍ତ ଦେଖିବାକୁ ପାଇଲେ ସେ ମହାନ୍ ପ୍ରେମ ନିଷ୍ଠୟ କରୁଣାବିଗଳିତ ହେବ, ପଥ ନିର୍ଦ୍ଦେଶ ଦେବ ଓ ଆଲୋକ ଦାନ କରିବ । "ଚଲାଅ ମୋ ଅଂଗେ ଅମିୟ ଅଂଗୁଳି" ପ୍ରୀତିସ୍ପର୍ଶ ପାଇଁ ବ୍ୟାକୁଳତା ଓ ପବିତ୍ର ହେବାର ଆଗ୍ରହ ସୂଚିତ କରେ । ରହସ୍ୟବାଦୀର ଅପାର୍ଥିବଲୋକ, ଅମୃତ ସଂଗୀତ ଓ ଦିବ୍ୟବାଦ୍ୟଯଂତ୍ର ଏଠାରେ କାବ୍ୟଭାବନାକୁ ମଧ୍ୟ ଅନୁପ୍ରାଣିତ କରିଛି । "ବୁଡ଼ିଯାଉଛି ପୁଣି ଏବେ ମୋ ଚେତନା'—ଏକ ଚମତ୍କାର ରହସ୍ୟବାଦୀ ସାଧନା ସଂକେତର ବ୍ୟଂଜନା ବହନ କରେ । କବି ସଂପୂର୍ଣ୍ଣ ଅବିଦ୍ୟା-କବଳିତ ନୁହନ୍ତି । ନିଜକୁ ସେ ପୂଣ୍ୟର ଅଭିଳାଷୀ, ଅମୃତ ଆକାଂକ୍ଷିତ ବୋଲି ଜାଣଂନ୍ତି । ଚେତନାର ଊର୍ଦ୍ଧ୍ୱାୟିତ ଆବେଗକୁ, ଦିବ୍ୟ ପ୍ରେରଣାସ୍ପଂଦନକୁ ସେ କିଛି କିଛି ଅନୁଭବ କରଂନ୍ତି । ଏ ଅବକାଶରେ ଦିବ୍ୟାନୁଗ୍ରହ ସଂଜାତ ସାହସ, ପ୍ରେରଣା, ଶକ୍ତି ହିଁ ତାଂକୁ ଦିବ୍ୟ-ସମର୍ଥ କରିବ । ନିଦ୍ରା-ବିମୋହିତ ହୋଇ ଥରେ ପ୍ରାଣବନ୍ଧୁଂକ ବେଣୁନାଦ ଶୁଣିବାର ସୌଭାଗ୍ୟବଂଚିତ ହୋଇଥିଲେ । ଏବେ ଅର୍ଦ୍ଧ-ଜାଗ୍ରତ । ଆଉଥରେ ସେ ବଂଶୀସ୍ୱନ ହୁଏତ ତାଂକୁ ପୁର୍ଣ୍ଣ ଜାଗ୍ରତ କରିଦେବ । "ଆଉଁ ଆଉଁ ମୋର ଜୀବନ'ର ଭାବ ବ୍ୟଂଜନାଟି ସୁଦୂରପ୍ରସାରୀ । ଅଧ୍ୟାତ୍ମ ସଚେତନତାର କ୍ଷୀଣ ସ୍ପଂଦନଟିକକ ଜାଗ୍ରତ ଆଉଁ ଆଉଁ ପୁର୍ଣ୍ଣ ଜାଗରଣ ପାଇଁ ସେ କାମନା କରଂନ୍ତି । ମୃତ୍ୟୁ ପରେ ଚକିତା ଅପେକ୍ଷା ମରଣ-ପୂର୍ବ କ୍ଷୀଣ-ଜୀବନ ପାଇଁ ବହିତ ପ୍ରତିକାର କରିବାର ଚିତ୍ର-ବ୍ୟଂଜନା ବାଢ଼ି କବି ଆପଣାର କଣ୍ଠାଗତ ବ୍ୟାକୁଳତାକୁ ଭାବ-ନିବିଡ଼ କରିଛଂନ୍ତି ।

କବି ଅନୁଯୋଗ କରଂନ୍ତି, ଜୀବନର ସୁର ତାର ନିଜ ସଂଗୀତ ହିଁ ଗାନ କରଂନ୍ତୁ । ତାହା ଦୁଃଖାତ୍ମକ ହେଲେ ବି ଚଳିବ, କାରଣ ଦୁଃଖୀ ଜୀବନ ଦୁଃଖର ସ୍ୱରରୁ ଆଶ୍ୱାସନା ଖୋଜିପାଏ, ସମଦରଦୀର ଅଂତଃଗହନରେ ଆଶ୍ରାପାଏ । ଦୁଃଖ ଯାହାପାଇଁ ଜୀବନର ଏକମାତ୍ର ଅନୁଭବ ସଂପଦ, ସୁଖ ତା ନିକଟରେ ଏକ ବିରାଟ ମିଥ୍ୟାସ୍ୱପ୍ନ; ଦୁଃଖର ଯଂନ୍ତ୍ରଣା ଗଭୀରତା ହିଁ ଯାହାର ସୁଖ-କଳ୍ପନାଟିକୁ ରୂପ ଦେଇଥାଏ, "ସୁଖେ ଦୁଃଖେ ତାର ସମାନ ଆଦର" ହେବା ସ୍ୱାଭାବିକ । ବରଂ ପ୍ରାଣବନ୍ଧୁଂକ ନିକଟ-ସୁଖଟିକକ ଦୁଃଖ-ଗାନ ଅବକାଶରେ ମିଳିପାରିବ; ଚେଣ୍ଟ "ବାଆ, ଜୀବନଯାଏ ବିତି ।" ଜୀବନ ସରିଆସୁଛି । ଜୀବନବନ୍ଧୁ ସେଇ ସମୟଟିକ ଅଂତତଃ ଜୀବନ ସହ ସଂଯୋଗ-ସୁଖ ହୋଇ ବିରାଜିତ ଥାଆନ୍ତୁ ।

ଗୋପବନ୍ଧୁଂକର ଏ ପ୍ରେମାକୁଳତା ଓ ଆଧ୍ୟାତ୍ମିକ ଯାତ୍ରା ସଂବାଦର ରହସ୍ୟବାଦୀ କାବ୍ୟୋଚ୍ଚାରଣ ଯଥାକ୍ରମେ 'ବିଶ୍ୱର ମିଳନ ଚିତ୍ର' ଓ 'ଗିରି ଶିଖେ ଲକ୍ଷ୍ୟ ରଖି'ରେ ପୂର୍ଣ୍ଣ ବିକଶିତ । 'ଗିରିଶିଖେ ଲକ୍ଷ୍ୟ ରଖି ଶୃଙ୍ଖଳ ମୁକୁର' ସେଇ ଯାତ୍ରା ସଂକଳ୍ପର ଅଭିବ୍ୟଂଜନା ବହନ କରେ ଯେଉଁଠି ଆଧ୍ୟାତ୍ମିକତା ଓ ପ୍ରେମ-ଭାବନା ଭାବ-ସାଧନାର ଏକମୁଖୀ ରାସ୍ତାରେ ମିଳିତ ହୋଇ ଶାଶ୍ୱତ ଜୀବନର ଲକ୍ଷ୍ୟାନୁସାରୀ ଧାଇନ୍ତି ।

'ଗିରି ଶିଖେ ଲକ୍ଷ୍ୟ ରଖି'—କବିତାଟିର ଭାବକେଂଦ୍ର ଲକ୍ଷ୍ୟବିଂଦୁରେ ଏକାଗ୍ର । ଏ ଲକ୍ଷ୍ୟର ନିର୍ଦ୍ଦିଷ୍ଟ ନାମୋଲ୍ଲେଖ ନାହିଁ । ଏହା କଣ ଦେଶମୁକ୍ତି ? କି ଆତ୍ମାର ମୋକ୍ଷ ? କବିଂକ ଦର୍ଶନରେ ଆତ୍ମାର ମୁକ୍ତି ଓ ଦେଶର ସ୍ୱାଧୀନତା ସମାନ ଭାବେ ଗୁରୁତ୍ୱପୂର୍ଣ୍ଣ । ଏକ ମୁକ୍ତ ମାନବ ପୁଣି ମୁକ୍ତ ଜାତି

Digitized by PPRACHIN, SOA

ରୂପେ ତାଂକର ଆଧ୍ୟାତ୍ମିକ ତଥା ରାଜନୈତିକ ସ୍ୱାଧୀନତାର ସ୍ୱପ୍ନ ଏକ ବୃହତ୍ତର ମୁକ୍ତିସ୍ୱପ୍ନର ଅଂଗୀଭୂତ। ବଂଧନ ଯେକୌଣସି ସ୍ୱରୂପରେ ବି ବଂଧନ।

ରାଜନୈତିକ ସ୍ୱାଧୀନତା କଂଣ୍ଟୁ ପରିମୁକ୍ତି ନୁହେଁ। ଏହାର ଲକ୍ଷ୍ୟ ପାର୍ଥିବ, ପରିସର ପାର୍ଥିବ। ରାଜନୈତିକ ସ୍ୱାଧୀନତା ଏକ ସାମାଜିକ ଅଭିଳାଷରେ ସୀମାବଦ୍ଧ। ବ୍ୟକ୍ତିପ୍ରାଣର ମୁକ୍ତି ମାନସିକ ଓ ଆଧ୍ୟାତ୍ମିକତାର ଅନଂତପଥରେ ସକଳ ସୀମା-ସଂକେତକୁ ଲଂଘନ କରିବାକୁ ପ୍ରସ୍ତୁତ। ପୁଣି ଦେଶର ସ୍ୱାଧୀନତା, ଅର୍ଥନୈତିକ, ସାମାଜିକ ସ୍ୱାଧୀନତା ସତ୍ତ୍ୱେ ବି ବ୍ୟକ୍ତି ପୂର୍ଣ୍ଣ ମୁକ୍ତ ନୁହେଁ; ଯେପର୍ଯ୍ୟନ୍ତ ତାର ଚେତନାରେ ଅସୀମ ବିମୁକ୍ତି ଘଟିନାହିଁ। ଗୋପବଂଧୁଂକ ମୁକ୍ତିଚେତନା ମାନବର ବାହ୍ୟ ଓ ଆଂତରିଣ, ବୈଷୟିକ ଓ ଆଧ୍ୟାତ୍ମିକ, ବ୍ୟକ୍ତିଗତ ଏବଂ ସାର୍ବଜନୀନତାକୁ ଲକ୍ଷ୍ୟ ରଖିଛି। ଗିରିଶିଖରରୂପକ ଲକ୍ଷ୍ୟ ତେଣୁ ଦେଶ-ସ୍ୱାଧୀନତାର ଆଂଶିକ ମୁକ୍ତି ଅଭିଳାଷର ସଂକେତ ନୁହେଁ; ଲୋକସେବାରୂପ ନୈତିକ ଆକାଂକ୍ଷା ନୁହେଁ। ମାନବିକତା ରୂପକ ହିତବାଦୀ ଦର୍ଶନ (altruism) ପ୍ରଗ୍ରେଦନା ମଧ୍ୟ ନୁହେଁ। ଆଧ୍ୟାତ୍ମିକତାର ଆକୂତି ଏହାର ମର୍ମମୂଳରେ ବିଜଡ଼ିତ ଓ ପୂର୍ଣ୍ଣାଂଗ ଦୃଷ୍ଟି ପ୍ରସାରରେ ଏହାର ଦିଗଂତ ସୁବିସ୍ତୃତ।

'ଗିରିଶିଖେ' କବିତାଟିର ଲକ୍ଷ୍ୟ-ସ୍ୱରୂପ ସୁନିର୍ଦ୍ଦିଷ୍ଟ ନ ହେଲେ ବି କବିଙ୍କ ଲକ୍ଷ୍ୟପ୍ରାଣତା ସୁପରିସ୍ଫୁଟ। ଭାବ-ବୋଧ ଦିଗରୁ ଏହାକୁ ରହସ୍ୟାତ୍ମକ ବିଗ୍ରିବାର କ୍ଷେତ୍ର ପ୍ରାଂଜଳ ଓ ପରିଚ୍ଛନ୍ନ। କବିତାଟି ଆମୂଳଚୂଳ ରହସ୍ୟବାଦୀ ଯାତ୍ରାନୁଭୂତିର ରୂପସଜ୍ଜା। ଯାତ୍ରାର ଅନିବାର୍ଯ୍ୟତା, ଯାତ୍ରୀର ଯାତ୍ରାକାଳୀନ ବିଭିନ୍ନ ଭାବାନୁଭୂତି, ଆକୁଳତା ଓ ଲକ୍ଷ୍ୟଅଟଳତାର ଏହା ଚମତ୍କାର କାବ୍ୟସଂବାଦ। ଚିତ୍ତ ଜାଗରଣ (awakening), ଯାତ୍ରାକର୍ଷଣ (Purgation) ଓ ଆଲୋକ ପ୍ରତ୍ୟୟର ରହସ୍ୟବାଦୀ ସଂକେତମାନ ଏଥିରେ ସ୍ପଷ୍ଟ ପ୍ରତୀକିତ।

କବିତାର ଏ ରୂପକାତ୍ମକତା ହିଁ ପ୍ରଥମେ ଆଖିରେ ପଡ଼େ। ଗିରି ଶିଖର, ବିଜନଯାତ୍ରୀ, ମରୁପଥ, ଯାତ୍ରାକ୍ଲାଂତ ଓ ତାରକା-ଦୀପ୍ତି, ପ୍ରତ୍ୟେକେ ଏକ ଏକ ବିଶେଷ ଚିତ୍ର ରୂପ ଉଦ୍‌ଘାଟନକାରୀ ଭାବ-ପ୍ରତୀକ ରୂପେ ପ୍ରଯୁକ୍ତ। ଏ ଆଂତରିଣ ଭାବବୋଧ ଏକ ମନସ୍ତାତ୍ତ୍ୱିକ ଉପଲବ୍‌ଧିର ସମାଂତରାଳ ଭାବଭୂମିରେ ହିଁ ଅର୍ଥପ୍ରାପ୍ତ ହୋଇଉଠେ।

କବିଂକ ଦୃଷ୍ଟି ସମ୍ମୁଖରେ ଆଲୋକ ଉଜ୍ଜ୍ୱଳ ଶୃଂଗ ଗିରିଶୃଂଗ। କବି ସେ ଶିଖରରେ ନିଜର ଅଭିଳଷିତ ଲକ୍ଷ୍ୟକୁ ବିଦ୍ୟମାନ ଦେଖିଛନ୍ତି। ତାର ଆକର୍ଷଣରେ ଅଜଣା ରାସ୍ତାକୁ ଏକାକୀ ବାହାରି ଆସିଛନ୍ତି। ସେ ପଥ ନିର୍ଜନ, ଧୂସର, ସିକତିଳ ଓ ସବୁଜଶ୍ରୀହୀନ ନିଷ୍ପାଦପ ମରୁଭୂମି। କବି ତୃଷାର୍ତ୍ତ, କ୍ଲାଂତ, ଶ୍ଳଥପଦ; ତଥାପି ଦୂରସ୍ଥ ସମ୍ମୋହକୁ ଏଡ଼ାଇ ପାରଂତି ନାହିଁ—ଅଥଚ ଆହୁରି ଅର୍ଦ୍ଧପଥ ଅତିକ୍ରମ କରି ପୁଣି ଦୁର୍ଲଂଘ୍ୟ ଗିରି ଆରୋହଣ କରିବାକୁ ହବ। କବି ଚିଂତାକୁଳ; ମାତ୍ର ଭଗ୍ନୋତ୍ସାହ ନୁହଂତି। ଯଦି ନିହାତି ପାଦ ଥକିଯାଏ। ତେବେ ଗିରିଛାୟାକୁ ଆଶ୍ରୟ କରିବେ। ପ୍ରାଣ ଯଦି ଚାଲିଯାଏ, ତେବେ ତାହା ଗିରିଚୂଡ଼ାକୁ ଲକ୍ଷ୍ୟ ରଖି ପ୍ରଧାବିତ ହେବ। ମର୍ତ୍ତ୍ୟ ଜୀବନରେ ସେଠାରେ ପହଞ୍ଚିବା ଯଦି ସଂଭବ ନ ହୁଏ, ମୃତ୍ୟୁ ପରେ ବିଦେହ-ବାସନା ତାଂକୁ ସେଠାରେ ନିଶ୍ଚୟ ପହଂଚାଇ ଦେବ। କବିତାଟି ତେଣୁ ଆଦ୍ୟପ୍ରାଂତ ଯାତ୍ରାସଂବାଦ ଓ ରହସ୍ୟବାଦୀ ରୂପସିଦ୍ଧ। ସେ ରୂପଚେତନା-ଗୁଡ଼ିକ ହେଲେ—(୧) ଲକ୍ଷ୍ୟ ଅନିର୍ଦ୍ଦେଶ୍ୟ, (୨) ଗିରିଶିଖର ପ୍ରତୀକିତ, (୩) ଯାତ୍ରାପଥର ଦୁର୍ଗମତା, (୪) ଦିବ୍ୟ 'ଦୃଶ୍ୟ' ଓ ଦିବ୍ୟ 'ଆଲୋକ'ର ସଂବାଦ, (୫) ବିରହଚେତନା ଓ ଅଂତିମ ବିଳୟ।

କବିତାର ଭାବାନୁଧ୍ୟାନ ଉପଲକ୍ଷେ ଭିନ୍ନ ସମୟରେ ରଚିତ କବିଂକର ଅନ୍ୟ ଏକ କବିତା 'ବନ୍ଦୀର ସନ୍ଧ୍ୟାଭାବନା' (କାରାକବିତା-ପୃ. ୪୮) ବହୁ ଚିନ୍ତାସାମ୍ୟ ବହନ କରିଥିବା ସ୍ମରଣକୁ ଆସେ। ସନ୍ଧ୍ୟା-

Digitized by PPRACHIN, SOA

ଗଗନରେ ସାଗର ଉପରଦେଇ ଆକାଶବକ୍ଷରେ ନୀଡ଼ବାହୁଡ଼ା ପକ୍ଷୀଟିର ନିଃସଙ୍ଗ ଯାତ୍ରାଚିତ୍ରକୁ କବି ବର୍ଣ୍ଣନା କରିଛନ୍ତି । ପକ୍ଷୀଟି ଥକାଆସୁଛି, ଦୂରରୁ 'କନ୍ଦର୍ପ ଶଇଳ ଗିରେ ଦିଶେ ଦାବାନଳ ତେଜ ।' ପକ୍ଷୀର ଯାତ୍ରା ସମାପ୍ତିର ଆଶ୍ୱସ୍ତି ସୂଚନା, ସମୁଦ୍ରପକ୍ଷୀ, ଗିରିଶୃଙ୍ଗ, ଅଗ୍ନିରେଖା—ଅତି ସାଧାରଣ ଏ ଦୃଶ୍ୟଛବି; କିନ୍ତୁ 'ଗିରି ଶିଖେ ଲକ୍ଷ୍ୟ ରଖି'ରେ ଅସାମାନ୍ୟ ଭାବବ୍ୟାପ୍ତି ନେଇ ଝଲସିଉଠିଛି । ବନ୍ଦୀ ଜୀବନରେ ମୁକ୍ତ ପକ୍ଷୀର ଖୋଲା ଆକାଶରେ ସ୍ୱଚ୍ଛନ୍ଦ ବିହାର ଭାବ ପ୍ରତିଦ୍ୱନ୍ଦ୍ୱିତା ଜାତ କରିବ, ଏ ମୁକ୍ତି ସ୍ୱପ୍ନ ଛଡ଼ା ବି କବିପ୍ରାଣରେ ଏ ସାଧାରଣ ରୂପଚିତ୍ରଟି 'ଗିରିଶିଖେ'ରେ ଏକ ଗଭୀର ପ୍ରତୀକ ବ୍ୟଞ୍ଜନା ଲାଭକରିଛି । ଦଳଛଡ଼ା ଏକାକୀ ପକ୍ଷୀଟି ଆଗତପ୍ରାୟ ଅନ୍ଧାର . ଭୟରେ ଉଦ୍‌ବିଗ୍ନ ହୋଇ ସନ୍ଧ୍ୟାକାଶରେ ନୀଡ଼ାଭିମୁଖେ ଏକାକୀ ଯାତ୍ରା କରିଚି । ଆଶ୍ରୟ ପାଇଁ ଉତ୍କଣ୍ଠ ଉଚ୍ଛ୍ୱସିତ ଥିବାବେଳେ ଦୂରସ୍ଥ କନ୍ଦର୍ପ ପାହାଡ଼ ଚୂଳର ଅଗ୍ନିରେଖା ଦୃଶ୍ୟ ହୋଇଛି । ଏ ଗିରିଚୂଡ଼ାର ଆଲୋକ ସଙ୍କେତ ପକ୍ଷୀମାନସରେ ନୀଡ଼ର ଆଶ୍ୱାସନା ଭରିଦେବାବେଳେ କବିମାନସରେ ମଧ୍ୟ ନିଜପାଇଁ ଏକ ଚିରନ୍ତନ ଆଶ୍ରୟ-ସ୍ୱପ୍ନ 'ଗିରିଶିଖର' ପ୍ରତୀକରେ ପ୍ରମୂର୍ତ୍ତିତ ହୋଇଯାଇଛି । ଶିଖରସ୍ଥ ଅଗ୍ନି-ସଙ୍କେତ କବିଙ୍କ ଅଧ୍ୟାତ୍ମ ଅଭୀପ୍ସାକୁ ଆଲୋକ ଭରସା ଦାନକରିଛି । ଦିଗ-ସଙ୍କେତ ବାଢ଼ିଛି । ପକ୍ଷୀ ସହ କବି ବର୍ଣ୍ଣିତ ପ୍ରାଣପକ୍ଷୀର ('ଗିରି ଶିଖେ···') ରୂପସାମ୍ୟ ରହିଛି । ତାରକିତ ବେଳା, ତରଙ୍ଗ ତାନରେ ଦୂର ସଙ୍ଗୀତ କବି-ଚିତ୍ତରେ ମଧ୍ୟ ଦୂର ସାଗରର ଛନ୍ଦ ମୂର୍ଚ୍ଛନା ଖେଳାଇ ଦେଇଛି ।

ରହସ୍ୟବାଦୀ ସ୍ୱରୂପ ବିଗ୍ରହରେ ଏ ପ୍ରତ୍ୟେକ ଉପସ୍ଥାପନାର ମାନସିକତାଟି ଅଧ୍ୟାତ୍ମ ସଙ୍କେତ-ପ୍ରଣୋଦିତ । ଲକ୍ଷ୍ୟର ସ୍ପଷ୍ଟ ନାମାଙ୍କନ କିମ୍ବା ସୂଚନା ଦାନ ନକରି ତାର ରହସ୍ୟାତ୍ମକତାକୁ କବି ପ୍ରତିପାଦନ କରିଛନ୍ତି । ଏ ଲକ୍ଷ୍ୟ ସୁନ୍ଦର ଓ ଦୁର୍ଲଭ । ଜୀବନ ପାଇଁ ଦୁର୍ବାରଭାବେ ଆକର୍ଷଣୀୟ ଅଥଚ ଦୁଷ୍ପ୍ରାପ୍ୟ ବୋଲି ସଙ୍କେତ କରିବା ଭିତରେ ଜୀବନର ପରମପ୍ରାପ୍ତି ରୂପଟି ଦିବ୍ୟବ୍ୟଞ୍ଜନା ବହନ କରିଛି ।

ଏ ଲକ୍ଷ୍ୟ ସାଧନ ଗିରିଶୃଙ୍ଗ ଆରୋହଣ ପ୍ରତୀକରେ ଉପସ୍ଥାପିତ । ଗିରି ପାର୍ଥିବ ସ୍ଥିତି ଓ ଅପାର୍ଥିବ ଉନ୍ମୁଖତାର ଭାବଦ୍ୟୋତକ । ଦୂରରୁ ଏହା ନିକଟତର ବୋଲି ମନେହୁଏ । କବିଙ୍କ ମୁଗ୍ଧଦୃଷ୍ଟି ଚକ୍ରବାଳ ମୂଳରେ ଏ 'ସୁନୀଳ ସୁନ୍ଦର'ର ଗିରିଚୂଳ ପର୍ଯ୍ୟନ୍ତ ପହଁରିଆସିଛି । ସେଠାରେ ଯେ ଉଜ୍ଜ୍ୱଳ ତାରକାର ସନ୍ଦେଶ ଲାଭକରିଛନ୍ତି । ପାର୍ଥିବରୁ ଅପାର୍ଥିବକୁ ଏ ବିସ୍ତୃତି ଭିତରେ ଜୀବନର ସୁଲଭ ଓ ଦୁର୍ଲଭ, ସହଜ ଓ ଅସହଜ କିଛି ଭିନ୍ନ ରହିପାରିନାହିଁ । ଆଲୋକର ପ୍ରତିଶ୍ରୁତି, ସୌନ୍ଦର୍ଯ୍ୟର ସାଜସଜ୍ଜା କବିପ୍ରାଣରେ ଆଶା ଓ ଆନନ୍ଦ ଜାତ କରିଛି, ଲକ୍ଷ୍ୟ ପ୍ରତି ଅନୁରକ୍ତ କରିଛି ଓ ପଥ ପ୍ରେରଣା ଦେଇଛି ।

ମାତ୍ର ଲକ୍ଷ୍ୟ ଏତେ ନିକଟ ନୁହେଁ, ସହଜଲବ୍ଧ ନୁହେ । ଆକର୍ଷଣ ସରେନାହିଁ; ମାତ୍ର ପଥ ବି ସରେନାହିଁ, ଯେପରି ଘୁଞ୍ଚି ଘୁଞ୍ଚି ଯାଏ, ପାଦ ଥକିପଡ଼େ । ଦେହ ଶିଥିଳ, ବିବଶ ଓ ଅବସନ୍ନ ହୁଏ । ଲକ୍ଷ୍ୟର ଦୁର୍ନିବାର ଆକର୍ଷଣ ପଥର ବିଷମତାକୁ ଜଣାଇଦେଇଥିଲା । ଏବେ ଅସାମର୍ଥ୍ୟ ସେ ବିଷମତାକୁ ବହୁଗୁଣିତ କରିଦେଇଛି । ଲକ୍ଷ୍ୟ ତାର ଦୁର୍ଲଭ ପ୍ରତିଶ୍ରୁତି ଦେଇ ସବୁବେଳେ ଉଜ୍ଜ୍ୱଳ, ସୁନ୍ଦର; ମାତ୍ର ପ୍ରାପ୍ତି ପାଇଁ ପ୍ରୟାସ ଲୋଡ଼ା, ସିଦ୍ଧି ସବୁବେଳେ ସାଧନା ଅପେକ୍ଷିତ !

କବି ସାଧନାମାର୍ଗକୁ ମରୁକାନ୍ତାର ବୋଲି ବର୍ଣ୍ଣନା କରିଛନ୍ତି; ନିଃସଙ୍ଗତାର କଥା କହିଛନ୍ତି । ଏଠାରେ ପଥର ପ୍ରତୀକ ମରୁଭୂମି ଓ ସଙ୍ଗୀର ପ୍ରତୀକ ନିର୍ଜନତା । ରହସ୍ୟଯାତ୍ରୀର ଅନ୍ତଃଲୋକର ଏକାକୀତ୍ୱ, ବୈରାଗ୍ୟଶୁଷ୍କତା ଏଠାରେ ବ୍ୟଞ୍ଜିତ । ବ୍ୟକ୍ତିଗତଭାବେ ଆତ୍ମୀୟ ସ୍ନେହବଞ୍ଚିତ କବିଙ୍କ କର୍ମଜୀବନର ଧୂସରତା ଜୀବନକୁ ମରୁପଥ ତୁଲ୍ୟ ଦୁର୍ବହ କରିଛି । ଆତ୍ମାର ଦୁସ୍ତର ଯାତ୍ରାପଥର କ୍ଳାନ୍ତିକର ତୁଳଣିରେ ଦିନ ସରିଯାଏ, ଆୟୁ କ୍ଷୟ ପାଇଯାଏ, ଲକ୍ଷ୍ୟ ମଧ୍ୟ ଦୂରେଇଗିଲା ପରି ମନେହୁଏ ।

Digitized by PPRACHIN, SOA

ଲକ୍ଷ୍ୟଂକର ଆଶଂକା, ଏ ପଥ ଅନ୍ତହୀନ ହେବା ପୂର୍ବରୁ ତାଂକର ଶକ୍ତିକ୍ଷୟ ଓ ଜୀବାବସାନ ଘଟିଯାଏ ଯଦି···। ଆକାଶକୁସୁମ ସଦୃଶ ଦୁର୍ଲଭ ଅଥଚ ଲୋଭନୀୟ ଏକ ପ୍ରାପ୍ତି ମୋହରେ ଏଭଳି ଅବୋଧ ଧାଉଁଥିବା ଜୀବନକୁ ଯେଉଁ ଗୋପନ ସମାପ୍ତି ଅପେକ୍ଷାକରି ରହିଛି, ତାହା ଲକ୍ଷ୍ୟପ୍ରାପ୍ତିର ସୌଭାଗ୍ୟକୁ ନିରର୍ଥକ କରିଦେବନି ତ ?

ତଥାପି କବି ଲକ୍ଷ୍ୟସ୍ଥିର । ପଥକ୍ଲାଂତି ସତ୍ତ୍ୱେ ଅପ୍ରାପ୍ତିର ଆଶଂକା ଓ ମୃତ୍ୟୁର ଆତଂକ ସତ୍ତ୍ୱେ ସେ ଯାତ୍ରାବିରତିର କଥା ଭାବୁଂନି ନାହିଁ; ବରଂ ଜୀବ ଗଲେ ଯାଉ । ପଥଚଲି ଅସମାପ୍ତ ରହୁ, ଲକ୍ଷ୍ୟ ଅପହଂଚ ହେଉ, ତଥାପି ଯାତ୍ରା ସ୍ଥଗିତ ହୋଇପାରେନା । କାରଣ ସେ ଲକ୍ଷ୍ୟ ଦୁର୍ନିବାର, କବିଂକ ସିଦ୍ଧାଂତ ବଦ୍ଧମୂଳ । ସେ ଆକର୍ଷଣୀୟ; କାରଣ ସେ ଅପୂର୍ବ, ମନୋରମ ଓ ଆଲୋକ-ଉଜ୍ଜ୍ୱଳ ମର୍ତ୍ତ୍ୟର ମୂଢ଼ ଜୀବନ ପାଇଁ ଆଉ କେଉଁ ପ୍ରଲୋଭନ ଅଧିକ ଉଦଗ୍ର, କେଉଁ ପ୍ରତିଶ୍ରୁତି ଅଧିକ ଅଶ୍ୱାସନାମୟ ହୋଇପାରେ ? ମୂଢ଼ଜନ ଶବ୍ଦଟିର ପ୍ରୟୋଗ ଏଠାରେ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଅଂଧ ଛଡ଼ା ଆଲୋକର ରୂପୈଶ୍ୱର୍ଯ୍ୟ-ଉଦ୍‌ଭାସ ପ୍ରତି କିଏ ପ୍ରଲୁବ୍ଧ ନହେବ ? ମର୍ତ୍ତ୍ୟଚେତନା ଯେତେ ବିମୂଢ଼, ଅଂଧ ତମସାବୃତ ହୋଇଥିଲେ ବି ଏ ଅମର୍ତ୍ତ୍ୟ ଆଲୋକ ସଂଦେଶ ତାକୁ ଚମତ୍କୃତ କରିବ, ଆଲୋକ ପିପାସାକୁ ଉଜ୍ଜୀବିତ କରିବ ଓ ଆଲୋକପ୍ରୟାସୀ ପଦକୁ ଅସ୍ଥିର କରିବ । ସେଭଳି ମୂଢ଼ ନହେଲେ ଏ ଦିବ୍ୟଦୃଶ୍ୟ ଦେଖି ଯାତ୍ରାରଂଭ ନକରି ସ୍ଥିର ରହିବା ଯେ ବ୍ୟକ୍ତିପକ୍ଷେ ଅସଂଭବ— ଏହା ଇଂଗିତକରି କବି ମାନବାତ୍ମାର ମିଷ୍ଟିକ୍ ଦିବ୍ୟାଭିଳାଷକୁ ହିଁ ଉଦ୍‌ବୋଧିତ କରିଛଂତି । ପୁଣି ତାଉର ଉନ୍‌ମେଷକାଳୀନ ଭାବଜାଗରଣର ଅବସ୍ଥାକୁ ମଧ୍ୟ ସଂକେତିତ କରିଛଂତି । "କରି ଥରେ ବିଲୋକନ/ଏ ଅପୂର୍ବ ଦିବ୍ୟଦୃଶ୍ୟ" ସେଇ ଆଲୋକ-ଦୃଶ୍ୟର ସଂବାଦ ଯାହା ବ୍ୟକ୍ତିଚେତନାକୁ ନବଭାବେ ଉଦ୍‌ବୁଦ୍ଧ କରି ଆଲୋକରାଜ୍ୟ ଅଭିମୁଖୀ କରେ, ସାଧନାପଥର ଅଂଧାର ଭିତରେ ମରୁ-କାଂତାରରେ ଏକାକୀ ଭ୍ରମୁଥିବା ପିପାସିତ ଆତ୍ମାକୁ ନିରକାନୁଭୂତି ଦେଇ ସ୍ୱର୍ଗ ପ୍ରତି ଆକୃଷ୍ଟକରେ । ତଥାପି, ମରୀଚିକାର ଭ୍ରାଂତି ଭୟ ମରୁଦ୍ୟାନର ଦୁରଂତ ଆକର୍ଷଣକୁ ଲୁଚାଇପାରେ ନାହିଁ; ପଥ-ଯଂତ୍ରଣା ଲକ୍ଷ୍ୟପଥରୁ ନିବୃତ୍ତ କରିପାରେ ନାହିଁ । ଗିରିଚୂଡ଼ା ତାରକିତ । ଆଲୋକ ସଂବାଦ ସୁନିଶ୍ଚିତ । ପଥହରା ଅଂଧାର-ବିକଳ ମୁହ୍ୟମାନ ଚିତ୍ତ ପାଇଁ ଏତିକି ଭରସା ସୁବିପୁଳ । ଆଲୋକ ଯାତ୍ରୀର ଚରମ ମାନସିକ ସଂକଟ କାଳରେ ଏଇ ଆତ୍ମିକ ଦୃଢ଼ତା, ନିଷ୍ଠା ଓ ସାହସ, ଲକ୍ଷ୍ୟର ଦୁର୍ଲଭତ୍ୱକୁ, ମହତ୍ତ୍ୱକୁ, ଅଧିକ ସ୍ପଷ୍ଟ କରେ । ରହସ୍ୟବାଦୀ କାବ୍ୟସଂବାଦରେ ଯାତ୍ରା-ସଂଗୀତର ଏ ଭାବବୈକଲ୍ୟ ବ୍ୟକ୍ତିର ପାର୍ଥିବ ଅସହାୟତା ଓ ଅପାର୍ଥିବ ଆସ୍ପୃହାମୂଳକ ଅସୀମ ସଂଭାବନାକୁ ସୂଚିତ କରିଥାଏ; ମାତ୍ର ଏ ଯାତ୍ରାଗାନ ଓଡ଼ିଆ ସାହିତ୍ୟରେ ପରେ ଲକ୍ଷ୍ମୀକାଂତ ଓ ବୈକୁଂଠନାଥ ମଧ୍ୟ କରିଛଂତି ।

ଯିବା ଯେତେବେଳେ ଅନିବାର୍ଯ୍ୟ, ତାହା ଆଉ ବ୍ୟକ୍ତିର ସିଦ୍ଧାଂତ ନିର୍ଭର ନୁହେ । ଅସୀମର ଆକର୍ଷଣ ସୀମାର ସକଳ ବଳିର ସ୍ୱାତଂତ୍ର୍ୟ ଓ ସାମର୍ଥ୍ୟକୁ ସେଇ ଅବସ୍ଥାରେ ଖର୍ବ କରିଦିଏ, ଯେତେବେଳେ ଅସୀମର ନିକଟରେ ସୀମା ତାର ସକଳ ଇଚ୍ଛା ଅନିଚ୍ଛାକୁ ସମର୍ପଣ କରିଦେଇ ତାର ନିର୍ଦ୍ଦେଶ-ଅପେକ୍ଷିତ ହୋଇରହେ । ଏହାପରେ ଆଉ ଦ୍ୱନ୍ଦ୍ୱ ନାହିଁ, ପ୍ରଶ୍ନ ନାହିଁ । ଯିବାଟା ଅବଧାରିତ । ନ ଯାଇ ରହି-ପାରିବେ ନାହିଁ; ତେଣୁ କବି ଯାତ୍ରାକଷ୍ଟର ପ୍ରସଂଗ ଉଠାଂତି ନାହିଁ । ବରଂ ସିଦ୍ଧାଂତ କରିଛଂତି, କାୟା ଅବସନ୍ନ ହେଲେ ଗିରିଗୁମ୍ଫାରେ ବିଶ୍ରାମ ନେବେ । ବାଲୁଶେଯରେ ଶଯ୍ୟା ରଚିବେ । ହୁଏତ ତାହା ଶେଷଶଯ୍ୟା ହେବ । ମାତ୍ର କବି ସେ ଶେଷକ୍ଲାଂତ ମୁହୂର୍ତ୍ତରେ ମଧ୍ୟ ଲକ୍ଷ୍ୟବିସ୍ମୃତ ହେବେ ନାହିଁ, କିଂବା ଲକ୍ଷ୍ୟବଂଚିତ ବୋଲି ସନ୍ତପ୍ତ ହେବେ ନାହିଁ ।

Digitized by PPRACHIN, SOA

ଯାହାପାଇଁ ଆଶ୍ରୟର ନିର୍ଭର ସ୍ଥଳ 'ଘର' ଗ୍ରଡ଼ି ସେ ଖୋଲାସଂସାର ଉନ୍ମୁକ୍ତକୁ ବାହାରିଆସିଛନ୍ତି; ତାକୁଇ ଗୁହିଁ ଗୁହିଁ ଜୀବନ କଟାଇବେ । ପାଦ ଯାହା ନ ପାରିଲା, ଆଖି ନିଶ୍ଚୟ ପାରିବ । ଦୂର ଆଲୋକିତ ଗିରିଚୂଳ ଶୋଭା ଦେଖି କବି ସୁଖୀ ହେବେ । ହୃଦୟର ଆନନ୍ଦକୁ ତା ପାଇଁ ଉତ୍ସର୍ଗ କରିଦେବେ । କ୍ରମଶଃ ସେ ଆଖି ମଧ୍ୟ କ୍ଳାନ୍ତ ହେବ । ପାର୍ଥିବତାର ସୀମା, ଖଣ୍ଡତ୍ୱ, ସ୍ୱଳ୍ପ ସାମର୍ଥ୍ୟର ଶେଷ ଫଳାଫଳକୁ ଗୃହାଣିରେ ନିବେଦନ କରିନେଇ ଆଖି ମଧ୍ୟ ମୁଦ୍ରିହୋଇଯିବ ।

ପାର୍ଥିବତାର ଏ ଯାତ୍ରା ଶେଷର ମୁହୂର୍ତ୍ତ କିନ୍ତୁ ଯାବାଗାନର ବିରହବେଳା ନୁହେଁ । ପୃଥିବୀର ଶେଷ ବନ୍ଧନ ଛିନ୍ନକରି ତ ଦେହର ମୃତ୍ୟୁରେ ସମାପ୍ତ ହୋଇଯିବ । ପ୍ରାଣପକ୍ଷୀ ତାପରେ ପ୍ରଥମକରି ଦେହରୁ ମୁକ୍ତିର ଆନନ୍ଦରେ ଜୀବନର ଆଲୋକ ଆସ୍ୱାଦ୍ୟକୁ ଆପଣା ପକ୍ଷରେ ବହିଦେଇ ରାଜ୍ୟର ସେ ଗିରିଶିଖର ଉପରକୁ ଉଡ଼ାଇନେବ । ସୁଦୂର ସ୍ୱର୍ଗୀୟ ଗାନର ଅନୁସରଣରେ ସେ ଠିକ ପଥ ଖୋଜିନେଇ ସେ ଚୂଡ଼ା ଆରୋହଣ କରିବ । ଚେତନାର ଊର୍ଦ୍ଧ୍ୱାରୋହଣ ଆଲୋକର ସ୍ୱରାଜ୍ୟକୁ, ସ୍ୱର୍ଗରାଜ୍ୟକୁ ଲାଭକରି ମର୍ତ୍ତ୍ୟର ଚିରନ୍ତନ ଅଭିଳାଷକୁ ସାର୍ଥକ କରିବ ।

ମୃତ୍ୟୁ ଯେ ଦେହ-ଘଟିତ, ମୃତ୍ୟୁ ସତ୍ତ୍ୱେ, ମୃତ୍ୟୁ ପରେ ମଧ୍ୟ ଆତ୍ମାର ଅବିନାଶିତ୍ୱ ସ୍ୱୀକୃତ—ଏ ଚେତନାର ଉତ୍ତର-ଦାୟାଦ ଗୋପବନ୍ଧୁ-ଦର୍ଶନ ଦେହର ମୃତ୍ୟୁ ପରେ; ତେଣୁ ଅମରତ୍ୱ ପ୍ରାପ୍ତିକୁ ବରଂ ସ୍ୱସ୍ତିକର ମଣିଛି । ଚନ୍ଦ୍ର ଓ ଶଶୀଘଟିତ ମିଥ୍ ପ୍ରସଙ୍ଗଟି ଏ ପରିପ୍ରେକ୍ଷୀରେ ଚମତ୍କାର ବ୍ୟଞ୍ଜନାପ୍ରାପ୍ତି ଲାଭକରିଛି ।

ଭାରତୀୟ ଚେତନାରେ ଏ ମିଥ୍ଟି ମୁଖ୍ୟତଃ ପ୍ରଣୟ-ସାଧନାତ୍ମକ ପ୍ରସଙ୍ଗିତ । ଏହାର ପୃଷ୍ଠ-ଭୂମିରେ ଏକ ଗଭୀର ଦର୍ଶନ ଓ ବିପୁଳ ଭାବଲୋକ ବିସ୍ତାରିତ ଯାହା ଗୋପବନ୍ଧୁଙ୍କ କାବ୍ୟଚେତନାରେ ଉଦ୍ଦୀପିତ ।

ଚନ୍ଦ୍ର ଓ ଶଶୀ ଯଥାକ୍ରମେ ଅପାର୍ଥିବ ଓ ପାର୍ଥିବ ଚେତନାର ପ୍ରତୀକ । ଅପାର୍ଥିବର ଆକର୍ଷଣ ପାର୍ଥିବ ସତ୍ତାକୁ ଏବଂ ପାର୍ଥିବର ଗତି ଉଦ୍ୟମ ଅପାର୍ଥିବ ପ୍ରତି । ଏହା ପ୍ରୀତି ସଂପର୍କ; ତେଣୁ ସକଳ ଆପାତଃ ବିରୋଧ ଓ ଦୂରତ୍ୱକୁ ଏକତ୍ୱ ବା ମିଳିତ ରୂପ ଆଡ଼କୁ ସଂଗ୍ଳଳିତ କରିଥାଏ । ସୀମା ଓ ଅସୀମ, କ୍ଷୁଦ୍ର ଓ ବିପୁଳ, ମର୍ତ୍ତ୍ୟ ଓ ଅମର୍ତ୍ତ୍ୟର ସକଳ ବିଭେଦ ସତ୍ତ୍ୱେ ଆକର୍ଷଣର ମୂଳ ପ୍ରେରଣା, ମିଳନ ପ୍ରୟାସର ରୂପକାର ଓ ମିଳନ ସଂଭାବନାର ପ୍ରତିଶ୍ରୁତି-ରୂପ ଏ ପ୍ରେମ । ଏଥିପାଇଁ ସାଧନାରେ ଶଶୀର ଏକାଗ୍ରତା, ଏକନିଷ୍ଠତା ଓ ଅବିଚଳନତା ଲୋଡ଼ା । ପ୍ରେମରେ ସ୍ୱ-ସମର୍ପଣ, ଶେଷ ସମର୍ପଣ , ପୂର୍ଣ୍ଣାଙ୍ଗ ସାଧନା ଯଜ୍ଞର ଶେଷ ହୋମ-ଅର୍ଘ୍ୟ ।

ଅମର୍ତ୍ତ୍ୟ ଲାଭ ପାଇଁ ମର୍ତ୍ତ୍ୟବିସର୍ଜନ ଦେବାକୁ ହୁଏ । ଅମର୍ତ୍ତ୍ୟର ମର୍ତ୍ତ୍ୟ ଆକାଂକ୍ଷାକୁ ସମ୍ମାନ କରିବାକୁ ହେଲେ ମର୍ତ୍ତ୍ୟକୁ ଅମର୍ତ୍ତ୍ୟ ସାଧନାର ସିଦ୍ଧିଲାଭ କରିବାକୁ ହୁଏ । ସମର୍ପଣରେ ଆତ୍ମ-ବିସର୍ଜନହିଁ ଏ ପ୍ରେମର ପ୍ରାପ୍ତି ରୂପ ।

କବିଙ୍କ ରୋମାଂଟିକ୍ ପ୍ରେମବ୍ୟାକୁଳତାର ଏ ଭାରତୀୟ ରୂପକାଦର୍ଶ ସହ ସୂଫୀ ପ୍ରଣୟଚିନ୍ତର ଅମର୍ତ୍ତ୍ୟଦୟିତ ପାଇଁ ଚିରବିରହ ବିଳାସ ଅପୂର୍ବ ସଙ୍ଗତି ଲାଭକରିଛି । ସୂଫୀଦର୍ଶନରେ ଅପାର୍ଥିବ ପ୍ରେମ ପାର୍ଥିବ ଚେତନାକୁ ଉଚ୍ଛନ୍ନିତ କରିଥିଲେ ବି ମର୍ତ୍ତ୍ୟ ଦେହରେ ସେ ଅମର୍ତ୍ତ୍ୟ ପ୍ରେମଧାରଣ ସଂଭବ ନୁହେଁ । ସାଧକକୁ ଦେହ ଥିବାଯାଏ ଅନନ୍ତପ୍ରେମ ସ୍ୱରୂପ ଲୟଲା ପାଇଁ ଅଶ୍ରୁସଜଳ ବିରହ ସାଧନା କରିବାକୁ ହୁଏ । ଏ ଏକାଗ୍ର ଅଶ୍ରୁତପସ୍ୟାର ପରମ ବେଦନା ଲଗ୍ନରେ ସାଧକର

Digitized by PPRACHIN, SOA

ଅମୂର୍ତ୍ତ ସ୍ମୃତି, ପ୍ରିୟ-ତନ୍ମୟତା ଓ ବିରହ-ମିଳନର ଏକରୂପତାର ଅନବଚ୍ଛିନ୍ନ ଭାବଚେତନା ବ୍ୟଞ୍ଜିତ ।

ଗୋପବନ୍ଧୁ ଚନ୍ଦ୍ରର କଥା କହି ଲକ୍ଷ୍ୟର ଦିବ୍ୟତ୍ୱ, ଅମର୍ତ୍ତ୍ୟତ୍ୱ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଉଜ୍ଜ୍ୱଳତାର ରୂପସଙ୍କେତ ପ୍ରଦାନ କରିଛନ୍ତି । ଚନ୍ଦ୍ର ମନର ଅଧିପତି, ବ୍ୟକ୍ତିର ମନଶ୍ଚେତନାକୁ ପ୍ରଭାବିତ କରନ୍ତି । ସେ ପୁଣି ପ୍ରେମ ଓ ସୌନ୍ଦର୍ଯ୍ୟର ଦେବତା, ଆନନ୍ଦ ଓ ଅମୃତ ବିତରଣକାରୀ, ସ୍ନିଗ୍ଧ, ଶୀତଳ ଓ ଅହ୍ଲାଦଦାୟୀ ଜ୍ୟୋତ୍ସ୍ନା-ପ୍ରଦାନକାରୀ । ସେ ଅନ୍ଧକାର ବିନାଶକ । ଆଲୋକର ଉତ୍ସ ନହେଲେ ବି ଆଲୋକର ବିମ୍ବ ଗ୍ରହଣକାରୀ ଓ ଆଲୋକ ଉପଯୋଗକାରୀ ଏବଂ ଆଲୋକ-ଉତ୍ସର ସଙ୍କେତକାର ମଧ୍ୟ । ବ୍ୟକ୍ତିର ଚିତ୍ତଲୋକ ଚନ୍ଦ୍ରପରି ଦିବ୍ୟ ଆଲୋକ-ଉତ୍ସର ପ୍ରତିବିମ୍ବ ଗ୍ରହଣ କରିପାରିଲେ, ଉତ୍ସ ସନ୍ଧାନ ନେଇପାରିଲେ, ତାର ଅପାର୍ଥିବ ଅନ୍ୱେଷା ଜାତ ହୁଏ । ପାର୍ଥିବତାର କଳ ବନ୍ଧନ ସତ୍ତ୍ୱେ ପୃଥିବୀର ଏ ଅପାର୍ଥିବ ଅନ୍ୱେଷା ଅସ୍ୱୀକାର କରିବାର ନୁହେ । ଚନ୍ଦ୍ରସୁଧା କାମନାରେ ଶଶୀର ମୃତ୍ୟୁବରଣ କବିଙ୍କ ବିଚାରରେ ଅମୃତରେ ଆସକ୍ତିପରିଚିତ ନୁହେଁ; ପାର୍ଥିବତା ଉଲ୍ଲଂଘନର ଆକର୍ଷଣ ଶକ୍ତି । ଆସକ୍ତି କ୍ଷୁଦ୍ରରେ ବାନ୍ଧିରଖେ, ଅନୁରାଗ କ୍ଷୁଦ୍ରାତୀତ ହେବାକୁ ବନ୍ଧନମୁକ୍ତ ହେବାକୁ ଶକ୍ତି ପ୍ରଦାନ କରେ । ଅମର୍ତ୍ତ୍ୟ ଆକର୍ଷଣ ସେଇ ଶକ୍ତି ଯାହା ଗିରିଚୂଡ଼ାର ଆଲୋକାଭାସ ପ୍ରତୀକରେ ଭବସିନ୍ଧୁ-ସନ୍ତପ୍ତ କବି-ଆତ୍ମାକୁ ଆଶ୍ୱାସନାର ସଙ୍ଗୀତ ଶୁଣାଇ ପ୍ରାଣରେ ଧୈର୍ଯ୍ୟ ଓ ପାଦରେ ଶକ୍ତି ଭରିଦେଇଛି ।

କବିଙ୍କ ଇପ୍‌ସିତ 'ବିଚିତ୍ର ମନୋଲୋଭା' ଲକ୍ଷ୍ୟ 'ଶତ ଶଶୀ ବଳି ଶୋଭା', ନର ହୋଇ ଏହାକୁ ଗ୍ରହିବା ଅସମ୍ଭବ । ପାର୍ଥିବ ପ୍ରଲୋଭନକୁ ପୃଥିବୀ ସୁତ ଅନାଗ୍ରହ କରିପାରେ, ଉଦାସୀନତା ଦେଖାଇ-ପାରେ; ମାତ୍ର ଅପାର୍ଥିବତାକୁ ଉପେକ୍ଷା କରିବାର ଶକ୍ତି ତାର ନାହିଁ । ତେଣୁ କ୍ଳାନ୍ତି ସତ୍ତ୍ୱେ, ସମସ୍ୟାଭାବ ସତ୍ତ୍ୱେ, ମୃତ୍ୟୁ ଆଶଙ୍କା ସର୍ତ୍ତ୍ୱେ ଓ ଅପ୍ରାପ୍ତିରୂପକ ଦୁର୍ଭାଗ୍ୟର ସମ୍ଭାବନା ସତ୍ତ୍ୱେ, ତାକୁ ସେହି ଗିରିଶିଖରରେ ଲକ୍ଷ୍ୟନିବଦ୍ଧ ହୋଇ ବାଟ ଚାଲିବାକୁ ହେବ । ଏ ଯାତ୍ରା-ସଙ୍ଗୀତ ଇଚ୍ଛା ସମର୍ପଣଜନିତ ଆନନ୍ଦର; ଖେଦର ନୁହେଁ । ତେଣୁ ଅପ୍ରାପ୍ତିର କ୍ଷୋଭ ନାହିଁ, ମୃତ୍ୟୁର ନିଶ୍ଚୟତା ସତ୍ତ୍ୱେ ମୃତ୍ୟୁ-କାତରତା ନାହିଁ, ଜୀବନପାତ ପାଇଁ ପ୍ରସ୍ତୁତ ସତ୍ତ୍ୱେ ଜୀବନବିମୁଖତା ନାହିଁ । ଗୋପବନ୍ଧୁଙ୍କ ପ୍ରେମିକ ବ୍ୟକ୍ତିତ୍ୱର ଏ ପ୍ରଣୟାଦର୍ଶ ତାଙ୍କ କାବ୍ୟପୁରୁଷର ଚେତନାଦର୍ଶ, ତାଙ୍କ ସମଗ୍ର ଜୀବନର ସାଧନାଦର୍ଶ ମଧ୍ୟ ।

'ବିଶ୍ୱର ମିଳନ ଚିତ୍ର' (୩୨) କବିଚେତନାର ସେଇ ସାଧନାର ରୂପ-ସଙ୍କେତ । 'ଅବକାଶ-ଚିନ୍ତା'ରେ ଉଚ୍ଛଳିତ ଯୌବନର ପ୍ରେମ ଆକୁଳତା, ଏକାଗ୍ରତା ଓ ନିରବଚ୍ଛିନ୍ନତା 'ଗିରିଶିଖେ'ରେ ଯେଉଁ ସାଧନାବାର୍ତ୍ତାକୁ ପ୍ରମୂର୍ତ୍ତିତ କରିଛି, ପରିଣତ ରଚନା 'ବିଶ୍ୱର ମିଳନ ଚିତ୍ରରେ ସେ ପ୍ରେମିକ ଜୀବନର ତପସ୍ୟା-ନିଷ୍ଠା ଫଳଶ୍ରୁତିରୂପେ ଲବ୍‌ଧ ହୋଇଛି । ପ୍ରକୃତରେ ପ୍ରେମ, ବିଶ୍ୱଜୀବନରେ ପ୍ରେମ, ବ୍ୟକ୍ତିଗତ ପ୍ରେମ ଓ ସର୍ବବ୍ୟାପ୍ତ ମହାନ୍ ପ୍ରେମର ସ୍ତରରହସ୍ୟ କବି-ଉପଲବ୍‌ଧିରେ ଉନ୍‌ମୋଚିତ ହୋଇଛି । ନିସର୍ଗର ପ୍ରେମ-ରହସ୍ୟ ବିଶ୍ୱ-ସୃଷ୍ଟିର ପ୍ରେମ ପ୍ରକ୍ରିୟା, ବ୍ୟକ୍ତିପ୍ରାଣର ପ୍ରେମ ସମ୍ବେଗ ଏଠାରେ ଯେପରି ପରସ୍ପରକୁ କୋଳାଗତ କରି ଅପାର୍ଥିବ ପ୍ରେମର ମହାବ୍ୟାପ୍ତିରେ ଅନ୍ତର୍ଲୀନତା ଲାଭ କରିଛି । ନୈସର୍ଗିକ ଦୃଷ୍ଟି, ବିଶ୍ୱାନୁଭୂତି ଓ ବ୍ୟକ୍ତିଗତ ପ୍ରେମ ଆତ୍ମୃଦ୍ୱାର ପାର୍ଥିବତା ଏବଂ ଅପାର୍ଥିବ ଇନ୍ଦ୍ରିୟୋତ୍ତରତା ଏଠାରେ ପରିପୂର୍ଣ୍ଣତା ଲାଭ କରିଛନ୍ତି ।

ପ୍ରଥମରୁ ଭଞ୍ଜ-କାବ୍ୟସ୍ୱରର "କେତେଦୂରେ ଚନ୍ଦ୍ର କେତେଦୂରେ କମଳିନୀ" ('ପ୍ରେମସୁଧାନିଧି') ।

(୩୨) 'କାରାକବିତା'—ପୃ. ୬୧

'ଉଦ୍‌ଭଟ'-ସ୍ୱରର 'ବନେ ମୟୂର୍ଯ୍ୟଃ ଗଗନେଷ୍ଟୁ ମେଘାଃ' (୩୩) ପ୍ରେମ ସନ୍ଦେଶଟି କବି ଅନ୍ତରର ଆବେଗ ସଂବହନ କରି ଉଦ୍ଭାସିତ ହୋଇଯାଏ । ପ୍ରକୃତି ଭିତରେ ପ୍ରେମଭାବନାର ତରଙ୍ଗ ସନ୍ଦୃଷ୍ଟି ଯେଉଁରୂପେ ପ୍ରତିଭାତ, କବି ସେଇ ଛବି ଆଙ୍କିଛନ୍ତି । ପଦ୍ମ ଓ ସୂର୍ଯ୍ୟ, ସମୁଦ୍ର ଓ ଚନ୍ଦ୍ର, ମେଘ ଓ ବିଦ୍ୟୁତ୍, ନଦୀ ଓ ସମୁଦ୍ରର 'ବିଚିତ୍ର ପ୍ରେମଲୀଳା' କବିଙ୍କୁ କେବଳ ମୁଗ୍ଧ କରିନାହିଁ; ଚିତ୍ତରେ ସ୍ୱଭାବତଃ ମଧ୍ୟ ଜାଗ୍ରତ କରିଛି । ପ୍ରକୃତିର ମିଳନଚିତ୍ର ଦର୍ଶନ ଅବକାଶରେ ସେ ନିଜ ଜୀବନର ନିଃସଙ୍ଗତାକୁ ସ୍ମରଣ କରିଛନ୍ତି । ପ୍ରୀତି ସୌଭାଗ୍ୟବଞ୍ଚିତ ହୃଦୟ ତାଙ୍କର କେବଳ ପ୍ରେମର ବେଦନାକୁ ଲାଭ କରିବାର ଦୁର୍ଭୋଗ ଭୋଗିଛି । "ମୋ ଲାଗି ଶୂନ୍ୟ କି ଏ ବିଶ୍ୱବସୁଧା"ରେ ସେଇ ବିରହ ଖେଦ, ପ୍ରାଣର କାରୁଣ୍ୟ ବିମୂର୍ଚ୍ଛିତ, ଯାହା ଶେଲିଙ୍କ ବିରହ ବିଳାପକୁ (୩୪) ସ୍ମରଣ କରାଇଦିଏ ।

ଏ ନିଃସଙ୍ଗତାର ମର୍ମ ବିଶ୍ଳେଷଣ କରି କହିବାକୁ ଅବଚେତନର ଦ୍ରଷ୍ଟା କହେ, "ନିଃସଙ୍ଗ ଜୀବନରେ ବି ପ୍ରେମସ୍ୱରର ପରିମାପ ହୁଏ ।(୩୫) ପ୍ରେମର ଏ ନବମୂଲ୍ୟାୟନ ହିଁ କବିଙ୍କୁ ନିରାଶାର ଘନୀଭୂତ ଅନ୍ଧାର ଭିତରୁ ପ୍ରଣୟର ଶାଶ୍ୱତଲୋକରେ ପହଞ୍ଚାଇ ଦେଇଛି । ବିଶ୍ୱ-ଭୁବନରେ କବି ଯେ ଏକାକୀ, ଭୁବନଭରି ସେ ପ୍ରେମର ସନ୍ଧାନ ଚେଷ୍ଟା କରିଛନ୍ତି । ଶେଷକୁ ନିଜ ଅନ୍ତରରେ ପ୍ରେମାସ୍ପଦଙ୍କ ଭୁବନ-ମୋହନ ଅନିନ୍ଦ୍ୟ ରୂପଛବିକୁ ଆବିଷ୍କାର କରିଛନ୍ତି : "ଜାଣେ ଅଛନ୍ତି ମୋର ପରାଣପତି ।" ଏଇଠି ସକଳ ନିଃସଙ୍ଗତା, ବିବିକ୍ତ ଯନ୍ତ୍ରଣାର ପରିସମାପ୍ତି । ଏ ଦେବତା ନିର୍ଦ୍ଦିଷ୍ଟ ଧର୍ମଧାରଣାର, ସାକାର ପୂଜା-ଅର୍ଚ୍ଚନାର ଦେବପ୍ରତିମା ହେବା ଅନିବାର୍ଯ୍ୟ ନୁହେ । ଏ ସେହି ମିଷ୍ଟିକ୍ ପ୍ରେମୋପାସନାର ରହସ୍ୟ-ଦେବତା, 'ଜୀବନଦେବତା', 'ଅନ୍ତରଦେବତା' ରୂପେ ମାନବ-ଚିତ୍ତରେ ଯା'ର ମଧୁର ଆବିର୍ଭାବ । 'ହୃଦ ପଲଙ୍କେ ଫୁଲ ଶେଯ ବିଛାଇ, ନିତି ତାଙ୍କ ବାଟ ଗୁହିଁବସିବା କବିଙ୍କ ପକ୍ଷେ ତେଣୁ ଅପ୍ରତ୍ୟାଶିତ ନୁହେଁ ।

ଏପର୍ଯ୍ୟନ୍ତ କବି ତାଙ୍କୁ ଲାଭ କରିନାହାନ୍ତି ବୋଲି ଏ ବିଚ୍ଛେଦ ଦୁଃଖ, ନିର୍ଜନତାର ବିଳାପ ଓ ନିଃସଙ୍ଗତାର ଖେଦ । ତଥାପି ଅନାଗତ ଭବିଷ୍ୟତର ମିଳନସ୍ୱପ୍ନ ଦେଖିବାପାଇଁ ପ୍ରଣୟର ଦୃଷ୍ଟିକୁ କେହି ରୋକିପାରିବେ ନାହିଁ । କବିଙ୍କ ମିଳନସ୍ୱପ୍ନର ସୁଖଚିତ୍ରଟି ପୂର୍ଣ୍ଣ ଆତ୍ମିକ ସଙ୍ଗମର, ଦେହ-ମନ-ପ୍ରାଣ-ଆତ୍ମା ସବୁ କିଛି ନେଇ ସେ ପରମପ୍ରେମକୁ ଅଭିଗମନ ନଦୀର ସାଗରସଙ୍ଗମ ପରି ଆତ୍ମ-ବିଲୋପର, ବଲ୍ଲରୀର ତରୁ ଆଲିଙ୍ଗନ ପରି ପ୍ରାଣ ସଂଯୋଗର, ନୀଳ ନୀରଦରେ ଚପଳା-କ୍ରୀଡ଼ାପରି ହୃଦ-ଉଲ୍ଲାସର ।

(୩୩) "ବନେ ମୟୂର୍ଯ୍ୟଃ ଗଗନେଷ୍ଟୁ ମେଘାଃ
ଲକ୍ଷ୍ୟାନ୍ତରେ ଭାନୁ ଜଳେଷୁ ପଦ୍ମ ।
ଇନ୍ଦୁର୍ଦ୍ୱିଲକ୍ଷ୍ୟ କୁମୁଦସ୍ୟ ବୋନ୍ଧେ
ଯାର୍ଯ୍ୟସ୍ୟ ପ୍ରୀତି ନହିର୍ତସ୍ୟ ଦୂରମ୍ ।"—ଉଦ୍‌ଭଟ

(୩୪) "Nothing in this world is single
All things by a law divine
In one another's being mingle,
Why I am not with thine ?—Shelley—'Love's Philosophy.'

(୩୫) "To be lonely is not to be unloved : but to learn the value of love." Morris West—'Shoes of Fisherman'—P. 36

Digitized by PPRACHIN, SOA

କବି ସଚେତନ, ସେ ପାର୍ଥିବ; ତାଙ୍କର ଅନ୍ୱେଷିତ ପ୍ରେମ କିନ୍ତୁ ଅପାର୍ଥିବ । ତଥାପି ଚନ୍ଦ୍ରୋଦୟରେ ଜଳଳହରୀର ସଙ୍ଗୀତ ଉଲ୍ଲାସ, ରବିକିରଣରେ ନଳିନୀଦଳର ମଧୁର ବିଳାସରୁ ସେ ଏକ ମୋହମୟୀ ଇଙ୍ଗିତ ଲାଭ କରିଛନ୍ତି ଯେ, ସକଳ ଦୂରତା, ବ୍ୟବଧାନ ସତ୍ତ୍ୱେ ସେ ଦୂର ପ୍ରେମର ଅଦ୍ଭୁତ ଯାଦୁକରୀରେ କବି ନିଜ ପ୍ରାଣକୁ ଦୁର୍ଲଭ ପ୍ରାଣବଲ୍ଲଭଙ୍କ ପଦରେ ସମର୍ପି ଦେଇପାରିବେ; ତା'ପରେ ସେ ଭୁବନଭରି ପ୍ରୀତିଉଲ୍ଲାସର ନୃତ୍ୟ ରଚିବେ । ବିଭୁପ୍ରେମ ଅଜସ୍ର ରୂପରେ, ପ୍ରକୃତିର ସହଯୋଗରେ କବି-ଆତ୍ମା ସହ ଭାବ ବିନିମୟ କରିବେ । ନିଖିଳ ବ୍ୟାପ୍ତ ଅଖଣ୍ଡ ପ୍ରେମସମୁଦ୍ରରେ ତାଙ୍କର କ୍ଷୁଦ୍ର ପ୍ରାଣପ୍ରବାହ ମଧ୍ୟ ଏକାକାର ହୋଇଯିବ । ସମଗ୍ର ବିଶ୍ୱ ବିଶ୍ୱେଶ୍ୱରଙ୍କ ମଧୁରାନୁଗ୍ରହ ଲାଭକରି ଅସରି ଆନନ୍ଦର ପ୍ରେମପସରାରେ ପରିଣତ ହୋଇଯିବ । ନିଜକୁ ବିଶ୍ୱମୟ ବ୍ୟାପ୍ତ ଓ ବିଶ୍ୱକୁ ଅନ୍ତଃଲୋକରେ ସଂଗୁପ୍ତ ଦେଖିବାର ଏ ବିଚିତ୍ର ଦୃଷ୍ଟିଟି ରହସ୍ୟବାଦୀ ଅଭିବ୍ୟଞ୍ଜନା-ଶାଣିତ ।

କବି ସମଗ୍ର ସୃଷ୍ଟିକୁ ଏକ ମହାନ୍ ପ୍ରେମବିଧୃତ ବୋଲି ଜ୍ଞାନ କରିଛନ୍ତି । ଈଶ୍ୱରଲାଭ ଓ ବିଶ୍ୱପ୍ରୀତିର ଏକୀଭୂତ ଚେତନାରହସ୍ୟଟି ମଧ୍ୟ ପ୍ରାଣରେ ଲାଭକରିଛନ୍ତି । ଏହାହିଁ ତାଙ୍କର ରହସ୍ୟବାଦୀ ପ୍ରେମୋପଲବ୍ଧିର ସ୍ପଷ୍ଟ ରୂପାୟନ । ତାଙ୍କର ସମଗ୍ର କାବ୍ୟୋପଲବ୍ଧି ମୂଳରେ ଏ ଚିତ୍ତ ଚେତନାର ବଳିଷ୍ଠ ରୂପାନୁଭୂତିକୁ ଏଡ଼ାଇ ହୁଏନାହିଁ । ଯେଉଁ ଉପଲବ୍ଧିର ମାର୍ଗଦେଇ ସେ ଅନୁଭୂତିର ଜୀବନକୁ ଚାହିଁଛନ୍ତି ଓ ଜଗତ୍ ସହ କର୍ମ ସମ୍ପର୍କ ସ୍ଥିର କରିଛନ୍ତି, ତାହା ଯେ ଆତ୍ମାର ସେଇ ବିମୁଗ୍ଧ ମିଷ୍ଟିକ ପ୍ରସାରଣ ଆନନ୍ଦ (୩୬) । ଗୋପବନ୍ଧୁଙ୍କ କାବ୍ୟ-ପ୍ରଣତିରେ (୩୭) ତାର ଜୟଗାନ ରହିଛି । ରବୀନ୍ଦ୍ରନାଥଙ୍କ ଶେଷଜୀବନର କାବ୍ୟାନୁଭବ ଥିଲା : "ସୃଷ୍ଟିର ପ୍ରଥମ ରହସ୍ୟ ଆଲୋକେର ପ୍ରକାଶ / ଆର ସୃଷ୍ଟିର ଶେଷ ରହସ୍ୟ ଭାଲୋବାସାର ଅମୃତ । (୩୮) ଗୋପବନ୍ଧୁଙ୍କ ଜୀବନ ସଙ୍ଗୀତରେ ସେଇ ଆଲୋକ ଓ ଅମୃତର ପରିପ୍ଳୁତ ଆବାହନ ଘଟିଛି ।

---

(୩୬) "ସବ୍ ଛିଡ ମିଥ୍ୟା କରି ଅନ୍ତରେର ଆନନ୍ଦ ବିରାଜେ"—ରବୀନ୍ଦ୍ରନାଥ—'ସଞ୍ଚୟିତା' ପୃ. ୮୩୩

(୩୭) "ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ / ନାଚିବି ବିଶ୍ୱପ୍ରେମ ପରମାନନ୍ଦେ"—'କାରାକବିତା' ପୃ. ୬୪

(୩୮) "ରବୀନ୍ଦ୍ରନାଥ—'ପତ୍ରପୁଟ' କବିତା ନଂ ୧୫, 'ରବୀନ୍ଦ୍ର ରଚନାବଳୀ' (୨୦ଖ) ପୃ. ୪୮

Digitized by PPRACHIN, SOA

# ଲକ୍ଷ୍ମୀକାଂତ ମହାପାତ୍ର ( ଖ୍ରୀ: ୧୮୮୮—୧୯୫୭ )

"ଯେଉଁ ଯାହା ଆରଂଭ କରିଛୁ, ତାକୁ ହିଁ ଅନୁସରିବି; ଯେଉଁ ରାହା ଧରିଛୁ, ସେହିଥିରେ ଅଗ୍ରସର ହେବି । ଦେଖିବି, ତାର ଶେଷ କେଉଁଠି, ତାର ସମାପ୍ତି କେତେ ଦୂର । ତାର ପରିଣତି କିଭଳି ? ଉଠିଲିଣି ଯେତେବେଳେ, ଦେଖି ଆସେ ସ୍ୱର୍ଗ କେତେ ଊର୍ଦ୍ଧ୍ୱରେ—ବୁଡ଼ିଲିଣି ଯେତେବେଳେ, ଜାଣିଆସେ ପାତାଳ କେତେ ଗଭୀର ।" (୧)

ଜୀବନ କେବଳ ତ ମର୍ତ୍ତ୍ୟର ନୁହେଁ; ସ୍ୱର୍ଗର ବି, ପାତାଳର ବି । ମର୍ତ୍ତ୍ୟରେ କାଯ୍ୟାବସ୍ଥାର କରି ସ୍ୱର୍ଗ-ପାତାଳକୁ ପାଦରେ କ୍ଷେପି ଯିବାର ଶକ୍ତି ତାର ଅଛି । ସେଥିପାଇଁ ତାଂକୁ ଉଠିବାର କଷ୍ଟ, ବୁଡ଼ିବାର ଯଂତ୍ରଣାକୁ ସ୍ୱୀକାର କରିବାକୁ ହୁଏ । ସେହି କଷ୍ଟ, ପୁଣି ତାର ସାଫଲ୍ୟ ହେଉଛି ଜୀବନର ଘଟଣାସମୂହ । ସୁଖଦୁଃଖର ଉପଲବ୍ଧିମାନ ବ୍ୟକ୍ତିର ଚେତନାଗୂଢ଼ ହେବାର ସୋପାନ-ରୂପ ।

ଘଟଣା ସମସ୍ତଂକ ଜୀବନରେ ଘଟେ । ଅନୁଭୂତି ସମସ୍ତଂକ ହୃଦୟରେ ଆସେ । କିଂତୁ ସେ ଘଟଣା ଓ ଅନୁଭୂତି ଭିତରୁ ବ୍ୟକ୍ତିଚେତନା କେଉଁ ସତ୍ୟକୁ କିପରି ଲାଭକରେ, ଜୀବନର ପରବର୍ତ୍ତୀ ପଦକ୍ଷେପ ପାଇଁ କି ଦିଗ୍‌ଦର୍ଶନ ଲାଭକରେ, ତାର ସ୍ୱରୂପ ସବୁଠି ସମାନ ନୁହେଁ । ବ୍ୟକ୍ତି ତାର ଏକକ ସ୍ଥିତିରେ ଜଗତ୍ ଓ ଜୀବନକୁ ସ୍ୱତଂତ୍ର ରୂପରେ ଭେଟେ । ତାର ପ୍ରତିକ୍ରିୟା ମଧ୍ୟ ଭିନ୍ନ । ସେଥିପାଇଁ ପ୍ରତ୍ୟେକଟି ବ୍ୟକ୍ତିର ଜୀବନଦର୍ଶନ ଅନନ୍ୟ, ଜୀବନଯାପନର ଧାରାଟି ମଧ୍ୟ ଏକକ ।

କାଂତ-ଜୀବନୀ ହୁଏତ ଅସାଧାରଣ ନୁହେଁ । ଜଗତର ସଂଭାବିତ ଜୀବନଧାରାର ସ୍ୱାଭାବିକ ସ୍ୱରୂପଠାରୁ ଖୁବ୍ ବେଶି ଏକ ବ୍ୟତିକ୍ରମତାର ଦାବୀ କରିନପାରେ । ମାତ୍ର ଜୀବନର ଚଲାପଥରେ କେଉଁ ଘଟଣାମାନ କି ଉପଲବ୍ଧିର ମାର୍ଗଦେଇ 'ଜୀବନ-ସଂଗୀତ'ର ସ୍ୱରସ୍ରଷ୍ଟାଙ୍କୁ ସ୍ୱର୍ଗପାତାଳର ଅନ୍ୱେଷଣ-ପଥରେ ନିତ୍ୟ ଯାତ୍ରୀ ରୂପେ କଢ଼ାଇଆଣିଛି, ତାର ବିଚାର କବି-ଜୀବନରୁ ଖୋଜିବସିବା ଅପ୍ରାସଂଗିକ ହେବ ନାହିଁ; ପୁଣି କାଂତ-ସାହିତ୍ୟ ତ ଲକ୍ଷ୍ମୀକାଂତଂକର ଜୀବଂତ ରୂପଚିତ୍ର !

ଜୀବନରେ ବୋଧହୁଏ କିଛି ଆକସ୍ମିକ ନୁହେଁ । କବିମାନସର ଯାତ୍ରା-ସଂକଳ୍ପ କଳ୍ପନାଜାତ ନୁହେଁ । ରୂଢ଼ ବାସ୍ତବତାର ସମ୍ମୁଖରେ ପ୍ରାଣର ଦୁର୍ମଦତାରୁ ଋଛାରିତ ଏ ମର୍ମଭେଦୀ ସଂକଳ୍ପ । ଜୀବନର ବିବିଧ ଘଟଣା ଓ ବିଚିତ୍ର ଭିବସଂଘାତମାନ କେତେ ପ୍ରଶ୍ନ ପୁଣି କେତେ ଉତ୍ତରର ଆଲୋଡ଼ନ ଭିତରେ ନବ ନବ ଉପଲବ୍ଧିମାନଂକୁ ସଂଖୋଳି ଆଣିଛଂତି, ପ୍ରତିଟି ନୂତନ ଅନୁଭୂତି ଭିତରେ ଏକ ଖଂଡ ସତ୍ୟର ଉଦ୍‌ଭାସନ, ପୁଣି ବୃହତ୍ତର ସତ୍ୟ ପାଇଁ ଉଗ୍ରନପାଦ ସାଧନା, ଏ ପଥରେ ଆଉ ଲେଉଟିବାର ଉପାୟ ନଥାଏ । 'ଅବିରାମ, ଅପ୍ରତିହତ ଗତିରେ କେବଳ ଅଗ୍ରସର' ହେବାକୁ ପଡ଼େ । କବିଂକର ସ୍ୱୀକାରୋକ୍ତି "ଲାଭର ଦୁଷ୍ଚିଂତା ଗୁଡ଼ିଛି । ସାଫଲ୍ୟ ବୈଫଲ୍ୟର ଉତ୍କଣ୍ଠା ତ୍ୟାଗ କରିଛି । ଜୟ-ପରାଜୟର ବ୍ୟାକୁଳତା ବିସର୍ଜନ କରିଛି ।" (୨)

କାଂତ-ସାହିତ୍ୟରୁ ଲକ୍ଷ୍ମୀକାଂତଂକର ଯେଉଁ ଆଦ୍ୟ ରୂପପରିଚୟଟି ମିଳିଥାଏ, ତାହା ହେଲା ଲକ୍ଷ୍ମୀକାଂତ ଜଣେ କବି ଏବଂ ଅନୁଭୂତିର କବି । ତାଂକର କବିଧର୍ମ-କଳ୍ପନାର ରୂପସୃଷ୍ଟି ଅପେକ୍ଷା ଅନୁଭୂତିର ସ୍ୱରସଙ୍କାରେ ଅଧିକ ବିଶ୍ୱସ୍ତ । କାବ୍ୟଧର୍ମିରୁ କଳ୍ପନାକୁ ବିସର୍ଜନ ଦେବା ସଂଭବ ନୁହେଁ ।

(୧) 'ଯୌବନପଥେ'—କାଂତସାହିତ୍ୟମାଳା-ପୃ. ୪୯୪

(୨) 'ଯୌବନପଥେ'—କାଂତସାହିତ୍ୟମାଳା-ପୃ. ୪୯୪

Digitized by PPRACHIN, SOA

ମାତ୍ର କାଂତ-ସାହିତ୍ୟର କାବ୍ୟ-କଳ୍ପନା ଏକ ନିଛକ ଭାବପ୍ରବଣତାମୁଖର ବା ଯୁଗ-ପ୍ରଭାବ-ସ୍ୱୀକୃତ ରୋମାଣ୍ଟିକ ସ୍ୱୈରିତାର ଭିତରେ କବିସତ୍ତାକୁ କେଂଦ୍ର-ଚ୍ୟୁତ କରିପାରିନାହିଁ । ସ୍ୱଭାବସୁଲଭ ସ୍ପର୍ଶକାତରତା ଭିତରୁ ଜୀବନର କ୍ଷୁଦ୍ରାନୁଭୂତିମାନ କବିଂକ ପାଇଁ ବିପୁଳ ଭାବରାଜ୍ୟର ଦ୍ୱାର ଖୋଲିଦେଇଛଂତି । ଉପଲବ୍‌ଧିର ବାସ୍ତବତା କାବ୍ୟିକ ସତ୍ୟ ରୂପେ ଉଚ୍ଚାରିତ ହୋଇଛି । କାଂତ-ଚେତନାରେ ରହସ୍ୟବାଦୀ ଆଭିମୁଖ୍ୟର ସ୍ୱରସଂଧାନ ଏହିଠାରେ ।

କବିଜୀବନୀ ଓ କାଂତ-ସାହିତ୍ୟର ବିଶ୍ଳେଷଣଭୂମିଟି ଏକ ଏବଂ ଅଭିନ୍ନ । କବି-ବ୍ୟକ୍ତିତ୍ୱର ବିଶେଷ ପରିଚୟ ଦୁଇ ମୁଖ୍ୟ ସ୍ୱରୂପରେ ସଂରକ୍ଷିତ—ତାହା ତାଂକର 'ଧର୍ମପ୍ରାଣତା' ଓ 'ସଂଗୀତପ୍ରିୟତା' । ବୈଷ୍ଣବ ପରିବାରରେ ଜନ୍ମ, ଭକ୍ତ ରାମଦାସଂକଠାରୁ ଗୌଡ଼ୀୟ ବୈଷ୍ଣବ-ମାର୍ଗରେ ଦୀକ୍ଷାଗ୍ରହଣ ଏବଂ ଅନ୍ୟଦିଗରେ ଓଡ଼ିଶାର ସାଂସ୍କୃତିକ ପରଂପରା ପୋଷିତ ଯାତ୍ରା, ନାଟ୍ୟ ଓ ସଂଗୀତ ପ୍ରତି ଆକର୍ଷଣ—ଏ ଉଭୟ ମାର୍ଗରେ ଭକ୍ତିରସ ତଥା ସଂଗୀତରସର ମଣିକାଂଚନ ସଂଯୋଗ ତାଙ୍କ ଜୀବନରେ ଘଟିଥିଲା । ଯୌବନରେ ବ୍ୟାଧିପୀଡ଼ିତ ଦେହ ଓ ସଂଶୟାକୁଳ ମନର ବାଡ଼ବାନଳରେ ତାଙ୍କ ଚେତନା ଶୁଦ୍ଧ-ସ୍ନାନ କରି ସୁବର୍ଣ୍ଣନିର୍ମଳ ହୋଇଥିଲା । ଦିବ୍ୟାନୁରାଗର କଷଟିରେ ଅଧ୍ୟାତ୍ମ-ନିଷ୍ଠାର ପରୀକ୍ଷା-ନିରୀକ୍ଷା ମଧ୍ୟ ହୋଇଯାଇଥିଲା । ଭକ୍ତି, ସଂଗୀତ ଓ ସାହିତ୍ୟ, ଲକ୍ଷ୍ମୀକାଂତଂକ ଜୀବନରେ ଏ ବିପୁଳ ରସଧାରାର ମଧୁର ତ୍ରିବେଣୀ ସଂଗମ ଘଟିଥିଲା ।

ଲକ୍ଷ୍ମୀକାଂତଂକୁ ରହସ୍ୟବାଦୀ ରୂପେ ବିଚାର କରିବାର ପ୍ରୟୋଜନ ଆସେ ତାଂକର ମନ୍ମୟଧର୍ମୀ ଗଦ୍ୟଲେଖାଗୁଡ଼ିକରୁ ଓ 'ଜୀବନସଂଗୀତ' ଗୀତି-ସଂକଳନରୁ । ପରଂପରାର ପ୍ରଭାବ ତାଂକ ରହସ୍ୟବାଦୀ ରଚନାର ସାମଗ୍ରିକ ପ୍ରେରଣା ନୁହେଁ; ବରଂ କବିଂକର ଅଂତରାତ୍ମାର ନିଗୂଢ଼ ଗାନ ହିଁ ଜୀବନ-ସଂଗୀତ ରୂପେ ନିଃସୃତ । ତାଙ୍କର ରହସ୍ୟବାଦ ତତ୍ତ୍ୱନିଷ୍ଠ ନୁହେଁ; ଧର୍ମାନୁଚଂତା ବା ଶାସ୍ତ୍ରାଲୋଚନା-ମୂଳକ ନୁହେଁ । ଅଂତଚେତନାର ଏକ ଗଭୀର ପ୍ରେରଣା ଓ ଶକ୍ତି ସହିତ ଚଳମାନ ଜୀବନର ଯେଉଁ ସଂପର୍କକୁ ସେ ଅହରହ ଅନୁଭବ କରିଛଂତି, ତା'ର ଗୀତିମୟ ବିନ୍ୟାସ ତାଂକୁ ରହସ୍ୟବାଦୀ ରୂପେ ସ୍ୱୀକୃତି ଦେଇଛି । ଜୀବନର ଅଦୃଷ୍ଟ ରୂପକାରଂକୁ ସକଳ ବିପର୍ଯ୍ୟୟ ଦୁର୍ବିପାକ ଭିତରେ ସତ୍ତାର ଏକ ସାମଗ୍ରିକ ସମର୍ପଣ ଓ ଅକୁଣ୍ଠ ଶରଣାଗତିର ଚେତନା କବିଂକ ରହସ୍ୟବାଦୀ ଉପଲବ୍‌ଧିର ମୁଖ୍ୟ ଉଚ୍ଚାରଣ ।

କବିଂକର ସ୍ମୃତିକଥନରୁ ଜଣାଯାଏ, ବାଲ୍ୟକାଳରୁ ତାଂକର ଶିଶୁସତ୍ତାର ସହଜ ସାରଲ୍ୟରେ ଦିବ୍ୟଚେତନାସହ ଏକ ଆତ୍ମିକତାର ଟାଣ ସ୍ୱତଃ ଜାଗ୍ରତ ଥିଲା । (୩) ପୁଣି କୈଶୋରରେ ଯାତ୍ରା/ନାଟ୍ୟ ଓ କୀର୍ତ୍ତନ ମାଧ୍ୟମରେ ପାରଂପରିକ ଭକ୍ତିଭାବନା ଏବଂ କଳାନୁରାଗ ଅନେକଂକ ପରି ଲକ୍ଷ୍ମୀକାତଂକ ଜୀବନରେ ସ୍ୱାଭାବିକ ଜାତ ହୋଇଥିଲା ।

ଶିକ୍ଷାର୍ଥୀ ଜୀବନରେ ହୃଦ୍‌ଗତ ଭକ୍ତିଚେତନାର ପରିପୋଷଣ ତଥା ତାହାର କାବ୍ୟ-ରୂପ ଦାନ ନିମଂତେ ପ୍ରେରଣାର ସ୍ଥଳ ଥିଲା ଏକପକ୍ଷରେ ବୈଷ୍ଣବ କାବ୍ୟ ଓ ଅନ୍ୟ ପକ୍ଷରେ ଯୁଗସ୍ରଷ୍ଟା

୩ । "ସେତେବେଳେ ଠାକୁରଂକୁ ଆପଣାର ବୋଲି ଜାଣିଥିଲି × × ଠାକୁର ମୋର ନିକଟରେ ଥିଲେ । ଯେଉଁ ଭାବ ହୃଦୟରେ ଜାଗରୂକ କରିବା ପାଇଁ ଏତେ ସାଧନା, ଏତେ ତପସ୍ୟା, ଯାହା ପାଇଁ ଯୋଗୀ ଋଷି ଏତେ ଜପ-ତପ ଯୋଗ-ଯାଗ କରନ୍ତି, ସେଇଟା ମୋର ସ୍ୱାଭାବିକ ଥିଲା ।"

ବାଲ୍ୟସ୍ମୃତି—'କାଂତସାହିତ୍ୟମାଳା'-ପୃ. ୪୮୩

Digitized by PPRACHIN, SOA

ଭକ୍ତସାହିତ୍ୟ; ବିଶେଷ କରି ଭକ୍ତକବି ମଧୁସୂଦନଙ୍କର ବ୍ରାହ୍ମ-ସାହିତ୍ୟ ଓ ବଙ୍ଗୀୟ ରବୀନ୍ଦ୍ର-ଅଧ୍ୟାତ୍ମବାଦୀ ରଚନା । ମଧୁସୂଦନଙ୍କର ବ୍ରହ୍ମପ୍ରାଣତା ଓ ଭକ୍ତିଭାବନା ତାଙ୍କୁ ଆକୃଷ୍ଟ କରିଥିଲା । କିନ୍ତୁ ବ୍ରାହ୍ମ-ମଧୁସୂଦନଙ୍କର ଦାର୍ଶନିକସୁଲଭ ଗମ୍ଭୀର ତତ୍ତ୍ୱପ୍ରାଣତା ବୈଷ୍ଣବ ଲକ୍ଷ୍ମୀକାନ୍ତଙ୍କ ରସପିପାସାକୁ ପ୍ରଶମିତ କରିପାରିନଥିଲା; ବରଂ ତାଙ୍କ ସରସ ହୃଦୟର ଆବେଗଉଚ୍ଛଳତା, ତାଙ୍କର ଭକ୍ତିପ୍ରାଣତା, କାବ୍ୟିକତା ଓ ସାଂଗୀତିକତା -ସବୁକିଛିକୁ ପ୍ରବଳଭାବେ ରସାପ୍ଳୁତ କରି ରଖିବାରେ ରବୀନ୍ଦ୍ର-କାବ୍ୟସ୍ୱରର ସମ୍ମୋହନ-ଜଡ଼ିତ ଥିଲା । କାନ୍ତକବିଙ୍କ ଚେତନାରେ ବୈଷ୍ଣବ ଭକ୍ତିତତ୍ତ୍ୱ ଓ ସାକାର ଆରାଧନା ସହ ରବୀନ୍ଦ୍ରିକ ଜୀବନଦେବତାବାଦ ତଥା ନିରାକାର ପ୍ରେମୋପାସନାର ଏକ ଚମତ୍କାର ସମନ୍ୱୟ ଘଟିଥିଲା; ଯାହା ତାତ୍ତ୍ୱିକ ଭକ୍ତିବାଦକୁ ଆତ୍ମିକ ଉପଲବ୍ଧି ସ୍ତରରେ ମଧୁ ମଧୁର ରାଗ-ସଂପର୍କରେ ରୂପାନ୍ତରିତ କରିଥିଲା ।

ପୁନଶ୍ଚ ଦୈହିକ ବ୍ୟାଧିଯନ୍ତ୍ରଣା ଓ ତଜ୍ଜନିତ ମାନସିକ କ୍ଲେଶ କବିଙ୍କୁ ରହସ୍ୟବାଦୀ ଆଭିମୁଖ୍ୟ ପ୍ରତି ସଂପ୍ରେରିତ କରିଥାଇପାରେ । ପୀଡ଼ିତ ସତ୍ତାର ସଂଶୟ ଦ୍ୱନ୍ଦ୍ୱ କବିଙ୍କୁ ହତୋତ୍ସାହ କରି ନପାରି ବରଂ ବିଶ୍ୱାସ ଓ ନିଷ୍ଠାର ଶରଣ-ଦୃଢ଼ତା ପଥରେ ଆତ୍ମ-ନିବେଦନର ପ୍ରଗାଢ଼ତାକୁ ବଳବତ୍ତର କରିଥିଲା । ଦୁଃଖବାଦ ଓ ବିଶ୍ୱପ୍ରେମ, ହତାଶା ଓ ଶରଣାଗତି ଅବିଚ୍ଛିନ୍ନଭାବେ ତାଙ୍କ ଅଧ୍ୟାତ୍ମ-ଗାନର ଭାବ, ଭାଷା, ସୁର ଓ ଛନ୍ଦ ଭିତରେ ଏକତାନତା ଲାଭ କରିପାରିଛନ୍ତି ।

ସଂଗୀତମାଧ୍ୟମରେ ନିଜକୁ ବ୍ୟକ୍ତ କରିବାର ସାଧନାପଥରେ କବିଙ୍କର ରହସ୍ୟୋପଲବ୍ଧିର ବିପୁଳ ପ୍ରକାଶ ଘଟିଛି । ସଂଗୀତ ହିଁ ଏକ ବିଶ୍ୱାସ୍ଥିତ ଚେତନାର ସୌନ୍ଦର୍ଯ୍ୟ, ଆନନ୍ଦ ଓ ମାଧୁର୍ଯ୍ୟରେ ମୂର୍ତ୍ତ ହୋଇ ତାଙ୍କ ପ୍ରାଣରେ ବିଶ୍ୱକାଗତିକତାର ମହାଭାବମୟ ସ୍ପନ୍ଦନ ସୃଷ୍ଟି କରିଥିଲା । ଏହା ତାଙ୍କର ସଂଗୀତ ସଂପର୍କିତ କେତୋଟି କବିତା ଓ ଗଦ୍ୟଲେଖାରେ ସ୍ପଷ୍ଟ ପ୍ରତିଭାତ । ସଂଗୀତ ତାଙ୍କର ସାଧନା, ସଂଗୀତମାଧ୍ୟମରେ ବିଶ୍ୱଚେତନା ସହ (Cosmic Conciousness) ସହ ତାଙ୍କର ଯୋଗାଯୋଗ ଓ ସଂଗୀତ ସହାୟତାରେ ଅନ୍ତର ଦେବତାଙ୍କୁ ଆତ୍ମନିବେଦନ, ସଂଗୀତର ମହିମାନ୍ୱିତ ଏଇ ପ୍ରକାଶ ଓଡ଼ିଆ ସାହିତ୍ୟରେ ଅନ୍ୟତ୍ର ଦୁର୍ଲଭ ।

**'ଜୀବନସଂଗୀତ' ଓ କାବ୍ୟାଦର୍ଶନ** —ରବୀନ୍ଦ୍ର ସଂଗୀତ ତଥା ଓଡ଼ିଆ ଜଣାଣ-ଭଜନ ପରଂପରାକ୍ରମର ଏକ ମଧୁର ମିଳନ 'ଜୀବନସଂଗୀତ' । ସାଂଗୀତିକତା ଏବଂ ଗୀତିଧର୍ମିତା ଏହାର ଆଙ୍ଗିକ ବିଚାରର ମୁଖ୍ୟ ବିଭବ । ସଂଗୀତଗୁଡ଼ିକ ଏକକ ଓ ସ୍ୱୟଂସଂପୂର୍ଣ୍ଣ । ତଥାପି 'ଜୀବନସଂଗୀତ'ରେ ଏମାନଙ୍କର ଏକତ୍ର ସଂକଳନର ମୂଳରେ ଏକ ଅନ୍ତର୍ନିହିତ ଭାବଧାରାର ଐକ୍ୟସୂତ୍ରଟିକୁ ଦେଖିହୁଏ । ପ୍ରତ୍ୟେକଟି ଗୀତର ନିଗୂଢ଼ ଚେତନା ଓ ସ୍ୱଗତାଳାପ ସମଗ୍ର ଜୀବନସଂଗୀତର ଭାବାଦର୍ଶ ଅନୁସାରୀ । 'ଜୀବନ ଦେବତାଙ୍କ ସହ ବ୍ୟକ୍ତି-ଆତ୍ମାର ସଂବଂଧ'—ଏଇ ଚେତନାଶ୍ରିତ ଏ ଗାନଗୁଡ଼ିକ ରହସ୍ୟବାଦୀ ଭାବଧାରା ଓ ଉପଲବ୍ଧି ଅନୁପ୍ରାଣିତ ।

ବ୍ୟକ୍ତିଗତ ଭାବ, ଅନୁଭୂତି ଓ ଆବେଗରେ ଏଗୁଡ଼ିକର ଅନ୍ତଃସ୍ୱର ମର୍ମରିତ । ସ୍ୱରଉଚ୍ଛ୍ୱାସରେ ଅନ୍ତରାତ୍ମାର ଏ ଯେପରି ମୁକ୍ତିପ୍ରୟାସ । ଅନ୍ତର୍ଗତ ଧ୍ୟାନସ୍ଥିର ସତ୍ତାଟି ଯେପରି ବନ୍ଧୁ ସ୍ୱର, ବନ୍ଧୁ ରାଗିଣୀର ବିଚିତ୍ର ଆଳାପ ଭିତରେ ଆପଣାର ଧ୍ୟାନ-ବିଗ୍ରହଙ୍କ ପ୍ରତି ଲୟ-ନିବିଡ଼ ।

ଏ ଅଧ୍ୟାତ୍ମ ଗାନଗୁଡ଼ିକ କିନ୍ତୁ ପୁରାପୁରି ପାରଂପରିକ ପୂଜା-ସ୍ତୋତ୍ର କିମ୍ବା ତତ୍ତ୍ୱବିଖାଣ ନୁହନ୍ତି । ନିରୋଳା ପ୍ରାଣସଂଗୀତ ରୂପେ ଏଗୁଡ଼ିକ ଭାବମୁଗ୍ଧ କବିସତ୍ତାର ଅନ୍ତଃମନ୍ଥନରୁ ସମୁଚ୍ଛାରିତ ।

Digitized by PPRACHIN, SOA

'ଜୀବନସଂଗୀତ' କବିଙ୍କର ଜୀବନାବେଗର ପ୍ରବାହ । ସେଥିରେ କବିଜୀବନର ଦର୍ଶନ ମଧ୍ୟ ପ୍ରତିଫଳିତ । କବି ଙ୍କ୍ରୁ ଜଣେ ନିଛକ ଭାବ-ଦରଦି ଶିଳ୍ପୀ; ତତ୍ତ୍ୱଜିଜ୍ଞାସୁ ନୁହଂତି । ଅନୁଭବର ମାର୍ଗଦେଇ ଲକ୍ଷ୍ମୀକାଂତଂକ ଦୃଷ୍ଟିଭଂଗୀ ଓ ଶିଳ୍ପସାଧନାର ସାମଗ୍ରିକ ପରିପ୍ରକାଶ । ଦୁଃଖାନୁଭୂତି ଭିତରେ ପରମ ପ୍ରେମର ସଂଧାନରେ ଜୀବନର ସାର୍ଥକତା ଅନ୍ୱେଷଣ କାଂନ୍ତଦର୍ଶନର ବୈଶିଷ୍ଟ୍ୟ ।

'ଜୀବନସଂଗୀତ'ର ମୂଳ ସ୍ୱରଟି କାରୁଣ୍ୟର । ପାର୍ଥିବ ସଂଘର୍ଷଣାଦଗ୍ଧ କବିସତ୍ତାର ଅଂତର୍ଦାହ ସଂଗୀତର କରୁଣ ରାଗ ହୋଇ ପ୍ରସରିଯାଇଛି । ସେଇ ଅଶ୍ରୁଳ ବିଳାପ ଭିତରେ ଅଧ୍ୟାତ୍ମ ବିଶ୍ୱାସ ଓ ସମର୍ପଣର ଆକୁତିଟିକିକ ବି ଗୁଂଜରିତ ହୋଇଉଠିଛି । ସାଧାରଣ କବିଧର୍ମ ସଂପର୍କରେ ଲକ୍ଷ୍ମୀକାଂତଂକର ନିଜସ୍ୱ ବିଚାରଧାରାଟି (୪) 'ଜୀବନସଂଗୀତ'ରେ ସାର୍ଥକ ରୂପେ ପ୍ରକଟିତ ।

ଲକ୍ଷ୍ମୀକାଂତଂକ ରଚନାମାନ ବହୁବିଧ ଓ ବହୁଭାବମଂଡିତ । ମାତ୍ର 'ଜୀବନସଂଗୀତ' ତାଂକର ଆତ୍ମ-ଉଚାରଣ । କବିଂକର କେତୋଟି କବିତା ଓ ଗଦ୍ୟରଚନାରେ ନିଜ ସଂପର୍କରେ ଯେଉଁ ରୂପ ପରିଚୟର ଆଭାସ ଇଂଗିତ ମିଳେ, ତାହାର ପୂର୍ଣ ସାଂଗୀତିକ ଉଚ୍ଛ୍ୱାସ 'ଜୀବନସଂଗୀତ' । ଏକ ଅତୀଂନ୍ଦ୍ରିୟ ସତ୍ତା ସହ ଭାବ-ସଂପର୍କ ଉପରେ କାଂତଦର୍ଶନ ଓ ଜୀବନଚର୍ଯ୍ୟାର ସଂବାଦ ପ୍ରଳଂବିତ । ଏ ଅତୀନ୍ଦ୍ରୀ-ପ୍ରବଣତାକୁ କଂତୁ କବିମାନସର ବାସ୍ତବବିମୁଖତାଜନିତ କଳ୍ପନାଲୋକକୁ ଅପସାରଣ ବୋଲି କୁହାଯାଇନପାରେ । କବିଂକର ବିପୁଳ ଆତ୍ମମଗ୍ନତା ବାସ୍ତବରୁ ନିଷ୍କୃତିର ନୁହେଁ; ବରଂ ଏକ ଅତିବାସ୍ତବତାକୁ ପ୍ରତ୍ୟକ୍ଷ ଉନ୍ମୁକ୍ତିର ସଂଦେଶ ନିଏ । କବିଂକର ଜୀବନଦର୍ଶନ ପ୍ରବଳ ବାସ୍ତବବାଦୀ । କଂତୁ ଜୀବନର ଏକପାର୍ଶ୍ୱର ବାସ୍ତବତା, ଏକ ଖଣ୍ଡିତ ସ୍ୱୀକୃତିର ଗୃପ ଭିତରେ ସେ ରୁଦ୍ଧଶ୍ୱାସ ହୋଇନାହିଁ । ରୋଗଶୋକତାପର ରୂଢ଼ ନିର୍ମମତାକୁ, କ୍ଷତଚିହ୍ନକୁ, ବିରୂପତାକୁ ଅଂଗରେ ଧାରଣକରି ସେ ପୂର୍ଣଜୀବନର ଅପରୂପତାକୁ ସଂଧାନ କରିଛି । ତେଣୁ ସେ ନିରଂତର ଯାତ୍ରୀ, ସଂଧାନୀ, ସଂଗ୍ରାମୀ । (୫) କବିଂକର ବିଶ୍ୱାସ ଜୀବନରେ ସେହି ଶକ୍ତି ଅଂତଃସଂଗୁପ୍ତ, ଯାହା ସତ୍ତାର ଖଂଡିତ ଚେତନାକୁ କେଂନ୍ଦ୍ରକରି ପୂର୍ଣ-ଜୀବନର ବୃହତ୍ତର ବଳୟ ପ୍ରତି ଅଗ୍ରସର ହୁଏ । ଦୁଃଖ ବେଦନାର ଦ୍ୱାରଦେଇ ସତ୍ତା ବ୍ୟକ୍ତିସୀମାର ରୁଦ୍ଧ କାରାଗାର ଭିତରୁ ବିଶ୍ୱବଳୟ ପ୍ରତି ଆଗୁସାର ହୁଏ ।

ଏ ସଂପର୍କରେ ପୁନରାୟ ସ୍ମରଣୀୟ ଯେ କବି ଅତୀଂନ୍ଦ୍ରିୟ ଉପାସକ ହେଲେ ବି ନିରୋଳା ଦାର୍ଶନିକ ବା ନିଛକ ରୋମାଣ୍ଟିକ ନୁହଂତି । ମଧୁସୂଦନ, ରବୀଂନ୍ଦ୍ରନାଥଂକ ଦୃଷ୍ଟିକୋଣରୁ ତାଂକ ଜୀବନଦର୍ଶନର ସମ୍ୟକ୍ ବିଚାର କରାଯାଇନପାରେ, କଂବା ରୋମାଂଟିକ ସବୁଜ ବିଳାସ ଭିତରୁ ତାଂକ କାବ୍ୟାଦର୍ଶର ଉତ୍ସ ସଂଧାନ କରାଯାଇନପାରେ । ମଧୁସୂଦନଂକର ବ୍ରହ୍ମାନୁଭୂତି ବା ରବୀଂନ୍ଦ୍ରଚେତନାର ସର୍ବାତ୍ମବାଦୀ

(୪) "ଆପଣା ଅଂତରେ ଥାପି ବିଶ୍ୱର ମରମ
ହସିଛୁ କାଂଦିଛୁ ଗୀତ ଗାଇଛୁ ଅସରି
ରମିଛୁ ଆପଣା ମନେ କବି ଆତ୍ମହରା
ନିଜକୁ ନିଃଶେଷ କରି ରାଜହଂସ ସମ ।"

"ଅମରକବି'—କାଂତସାହିତ୍ୟମାଳା-ପୃ. ୧୩୨

(୫) "ମୁଁ ଚାହେଁ ସୁଖ ଆସୁ, ଦୁଃଖ ଆସୁ, ତାକୁ ନିବିଡ଼ ଭାବରେ ଅନୁଭବ କରିବି; ଉପଭୋଗ କରିବି । ତାକୁ ପରିପୂର୍ଣ କରି ବଂଧୁରୂପେ, ଆତ୍ମୀୟରୂପେ, ପ୍ରିୟରୂପେ ଅଂଗରେ ଅଂଗ ମିଶାଇ, ଚିତ୍ତରେ ଚିତ୍ତ ମିଶାଇ ଆପଣାର କରି ଅଂଗୁରି ନେବି ତାକୁ ।"

'ନବଜାଗରଣ'—କାଂତସାହିତ୍ୟମାଳା-ପୃ. ୪

Digitized by PPRACHIN, SOA

ବିଶ୍ୱ-ମାନବ ପଥରେ ଆତ୍ମାର ବିଶ୍ୱମୟତାକୁ ବିସ୍ତାର ପ୍ରୟାସ ତାଂକ କାବ୍ୟ-ସାଧନାର ଅଂଗୀଭୂତ ନଥିଲା । ସେ କାବ୍ୟ-ଚେତନାର କେଂଦ୍ର ଥିଲା ଏକାଂତଭାବେ ତାଂକର ବ୍ୟକ୍ତିପୁରୁଷ 'ମୁଁ' । ତାହାରି ସୁଖ-ଦୁଃଖର ଭାବବିଳାସ ତାଂକୁ ଅଂତର୍ଗତ ଏକ ଚେତନାସହ ଏକାଂତ ହୋଇ ରହିଥିବା ରୂପେ ଦେଖିବାକୁ ଅଭ୍ୟସ୍ତ କରାଇଛି ।' ନିରୋଳା ମଂଦିର ଭିତରେ ଯେପରି ଦେବ-ବିଗ୍ରହଟି, ଆଉ ପୂଜାରିଟି । ପ୍ରବଳ ବାସ୍ତବ-ସଚେତନ କବି ତାତ୍‌କାଳିକତାକୁ ଯେପରି ବୁଝଂତି ଏବଂ ବ୍ୟଂଗ, ହାସ୍ୟ, ବିରୋଧ ଓ ସହାନୁଭୂତି ମାଧ୍ୟମରେ ଯେପରି ତାହାର ନିଖୁଣ ଉପସ୍ଥାପନା କରଂତି, ଆତ୍ମମଗ୍ନତାର ନିର୍ଜନ ମୁହୂର୍ତ୍ତରେ ସେହିପରି ସମାହିତ, ଅନ୍ତର୍ଗତ ରହି ଜୀବନ-ବଂଧୁଂକ ସହ ଆଳାପରତ ଥାଂତି । ବାହାର ଓ ଭିତର ଏ ଦୁଇ ସତ୍ତା କାଂତସାହିତ୍ୟରେ ସବୁବେଳେ ପାଖାପାଖି ରହିଛଂତି, ବାର୍ତ୍ତାଳାପ କରିଛଂତି, ପରସ୍ପରକୁ ସମୟବିଶେଷରେ ସ୍ପର୍ଶ କରିଛଂତି; ଅଥଚ କାହାରି କେଂଦ୍ରଚ୍ୟୁତି ଘଟିନାହିଁ । ସାମାଜିକ ଏବଂ ରାଷ୍ଟ୍ରୀୟ ମଂଚ ଉପରେ ଲକ୍ଷ୍ମୀକାଂତ ନିର୍ଭୀକ ବ୍ୟଂଗକାର ଓ ବିନୋଦକାର । ସେ ପୂରାପୂରି ଗଣର, ରାଷ୍ଟ୍ରର, ସମାଜର, ପୂରାପୂରି ସମସାମୟିକତାର; ଆଉ ହୃଦୟର ପୂଜାବେଦୀ ମୂଳରେ ସେ ନିରଂତର ଏକାଂତଭାବେ ଏକମାତ୍ର ଜୀବନେଶ୍ୱରଂକର । ଏ ଦୁଇଟି ଚେହେରାରେ କୌଣସି ସାମଂଜସ୍ୟ ନାହିଁ, ସଂଯୁକ୍ତି ନାହିଁ; ଏ ଦୁଇ ପରିଚୟରେ ଅଭେଦତ୍ୱ ମଧ୍ୟ କିଛି ନାହିଁ ।

ମନେହୁଏ ଲକ୍ଷ୍ମୀକାଂତ ଜଣେ ସାର୍ଥକ କଳାକୁଶଳୀ ଶିଳ୍ପୀର ପରିଚୟ ଦେଇ ସାହିତ୍ୟ-ମଂଚ ଉପରୁ ସାମାଜିକ ରଂଗାଳୟକୁ ଯେତେ ସମ୍ମୋହିତ କରି ରଖିଥିଲେ ବି ବ୍ୟକ୍ତିଜୀବନର ନିଭୃତ କୋଣଟିରେ ସେ କେବଳ 'ଜୀବନସଂଗୀତ'ର କବି । ତାଂକ ନିଜ ସ୍ୱର 'ଜୀବନସଂଗୀତ'ର; ଲିଳିକା, ଚଂପୂ, ନାଟକ, ଉପନ୍ୟାସ ଏକ ପ୍ରୟୋଜନ ସିଦ୍ଧିର ସ୍ୱର । ସେ ପ୍ରୟୋଜନ ଦେଶକାଳ-ପରିପାର୍ଶ୍ୱ ବିକ୍ଷୋଭିତ ଶିଳ୍ପୀସତ୍ତାର । କବିଂକର ବ୍ୟକ୍ତିସତ୍ତାର ପ୍ରୟୋଜନଟି ନିଜ ଜୀବନ ସହ । ତାହା ନିଜ ଜୀବନଦେବତାଂକ ସହ ପ୍ରାଣ-ବିନିମୟର ହିସାବ-ନିକାଶ (୬) ।

ଜୀବନଦେବତାବାଦ—ଜୀବନଦେବତା ରୂପଚିହ୍ନଟି କାଂତମାନସର ଯେଉଁ ଭାବଚେତନାକୁ ଅଭିବ୍ୟକ୍ତ କରେ, ତାର ମୂଳ ପ୍ରେରଣାଟି ସଗୁଣ ଭକ୍ତିବାଦ ଓ ରାଗାତ୍ମିକା ଉପାସନାଘଟିତ । ଏହା ସହ ନିରାକାର ଅଥଚ ବ୍ୟକ୍ତି-ଭାବନା ସହ ଓତପ୍ରୋତ ଜଡ଼ିତ ଏକ ଜୀବନଗତ ଚେତନାର କଥା ମଧ୍ୟ ମନରେ ଉଦୟ ହୁଏ । ଜୀବନାଶ୍ରିତ ସଂପର୍କରେ ଲକ୍ଷ୍ମୀକାଂତଂକର ବସ୍ତୁତଃ କିଛି କାବ୍ୟଜିଜ୍ଞାସା ନାହିଁ । ଜୀବନକୁ ଜୀବନବଂଧୁଂକ ସହ ବିଭିନ୍ନ ସଂପର୍କର ପରିପ୍ରେକ୍ଷୀରେ ଦେଖିବା ଓ ଅନୁଭବ କରିବାର ଭାବମଧୁର ବାଣୀବିନ୍ୟାସରେ ତାଂକ ଜୀବନଦେବତାଂକ ଲଳିତ ରୂପାଭିବ୍ୟକ୍ତି କବିଂକର ନିଷ୍ଠାପର ବୈଷ୍ଣବ ହୃଦୟରେ ଉପନିଷଦୀୟ ଅନ୍ତର୍ଯାମୀ ରବୀଂଦ୍ରଦର୍ଶନ ମାର୍ଗରେ ଜୀବନଦେବତା ରୂପେ ଅବସ୍ଥାପିତ । ରାଗାନୁଗା ସାଧନା ଓ ରବୀଂଦ୍ରିକ ଅତୀଂଦ୍ରିୟ ପ୍ରେମଭାବନାର ମଧୁର ସମନ୍ୱୟରେ ବୈଷ୍ଣବର 'ମନମୋହନ' ବାଉଲ କବିର 'ମନର ମଣିଷ' (ମନରେ ମାନୁଷ) ସହ ଏକାତ୍ମ ହୋଇଛଂତି । ଏ ଜୀବନଦେବତା ଶୃଂଗାରିକ ବିଳାସ ଭିତରେ ଯେତିକି ଅଂତରଂଗ ମଧୁର, ନିୟତି-ତତ୍ତ୍ୱର ଡୋରି ହସ୍ତରେ ସେତିକି ସୁଦୂର ରହସ୍ୟମୟ; ମାତ୍ର ଚେତନାସ୍ତରର ସବୁ ଅବସ୍ଥାରେ କବି ଜୀବନସହ ଘନିଷ୍ଠଭାବେ ସଂପୃକ୍ତ । ଜୀବନର ଗଭୀରତମ ଉପଲବ୍‌ଧିରୁ ଉଚ୍ଚାରିତ କାଂତସାହିତ୍ୟର

(୬) "ମୋର ବିଶ୍ୱାସ, ଭଗବାନ ବା ନିୟଂତା କେହି ଅଛି, ଯେ ପ୍ରତି ମୁହୂର୍ତ୍ତରେ ସବୁ ଦେଖୁଛି, କରୁଛି ଓ ଚଳାଉଛି । ତାର ନିର୍ଦ୍ଦେଶ ବିନା ଆମେ କିଛି କରୁନା, କାଷ୍ଠପିତୁଳିବତ୍ ।"

Digitized by PPRACHIN, SOA

ଏ ଜୀବନଦେବତାଂକୁ ବେଦାଂତର 'ବ୍ରହ୍ମ', ବୌଦ୍ଧ 'ଶୂନ୍ୟ', ଭାଗବତ 'ମହାବିଷ୍ଣୁ' ବା ତଂତ୍ରର 'ଆଦ୍ୟାଶକ୍ତି' ତତ୍ତ୍ୱ କଂରୁ କୌଣସି ପ୍ରକାରେ ସ୍ପର୍ଶ କରିନାହିଁ । କବିଂକ ଭାବସାଧନାର ପୂର୍ଣ୍ଣତମ ମାଧୂର୍ଯ୍ୟରେ ଏ ରସବିଂଶ ବିଗ୍ରହଂକର ପ୍ରାଣ-ପ୍ରତିଷ୍ଠା । ଭକ୍ତିମାର୍ଗଦେଇ ସାକାର ଉପାସନାପଥରେ ରୂପ ଓ ରୂପାତୀତର ଦ୍ୱଂଦ୍ୱମୁକ୍ତ ଶିଶୁର ସାରଲ୍ୟ ଯେଉଁ ଅହେତୁକୀ ହୃଦ୍ୟତା ଭିତରେ ବିଶ୍ୱଗତ ପ୍ରାଣସ୍ପଂଦନକୁ ଆତ୍ମଗତ କରି ଲାଭକରେ, ତା'ରି ଭିତରୁ ଲକ୍ଷ୍ମୀକାଂତଂକର ଜୀବନଦେବତାଂକର ଆବିର୍ଭାବ । (୭)

ଏ ପରିପ୍ରେକ୍ଷୀରେ ରବୀଂନ୍ଦ୍ରନାଥଂକ 'ଜୀବନଦେବତା'ତତ୍ତ୍ୱ ବିସ୍ମରଣୀୟ । ୧୩୧୧ ସାଲରେ ରବୀଂଦ୍ରନାଥ 'ଚୈତାଳି' କାବ୍ୟରେ ସ୍ୱୀୟ ଜୀବନଦେବତାଚେତନାର ବିଶ୍ଳେଷଣ କରି କହିଛନ୍ତି "ଯେ ଆବିର୍ଭାବେ ଅତୀତେର ମଧ ହଇତେ ଅନାଗତେର ମଧ୍ୟେ ପ୍ରାନେର ପାଲେର ଉପର ପ୍ରେମେର ହାଓୟା ଲଗାଇୟା ଆମାକେ କାଲ-ମହାନଦୀର ନୂତନ ଘାଟେ ଘାଟେ ବହନ କରିୟା ଲଇୟା ଚଲିୟାଛେନ, ସେଇ ଜୀବନଦେବତାର କଥା ବଲିଲାମ ।" (୮)

ରବୀଂଦ୍ରଚେତନାରେ ଜୀବନଦେବତାବାଦର ବିକାଶ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଏ ତତ୍ତ୍ୱଟି ତାଂକର ବ୍ୟକ୍ତିଚେତନାଠାରୁ ଈଶ୍ୱରୀୟ ଚେତନାପର୍ଯ୍ୟଂତ ଏକ କ୍ରମ-ପରିଣାମୀ ସ୍ତର ସହ ସଂଯୁକ୍ତ । ବ୍ୟକ୍ତିଗତ ପ୍ରଣୟାନୁଭୂତିଠାରୁ ବିଶ୍ୱବ୍ୟାପ୍ତ ପ୍ରେମଭାବନା ପର୍ଯ୍ୟଂତ ତାର ବିସ୍ତାର । ପୁଣି ସେ ଜୀବନଦେବତାଂକୁ ଅଂତର୍ଯାମୀ ଭଗବାନ ଓ ବିଶ୍ୱମୟ ଏତିକି କହିବାଟା ଯେପରି ପର୍ଯ୍ୟାପ୍ତ ନୁହେଁ । ଯୁଗେ ଯୁଗେ ବିଶ୍ୱସୃଷ୍ଟିର ସ୍ତରେ ସ୍ତରେ ଏକ ଅହଂ ବା ସ୍ୱତଂତ୍ର ସତ୍ତ୍ୱସୃଷ୍ଟିର ଯେଉଁ ବିବର୍ତ୍ତନ—ତା'ରି ଅପ୍ରତିହତ ଧାରାଟିର ନିୟଂତ୍ରଣକାରୀ, ନିତ୍ୟବିକାଶ ପଥରେ ଘେନିଯାଉଥିବା ଶକ୍ତିଟି ହିଁ କବିଂକର ଜୀବନଦେବତା । ଜନ୍ମଜନ୍ମାଂତରର ବିଚିତ୍ର ଜୀବନଧାରା ଓ ପରିବେଶ ଭିତରେ ବାରଂବାର ସେହି ଜୀବନଦେବତାଂକ ସହ ବ୍ୟକ୍ତିସତ୍ତ୍ୱର ନିତ୍ୟ ପରିଚୟ । ସକଳ ପରିବେଶ ଭିତରେ ବ୍ୟକ୍ତି 'ମୁଁ' ଓ ଜୀବନଦେବତା 'ତୁମେ'ଙ୍କର ନିତ୍ୟ ଲୀଳାଖେଳା । (୯) ଏ ଜୀବନଦେବତା ବିଶ୍ୱଦେବତାଂକର ବିଶ୍ୱଜୀବନ କେଂଦ୍ରେ ପ୍ରତିଫଳିତ ଏକ ବିଶେଷ ରୂପ । ଏହା ବ୍ୟକ୍ତିର ଅଧ୍ୟାତ୍ମସତ୍ତ୍ୱ ଓ ଜୀବନସତ୍ତ୍ୱର ଯୋଗାଯୋଗକୁ ନିୟଂତ୍ରିତ କରୁଥିବା ଏକ ବିଶେଷ ତତ୍ତ୍ୱ, ଯାହା ବ୍ୟକ୍ତିର

---

(୭) "ମୋର ପୂର୍ଣ୍ଣ ବିଶ୍ୱାସ ଥାଏ, ସେହି ପିତ୍ତଳନିର୍ମିତ ଠାକୁର ଯାହା ଇଚ୍ଛା ତାହା କରିପାରିବେ; କିନ୍ତୁ ସେ ଆମରି···ମୁଁ ଯାହା କହିବି, ତାହା କରିବେ ।"

'ବାଲ୍ୟସ୍ମୃତି'—କାଂତସାହିତ୍ୟମାଳା-ପୃ.୪୮୩

(୮) ଉଦ୍ଧୃତ—ଜଗଦୀଶ ଭଟ୍ଟାଚାର୍ଯ୍ୟ, 'କବିମାନସୀ'-ପୃ. ୪୪୮

(୯) "ଦେହେ ଆର ମନେ ପ୍ରାଣେ ହୟେ ଏକାକାର
ଏ କି ଅପରୂପ ଲୀଲା ଏ ଅଂଗେ ଆମାର
ଏ କି ବିଚିତ୍ର ବିଶାଲ / ଅବିରାମ ରଚିତେଛେ ସୃଜନେର ଜାଲ,
ହେ ମୋର ରାଜନ୍ / କ୍ଷୁଦ୍ର ଏ ଆମାର ମାଝେ ଅନଂତ ଆସନ ।"

ରବୀଂଦ୍ରନାଥ—'ଦେହଲୀଳା' (ନୈବେଦ୍ୟ) 'ସଚୟିତା'-ପୃ. ୪୩୬

Digitized by PPRACHIN, SOA

ବିଶେଷ ଜୀବନଧାରା ଦ୍ୱାରା ଯୁକ୍ତ ଓ ବିଶେଷ ଜୀବନଧାରାଦ୍ୱାରା ଅବଚ୍ଛିନ୍ନ । (୧୦) ସମଗ୍ର ଜୀବନଧାରାର ଅଂତରତମ ଓ ପରମ ଅଧ୍ୟାତ୍ମଦୃଷ୍ଟିରୂପେ ପୁଣି ତାଂକର ଆବିର୍ଭାବ । ଏ ଜୀବନଦେବତାତତ୍ତ୍ୱଟି ସାକାର ଓ ନିରାକାର ଦ୍ୱନ୍ଦ୍ୱମୁକ୍ତ । ରୂପ ଅପରୂପର ନିତ୍ୟ-ଲୀଳା ଭିତରେ ସୀମା ସହ ଅସୀମର ସମ୍ପର୍କର ଉପଲବ୍ଧି ସୂତ୍ରରେ ଏହାର ଭିତ୍ତି-ପ୍ରତିଷ୍ଠା । ଶାସ୍ତ୍ର ଯାହାକୁ ସଗୁଣ ବ୍ରହ୍ମ ବୋଲି କହନ୍ତି, ସେ 'ସର୍ବେଂଦ୍ରିୟଗୁଣାଭାସମ୍ ।" ବ୍ରହ୍ମ ନିର୍ଗୁଣ ବୋଧାତୀତ ହୋଇପାରନ୍ତି; କିନ୍ତୁ ସେ ବ୍ରହ୍ମ ବ୍ୟକ୍ତି ସହ ପ୍ରତ୍ୟକ୍ଷ ଯୋଗରେ ଯୁକ୍ତ ନୁହନ୍ତି । ମାନବୀୟ ବୋଧ ସହ ଯୋଗବିରହିତ ତାଂକର ଅସ୍ତିତ୍ୱ ବା ଅନସ୍ତିତ୍ୱର ମୂଲ୍ୟ ବ୍ୟକ୍ତି ନିକଟରେ ସମାର୍ଥକ । ମାନବୀୟ ସତ୍ତା ସହ ସମ୍ପୂର୍ଣ ନିଃସଂପୃକ୍ତ ନୈର୍ବ୍ୟକ୍ତିକତାକୁ ପ୍ରିୟାପ୍ରିୟ କହିବାର କିଛି ଅର୍ଥ ନାହିଁ । ଯେ ଭଲମଂଦ ସୁଂଦର-ଅସୁଂଦର ଭେଦବର୍ଜିତ, ତାଂକ ସହ ପାପପୁଣ୍ୟ, ସୁଖ-ଦୁଃଖ ନେଇ କୌଣସି ବିଚାର ଉଠିପାରେନା; ମାତ୍ର ବ୍ୟକ୍ତି-ଅଭିଲଷିତ ଜୀବନଦେବତା ଏସବୁର ଅତୀତ ହୋଇ ମଧ୍ୟ ଏସବୁର ସମ୍ପର୍କ ସୂତ୍ର ଭିତରେ ହିଁ ଅନ୍ୱେଷିତ ହୋଇଥାନ୍ତି । ଏ ସମ୍ପର୍କରେ ରବୀଂଦ୍ରନାଥ ଆଲୋଚନାକରି କୁହନ୍ତି, "ପରମପୁରୁଷ ଆଛେନ୍, ଏଇ ସମସ୍ତକେ ଅଧିକାର କରେ ଏବଂ ଅତିକ୍ରମ କରେ । ସତ୍ତାର ଏଇ ଦୁଇ ଦିକ୍‌କେ ସବ୍ ସମୟେ ମିଲିୟେ ଅନୁଭବ କରତେ ପାରନେ । ଏକଲା ଆପନାକେ ବିରାଟ ଥେକେ ବିଚ୍ଛିନ୍ନ କରେ ସୁଖେ ଦୁଃଖେ ଆନ୍ଦୋଳିତ ହଇ କୋନ ଏକ ସମୟେ ସହସା ଦୃଷ୍ଟି ଫେରେ ତାର ଦିକେ··· । ମୁକ୍ତିର ସ୍ୱାଦ ପାଇ ତଖନ···ଆମାର ଏଇ ଅନୁଭୂତି କବିତାତେ ପ୍ରକାଶ ପେୟେଛେ ଜୀବନଦେବତା ଶ୍ରେଣୀର କାବ୍ୟେ ।"

ରବୀଂଦ୍ରଚେତନାର ଏ ଜୀବନଦେବତାବାଦ ବୈଷ୍ଣବ ପ୍ରେମତତ୍ତ୍ୱ ଓ ବାଉଲ ଅରୂପତତ୍ତ୍ୱଦ୍ୱାରା ବହୁଭାବେ ପ୍ରଭାବିତ । ବ୍ୟକ୍ତିର ଅଂତଃଗହ୍ୱରରେ ଗୁହାସ୍ଥିତ ମନର ମଣିଷଟି ପାଇଁ ସତ୍ତାର ଶାଶ୍ୱତ ଅଭିଳାଷ ଯେଉଁ ଭାବମସୃଣ ଦରଦୀ ସ୍ୱରରେ ପ୍ରକାଶିତ, ତାହାହିଁ ବାଉଲର ପ୍ରାଣସଂଗୀତ । (୧୧) ପାର୍ଥିବ ଜୀବନ ଭିତରେ ପରଷ୍ପରକୁ ନିତ୍ୟ ଅନ୍ୱେଷଣ ଓ ପରଷ୍ପର ସହ ନିତ୍ୟଲୀଳାରତ ଏହି ଦିବ୍ୟସତ୍ତା ଏବଂ ବ୍ୟକ୍ତିସତ୍ତା ହିଁ ବାଉଲ କବିର 'ତୁମେ ଓ ମୁଁ' । ରବୀଂଦ୍ରନାଥ ଏହାର ପ୍ରତିଧ୍ୱନି କରିଛଂତି : "ତୁମି ନବ ନବ ରୂପେ ଏସୋ ପ୍ରାନେ ।" ଲକ୍ଷ୍ମୀକାଂତଂକର ପ୍ରାଣସମ୍ଭାଷଣର ଏଇ 'ତୁମେ' ତାଂକ ଜଗତ୍ ଓ ଜୀବନକୁ ପୂର୍ଣ ଆବୋରି ରହିଛଂତି । କେବଳ ପରମପୁରୁଷ ରୂପରେ ତାଂକ

---

(୧୦) "ଏଇ (ଜୀବନ) ଧାରାକେ ନିୟଂତ୍ରିତ କରିୟା ନିତ୍ୟ ଆତ୍ମବିକାଶେର ପଥେ ଆଗାଇୟା ଲଇୟା ଯାଇତେଛେ ଏକ ଜୀବନଦେବତା ଜୀବନେ ଜୀବନେ ବିଚିତ୍ର ପରିବେଶେର ଭିତର ଦିୟା ଘୁରିୟା ଫିରିୟା ସେଇ ଏକଇ ଜୀବନଦେବତାର ସହିତ ପରିଚୟ;··· ଇନି ହଇଲେନ ବିଶ୍ୱଦେବତାର ବ୍ୟକ୍ତିଜୀବନ କେଂଦ୍ର ପ୍ରତିଫଳିତ ଏକ ବିଶେଷ ରୂପ, ବିଶେଷ ଜୀବନଧାରାର ସଂଗେ (ଅବଚ୍ଛିନ୍ନ) ଯୁକ୍ତ ବିଶେଷ ଦେବତା ।"

ଶଶିଭୂଷଣ ଦାସଗୁପ୍ତ—'ଉପନିଷଦେର ପଟଭୂମିକାୟ ରବୀଂଦ୍ରମାନସ'-ପୃ. ୧୧୯

(୧୧) "The mystic attitude of the Bauls is expressed in the wonder how that infinite has objectified itself in the finite, how through the whole being of the finite that infinite is expressing itself in infinite ways and thereby realizing inself, in infinite varieties,"

S. B. Dasgupta—'Obscure Religions Cults—p.181

Digitized by PPRACHIN, SOA

ସୁଖଦୁଃଖର ନିୟନ୍ତା ହୋଇ ନୁହ, ପରମ ବାନ୍ଧବଭାବରେ ତାଂକ ହସକାନ୍ଦର ଅନୁଭବରେ ଅଂଶୀଦାର ହୋଇ ମଧ୍ୟ ବର୍ଣ୍ଣିତ ।

ରହସ୍ୟବାଦୀ ମନସ୍ତତ୍ତ୍ୱରେ ଏକ ବିଶ୍ୱାସର ଅଭିମାନ ରହିଛି ଯେ, ପରମ ମଧ୍ୟ ଜୀବକୁ କାମନା କରନ୍ତି । ବିରାଟ ଓ କ୍ଷୁଦ୍ର, ଅସୀମ ଓ ସୀମା, ଭୂମା ଓ ଅଣୁର ଯାବତୀୟ ଭେଦ ତତ୍ତ୍ୱତଃ ପ୍ରତିଷ୍ଠିତ ରହିଥିଲେ ବି ମିଷ୍ଟିକ୍‌ର ଭାବସାଧନା ପଥରେ ସେଗୁଡ଼ିକ ଅନ୍ତରାୟ ହୋଇପାରନ୍ତି ନାହିଁ । କାନ୍ତଚେତନାରେ ପ୍ରେମୋପଲବ୍ଧିର ଏ ରହସ୍ୟ ଜୀବନଦେବତା-ଭାବଚେତନାକୁ କେନ୍ଦ୍ର କରି ଉନ୍ମୋଚିତ ହୋଇଛି ।

ଜୀବନଦେବତାଙ୍କ ସହ କବି ଜୀବନର ସଂପର୍କ ଅନେକ ପ୍ରକାରର; ଯେପରି (୧) ସୃଷ୍ଟି ହେତୁକ ସଂବନ୍ଧ, (୨) ଜନ୍ମଜନ୍ମାନ୍ତର ସଂବନ୍ଧ, (୩) ହୃଦୟ ସହ ଭାବସଂବନ୍ଧ, (୪) ସତ୍ତାର ଲୌକିକ ଜୀବନଯାତ୍ରା ସହ ଅଦୃଶ୍ୟ ଯୋଗାଯୋଗର ସଂବନ୍ଧ···ଇତ୍ୟାଦି ।

ସମର୍ପଣ, ଶରଣାଗତି, ପୁଣି ଅଭିମାନ ଅଧିକାର, ଉଭୟ ସୂତ୍ରରେ କବିପ୍ରାଣରେ ଏ ସଂବନ୍ଧର ସ୍ୱୀକୃତି । ଜୀବନର ସ୍ରଷ୍ଟା ରୂପେ ସକଳ ଭଲମନ୍ଦ, ଶୁଭାଶୁଭ, ସୁଖ-ଦୁଃଖର ବିଗ୍ରହ ତାଙ୍କଠାରେ ସମର୍ପିତ । ଆଶା-ବିଶ୍ୱାସର ପରମ ନିର୍ଭରତାରେ ଜୀବନକୁ ପୂର୍ଣାଲିଂଗନର ଉନ୍ମୁଖତା, ପୁଣି ମିଳନ ବିରହ, ଆଶା ଅପେକ୍ଷା, ସନ୍ତାପ ଏବଂ ଅଭିମାନର ଭାବାକୁଳତାରେ ଏକ ଅପରର ହୃଦୟ-ଦୋସର ରୂପେ ସ୍ୱୀକୃତି କାନ୍ତକବିତାର ସ୍ୱରୂପ ବୈଶିଷ୍ଟ୍ୟ ।

କାନ୍ତଚେତନାରେ ଦୁଃଖ ଓ ମୃତ୍ୟୁ—ଲକ୍ଷ୍ମୀକାନ୍ତଙ୍କର ଜୀବନ-ଦର୍ଶନର ମୁଖ୍ୟ ସ୍ୱରଟି ଦୁଃଖବାଦରୁ ଉଚ୍ଚାରିତ । (୧) ତାଙ୍କର ଜୀବନଦେବତା ଭାବାଭିବ୍ୟକ୍ତି ମଧ୍ୟ ଦୁଃଖାନୁଭୂତି ଉତ୍ସାରିତ । କବିଙ୍କ ଜୀବନରେ ସେ ଦୁଃଖର ସ୍ୱରୂପ ବହୁବିଧ : ଶାରୀରିକ, ଜାଗତିକ ତଥା ଆଧ୍ୟାତ୍ମିକ । କବି ଜୀବନୀ ସ୍ୱୟଂ ଦୁଃଖର କଠୋରତା ଓ ଆଘାତର ଅଶ୍ରୁ ପ୍ଳାବନ । ଦୁଃଖର ଅଗ୍ନି ସାଧନା ଓ ଦୁଃଖସହନର ଶକ୍ତି ସଂବଳ ସଂଚୟରେ ପରିଶେଷରେ ଦୁଃଖାତୀତଙ୍କୁ ଲାଭ କରିବାର ତତ୍ତ୍ୱ । ଏ ଦୁଃଖର ପ୍ରାଥମିକ ପର୍ଯ୍ୟାୟର ପ୍ରତିକ୍ରିୟା ରୂପେ କାନ୍ତ ରଚନାରେ ମୃତ୍ୟୁଚେତନାମୂଳକ କବିତାର ଆବିର୍ଭାବ ।

ଲକ୍ଷ୍ମୀକାନ୍ତଙ୍କ ରଚନାରେ ମୃତ୍ୟୁ ପ୍ରତି ଏକ ଅନୁରାଗମୟ ସ୍ୱରୋଚ୍ଚାରଣ ରହିଛି । ତାଙ୍କର ମୃତ୍ୟୁଚେତନାମୂଳକ ରଚନାଗୁଡ଼ିକ ମୁଖ୍ୟତଃ ମୃତ୍ୟୁବନ୍ଦନା; ଜାଗତିକ ଯନ୍ତ୍ରଣାରୁ ନିଷ୍କୃତି ଓ ଶାନ୍ତିର ଆଳୟ ରୂପେ ତାହାର ଶୀତଳମଧୁର ରୂପକଳ୍ପନା । ରବୀନ୍ଦ୍ରିକ ମୃତ୍ୟୁବନ୍ଦନା ସହ ଏହାର ସ୍ୱରସାମ୍ୟ ପରିଲକ୍ଷିତ ହେଲେ ମଧ୍ୟ ଭାବଗତ ସାମଂଜସ୍ୟ ସ୍ୱଳ୍ପ । ରବୀନ୍ଦ୍ରନାଥଙ୍କର ମୃତ୍ୟୁସହ ପରିଚୟ ପ୍ରିୟଜନର ମୃତ୍ୟୁଜନିତ ବେଦନାରୁ । ସେଠାରେ ପ୍ରଥମ କରି ମୃତ୍ୟୁର ଏକ ଶକ୍ତିଶାଳୀ, ବିସ୍ମୟାବହ ରୂପର ଉଦ୍‌ଘାଟନ ହୋଇଛି; ଯାହା ନିକଟରେ ଜୀବନର ଶ୍ରେଷ୍ଠ ଶକ୍ତି ପ୍ରେମ ମଧ୍ୟ ପରାଜୟ ମାନିଛି । ମୃତ୍ୟୁ ମାଧ୍ୟମରେ ରବୀନ୍ଦ୍ରଚେତନାରେ ଅପାର୍ଥିବତା ପ୍ରତି କୌତୂହଳ, ବିସ୍ମୟ, ଜୀବନାତୀତ ପ୍ରତି ସଂବେଗଧର୍ମିତା ଓ ଜିଜ୍ଞାସା ଜାଗିଛି । ମୃତ୍ୟୁଚେତନାଭିତରୁ ରବୀନ୍ଦ୍ରମାନସରେ ଅତିଜାଗତିକତାର ଉଦ୍‌ବୋଧନ ଘଟିଛି ।

କାନ୍ତସାହିତ୍ୟରେ ମୃତ୍ୟୁଚେତନା ଏପରି କୌଣସି ବଳିଷ୍ଠ ବିଶ୍ୱଜାଗତିକତାର ସ୍ପନ୍ଦନରୁ ସମୁଚ୍ଚାରିତ ନୁହେଁ । ତାଙ୍କ ରଚନାରେ ମୃତ୍ୟୁ-ରୂପର ରହସ୍ୟ ବିସ୍ମୟ ଜିଜ୍ଞାସା ନାହିଁ । ମୃତ୍ୟୁ

(୧) "ଦୁଃଖ ମୋର ନିତ୍ୟ ସହଚର ।
ଅଶ୍ରୁ ମୋର ପ୍ରଣାରାମ ପୀୟୂଷଧାର ।" 'କାନ୍ତ ସାହିତ୍ୟମାଳା'—ପୃ. ୫୦୬

Digitized by PPRACHIN, SOA

ତାଂକ ପାଇଁ ଏକ ନିତାଂତ ବ୍ୟକ୍ତିଗତ ପ୍ରୟୋଜନ, ଏକ ମଧୁର ମୋହନ ଆଶ୍ୱାସନା (୧୩)—ଯାହା ପାର୍ଥିବ କ୍ଳେଶରୁ ତାଂକୁ ଚିରମୁକ୍ତି ପ୍ରଦାନ କରିପାରେ । ଏ ମୁକ୍ତିକାମନା କିଂତୁ ତାଂକର ଅଧ୍ୟାତ୍ମବେଦନାର ନୁହେ ! ତାଂକ ଆଧ୍ୟାତ୍ମ ଯଂତ୍ରଣା ମୃତ୍ୟୁବ୍ୟାକୁଳ ନୁହେଁ; ବରଂ ଜୀବନ-ପାଗଳ । ମୃତ୍ୟୁ କେବଳ କବିଚିତ୍ତର ଅପାର୍ଥିବତାକୁ ଏକ ଆମଂତ୍ରଣପତ୍ର, ଏକ ମାର୍ଗସଂକେତ ରୂପେ ଅଭିନଂଦିତ । ତେଣୁ ମୃତ୍ୟୁପ୍ରତି ତାଂକର କୌଣସି ଜୀବନାନୁଭବର ଜିଂଘାସା ନାହିଁ । ମୃତ୍ୟୁ ସୁଂଦର, ଆକର୍ଷଣୀୟ । ସେ ଏଭଳି ଏକ ପ୍ରାପ୍ତିର ପ୍ରତିଶ୍ରୁତି, ଯେଉଁ ପ୍ରାପ୍ତିକୁ ଜୀବନ ବାସ୍ତବତାର ଅଭିଘାତ ଭିତରେ ଲାଭକରିପାରିନାହିଁ । ମୃତ୍ୟୁ କବିପ୍ରାଣର ପ୍ରିୟବଂଧୁ ତୁଲ୍ୟ । (୧୪) ଏ ମୃତ୍ୟୁ-ଦର୍ଶନର 'ମୃତ୍ୟୁତତ୍ତ୍ୱ' ନୁହେ । ଏ ମୃତ୍ୟୁ ମରଣୋତ୍ତରର ଅମୃତକାମନା ସଂଜାତ ନୁହେଁ; ବରଂ ବଂଚିବାର ଉଦଗ୍ରତା ପ୍ରତିହତ ହେବାରେ ଏହାର ଅଭିଳାଷ ।

ଦୁଃଖବାଦ—ଦୁଃଖ-ଶୋକର ଯଜ୍ଞବେଦୀରେ ଲକ୍ଷ୍ମୀକାଂତଂକର ଦେବ-ଆରାଧନା । ତାଂକ ଯଜ୍ଞସଂଗୀତ ତେଣୁ ଆନଂଦର, ପ୍ରଶାଂତିର ଉଦାତ୍ତ ସାମଗାନ ହୋଇପାରିନାହିଁ । ବେଦନା ଓ ସମର୍ପଣର ଆକୁତିରେ କିଂତୁ ସେଗୁଡ଼ିକ ଅଶ୍ରୁସ୍ନିଗ୍ଧ, ଖାବଦଗ୍ଧ, ଲକ୍ଷ୍ମୀକାଂତଂକ ମୃତ୍ୟୁସଂଗୀତ ତାଂକର ଜୀବନବ୍ୟାପୀ ଦୁଃଖାନୁଭୂତିରୁ ଉଦ୍‌ଗତ । (୧୫) ତାଂକର କୋମଳ କବିପ୍ରାଣ ଜାଗତିକ ଓ ଆଧ୍ୟାତ୍ମିକ ବହୁ ସଂତାପ ଭୋଗକରିଛି । ସେହି ଯଂତ୍ରଣା ଭିତରୁ ଗଭୀର ଆକୁଳତାରେ ସେ ଜୀବନର ଅର୍ଥ ଖୋଜିଛଂତି । (୧୬) ଅଶ୍ରୁର ସମୁଦ୍ର ଭିତରେ ସେ ଜୀବନର ଅତଳତାକୁ ସଂଧାନ କରିଛଂତି । ବ୍ୟକ୍ତିଗତ ବେଦନାବୋଧ ବିପୁଳ ସଂବେଦନଶୀଳତାରେ ବିଶ୍ୱଜୀବନ ସହ ଏକାତ୍ମତା ଲାଭକରିଛି । ବିଶ୍ୱବେଦନାରୂପେ ଦୁଃଖହିଁ ତାଂକ ପ୍ରାଣରେ ମହାଜାଗତିକତାର ଉଦ୍‌ବୋଧନ (୧୭) ଜଣାଇଛି । ବ୍ୟକ୍ତିଗତ ଦୁଃଖାନୁଭୂତି ବିଶ୍ୱାନୁଭୂତିରେ ରୂପାଂତରିତ ହୋଇଛି ।

---

(୧୩) "ଆସ ପ୍ରିୟତମ ମରଣ ମୋହର × × × ଆସ ବଂଧୁ ମୋର ବ୍ୟଥିତ ପରାଣ ସକଳ ବେଦନା ଛୁଟାଇ × × ଜରଜର ମୋର କାତର ଅଂତରେ / ସୁନାକାଠି ଛୁଇଁଦେଇଯାଅ ଥରେ ।"

ଜୀବନସଂଗୀତ—ଗୀତ ନଂ ୧୮, ପୃ· ୭୬ ।

(୧୪) "ମରଣଠୁ ବଳି ବଂଧୁ କିଏ ଅଛି ?"

'ଜୀବଂତମରଣ'—କାଂତସାହିତ୍ୟମାଳା—ପୃ. ୫୦୮

(୧୫) "ଜୀବନ ଓ ମରଣର ଅସହନୀୟ ସଂଧିସ୍ଥଳରେ ରହି ମୁଁ କେବଳ ଗଣିଯାଉଛି ସେହି ଏକସୁର ଘଣ୍ଟାଧ୍ୱନି ।"

'ଜୀବଂତମରଣ' କାଂତସାହିତ୍ୟମାଳା—ପୃ. ୫୦୯

(୧୬) "ମୋତେ କିଏ ଗୋଟାଏ ଜୀବଂତ ଅଭିଶାପ ରୂପେ, ଗୋଟାଏ ପିପାସିତ ପ୍ରେତାତ୍ମା ରୂପେ, ଗୋଟାଏ ମୂର୍ତ୍ତି ଅମଂଗଳ ରୂପେ, ନରକର ବିକାର ରୂପେ ସଂସାରକୁ ଆଣିଥିଲ ?"

'ରୋଗଶଯ୍ୟା'—କାଂତସାହିତ୍ୟମାଳା—ପୃ. ୫୦୬

(୧୭) "କବି ତାର ଜୀବନର ସମସ୍ତ ବେଦନାକୁ ଆହରଣ କରି ବିଶ୍ୱବେଦନାରେ ଦେଖେ ତାର ପ୍ରତିଚ୍ଛାୟା । ପୁଣି ବିଶ୍ୱର ବେଦନାକୁ ଦେଖେ ଆପଣାର ଅଂତର ଭିତରେ ।"

'କବି ଓ କବିତ୍ୱ'—କାଂତସାହିତ୍ୟମାଳା—ପୃ. ୫୨୪

Digitized by PPRACHIN, SOA

ଦୁଃଖ ଓ ହତାଶାକୁ ସାଥୀ କରି ଜୀବନଧାରା ତ ମଣିଷ ଭେଟିଥାଏ । ଶେଷ ମୁହୂର୍ତ୍ତରେ ତାର ଶ୍ରୀପରିଣତମ ରୂପ ମୃତ୍ୟୁକୁ ଦେଖେ : ମୃତ୍ୟୁ ଯେପରି ଜୀବନର ସବୁ କିଛିକୁ ସ୍ୱୟଂ ଜୀବନକୁ ନିରର୍ଥକ, ନିଷ୍ଫଳ କରିଦେବାକୁ ଆବିର୍ଭୂତ ହୋଇଥାଏ । ଜୀବନ ମୃତ୍ୟୁକୁ ନ ଭେଟିବାଯାଏ, ମୃତ୍ୟୁ-ଯନ୍ତ୍ରଣା ପ୍ରତି ତାର ପ୍ରତିକ୍ରିୟାକୁ ଅନୁଭବ ନ କରିବାଯାଏ, ଏ ବ୍ୟର୍ଥତାର ଭୟକୁ ଜୟ କରିପାରେନାହିଁ । ମୃତ୍ୟୁକୁ ଭୟ କରି ଜୀବ ମରେ; ଅଥଚ ମୃତ୍ୟୁକୁ ନିର୍ଭୟରେ ସ୍ୱୀକାର କରିନେଲେ ଏ ଭୟକୁ, ଆତଙ୍କକୁ ଜୟ କରିଯାଏ ଓ ବଂଚିବାର ଆନନ୍ଦକୁ ଲାଭ କରେ । ସେତେବେଳେ ହିଁ ମରଣ ପ୍ରିୟତମ ହୋଇଯାଏ । ଶ୍ୟାମ ସମାନ ହୋଇଯାଏ । ଲକ୍ଷ୍ମୀକାନ୍ତଙ୍କ ଜୀବନରେ ହତାଶାର ସେ ଆହ୍ୱାନ ମରଣର ପ୍ରଲୋଭନ ହୋଇ ଦେଖାଦେଇଛି । କାନ୍ତଚେତନାରେ ତାର ଅତିକ୍ରମର ଜୟଧ୍ୱନି ମଧ୍ୟ ରହିଛି । ଦୁଃଖ ତେଣୁ କବିଚେତନାର ବିକାଶଧାରାରେ ଏକ ସଚେତନ ଭୂମିକା ଗ୍ରହଣ କରିଛି ।

ଦୁଃଖର ସ୍ୱରୂପ—କବିଜୀବନର ବିକଳାଙ୍ଗ ପାର୍ଶ୍ୱଟିର ଚିତ୍ର, ଦୁଃଖର ସ୍ୱରୂପ ଓ ଦୁଃଖାନୁଭୂତି ପ୍ରତି କାନ୍ତମାନସର ପ୍ରତିକ୍ରିୟାର ଏକ ଚମତ୍କାର ରୂପାୟନ 'ପିପାସା' (୧୮) କବିତାରେ ସୁରକ୍ଷିତ । ଜୀବନ-ଯନ୍ତ୍ରଣା ଓ ମନସ୍ତାପର ଅଗ୍ନିଦାହ ଭିତରୁ ବିଶ୍ୱାସ ଏବଂ ପ୍ରତ୍ୟୟର ଏକ ଦୃପ୍ତ ଆଶାଲୋକ ଯେପରି କବିଚିତ୍ତକୁ ଉଦ୍‌ଭାସିତ କରିରଖିଛି । ଏ କବିତାର ସ୍ୱରଟି ବଡ଼ ସଜଳ-ବିଧୁର, ଯନ୍ତ୍ରଣା-କରୁଣ, ଏକ ମଧୁର ପ୍ରାପ୍ତିର ଆଶ୍ୱାସନା-ଉଜ୍ଜ୍ୱଳ ମଧ୍ୟ । ରୋମାଣ୍ଟିକ ଦୁଃଖାସକ୍ତି ପରିବର୍ତ୍ତେ ବରଂ ବାସ୍ତବତାର ନିର୍ମମ ସ୍ୱୀକୃତି ଓ ନୂତନ ଅର୍ଥପ୍ରାପ୍ତିର ପ୍ରତ୍ୟାଶାମୁଖର । ଈଶ୍ୱରଙ୍କୁ କବିଙ୍କର ସାନୁନୟ ନିବେଦନ : "ଜୀବନରେ ଦୁଃଖ ଆସିବାର ଥାଏ ତ ଆସୁ ।" ସେ ଦୁଃଖ ଜୀବନପ୍ରିୟଙ୍କ ସହିତ ଜୀବନର ସଂଯୋଗ ସେତୁ, ତେଣୁ ବରଣୀୟ । ଐଶ୍ୱର୍ଯ୍ୟ ଓ ଆନନ୍ଦର ସ୍ରୋତରେ ଭାସି କବି ଜୀବନର ପ୍ରିୟବନ୍ଧୁ ଓ ପ୍ରଭୁଙ୍କ ପ୍ରତିକୂଳରେ ଯିବାକୁ ଚାହାଁନ୍ତି ନାହିଁ । କବିତାଟି ଭାବଗମ୍ଭୀର, ମନସ୍ତାତ୍ତ୍ୱିକ ତାତ୍ପର୍ଯ୍ୟପୂର୍ଣ୍ଣ । କବିଙ୍କର ବରଂ ଅନୁଯୋଗ, ସବୁ କିଛି ଲୋଭନୀୟ ହୋଇଉଠେ ଏବଂ କବିଙ୍କର ସତ୍ତା ସେସବୁ ପ୍ରତି ଲୋଭାସକ୍ତ ହୋଇଯାଉ । ତା'ହେଲେ ହିଁ ନ ପାଇବାର ଦୁଃଖ, ବଂଚନାର ଆଘାତକୁ ସେ ଠିକ୍ ବୁଝିପାରିବ । ଲୋଭର ସ୍ୱରୂପକୁ ଦେଖିଲେ ଶୂନ୍ୟତାର ପରିମାପ ସ୍ପଷ୍ଟ କଳିପାରିବ । ଅଭାବ-ବୋଧ ନ ଜାଗିଲେ ପୂରଣକାମନା ଆସେ ନାହିଁ । ଏକ ବିପୁଳ ବାଂଛା ଜାତ ନହେଲେ ହୃଦୟରେ ଅପ୍ରାପ୍ତିର ଆଘାତ ସହଜେ ପହଂଚେ ନାହିଁ । ହୃଦୟର ନିରୁଦ୍ଧ କବାଟକୁ ଦୁଃଖର ଅଂଗୁଳି-ସ୍ପର୍ଶରେ ଉନ୍ମୋଚିତ କରିବାକୁ ହୁଏ । ହୃଦୟର ଦ୍ୱାର ନ ଖୋଲିଲେ ତନ୍ମଧ୍ୟରେ ବିଗ୍ରହ ସ୍ଥାପନ ସଂଭବ ନୁହେ । ଦୁଃଖହିଁ ହୃଦୟକୁ ଈଶ୍ୱରଙ୍କ ପାଇଁ ଉନ୍ମୁକ୍ତ କରିଦିଏ । କବି ଜୀବନର ଚରମତମ ସଂକଟକୁ, ଅସଫଳତା ଓ ହଟହଟାକୁ କାମନା କରିଛନ୍ତି । (୧୯) ଯାହା ଫଳରେ ଏକ ନିଶ୍ଚିତ ଭରସାର ଅବଲମ୍ବନ-ସ୍ୱରୂପଙ୍କୁ କଂଠାଗତ ହୋଇ ଡାକିପାରିବେ ।

(୧୮) 'କାନ୍ତ ସାହିତ୍ୟମାଳା'—ପୃ. ୬୧୫ ।

(୧୯) "ଯେଉଁ ନାବେ ଗୋଡ଼ ଦେବି ଯାଉ ତାହା ବୁଡ଼ି / ଯେଉଁ କାମେ ହାତ ଦେବି ଯାଉ ତାହା ପୋଡ଼ି, / ସବୁ ନେଇ ଯାଅ କାଢ଼ି / ତୁଚ୍ଛା ରହିଥାଉ ପଡ଼ି / ଜଳନ୍ତା ଅନଳେ ତର ମରୁମୟ / ବ୍ୟର୍ଥ ହୃଦୟର ହତାଶ କ୍ରନ୍ଦନ / ତେବେ ଯିବା ତବ ବିକୁଳ ସ୍ପନ୍ଦନ / ସ୍ଫୁରିବ ହୃଦୟେ ହେ ବିଶ୍ୱବନ୍ଦନ !"

କାନ୍ତସାହିତ୍ୟମାଳା—ପୃ. ୬୧୬

Digitized by PPRACHIN, SOA

ପ୍ରାପ୍ତି ଏକ ସମାପ୍ତି । ନିଷ୍କାମନା ମଧ୍ୟ ଏକ ସମାପ୍ତି । କବି ମରଣର ସମାପ୍ତିକୁ, ଶୂନ୍ୟତାକୁ କାମନା କରୁଂଛନ୍ତି ନାହିଁ । (୨୦) ଜୀବନର ଗତିପଥରେ ଆଶା-ନିରାଶାର ସଂଗ୍ରାମ ଘଟାଇ ସଂଚାର ଉନ୍ମାଦନା ଖୋଜିବୁଲୁଂଛନ୍ତି । ଧନ ମାନ ଯଶ କିଛୁ ବି ପୂର୍ଣ୍ଣକରି ପାଇବାକୁ ଲୋଡ଼ୁଂନ୍ତି ନାହିଁ । ସବୁକିଛୁ ଆପାତତଃ ପ୍ରାପ୍ତିରୁ ବଂଚିତ ହୋଇ, ସକଳ ପ୍ରୀତିସଂପର୍କରୁ ପରିତ୍ୟକ୍ତ ହୋଇ ସର୍ବହରାର ଶୂନ୍ୟ ସ୍ୱରୂପକୁ ଅନୁଭବ କରିବାକୁ ଚାହାଂନ୍ତି । (୨୧) ଏକାବେଳକେ ଗୃହକୁ ମରୁଭୂମି, ଆଖିକୁ ସମୁଦ୍ର କରିଦେଉଥିବା ଶୂନ୍ୟତାର ସେହି ସର୍ବନାଶୀ ମୁହୂର୍ତ୍ତରେ ସତ୍ତାର ସୁତୀବ୍ର ମର୍ମଦାହକ ଯେଉଁ ବିକଳ ଆର୍ତ୍ତନାଦ ତୋଳି ଗଗନ-ପବନ ମୂର୍ଚ୍ଛିତ କରିଦେବ, ତାହାହିଁ ଜୀବନର ପ୍ରିୟପରମଂକର ଆସନ କଂପିତ କରିଦେବ । (୨୨) ସବୁକିଛୁର ବିସର୍ଜନ ମୁହୂର୍ତ୍ତରେ ପୂର୍ଣ୍ଣ ସ୍ୱରୂପଂକର ବିପୁଳ ଆବାହନ ଘଟିବ ।(୨୩) ତା'ପରେ ତ, "ତୁମେ ମୋର (୨୪) ସୁଖ-ଦୁଃଖ, ଶାନ୍ତି-ଅଶାନ୍ତି, ଜ୍ୱାଳା-ଯଂନ୍ତ୍ରଣା ମଧ୍ୟରେ ମୂର୍ତ୍ତ ହୋଇ ବିରାଜମାନ କରିବ ।"

ଏ କବିତାରେ କବି ଅଧ୍ୟାତ୍ମ-ଦୁଃଖ କଥା କହିନାହାଂନ୍ତି; ବସ୍ତୁ-ଜଗତର ପ୍ରାତ୍ୟହିକ ସୁଖ-ଦୁଃଖର କଥା ହିଁ କହିଛଂନ୍ତି । ମାତ୍ର ତାଂକର ହୃଦୟର ଦୃଢ଼ବିଶ୍ୱାସ ଏକ ପରମପ୍ରାପ୍ତିର ରହସ୍ୟ ସଂଦେଶକୁ ବାସ୍ତବତାର ଭିତ୍ତିଭୂମିରେ ଉପସ୍ଥାପିତ କରିପାରିଛି । (୨୫)

ଦୁଃଖ ଏକ ଭାବକଳ୍ପନା ନୁହେ । ଅନୁଭୂତିର ନିବିଡ଼ ବାସ୍ତବତା ଭିତରୁ ସେ ରୂପ ନିଏ । ରହସ୍ୟବାଦୀ କବିଙ୍କର ଜୀବନରେ ଦୁଃଖର ସ୍ଥାନ ବିଶେଷ ଗୁରୁତ୍ୱପୂର୍ଣ୍ଣ । ସତ୍ତାର କ୍ରମବିକାଶ ଓ ଶକ୍ତି-ସଚୟପଥରେ ଦୁଃଖର ପରୋକ୍ଷ ଭୂମିକାଟି ରହିଥାଏ । କାରଣ କୌଣସି ଚେତନାଗତ ଅପୂର୍ଣ୍ଣତା ହିଁ ଦୁଃଖବୋଧ ରୂପେ ଦେଖାଦେଇଥାଏ ।

ଦୁଃଖରେ ବ୍ୟକ୍ତିମାନସର ପ୍ରତିକ୍ରିୟା ବହୁବିଧ । ପ୍ରବଳତମ ଦୁଃଖରେ ମୁହ୍ୟମାନ ହୋଇ ନିର୍ବେଦତ୍ୱ ପ୍ରାପ୍ତ ହେବା ମଧ୍ୟ ଏକ ସମ୍ଭାବିତ ପରିଣତି । ଜୀବନ ପ୍ରତି ନାସ୍ତିବାଚକତା,

---

(୨୦) "କିଂତୁ ସେ ଯେ ଶ୍ମଶାନର ଶାଂତି । ମୁଁ ସେଭଳି ଶାଂତିର ପିଆସୀ ନୁହେଁ । ସେ ଶାଂତି ପାଷାଣରେ ଅଛି । ମୁଁ ଯେ ଜୀବଂତ ।"
'ନବଜାଗରଣ'—କାଂତସାହିତ୍ୟମାଳା—ପୃ. ୫୧୦

(୨୧) "ଶୁଣିଛି ମୁଁ, ତୁଂଭେ ଯାହାକୁ କୃପାକର, ପ୍ରଥମେ ତାହାର ସର୍ବନାଶ କର ।"
'ନିଭୃତ ନିଶୀଥେ'—କାଂତସାହିତ୍ୟମାଳା—ପୃ. ୫୦୪

(୨୨) "ସେ କ୍ଷଣେ ମୁଁ ଯେବେ ଅତି ଆରତରେ
କାହିଁଅଛ ବୋଲି ଡାକିବି କାତରେ × × ସେ ଆହ୍ୱାନ ଲଙ୍ଘି ନ ପାରିବ ଛଳ
ଆସନ ତୁଂଭର ନିଶ୍ଚେ ଯିବ ଟଳି ।" କାଂତ ସାହିତ୍ୟମାଳା—ପୃ. ୭୧୬

(୨୩) "ଯେଉଁଦିନ ସବୁ ସରିଯିବ, ସେଇଦିନ ଯାଇ ଜାଣିବି ତୁଂଭର କୃପା ପୂର୍ଣ୍ଣ ହେଲା ବୋଲି ।" 'ନିଭୃତ ନିଶୀଥେ'—କାଂତସାହିତ୍ୟମାଳା—ପୃ. ୫୦୪

(୨୪) "ମଂଗଳ ମନ୍ଦିରୀ"—କାଂତ ସାହିତ୍ୟମାଳା—ପୃ. ୫୦୨

(୨୫) "ତାର ମଂଗଳମୟତା ଉପରେ ମୋର ବିଶ୍ୱାସ ।"
କାଂତ ସାହିତ୍ୟମାଳା—ପୃ. ୫୦୨

Digitized by PPRACHIN, SOA

ବିଚ୍ଛିନ୍ନାତ୍ମକତାରୁ ଏହା ଉଦ୍‌ଭୂତ । ଜୀବନ ବିମୁଖତା ରୂପକ ଏହି ପରିଣାମର ମୂଳରେ ଦୁଃଖ ପ୍ରତି ଏକ ଭାବପ୍ରବଣତାପୂର୍ଣ୍ଣ ଆସକ୍ତି ବଳବତ୍ତର ରହିଥାଏ ।

ଦୁଃଖରେ ବେଳେବେଳେ ଏକପ୍ରକାର ଅଦ୍ଭୁତ ଚିତ୍ତୋନ୍ନତି ମଧ୍ୟ ଘଟେ; ବ୍ୟକ୍ତି ଦୁଃଖର ସ୍ୱରୂପ ଓ ନିଜର ସହ୍ୟସୀମାକୁ ଜାଣିପାରେ; ପୁଣି ସେ ସୀମା ଅତିକ୍ରମ କରିବାର ଶକ୍ତିକୁ ମଧ୍ୟ ସଂଧାନ କରି ଶିଖେ । ସୃଷ୍ଟିର ବିଚିତ୍ର ବିଧାନରେ ଦୁଃଖର ସଂଘାତ ଯେତେ ପ୍ରବଳ ଓ ଶକ୍ତିଶାଳୀ ହେଲେ ମଧ୍ୟ ତା'ଠାରୁ ବଳି ଅଧିକ ଶକ୍ତିସଂପନ୍ନ ଆନଂଦ ତାକୁ ପ୍ରତିହତ କରି ରହିଥାଏ । ସେହି ଆନଂଦକୁ ଲାଭକରିବା ସୃଷ୍ଟିକର୍ତ୍ତାଙ୍କର ଉଦ୍ଦେଶ୍ୟ ଏବଂ ସେଥିପାଇଁ ପ୍ରଥମେ ଦୁଃଖକୁ ଉଲ୍ଲଂଘନ କରିବାକୁ ହୁଏ । ସୀମାର ବଂଧନ ହିଁ ଦୁଃଖ ଏବଂ ଅସୀମତାପ୍ରାପ୍ତିରେ ଆନଂଦ ନିହିତ । ସୀମାବୋଧର ଦୁଃଖ ଅସୀମ ପାଇଁ ସତ୍ତ୍ୱାକୁ ଉଦବୋଧିତ କରେ । ସୀମାବଂଧନକୁ ଭାଂଗିବାର ଶ୍ରମକ୍ଳେଶ ଦୁଃଖ ରୂପେ ଉପଜାତ ହୁଏ । ଦୁଃଖ ଜୀବନର ନାନାବିଧ ଅସହାୟତା, ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଅକ୍ଷମତାକୁ ସ୍ପଷ୍ଟ କରିଦିଏ । ସତ୍ତ୍ୱା ଚେଷ୍ଟା ଏହାର ଅତୀତ ଓ ଏହାକୁ ଜୟ କରିପାରୁଥିବା ବୃହତ୍ତର ଏକ ଶକ୍ତି ପ୍ରତି ଆକର୍ଷିତ ହୁଏ । ଭାଗ୍ୟଦେବତା ବା ଜୀବନଦେବତା ନିକଟରେ କବିଂକର ଆତ୍ମସମର୍ପଣ ମୂଳରେ ଏହି ଅସହାୟତାବୋଧ ବିଦ୍ୟମାନ ।(୨୭)

ଅଥଚ ଏଇ ଅସହାୟତା ହିଁ ଏକ ବିପୁଳ ଶକ୍ତିର ଉତ୍ସ । ଦୁଃଖ ମଣିଷର ନିଃସଂଗ ନିଃସହାୟତାକୁ, ଶକ୍ତିହୀନତାକୁ ଯେତେ ପ୍ରବଳ ଭାବରେ ସାବ୍ୟସ୍ତ କରିଦିଏ, ତା ପାଇଁ ସହାୟ-ସବଳ, ଅବଲଂବନର ପ୍ରୟୋଜନଟି ସେତେ ଉଗ୍ର ହୋଇଉଠେ ଏବଂ ସେ ପ୍ରୟୋଜନର ରୂପସଂଧାନ ପାଇଁ ଜୀବନ ଅଦ୍ଭୁତ ସାହସରେ ଅନ୍ୱେଷଣ-ପଥକୁ ବାହାରିଆସେ । ଦୁଃଖ ଚେଷ୍ଟା ଜୀବନକୁ ଜୀବନ-ବାଂଧବଂକ ପଥସଂଧାନ ଦିଏ । ଜୀବନ-ଈଶ୍ୱରଂଙ୍କ ଇଚ୍ଛାକୁ ବରଣ କରିନେବାପାଇଁ ଧୈର୍ଯ୍ୟ ଶିକ୍ଷା ଦିଏ । ଦୁଃଖ ହିଁ ସମର୍ପଣ ଭାବକୁ ଦୃଢ଼ କରେ । ଦୁଃଖ ଭିତରେ ନିଜକୁ ପୂର୍ଣ୍ଣ ସମର୍ପିଦେବା ସଂଭବ ହୁଏ ।(୨୭)

ସୁଖ ସବୁବେଳେ ପ୍ରାପ୍ତିଘଟିତ । ଏ ପ୍ରାପ୍ତି ଅହଂର । ସୁଖଭୋଗରେ ଅହଂ ପରିତୃପ୍ତ ଓ ଉଲ୍ଲସିତ ହୋଇ ସତ୍ତ୍ୱାକୁ ପୂର୍ଣ୍ଣ ଆଚ୍ଛାଦନ କରିରଖେ । ସେ ଅହଂକୁ ଏଡ଼ାଇ ନିଜକୁ କେଉଁଠାରେ ସମର୍ପିଦେବା ସହଜ ହୁଏନାହିଁ; ଅଥଚ ଆନଂଦର ପ୍ରକୃତ ମୂଲ୍ୟକୁ ଦୁଃଖ ଉଦ୍‌ଘାଟନ କରିଦିଏ । ଦୁଃଖ ଦେଖାଇଦିଏ, ବିଶ୍ୱ-ସଂସାରରେ କିଛି ନିଜର ନୁହେଁ; ନିଜର ଦେହମନପ୍ରାଣ ବି ନୁହଂତି । ଇଚ୍ଛାକଲେ ସେମାନଂକୁ ନେଇ ଖୁସି ହୋଇହୁଏନା; ଅଥଚ କେଉଁ ଅଂଗ୍ୟାତ ନିର୍ଦ୍ଦେଶରେ ସେମାନେ ବି ଦୁଃଖ ଦିଅଂତି ଏବଂ ତାକୁ ଅସ୍ୱୀକାର କରିବାର ଉପାୟ ନାହିଁ । ମାତ୍ର ସେ ଦୁଃଖକୁ ଆପଣାର କରିହୁଏ । ତାର ସାଧନ-କୌଶଳ କେବଳ ଜାଣିବାକୁ ହୁଏ । ଜୀବନର ଯେତେ ପ୍ରାପ୍ତି, ସବୁ ଏକ ଭିନ୍ନ ଇଚ୍ଛାର ଅନୁଗ୍ରହ । କିଂନ୍ତୁ ଦୁଃଖ-ଲବ୍‌ଧ ଅନୁଭୂତି ବ୍ୟକ୍ତିର ଏକାଂତ

(୨୭) "ନିତାଂତ ନିରୁପାୟ ପ୍ରାଣୀ ଯେପରି ସଙ୍କଟାପନ୍ନ ହୋଇ ଉଦ୍ୟତଦଣ୍ଡ ଆତତାୟୀକୁ ହିଁ ପ୍ରାଣବିକଳରେ କୁଂଢାଇଧରେ, ତୁଂଭେ ଯେତେବେଳେ ମତେ କଠୋର ଶାସନଦଂଡରେ ଦଂଡିତ କରିଛ, ମୁଁ ସେତେବେଳେ ଅନ୍ୟ ଭରସା ନପାଇ ଅସହାୟ ଅବସ୍ଥାରେ ତୁଂଭରି ଚରଣତଳେ ଲୋଟିପଡ଼ିଛି, ତୁମରି ସମୀପରେ ମୋର ସବୁ ସମର୍ପି ଦେଇଛି ।"

'ନିଭୃତ ନଶୀଥେ'—କାଂତସାହିତ୍ୟମାଳା—ପୃ. ୫୦୪

(୨୭) "ଯେତିକି ଯେତିକି ଦୁଃଖ ଦେଉଥିବ, ସେତିକି କୁଣ୍ଢାଇ ଧରିବି ହେ ।"

ଜୀବନସଂଗୀତ—ଗୀତ ନଂ ୪୭

Digitized by PPRACHIN, SOA

ଆପଣାର । ଏକମାତ୍ର ଦୁଃଖକୁ ବ୍ୟକ୍ତି 'ନିଜସ୍ୱ' ରୂପେ ସ୍ରଷ୍ଟାଂକୁ ସମର୍ପଣ କରିପାରେ । ଦୁଃଖହିଁ 'ଦୁଃଖୀଧନଂ'କୁ ସ୍ମରଣ କରାଇଦିଏ; ଯୋଗାଯୋଗ କରାଇଦିଏ । (୨୮) ଦୁଃଖ ଜୀବନକୁ ପ୍ରିୟ-ବରଣର ପୂଜାଡାଲି କରି ସଜାଇଦିଏ; ଜୀବନକୁ ପ୍ରିୟଂବରା, ପ୍ରିୟବରଣୀୟା କରି ତୋଳେ ।

ଦୁଃଖର ଭୟ ସେତେବେଳେ ଯାଏ, ଯେ ପର୍ଯ୍ୟନ୍ତ ସୁଖ ନିଜ ପାଇଁ ପ୍ରାପ୍ତିର ଲୋଭ ହୋଇ ରହିଥାଏ । ସବୁ ପୂର୍ଣ୍ଣ ରୂପେ 'ନିଜର' କରି ପାଇବାର ସ୍ପୃହା ବ୍ୟକ୍ତିକୁ କବଳିତ କରି ରଖିଥାଏ; ଅଥଚ ସବୁକୁ ସେପରି ନିଜର କରିପାରିବାର ଶକ୍ତି ତାର ନଥାଏ । ଖଂଡ କିପରି ସମଗ୍ରକୁ, କ୍ଷୁଦ୍ର କିପରି ବିରାଟକୁ, ଅପୂର୍ଣ୍ଣ କିପରି ବା ପୂର୍ଣ୍ଣକୁ ନିଜ ଭିତରେ ଧାରଣ କରିପାରିବ ? ଯେଉଁ ବ୍ୟକ୍ତି 'ଯାହା' ଚାହିଁଥାଏ, ତାହାହିଁ ଅପ୍ରାପ୍ତିର ଆଶଂକାରେ ଉଦ୍‌ବେଗ ସୃଷ୍ଟି କରେ ।

କିଂତୁ ସବୁ ଦୁଃଖକୁ ଅତିକ୍ରମ କରିଯିବାଭଳି ଶକ୍ତି ସତ୍ତ୍ୱର ରହିଛି । ଦୁଃଖ ସାମୟିକ ବିପର୍ଯ୍ୟସ୍ତ କରାଇଥାଏ; ପୂରାପୂରି ଭାଂଗିଦେଇପାରେ ନାହିଁ । ଦୁଃଖକୁ ଚିହ୍ନିବା ଭିତରେ, ତା ସହ ମୁକାବିଲା ଭିତରେ ଯେଉଁ ଆତ୍ମଶକ୍ତି ଜାଗ୍ରତ ହୁଏ, ତାହା ସ୍ପଷ୍ଟକରିଦିଏ ଯେ ଦୁଃଖ ସାମୟିକ ଓ ଅଂଶଗତ; କିଂତୁ ଜୀବନ ଚିରଂତନ ଓ ସମ୍ପୂର୍ଣ୍ଣ । ଏଇ ଉପଲବ୍ଧି ଭିତରେ ମଣିଷର ବ୍ୟକ୍ତିଗତ ଇଚ୍ଛାଟି ବଡ଼ ଚମତ୍କାର ଭାବରେ ଏକ ପୂର୍ଣ୍ଣଇଚ୍ଛା ବିଶ୍ୱ-ଇଚ୍ଛା ସହ ମିଳିତ ହୋଇଯାଏ । (୨୯) ଏକାକାର ହୋଇଯାଏ । ସୀମାର ଅପୂର୍ଣ୍ଣତାବୋଧ, ଖଂଡିତ ଚେତନା ଆଉ ବିକଳ କରେନାହିଁ । ପ୍ରକୃତରେ ଇଚ୍ଛା ମରେ ନାହିଁ; ମାତ୍ର ସେ ଆଉ ସତ୍ତ୍ୱର ସ୍ୱତଂତ୍ର ଇଚ୍ଛା ହୋଇ ରହେନାହିଁ । ସେ ଇଚ୍ଛା ଯେମିତି ଅନ୍ୟ ଏକ ବିରାଟ ଇଚ୍ଛାର ପ୍ରତିଧ୍ୱନି । ସେଠାରେ ଆଉ ସୀମା ନାହିଁ, ସଙ୍କୋଚନ ନାହିଁ, ଗ୍ଲାନି ନାହିଁ, ବିରୋଧ ବି ନାହିଁ...ତେଣୁ ଦୁଃଖ ନାହିଁ । ଏଇ ଅବସ୍ଥାରେ ଦୁଃଖର ହେତୁ ହୁଏତ ହଜିଯାଏ ନାହିଁ; ମାତ୍ର ଦୁଃଖ ନିଜେ ଆନଂଦରେ ରୂପାଂତରିତ ହୋଇଯାଏ । ରହସ୍ୟବାଦୀ ଆଲକେମୀର (Alchemy) ସାର୍ଥକତା ବୋଧହୁଏ ଏଇଠାରେ । (୩୦) କବିଂକ ଉପଲବ୍ଧିରେ,

(୨୮) "ସୁଖବେଳରେ, ସଂପଦବେଳରେ ତୁଂଭେ ଟିକିଏ ପଛଘୁଞ୍ଚାମାରି ଦୂରରୁ ଥାଇ ମୁରୁକି ହସୁଚ ? କିଂତୁ ଦୁଃଖରେ, ବିପଦରେ କେବେ ତ ତୁମ୍ଭେ ଗୁଡ଼ିଯାଇନାହଁ । ବିଷାଦର ଅଶ୍ରୁ ରୂପେ ପ୍ରାଣରେ କେତେ ସାଂତ୍ୱନା ଆଣିଦେଇଛ । ଅବସାଦରେ ଆଶାରୂପେ ହୃଦୟକୁ କେତେ ଆଶ୍ୱସ୍ତ କରୁଛ । ତୁଂଭେ ପ୍ରକୃତ ଦୀନବଂଧୁ'।"

'ନିଭୃତ ନଶୀଥେ'—କାଂତସାହିତ୍ୟମାଳା—ପୃ. ୫୦୪.

(୨୯) "ଆଜି ମୁଁ ସାରା ଜୀବନର ଦୈନ୍ୟ, ଅବସାଦ, କାତରତା...ସବୁ ଝାଡ଼ିପକାଇ, ସବୁ ଠେଲିଦେଇ, ଅନୁପ୍ରାଣିତ, ଜାଗ୍ରତ ହୋଇଉଠିଛି କି ଏକ ଅପୂର୍ବ ଆନଂଦଭରା ଉଦ୍‌ମାଦନାରେ, ସୁଖ-ଦୁଃଖ, ଆଶା-ନିରାଶା, ଜୟ-ପରାଜୟ ଭିତରେ କେଉଁ ଅଂଗ୍ୟାତଶକ୍ତି ଟାଣିନେଇ ଚାଲିଛି ମୋତେ ବିଜୟର ଅସୀମ ପଥ ଦେଇ ।"

'ନବଜାଗରଣ'—କାଂତସାହିତ୍ୟମାଳା—ପୃ. ୫୧୧

(୩୦) "ଅସରଂତି ବ୍ୟର୍ଥତା ମଧ୍ୟଦେଇ ଏ ମୋର ଜୀବନ ସାର୍ଥକ, ସଫଳ ରଂଗିନ ହୋଇଉଠିଛି ଆଜି ମୋହନ ଅନୁଭୂତିର କୁହୁକ ତୂଳିକା ପରଶରେ । ଜାଣିପାରୁଚ ଆଜି ମୁଁ, ମୋର ଜୀବନଟା ଅକାରଣ ହୋଇନାହିଁ । ଯେବେ ମୋର ଆୟୁ ଆଉ ଦିନେ ବା ଘଡ଼ିଏ ବାକି ଥାଏ, ତେବେ ତାହାର ମଧ୍ୟରେ ବାକିତକ ପୂର୍ଣ୍ଣ ହୋଇଯିବ । ଏଇ ବିଶ୍ୱାସ ଚଖାଇ ଦେଇଚ ମତେ ନବଜୀବନର ଆସ୍ୱାଦ ।"

'ନବଜାଗରଣ'—କାଂତସାହିତ୍ୟମାଳା—ପୃ. ୫୧୧

Digitized by PPRACHIN, SOA

"ମୁଁ ହୀନ ନୁହେଁ, ଦରିଦ୍ର ନୁହେଁ । ମୁଁ ଯେ ବିଶ୍ୱଭଣ୍ଡାରର ଅଧିକାରୀ । ଅପସରିଯାଇଚି ମୋର ହୃଦୟର ଦୁର୍ବଳତା···ଦରିଂତ୍ତ ପାଇଚି ଆଜି ମୋର ପରଶମଣି—ଯାହାକୁ ଆପେ ଆପେ ହଜାଇ ଧଂନ୍ଧ ହେଉଥିଲି । (୭୧)

ଏଇ ଉପଲବ୍ଧି, ଏଇ ସମର୍ପଣ ଓ ସ୍ୱୀକୃତିର ଶକ୍ତି ଦୁଃଖର ବ୍ୟକ୍ତି-ହୃଦୟକୁ ସର୍ବଶ୍ରେଷ୍ଠ ଦାନ । ଲକ୍ଷ୍ମୀକାଂତଂକ ଜୀବନ ଏହାର ସାକ୍ଷ୍ୟପ୍ରମାଣ । (୭୨) ନିରଂତର ଦୁଃଖବେଗ ଭିତରେ ମାନବ-ଚିତ୍ତରେ ନିଖିଳ ବିଶ୍ୱର ଅଂତଃସଙ୍ଗୁପ୍ତ ଆନଂଦଲୋକ ଉଦ୍‌ଭାସିତ ହୋଇଯାଏ । ବ୍ୟଥାବେଗ ଭିତରେ ଆତ୍ମୋତ୍ସର୍ଗର ମାର୍ଗ ଦେଇ ସକଳ ସଂବେଗର ପ୍ରତିଷ୍ଠା ଘଟେ । ଆଘାତ-ସଂଘାତର ଗହନ ଗିରିପଥରେ ଜୀବନ-ଗଂଗାର ଅମୃତ-ତୀର୍ଥ-ମହୋଦଧିକୁ ନିଃସରଣ ଘଟେ ।

କାଂତସଂଗୀତରେ ରହସ୍ୟାତ୍ମକ **ଉଦ୍‌**ବୋଧନ—ଲକ୍ଷ୍ମୀକାଂତଂକର ସଂଗୀତ-ପ୍ରୀତି ବା ସଂଗୀତଜ୍ଞ ହେବା ସହ ତାଂକର ରହସ୍ୟବାଦୀ ଚେତନାର ସଂପର୍କକୁ ହୁଏତ ଯୁକ୍ତିସମ୍ମତଭାବେ ବ୍ୟାଖ୍ୟା କରାଯାଇନପାରେ; କିଂତୁ ତଥାପି ମନେହୁଏ, କାଂତକବିଂକ ଜୀବନର ଅପାର୍ଥିବ ଓ 'ଅନିର୍ବଚନୀୟ' ସହ ସ୍ପଷ୍ଟ ସାକ୍ଷାତ୍କାର ସଂଗୀତମାଧ୍ୟମରେ ଘଟିଛି । ତାଂକର ସମଗ୍ର ଜୀବନ ଯେପରି ଏକ ସାଧନା ଓ ସଂଗୀତ ତାହାର ସିଦ୍ଧିରୂପ । ସଂଗୀତ ଯେପରି କବିଂକୁ ବ୍ୟକ୍ତିଚେତନାର ସୀମାବଂଧନ ଭିତରୁ ବିଶ୍ୱପ୍ରାଣତାର ଅସୀମ ଉନ୍‌ମୁକ୍ତିକୁ ନେଇଯାଏ । ସ୍ୱୟଂ ଶାଶ୍ୱତ ଯେପରି ତାର ଅନଂତ ଅଗାଧ ଓ ଅସୀମ ସ୍ୱରୂପରେ ସଂଗୀତର ମୋହିନୀ ମାଦକତା ଧରି ବୀଣାତାରରେ ଉଦ୍ଭିହୋଇଯାଏ ।

ସଂଗୀତ ସହ କାଂତମାନସର ଭାବମୟ ସଂପର୍କଟି କେବଳ ହୃଦୟର ଆବେଗମୟତା ଭିତରେ ଆବଦ୍ଧ ନୁହେଁ, ଆତ୍ମାର ନିବିଡ଼ ସଂପ୍ରୀତିରୁ ତାର ଉତ୍ସାରଣ । ଅନେକ ଭାବରେ ଓ ରୂପରେ, କବିଂକର ଅନେକ ଅଜ୍ଞାତ ଓ ସଜ୍ଞାନ ଉଚ୍ଚାରଣରେ ତାହା ଅଭିବ୍ୟକ୍ତ । ପ୍ରଥମତଃ ସକଳ ରହସ୍ୟବାଦୀ ସ୍ୱରାଳାପ ପରି କବି ନିଜ ପ୍ରିୟ ଦେବତାଂକୁ ଏକ ଅଖଂଡ ବିଶ୍ୱସଂଗୀତର ଗୀତିକାର, ସୁରକାର ଓ ବାଦକଶିଳ୍ପୀ ରୂପେ ସ୍ୱୀକୃତି ଦାଡ଼ିଛଂତି । ଦ୍ୱିତୀୟତଃ ନିଜ ଜୀବନକୁ ଏକ ବାଦ୍ୟଯଂତ୍ର ତଥା ସ୍ରଷ୍ଟାର ସ୍ୱରଗ୍ରନ୍ଥୀ ସଂଗୀତ ରୂପେ ଅନୁଭବ କରିଛଂତି, ଯାହା ସାହାଯ୍ୟରେ ସ୍ୱୟଂ ରସମୟ ଶିଳ୍ପୀ ସ୍ରଷ୍ଟା ଅନଂତ ସଂଗୀତର ସ୍ୱରକୁ ଏକକ ରାଗିଣୀରେ ସଜାଇ ଅପୂର୍ବ ସ୍ୱର ସୌଂଦର୍ଯ୍ୟର ସାଧନା କରିଛଂତି । ତୃତୀୟତଃ ସଂଗୀତ କବିଂକର ଜୀବନଦେବତାଂକୁ ଆରାଧନାର ମଂତ୍ର, ଅନୁରାଗ ନିବେଦନର ରାଗିଣୀ, ଯାହା ସ୍ୱୟଂ ଦେବତାଂକର କବିଂକୁ ଏକ ସଶ୍ରଦ୍ଧ ଉପହାର, ପୁଣି ପୂଜାସାମଗ୍ରୀ ରୂପେ ଲବ୍‌ଧ । ସଂଗୀତର ସ୍ୱରରେ ହିଁ କବିଂକର ହୃଦୟଦେବତାଂକ ସହ ଭାବବିନିମୟ, ସର୍ବଶେଷରେ କାଂତଚେତନାରେ ସଂଗୀତର ଯେଉଁ ବିସ୍ମୟକର ରୂପାନୁଭୂତିର ସଂବାଦ ମିଳେ, ତାହା କେବଳ ଜଣେ ମିଷ୍ଟିକ୍‌ର ହିଁ ବିଶେଷ ଉପଲବ୍‌ଧି । ସଂଗୀତ-ନିବିଷ୍ଟ ଧ୍ୟାନମଗ୍ନତା ଭିତରୁ କବିଚିତ୍ତ ସମୟ-ବିଶେଷରେ ଯେଉଁ ଅନିର୍ବଚନୀୟତାକୁ ନିସ୍ତାରିଂତି ଲଭିଥାଏ, ତାହା ଏକ ଅତିଜାଗତିକ (cosmic) ରାଜ୍ୟ; ସ୍ୱୟଂ ସଂଗୀତର ତାହା ମହାସାଗରୀୟ ବିସ୍ତାର ।

(୭୧) ନବଜାଗରଣ—କାଂତସାହିତ୍ୟମାଳା—ପୃ. ୫୧୧

(୭୨) "ଦେଖ, ମୁଁ ମୋର ପ୍ରାଣର ସମସ୍ତ କକ୍ଷକପାଟ ଉଦ୍‌ଘାଟିତ କରିଦେଲି । ଆସ ଏବେ ଦୁଃଖ ରୂପେ, ବିଷାଦ ରୂପେ, ନିରାଶା ରୂପେ, ବିଫଳତା ରୂପେ, ଯାହା ଇଚ୍ଛା ତାହା ରୂପେ, ରାଶି ରାଶି ସମୁଦ୍ର ତରଂଗ ହୋଇ ବହିଆସ । ସେହି ମୋର ଶାନ୍ତି ।"

'ନିଭୃତ ନିଶୀଥେ'—କାଂତସାହିତ୍ୟମାଳା—ପୃ. ୫୦୪

Digitized by PPRACHIN, SOA

ଅନୁଭୂତିର ଏ ଉତ୍ସାରଣ, ଉତ୍କ୍ଷେପଣରେ (transportati on) ମିଷ୍ଟିକ୍ କିଛି ଅସଙ୍ଗତ ଦେଖେନାହିଁ । ସାଧାରଣତଃ ସଙ୍ଗୀତ ସହ ଅଙ୍ଗାଙ୍ଗି ଯୁକ୍ତାର ଏକ ଅନୁଭବାତ୍ମକ ସମ୍ପର୍କ ରହିଛି । ସଙ୍ଗୀତ ହୃଦୟକୁ ମୁଗ୍ଧ କରେ, ଚିତ୍ତକୁ ଅନ୍ୟତ୍ର ନେଇଯାଏ; ଅର୍ଥାତ୍ ଚେତନାକୁ ତାତ୍‌କାଳିକତାରୁ ବିଚ୍ୟୁତ କରେ, ମୁହୂର୍ତ୍ତ-ଚ୍ୟୁତ କରେ । ସଙ୍ଗୀତର ଏହି ନିଃସାରଣ ଶକ୍ତି ହିଁ ତାହାକୁ ଅନ୍ୟାନ୍ୟ କଳାସୃଷ୍ଟି ଠାରୁ ଅଧିକ ଶକ୍ତିଶାଳୀ, ପୁଣି ମାର୍ମିକ ତଥା ସମ୍ବେଦନଶୀଳ କରିରଖିଛି ।

ରହସ୍ୟାତ୍ମକ ଅଭିବ୍ୟକ୍ତିରେ ବିଶ୍ୱର ସକଳ ସ୍ପନ୍ଦିତ ଚେତନା ପରି ସଂଗୀତ ମଧ୍ୟ ଏକ ସ୍ପନ୍ଦନମୟତା । ସୁଦୂରତମ ଶାଶ୍ୱତଲୋକରୁ ପଦତଳର ଭୂଣଶିଖା ପର୍ଯ୍ୟନ୍ତ ପ୍ରସାରିତ ଯେଉଁ ମହାପ୍ରାଣମୟ ସ୍ପନ୍ଦନ, ସଂଗୀତ ତାକୁ ହିଁ ଧାରଣ କରିଥାଏ । ସଂଗୀତର ସୁର-ସୃଷ୍ଟିର ଆବେଦ୍ୟାତୀତ ବାଣୀକୁ ଅନ୍ତରରେ ସଂଗ୍ରହିତ କରିଦିଏ । ରୂପମୟ ସୃଷ୍ଟି ପ୍ରାଣରେ ଅରୂପ ପାଇଁ ଯେଉଁ ଚିରନ୍ତନ ବ୍ୟାକୁଳତା, ସଂଗୀତ ସେହି ରୁଦ୍ଧ ବ୍ୟାକୁଳତାକୁ ପ୍ରକାଶ କରିଦିଏ । ବିଶ୍ୱଛନ୍ଦର ମହାରାଗିଣୀକୁ ଉଚ୍ଚକିତ କରିଦିଏ ବୋଲି ସଂଗୀତ ଭିତରେ ଚିତ୍ତଭୂମିରେ ସୁଦୂରର ବ୍ୟାକୁଳତା ଜାଗିଉଠେ । ଏହି ବ୍ୟାକୁଳତା ବ୍ୟକ୍ତିଚେତନାକୁ ବିଶ୍ୱଜୀବନ ସହ ସଂଯୁକ୍ତ କରିଦିଏ । ମଣିଷର ହସକାନ୍ଦ, ସୁଖଦୁଃଖକୁ ସଂଗୀତ ବ୍ୟକ୍ତ କରିବାକୁ ଯାଏନା, ଗାନ ମଣିଷର ସୁଖଦୁଃଖର ଅବବୋଧକୁ ଅତିକ୍ରମ କରି ଚେତନାକୁ ଏକ ଊର୍ଦ୍ଧ୍ୱ ଲୋକକୁ ଉତ୍ତୀର୍ଣ୍ଣ କରିଦିଏ, ପୁଣି ଗଭୀର ନିମଗ୍ନତାକୁ ଅପସାରିତ କରିନିଏ । (୩୩) ସେଇ ଉପଲବ୍‌ଧିର ସମୁଦ୍ରରେ ବିଶ୍ୱର ସକଳ ବୋଧଧାରା ସମ୍ମିଳିତ । ବ୍ୟକ୍ତି ହୃଦୟର ସ୍ପନ୍ଦନ ବିଶ୍ୱମୟ ମହାଜାଗ୍ରତ ଏକ ପ୍ରାଣସ୍ପନ୍ଦନ ସହ ମିଳିତ ହୋଇ ସବୁ କିଛି ସହ ଏକାତ୍ମତା ଲାଭକରେ । ସଂଗୀତ ବ୍ୟକ୍ତି ହୃଦୟର ସୁଖଦୁଃଖର ଭାଷା ନୁହେଁ; ନିଖିଳ ବିଶ୍ୱବେଦନାର ପୁଳକିତ ଅଭିବ୍ୟକ୍ତି । ସଂଗୀତ ବ୍ୟକ୍ତିର ବିଶେଷ ଭାବନାକୁ ବିଶ୍ୱର ନିର୍ବିଶେଷ ଆନନ୍ଦ ସହ ଯୁକ୍ତ କରିଦିଏ । ଅନ୍ତଃ ଓ ବହିଃ ଦୁଇଟି ତାନ ଚିତ୍ତଲୋକରେ ଏକତ୍ର ମିଳିତ ହୋଇ ଏକ ମହାନ୍ ରାଗିଣୀର ମଧୁର ଆଳାପରେ ନିମଗ୍ନ ରହନ୍ତି । (୩୪)

କାନ୍ତ-ସଙ୍ଗୀତରେ ସଂଗୀତର ଦୁଇଟି ସ୍ୱରୂପ ବିକଶିତ । ପ୍ରଥମଟି ନିରୋଳା ସଂଗୀତ, କବି ଲଳିତ ସଂଗୀତ ରଚନା କରିଛନ୍ତି; ମର୍ମଗତ ଭାବକୁ ଚିତ୍ତସମ୍ମୋହୀ ଭାଷା ଓ ଦରଦୀ ସୁରରେ ପ୍ରକାଶ କରିଛନ୍ତି ।

---

୩୩ ) "ବାକ୍ୟ ଯେଖାନେ ଶେଷ ହଇୟାଛେ, ସେଇ ଖାନେଇ ଗାନେର ପ୍ରଭାବ । ବାକ୍ୟ ଯାହା ବଲିତେ ପାରେନା, ଗାନ ତାହାଇ ବଲେ ।"

'ଜୀବନସ୍ମୃତି'—ରବୀନ୍ଦ୍ରନାଥ

(୩୪) "The real content of music is not drawn from the ordinary human emotions at all and that it is in no way merely asecond language alongside the usual one, by which these emotions find expression. Musical feeling is rather something 'wholly other.' It is of course from those places where the correspondence holds that the spell of a composed song arises by blending of the verbal and musical expression. But the very fact we attribute it to a spell, an enchanment, points in itself to that woof in the fabric of music of which we spoke, the 'woof' of the unconceived and non-rational."

Rudolf Otto—'The Idea of Holy'. P. 49

Digitized by PPRACHIN, SOA

ସେ ସଂଗୀତ ରସ-ପରିବେଷଣର, ଆସ୍ୱାଦନର । ପୁଣି କବି ସଂଗୀତ ସହ ନିଜ ଆତ୍ମାର ସଂପର୍କକୁ ମଧ୍ୟ ଅନୁଧ୍ୟାନ କରିବାକୁ ଚେଷ୍ଟା କରିଛଂନ୍ତି । (୩୫) ସଂଗୀତ କବିଂକର ଜୀବନ-ସାଥୀ । ବହୁଭାବେ ତା ସହ ପରିଚୟ । ବିବିଧ ସୁରଝଂକାର, ବିଚିତ୍ର ରାଗରାଗିଣୀ ତୋଳି ସେ କବି-ଅଂତରକୁ ଛୁଏଁ; ତାର ବ୍ୟଥା-ବେଦନାକୁ ଆପଣାର କରେ । ଦରଦୀ ବଂଧୁପରି, ସ୍ନେହୀଜନ ପରି କବିଙ୍କ କ୍ଷତବିକ୍ଷତ ପ୍ରାଣରେ ତାର ପ୍ରୀତିସ୍ନିଗ୍ଧ ସ୍ନେହସ୍ପର୍ଶ ଦିଏ । ସଂଗୀତ ତାର ସ୍ୱପ୍ନମୟ ବକ୍ଷରେ କବିଚିତ୍ତକୁ ସମ୍ମୋହିତ କରିରଖେ, ତାର ଭାବମୟ ରାଜ୍ୟରେ ମୁଗ୍ଧ କରିରଖେ, ତାର ଆଲୋକମୟ ରାଜ୍ୟରେ ପ୍ରାପ୍ତ କରି ତୋଳେ । (୩୬)

କାଂତ-ମାନସରେ ସଂଗୀତର ଆଉ ଏକ ଚମତ୍କାରୀ ଉଦ୍‌ଭାସନ ଝଂକୃତ, ଯାହାକୁ ସଂଗୀତର ଦିବ୍ୟରୂପ ବା Vision ବୋଲି କୁହାଯାଇପାରେ । (୩୭) ଗୀତର ତନ୍ମୟତାରେ ସଂଗୀତ ଆଉ କ୍ଷୁଦ୍ର ଏକ ଖଣ୍ଡିତ ମୁହୂର୍ତ୍ତର ଭାବ ଉଚ୍ଛ୍ୱାସ ନୁହେ । ଅବାରିତ ସ୍ୱରାଳାପ ଭିତରେ ଆତ୍ମଲୀନ ଯେଉଁ ଭାବମଗ୍ନ ଅନୁଭୂତି ସଂଜାତ, ସେଠାରେ ଆଉ ସଂଗୀତ ବିଳାସ ନାହିଁ । ଲୟ୍‌-ନିବିଡ଼ତା ଭିତରୁ କବିସତ୍ତାର ଏକ ଅପାର୍ଥିବ ଇଂଦ୍ରିୟୋତ୍ତରତାକୁ ନିଷ୍କ୍ରମଣ ଘଟିଛି—ଯେଉଁଠାରେ ସଂଗୀତ ନିଜେ ବିଶ୍ୱଜାଗତିକ, ଆକାଶପରି ଅନଂତ, ସାଗର ପରି ଅଗାଧ ।

ସମୁଦ୍ରର ତୀରଦେଶରେ ଟିକିଟିକି ଲହରୀର ଆର୍ଦ୍ରସ୍ପର୍ଶ ମିଳେ । ମାତ୍ର ତାର ଅତଳ ଗହନରେ ଏକ ପରିବ୍ୟାପ୍ତ ପ୍ରଶାଂତିର ନିଃସୀମତା ବିଦ୍ୟମାନ । ସଂଗୀତ ତାର ମହାଭାବମୟ ସ୍ୱରୂପରେ ଆଉ କେବଳ ସ୍ୱର ନୁହେଁ, ଗାନ ନୁହେଁ; ସ୍ରଷ୍ଟାର ମୋହନବଂଶୀ ବା ବ୍ୟକ୍ତ-କଣ୍ଠ ବେଦଧ୍ୱନି ନୁହେଁ । ସଂଗୀତ ସେଠି ସ୍ୱୟଂ ଓଁକାର । ଯେପରିକି ମହାଚିନ୍ମୟୀ ରୂପପରିଗ୍ରହ କରି ମହାଭାବମୟୀ ସଂଗୀତ-ଦେବୀଂକର ଏ ବିଶ୍ୱେଶ୍ୱରୀ ଆବିର୍ଭାବ ! ଲକ୍ଷ୍ମୀକାଂତଂକ କାବ୍ୟ ଉପଲବ୍‌ଧିରେ ଏ ଚିନ୍ମୟ ରୂପର ସୂକ୍ଷ୍ମ

---

(୩୫) "ସଂଗୀତ ମୋ ଜୀବନସାଥୀ
ମୋ ଅଂଧ ନୟନ ଆଗେ,
ନାନା ଛଂଦେ, ନାନା ରାଗେ
ତାହାର ମୂରତି ଜାଗେ ଦିବସରାତି ।
× × ସେହି ବଂଧୁ ସେହି ମୋ ସଖା
ମୋହର ତାପିତ ପ୍ରାଣେ
ଶାଂତିର ଅମୃତ ଆଣେ ।"
—ସଂଗୀତ

(୩୬) "ସଂସାରର ଆବିଳତା
କ୍ଷୁଦ୍ରତାର ପାରେ,
ଦୂରେ, ଦୂରେ, ଦୂରେ, ତୋଳିନିଏ ସ୍ୱର୍ଗଦ୍ୱାରେ ।"
—ସଂଗୀତ

(୩୭) "ମହାଭାବେ ମଜାଇ ଅଂତରେ
କରେ ଚିତ୍ତ ତନ୍ମୟ ବିଭୋର,
ଭୁଲିଏ ଘଡ଼ିକେ ମାୟା ମରଜଗତର ।
ବୁଡ଼ିଯାଏ ସତ୍ତା ଆତ୍ମାରାମେ
ଚଳିସେ ମୁକ୍ତିର ସ୍ରୋତେ ଚିଦାନନ୍ଦଧାମେ ।"
ସଂଗୀତ—କାଂତସାହିତ୍ୟମାଳା—ପୃ. ୬୧୨

Digitized by PPRACHIN, SOA

ସାକ୍ଷାତ୍କାରଟି ସଂଗୀତ ସଂପର୍କରେ ତାଂକର ସବୁଠାରୁ ମହତ୍ତ୍ୱପୂର୍ଣ ଅଭିବ୍ୟକ୍ତି । କବିପ୍ରାଣର ଆନଂଦ-ମୁଗ୍ଧ ପ୍ରାଣବଂଦନା ଭିତରୁ ସଂଗୀତର ଏଇ ଯେଉଁ ମହାନ୍ ପରିଚୟ ମିଳେ, ତାହା ପ୍ଲେଟୋ ବ୍ୟଂଜିତ ପରମସଦ୍‌ବସ୍ତୁ ବା ରସୋ ବୈ ସଃ ଶାଶ୍ୱତ କୋଠୀଭୁକ୍ତ ବୋଲି ବିବେଚନା କରାଯାଇପାରେ । ତାତ୍ତ୍ୱିକତାବର୍ଜିତ ଏଇ ନିବିଡ଼ ଉପଲବ୍‌ଧିଟି ଯେପରି ସାଗରୀୟ ମହିମାରେ କବିଚେତନାର ଦିଗ୍‌ବିଦିଗ ଆବୋରିଯାଇଛି ଏବଂ ତାଂକ ବାକ୍‌ଧାରାରେ ଉଚ୍ଛଳ ଉଚ୍ଛଳତା ହୋଇ ପ୍ରସରି ଆସିଛି । ରହସ୍ୟବାଦୀ ଉପଲବ୍‌ଧିର ପ୍ରକାଶ-ରୂପ କାବ୍ୟକତାର ଅପେକ୍ଷା ରଖେନାହିଁ; କଳ୍ପନାର ଅନୁସରଣ କରେନାହିଁ—ଚେତନାର ଲୋକାଂତର ଯାହା ଯେ ଅଭୂତ ଅତର୍କିତତା ଭିତରେ ସାମାନ୍ୟ ଆଧାରକୁ ଆଶ୍ରୟ କରି ସଂଘଟିତ ହୋଇଥାଏ, କେବଳ ସେଥିକି ସଂବାଦ ସୂଚନା ଦେଇଥାଏ ।

କବିଂକର ସଂଗୀତ ସଂପର୍କିତ କେତୋଟି ଗାନ ଏବଂ ଉଭୟ ଗଦ୍ୟ-ପଦ୍ୟ ରଚନା 'ନିସ୍ତବ୍ଧ ନିଶୀଥେ (୩୮)ରେ ଏହାର ସ୍ୱରୂପ ପ୍ରକଟିତ । କବିତାଟିର ଭାବବସ୍ତୁ ସମନାମ ଗଦ୍ୟରଚନାର ପ୍ରତିଧ୍ୱନି ମନେହୁଏ । ଏ ରଚନାଗୁଡ଼ିକର ଉପସ୍ଥାପନା ଭଂଗୀ ଓ ଭାବବିସ୍ତାରରେ ମଧ୍ୟ ସାଦୃଶ୍ୟ ରହିଛି । ଗଭୀର ରାତ୍ରି, ସୁପ୍ତା ଧରଣୀ ଓ ପ୍ରଗାଢ଼ ନୀରବତା । ତା ଭିତରେ ଅଖଂଡ ଏକ ସଂଗୀତ-ମୂର୍ଚ୍ଛନା । ସେ ମୂର୍ଚ୍ଛନା ସହ କବିହୃଦୟର ଏକ ଛଂଦମୟ ଏକତ୍ୱ ସ୍ଥାପନ ଏବଂ ବିଶ୍ୱମୟ ସେହି ସଂଗୀତବିସ୍ତାରର ସଂଦର୍ଶନ ।

'ନିସ୍ତବ୍ଧ ନିଶୀଥେ' ଗଦ୍ୟରଚନାରେ କବିଂକର ବର୍ଣନା : "ଜଗତଯାକ ସମସ୍ତେ ସୁଷୁପ୍ତ···କାହାର ଚେତନା ନାହିଁ···ଦିଗ୍‌ମଂଡଳ ଶବ୍ଦଶୂନ୍ୟ, ପୃଥିବୀ ଧୀର, ସ୍ଥିର, ସ୍ତବ୍‌ଧ, ବିଶ୍ୱଜଗତ ପ୍ରଶାଂତ··· ସେହି ନିବିଡ଼ ନିସ୍ତବ୍‌ଧତା ମଧ୍ୟଦେଇ ଗୋଟିଏ ଅବିରାମ ଅସରଂତି ସଂଗୀତପ୍ରବାହ ଅନ୍ତଃସଳିଳା ଫଲ୍‌ଗୁ ପରି ତରତର ବହିଯାଉଛି । ଏହି ବିଶ୍ୱସଂଗୀତର ଅମର ନିର୍ଝର ଝରିଆସୁଛି ପ୍ରତି ଗ୍ରହ-ନକ୍ଷତ୍ରରୁ, ପ୍ରତି ତୃଣପତ୍ରରୁ । ଏହି ମହାସଂଗୀତର ନୀରବ ଝଂକାର ବାଜିଉଠୁଛି ଦିଗଂତବିସ୍ତୃତ ନଭୋ ନୀଳିମାରେ, ପବନର ପ୍ରତି ଅଳସ ହିଲ୍ଲୋଳରେ । ଚରାଚର ସ୍ଥାବର ଜଂଗମ ସମସ୍ତ ବିଶ୍ୱଜଗତ ଯେପରି ଏହି ସଂଗୀତର ମଧୁର ତାନରେ ଭରପୂର, ମୁଗ୍‌ଧ । ଦେଖିଲି, ହୃତ୍‌ପିଂଡର ପ୍ରତ୍ୟେକ ସ୍ପଂଦନ ଏଥିରେ ଯୋଗଦେଇଛି । ଧମନୀର ପ୍ରତି ଶୋଣିତ ଚଳନ ସମତାନରେ ବାଜୁଛି । ଅଂତରର ପ୍ରତି ତନ୍ତ୍ରୀ ଏହି ବିଶ୍ୱଭରା ମହାତାନରେ ଝଂକୃତ ହେଉଛି । ମୋର ସତ୍ତା ବିଲୁପ୍ତ । ମୁଁ ଏହି ମହାସଂଗୀତର ଗୋଟିଏ କ୍ଷୁଦ୍ରାଦପି କ୍ଷୁଦ୍ର ଅଂଶ ମାତ୍ର । କାହାର ସ୍ୱତଂତ୍ର ଅସ୍ତିତ୍ୱ ନାହିଁ···ସାରା ବିଶ୍ୱ କେବଳ ସଂଗୀତମୟ ।"

ଏ ବିପୁଳାନୁଭୂତିର ମୁଗ୍‌ଧ ସାଂଗୀତିକ ଉଚ୍ଛ୍ୱାସ : "ମୂରଚ୍ଛିତ ଅଂବର ବାହି, ଭାସିଆସେ କି ଗଭୀର ମୂର୍ଚ୍ଛି ସଂଗୀତ, ଘନ ନୀରବତା ଅବଗାହି ।" (୩୯) ଏହାକୁ 'ଇଭୋକେଟିଭ୍ ସଂଗ (Evocative song), ବଂଦନାଗୀତର ସମମହିମାଯୁକ୍ତ ବୋଲି ବିଚାର କରାଯାଇପାରେ । ରହସ୍ୟୋପଲବ୍‌ଧିର ଭାବବିଲକ୍ଷଣମାନ ଏଇ ନିବିଡ଼ ଅନୁଭବାତ୍ମକ ରଚନାମାନଂକରୁ ସ୍ପଷ୍ଟ ପ୍ରତ୍ୟକ୍ଷ କରିହୁଏ । ସମଗ୍ର ପରିବେଶରେ ଯେପରି ଏକ ନୀରବ ଅପେକ୍ଷା ଓ ବିପୁଳ ପ୍ରସ୍ତୁତି । ରାତ୍ରି ପ୍ରଗାଢ଼ । ଧରଣୀ ନିଦ୍ରାଗତ । ଆକାଶ ସ୍ତବ୍‌ଧ । ସର୍ବତ୍ର ଏକ ନିଶ୍ଚେତନ ଅଂଧକାର । ସେ ଅଂଧକାର କେବଳ ରାତ୍ରିକୁ, ଜଗତ୍‌କୁ

(୩୮) ଗଦ୍ୟ ପୃ. ୫୦୩, ପଦ୍ୟ ପୃ. ୬୨୭—କାଂତ-ସାହିତ୍ୟମାଳା ।

(୩୯) 'ଜୀବନସଂଗୀତ'—ଗୀତ-୨୨

Digitized by PPRACHIN, SOA

ତମସାଚ୍ଛାଦିତ କରିନାହିଁ, କବି-ଅଂତରରେ ମଧ୍ୟ ପୂରିରହିଛି । ସେ ଅଂଧାର ନିରାଶାର, ସଂଶୟର, ଦୁଃଖର । ସେ ଅଂଧାର ସର୍ବଗ୍ରାସୀ । ତା ଭିତରେ ଏକ ମହାନୀରବତାର ସଂଗ୍ରହ । ଏ ନୀରବତା କେବଳ ନାସ୍ତିବାଚକତା ବା ଅସ୍ୱବୋଧ ନୁହେଁ । ଏ ନୀରବତା ଅସ୍ମିତାତ୍ମକ । ତାକୁ ଯେପରି ପ୍ରତ୍ୟକ୍ଷ କରିହେବ, ସ୍ପର୍ଶ କରିହେବ, ଅନୁଭବ କରିହେବ । ରୂପଧରି, କାଯ୍ୟାବିସ୍ତାରି ସେ ଯେପରି ପ୍ରଲଂବିତ । ସେ ନୀରବତା ଭିତରେ କବିଚେତନା ମଧ୍ୟ ସକଳ କ୍ରିୟା-ସ୍ପଂଦନହୀନ ନିଶ୍ଚଳତାକୁ ଲାଭକରିଛି । ଏହି ନୀରବତାର ଗଭୀର ସମୁଦ୍ରରୁ ସଂଗୀତ-ସୁଧାର ଆବିର୍ଭାବ । ଏ ମହାମୌନତା ଭିତରେ ଅସୀମର ଉଦ୍‌ବୋଧନ ଯେପରି ହଠାତ୍ ସର୍ବତ୍ର ମୂର୍ଚ୍ଛିତ ହୋଇପଡ଼େ । ମିଷ୍ଟିକ ଉପଲବ୍‌ଧିରେ ଏ ନୀରବତା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ସତ୍ତାର ସାମଗ୍ରିକତାରୁ ସକଳ ଉଦ୍‌ବେଗ-ଚାଂଚଲ୍ୟ, ଭାବବିକ୍ଷୋଭ ସ୍ଥିର ରହିଗଲେ ଯେଉଁ ଶୂନ୍ୟମୟ ନୀରବତା ଅତଳତଳ ଘେରିଯାଏ, ତା'ରି ଭିତରୁ ସତ୍ୟସ୍ୱରୂପଂକର ଆବାହନ ଘଟେ । ସେ ନୀରବତାକୁ ଭଂଗ କରିବାର ଶବ୍ଦଟି ଯେତେ କ୍ଷୀଣ ହେଲେ ବି ସର୍ବତ୍ର ନିନାଦିତ, ପ୍ରତିଧ୍ୱନିତ ହୋଇଯାଏ । ବାହାରର ଶବ୍ଦ ଭିତରକୁ; ସ୍ପର୍ଶକରେ । ଭିତରର ଶବ୍ଦ ବାହାରେ ଅନୁରଣିତ ହୋଇଉଠେ । ନୀରବତା ଭିତରେ ବିଶ୍ୱଜଗତ୍ ଓ ବ୍ୟକ୍ତିଜୀବନ ଏକଲୀନ ଥିଲା ପରି, ଶବ୍ଦମୟତାରେ ମଧ୍ୟ ସେମାନେ ପରସ୍ପରର ଅଂଶୀହୋଇ ହୋଇଯାଆନ୍ତି ।

'ନୀରବତା ଭିତରୁ ଧ୍ୱନିମୟ ସଂଗୀତର ଉତ୍‌ଥାନ'—କବିଂକର ଏ ବର୍ଣ୍ଣନା ଗଭୀର ଭାବବ୍ୟଂଜକ । ପୃଥିବୀର ଶବ୍ଦମୟ କୋଳାହଳ ଭିତରେ ଯାହା ଅଶ୍ରୁତ ରହିଯାଏ, ତାହା ଏକ ନିଖିଳବ୍ୟାପ୍ତ ଧ୍ୱନିସ୍ପଂଦନ; ଅଥଚ ଜାଗତିକ ସବୁ ଧ୍ୱନିର ସମାପ୍ତି ପରେ ବି ଏହା ଜାଗ୍ରତ । ନୀରବତାର କେଂଦ୍ରରେ ମଧ୍ୟ ଏହା ସ୍ପଂଦିତ । ଏହି ଧ୍ୱନିରୁ ନିଖିଳ ପ୍ରାଣସ୍ପଂଦନ ସଂଜାତ । ସମଗ୍ର ସତ୍ତାକୁ ନୀରବ, ଏକାଗ୍ର ଓ ଅନ୍ତର୍ଗତ କରି ବିଶ୍ୱବ୍ୟାପ୍ତ ନୀରବତା ଭିତରେ ନିମଜ୍ଜିତ ରହିପାରିଲେ ସେହି ଅଂତର୍ଭେଦୀ ଧ୍ୱନିର ଛଂଦକଂପନ ଧରାପଡ଼େ । ଅମୂର୍ତ୍ତ ସଂଗୀତ ଗୂଢ଼ ଚେତନାରେ ରୂପମୟ ହୋଇ-ଉଠେ । ତାପରେ 'ନିଖିଳ ବିଶ୍ୱ ନଂଦିତ କରି' ମଧୁର ଛଂଦ ଅବିରାମ ବାଜିଚାଲେ ।

ସର୍ବତ୍ର 'ଏକ', 'ଅଖଣ୍ଡ' ଓ 'ଅବିରାମ ସଂଗୀତପ୍ରବାହର ବର୍ଣ୍ଣନା କରି କବି ବିଶ୍ୱଚେତନା ମୂଳଭୂତ 'ନାଦ' ସ୍ପଂଦନକୁହିଁ ଇଂଗିତ କରିଛଂତି । ସେହି ନାଦ ସର୍ବତ୍ର ପ୍ରସାରିତ ଓ ଝଂକାରିତ; ଏହାର ମହାଜାଗତିକ ବ୍ୟାପ୍ତି ଭିତରେ ବିଶ୍ୱର ସବୁ ଶବ୍ଦ ପ୍ରଲୀନ । ଏ ସେହି ଅନାହତ ନାଦ; ଯାହା ସହ ବିଶ୍ୱସଂଗୀତ ସମଲୟବିଧୃତ, ପୁଣି ଯାହା ସହ ପ୍ରତିଟି ହୃଦୟ-ସ୍ପଂଦନ ସମତାନକଂପିତ । କବିଂକର ଉପଲବ୍‌ଧି ଏଠାରେ ସଂଗୀତ ଭିତରେ ବିଶ୍ୱବସ୍ତୁର ଓ ଅସ୍ତିତ୍ୱବିଲୁପ୍ତି ଉଭୟଂକୁ ନିରୀକ୍ଷଣ କରିଛି । ଏହାହିଁ ମିଷ୍ଟିକ୍‌ର ଶାଶ୍ୱତ-ଉପଲବ୍‌ଧି ।

କବିଚିତ୍ତରେ ଏ ମୁହୂର୍ତ୍ତ ଏକ ପରମଦୁର୍ଲଭ ମୁହୂର୍ତ୍ତରୂପେ ଆବିର୍ଭୂତ । ଏ ମୁହୂର୍ତ୍ତଟିକୁ ତେଣୁ ସେ ପୁଣି ଉପଲବ୍‌ଧିରୁ ହଜାଇ ବସିବାର ଆଶଂକାଗ୍ରସ୍ତ । ଏଇ ବିଶେଷ ମୁହୂର୍ତ୍ତଟିର ଅବସାନ ପରେ ସେହି ବିପୁଳ ନିମଜ୍ଜମାନତାର ଅନୁଭବ ଭିତରୁ ସତ୍ତା ପୁଣି ପ୍ରାତ୍ୟହିକତାର ତରଂଗଭଂଗ ଭିତରକୁ ଫେରିଆସି କ୍ଷୋଭାକୁଳିତ ହୋଇପଡ଼ିବ; ଅମୃତପାନର ଶୁଭଯୋଗ ପରେ ଶିରଚ୍ଛେଦନର କାଳାଂତକ ବେଳା ପୁଣି ରାହୁକୁ ଗ୍ରାସକରିବ । ଏ ମୁହୂର୍ତ୍ତ କବିସତ୍ତାର କଳ୍ପନାଲବ୍‌ଧ ହୋଇଥିଲେ ଦୁଃଖ କରିବାର କିଛି ନ ଥିଲା । କଳ୍ପନା-ରାଜ୍ୟରେ କବିର ଅବାଧ ବିଚରଣ । କଳ୍ପନା କବିର ଏକ ଅତି ବାଧ୍ୟ ଓ ନିର୍ଭରପର ମନଯାନ; ମାତ୍ର ଲକ୍ଷ୍ମୀକାଂତଂକ ଚେତନାର ଦିବ୍ୟ ଉତ୍ତରଣାତ୍ମକ ସର୍ଗୀତାନୁଭୂତି କଳ୍ପନାର ଅତୀତ ଏକ ଅମିତ ଶକ୍ତିର କ୍ରିୟା । ବ୍ୟକ୍ତିସତ୍ତାକୁ ଊର୍ଦ୍ଧ୍ୱଚେତନାର ଗଗନମଂଡଳକୁ

Digitized by PPRACHIN, SOA

ଉତ୍କ୍ଷେପିତ କରିଦେବାର ଏ ମୁହୂର୍ତ୍ତଟି ଅପ୍ରତ୍ୟାଶିତ, ଆକସ୍ମିକ ଓ ସତ୍ତ୍ୱର ଆସ୍ୱାଦିତ । କବି ମାନବାତ୍ମାର ଯେଉଁ ଦୁର୍ଲଭ ସଂପଦକୁ, ଜୀବନର ଚରମ ସାର୍ଥକତାକୁ ଗୋଟାଏ କ୍ଷଣର ନିବିଡ଼ ଉପଲବ୍ଧି ଭିତରେ ଲାଭକରିଛନ୍ତି, ତାହା ତାଂକର ସ୍ୱୋପାର୍ଜିତ ନୁହେଁ; ସଂଗୀତର ମହନୀୟ ଦାନ । ସଂଗୀତ ତାଂକପାଇଁ ସକଳ ଦେବ୍ୟତାର ଉଦ୍‌ବୋଧକ । ଇଂଦ୍ରିୟାନୁଭୂତ ମାର୍ଗରେ ଅତୀଂଦ୍ରିୟତାକୁ ଏ ନିଃସରଣ ରହସ୍ୟବାଦୀ କବିଙ୍କର ସମର୍ଥିତ । ଏଠାରେ ଜୀବନଦେବତାର ପ୍ରସଙ୍ଗ ଆସିନାହିଁ; ଧର୍ମ-ଦର୍ଶନର ତତ୍ତ୍ୱବ୍ୟାଖ୍ୟା ପ୍ରୟୋଜନ ହୋଇନାହିଁ । ଏହା ଏକ ଶୁଦ୍ଧ ମଧୁର ବିମଳ ଆଧ୍ୟାତ୍ମିକ ଅନୁଭୂତି ମାତ୍ର । ସଂଗୀତ ଯେପରି ଆନଂଦର ପରିପୂର୍ଣ୍ଣ ରାଜ୍ୟରେ ସ୍ୱୟଂ ସମ୍ରାଟ୍‌ର ମହାମହିମାରେ ବିରାଜିତ । କବି ମୁଗ୍ଧ ଚକ୍ଷୁରେ ତାଂକର ଉଦ୍‌ଭାସ-ଉଜ୍ଜ୍ୱଳ ମହାଐଶ୍ୱର୍ଯ୍ୟମୟ ବିଶ୍ୱରୂପକୁ ପ୍ରତ୍ୟକ୍ଷ କରୁଛଂତି । ଏ ସଂଗୀତ ଏଠାରେ ଯେପରି ତାଂକର ପରମ ଶାଶ୍ୱତରୂପ ପରିଗ୍ରହ କରିଛଂତି । ଏ ସେହି ଶାଶ୍ୱତ-ତତ୍ତ୍ୱ, ଯେଉଁ ଯୋଗବିଂଦୁରେ ସକଳ 'ସତ୍' (Absolute) ପାରିଭାଷିକ ଇଂଗିତମୟ ହୋଇଉଠଂତି ।

## 'ଜୀବନସଂଗୀତ'—ଅବବସ୍ତୁ :

'ଜୀବନ-ସଂଗୀତ' ବ୍ୟକ୍ତି-ଆତ୍ମାର ଦେବ୍ୟସତ୍ତ୍ୱା ସହ ସଂବଂଧର ସଂଗୀତ । ଏ ସଂବଂଧର ସ୍ୱରୂପ ସ୍ଥୂଳତଃ ଦୁଇପ୍ରକାର : (୧) ଜୀବନର ଅଦୃଶ୍ୟନିୟଂତାଂକ ସହ ଚଳମାନ ଜୀବନର ଓତପ୍ରୋତ ସଂପୃକ୍ତି; (୨) ଅପାର୍ଥିବ ସତ୍ତ୍ୱା ସହ ଏକ ପ୍ରୀତି-ଅନୁରାଗମୟ ସଂପର୍କ । ପ୍ରଥମଟି ମୁଖ୍ୟତଃ ମେଟାଫିଜିକାଲ, 'ସୃଷ୍ଟି ଓ ସ୍ରଷ୍ଟା' ତତ୍ତ୍ୱମୂଳକ । ରହସ୍ୟବାଦୀ ଅଭିବ୍ୟକ୍ତିରେ ଭାଗ୍ୟଦେବତା ଓ ଅଂତର୍ଯାମୀସ୍ୱରୂପ ଏକ ହୋଇ ବ୍ୟକ୍ତି-ଜୀବନର ପ୍ରତିଟି ଜନ୍ମ, ପ୍ରତ୍ୟେକଟି ମୁହୂର୍ତ୍ତ, ଘଟଣାପ୍ରବାହ ଏବଂ ଭାବ ଅନୁଭବ ସହ ଜଡ଼ିତ ରହିଥାଂତି । (୪୦) ଜୀବ-ପରମର ଅଚ୍ଛେଦ୍ୟ ସଂପର୍କ ଉପରେ ପ୍ରତିଷ୍ଠିତ ଏ ସଂଗୀତଗୁଡ଼ିକ ମୁଖ୍ୟତଃ ଆଧ୍ୟାତ୍ମିକ । କବିଂକର ସୁଖଦୁଃଖର ଅନୁଭବ, ଜୀବନଜିଜ୍ଞାସା, ଭକ୍ତି-ଆକୁଳତା ଓ ଆତ୍ମାର ଶରଣାଗତି ଏଥିରେ କାବ୍ୟାୟିତ । ଦ୍ୱିତୀୟ ପ୍ରକାର ସଂଗୀତ ପ୍ରଣୟାତ୍ମକ । ପ୍ରେମ-ରସାଣିତ ଏଇ ଆବେଗସ୍ନିଗ୍ଧ ଉଚ୍ଛ୍ୱାସଗୁଡ଼ିକ ପ୍ରୀତିଚେତନାର ବହୁ କ୍ଷୁଦ୍ର ଭାବ-ରୂପରେ ବଳିତ : ଅଭିସାର, ପ୍ରତୀକ୍ଷା, ହତାଶା ଓ ଅଭିମାନ । ଭାବୋନ୍ମାଦ ଓ ମିଳନାନଂଦ ପ୍ରଭୃତି ବିଚିତ୍ର ରାଗରାଗିଣୀରେ ଏଗୁଡ଼ିକ ବିମୂର୍ଚ୍ଛିତ ।

'ଜୀବନସଂଗୀତ'ର ଆଉ କେତୋଟି ରଚନା କବିଂକର ସଂଗୀତ ସହ ବ୍ୟକ୍ତିଗତ ସଂପର୍କର କଥା କୁହେ । କବି ସଂଗୀତକୁ ଜୀବନଦେବତାଂକର ପୂଜାମଂତ୍ର ରୂପେ ଉଚ୍ଚାରଣ କରିଛଂତି । (୪୧) ସଂଗୀତ କବିଂକୁ ଜୀବନର ଦୁଃଖ-ଯଂତ୍ରଣାରୁ ସାମୟିକ ନିଷ୍କୃତି ଦେବାପାଇଁ ଅଭିପ୍ରେତ ନୁହେଁ । ସଂଗୀତ ତାଂକ ସତ୍ତ୍ୱାର ଏକ ଅଂଶ ରୂପେ, ନୈବେଦ୍ୟ ରୂପେ, ଦେବାର୍ପିତ ହେବାର ସୌଭାଗ୍ୟ

---

(୪୦) "ଆମାର ଜୀବନେର ସମସ୍ତ ସୁଖଦୁଃଖକେ, ସମସ୍ତ ଘଟଣାକେ ଐକ୍ୟଦାନ ତାତ୍ପର୍ଯ୍ୟଦାନ କରତେଛେ, ଆମାର ରୂପରୂପାଂତର-ଜନ୍ମଜନ୍ମାଂତର ଏକସୂତ୍ରେ ଗାଁଥିତେଛେ, ଯାହାର ମଧ୍ୟ ଦିୟା ବିଶ୍ୱଚରାଚରେର ମଧ୍ୟେ ଐକ୍ୟ ଅନୁଭବ କରତେଛି ।"

ରବୀଂଦ୍ରନାଥ—ଉଦ୍ଧୃତ, 'ରବିରଶ୍ମି' (ଚାରୁଚଂଦ୍ର ବଂଦୋପାଧ୍ୟାୟ)-ପୃ. ୩୫୨.

(୪୧) "ଭଗବାନଂକୁ ଧରିବା ନିମଂତେ ସଂଗୀତଠାରୁ ବଳି ସହଜ ଓ ସୁବିଧାଜନକ ଉପାୟ ଆଉ କିଛି ନାହିଁ ।" 'ସଂଗୀତ ସହଚର' (ଲକ୍ଷ୍ମୀକାଂତ ମହାପାତ୍ର) ୧ମ ଭାଗ, ମୁଖବଂଧ ।

Digitized by PPRACHIN, SOA

ଲାଭକରିଛୁ । କବି ଜୀବନକୁ ସଂଗୀତ ସହ ଏକାତ୍ମକରି ସ୍ୱୀୟ ଜୀବନଦେବତାଂକୁ ପଦାର୍ଘ୍ୟ କରିଛଂତି । (୪୨)

ଦେବତାଂକ ଆରାଧନାର ମଂତ୍ର ଏଇ ଯେ ସଂଗୀତ, ସେ ମଂତ୍ରର ଉତ୍ସ କଂଣ୍ଠ ଅନ୍ୟତ୍ର । ମଂତ୍ର ଅନ୍ୟାଦୃଷ୍ଟ, ଦିବ୍ୟାଦୃଷ୍ଟ ! ସୃଷ୍ଟି ହୃଦୟର ପ୍ରୀତି ଆକର୍ଷଣ ପାଇଁ ସ୍ୱୟଂ ସ୍ରଷ୍ଟା ଯେପରି ଏ ସମ୍ମୋହିନୀ ସଂଗୀତ ମଂତ୍ର ରଚନା କରିଛଂତି । କବି ଗାନକରିଛଂତି : "ବାଜେ ତୋ ରାଗିଣୀ ମୋ ବୀଣା ତାରେ ।" (୪୩) ଅନାଦି ବୀଣାରେ ନିତ୍ୟ ଧ୍ୱନିତ ଯେ ରାଗିଣୀ, ଜନ୍ମ ଓ ମରଣ ଭିତରେ ହସ ଓ କାଂଦର ସ୍ୱର ତୋଳି କଣ୍ଠର ଗୀତିରେ ସେଇ ହିଁ ପ୍ରକାଶିତ । ସ୍ରଷ୍ଟାର ସ୍ୱର କବିଜୀବନର ଏକକ ବୀଣାତାରରେ ବିବିଧ ଆଳାପ କରେ । ପ୍ରତ୍ୟେକଟି ଗାନ ନୂତନ ଭାବ, ନୂତନ ଆବେଗ ଓ ନୂତନ ସଂଦେଶମୁଖର । ପ୍ରତ୍ୟେକଟି ଶବ୍ଦ, ଛଂଦ, ସଂଗୀତ ସତ୍ତ୍ୱାକୁ ଅନଂତ ସହ ଜଡ଼ିତ କରିଦିଏ । ଏକ ଏକ ଦୁର୍ଲଭ ମୁହୂର୍ତ୍ତରେ ସଂଗୀତ, ଅସୀମ ଓ ଈଶ୍ୱର ଏକ ହୋଇଯାଂତି । (୪୪) ଅଂତର୍ଗତ ନୀରବତା ପୁଣି ବିଶ୍ୱମୟ ଉଚ୍ଛ୍ୱାସର ଅନଂତ ତରଂଗକୁ ଏକାକାର କରି ଏ ମହାସଂଗୀତର ପ୍ରସାରଣ ଏବଂ ଅଶ୍ରୁତମ ସ୍ପଂଦନରେ ତାର ଶିହରଣ ।

କବିଂକର ସରଳ ନିଷ୍କପଟ ସ୍ୱୀକାରୋକ୍ତି : "ମତେ ଗୀତ ଗାଇ ଆସେନାହିଁ ।" (୪୫) ଏହା ଠିକ୍ ବୈଷ୍ଣବସୁଲଭ ନିରୀହ ଦୈନ୍ୟପ୍ରକାଶ ନୁହେ । ଦିବ୍ୟ ସଂଗୀତର ଅପାର୍ଥିବ ବିମୋହନତାକୁ ଯେ ଅଂତରରେ ଶୁଣିଛି, ତା'ପାଇଁ ସବୁ ପାର୍ଥିବ ସ୍ୱରାଳାପ ତୁଚ୍ଛ । ଭିନ୍ନ ଗୀତ, ଭିନ୍ନ ରାଗ, ଭିନ୍ନ ଛଂଦ— କଂଣ୍ଠ କେଉଁଟା ବି ଠିକ୍ ତା'ର ପରି ନୁହେ; କେବଳ ମନଭୁଲାଣିଆ ଏ ଗାନ—ଅଥଚ ସେତିକ ମାତ୍ର କ୍ଷୁଦ୍ର ସତ୍ତ୍ୱାର ସମ୍ବଳ । ତାର ଶକ୍ତିର କରାମତି ସେଇପର୍ଯ୍ୟଂତ । ଏଇ କ୍ଷୁଦ୍ର ସଂଗୀତଟିକୁ ଆଶ୍ରୟ କରି ସେ ବିରାଟକୁ ସ୍ମରଣ କରିବ । ଅସୀମର ନିଜ ସଂଗୀତଟି କଂଣ୍ଠ କବି ଅଂତରର ଗୋପନ ପ୍ରଦେଶରେ ଲୁକ୍କାୟିତ । ଅସ୍ତିତ୍ୱର ଅଣୁ-ପରମାଣୁରେ ଶାଶ୍ୱତର ଯେଉଁ ମହାରାଗିଣୀ ନିତ୍ୟ ଝଂକାରିତ, ସୀମାର କଣ୍ଠରେ ତାକୁ ଧରିହୁଏନାହିଁ ସିନା, ହୃଦୟ କଂଣ୍ଠ ତାକୁ ଭୁଲିପାରେ ନାହିଁ । ବକ୍ଷର ସ୍ପଂଦନ ଭିତରେ ତାକୁ ରୂପମୟ କରି ଦେଖିବାକୁ ଅହରହ ସାଧନା କରିଚାଲିଥାଏ । ବ୍ୟକ୍ତିଜୀବନ ଏକ ବେସୁରା ଆଳାପ । ମୂଳ ଲୟଟିକୁ ଧରି ନପାରିବା ହେତୁ ଜନ୍ମ-ଜନ୍ମର ଏ ସୁରସାଧନା । ଥରେ କେବେ ସ୍ୱର ମିଳିଗଲେ, ରାଗସଂଗମ ହୋଇଗଲେ, ତେଣିକି ଆଉ ସ୍ୱରସଜ୍ଜାର ଆୟୋଜନ ନାହିଁ; କେବଳ ଏକ ଅଖଂଡ ବାଜଣା, ଅନାହତ ନିନାଦ । କେଉଁ ଯୁଗାଂତର ତଳୁ ସେ ସ୍ୱରସହ କବିଂକର ଯେପରି ସଂପର୍କ ରହିଛି । ଜନ୍ମାଂତରର ଅନେକ ଦୂରତ୍ୱ, ଅନେକ ନିଶ୍ଚେତନାର ବିସ୍ମୃତି ଭିତରେ ବି ହୃଦୟ ଏକଦା ଆପଣାର ଅତିପ୍ରିୟ ସେ କଣ୍ଠକୁ କେବେ ବି ପୂରା ଭୁଲିଯାଇନପାରେ । ନୀରବତାର ଗର୍ଭରେ ଗୁହାୟିତ ସେ ରବ ଶ୍ରବଣରେ ବିଗତ ସ୍ମୃତିର ସ୍ପର୍ଶ କବିଂକ ମର୍ମମୂଳେ ବାଜିଛି । ସେ ସ୍ୱରରେ ଆତ୍ମୀୟତାର ଛୁଆଁ ଲାଗିଛି । ଚେତନାରେ ସେହି ଏକ ଡାକ ଏକ ନୂତନ ଶିହରଣ,

---

(୪୨) "ତେବେ ହେ ସୂତ୍ରଧର ! ତୁମ୍ଭେ ଯେଉଁ ଛଂଦରେ ନଚାଉଛ, ମୁଁ ସେହି ଛଂଦରେ ନାଚିବି, ତୁମ୍ଭେ ଯେଉଁ ଲୟରେ ଝଂକାରିବ, ମୁଁ ସେଇ ସ୍ୱରରେ ଗାଇବି ।"
'ରୋଗଶଯ୍ୟା'—କାଂତ-ସାହିତ୍ୟମାଳା—ପୃ. ୫୦.

(୪୩) ଜୀବନସଂଗୀତ—ଗୀତ-୨—ପୃ. ୫

(୪୪) "ସଂଗୀତମୟ ତୁମେ, ସଂଗୀତମୟ ହେ !" ଜୀବନସଂଗୀତ, ଗୀତ-୬୭—ପୃ. ୧୪୪

(୪୫) ଜୀବନସଂଗୀତ-ଗୀତ-୭୦—ପୃ. ୧୪୭

Digitized by PPRACHIN, SOA

ଭାବାଂତର ସୃଷ୍ଟି କରୁଛି । ଭିନ୍ନ, ମର୍ତ୍ତ୍ୟ ଜୀବନରେ ଅନାସ୍ୱାଦିତ ଏକ ମଧୁ-ସଂପର୍କ ପ୍ରତିଷ୍ଠା ପାଇଁ ଆକର୍ଷଣ କରୁଛି : "ଉତଳା ପବନ ହେଉଛି ଅଥୟ ଘର କରିବାକୁ ତା ଘରେ ।"(୪୬)

'ଘରକରିବା' କବିଚେତନାରେ ରହସ୍ୟବାଦୀ ବ୍ୟଂଜନାନିଗୂଢ଼ତାକୁ ଲାଭକରିଛି । ଏହା ଲୌକିକ ଜୀବନରେ ଅନୂଢ଼ା କନ୍ୟାର ବିବାହୋତ୍ତର ନୂତନ ଦାଂପତ୍ୟସଂପର୍କ ଓ ବଧୂର ନୂତନ ସଂସାର-ଯାତ୍ରାର ସଂବାଦ । କବି ହୃଦୟରୂପକ କୁମାରୀକନ୍ୟାକୁ ହୃଦୟବଂଧୁଂକ ପ୍ରୀତିନିବଂଧିତ ବଧୂରୂପେ ଦେଖିବାକୁ ଆଗ୍ରହୀ । କବି 'ଘରକରିବା' ଅର୍ଥରେ ଆତ୍ମା-ପରମାତ୍ମାର ରହସ୍ୟବାଦୀ ପ୍ରୀତିସଂପର୍କକୁ ଉଦ୍ଦେଶ୍ୟ କରିଛଂତି; ଦାଂପତ୍ୟକୁ ତତ୍ତ୍ୱତଃ ସ୍ୱୀକାର କରିଛଂତି ।

ସେ ଦେବତା ଦୂରରୁ ଥାଇ କେବଳ ଡାକନାହାଂତି; ରୁଦ୍ଧ କବାଟରେ ହାତ ମାରି ଅପେକ୍ଷା କରିଛଂତି ମଧ୍ୟ । ଦେଖା-ଅଦେଖାର ଲୁଚକାଳି ଖେଳ ଭିତରେ କବି ତାଂକ ଆକର୍ଷଣକୁ ଅନୁଭବ କରିଛଂତି । ସେ ଅଦେଖା ନୁହଂତି; ମାତ୍ର ପୂର୍ଣ ଦୃଷ୍ଟିରେଖାର ସ୍ପଷ୍ଟ ସୀମା ଭିତରକୁ ବି ଆସିନାହାନ୍ତି । କବିଂକୁ ଉଚାଟ କରିବାକୁ ସେ ଯେପରି ଦ୍ୱାରଦେଶରେ ଉପଗତ; ପୁଣି ମୁହୂର୍ତ୍ତକେ ଗ୍ଭଇଟି ପରି ଅଂତର୍ହିତ । (୪୭)

ଜୀବନଦେବତାଂକର ଏଇ ଆଗମନ ଅଂତର୍ଧାନ ରହସ୍ୟବାଦୀ ଅନୁଭୂତି ସମର୍ଥିତ । କ୍ଷଣିକ ବିଦ୍ୟୁଲ୍ଲେଖା ପରି ଚେତନାରେ ଦିବ୍ୟରୂପର ଚକିତ ଉଦ୍‌ଭାସନ ଘଟେ । ମନେହୁଏ ଏଇ ମୁହୂର୍ତ୍ତ, ଏଇ ଆସିବା, ଏଇ ଅନୁଭବଟାହିଁ ଏକାଂତ ବାସ୍ତବ ସତ୍ୟ; ମାତ୍ର ପ୍ରାତ୍ୟହିକତାଲିପ୍ତ ସତ୍ତା ଏ ଅଂତର୍ମଗ୍ନତା ଭିତରେ ବେଶି ସମୟ ରହିପାରେନାହିଁ ।

ତଥାପି ଚେତନାରୁ ସେ ମୁହୂର୍ତ୍ତର ପ୍ରଭାବ, ସେ ଅନୁଭୂତିର ପୁଲକ ଉଲ୍ଲାସ ପୂର୍ଣ ହଜିଯାଏ ନାହିଁ । ଏକ ମୁଗ୍‌ଧ ହୃଦୟର ଅନୁରାଗଗୀତି ଯେପରି ବାଣୀ ହଜାଇ ସ୍ୱରଗୁଂଜନ ଭିତରେ ନିଜକୁ ଆବିଷ୍ଟ କରିରଖେ । ପାଇବା ନପାଇବାର ବହୁ ବିଚିତ୍ର ଅନୁଭୂତି ଏକସଙ୍ଗରେ ଝଂକାରିଉଠେ । ହୃଦୟର ସେଇ ଅନବଚ୍ଛିନ୍ନ ସ୍ୱରଝଂକାର ଭିତରେ ବହିଃଚେତନା ଭ୍ରମିଯାଏ । ଏଇ ମଧୁରାନୁଭବକୁ କବି ରୂପ ଦେଇଛଂତି : "ପଡ଼ୁ ତ ନାହିଁ ଜଣା, ପୁଲକ କି ବେଦନା ବଢ଼ିଇ ଚାଲେ ଚାଲେ ।"(୪୮) ପୁଲକର ଭାବଟି ପ୍ରୀତିମୟ ଏକ ଆଶ୍ୱାସନାରୁ—ଆତ୍ମୀୟତାର ଦାବିରେ—କେହି ଅଂତରଂଗ ଅଛି, ଆସିଛି, ଲୋଡ଼ୁଛି ଓ ଅପେକ୍ଷା କରିଛି । ସୀମା ଅସୀମର ଅନ୍ୱେଷିତ ହୋଇଛି । ଏ ଗୌରବ ଉଲ୍ଲାସ, ଉତ୍‌ଫୁଲ୍ଲତା ଅହଂବିସ୍ତାର ନୁହେଁ; ବରଂ ସୀମାଠାରେ ଅସୀମାନ୍ୱିତ ହେବାର ଉଦ୍‌ବୋଧନା, ପ୍ରେରଣା ଭରିଦିଏ । କବି ପୁଣି ବେଦନାର କଥା ବି କହିଛଂତି । ସେ ବେଦନାଟା ଅପ୍ରାପ୍ତିର, ଅପରିଚୟର, ସୀମାଦୈନ୍ୟର ମଧ୍ୟ । ସତ୍ତା ବିରାଟର ଏଭଳି କାମ୍ୟ, ଅନ୍ୱେଷିତ ହୋଇ ମଧ୍ୟ ନିଜକୁ ସମର୍ପି ପାରିନାହିଁ, କବାଟ ଖୋଲିପାରିନାହିଁ, ସ୍ୱାଗତ କରିପାରିନାହିଁ; ଅଥଚ ସେ ପୁଣି କେବେ ଯେ ଆଉଥରେ ଆସିବ, ତାର ପ୍ରତିଶ୍ରୁତିଟି ମଧ୍ୟ ଆଦାୟ ହୋଇପାରିନାହିଁ । ସେ ସଂଭାବନାର ଆଶ୍ୱାସନାଟିକିକ ପର୍ଯ୍ୟଂତ କାନରେ ବାଜିନାହିଁ ।

---

(୪୬) 'ଜୀବନସଂଗୀତ'—ଗୀତ-୨

(୪୭) "ଅଧ ଅନ୍ଧାରିଆ ସପନ ଗ୍ଭଇରେ ଛବିଟି ତାହାର ଭାସେ ଗୋ ।"

'ଜୀବନସଙ୍ଗୀତ'—ଗୀତ-୭୧

(୪୮) ଜୀବନସଂଗୀତ—ଗୀତ-୫

Digitized by PPRACHIN, SOA

କଏ, କାହିଁକି ଆସିଥିଲା, କାହିଁକି ଡାକଗଲା, କବି ଜାଣିଂଥି ନାହିଁ—କେତେଦୂରରୁ ଆସି ସିଏ ନିଦ ଭଂଗାଇଯାଏ; କବାଟ ଖୋଲିବାଯାଏ ତାର ତର ସହେନା ଯେପରି । ତା' ହେଲେ ସେ ଆସିଥିଲା ବା' କାହିଁକି ? କବିଂକର ଅଭିମାନ ଜାଗ୍ରତ ।

'ଦୁଆରେ ମୋହର ହାତ ମାରିଗଲା କେ' (୪୯) ସଂଗୀତଟି ଗୂଢ଼ାର୍ଥକ । ପୂର୍ଣ ପରିଚୟ ନଥିବାଟାକୁ କବି ସ୍ୱୀକାର କରିନେଇଛଂଥି ଗୋଟିଏ ପଦରେ : 'ସେ ହୋଇଥାଂଉ··· ।' (୫୦) ଗୋଟାଏ ଜନ୍ମର ଅସଂଖ୍ୟ ଦାବି ଭିତରେ ସତ୍ତା ବହୁଜନ୍ମଭଳର ପରିଚୟ ସ୍ମୃତିକୁ ହଜାଇବସିଥାଏ; ତେଣୁ ସହଜରେ ଚହ୍ନିପାରେନା । ଦେବତା ମଧ୍ୟ ବିସ୍ମୃତି-ବିମୂଢ଼ ଏହି ଅପ୍ରସ୍ତୁତ ଚେତନାକୁ ବଧ୍ୟ-କରିଣର ସଂମାନ ଦିଅଂଥି ନାହିଁ । ଆତ୍ମା-ବଧୂ ଆତ୍ମସମର୍ପଣପାଇଁ ପୂର୍ଣ ପ୍ରସ୍ତୁତ ହୋଇ ତାଂକ ସମୀପରେ ସ୍ୱୟଂ ଉପଗତ ନ ହେବା ପର୍ଯ୍ୟଂତ ତାକୁ ସେ ଗ୍ରହଣ କରଂଥି ନାହିଁ; ମାତ୍ର ତାର ଜାଗୃତି ପାଇଁ, ପ୍ରସ୍ତୁତି ପାଇଁ ତାଂକ ଚେଷ୍ଟାର ଅଂତ ନାହିଁ ।

ହୃଦୟ-ଦ୍ୱାରରେ ସେ ଦେବତାଂଙ୍କ ଡାକ ସତ୍ତାର ବିସ୍ମୃତି-ନିଦ ଭଂଗାଇଦଏ, ଚେତନାକୁ ବାହ୍ୟ ସ୍ଥିତିରୁ ଅଂତଃସାରିତ କରିଦଏ; ମାତ୍ର ପ୍ରବଳଭାବେ ବହିରାସକ୍ତ ଚିତ୍ତର ସେ ଅଂତଯରଣ ଏତେ କ୍ଷିପ୍ର ହୋଇପାରେନାହିଁ । କବି ଗୃହାଂଥି, ସେ ସ୍ୱର ତାଂକୁ ଉନ୍ମାଦ କରି 'ଘରଛଡ଼ା' କରିଦେଉ । ଏ ଘର କବିଚେତନାରେ ମର୍ତ୍ତ୍ୟାସକ୍ତିର ପ୍ରତୀକ, ସତ୍ତାର ନାମରୂପ ପରିଚୟ ସୀମିତ ଅହଂଚେତନା, ଜନ୍ମାବଧି ଯାହା ସହ ସଂଶ୍ରବ ଓ ଏକାତ୍ମତା ସୂତ୍ରରେ ଅଚ୍ଛିନ୍ନର ଅଭିନ୍ନତାବୋଧ ଆସିଯାଇଛି । ସେହି ବଂଧନର ରୁଦ୍ଧଦ୍ୱାର ଖୋଲି ଉନ୍ମୁକ୍ତ ଆକାଶ ଓ ବିସ୍ତୃତ ଧରଣୀର ଅନିର୍ଦ୍ଦିଷ୍ଟତା ଭିତରକୁ ବାହାରି ନ ଆସିଲେ ଆତ୍ମାର ଅସୀମ-ଅନ୍ୱେଷା ବାଟ ଖୋଜି ପାଇବନାହିଁ ।

ତାର ଆସିବାଟା, ଡାକିବାଟା ହୁଏତ ମୁହୂର୍ତ୍ତର; କିଂତୁ ସେହି ଗୋଟାଏ କ୍ଷଣ ଲଗ୍ନରେ ଅସୀମର ବାର୍ତ୍ତା ପ୍ରସରିଯାଏ । ବ୍ୟକ୍ତିର ପ୍ରାଣପୁରରେ ଅନାହୂତ ଯେଉଁ ଜାଗ୍ରତବେଳା ଉପସ୍ଥିତ ହୁଏ, ଯେଉଁ ରୁଦ୍ଧଦ୍ୱାରର ଉନ୍ମୋଚନ-ଉତ୍ସବ ସଂଘଟିତ ହୁଏ, ତାକୁ ଚିରଂତନ କରି ରଖି ନ ପାରିଲା ପର୍ଯ୍ୟଂତ ତାର ନିଷ୍କୃତି ନାହିଁ ।

ଜନ୍ମଜନ୍ମାଂତ ଯାହା ପାଇଁ ଆତ୍ମାର ଏ ନୀରବ ଯାତ୍ରା, ତା ସହ ସାକ୍ଷାତ୍କାର ନ ହେବା ପର୍ଯ୍ୟଂତ ସେ ଜନ୍ମସକଳ ତୁଚ୍ଛ ଓ ଅସାର୍ଥକ ।

ସେ ବେଳ-ଅବେଳ ମାନେ ନାହିଁ; ମାତ୍ର ତା ପାଇଁ ବେଳ ବାଛି ହେବନାହିଁ । ତାର ଆସିବାଟାର ମୁହୂର୍ତ୍ତଟାଇ ତାର ପୂର୍ବନିର୍ଦ୍ଦିଷ୍ଟ ସମୟ । ସତ୍ତାର ପ୍ରସ୍ତୁତି-ପର୍ବ ସମାପ୍ତ ହେଲେ ସେ ଆସିପାରେ; ମାତ୍ର ସେ ପ୍ରସ୍ତୁତିର ସମାପନ କେବେ ବ୍ୟକ୍ତି ନିଜେ ଜାଣେନାହିଁ । ଦେବତା ଅଂତରଂଗ; ମାତ୍ର ଆତ୍ମୀୟତାର ଦାବିରେ ତାକୁ ଅଟକାଇ ହୁଏ ନାହିଁ । ସେହିପରି ସେ ଆସିବାର ମୁହୂର୍ତ୍ତରେ ମଧ୍ୟ କେହି ତାର ପଥରୋଧ କରିପାରିବନାହିଁ । ବିଜୟୀ ବୀର ପରି ପଦର୍ପରେ ଆସି ସେ ନିଜର ରାଜସିଂହାସନ ବାଛିନେବ, ପୁଣି ଘରର ନିଜ ଲୋକପରି ଅକୁଣ୍ଠରେ ଅଂତଃପୁର ମଂଡନ କରିବ । (୫୧)

ବିପର୍ଯ୍ୟସ୍ତ ଜୀବନଯାତ୍ରା, କବିଂକର ରୋଗଜୀର୍ଣ ଶରୀର, ଜଗତର ଯଂତ୍ରଣା ଓ ଜୀବନର ଯାତନା-ତାପିତ ଭଗ୍ନ ମାନସିକତା କେବଳ ସେହି ପରିପୂର୍ଣ ଆଶ୍ୱାସନାର ସଂବଳରେ ବଂଚିରହିଛି । ସେ

(୪୯) / (୫୦) 'ଜୀବନ ସଂଗୀତ'—ଗୀତ-୬

(୫୧) "ବେଳ ହେଲେ ମୁଁ ଯେ ପୂରେଇ ପଶିବି ବଳେ ବଳେ ତୋହଠାଇଁ ଗୋ ।"

ଜୀବନସଂଗୀତ—ଗୀତ-୮

Digitized by PPRACHIN, SOA

ଆସିଗଲେ ସକଳ ଦୈନ୍ୟ ଅପସରିଯିବ । ସ୍ୱୟଂ ସ୍ୱନେଂଦ୍ରଂକ ଆବିର୍ଭାବରେ କବିଂକର ହୃଦୟସ୍ଥ ସ୍ୱର୍ଣ୍ଣ-ସିଂହାସନ ପାଲଟିଯିବ । ଜୀବନ ଐଶ୍ୱର୍ଯ୍ୟର ଅମରାବତୀ ପାଲଟିଯିବ । ତା'ର ଅପେକ୍ଷାରେ କବି ରାତ୍ରି ଉଜାଗର । ମାତ୍ର ମୁହୂର୍ତ୍ତକର ତଂଦ୍ରାଚ୍ଛନ୍ନତା ଭିତରେ ତାଂକର ହଠାତ୍ ଆଗମନ ଓ ପ୍ରସ୍ଥାନ । ସେ ବ୍ୟର୍ଥଲଗ୍ନର ବେଦନା କବିଂକ ନିଃଶ୍ୱାସରେ, ବାହାରର ବତାସରେ ବି । (୫୨)

ଅଥଚ ଅପେକ୍ଷାରେ ଥିଲାବେଳେ ସେ ଆସିବ ବୋଲି କିଛି କଥା ନାହିଁ । ତାର ଆସିବାର ବେଳାଟିକୁ ଜଗିରହିପାରିଥିଲେ ହିଁ ଭେଟାଭେଟି ସମ୍ଭବ । ଆତ୍ମାର ଜାଗରଣ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର । ଏ ଜାଗରଣ ସ୍ଥାୟୀ ନହେଲେ ଆଲୋକକୁ ଚିରଂତନ କରି ଲାଭ ହୁଏନାହିଁ । ନିଦ ଓ ବିସ୍ମୃତି ଚେତନାର ବାହ୍ୟ ସ୍ଥିତିକୁ ବହିଃସରଣର ରୂପଚିତ୍ର, ଅଂଧାର ଓ ଆଚ୍ଛାଦନର ବ୍ୟଂଜନା । ଜୀବନ-ଦେବତା ହୃଦୟର ଗୋପନତମ ଅଭ୍ୟଂତରରେ ଯେଉଁ ନିଭୃତ ମୁହୂର୍ତ୍ତରେ କରାଘାତ କରନ୍ତି, ତାହାହିଁ ଚେତନାର ବୋଧର ବେଳା । ସେତେବେଳେ ସତ୍ତା ଜାଗ୍ରତ ନଥିଲେ, ଏକାଗ୍ର ନଥିଲେ, ତାଂକ ସହ ସାକ୍ଷାତ୍ ହୋଇପାରେନାହିଁ ।

ତଥାପି ସେ ଆସିବାର ସଂକେତ ରଖିଦେଇଯାଂତି; ବ୍ୟର୍ଥ ଲଗ୍ନର ବେଦନାକୁ କବିଂକ ସ୍ୱର ପାଖରେ ଅନୁଭବ ପାଇଁ ବସ୍ତାଇଯାଂତି । ଏହା ତାଂକର ପ୍ରେମ-ସଂଦେଶ ହୋଇପାରେ । ପୁଣି କବିଂକର ମିଳନ-ପିପାସା ତୀବ୍ରତର କରିବାକୁ ଅଭିପ୍ରେତ ହୋଇପାରେ । ଜୀବନର ଏକମାତ୍ର ସହାୟ ଓ ଅବଲଂବନ ଯିଏ, ଅଂତରତମ ଯିଏ, ତାଂକୁ ପାଇବାର ଅନୁଭୂତି ଭିତରେ ଯଦି ଧରି ନ ହୁଏ, ସେ ବେଦନା ଭୁବନ ପ୍ଲାବିଯାଏ, ଅଂତର ଗ୍ରାସିଯାଏ ।

ତାର ଆସିବା ଓ ଯିବାଟା ଏତେ କ୍ଷଣଲଗ୍ନର ଯେ, ସବୁ ସ୍ୱପ୍ନ ମନେହୁଏ । ପ୍ରାଣରେ ଅତୃପ୍ତି ଭରିଯାଏ । ତାର ପୂଜାର୍ଚ୍ଚନା ତ ଜୀବନରେ ସରିବାର ନୁହେ । ତଥାପି ପୂଜାର ତୃପ୍ତିଟିକକ ମଧ୍ୟ ମିଳନାହିଁ । ବିଗ୍ରହର ଅଂତର୍ଧାନ ପରେ ପୁଷ୍ପାଂଜଳି ପଡ଼ିରହିଛି । ସେତିକ ମାତ୍ର ସ୍ମୃତି-ସମ୍ବଳ । ସେ ଅଛି; ଅଥଚ ରୂପରେ ଧରାଦିଏନାହିଁ । ସେ ଆସେ; ଅଥଚ ଦେଖାଦିଏନାହିଁ । ସେ ଅଛି ବୋଲି ଜଣା; ମାତ୍ର ତାକୁ ପାଇହୁଏନାହିଁ—ଏ ଅସୀମ ବ୍ୟଥାରୁ କବିଂକର ଯେପରି ନିସ୍ତୃତି ନାହିଁ "ନାହିଁ ନଥିବା ଭଲ, ଏ ଅଛି କଲବଲ ।" (୫୩)

ଅଥଚ ତାକୁ ନ ଦେଖି ମଧ୍ୟ 'ଅନୁଭବରେ ତାକୁ ଜାଣିଛୁ'ର ବିଚିତ୍ର ଗାନ କବି କରିଛଂତି । (୫୪) ଅରୂପକୁ ଦେଖିବାପାଇଁ ଯେ ଅନୁଭୂତି ମାର୍ଗରେ ଯିବାକୁ ହୁଏ, ଏ ରହସ୍ୟବାଦୀ ସତ୍ୟକୁ କବି ଏଠାରେ କାବ୍ୟାୟିତ କରିଛଂତି । କବିଂକର ଅରୂପଦେବତା ଙ୍କଂରୁ ଉପନିଷଦୀୟ ଅବାଙ୍ମନସଗୋଚର ଅରୂପ ବ୍ରହ୍ମ ନୁହଂତି । ଏ ଈଶ୍ୱର ବଂଧୁ, ସଖା, ବ୍ୟକ୍ତିଗତ ସଂପର୍କ ଘନିଷ୍ଠ; ବ୍ୟକ୍ତି ସହ ସମଦୁଃଖୀ, ସମଦରଦୀ । ସେଇ ଅଧିକାରବଳରେ କବି ହୃଦୟଦେବତାର ଦୁଃଖକୁ ମଧ୍ୟ ନିବିଡ଼ ଆତ୍ମୀୟତା ଭିତରେ ନିଜ ଭିତରକୁ ଯାଉଁଟି ଆଣିଛି ।

---

(୫୨) "ମୋ ଶେଯତଳେ ତାର ବେଦନାଟିକକ ଥୋଇ,
ଲେଉଟିଗଲା ଶେଷେ ହତାଶେ
ଭରିରହିଛି ତାର ଶ୍ୱାସଟି, ନିରାଶିଆ ବତାସେ ।" 'ଜୀବନସଂଗୀତ'—ଗୀତ-୧୧

(୫୩) 'ଜୀବନସଂଗୀତ'—ଗୀତ-୧୩

(୫୪) 'ଜୀବନସଂଗୀତ'—ଗୀତ-୧୪

Digitized by PPRACHIN, SOA

ଦେବତାର ଦୁଃଖ କଣ ? ମାତ୍ର ଏ ଦେବତା ବେଦାଂତର ସର୍ବାତୀତ ବ୍ରହ୍ମ ନୁହଂନ୍ତି ଯେ ସବୁ କିଛି ନସ୍ୟାତ୍ କରି ନିର୍ଦ୍ୱଂଦରେ ରହିଥିବେ । ଏ ଦେବତା ବ୍ୟକ୍ତିର ଜୀବନ ସହ ଜଡ଼ିତ, ହୃଦୟଗତ, ସୁଖଦୁଃଖର ସାଥୀ, ସମ ଅନୁଭବୀ । ତାଂକର ମଧ୍ୟ ମିଳନ କାମନା ଅଛି, ଯାତ୍ରାଶ୍ରମ ଅଛି, ପଥକ୍ଲାଂତି ଅଛି । (୫୫) ବ୍ୟକ୍ତିଜୀବନ ସହ ସଂପର୍କିତ ହୋଇ ରହିବାର ଅଭିଳାଷରୁ ଯେଜାତ ସେ ଅପରମେୟ ଦୁଃଖ ପ୍ରକୃତରେ ଅଶେଷ । ବ୍ୟକ୍ତିର ସୀମାଶକ୍ତି ସ୍ୱଳ୍ପ । ଆନଂଦ ବା ବିଷାଦ ସେ ଅଳ୍ପ ଧାରଣ କରିପାରେ; ମାତ୍ର ଅସୀମଂକର ବିପୁଳ ଅବଧାରଣରେ ସେ ଦୁଃଖବେଗ ଅପ୍ରମିତ ହୋଇଉଠେ । କବିଚେତନାରେ ଦେବତାଂକର ଏ ଶିବରୂପ ନିବିଡ଼ ଅଂତରତମ । ଆତ୍ମାଠାରୁ ବିଶ୍ୱାତ୍ମା ପର୍ଯ୍ୟଂତ ଚେତନାର ଯେତେ ସ୍ତର ବିଦ୍ୟମାନ ଈଶ୍ୱରଂକର ଏ ଶିବମୂର୍ତ୍ତି ବ୍ୟକ୍ତିଚେତନାର ସବୁଠାରୁ ବେଶୀ ପାଖାପାଖି । ଦେବତ୍ୱ ଏଠାରେ ଗୌଣ । 'ପ୍ରିୟ' ପରିଚୟ ବଳବତ୍ତର । (୫୬)

ଏଇ ପ୍ରିୟ-ପରିଚୟ ସୂତ୍ରରେହିଁ ଦେବତା ସହ ବ୍ୟକ୍ତିର, ଅସୀମ ସହ ସୀମାର ପ୍ରୀତି-ଅଧିକାରର ସଂପର୍କ ଜାତହୁଏ; ଅପେକ୍ଷା, ଅଭିସାର, ମାନ ଅଭିମାନ, ବିରହ ମିଳନର ଲୀଳା ରଚିତ ହୁଏ । ଲକ୍ଷ୍ମୀକାଂତଂକ ବୈଷ୍ଣବ-ହୃଦୟ ଏ ମାନମୟୀ ରୂପାଶ୍ରୟରେ ଅଧିକ ମନୋରମ । ମନେହୁଏ, ବର୍ଷାର ସଜଳଗର୍ଜି, (୫୭) ଫୁଲବନର ଜ୍ୟୋତ୍ସ୍ନାଯାମିନୀ (୫୮)—ଏମାନେ କବିଂକ ରୋମାଂଟିକ ପ୍ରଣୟବିଳାସକୁ ସ୍ୱପ୍ନରଚନାର ସୁଯୋଗ ଦେଇଛଂନ୍ତି । କବିଂକର ପ୍ରଣୟଭାବନାର ଚରିତ୍ରଗତ ଯୁକ୍ତି, 'ପ୍ରେମରେ ପ୍ରୟୋଜନଟା ତ ଗୋଟାଏ ପାର୍ଶ୍ୱର ନୁହେ । ଜଣେ ନିର୍ବିକାର, ନିରୁତ୍ତର, ଅନ୍ୟଜଣେ ତାକୁ କଣ୍ଠାଗତ ହୋଇ କାମନା କରିବାରେ ପ୍ରୀତି ସଂପର୍କର ଚରିତାର୍ଥତା ଆସେନାହିଁ । ଜଣେ ଅପେକ୍ଷାରେ ରହିଥିବ । ଅନ୍ୟଜଣକ ଆସିବା-ଯିବାଟା ଆପଣାର ଖିଆଲ ବୋଲି ବିଚାରିଥିବ ।'—କବିଙ୍କ ଅଭିମାନୀ ଚିତ୍ତର ଏ ଅଭିଯୋଗ ଅବହେଳାର ବସ୍ତୁ ନୁହେଁ । କବିପ୍ରାଣରେ ଦ୍ୱଂଦ୍ୱ, ଏ ସଂପର୍କର ମୋହ ତୁଟାଇ ହେଉନାହିଁ; ଅଥଚ ଏଭଳି ପ୍ରେମରେ ଯେ ଭୟଂକର ଯଂତ୍ରଣା ! କବି ମୁହଁଟାଣପଣ କରି ଗାଇଛଂନ୍ତି : "ନୋହିବାର ହେଲେ ନୋହୁ ସେ ସଖା, ନୋହିବାର ହେଲେ ନୋହୁ । (୫୯) ଯଦି କଣ ପ୍ରୀତିଦାନ ଲାଭକରିବାର ଯୋଗ୍ୟ ନୁହଂନ୍ତି, ତେବେ ସେ ସଂପର୍କର ଛଳନା ଶେଷ ହୋଇଯିବା ବରଂ ଭଲ । ମୁଖର ଯଂତ୍ରଣାକୁ ଭୟକରି ଜୀବନ୍ମୃତ ହେବାର ଏ ବିପର୍ଯ୍ୟୟ ଆଉ ଭୋଗିବାକୁ ହେବନାହିଁ । ଅସୀମର ଅସରଂତି ପ୍ରେମପଥରେ ପାଦ ଦେଇଦିନୁ ତ ପଥରରେ ଗ୍ରନ୍ଥିକୁ ବାଂଧିବାକୁ ହୁଏ; ଲୁହର ସମୁଦ୍ରରେ ଡୁବିବାକୁ ହୁଏ । ବୈଷ୍ଣବ-କବିର ଏ ପ୍ରୀତିବେଦନା, କବିଂକୁ

---

(୫୫) "ବ୍ୟଥିତ ପରାଣେ ଦୀର୍ଘ ବିରହ କରି ବଂଧୁ ଅଛନ୍ତାଂତ
ବହୁ ଦୂର ଦେଶୁ ଆସିଛୁ ସେ ପରା ହୋଇ ପଥଶ୍ରାଂତ ।" 'ଜୀବନସଂଗୀତ'—ଗୀତ-୩୩

(୫୬) 'ଜୀବନସଂଗୀତ'—ଗୀତ-୧୫

(୫୭) "ଆଜ ଦୀର୍ଘ ବାଦଲ ରାତି ।" 'ଜୀବନସଂଗୀତ'—ଗୀତ-୫୧

(୫୮) "ମହୁଲା ଏ ମୋର ଫୁଲବନେ
ଚହଟି ଉଠୁଛି ଜହ୍ନରାତି ।"
'ଜୀବନସଂଗୀତ'—ଗୀତ-୫୭

(୫୯) 'ଜୀବନସଂଗୀତ'—ଗୀତ-୫୬

Digitized by PPRACHIN, SOA

ଅଜଣାନାହିଁ । (୭୦) ସେଥିକୁ ଭୟ ମଧ୍ୟ ନାହିଁ । ଏ ଦୋଦୁଲ୍ୟମାନତା, ଅନିଶ୍ଚୟତା କିଂତୁ ତାଂକୁ ଭଲଲାଗୁନାହିଁ । ସେ ବାମନ ହୋଇ ଚଂଦ୍ର ଧରିବାକୁ ହାତ ବଢ଼ାଇ ଶରୀର ଦଶା ଭୋଗିସାରିଲେଣି । (୭୧) ଭ୍ରାଂତିକୁ ସତ ମଣି ତାର ଗୁରୁତ୍ୱରେ ଅଂଧ ହୋଇଯାଇଛଂତି । ନିତି ନୂଆ ନୂଆ ଛଳନାରେ ମୁଗଧ ହୋଇ "ଏବେ ବଡ଼ ବାଧା ହେଲଣି ।" (୭୨) ପରୀକ୍ଷାର ଯେ ଶେଷ ନାହିଁ । ଛାଡ଼ି ନ ପାରିବା ଓ ସହି ନ ପାରିବାର ଏ ହଟହଟାରେ କବିଂକ ମନ ମରିଗଲାଣି । ଆକୁଳ ହୋଇ ପଚାରୁଛଂତି, "ଏବେ କି ହେ ପୂରିନାହିଁ ମନସାଧ···।" (୭୩) ପରୀକ୍ଷା ସିନା ପରକୁ, ନୂଆ ଲୋକକୁ, ନୂଆ ଭାବସଂପର୍କକୁ । ନିତି ଚିହ୍ନା, ଅତି ନିଜର, ସ୍ନେହ-କାଂଗାଳ ହୃଦୟଟିକୁ କେତେ ପରୀକ୍ଷା କରାଯାଇପାରେ ? ଏହା କଣ ନିଷ୍ଠୁରତା ନୁହେଁ ? ପ୍ରୀତିର ଦେବତାକୁ ସର୍ବସ୍ୱ ଦେଇ ମଧ୍ୟ ପ୍ରେମବଂଚିତ ହୋଇ ବଂଚିରହିବା ପାଇଁ କବିଂକର କ୍ଷୋଭ । ଯେ ପ୍ରେମାସ୍ପଦଂକ ଛଡ଼ା କିଛି ଜାଣେନାହିଁ, କିଛି ଦେଖେନାହିଁ, ତାକୁ ଯେ ପଦେ ପଦେ ପ୍ରମାଦ ଗଣିବାକୁ ହୁଏ, ଏ ବିଡ଼ଂବନା କବିପ୍ରାଣରେ କ୍ଷୋଭ ଜାତ କରିଛି । ଦେବତାର ନିଷ୍ଠୁରତାରେ କବିପ୍ରେମ ମୁହ୍ୟମାନ । ତଥାପି ଏ ସଂପର୍କକୁ ଏଡ଼ାଇଯିବାକୁ କଷ୍ଟ ହେଉଛି । ପ୍ରଣୟର ପ୍ରଗଲ୍‌ଭତାରେ ବିରହର ଉନ୍ମାଦନାରେ କବି ଏ ପ୍ରୀତି-ସଂପର୍କକୁ ତୁଟାଇଦେବାକୁ ମିନତି କରି ମଧ୍ୟ ଜାଣିଛଂତି ଏହା ଆଉ ତୁଟିବାର ନୁହେଁ; ବରଂ ଦେବତାର ଇଚ୍ଛା ପୂର୍ଣ ହେଉ । ଦାଉ ସାଧି ସେ ଖୁସି ହେଉ ଏବଂ "ତା ଲାଗି ଏ ଜୀବ ପଛେ ଯିବ ଯାଉ ।" (୭୪) ଯେ ଦୁଃଖ ବୁଝେ ନାହିଁ, ଡାକଲେ ଶୁଣେନାହିଁ, କବି ତା'ଠାରୁ ଆପଣାର ଅମୂଲ୍ୟ ପ୍ରୀତିର ପ୍ରତିଦାନ ମଧ୍ୟ ଚାହାଂତିନାହିଁ । ଚରମ ଅଭିମାନରେ ପ୍ରେମର ସେ ବଡ଼ ଅଦ୍ଭୁତ ଟାଣପଣ : "ଆଁଶୂକା ମୋଲ ନ ଲୂଁଗୀ ମୈଁ ।" (୭୫)

ଅଶ୍ରୁକୁ ନେଇ ଅଭିମାନ କରିବାର, ଗର୍ବ ଗୌରବ କରିବାର ଅଧିକାରଟି ଏକମାତ୍ର ଅଶ୍ରୁସିଂଚିତ ହୃଦୟର । ସେ ଅଭିମାନ ନିଜ ଲୋକଠାରେ, ପରମ-ପ୍ରୀତିଠାରେ । ଏଇ ନିଜସ୍ୱତାର ଭଂଗୀରେ କାଂତମାନସର ଏ ଦୁର୍ଜୟ ଅଭିମାନ । ପ୍ରେମପାଇଁ ପ୍ରିୟର ଉଦ୍ଦେଶ୍ୟରେ ଯେ ଅଶ୍ରୁକ୍ଷରଣ, ତାହା ଯେ ତର୍ପଣ ! ତାର ସାର୍ଥକତା କେବଳ ସେଇ ଅଶ୍ରୁପାତରେ । ତାର ମୂଲ୍ୟକଳନାର ଅଧିକାର ପ୍ରିୟତମଂକର ମଧ୍ୟ ନାହିଁ; ପ୍ରତିଦାନ ତ ପରର କଥା । ଭାବି ଦେଖିଲେ ସେତିକି ତ ପ୍ରଣୟୀର ନିଜସ୍ୱ, ଯାହାକୁ ସେ ପ୍ରିୟପାଇଁ ଉତ୍ସର୍ଗ କରିପାରେ । ଏଥିରେ ଆଉ କାହାର ଏପରିକି ଯାହା ଉଦ୍ଦେଶ୍ୟରେ ଏ ଅଶ୍ରୁମୁଂଚନ, ତାର ମଧ୍ୟ ଅଧିକାର ନାହିଁ ।

---

(୭୦) "ବଡ଼ ବିଷମ ସେ ପ୍ରୀତି ପାଳିବା,
ତୀକ୍ଷ୍ଣ ଅସିଧାରେ ପଦ ଚାଳିବା ।"
ଅଭିମନ୍ୟୁ ସାମଂତସିଂହାର—'ବିଦଗ୍ଧ ଚିଂତାମଣି'—ଛାନ୍ଦ-୩୯, ପଦ-୨୦

(୭୧) 'ଜୀବନସଂଗୀତ'—ଗୀତ-୩୯

(୭୨) 'ଜୀବନସଂଗୀତ' ଗୀତ-୨୧

(୭୩) 'ଜୀବନସଂଗୀତ'—ଗୀତ-୪୩

(୭୪) 'ଜୀବନସଂଗୀତ'—ଗୀତ-୪୩

(୭୫) ମହାଦେବୀ ବର୍ମା—'ନୀରଜା—ପୃ. ୭୧

Digitized by PPRACHIN, SOA

ସର୍ବସ୍ୱବିସର୍ଜନ ପରର ଶୂନ୍ୟତାରେ ଏକ ନିଶ୍ଚିନ୍ତ ନିସ୍ପୃହ ଅଛି : "ଯାହା ଦେଇଥିଲ ସବୁ ତ ନେଲଣି, ଆଉ କିସ ଅଛି ଛଡ଼ାଇବ ହେ । (୭୬) ସବୁ ଆଶା ତୁଟାଇଦେବା ପରେ ଆଉ କିଛି ନପାଇବାର ଆଶଂକା ରହେନା । ବନ୍ଧନର ରଜ୍ଜୁ ସବୁ ଛିନ୍ନ ହୋଇଯିବା ପରେ ବନ୍ଧନର ଭୟ ଆଉ ନଥାଏ । କବି ସଂସାରର ଜଂଜାଳ, ବ୍ୟକ୍ତିଗତ ସୁଖାଭିଳାଷକୁ ସ୍ୱର୍ଗୀୟଦେବତାଙ୍କ ନିକଟରେ ଜଳାଂଜଳି ଦେଇସାରିଛଂନ୍ତି । ପୁଣି ହୃଦୟର ସ୍ନେହପ୍ରୀତିକୁ ଓ ସମଗ୍ରଭାବେ ନିଜକୁ ମଧ୍ୟ ଜୀବନଦେବତାଂକୁ ଅର୍ପଣ କରିସାରିଛଂନ୍ତି । ଏବେ ଶୂନ୍ୟହସ୍ତ କାଂଗାଳ । ସବୁ ନେଇସାରି ଯିଏ ପୁଣି ପାଇବାର ଦାବି ଘେନି ଉପସ୍ଥିତ, ବ୍ୟକ୍ତି ତାକୁ ଆପଣାର ଦୈନ୍ୟ ଛଡ଼ା ଆଉ କଣ ଦେଇପାରେ ? ଅଥଚ ଈଶ୍ୱର ଏକ ମହାକାଂଗାଳ । ତାଂକ ଥାଳି କେବେ ଭରେ ନାହିଁ । ତାଂକର ସର୍ବସ୍ୱଗ୍ରାସୀ ପ୍ରେମକାମନା ନିକଟରେ ଜୀବନର ସାର, ଆତ୍ମାର ଐଶ୍ୱର୍ଯ୍ୟ, ହୃଦୟର ମହତ୍ତ୍ୱକୁ ସମର୍ପି ଦେବାକୁ ହୁଏ । ତା'ପରେ ବି ଯଦି ତାଂକର ଭିନ୍ନ କିଛି ପ୍ରତ୍ୟାଶା ଥାଏ, ତେବେ ଦାନ-ସୂତ୍ରରେ ସେ ସବୁ କବିଂକୁ ଅର୍ପଣ କରି, ପରେ ତାର ଉପଯାଚକ ହୁଅଂନ୍ତି । ଭିକ୍ଷୁକ ଭିକ୍ଷାଲବ୍‌ଧ ଦାନକୁ ହିଁ ଦାତାକୁ ପ୍ରତ୍ୟର୍ପଣ କରିପାରେ । କବି ପରାମର୍ଶ ଦିଅଂନ୍ତି : 'ଦେବତା ତାଂକ ହୃଦୟରେ ଆପଣାର ଅସୀମ ପ୍ରେମକୁ ଜାଣିବାଏ ଭରିଦିଅଂନ୍ତୁ । ତାପରେ ସେହି ସୀମାୟିତ ସତ୍ତାର କ୍ଷୀଣ ପ୍ରେମକୁ ଆପଣାର ଅସୀମ ଆଲିଂଗନରେ ନବରୂପେ ଆସ୍ୱାଦ କରଂନ୍ତୁ ।' (୭୭)

## ସ୍ୱର୍ଗୀୟଦେବତା ଓ ଶରଣାଗତ

ଜୀବନର ସବୁ ପ୍ରାପ୍ତି ସୁଖ ସରିଛି । ଶେଷ ଲୁହଝୋପାକ ମଧ୍ୟ ମେଲାଣି ମାଗିନେଇଛି । ଏହାପରେ ନୂତନ ଆଶା, ନୂତନ ଆଲୋକର ସମ୍ବାଦ କିଛି ନାହିଁ । ତେଣୁ 'ନିଜ ଗୃହ', ଶେଷ ଗୃହାର ସନ୍ଧାନ । ମୃତ୍ୟୁ-କାମନା । ହୃଦୟର ଅଭ୍ୟଂତରରୁ ତଥାପି କିଂନ୍ତୁ କେଉଁ ଉନ୍‌ମନ ଜାଗିଉଠୁଛି । (୭୮) ସେ ସ୍ୱରଟି ପାଗଳ ଆଶାର; କାରଣ ସେ ଅବୁଝା । ଜୀବନରୁ ଭିନ୍ନ କିଛି, ଅପୂର୍ବ କିଛି ପାଇଁ ଦୁର୍ନିବାର ତାର ଆକାଂକ୍ଷା । କବିକଂଠରେ ମରଣର ସ୍ୱାଗତ-ଗୀତି ସତ୍ତ୍ୱେ ବୈରାଗ୍ୟ ଅଥବା ଦରଦ ଅଭିମାନ ଅପେକ୍ଷା ସମର୍ପଣର ସ୍ୱଗତୋକ୍ତି ଅଧିକ ।

ଜୀବନର ବିଚିତ୍ର ଘାତରେ ସକଳ ବିଫଳତା ଭିତରେ ବି ଆଶା ମରେନାହିଁ । ରହସ୍ୟବାଦୀ ସଂକେତରେ ଏ ଅଂଧାରି ଶୂନ୍ୟତା, ଏ ନୀରବ ଅସହାୟତା ସବୁବେଳେ ଏକ ମଧୁର ପ୍ରତିଶ୍ରୁତିକୁ ବହନ କରିଆଣେ । କବି ଯେତେବେଳେ ସର୍ବଶୂନ୍ୟ ନିଃସହାୟତାରେ ମୃତ୍ୟୁର ଅପେକ୍ଷାକରି ଏକାକୀ କ୍ଷୀଣ ଜୀବନ-ତରଣିଟିକୁ ବିପୁଳ ସଂସାର-ବାରିଧି ଭିତରେ ଦିଗଭ୍ରଷ୍ଟ ହୋଇ ବାହିଚାଲିଛଂନ୍ତି, କବି-ଚେତନାରେ ତଥାପି ଭରସାର କ୍ଷୀଣ ସଂକେତଟିଏ ଉଜଳିଉଠିଛି : "ତାରାଟିଏ ଆକାଶ କୋଣେ ଉହୁଁଛି ଆସି ।" (୭୯) ବିରାଟ ସମୁଦ୍ର-ବକ୍ଷରେ 'ଏକୁଟିଆ ନୌକାଟିଏ' ଏବଂ ଅନଂତ ଗଗନବକ୍ଷରେ 'ଗୋଟିକିଆ ତାରାଟିଏ'—ଉଭୟଂକର ଏକାକୀତ୍ୱ ବଡ଼ ଇଂଗିତପୂର୍ଣ୍ଣ । ଏ ଏକାକୀତ୍ୱ ଯେପରି ପରସ୍ପରକୁ

---

(୭୬) 'ଜୀବନସଂଗୀତ'—ଗୀତ-୩୬

(୭୭) "ନବରସେ ଭରି ସଜାଇ ଦିଅ ହେ ! ପୁଣି ନବବଧୂ ବେଶେ ।"
'ଜୀବନସଂଗୀତ'—ଗୀତ-୫୫

(୭୮) "ତଥାପି କାହିଁକି ଘୂମୁରି ଘୂମୁରି ବୁଲୁଛି ବାଇଆ-ଆଶାଟି ।" 'ଜୀବନସଂଗୀତ'—ଗୀତ-୨୫

(୭୯) 'ଜୀବନସଂଗୀତ'—ଗୀତ-୨୪

Digitized by PPRACHIN, SOA

ଆକର୍ଷଣର ମନ୍ତ୍ର ଏବଂ ପରସ୍ପରକୁ ନିଜପାଇଁ ଆବିଷ୍କାର କରିବାର ସ୍ୱପ୍ନବିଡ଼ ମୁହୂର୍ତ୍ତରେ ହିଁ ସମାପ୍ତ । ଏ ତାରକା ଆଶାର ପ୍ରତୀକ, ଆଲୋକର ସମ୍ଭାବନା, ଜୀବନର ଉଦୟ-ସିନ୍ଧୁଂକର ପୂର୍ବ ସଂକେତ । ସେ ଆଲୋକ ପୃଥିବୀକୁ ଉଜ୍ଜ୍ୱଳ କରିପାରୁ ନପାରୁ, ତଥାପି ତାର ପ୍ରତିଶ୍ରୁତି ।

ଏହାପରେ କବିଂକର ଜୀବନ ସଂପର୍କରେ ନିବିଡ଼ ପ୍ରତ୍ୟୟ ଜାତ ହୋଇଛି । ଗଭୀର ଉପଲବ୍ଧିରୁ କବି ଜାଣିଛଂତି ସୁଖ ବା ଦୁଃଖ, ହର୍ଷ ବା ବିଷାଦ, ଅନୁଭୂତି ଦୃଷ୍ଟିରୁ ଜୀବନରେ କିଛି ଅପାଂକ୍ତେୟ ନୁହଂତି; ଅର୍ଥହୀନ ନୁହଂତି । ଏକ ଦିବ୍ୟ ଇଚ୍ଛା ଓ ସଂକଳ୍ପରୁ ସେମାନେ ଉଦ୍‌ଭୂତ । ଦୁଃଖ ଭିତରେ ଜୀବନ ବଂଚନାର ଯେଉଁ ବ୍ୟଥା ପାଏ, ତାହା ତାକୁ ନିଖିଳ ବେଦନା ସହ, ସୃଷ୍ଟିର ମୂଳଭୂତ ଦୁଃଖ ସହ ସଂଯୁକ୍ତ କରିଦିଏ । ଦୁଃଖବୋଧ ଭିତରେ ବ୍ୟକ୍ତିଚେତନାର ଯେଉଁ ନିଃସ୍ୱତା ଜାତ ହୁଏ, ତାହା ସମଗ୍ର ବିଶ୍ୱକୁ ଅଂତରଂଗ କରିଦେବାର, କୋଳାଗତ କରିନେବାର ବ୍ୟାକୁଳତାରେ ଭରିଉଠେ । ଅହଂର ଅଭିମାନକୁ ହରାଇନେଲା ପରେ ବ୍ୟକ୍ତି ବିଶ୍ୱ ଭିତରେ ନିଜକୁ ବାଂଟିଦେବାର ସୁଯୋଗ ଲାଭକରେ । (୭୦)

ଏ ପ୍ରକାର ଉପଲବ୍ଧି ପରେ କବି ନୂତନ ପ୍ରତ୍ୟୟ ଭିତରୁ "ସଖୀ ହେ, ଠକାଇ ପାରିବ ନାହିଁ ଆଉ ଏଣିକି" (୭୧) ବୋଲି ଦୃଢ଼ୋକ୍ତି କରିଛଂତି । କବି ଏବେ ପଥଘାଟ ଚିହ୍ନିଲେଣି, ସିଧାବାଟ ଧରିଲେଣି । ଜୀବନର ପ୍ରକୃତ ପଥ, ଲକ୍ଷ୍ୟାନୁସାରୀ ମାର୍ଗଟିର ପାର୍ଶ୍ୱ ସଂକେତ ସବୁ ଆୟତ୍ତ କରିସାରିଲେଣି । ଆଖିବୁଜା, ଏକମୁହାଁ ଏବେ ସେ ଯାତ୍ରା; ମନ ଏବେ ଦୂରାଭିସାରୀ, ଗତି ତାର ଦୁର୍ବାର । ଭ୍ରାଂତି ବିଳାସ ଆଉ ମୋହଗ୍ରସ୍ତ କରି ପଛକୁ ଟାଣି ଧରିବ ନାହିଁ ।

ଏ ଯାତ୍ରା କଂରୁ ଅହଂଚେତନାର ନୁହେ । ବୁଦ୍ଧି ବିଚାର-ଶାଣିତ, ଅଭିଜ୍ଞତା-ସମୃଦ୍ଧ, ଅନୁଭୂତି ତୀକ୍ଷ୍ଣ ମନ ସଂସାରର ଭଲ-ମଂଦ, ସାର-ଅସାର ବାଛିବାର ଗୋଲକଧଂଦା ଅତିକ୍ରମ କରି ଏବେ ଜୀବନଦେବତାଂକର ଅଭିମୁଖେ ନିଷ୍ଠାପର ଶରଣାଗତି ଓ ନିରହଂକାର ନିରଭିମାନତାର ସିଧା ପଥରେ ଯାତ୍ରୀ । ପାର୍ଥିବ ପ୍ରୟୋଜନ, ସୁଖବୋଧ ପାଇଁ ଆଉ ଲାଳସା ନାହିଁ । ଦୁଃଖ-ଯନ୍ତ୍ରଣାର, ବିଘ୍ନର ଭୟ ଏ ପଥରୁ ତାଂକୁ ନିବର୍ତ୍ତାଇବାର ଦୁର୍ବଳତାକୁ ମଧ୍ୟ ସେ ଜୟ କରିଛଂତି ।

ତଥାପି କବି ଜାଣଂତି, ଏ ଯାତ୍ରା ନିଃସଂଗ ନୁହେ, ସହାୟହୀନ ନୁହେଁ । ଏ ପଥ ସୁଦୂର । ଯାତ୍ରା କ୍ଲାଂତିକର ଏବଂ ପଥଧାର ବିଘ୍ନସଂକୁଳ । ସେ ପଥରେ ଯାତ୍ରାର ସଂକଳ୍ପ ବ୍ୟକ୍ତିର ନିଜର ହୋଇପାରେ, ମାତ୍ର ସାଧନା ସାମର୍ଥ୍ୟ ବହିର୍ଭୂତ । ତାହା ଦେବତାର ଆଶୀର୍ବାଦ । କବି ଏ କଥା ଭୁଲିନାହାଂତି । ଅସୀମର ଯାତ୍ରାପଥରେ ସୀମାର ନିଜକୁ ଚଲାଇନେବା ଶକ୍ତି ବଡ଼ କ୍ଷୀଣ । ଜୀବନକୁ କେବଳ ଜୀବନବନ୍ଧୁ ହିଁ ପ୍ରୟୋଜନୀୟ ସାହାଯ୍ୟ ଦେଇପାରଂତି ।

କବି ଦିବ୍ୟ ସୁରକ୍ଷା ସଂପର୍କରେ ପୂର୍ଣ୍ଣ ନିଶ୍ଚିଂତ, ଅନଂତକୃପା ସଂପର୍କରେ ପୂର୍ଣ୍ଣ ଆଶ୍ୱସ୍ତ । (୭୨) ଏ ବିଶ୍ୱାସ କେବଳ ଭାବୁକ ନୁହେଁ । ଚେତନାର ଏ ଭରସା ଲଭଚି ରହସ୍ୟାନୁଭୂତିର ଏକ ମହନୀୟ ଓ

---

(୭୦) "ସବୁଥିରୁ କରି ନିଃସ୍ୱ
ଶିଖାଇ ଦେଇଚ ଆପଣାର ଜାଲେ ଧରିବାକୁ ସାରା ବିଶ୍ୱ ।" 'ଜୀବନସଂଗୀତ'—ଗୀତ-୬୧

(୭୧) 'ଜୀବନସଂଗୀତ'—ଗୀତ-୪୦

(୭୨) "ଭାବି ହେଉନାହିଁ, କେମଂତେ ଆଆଂତି ଏଠି ରହି;
ଭରସା ନଥିଲେ ତୋହଠାଇଁ ।" 'ଜୀବନସଂଗୀତ'—ଗୀତ-୫୪

Digitized by PPRACHIN, SOA

ଗୁରୁତ୍ୱପୂର୍ଣ୍ଣ ପ୍ରତ୍ୟନୁଭୂତ । ଦିବ୍ୟ ସୁରକ୍ଷା ଯେ ଜୀବନକୁ ବେଢ଼ି ରହିଛି, ଅଥଚ ଅଜ୍ଞାନତା ତାହା ଜଣାଇ ଦିଏନାହିଁ । ଦୁଃଖ, ବିପଦ ଓ ଭ୍ରାନ୍ତିର ମୁହୂର୍ତ୍ତ ହିଁ ସେ ଦିବ୍ୟାନୁଗ୍ରହକୁ ପ୍ରକଟ କରିବାର ମୁହୂର୍ତ୍ତ । ବିପଦ ଭିତରେ ବିପଦବନ୍ଧୁଙ୍କର, ଦୁଃଖ ଭିତରେ ଦୁଃଖୀଧନଙ୍କର, ଭ୍ରାନ୍ତି ଭିତରେ ଭ୍ରାନ୍ତିନାଶନଙ୍କର ମଧୁରାଶୀର୍ବାଦ ମିଳେ, ସୁଖଭୋଗ ସତ୍ତ୍ୱାକୁ ଈଶ୍ୱରଙ୍କଠାରୁ ଦୂରବର୍ତ୍ତୀ କରି ରଖେ—ଏ ଭୋଗାନୁଗ୍ରହ କବି ଗୃହାନ୍ତି ନାହିଁ; ଦିବ୍ୟ ସାମୀପ୍ୟ, ସଂଗସୁଖର ଅନୁକଂପା ଗୃହାନ୍ତି । ଅଭାବ ଯାର ନିତ୍ୟସଂଗୀ, ଦୈନ୍ୟ ଯାହାର ଶିରୋଭୂଷଣ, ବିଫଳତା ଯାହାର ସାନ୍ତ୍ୱନା ଓ ସଂତାପ ଶାନ୍ତିର ସଂଗୀତ—ସେ ଆଶା-ଭଂଗକୁ ଭୟ କରେନାହିଁ । ଦୈନ୍ୟ ଭିତରେ ବରଂ ଦୀନବାନ୍ଧବଙ୍କର ସ୍ମରଣର ଅବକାଶ ପାଏ । (୭୩) କବି ପ୍ରିୟ-ସ୍ମରଣର ଏ ସୌଭାଗ୍ୟକୁ ଭ୍ରାନ୍ତିବିଳାସର ବିନିମୟରେ ହରାଇବାକୁ ଗୃହାନ୍ତିନି । ମିଷ୍ଟିକ ପାଇଁ ପରମ ପ୍ରେମମୟଙ୍କର ବନ୍ଧୁ ପରୋକ୍ଷ ପ୍ରକାଶ ରହିଛି । ସତ୍ତ୍ୱାର ମନୋମତ ସୁଖ ଦେବାକୁ ସେ ବାଧ ନୁହଁନ୍ତି । ସେ ଯାହା ଦିଅନ୍ତି, ତାହା ଭୟଙ୍କର ମନେ ହୋଇପାରେ; ମାତ୍ର ପରିଣାମରେ ମଂଗଳକର—ଏଇ ବିଶ୍ୱାସହିଁ ସେ ପ୍ରେମ ଲଭିର ପ୍ରକୃତ ପଥ । (୭୪)

ଏଇ ବିଶ୍ୱାସ ହିଁ ଦେଖାଇଦିଏ "ଯେବେ ତାକେ ମୁହିଁ ଦୟାନିଧି ବୋଲି ପାଶେ ଆସି ଛୁଡ଼ାହୋଇଚ ।" (୭୫) ବ୍ୟକ୍ତ ପ୍ରୟୋଜନ-ପୂରଣ ପାଇଁ ଦେବତାର ଶରଣ ନିଏ । ଏ ପ୍ରୟୋଜନର କେନ୍ଦ୍ର ବ୍ୟକ୍ତି-ସ୍ୱାର୍ଥ । ପ୍ରୟୋଜନ-ପୂର୍ତ୍ତି ପରେ ତାକ ମଧ ସରିଯାଏ । ଏହା ଈଶ୍ୱରଙ୍କ ସହ ଜୀବର ପାର୍ଥିବ ସଂବନ୍ଧ । ମାତ୍ର ଅଧ୍ୟାତ୍ମ ସମ୍ପର୍କରେ, ଆତ୍ମାର ପ୍ରୀତି ସମ୍ପର୍କରେ ଏ ପ୍ରୟୋଜନର ରୂପ ବଦଳିଯାଏ । ସେଠାରେ ଦେବତା ସ୍ୱୟଂ ଅଭିଳଷିତ । ଏହା ହୃଦୟର ପ୍ରେମ-ପ୍ରୟୋଜନ-ଜାତ । ଅଭିଳଷିତ ସ୍ୱୟଂ ଈଶ୍ୱର ଓ କାମ୍ୟ ଭଗବଦ୍‌ପ୍ରେମ । ପୁଣି ବସ୍ତୁଲାଭପରେ ପାର୍ଥିବ ଦାତା-ଗ୍ରହୀତାର ସମ୍ପର୍କ ଶେଷ ହୁଏ; କିଂବା ଦାତା-ଗ୍ରହୀତାର ପରିଚୟରେ ସୀମିତ ରହେ । ମାତ୍ର ହୃଦୟର ପ୍ରୀତି ସଖୋଳିବାକୁ ଆସି ଦେବତା ଯେ ଅନ୍ତରଂଗ ହୋଇଯାନ୍ତି, ସେଠାରେ ଆଉ ଦାତା-ଗ୍ରହୀତା ଭାବ ରହିପାରେ ନାହିଁ । (୭୬) ଦେୟ ବା ପ୍ରାପଣୀୟ କିଛି କାହାର ନଥାଏ । ପ୍ରେମ ଏଭଳି ଏକ ଅନୁଭବ, ଯାହାକୁ ଦାତା ଗ୍ରହୀତା ଉଭୟ ସମଭାବରେ ସଂଭୋଗ କରନ୍ତି । ପ୍ରେମ ସମ୍ପର୍କରେ ଦେବା ଅପେକ୍ଷା ପାଇବାର କୃତକୃତ୍ୟ ଅନୁଭବଟାହିଁ ସମଧିକ । ଦାନ ସେଠାରେ ପରମ ସୁଖ ।

କବି-ଆତ୍ମାର ଏହି ଉପଲବ୍ଧି ଭିତରେ ଜୀବନଦେବତା ଓ ଭାଗ୍ୟଦେବତା ତାତ୍ତ୍ୱିକ ଅଭିନ୍ନତାରେ ବିରାଜିତ । ଏହାପରେ ପ୍ରୀତିଚେତନାର ଏକ ଗମ୍ଭୀର ପାର୍ଶ୍ୱ କବି-ଅବୋଧରେ ସ୍ୱାଭାବିକ ଉନ୍ମୋଚିତ ହୋଇଛି । ପ୍ରେମ ଏଭଳି ଏକ ଶକ୍ତି, ଯାହା ପ୍ରିୟଜନଠାରୁ ନିଜକୁ ସହନକ୍ଷମ ମନେକରାଇଦିଏ ।(୭୭) (ବାତ୍ସଲ୍ୟର ମୂଳଭୂତ ପ୍ରବଣତାଟି ଏଇଠି ଅନୁଧ୍ୟେୟ ।) ସେ ଶକ୍ତି ପ୍ରିୟଜନର ଭାରକୁ ମଧ ସହ୍ୟ

(୭୩) 'ଜୀବନସଂଗୀତ'—ଗୀତ-୪୧

(୭୪) "କୋଳେ ଧରି କେବେ ଶୂନ୍ୟେ ଉଡ଼ାଇଚ, କେବେ ଜଳେ ଦିଅ ପକାଇ ।"
'ଜୀବନ ସଂଗୀତ'—ଗୀତ-୪୪

(୭୫) 'ଜୀବନସଂଗୀତ'—ଗୀତ-୪୫

(୭୬) "ସବୁ ମୋହରି, ସବୁ ତୋହରି ।" 'ଜୀବନସଂଗୀତ'—ଗୀତ-୪୬

(୭୭) "ତୋର ଦୁଃଖ ଦିକ ଅଭାବ ଯେତିକ ନିଜ ଶିରେ ମୁହିଁ ବହିଛୁ ।"
'ଜୀବନସଂଗୀତ'—ଗୀତ-୧୫

Digitized by PPRACHIN, SOA

କରିପାରେ । ସ୍ୱୟଂ ଦେବତାଠାରୁ ମଧ୍ୟ ତାହା ଦୃଢ଼ତର, ଗାଢ଼ତର ଓ ବ୍ୟାପକତର । ସତ୍ତ୍ୱ ଯେତେ କ୍ଷୁଦ୍ର, ଅପାରଗ ହେଲେ ବି ପ୍ରେମର ଏଇ ମହାନ୍ ଶକ୍ତିରେ ବିରାଟ ବିପୁଳ, ପ୍ରଚଣ୍ଡ ପ୍ରବଳକୁ ଧାରଣ କରିପାରେ । (ଚଂଡୀଂକ ଭୟଂକର ଉଗ୍ରତାକୁ କେବଳ ଶାଂତ ଶିବପ୍ରେମ ସହିଥାଏ ଓ ବହିଥାଏ ।)

ଏ ଶକ୍ତିର ମୂଳ ଉତ୍ସ ଅବଶ୍ୟ ଏକ ଦୃଢ଼ବିଶ୍ୱାସ । ତାହା ହେଲା ଈଶ୍ୱରଂକର ମଂଗଳମୟତାରେ ଆସ୍ଥା । ଜୀବନଦେବତା ଯେଉଁଠି ଗୃହଦେବତା, ଜୀବନର ସବୁକିଛିର ନିୟଂତା, ସବୁପ୍ରକାର ଭଲମଂଦରେ ସେ ସୁଧାରିନେବାକୁ ପାଖେ ପାଖେ ଆଂତି; ହାତ ଧରି ଚଲାଉଛନ୍ତି । (୭୮) ତାଂକ ନିକଟରେ କିଛି ଅଛପା ରହେନାହିଁ, ପ୍ରତିଦାନହୀନ ରହେନାହିଁ ।

ସେହି ବିଶ୍ୱାସ-ଆଶ୍ୱସ୍ତ ହୃଦୟ ହିଁ ଗାଇପାରେ : 'ଫୁଲଟି ଯେବେ ମୋର ଯାଏ ଝରି, ସେ ତୋ କୁଂଜବନେ ଯାଇ ଫୁଟିଇ ହେ ।" ହାତପାହାଂତାରୁ, ଆଖିଆଗରୁ ଯାହା ଉଭାଇଯାଏ, ମନେହୁଏ ତାହା ଅନଂତ ଶୂନ୍ୟତାରେ ସବୁଦିନ ପାଇଁ ହଜିଗଲା । ପ୍ରାଣର ବାସନା, ହୃଦୟର ଆବେଗ, ଜୀବନର ସ୍ୱପ୍ନ ସବୁ ଯେପରି ସବୁଦିନପାଇଁ ବ୍ୟର୍ଥତାର ନିଃଶ୍ୱାସ ହୋଇ ଆକାଶବତାସରେ ମିଳାଇଗଲା । ପ୍ରାଣର ବୀଣାରେ ଅସରି ସଂଗୀତର ରାଗିଣୀ ବାଜି ଯେପରି ଥକିପଡ଼ିଲା ।

ତଥାପି ଆଶା ଦୁର୍ନିବାର । କବିପ୍ରାଣରେ ସାଂତ୍ୱନା : 'ମୁହୂର୍ତ୍ତକର ସ୍ଥିତି ଭିତରୁ ରୂପ ନେଇ ଯାହା ହଜିଯାଏ, ଚରିତାର୍ଥ ହୋଇନପାରି ଯାହା ଅତୃପ୍ତ ରହିଯାଏ, ସବୁ ସେଇ ହୃଦୟ-ବଂଧୁର ଦରଦୀ ଗୁଡିରେ ସାଇତା ହୋଇ ରହିଥାଏ । ଜଗତରେ କିଛି ବି ହଜେନାହିଁ । ଲଗ୍ନ ବ୍ୟର୍ଥ ହୋଇଯାଏ; କିଂତୁ ସେ ଲଗ୍ନୋଚାରିତ ଇଚ୍ଛା ଅଭିଳାଷ ଅନଂତ ସମୟ ଭିତରକୁ ପ୍ରସରିଯାଏ ।'

ସମଦରଦୀ ବଂଧୁ କେହି ଅଛି, ଯିଏ ମୁହୂର୍ତ୍ତକୁ ଚିରଂତନ କରି ସାଇତି ଜାଣେ । ମଣିଷର ଆଖି ଆଗରୁ ଯାହା ଅପସରିଯାଏ, ତାର କରପ୍ରସାରଣ ଭିତରେ ବଡ଼ ଚମତ୍କାର ଭାବରେ ଧରାଦିଏ । ମନର ଉପବନରୁ ଆଗ୍ରହର ଯେଉଁ ସରାଗଫୁଲଟି ଫୁଟି ଝାଉଁଳିଯାଏ, ପ୍ରେମାସ୍ପଦର ହୃଦୟ-କୁଂଜରେ ତାର ମହକ ପ୍ରସରିଯାଏ । କବିକଣ୍ଠରୁ ଗୀତ ସରିଯାଏ; ତାର ଗୁଂଜରଣ କିଂତୁ ପ୍ରିୟର କଣ୍ଠସୁରରେ ଭରିରହେ । ଜୀବନବୀଣାରୁ ସରିଆସୁଥିବା ସଙ୍ଗୀତ ଜୀବନ-ପ୍ରିୟଙ୍କର ଶାଶ୍ୱତ ବଂଶୀତାନରେ ବିମୂର୍ଚ୍ଛିତ ହୋଇଯାଏ । କିଛି ତେଣୁ ସରେନାହିଁ; ମରେନାହିଁ । (୭୯) ବ୍ୟର୍ଥତା ରୂପେ, ଗ୍ଲାନି ରୂପେ, କ୍ଷତ ଆଉ ପୀଡ଼ା ରୂପେ ଯେତେ ବ୍ୟଥା ଜମିଯାଏ, ସେ ସବୁ ଅଶ୍ରୁର ଯମୁନା ହୋଇ ତାର ଚରଣତଳେ ଢଳିଯାଏ । ହୃଦୟର ଗୋପନତମ ସ୍ତରରେ ସଙ୍ଗୃହୀତ ବେଦନାର ସ୍ପଂଦନଟି ମଧ୍ୟ ତା'ର ପ୍ରାଣରେ ବାଜେ । ସବୁ ଆଶା ସ୍ୱପ୍ନ ବିହ୍ୱଳତା । ଅଂତରର ପ୍ରତ୍ୟେକଟି ଆବେଗର ଉଚ୍ଚାରଣକୁ ସେ କାନଡେରି ଶୁଣେ, ପରମ ସ୍ନେହରେ ନିଜ ଭିତରେ ସଂପାଦି ରଖେ ।

---

(୭୮) "ସବୁବେଳେ ମୋର ଧରିଛ ହାତେ, ଅଛ ମୋର ସାଥେ ସାଥେ
ଧରି ନ ପାରି ମୁଁ ସାରା ଦୁନିଆଁ ଟା, ତାକୁ ଖୋଲି ବୁଲୁଥାଏ ।"
'ଜୀବନସଂଗୀତ'—ଗୀତ-୧୬

(୭୯) "ଫୁଲଟି ଯେବେ ମୋର ଛୁଟିଇ ହେ,
ସେ ତୋ କୁଂଜବନେ ଯାଇ ଫୁଟିଇ ହେ ।" 'ଜୀବନସଂଗୀତ'—ଗୀତ-୪୮
ତୁଳନୀୟ :
"ସେ ନଦୀ ମରୁପଥେ ହାରାଲୋ ଧାରା" ରବୀଂଦ୍ରନାଥ—'ସଂଚୟିତା' ପୃ. ୫୯୨

Digitized by PPRACHIN, SOA

ଏ ବନ୍ଧୁ ଜୀବନରେ ନବାଗତ ନୁହଁନ୍ତି । (୮୦) ତାଙ୍କ ସହ ବନ୍ଧୁତ୍ୱର ସମ୍ପର୍କଟି ମଧ୍ୟ ସଦ୍ୟତନ ନୁହେଁ । ଏ ବନ୍ଧୁ କଲ୍ପାନ୍ତରର ।(୮୧) ଜନ୍ମଜନ୍ମାନ୍ତର ଏ ସମ୍ପର୍କ କିଛିକାଳ କବିଚେତନାରେ ବିସ୍ମରଣ ହୋଇଥିଲା; ମାତ୍ର ବିସର୍ଜନ ଘଟି ନଥିଲା । ଜୀବନ ଓ ମରଣରେ ବି ସେ ବନ୍ଧନ ଅତୁଟ । ବହୁଦିନପରେ ସେଇ ଅତି ପୁରାତନ ବନ୍ଧୁ ଆଜି କବିଙ୍କ ଦ୍ୱାରରେ ସମାଗତ । ତାହାହିଁ ଏଇ ଆସିବାର ଅଭିନବତ୍ୱ । ସେ ଚିର ଈପ୍‌ସିତ ମୁଖଚନ୍ଦ୍ରମା : "ଏତେଦିନେ ଏବେ ଉଦୟ ହୋଇଛି ଉଚ୍ଛଳାଇ ଚିତ୍ତସିନ୍ଧୁ ।"(୮୨) ଚେତନାର ଏ ନବଜାଗରଣରେ ବନ୍ଧୁମୁଖଚନ୍ଦ୍ରାଲୋକିତ ମୁହୂର୍ତ୍ତରେ ଚିତ୍ତ-ସମୁଦ୍ର ସ୍ୱତଃ ଉତ୍‌ଫୁଲ୍ଲିତ । ସେ ବନ୍ଧୁ କିନ୍ତୁ ପ୍ରକୃତରେ ଆଜି ପ୍ରଥମାଗତ ନୁହଁନ୍ତି; ବହୁଭାବରେ, ବହୁରୂପରେ, ବହୁପୂର୍ବରୁ ତାଙ୍କର ପ୍ରାଣ-ସଖୋଳା । ପ୍ରତି କ୍ଷଣର ବିଚିତ୍ର ଘଟଣାପ୍ରବାହ ଭିତରେ ତାଙ୍କର ପ୍ରକାଶ । ସକଳ ଅନୁଭବରେ ସେଇ ପ୍ରିୟଜନର ପ୍ରୀତିସ୍ପର୍ଶ ।(୮୩) ପ୍ରତ୍ୟେକଟି ସ୍ପର୍ଶରେ ନୂତନତାର ରୋମାଞ୍ଚ । ପ୍ରତିଟି ଭିନ୍ନ ରୂପ, ପ୍ରତିଟି ଭିନ୍ନ ସ୍ୱରର ଆବେଦନ ମଧ୍ୟ କବିପ୍ରାଣରେ ବିବିଧ ବିଚିତ୍ର । (୮୪) ତାର ମିଶ୍ର ରାଗର ସ୍ୱରଝଙ୍କାରରେ କବିଚିତ୍ତରେ ବହୁ ଭାବପୁଲକ । ଆନନ୍ଦ ଓ ବେଦନା ସବୁଥିରେ ତାଙ୍କର ସଂଯୋଗ; ଅଶ୍ରୁ ତାଙ୍କ ପ୍ରୀତିର ସୌରଭ, ଖୁସି ତାଙ୍କ ଐଶ୍ୱର୍ଯ୍ୟର ଗୌରବ ।

ଏଇ ଉଚ୍ଚାରଣଗୁଡ଼ିକ କବିଙ୍କର ବିଶୁଦ୍ଧ ଅନୁଭୂତିଲବ୍ଧ ବୋଲି ମନେକରାଯାଇପାରେ । ତତ୍ତ୍ୱ ଓ ଉପଲବ୍ଧି, ଚିନ୍ତା ଓ ଅନୁଭୂତି, ଜୀବନ ଓ ଦର୍ଶନ ଏହା ଭିତରେ ମିଶିଯାଇଛନ୍ତି । ଏଇ ଉପଲବ୍ଧିର ଅବସରରେ ହିଁ ଜୀବନର ସକଳ ଭାବ ଅନୁଭୂତି ଆଉ ବ୍ୟକ୍ତିଗତ ନ ହୋଇ ଜୀବନ-ଅଭିନ୍ନ ଦେବତାଙ୍କର ହୋଇଯାଏ । ସକଳ ଅନୁଭବ ଭିତରେ ଯାହାର ଉଚ୍ଚାରଣ, ସେଇ ହିଁ ଶ୍ରୋତା; ଜୀବ ମାଧ୍ୟମରେ ତାହାର ଅଭିପ୍ରାୟମାନ ଅଭିବ୍ୟକ୍ତ ଲୋଡ଼ିଥାଆନ୍ତି । ଏଇ ଅବକାଶରେ ହିଁ କହିବା ସମ୍ଭବ : "ତୋହର ବେଦନା ତୋହର ପ୍ରାଣେ, ସବୁ ତୋହର ।"(୮୫) ଅଦ୍ୱୈତ ତତ୍ତ୍ୱ, ଭକ୍ତି ତତ୍ତ୍ୱ, ଯାବତୀୟ ଦ୍ୱନ୍ଦ୍ୱର ଊର୍ଦ୍ଧ୍ୱରେ ମିଷ୍ଟିକର ଏ ଉଚ୍ଚାରଣ । ଅଧ୍ୟାତ୍ମସାଧନା ଓ ଭକ୍ତିଭାବନା ରହସ୍ୟାନୁଭୂତିର ଚରମକୁ ସ୍ପର୍ଶ କରି ଯେପରି କବିଙ୍କଠାରେ ବାଙ୍ମୟ ହୋଇଛନ୍ତି : "ସବୁ ମୋହର, ସବୁ ତୋହର ।" ଏହାପରେ କବିସତ୍ତାରେ ସର୍ବସମର୍ପଣର ସ୍ୱୀକୃତି : 'ତୁମର ଇଚ୍ଛା ପୂର୍ଣ୍ଣହେଉ, ଜୀବନର ସକଳ କାମନା ବାସନା ତୁମ ପଦତଳେ ପଡ଼ି ରହିଯାଉ ।' ଏ ସମ୍ପର୍କରେ କବି ଆତ୍ମାର ଶେଷ ଘୋଷଣା : "ହେବନାହିଁ ତଳେ କ୍ଷୁଣ୍ଣ ।" (୮୬) ସଂସାରରେ ନାଟ ସରିଯାଉ, ଜୀବନର ହାଟ ଶୂନ୍ୟ ପଡ଼ିଯାଉ; ସବୁର ଶେଷରେ ହିଁ ଆତ୍ମାହୁତିର ପୂର୍ଣ୍ଣତା, ଶରଣାଗତିର ପ୍ରଗାଢ଼ତା ଆସିବ । ବଳବତୀ ପାର୍ଥିବ ବାସନାକୁ ପରିତ୍ୟାଗ କରିବା ଦୁଷ୍କର । ଏକମାତ୍ର ଉପାସ୍ୟ ବନ୍ଧୁଙ୍କର ଶକ୍ତି ସାହାଯ୍ୟରେ

(୮୦) "ସେ ତ ନୂଆ ନୁହେ ଗୋ, ନୁହେ ନୂଆ/ଜୀବନେ ଥୁଆ ।" 'ଜୀବନସଂଗୀତ'—ଗୀତ-୧୯

(୮୧) "କେଉଁ ଜନମର ବନ୍ଧୁ ସେ ମୋର" 'ଜୀବନସଂଗୀତ'—ଗୀତ-୩୪

(୮୨) 'ଜୀବନ ସଂଗୀତ' ଗୀତ-୩୪

(୮୩) "ଶବଦେ ପରଶେ ଆସୁ, ରୂପରସଗନ୍ଧେ ନିତି ନିତି ନବ ଛନ୍ଦେ ।" 'ଜୀବନସଂଗୀତ'—ଗୀତ-୩୯

(୮୪) "ତୁହି କ୍ଷଣେ କ୍ଷଣେ ଆସୁ ମୋର ପ୍ରାଣେ ।" 'ଜୀବନସଂଗୀତ'—ଗୀତ-୩୫

(୮୫) 'ଜୀବନସଂଗୀତ'—ଗୀତ-୩୨

(୮୬) 'ଜୀବନସଂଗୀତ'—ଗୀତ-୪୬

Digitized by PPRACHIN, SOA

ସେମାନଙ୍କୁ ଅତିକ୍ରମ କରିବା । 'ନଜର' ବୋଲି ଜାବୁଡ଼ି ଧରିଥିବା ପର୍ଯ୍ୟନ୍ତ ଏ ଇଚ୍ଛାର ଅକ୍ଟୋପାଶ-ବନ୍ଧନରୁ ମୁକ୍ତି ମିଳେନାହିଁ । ମାତ୍ର ସେମାନଙ୍କୁ ଦେବତାର ପଦତଳେ 'ନଜର' କରି ସମର୍ପି ଦିଆଯାଇପାରେ । ଏଇ ସମର୍ପଣ ଶେଷ ପାର୍ଥିବ ସମର୍ପଣ । ଜୀବନର ଶେଷ ଆତ୍ମକର୍ମ । କବି ଅକୁଣ୍ଠ ଶରଣାଗତିର ନିର୍ବାଧ ଉଚ୍ଚାରଣ କରନ୍ତି, "ଆଜ ମୋ ଜୀବନ କର୍ମ ଶେଷେ, ଜୀବନସ୍ୱାମୀ ଆସ ହେ ଦ୍ୱାରେ ।" (୮୭) ଏ ସ୍ୱରରେ ଆଉ ଅଭିମାନ ନାହିଁ, ଅଭିଯୋଗ ନାହିଁ । ହୃଦୟର ସଂଚୟ ଯେତେକିଛି ହର୍ଷ-ବିଷାଦ ସବୁ ପରମାତ୍ମାଙ୍କୁ ନୈବେଦ୍ୟ ଲାଗିହୋଇ ଜୀବନର ଶେଷଲଗ୍ନକୁ ମହିମାମଣ୍ଡିତ କରିଦେଇଛି ।

ସମର୍ପଣ-ଯଜ୍ଞର ସମାରମ୍ଭ ହୋଇଥିଲା ଅଶ୍ରୁ-ତର୍ପଣରେ; ତାର ପୂର୍ଣ୍ଣାହୁତି ଘଟିଛି ଆନନ୍ଦର ମନ୍ତ୍ର ଓଁକାରରେ । ଘରମୁକ୍ତ ହେବାର ଉଶ୍ୱାସ ଉଲ୍ଲାସ ନିଶ୍ଚିତ ନୃତ୍ୟ ରଚନା କରିଛି, "ଦେ ମୋତେ ବାଇଆକରି, ଆରେ ମୋର ବାଇଆରଜା । (୮୮) କାନ୍ତକବିଙ୍କର ଏହା ଏକ ବିପୁଳ ଭାବବ୍ୟଂଜନାମୟ ଗମ୍ଭୀର ଅର୍ଥବାହୀ ସଂଗୀତ ଯାହା ରହସ୍ୟବାଦୀ ଭାବୋନ୍ମାଦନାର ବିହ୍ୱଳାବସ୍ଥାକୁ (ecstasy) ପୂର୍ଣ୍ଣ ମୂର୍ତ୍ତ-ରୂପ ଦେଇଛି ।

ଅତୀନ୍ଦ୍ରିୟତା ଭିତରକୁ ପେନସିବା ପାଇଁ ଚେତନା ଉପରେ ନୃତ୍ୟସଂଗୀତର ପ୍ରଭାବ ଅପରସୀମ, ଇନ୍ଦ୍ରିୟକୁ ସମ୍ମୋହନ ମାର୍ଗରେ ଦିବ୍ୟ ଅଭିମୁଖେ ସଂଗ୍ଚାଳିତ କରିବାରେ ନୃତ୍ୟସଂଗୀତର ଏଇ ଶକ୍ତିକୁ କୀର୍ତ୍ତନ, ଭଜନ, ପ୍ରାର୍ଥନା, ମନ୍ତ୍ର ଉଚ୍ଚାରଣ ପ୍ରଭୃତିରେ ଅଧ୍ୟାତ୍ମସାଧନ ବିନିଯୋଗ କରିଥାଏ । ସୂଫୀ ସାଧନାର 'ସମା' (୮୯) ସଂଗୀତର ଅତୀନ୍ଦ୍ରିୟ ଆବେଦନର ଏକ ମହତ୍ତ୍ୱପୂର୍ଣ୍ଣ ସ୍ୱୀକୃତି ଦେଖାଯାଏ । (୯୦) ଏସବୁ ଆସର 'ମିଷ୍ଟିକ୍ ଡାନ୍ସ' (Mystic Dance) ରୂପେ ଭାବସାଧନାର ଏକ ପ୍ରୟୋଜନୀୟ ମାର୍ଗସୋପାନ ରୂପେ ମଧ୍ୟ ଗୃହୀତ । ବୈଷ୍ଣବ ଓ ବାଉଲ ସଂପ୍ରଦାୟରେ ଏହାର ବିଶେଷ ଉପଯୋଗ ରହିଛି ।

କବି ଜୀବନ ସ୍ୱାମୀଙ୍କୁ ଗଭୀର ଆତ୍ମୀୟତାରେ 'ବାଇଆରଜା' ସଂବୋଧନ କରିଛନ୍ତି; ନିଜେ ମଧ୍ୟ ବାଇଆ ହୋଇଯିବାକୁ ଚାହିଁଛନ୍ତି । ପାଗଳାମିର ମନସ୍ତତ୍ତ୍ୱ ବିଚାରରେ ବ୍ୟକ୍ତିର ସେଇ ଅବସ୍ଥାକୁ ସୂଚିତ କରିଥାଏ, ଯାହା ସାଧାରଣ ସ୍ୱୀକୃତ ବ୍ୟାବହାରିକ କ୍ରିୟା ପ୍ରତିକ୍ରିୟା ସହ ସାମଂଜସ୍ୟ ବହିର୍ଭୂତ । ପରିପାର୍ଶ୍ୱ ଓ ପ୍ରଚଳିତକୁ ବିସ୍ମୃତ ବା ଅସଚେତନ ହେବା ଏବଂ ସାମାଜିକ ସ୍ୱୀକୃତିମାନ, ପ୍ରଚଳିତ

---

(୮୭) 'ଜୀବନସଂଗୀତ'—ଗୀତ-୩୦

(୮୮) 'ଜୀବନସଂଗୀତ'—ଗୀତ-୫୨

(୮୯) "ସମା (Sama) Hebrew, Shema'—'hear, denoting God's message of love,—Qurratulain Hyder-

(Imprint—Vol-VII—No. 3, June 1967-p. 9)

(୯୦) Dance, (only) where you break through, you break yourself. holy) men while on the battle ground of spirit···freed from the hand of self, they clap a hand...they make a dance. From with in the musicians strike the tambourine, at their ecstasy the seas burst in to foam/you see it or not, but for their ears and leaves, too, on the boughs, are clapping their hands."

Rumi-qt-imprint-No. 3 Vol Vii—p. 9

Digitized by PPRACHIN, SOA

ବ୍ୟବସ୍ଥାଧାରା ପ୍ରତି ଅନବଧାନ ରହିବା ପାଗଲାମିର ଅନ୍ୟତମ ଲକ୍ଷଣ ବୋଲି ଧରାଯାଏ । ଅର୍ଥାତ୍ ପାଗଳ କୌଣସି ସାମାଜିକ ସ୍ୱୀକୃତ ପନ୍ଥାର ଅନୁଗାମୀ ହେବାକୁ ନିଜକୁ ବାଧ୍ୟ ମନେକରେନାହିଁ । ଫଳରେ ସେ ଏକ ଅବାଧ ମାନସିକ ସ୍ୱଚ୍ଛନ୍ଦତା ଓ ନିଶାଗ୍ରସ୍ତ ପରି ଆତ୍ମବିସ୍ମୃତିଜନିତ ଉନ୍ମାଦ ମୁକ୍ତ ଉଚ୍ଛ୍ୱାସର ନିର୍ବାଧତାକୁ ଲାଭ କରିଥାଏ । ସେ ଆତ୍ମମଗ୍ନ କିଂବା ଆତ୍ମବିସ୍ମୃତ ଏବଂ ସେଇ ସଂଗେ ବିଶ୍ୱବିସ୍ମୃତ ମଧ୍ୟ । ତାହାହିଁ ତାହାର ମୁକ୍ତ ବିଳାସ ଯାହାକୁ ମିଷ୍ଟିକ ଅସ୍ତିତ୍ୱର ସହଜ-ବିଳାସର ଅଭାସରୂପ ବୋଲି ମଣେ ।

ଈଶ୍ୱର ପ୍ରେମରେ କବି କେବଳ ସେଇ ଉନ୍ମାଦନାକୁ କାମନା କରିଛନ୍ତି, ଯାହା ତାଂକୁ ସବୁ ଭୁଲାଇ ଦେବ । ସେ ଈଶ୍ୱରଂକର ଉନ୍ମାଦକାରୀ ପ୍ରେମ-ଆସବ ପାନ କରି ଆନଂଦମତ୍ତ ରହିବାକୁ ଚାହାଂନ୍ତି । ସର୍ବ-ବିସ୍ମୃତ, କେବଳ ସେଇ ଅଭୁଲା ଦେବତାର ପ୍ରେମ-ମତ୍ତ ହୋଇ ରହିବାର ଏ ଭାବ ମଧୁରତାକୁ ବାଉଲଗାନରେ (୯୧) ମନୋଜ୍ଞ ପ୍ରକାଶ ମିଳିଛି । ଲକ୍ଷ୍ମୀକାଂତ ତ ନିଜକୁ ସେଇ ପ୍ରେମ-ପାଗଳ ବାଉଲ ରୂପେହିଁ ଦେଖିଛଂନ୍ତି । କବି ପାଗଳପରି ସବୁ ବିସ୍ମୃତ ହେବାକୁ ଚାହିଁବାବେଳେ ନିଜର ନିର୍ବିକାରକୁ ମଧ୍ୟ କାମନା କରଂନ୍ତି । 'ଲଜ୍ଜା, ଘୃଣା, ଭୟ'—ସର୍ବାର୍ପିତ ବୈଷ୍ଣବୀୟ ଭକ୍ତିସାଧନା ପରି ସୂଫିସାଧନାରେ ମଧ୍ୟ ଏଇ ତିନି ପ୍ରବୃତ୍ତିମୁକ୍ତ ଚିତ୍ତର ଗୁରୁତ୍ୱ ଅପରିହାର୍ଯ୍ୟ । ଶିଶୁ, ଯୋଗୀ, ପ୍ରେମିକ ଓ ଉନ୍ମାଦ ଏଇ ପ୍ରବୃତ୍ତିମୁକ୍ତ । ସଂସାର ସମସ୍ତ ବିକାରମୁକ୍ତ ଓ ସକଳ ବର୍ଜନପର ନିର୍ମଳଚେତନା ତାର ସହଜ ଅସ୍ତିତ୍ୱର ଯେଉଁ ଆନଂଦମୁଗ୍ଧ ପ୍ରକାଶରୂପ ବାଢ଼େ, ତାହାହିଁ ପାଗଳର ନୃତ୍ୟ, ଆତ୍ମଖେଳା, ବିଶ୍ୱଖେଳା ନଟରାଜଙ୍କ ନୃତ୍ୟ ।

ପାଗଳର ନୃତ୍ୟରେ ତାଳ-ମାନ-ଛଂଦ-ଲୟ ନଥାଏ । ଶାସ୍ତ୍ର ନିୟମର ବଂଧନ ସେ ମାନେନାହିଁ । ତାର ପ୍ରାଣ ଆନଂଦର ଛଂଦରେ ସ୍ପନ୍ଦିତ । ହୃଦୟର ଆନଂଦହିଁ ତାର ଛଂଦ । ଆଉ ସେ ହୃଦୟ-ଛଂଦ ଏକ ବିଶ୍ୱଛଂଦର ସ୍ପଂଦନଚାଳିତ ଯାହା ମହାନଟଂକର ମହାନୃତ୍ୟର ଆଦିଛଂଦରୁ ସଂଜାତ । ପାଗଳର ନୃତ୍ୟ ଉଦ୍ଦେଶ୍ୟହୀନ । ଅଂତରାଳରେ ରହି ଜୀବନ ଦେବତା ନଟରାଜ ତାର ନୃତ୍ୟ ନିୟଂତ୍ରଣ କରଂନ୍ତି । ତାଂକ ଡଂବରୁ ନାଦରେ ଶୂନ୍ୟ ମଂଡଳରେ ସୃଷ୍ଟିର ପ୍ରଥମ ସଂବେଗ ବାଜେ, ପ୍ରଳୟର ଭୈରବବାଦ୍ୟ ମଧ୍ୟ ଶୁଭେ । ସୃଷ୍ଟିକୁ ନିଶ୍ଚେତନାର ଅଂଧକାରରୁ ନିଦ୍ରୋତ୍ଥିତ କରିବାପାଇଁ ଯେପରି ତାଂକର ଏ ତବ ତବ ଆହ୍ୱାନ । ନୃତ୍ୟରେ ଉର୍ଦ୍ଧ୍ୱ-ଉତ୍ଥିତ ପଦ ଯେପରି ପାର୍ଥିବତାରୁ ବିମୁକ୍ତି ଘୋଷଣାକରେ । ପୃଥିବୀର ଆକର୍ଷଣରୁ ଏହା ମୁକ୍ତିର ଉଲ୍ଲଂଘନ ସ୍ୱରୂପ । ପରମୁହୂର୍ତ୍ତରେ ଧରଣୀରେ ପୁନଶ୍ଚ ସେ ପଦପାତ ଜୀବନର ସଘୋଷ ଜୟନାଦ କରେ । ଅସ୍ତିତ୍ୱର ସହଜ ମୁକ୍ତ ଓ ସ୍ୱୟଂସୃଷ୍ଟିର ଛଂଦଟି ଏଇପରି ଉତ୍ଥାନ ପତନର ପରମପଦ ଦୁଇଟିକୁ ଆଶ୍ରୟ କରି ଆବର୍ତ୍ତିତ ହେବାରେ ଲାଗିଥାଏ । ଲକ୍ଷ୍ମୀକାଂତଂକ ପାଗଳଚିତ୍ତ ସେଇ ନୃତ୍ୟବିଭୋର । ସେହି ଉନ୍ମତ୍ତ

---

(୯୧) "That is why, brother, I became a mad-cap Baul. / No body I obey, nor injunctions, canons or customs / Now no man-made distinctions have any hold on me. And I revel only in the gladness of my own welling love. / In love there is no saparation, but commingling always / So I rejoice in song and dance, with each and all."

—Qt. Kshiti Mohan Sen. 'Medieval Mysticism of India' Appendix—IV

Digitized by PPRACHIN, SOA

ନୃତ୍ୟକଂପିତ ଉଲ୍ଲାସମୟ ମୁହୂର୍ତ୍ତରେ ମହାଜୀବନସହ ବ୍ୟକ୍ତି ଜୀବନର ଏକକ ରାଗିଣୀର ସ୍ୱରସଂଗମ ଘଟେ । ଜନ୍ମାଂତରର ବିସ୍ମୃତ ରାଗିଣୀମାନ ସେ ଲଗ୍ନରେ ଜାଗିଉଠଂନ୍ତି । ସର୍ବତ୍ର ଜାଗରଣ, ସର୍ବତ୍ର ପୁଲକ କଂପନ । କବି ଆବିଷ୍କାର କରଂନ୍ତି, ନିରଂତର ଯେ ଖୋଜୁଥିବା ସେହି ଅଦୃଶ୍ୟ ଦେବତା ଅନାଦି କାଳରୁ ବହୁ ବିଚିତ୍ରଭାବରେ ତାଂକ ସହ ପଦମିଳାଇ ଚାଲିଛଂନ୍ତି । ସୁଖରେ ବା ଦୁଃଖରେ, କେବେ ବି ସେ ସଂଗ ତ୍ୟାଗ କରିନାହାଂନ୍ତି ।

ପ୍ରୀତିମୁଗ୍‌ଧ ଅଂତରାତ୍ମାର କୃତଜ୍ଞ ସ୍ୱୀକାରୋକ୍ତି, "ରଚିଛି ଏ ମଧୁଶଯ୍ୟା, ଚିର ବାଂଛିତ, ଆହେ ବାଂଛିତ ।" (୯୨) ଏ ରହସ୍ୟବାଦୀ ଅନୁଭବର ଅଂତରାଳରେ ଏକ୍ ଗଭୀର ମେଟାଫିଜିକାଲ ସଂକେତ ରହିଛି । ଅଥଚ ଏହା ଏକ ଦାର୍ଶନିକ, ତତ୍ତ୍ୱମୂଳକ ଅମୂର୍ତ୍ତ ଚିଂତାର ଆବିସଷ୍ଟ୍ରାକ୍ଟ ସଂଗୀତ ନୁହେ । କବିସତ୍ତାର ପାର୍ଥିବ ଓ ଅପାର୍ଥିବ, ଦେହ ଓ ଦେହାତୀତ, ଇଂଦ୍ରିୟ ଓ ଇଂଦ୍ରିୟୋତ୍ତର ଚେତନାର ସାମଗ୍ରିକ ଏବଂ ନିବିଡ଼ ଉପଲବ୍‌ଧିରୁ ଏହା ଉଚ୍ଚାରିତ ।

କବି ହୃଦୟଂଗମ କରଂନ୍ତି, ଈଶ୍ୱର ଯେ ସୀମାର ପ୍ରୀତିକାମନା କରଂନ୍ତି, ତାର ଅଲକ୍ଷ୍ୟରେ କଳ୍ପକଳ୍ପାଂତ କାଳ ତାକୁ ପ୍ରସ୍ତୁତ କରୁଥାଂନ୍ତି ମଧ୍ୟ । ତାହାହିଁ ତାଂକ କରୁଣା । ସଚେତନ ଜୀବ ସାଧନାଦ୍ୱାରା ନିଜକୁ ପ୍ରସ୍ତୁତ କରିପାରିଲେ ଈଶ୍ୱର ସ୍ୱୟଂ ସେହି ପରମ ଲଗ୍ନର ରଚନା କରଂନ୍ତି । ତାଂକର ନିରଂତର କରୁଣା ବ୍ୟତିରେକେ ଜୀବର ସେ ସାଧନା ସଂଭବ ହୁଅଂତା ନାହିଁ ।

ପ୍ରୀତି ସଂପର୍କର ସେହି ଦୁର୍ଲଭତମ ପରିଣାମଟି—ଅନଂତକାଳ ଧରି ଆତ୍ମା-ବଧୂର ଯାହା ପାଇଁ ପ୍ରସ୍ତୁତି, ସମଗ୍ର ଜୀବନର ଆଶା ଓ ପ୍ରତୀକ୍ଷା ଯେଉଁ ବିରଳ ଅବକାଶରେ ସାର୍ଥକତା ଖୋଜିପାଏ, ସମଗ୍ର ସଂପର୍କର ଅତୀତ ଓ ଭବିଷ୍ୟତ ଯେଉଁଠି ଏକ ବିଂଦୁରେ ଉଦ୍‌ଭାସିତ ହୋଇଉଠଂନ୍ତି, ସେଇ ପରମ ମିଳନଲଗ୍ନର ଆବିର୍ଭାବରେ କବିପ୍ରାଣ କୃତଜ୍ଞତାରେ ପ୍ରଣାମ ଆନତ ହୋଇଯାଇଛି । ବହିଃପ୍ରକୃତି ଓ ଅନ୍ତର୍ଜଗତ, ସର୍ବତ୍ର ମିଳନ ରାଗିଣୀର ମୂର୍ଚ୍ଛନା ଜାଗିଛି । କବି କେବଳ ଭାବକଳ୍ପନା ନୁହିଁ, ସତ୍ତାର ସମଗ୍ରତ୍ୱକୁ ସମର୍ପଣ କରି ଏ ମୁହୂର୍ତ୍ତକୁ ଚରିତାର୍ଥ, ଜୀବନକୁ ସାର୍ଥକ କରିବାକୁ ବ୍ୟଗ୍ର । କୁମାରୀ-ଆତ୍ମାର ଯୁଗଯୁଗାଂତ ସାଧନା ଓ ପ୍ରସ୍ତୁତି ଯେପରି କି ଏଇ ଗୋଟିଏ ଜନ୍ମର, ଏଇ ଶୁଭବେଳାରେ ଚିର ସଫଳତା ପାଇଯାଇଛି । ଆତ୍ମା ସେଇ ଅପେକ୍ଷାର କାହାଣୀ, ଜନ୍ମ ଜନ୍ମ ସଂଚିତ ପ୍ରଣୟ-ବେଦନାକୁ ପ୍ରାଣପ୍ରିୟତମଂକୁ ଶୁଣାଇବାକୁ ଚାହେଁ । କବିଚେତନାର ପ୍ରତି ସ୍ତରରେ, ସମର୍ପଣ-ବ୍ୟାକୁଳ ଅସ୍ତିତ୍ୱର ପ୍ରତି ଅଣୁରେ ଏ ଅଭାବିତ ମୁହୂର୍ତ୍ତର ବଂଦନା ଉତ୍ସବ ରଚିତ ହୋଇଛି । ମର୍ତ୍ତ୍ୟ ଜୀବନରେ କିଛି ତ ବ୍ୟକ୍ତିର ନିଜସ୍ୱ ନୁହେ । ତଥାପି ଏଇ ସମର୍ପଣର ଆକୁତିଟିକକ ତାର 'ମୋର' । ଜୀବନରେ ଯାହା କିଛି ବ୍ୟକ୍ତିକୁ ତାର ଅଧିକାର ସୂତ୍ରରେ ମିଳିଥାଏ, ସେସବୁ ସେ 'ମୁଁ'ର ସ୍ୱତଂତ୍ର ସଂବଂଧ ଭିତରେ ହିଁ ଆସିଥାଂନ୍ତି । ମଣିଷ ସେ 'ମୁଁ'କୁ ସମର୍ପଣ-ସାମଗ୍ରୀ ରୂପେ ଦାନ କରିବାର ପୂର୍ଣ ଅଧିକାରକୁ ମଧ୍ୟ ଏଇ ସୂତ୍ରରେ ଲାଭ କରିଥାଏ । ଦାନ-ଦ୍ରବ୍ୟ ନଥିଲେ ସମର୍ପଣ-କ୍ରିୟାର କିଛି ଅର୍ଥ ହୁଏନା । ପୁଣି ଦେବା-ନେବା ସଂପର୍କ ସ୍ଥାପନପାଇଁ ଦୁଇପକ୍ଷ ଲୋଡ଼ା । ପ୍ରେମ ସଂପର୍କରେ 'କିଛି'ହିଁ ଦେବାକୁ ପଡ଼େ, ସେ ଦେବାଟା ନିଜକୁ । ଏଇ ଦେବାର ସାମର୍ଥ୍ୟ ଓ ଦାନର ଆନଂଦ ଜାଣିବାପାଇଁ ଯେପରି ଅସୀମର ଆପଣାଠାରୁ ସୀମା ରୂପକ ଏ ହିଁ ସୃଷ୍ଟି । ସବୁ ଦେଇ ସାରିବାପରେ ସତ୍ତାର 'ସ୍ୱ' ବାକୀ ରହିଯାଏ । ସବୁ ବିସର୍ଜନ ପରେ ମଧ୍ୟ ଅସ୍ମିତାର ପରିଚୟ ବଂଚି ରୁହେ । ପ୍ରେମ ସାଧନାରେ ଏଇ ଅସ୍ମିତା ସମର୍ପଣ ଅଂତିମ ସମର୍ପଣ । ଅନ୍ୟଥା ଭାବସାଧନା ମାର୍ଗରେ ଏହାହିଁ ସମୟ ବିଶେଷରେ ଦୁର୍ଜୟ ଅଭିମାନ ରୂପେ ଅଂତରାୟ ସୃଷ୍ଟି କରିପାରେ । ସେ ଅଭିମାନକୁ କବି ବିସର୍ଜନ କରିଦେଇ

(୯୨) 'ଜୀବନସଂଗୀତ'—ଗୀତ-୨୦

ଆତ୍ମନିବେଦନ ପୂର୍ଣ୍ଣ କରିବାକୁ ଗୃହ୍ୱାଂତି । (୯୩) ତାହାହିଁ ସକଳ ଭକ୍ତିସାଧନାର, ପ୍ରୀତିସାଧନାର, ଅଧ୍ୟାତ୍ମସାଧନାର ବା ରହସ୍ୟସାଧନାର ଶେଷ ନିବେଦନ ।

ଏଇ 'ମୋର'ର ସମର୍ପଣ ପରେ ଅସୀମ ଓ ସୀମାର ଶେଷ ବ୍ୟବଧାନ ଲୋପପାଏ । ନଦୀ ସମୁଦ୍ରରେ ମିଶିଯାଏ । ବ୍ୟକ୍ତି ଜୀବନ ପ୍ରେମ ସୁଂଦରଂକ ଆନଂଦର, ସ୍ୱପ୍ନର ଫୁଲ ହୋଇ ଫୁଟିଯାଏ । ହୃଦୟରେ ପଦ୍ମ-ମହକ ଭରିଯାଏ । ବିରହ-ଯମୁନାର ଶୂନ୍ୟତଟକୁ ପୂର୍ଣ୍ଣ କରି ଶ୍ୟାମସୁଂଦରଂକ ମଧୁର ବଂଶୀତାନ କବି ମନର ବ୍ରଜ ବୃଂଦାବନକୁ ପ୍ରୀତି ସୁଧାଧାରରେ ପରିପ୍ଲୁତ କରିଦିଏ ।

□□□

---

(୯୩) "ମୋର ବୋଲି ଯାହା କିଛୁ ଅଛି
ଆଜକାର ଲଗି ରଖିଛୁ ସଂପାଦ ।"

'ଜୀବନସଂଗୀତ'—ଗୀତ-୭୩

# କୁଂତଳାକୁମାରୀ ସାବତ (ଖ୍ରୀ : ୧୯୦୦–୩୮)

କୁଂତଳାକୁମାରୀଙ୍କ ଆବିର୍ଭାବକାଳ ଭାରତବର୍ଷରେ ବ୍ୟାପକ ରାଷ୍ଟ୍ରୀୟ ଜାଗରଣ ଓ ସାମାଜିକ ସଂସ୍କାର-ଚେତନା ସମୃଦ୍ଧ ଥିଲା । ସାହିତ୍ୟରେ ତାଂକର ପ୍ରବେଶକାଳ ଏକ ଭିନ୍ନ ଓ ପ୍ରତିକ୍ରିୟାପର ସାମାଜିକ ବ୍ୟବସ୍ଥାକ୍ରମ ଭିତରେ ନୂତନତାର ଆସ୍ୱାଦନ ଅଭିଳାଷୀ ଥିଲା । ପ୍ରଥମ ମହାସମରୋତ୍ତର ରାଜନୈତିକ ଓ ସାମାଜିକ ପରିବର୍ତ୍ତନର ଫଳ ସ୍ୱରୂପ ସମସାମୟିକ ଭାରତୀୟ କାବ୍ୟଚେତନାରେ ନ୍ୟୁନାଧିକ ପ୍ରାଚୀନ ଗତାନୁଗତିକ କାବ୍ୟାଦର୍ଶ ପ୍ରତି ବିମୁଖତା ଓ ବିଦ୍ରୋହଭାବ ପ୍ରକାଶ ପାଉଥିଲା । ଏ ବିଦ୍ରୋହ ସ୍ଥୂଳତା ପ୍ରତି ସୂକ୍ଷ୍ମାନୁଭୂତିର; ଉପଦେଶାତ୍ମକତା, ତାତ୍ତ୍ୱିକତା ପ୍ରତି ସୌଂଦର୍ଯ୍ୟର, ପ୍ରେମର ତଥା ଆତ୍ମାନୁଭୂତିର ବୋଲି କୁହାଯାଇପାରେ । ଏସବୁ ଭାବଚେତନାର ମୂଳପ୍ରେରଣାଟି ଥିଲା ବ୍ୟକ୍ତିଗତ ବିଶିଷ୍ଟତାବାଦ ଯାହା ପାଶ୍ଚାତ୍ୟ ରୋମାଂଟିକ ଭାବାଦର୍ଶରୁ ଉତ୍ସାରିତ ହୋଇ ରବୀଂଦ୍ରନାଥ, ସରୋଜନୀ ନାଇଡୁ ପ୍ରମୁଖଙ୍କ ଦ୍ୱାରା ଭାରତୀୟ କାବ୍ୟମାନସକୁ ନବ ନବ ଦିଗଂତ ଗ୍ରହଣ ପ୍ରତି ଉନ୍ମୁଖ କରିଥିଲା । କୁଂତଳାଂକ ପୂର୍ବବର୍ତ୍ତୀ ଓଡ଼ିଆ ସାହିତ୍ୟରେ ପ୍ରେମଭାବନାର ସାହିତ୍ୟିକ ବିଗ୍ରହ ସହ ସାମାଜିକ ବିଧିବ୍ୟବସ୍ଥାର ଘନିଷ୍ଠ ସଂପର୍କ ଥିଲା । ପ୍ରଣୟଚିତ୍ର ପ୍ରାୟଶଃ ଆଖ୍ୟାନ, ଭିନ୍ନ ଚରିତାଶ୍ରିତ ବା ଆଖ୍ୟାୟିକାମୂଳକ ଥିଲା । ବ୍ୟକ୍ତିଗତ ପ୍ରେମାନୁଭୂତିର ସ୍ପଷ୍ଟ ଉନ୍ମୋଚନପୂର୍ଣ୍ଣ କାବ୍ୟାଶୀର୍ବାଦ ଲାଭ କରିପାରିନଥିଲା । ଯୁଦ୍ଧ ପରବର୍ତ୍ତୀ କାବ୍ୟଚେତନାରେ ବ୍ୟକ୍ତିଗତ ପ୍ରେମଚିତ୍ର ସାହିତ୍ୟିକ ମର୍ଯ୍ୟାଦାର ଅବକାଶ ଲାଭକଲା । ତଥାପି ଏ ପ୍ରେମ ସାମାଜିକ ମର୍ଯ୍ୟାଦା ଉଲ୍ଲଂଘନ କରିବାର ସାହସ କରିନଥିଲା । ତେଣୁ ସ୍ୱଏତ ରୋମାଂଟିକ୍ କଳ୍ପନାଶ୍ରୟୀ ବା ଆଧ୍ୟାତ୍ମିକ ବ୍ୟଂଜନାଶ୍ରୟୀ ହୋଇ ପଡ଼ୁଥିଲା । ଏ ସମୟରେ କାବ୍ୟଚେତନାରେ ବ୍ୟକ୍ତିଗତ ପ୍ରେମର ଉଦାତ୍ତୀକରଣ ଏବଂ ପ୍ରେମାନୁଭୂତିର ପ୍ରକାଶରେ ସାଂକେତିକତା ବା ପ୍ରତୀକାତ୍ମକତା ସୁଲଭ ଥିଲା ।

କୁଂତଳାକୁମାରୀଙ୍କ କାବ୍ୟସ୍ୱରରେ ପ୍ରେମ ଭାବନାର ଉଦାତ୍ତୀକରଣ ପ୍ରବୃତ୍ତିଟି ଲକ୍ଷଣୀୟ । ବ୍ୟକ୍ତିନିଷ୍ଠ ପ୍ରଣୟଭାବନା ସଂଭୂତ ଏକ ଭାବ-ଗୂଢ଼ ତନ୍ମୟତା ଲୌକିକତାରୁ ଅଲୌକିକତା ଅଭିମୁଖୀ । ନାୟିକବଂକ ସାଧିକା ସତ୍ତାର ପ୍ରେମ ଧରଣୀର ଧୂଳିସ୍ପର୍ଶକରି ଅସୀମ ଆକାଶରେ ସଂଚରଣଶୀଳ ହେବାର ଅଭିଳାଷୀ ।

କୁଂତଳାକୁମାରୀଙ୍କ ରଚନାଗୁଡ଼ିକର ମୁଖ୍ୟବିଭାବ ତିନୋଟି; ଯଥା –(୧) ଜାତୀୟବାଦୀ ଚେତନା, (୨) ପ୍ରକୃତି ଭାବନାତ୍ମକ (୩) ପ୍ରଣୟଚିତ୍ର ମୂଳକ । ପ୍ରକୃତି ଓ ପ୍ରେମଭାବନାତ୍ମକ ରଚନାଗୁଡ଼ିକରେ ଅଧ୍ୟାତ୍ମ ଜିଜ୍ଞାସା ଓ ଅସୀମାନୁରାଗ ରୂପାୟିତ । ପ୍ରେମାନୁଭୂତିର ବୌଦ୍ଧିକ ବିଶ୍ଳେଷଣ ପ୍ରକୃତିମୂଳକ କବିତାମାନଙ୍କର ବୈଶିଷ୍ଟ୍ୟ । ପ୍ରକୃତି ଓ ପ୍ରେମ କବିଙ୍କ ଆଧ୍ୟାତ୍ମିକତାର ସହ ଘନସଂଶ୍ଳିଷ୍ଟ ।

କୁଂତଳାଂକ କାବ୍ୟର ରହସ୍ୟବାଦୀ ପ୍ରେମଚେତନା ସଂପର୍କରେ ସ୍ପଷ୍ଟ ଓ ଦ୍ୱିଧାହୀନଭାବେ କୁହାଯାଇପାରେ ଯେ ଏହା ତାଂକର ପାର୍ଥିବ ପ୍ରଣୟାନୁଭୂତିର ଉଦାତ୍ତ ରୂପାଂତର ପ୍ରୟାସ । କୁଂତଳାଂକ ଦିବ୍ୟାନୁରାଗ ଲୌକିକରୁ ଅଲୌକିକତା ପ୍ରତି ଏକ ପ୍ରକ୍ଷେପ । ହୋଇପାରେ, ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଲୌକିକ ପ୍ରେମରେ ଅସଫଳତା ତାଂକର ବିଭୁପ୍ରଣୟ କାମନା ଓ ବିରହ ଚେତନା ଭିତରେ ପରିତୃପ୍ତି ଏବଂ ସାର୍ଥକତା ଲୋଡ଼ିଛି ।

Digitized by PPRACHIN, SOA

ବ୍ୟକ୍ତିଗତ ପାର୍ଥିବ ପ୍ରୀତି ଅପାର୍ଥିବ ପ୍ରେମସାଧନା ଉନ୍ମୁଖ ହେବାର ଦୃଷ୍ଟାଂତ ପ୍ରେମର ଆଧ୍ୟାତ୍ମିକ ଇତିହାସରେ ବିରଳ ନୁହେଁ । ଲୌକିକ ପ୍ରଣୟଭାବନାରୁ ଚେତନାର ନିଷ୍କ୍ରମଣ ଯେତେବେଳେ ଅମୂର୍ତ୍ତ ଭାବଲୋକର ଅତୀନ୍ଦ୍ରିୟ ପ୍ରେମସ୍ତରକୁ ବିସ୍ତାର ଲାଭ କରେ ସେତେବେଳେ ଏକ ଲୋକୋତ୍ତର ସତ୍ତାକୁ ତାର ଆକାଂକ୍ଷା ଓ ଅପେକ୍ଷାର ସମ୍ଭାବନାକୁ ଏଡ଼ାଇ ଦେଇହୁଏନାହିଁ । ଶାରୀରିକ ବାସନା-ସ୍ତରକୁ ଅତିକ୍ରମ କରି ପ୍ରେମ ଯେଉଁ ରୂପୋତ୍ତର ଓ ଭାବୋତ୍ତର ସମ୍ପ୍ରସାରଣ ଲାଭକରେ ତାହା ପରିଶେଷରେ ବ୍ୟକ୍ତିଚେତନାକୁ ଅସୀମ ଅରୂପ ନୈର୍ବ୍ୟକ୍ତିକତାରେ ଅବସ୍ଥାପିତ କରିପାରେ । ଏ ବିଷୟର ରହସ୍ୟବାଦୀ ପ୍ରୀତିତତ୍ତ୍ୱ ସମର୍ଥିତ । (୧) ଶ୍ରେଷ୍ଠ ଅଧ୍ୟାତ୍ମ ଉପଲବ୍ଧିରେ ପରମ ପ୍ରେମ ମର୍ତ୍ତ୍ୟ ଓ ଅମର୍ତ୍ତ୍ୟ ଭିତରେ ସଂଯୋଗ ସାଧନ କରି ଜୀବନକୁ ମୋହମୟ ଓ ଜୀବନାତୀତକୁ ମହିମମୟ କରିଥାଏ ।

ଭାରତୀୟ ସଂସ୍କୃତି ଚିରକାଳ ପାର୍ଥିବ ପ୍ରଣୟାନୁଭବକୁ ଅପାର୍ଥିବ ଉନ୍ମୁଖତା ଦିଗରେ କାବ୍ୟାଦର୍ଶକୁ ସଂପ୍ରେରିତ କରିଆସିଛି । ଦିବ୍ୟ ଚରିତ (ରାଧାକୃଷ୍ଣ, ଶିବପାର୍ବତୀ ବା ଆତ୍ମା-ପରମାତ୍ମା ରୂପକ) ମାଧ୍ୟମରେ ଆପଣାର ଲୌକିକ ପ୍ରେମର ଅଭିବ୍ୟକ୍ତି ଏ ପରଂପରା ସମର୍ଥିତ । କୁଂତଳାଂକ କାବ୍ୟସ୍ୱରରେ ସ୍ୱାନୁଭୂତିର ପ୍ରତ୍ୟକ୍ଷ ପ୍ରକାଶ ପରିବର୍ତ୍ତେ ରହସ୍ୟାତ୍ମକ ରୂପଦାନ ଏ କାବ୍ୟିକ ସମର୍ଥନ ଲାଭକରିଛି । କବିଙ୍କର ପ୍ରାରଂଭିକ କାବ୍ୟଚେତନା ବ୍ୟକ୍ତିଗତ ଭାବ ଅନୁଭବର ସ୍ୱଗତାଳାପ ବୋଲି ମନେକରିବା ଅଧିକ ସମୀଚୀନ ବୋଧହୁଏ । କ୍ରମଶଃ ଏହା ରହସ୍ୟାତ୍ମକତା ପ୍ରତି ଗତିଶୀଳ ହୋଇପଡ଼ିବାର ଧାରାଟି ସ୍ପଷ୍ଟ ।

ନିଜର ବ୍ୟକ୍ତିଗତ ପ୍ରୀତି ସଂପର୍କକୁ ସୀମା-ଅସୀମର ନିତ୍ୟ ସଂବନ୍ଧ ଭିତରକୁ କବି ଉତ୍କ୍ଷେପିତ କରିଦେବା ପ୍ରୟାସର ସାକ୍ଷୀ ତ ଇତିହାସ, କୁଂତଳା କୁମାରୀଙ୍କ ଜୀବନଚରିତ । (ଦ୍ରଷ୍ଟବ୍ୟ—'କୁନ୍ତଳା କୁମାରୀ ଜୀବନ ଚରିତ' ଲେଖକ—ଚନ୍ଦ୍ରଧର ମହାପାତ୍ର ।) ମାତ୍ର କବିଚିତ୍ତର ପାର୍ଥିବ ପ୍ରେମଭାବନା କିଭଳି କେଉଁ ଉପଲବ୍ଧି ଭିତରେ ତାଂକୁ ଏକ ଅଲୌକିକ ପ୍ରେମ-ସ୍ୱରୂପଂକ ସହ ସୂକ୍ଷ୍ମ ସଂପର୍କବଦ୍ଧ କରି ରଖିଥିଲା, ତାର ସାକ୍ଷ୍ୟ ସେ ଇତିହାସରୁ ମିଳିବନାହିଁ । ମର୍ତ୍ତ୍ୟପ୍ରଣୟର ରୂପମୋହ ଓ ବାସନାବିଳାସ ଭିତରୁ କବିପ୍ରାଣରେ ଦେହାତୀତ ଅମର୍ତ୍ତ୍ୟ ପ୍ରଣୟର ଆକାଂକ୍ଷାଟି କିପରି ଉଦ୍ରିକ୍ତ ହୋଇଉଠିଥିଲା, ଚେତନାର ସେ ଗୂଢ଼ ରହସ୍ୟକୁ ସଂଧାନ କରିବା ଇତିହାସର ସାଧ୍ୟାତୀତ । କବିଙ୍କ କାବ୍ୟାନୁଭୂତିରେ ଦେହ ଓ ଦେହାତୀତ, ରୂପ ଓ ରୂପାତୀତ ପ୍ରେମର ଏକତ୍ର ନିବାସ ଦେଖାଯାଏ । "କୁଂତଳାଂକ ମହତ୍ତ୍ୱ ହେଉଛି ଏହି ସମସ୍ତ ଆଧ୍ୟାତ୍ମିକ ଅନୁଭୂତିରେ ସେ ନିଜ ନାରୀ ଆତ୍ମାର ସୌଂଦର୍ଯ୍ୟ ଓ ସୁରଭି ମିଶାଇ ପାରିଛଂତି । କେଉଁଠି ସେ ଭକ୍ତ ଭଗବାନଂକ ମିଳନ-ବିଚ୍ଛେଦ କଥା କହୁଛଂତି ଅଥବା ନିଜର ପ୍ରଣୟ ଅନୁଭୂତି ବର୍ଣ୍ଣନା କରୁଛଂତି, ତାହା ଜାଣିବା କଠିନ ।" (୨)

କବିଂକର ବ୍ୟକ୍ତିଗତ ପ୍ରଣୟବ୍ୟର୍ଥତା ମାନସିକ ସ୍ତରରେ ଯେଉଁ ମୁକ୍ତ ବ୍ୟାକୁଳତା ଖୋଜିଛି, ସେଥିରେ ସେ ପ୍ରେମର ଏତାଦୃଶ ଗନ୍ଧ ଓ ପରିଣତି ବରଂ ସ୍ୱାଭାବିକ ସନ୍ଦେହକରିଯାଇପାରେ । ଏଇ

(୧) "ଚୈତନ୍ୟେର ଘନୀଭୂତ ସାରବସ୍ତୁ ପ୍ରେମ × × ମାନୁଷେର ପ୍ରେମେର ମଧ୍ୟଦିୟା ମାନୁଷ ଶୁଧୁ ଆତ୍ମ ଅତିକ୍ରମ କରେନା, ଅତିକ୍ରମ କରେ ସକଲ ମର୍ତ୍ତ୍ୟସୀମା ।"
ଶଶିଭୂଷଣ ଦାସଗୁପ୍ତ—'ଉପନିଷଦେର ପଟଭୂମିକାୟ ରବୀନ୍ଦ୍ରମାନସ—ପୃ. ୨୩୧

(୨) ଡଃ ନରେଂଦ୍ର ନାଥ ମିଶ୍ର—'ଆଧୁନିକ ଓଡ଼ିଆ ସାହିତ୍ୟର କାବ୍ୟଧାରା'
—ନବଜାଗରଣ ଯୁଗ—ପୃ. ୨୭୫

Digitized by PPRACHIN, SOA

ପରିପ୍ରେକ୍ଷୀରେ କୁଂତଳାଂକ କାବ୍ୟ ସାଧନାକୁ ବୈଷ୍ଣବ କବି, (ଜ୍ଞାନଦାସ, ଚଣ୍ଡୀଦାସ, ବିଦ୍ୟାପତି) ତଥା ଦାଂତେ, ଖ୍ରୀଷ୍ଟିନା ରୋସେଟି ପ୍ରଭୃତି କବିମାନଂକ ଦିବ୍ୟ-ପ୍ରେମ-ସଂଧାନୀ କାବ୍ୟପ୍ରୟାସ ସହ ମିଳାଇ ଦେଖାଯାଇପାରେ । ପାରସିକ କାବ୍ୟ ପରିସରରେ ବହୁ ସୂଫୀ ପ୍ରେମାତ୍ମକ ରଚନା ଏ ପ୍ରକାର ପ୍ରେମାନୁଭବର କାବ୍ୟ ପରିଣତି ବୋଲି ନିଃସଂଦେହରେ କୁହାଯାଇପାରେ ।

କୁଂତଳାଂକ କବି ସତ୍ତାରେ ତାଂକ ବ୍ୟକ୍ତିତ୍ୱର ସେଇ ଅନମନୀୟ ଆତ୍ମ-ମର୍ଯ୍ୟାଦାବୋଧ ଓ ଭାବସ୍ୱାଚ୍ଛଂଦ୍ୟର ମୁକ୍ତ ପରିଚୟ ମିଳେ । ଅଦମ୍ୟ ତେଜ ଓ ସାହସର ସହ ନିର୍ଭୀକା କୁଂତଳା ପରିପାର୍ଶ୍ୱ ସହ ଭାରସାମ୍ୟ ରକ୍ଷାକରିବା ଭିତରେ ବି ମନସ୍ୱିତାର ଉଜ୍ଜ୍ୱଳ ପରିଚୟ ବାଢ଼ିପାରିଛଂତି । ସେ ନିଛକ ଧର୍ମଭାବନାର ଭକ୍ତକବି ମଧ୍ୟ ହୋଇପାରିଥାଂତେ । ମାତ୍ର ତାଂକ ଭିତରେ ଏକ ରୋମାଂଟିକ ସୌଂଦର୍ଯ୍ୟଗ୍ରାହୀ ପ୍ରକୃତି-ରହସ୍ୟ-ସଂଧାନୀ ତୀକ୍ଷ୍ଣ ପ୍ରବଣତା ଜାଗ୍ରତ ଥିଲା । କୁଂତଳା ପ୍ରକୃତପକ୍ଷେ ଏକ ଅଧ୍ୟାତ୍ମବାଦୀ ଦାର୍ଶନିକ କବି ନୁହଂତି । ଅନୁଭୂତିର ପୃଷ୍ଠଭୂମିରୁ ଜୀବନ ଓ ଜଗତର ରହସ୍ୟୋଦ୍ଘାଟନ ହିଁ ତାଂକର କାବ୍ୟଜିଜ୍ଞାସା । ତାଂକର କାବ୍ୟଧର୍ମ ଧର୍ମାନୁଶାସନର ବଶବର୍ତ୍ତୀ ନଥିଲା । ମାତ୍ର ଏକ ଗଭୀର ବିଶ୍ୱାସ, ସ୍ଥିର ନିର୍ଭରତା ଓ ଅନଂତ ଆକୂତି ନେଇ ସେ ଜୀବନର ଅଂତରତମଂକୁ, ଜଗତର ସୃଷ୍ଟିକର୍ତ୍ତାଂକୁ ବ୍ୟକ୍ତି ହୃଦୟର ସ୍ୱତଂତ୍ର ସଂବଂଧ ଭିତରେ ଲାଭ କରିବାକୁ ଚାହିଁଛଂତି । ସେଇ ପ୍ରବଣତା କେତେବେଳେ ଲୌକିକ ପ୍ରଣୟ-ବିଳାସ ରୂପରେ ପ୍ରକାଶିତ ହୋଇଛି ତ କେତେବେଳେ ଅଲୌକିକ ପ୍ରେମଭାବନାକୁ ନିଷ୍କ୍ରମଣ ଲାଭ କରିଛି । ଅଧ୍ୟାତ୍ମ-ଉଚ୍ଛ୍ୱାସ ଭିତରେ କବିଂକର ଭାବାନୁଭୂତିର ଗଭୀର ନିମଜ୍ଜମାନତାକୁ ଅସ୍ୱୀକାର କରିବା ସହଜ ନୁହେଁ । ବ୍ୟକ୍ତିଗତ ଭାବରେ ଈଶ୍ୱର ବା ସେହିପରି ଏକ ଅପାର୍ଥିବ ସତ୍ତା ପ୍ରତି ବିଶ୍ୱାସୀ ଓ ଅନୁରକ୍ତ ନଥାଇ କେବଳ ଲୋକଲଜ୍ଜା ଭୟରେ ଲୌକିକ ପ୍ରେମକୁ ଈଶ୍ୱରଂକ ନାମରେ ପରିବର୍ତ୍ତିତ ସ୍ୱରୂପରେ ଉତ୍ସର୍ଗ କରିଦେବାର ଛଳନାତ୍ମକତା କୁନ୍ତଳାଂକ ବ୍ୟକ୍ତିତ୍ୱର ସ୍ୱାଭାବିକ ପାର୍ଶ୍ୱ ନ ଥିଲା । ପୁଣି ଏଇ ଛଳନାତ୍ମକତା କାବ୍ୟକ୍ଷେତ୍ରରେ ଏତେ ସହଜସାଧ୍ୟ ନୁହେଁ । ତାହା କବିତ୍ୱର ମାଧୁର୍ଯ୍ୟ, ହୃଦୟର ଆବେଗ ଓ ବିଶ୍ୱାସର ସଂବେଗକୁ ମଧ୍ୟ ସ୍ପର୍ଶ କରିପାରଂତା ନାହିଁ । କୁଂତଳାଂକ ସବୁଯାକ ପ୍ରେମକବିତା ଏହିପରି ଆରୋପିତ ଓ ଉତ୍ସର୍ଗଧର୍ମୀ ନୁହେଁ ବୋଲି ବିଶ୍ୱାସ କରିଯାଇପାରେ । ବାଲ୍ୟକାଳରୁ ଭଗବଦ୍‌ବିଶ୍ୱାସ ଓ ଆଧ୍ୟାତ୍ମିକପ୍ରବଣତା ତାଂକ ଚରିତ୍ରରେ ଅନୁପଲଭ୍ୟ ନଥିଲା । ତାଂକ ଆତ୍ମାନୁରାଗର ବିଶ୍ୱସ୍ତ ସ୍ୱର ଅନେକତ୍ର ଆବେଗମୟ ମୁଗ୍ଧସ୍ପର୍ଶରେ କାବ୍ୟଲୋକକୁ ସ୍ପଂଦିତ କରିଥିବାର ଅନୁଭବ କରିହୁଏ ।

ଦିବ୍ୟାଦିବ୍ୟ ପ୍ରଣୟଜନିତ ଏ ଦ୍ୱଂଦ୍ୱ କବିମାନସରେ ମଧ୍ୟ ପରିଲକ୍ଷିତ । ଦିବ୍ୟପାଇଁ ଉନ୍ମୁଖତା ପୁଣି ପ୍ରବଳ ପାର୍ଥିବ, ପ୍ରେମାସକ୍ତି ଭିତରୁ ତାଂକର ଚେତନାସଂଘାତ ଯେପରି ବାଣୀମୂର୍ତ୍ତି ଲାଭକରିଛି ଯେପରିକି ଏଇ ଭାବସଂଘର୍ଷ ଭିତରୁ ତାଂକର ଅବଚେତନ କର୍ତ୍ତୃତ୍ୱ ବିସ୍ତାର କରି ତାଂକର କାବ୍ୟଜିଜ୍ଞାସାକୁ ନିବିଡ଼ ମର୍ମାନୁଭୂତିର ରହସ୍ୟ ଉଦ୍‌ଘାଟନ ପାଇଁ ସଂପ୍ରେରିତ କରିଛି । କୁଂତଳାଂକ କବିତାମାନ ସବୁବେଳେ ତାଂକ ସଚେତନ ମନସତ୍ତାର ଅଭିବ୍ୟକ୍ତି ନୁହଂତି, ବରଂ ଅନେକତ୍ର ତାଂକର ଆଶା ଅଭିଳାଷର ଗୁଂଜରଣ ମାତ୍ର । କଳ୍ପନାବେଗ ପ୍ରସୂତ ଏଇ ସୃଷ୍ଟି ଭିତରେ ସେ ଯେପରିକି ଏକ ସ୍ୱୟଂଗୃହୀତ ଆତ୍ମଶକ୍ତିଦ୍ୱାରା ଉତ୍‌ପ୍ରେରିତ ହୋଇ ଆତ୍ମଉନ୍ମୋଚନ ପ୍ରୟାସୀ ହୋଇପଡ଼ିଛଂତି । ଭାବମାନସକୁ ଅନାବୃତ କରିବାରେ କୁଂତଳା ନିଶ୍ଚିତଭାବରେ ଏକ ବିଶ୍ୱସ୍ତ ଓ ସୁଦକ୍ଷ ଶିଳ୍ପୀ ।

କୁଂତଳାଂକ କାବ୍ୟଚେତନା ସ୍ୱାଭାବିକ ନାରୀସତ୍ତାର ଆଶ୍ରୟରେ ମୁଖ୍ୟତଃ କଳ୍ପନାଶ୍ରୟୀ ଏବଂ ବୌଦ୍ଧିକ ଗାଂଭୀର୍ଯ୍ୟମୁକ୍ତ । ଲଘୁପକ୍ଷ ବିହଂଗତୁଲ୍ୟ ତାଂକର କବିତାଲୋକରେ ମାନସବିହାର । ଏଇ ଅବାଧ ନିବଂଧନତାହିଁ ଏକ ଜାଗ୍ରତ କବି ଆତ୍ମାକୁ ଅନୁଭୂତିରେ ଦିବ୍ୟୋତ୍ତରଣ ପାଇଁ ଉତ୍ସାହ କରିଛି ।

Digitized by PPRACHIN, SOA

ସାଧାରଣତଃ ନାରୀର ପାର୍ଥିବ ସ୍ଥିତି ବହୁବିଧ ବନ୍ଧନ କବଳିତ । ତାର ସାମଗ୍ରିକ ଅଭିବ୍ୟକ୍ତି ସେଇ ବନ୍ଧନର ଅଂଗୁଳି ସଂକେତଗ୍ରସିତ । ପରିଣାମରେ ବାହ୍ୟବନ୍ଧନର ପ୍ରତିକ୍ରିୟା ରୂପେ ନାରୀର ଅଂତସତ୍ତାର ନିରଂତର ମୁକ୍ତିପ୍ରୟାସ ତାର ଭାବାଭିଳାଷ ଭିତରେ ଗୁଂଜରିତ ହୋଇ ରହିଥାଏ । କୁଂତଳା ମୁଖ୍ୟତଃ ରୋମାଂଟିକ କବି ଏବଂ ପ୍ରେମଭାବନାର କବି । ତାଂକର ବ୍ୟକ୍ତିଗତ ଜୀବନ ଓ ସାମାଜିକ ଚେତନା ତଥା ଜାତିମୁକ୍ତିର ଯେଉଁ ସ୍ୱପ୍ନ ବାରଂବାର ରୂପାଭିବ୍ୟକ୍ତି ଲୋଡ଼ିଛି ସେହି ମୁକ୍ତିର ନିଶା ତାଂକ ପ୍ରେମଭାବନାତ୍ମକ ସ୍ୱଚ୍ଛଂଦତାକୁ ମଧ୍ୟ ଆଶ୍ଳିଷ୍ଟ କରିଛି । ତେଣୁ ପ୍ରଣୟର ଅନୁଭୂତିକୁ ଭାବଲୋକରେ ମନୋମତ ରୂପାଂତର ଘଟାଇ ଆସ୍ୱାଦନର ଚରିତାର୍ଥତା ଲୋଡ଼ିବା ତାଂକ ପାଇଁ ଅସ୍ୱାଭାବିକ ନଥିଲା । ସେ ଅସଫଳ ମଧ୍ୟ ନୁହଂତି । କେବଳ ସେଗୁଡ଼ିକ ବୁଦ୍ଧିଗ୍ରାହ୍ୟ ଚିଂତନପ୍ରୟାସ-ମୂଳକ ନହୋଇ ଭାବସଂବେଗ ଓ ଉପଲବ୍‌ଧିର ଆଂତରିକତା ସମୃଦ୍ଧ ହେତୁ ଅସ୍ପଷ୍ଟ ଅମୂର୍ତ୍ତ ଗୁହ୍ୟଲୋକ ପରିବର୍ତ୍ତେ ମୂର୍ତ୍ତ ପ୍ରେମ-ରୂପରେ ଅଭିବ୍ୟକ୍ତ । କୁଂତଳାଂକ ପ୍ରେମାବେଦନ ହୃଦୟରୁ ଉଚ୍ଛାରିତ ହୋଇ ସହଜାନୁଭବ ରୂପେ ତୀକ୍ଷ୍ଣ, ନିର୍ଭୀକ ଓ ଆବେଗଦୀପ୍ତ ହୋଇଛି ।

ନାରୀସତ୍ତାର ରୁଦ୍ଧ ପ୍ରଣୟାବେଗ କାବ୍ୟକଳ୍ପନାର ସହାୟତା ଲୋଡ଼ିଛି । କବି ଭାବରାଜ୍ୟରେ ଯେଉଁ ପ୍ରେମର ଆନଂଦ ଚାହାଂନ୍ତି, ବାସ୍ତବ ଜୀବନରେ ତାର ଆଘାତକୁ ସହ୍ୟ କରିଛଂତି । ଆଶା ଓ ଆଘାତର ନୈରାଶ୍ୟ ଭିତରୁହିଁ ତାଂକ କବିତାର ଏପରି ମାର୍ମିକ ସ୍ୱଗତୋକ୍ତି ସଂଭବ ହୋଇଛି । ପ୍ରେମଜନିତ ଯଂତ୍ରଣା ଭିତରେ ହିଁ ତାଂକର ପ୍ରେମର ଆଧ୍ୟାତ୍ମରୂପ ଅନ୍ୱେଷଣ । ହୃଦୟର ପ୍ରଥମ ପ୍ରେମ ପାର୍ଥିବତା ସଂଜାତ ହୋଇପାରେ; ମାତ୍ର ତାହାର ପୂର୍ଣ ସ୍ୱୀକୃତି ଅମର୍ତ୍ତ୍ୟଲୋକରେ ଆତ୍ମାର ବିଭୁପ୍ରେମ ଓ ମୁକ୍ତିକାମନା ସହ ସତ୍ତାର ବାହ୍ୟ ପ୍ରଣୟ ପିପାସା ସଂଘର୍ଷ ଭିତରେ ସହାବସ୍ଥାନ ଲୋଡ଼ିଛି । ବାସ୍ତବ ପ୍ରେମ ଜୀବନର ଘାତ-ପ୍ରତିଘାତ ଭିତରୁ ତାଙ୍କର କାବ୍ୟ ସାଧନା ଯେପରି ତାଂକ ଆତ୍ମାର ଏକ ବିମୁକ୍ତି ପ୍ରୟାସ ।

କୁନ୍ତଳାଂକ ପ୍ରୀତିଚେତନାର ପ୍ରମୁଖ ସ୍ୱର ବିରହ । ଏଇ ବିରହ ବାହ୍ୟତଃ ରହସ୍ୟାତ୍ମସ୍ପୃକ୍ତ ପ୍ରତୀତ ହେଲେହେଁ ଶୁଦ୍ଧ ବ୍ୟକ୍ତିଗତ ଲୌକିକ ବିରହ । ଅଂଜଳି, ଉଚ୍ଛ୍ୱାସ, ଅର୍ଚ୍ଚନା, ସ୍ଫୁଲିଂଗ ଓ ପ୍ରେମଚିଂତାମଣି ସେ ପ୍ରୀତିଚେତନାର ଏକ ଏକ ସାର୍ଥକ ସୋପାନ । ଆବେଗରୁ ଯାହାର ଉତ୍ସାରଣ, ଅନୁଚିଂତାରେ ଯାହାର ସାର୍ଥକତା ଅନ୍ୱେଷଣ ଓ ଅନୁଭୂତିରେ ଯାହାକୁ ସଂରକ୍ଷଣ—ପ୍ରଣୟପ୍ରବାହର ସେଇ ରୂପାନୁଭବଟି କୁଂତଳାଂକ ଭାବମାନସରେ ସୁପ୍ରେକ୍ଷ । ଯୌବନର ପ୍ରଭାତରେ ଜୀବନକୁ ପ୍ରେମ ପୁଷ୍ପାଂଜଳିଦାନ, ପ୍ରକୃତି-ଚିତ୍ରାତ୍ମକ କବିତାରେ ସେହି ପ୍ରେମ ସଂପର୍କରେ ଆଶାଆଶ୍ୱାସନାମୟ ଅନୁଚିଂତନ ଏବଂ 'ପ୍ରେମଚିଂତାମଣି' ରଚନା ପର୍ଯ୍ୟାୟରେ ନିବୋଲା ଗାଢ଼ ପ୍ରେମର ସରସ ଆବାହନ; ସମଗ୍ର କାବ୍ୟ କଳେବରରେ ଏକ ମଧୁର ପୀଡ଼ାର ସ୍ନିଗଧସଜଳତା ବିଦ୍ୟମାନ । ନବୀନ-ଜୀବନ ପ୍ରଭାତରେ ନବାନୁରାଗଜାତ ବେଦନା ଅଂଜଳିରେ ନୂତନ । ତାହାର ସ୍ୱରରେ ତେଣୁ ଅଧିକ ଆବେଗ ଓ ଉଚ୍ଛଳତା । କାଳାଂତରରେ ତାହାର ରୂପ ସୂକ୍ଷ୍ମ, ଗଭୀର ଓ ମାର୍ମିକ ହୋଇଯାଇଛି । ଇଂରାଜୀ ନାରୀକବି ରୋସେଟି, ହିନ୍ଦୀ କବି ପ୍ରସାଦ, ମହାଦେବୀ ବର୍ମା, ବଂଗଳାର କାମିନୀ ରାୟ ପ୍ରଭୃତି କବିଂକ 'ବିଷାଦବାଦୀ ପ୍ରଣୟ କାବ୍ୟଚେତନା ସହ କୁନ୍ତଳାଂକ ବିରହଭାବନାର ସ୍ୱରସାମ୍ୟ ରହିଛି । ଏ ବିରହଚିତ୍ର ବିଫଳତାର ଖେଦ ସତ୍ତ୍ୱେ ବି ଆଶାମଧୁର ବ୍ୟଂଜନାପୂର୍ଣ୍ଣ । ନିୟତି ତାଂକ ବ୍ୟକ୍ତିସତ୍ତାକୁ ବହୁ କ୍ଷତବିକ୍ଷତ କରିଥିଲେ ବି ତାଂକ କାବ୍ୟସ୍ୱରରେ କେବେ ଅବସାଦଗ୍ରସ୍ତ ଜୀବନ-ବୈରାଗ୍ୟ ପ୍ରକଟିତ ହୋଇନାହିଁ । ଏ ଆଶାବାଦିତାର ମୂଳପ୍ରେରଣା ଯେ ଈଶ୍ୱର ନିର୍ଭର ଜୀବନାଦର୍ଶ ସଂଜାତ, ତାହା ଅସ୍ୱୀକାର କରିହୁଏନାହିଁ ।

Digitized by PPRACHIN, SOA

ରଚନା ବତ୍ସର—କୁଂତଳାକୁମାରୀଙ୍କ କବିତାଗୁଡ଼ିକର ରଚନାକାଳ ଖ୍ରୀ: ୧୯୨୨ରୁ ଖ୍ରୀ: ୧୯୩୦ ପର୍ଯ୍ୟଂତ । ଅଂଜଳି (୧୯୨୨), ଉଚ୍ଛ୍ୱାସ (୧୯୨୪), ଅର୍ଚନା (୧୯୨୭), ସ୍ଫୁଲିଂଗ (୧୯୨୯) ଓ ପ୍ରେମଚିଂତାମଣି (୧୯୩୦) । ଏଇ ଆଠବର୍ଷ ଧରି ଯେପରି କବିଂକର ଗୋଟିଏ ଅନୁଭୂତ ଆଛନ୍ନତା, ଗୋଟିଏ ଆବେଗମୁଖର ସ୍ୱଗଲାପ । ସାମାଜିକ ଓ ଜାତୀୟଚେତନାଧର୍ମୀ ରଚନାମାନଂକ ବ୍ୟତୀତ କୁଂତଳାକୁମାରୀଂକ କବିସତ୍ତା ଅନ୍ୟ ସବଂଶ ଏକ ପ୍ରେମିକା; ଅଂତଃସ୍ୱଳ୍ପରେ ଚିର ଯାତ୍ରାପାଇଁ ଧ୍ୟାନ-ମୌନ, ବହିଃ ପ୍ରକୃତିରେ ତାକୁଇ ନିରବଧି ସଂଭାଷଣ । ଜୀବନ ଏକ ପୂଜାବେଦୀ, ପ୍ରୀତି ନୈବେଦ୍ୟ ଓ ଚିର ତାପସୀ ସାଧିକା—ପ୍ରେମ ଦେବତାର ନିରଂଜନା ପୂର୍ଣ୍ଣ ପ୍ରସ୍ତୁତି । ପୂଜାମଂଦିର ଆଦ୍ୟ ଉଚ୍ଚାରଣ 'ଅଂଜଳି' । ପ୍ରେମାସ୍ପଦ ପାର୍ଥିବ ବା ଅପାର୍ଥିବ ଯେ ହୋଇଥାଂତୁ, ଆରାଧ୍ୟ-ସ୍ୱରୂପରେ ଯେ ମହିମାମୟ ଏବଂ ତାଂକୁ ଅବଲଂବନ କରି ସେ ପ୍ରେମସାଧନାର ସ୍ୱରୂପଟି ମଧ୍ୟ ଊର୍ଦ୍ଧ୍ୱାୟିତ । 'ଅଂଜଳି' ଏକ ସରଳ ନିଷ୍କପଟ ଭାବ-ନିବେଦନମୂଳକ କବିତା ସଂକଳନ । ଅପରିପକ୍ୱ ହୃଦୟର ଆଦ୍ୟ ପ୍ରଣୟଜନିତ ଅସ୍ପଷ୍ଟ ତରଳ ଭାବାବେଗ ଯେଉଁ ଉଚ୍ଛ୍ୱାସ-ଉଦ୍‌ବେଳ ପ୍ରବାହପ୍ରକାଶ ଲୋଡ଼ିଛି, ତାହାର ଅଂତଃସ୍ୱରୂପରେ ପୂଜାରଣୀର ରୂପପରିଚୟଟି ବେଶ୍ ବର୍ଣ୍ଣବିଭବମୟ ହୋଇଉଠିଛି । ହୃଦୟରେ କାମ୍ୟ ଦେବତାଂକର ଅଭିଷେକ ଓ ସାମଗ୍ରିକ ସମର୍ପଣର ଆକୁଳତା ଭିତରେ ଅପେକ୍ଷା, ପ୍ରସ୍ତୁତି, ବିଶ୍ୱାସ, ସ୍ଥିରତାର ଦୃଢ଼ ମାନସିକତା ପ୍ରକଟିତ । 'ଅଂଜଳି' ଯଥାର୍ଥରେ ଶ୍ରଦ୍ଧା ଅନୁରାଗର ଏକ ପୂର୍ଣ୍ଣ ପୁଷ୍ପ-ଅଂଜଳି । ଏଥିରେ ଭଗବାନ ଓ ଲୌକିକ ପ୍ରେମ-ସ୍ୱରୂପ ଅବିଚ୍ଛେଦ ଅଭିନ୍ନ ହୋଇଯାଇଛଂତି । ପ୍ରେମାସ୍ପଦ ସହ ପ୍ରୀତି ସଂପର୍କର ସ୍ୱରୂପ ନିର୍ଣ୍ଣୟ,ପ୍ରୟାସ କବିଚିତ୍ତକୁ ଭାବଗାଂଭୀର୍ଯ୍ୟମୟ କରିପାରିଛି । ଏକ ବିରାଟ ସତ୍ତା ସହ ନିଜ କ୍ଷୁଦ୍ରତାର କଳନା ଏବଂ ପୁଣି ଏ କ୍ଷୁଦ୍ର ଯେ ବିରାଟର ଅଂଶହରତ୍ୱ ରୂପୀ ଆତ୍ମୀୟତା କବିଂକର ପ୍ରେମ ପ୍ରତ୍ୟୟର ଭିତ୍ତିରୂପେ ଉପସ୍ଥାପିତ । ନିରାଶାର ସକଳ ଆଘାତ ଭିତରେ ବି ସେ ପ୍ରତ୍ୟୟ ଟଳିବାର ନୁହେଁ । ପୁଣି ପରିପୂର୍ଣ୍ଣ ପ୍ରେମ ପାଇଁ ସତ୍ତାର ସମଗ୍ରତା ଭିତରକୁ ବିରାଟର ଆବାହନ, ରହସ୍ୟବାଦୀ ପ୍ରଣୟ ସାଧନାକୁ ମହତ୍ତ୍ୱ ତଥା ବୈଶିଷ୍ଟ୍ୟକୁ ରୂପାୟିତ କରି କବିଂକୁ ଭାବବାଦୀ ସାଧନାସ୍ତରର ଅନୁଭୂତିସାମର୍ଥ୍ୟ ଦାନକରିଛି ।

ଏକଥା ସ୍ୱୀକାର୍ଯ୍ୟ ଯେ, କବିଂକର ରୂପଗତ ପ୍ରେମରେ ଅରୂପର ଏଇ ଆରୋପ ପ୍ରୟାସ ରୋମାଂଟିକ କଳ୍ପନାର ସାହାଯ୍ୟପ୍ରାର୍ଥୀ । (୩) କବିଂକର ପ୍ରଣୟସ୍ୱର କଂଠ ଏକାଂତ ନିଷ୍ଠାପର; ସେବିକାର ପୂଜାପାଇଁ ପ୍ରସ୍ତୁତ । କ୍ଷୁଦ୍ରତ୍ୱର ସଚେତନତା ରହିଛି ଏବଂ ତାହା ସ୍ୱାଭାବିକ । ମାତ୍ର ସେ କ୍ଷୁଦ୍ରତା ପାଇଁ କବିଂକର ଗ୍ଲାନି ନାହିଁ । ଦୀନ ବୋଲି ନିଜକୁ ଜାଣିଲେ ମଧ୍ୟ ଦୈନ୍ୟ ପାଇଁ ସଂକୋଚନାହିଁ । (୪) ବରଂ ବିରାଟର ଅନୁରାଗଭାଜନ ସୂତ୍ରରେ ସେ କ୍ଷୁଦ୍ର ମଧ୍ୟ ଗୌରବ-ଯୋଗ୍ୟ । (୫) "ଦରିଦ୍ର ବୋଲି ମୁଁ ତାଂକର ଧନୀ ପ୍ରେମଧନରେ ।" (୬)—ସକଳ ସଂତାପ ଭିତରେ ପ୍ରେମଭାବନାର ଏ ଆଶ୍ୱାସନାଟି ପଟାଂତରହୀନ । ଏ ଭାବଟି କବିଂକର ବହୁ କବିତାରେ ବିଶେଷକରି 'ଉଚ୍ଛ୍ୱାସ'ର ଗୀତସଂକଳନରେ ସଫଳ ପ୍ରକାଶ-ରୂପ ପାଇଛି । ପ୍ରାରଂଭରୁ ଏ ଉପଲବ୍ଧି କବି-

(୩) "ତୁମେ ପୂର୍ଣ୍ଣ ସୁଧାସିଂଧୁ ହେ, ମୁଁ ତ କ୍ଷୁଦ୍ର ସରିତ ।"
—ଅଂଜଳି (ସେବିକା)-କୁଂତଳାକୁମାରୀ ଗ୍ରଂଥାବଳୀ, ପୃ. ୫

(୪) "ତୋ ପ୍ରେମେ ନାହିଁ କି ମୋ ଭାଗବଂତା" —ଗ୍ରଂଥାବଳୀ, ପୃ ୫

(୫) "ଆଦର ପାଇଚ ତୁମରି ନିକଟେ ରହିଛି ମୁଁ ଗଉରବେ ।"—ଗ୍ରଂଥାବଳୀ (କାମନା), ପୃ. ୧

(୬) କାମନା—ଗ୍ରଂଥାବଳୀ, ପୃ. ୧୮

Digitized by PPRACHIN, SOA

ଚେତନାକୁ ଯେଉଁ ଆଶାବାଣୀ ଆଭିମୁଖ୍ୟ ପ୍ରଦାନ କରିଛି, ପରବର୍ତ୍ତୀ କାବ୍ୟସ୍ୱରର ନୈରାଶ୍ୟ, ବିଫଳତା, ବ୍ୟଥା ଓ ଅଶ୍ରୁ-ସଜଳତା ଭିତରେ ତାହା କେଉଁଠାରେ ବି ପୂର୍ଣ୍ଣ ପ୍ରତିହତ ହୋଇଯାଏନାହିଁ । "ଭୟ ହୁଏ ନିତି ଡୁବିବି ଡୁବିବି"ର ଆତଙ୍କ ଭିତରେ ବି ହୃଦୟରେ ଆଶାର ଉଦ୍‌ଗ୍ରସନ, ସେଇ ଆଶାଲୋକ ଭିତରେ ସକଳ ଦୈନ୍ୟର ଅବସାନ ।

କବିଙ୍କର ଏ ଆଶା ଯେପରି ହୃଦୟର ଏକ ଉଜ୍ଜ୍ୱଳ ଦୀପସ୍ତମ୍ଭ; ଯାହା ଚେତନାକୁ ନିରବଧି ଆଲୋକପ୍ରତ୍ୟାଶୀ କରି ରଖିଛି । ଆଶାଭିତରେ ଜୀବନର ଜାଗ୍ରତଚେତନା ଅଂଧାରରେ ହଜିଯିବାର ଭୟକୁ ମଧ୍ୟ ଅତିକ୍ରମ କରିଯାଇଛି । "ମୋ ଜୀବନଫୁଲ ଫୁଟିଛି ଅଂଧାରେ ଅଂଧକାରେ ଥାଅ ରଖି / ଅଂଧାରେ ସୌରଭ ବିସ୍ତାର କରି ସେ ଅଂଧକାରେ ଯାଉ ଶୁଖି ।" (୭) ଏ ଗାନରେ ଅଂଧକାରର ଉପଲବ୍ଧି ଅଛି; ଭୟ ନାହିଁ । ଅଂଧକାରଜନିତ ଅସହାୟତା ନାହିଁ । ଅଂଧାରରେ ମିଳାଇଯିବା ବ୍ୟର୍ଥତା ନୁହେଁ । ଝରିଯିବାରେ ଫୁଟିବା ଅର୍ଥହୀନ ଅସାର ହୋଇଯାଏନା । ଫୁଲର ମହକ ସେହି ତମିସ୍ରାଚ୍ଛନ୍ନ ରାତ୍ରିର ପବନକୁ ମଧ୍ୟ ସ୍ପର୍ଶ କରିପାରେ; ଧରଣୀକୁ ଗଂଧାକୁଳ କରିପାରେ, ପ୍ରାଣକୁ ଉଚ୍ଛାଟ କରିପାରେ । ପରବର୍ତ୍ତୀ କାଳରେ କବିଙ୍କର ପ୍ରକୃତି ଉପରେ ଆଧାରିତ ସଂବୋଧନଗୀତି (Ode)ମାନଙ୍କର ଏବଂ ବିଶେଷ କରି ବହୁପଠିତ 'ଶେଫାଳିପ୍ରତି'ରେ ଏହି ଭାବଚେତନାର ମୂଳ ଉତ୍ସକୁ ଏଠାରେ ସଂଧାନ କରାଯାଇପାରେ । ଏଇ ଆଶା ଭିତରୁ ହିଁ ନବୀନପ୍ରାଣର ଜାଗରଣ । ହୃଦୟରେ ଗୋପନ ସଂଗୀତର ଆନଂଦ, ଚେତନାରେ ମୃଦୁ ସ୍ପର୍ଶର ପୁଲକ । (୮) ପ୍ରାପ୍ତି ନୁହେଁ, ମିଳନ ନୁହେଁ, କେବଳ ଦର୍ଶନ-ସୁଖ ମାତ୍ର; ତା'ରି ପ୍ରୀତିକାମନାର ଏ ଉଚ୍ଚାରଣ, ତାରି ଅନ୍ୱେଷଣର ଏ ମୁଗ୍ଧଗାନ । କବି-ହୃଦୟରେ ଏ ସମସ୍ତ ଋତୁ ବସଂତର । (୯) ମଧୁମାସର ମଧୁମୟ ନବସାଜ, ନବଗୀତି, ନବ ଉତ୍ସବାନଂଦ, ପ୍ରାଣରେ ମଧ୍ୟ ନବୀନ ଆଶାପ୍ରବାହ । ଯାହା ଏଯାବତ୍ ଅନାଗତ, ଅନୁପଲବ୍ଧ, ଦିନେ ତା ପ୍ରାପ୍ତହେବ—ହୃଦୟବୀଣାରେ ସେହି ମୋହମୟୀ ଆଶାର ସଂଗୀତ, କର୍ମ-ଜୀବନରେ ମଧ୍ୟ ତାହାରି ପ୍ରେରଣା । କବିଙ୍କର ଏ ଉପଲବ୍ଧି କେବଳ କଳ୍ପନାବିଳାସ ଭାବଗତ ନୁହେଁ, କବିଜୀବନର ବାସ୍ତବତା ଓ କର୍ମମୟତାକୁ ମଧ୍ୟ ଏହା ସ୍ପର୍ଶ କରିଛି । 'ତୋ ଆଦର' (୧୦) କବିତାରେ ସେ ଅଲକ୍ଷ୍ୟ ପ୍ରେମ ଶୁଶ୍ରୂଷାପରି ଜୀବନକୁ ଅନୁସରଣ କରିଥିବାର ବାର୍ତ୍ତା ରହିଛି । କବି ପୁଣି ସ୍ୱୀକାର କରିଛଂତି ଯେ ସେ ମହାନ୍ ପ୍ରେମର ପ୍ରତିଦାନ ଦେବା ଦୂରେ ଥାଉ, ତାକୁ ଚିହ୍ନିବା ଓ ମାନିନେବା ମଧ୍ୟ କ୍ଷୁଦ୍ର ସୀମା ରୂପଠାରେ ସବୁବେଳେ ସମ୍ଭବ ହୁଏନାହିଁ । (୧୧)'ଦୂର ଗଗନକୁ ଗୃହିଁ' (୧୨) କବିତାରେ ଏହି ଆତ୍ମଗ୍ଳାନି ପ୍ରଗାଢ଼ ହୋଇଯାଇଛି ।

---

(୭) ଆଶା—ଗ୍ରଂଥାବଳୀ, ପୃ. ୨୦

(୮) "ଏ ନବଜୀବନେ ଶୁଭ ନବୀନ ପ୍ରାତେ
ଗଗନେ ପବନେ ବୀଣା ବାଜଇ ସତେ ।" —ଗ୍ରଂଥାବଳୀ, ପୃ. ୨୧

(୯) ବସଂତ—ଗ୍ରଂଥାବଳୀ, ପୃ. ୨୧

(୧୦) —କୁଂତଳାକୁମାରୀ ଗ୍ରଂଥାବଳୀ, ପୃ. ୨୪

(୧୧) "ଭଲପାଉ ଏତେ ଏତେ ତୋ ଆଦର
କି ବୁଝେ ତୋ ଗୁଣ କଥା ।" —କୁଂତଳାକୁମାରୀ ଗ୍ରଂଥାବଳୀ, ପୃ. ୨୭

(୧୨) —କୁଂତଳାକୁମାରୀ ଗ୍ରଂଥାବଳୀ, ପୃ. ୩୦

Digitized by PPRACHIN, SOA

କବି 'ପ୍ରାଣର ପ୍ରଭୁ' ବୋଲି ଯାହାଂକୁ ଜାଣଂତି, ତାଂକର ଅପ୍ରିୟ ଅନେକ କାର୍ଯ୍ୟ କରିଛଂତି । କେବଳ ଅଜ୍ଞାନତା ଓ ଅକ୍ଷମତା ନୁହେଁ, ଅନେକ ଇଚ୍ଛାକୃତ ଅବାଧ୍ୟତାର ଅହଂକାରୀ ପଦପାତ ମଧ୍ୟ ସେଠାରେ ସୁସ୍ପଷ୍ଟ । ପ୍ରେମ ସାଧନାରେ ଏ ଅହଂର ଆବିଷ୍କାର ସମର୍ପଣ ଓ ଆତ୍ମହୁତି ପଥରେ ଏକ ମୂଲ୍ୟବାନ୍ ଉପଲବ୍ଧି ରୂପେ ବିବେଚିତ । କବିସତ୍ତା ଅନୁତାପ-ସଜଳ ହୋଇଉଠିଛି । ସେହି ଅଶ୍ରୁ-ଆକୁଳ ମୁହୂର୍ତ୍ତଟି ବେଦନାର ବିପୁଳ ତରଂଗ ତୋଳି ଯେପରି ଅନଂତପ୍ରସାରୀ ହୋଇଯାଇଛି । ଆକାଶ-ପୃଥିବୀ ତାର ପ୍ରତିଧ୍ୱନିରେ ଚଂଚଳ ହୋଇଉଠିଛି । ବେଦନାର ଏ ତୀବ୍ରତା, ପ୍ରୀତିଚେତନାର ପ୍ରତ୍ୟୟ-ସାମର୍ଥ୍ୟକୁ ଯେପରି ନୂତନ ଆଶ୍ରୟର ସୁଯୋଗ ଦେଇଛି । ଜୀବନର ଦୁଃଖଭାର ଯେଉଁ ଅଶ୍ରୁବିଂଦୁ ହୋଇ ପୃଥିବୀବକ୍ଷରେ ଝରିପଡ଼େ, ସବୁର ଅଲକ୍ଷ୍ୟରେ ତାହା ପ୍ରାଣଦେବତାଂକ ପଦତଳେ ସ୍ଥାନପାଏ । ମର୍ମତଳର ସବୁ ହା-ହୁତାଶ ଯେପରି ନିଃଶ୍ୱାସପବନରେ ମିଳାଇଯାଇ ତାଂକ ଶ୍ରୁତିରେ ବାଜେ । ହୃଦୟର ସବୁ ବ୍ୟଥାତୁର ସଂଗୀତ ବିଶ୍ୱଜନର ଅଶ୍ରୁତ ରହିଲେବି ତାଂକ ଶ୍ରୁତିରେ ବାଜେ । ତେଣୁ ସବୁ ଭ୍ରମ ତ୍ରୁଟିକୁ ଅକାତରରେ ନିଜର ସ୍ନେହାଂଚଳ ତଳେ ଘୋଡ଼ାଇଦେଇ ପଥକ୍ଳାଂତ ଦେହର ସବୁ ଶ୍ରମଭାରକୁ ନିଜ କାଂଧକୁ ଉଠାଇନିଅଂତି । ନୈରାଶ୍ୟର ଘନାଂଧକାର ଭିତରେ ବାଟ ଖୋଜି-ହେଉଥିବାବେଳେ ସେଇ ହିଁ ସମ୍ମୁଖ ରାସ୍ତାକୁ ଦୀପାନ୍ୱିତ କରିରଖଂତି ।

ସେ ଦିବ୍ୟପ୍ରେମ-ସ୍ୱରୂପ ଊର୍ଦ୍ଧ୍ୱଲୋକର; ମାତ୍ର କବିଂକର ପ୍ରୀତି ମାଟି ପୃଥିବୀର । ତଥାପି କବିଂକର ବିଶ୍ୱାସ (୧୩) ଜୀବନବ୍ୟାପୀ ଆରାଧନା ବ୍ୟର୍ଥ ହେବନାହିଁ । ଆଶାପଦ୍ମ ମଉଳିଯିବନାହିଁ । ଜୀବନର ପ୍ରଣୟ ସବିତା ହୃଦୟାକାଶରେ ନିଶ୍ଚୟ ଦିନେ ଉଦୟ ମାଗିବେ । ତାଂକ ପ୍ରେମର ଅଦ୍ଭୁତ ସମ୍ମୋହନରେ ଦୀନ ମଳିନ ମାନବାତ୍ମାକୁ ଉଦ୍ବେଳିତ କରିଦେବେ । ସେ ପ୍ରେମର ବାର୍ତ୍ତା ନୀଳାକାଶରେ, ନଦୀ ଲହରୀରେ, ଫୁଲର ମହକ ଓ ବସଂତର ପବନରେ ଭରିରହିଛି । ବିଶ୍ୱର ପ୍ରତିକୋଣରେ ସେ ବାଣୀ ପ୍ରତିଧ୍ୱନିତ ହେଉଛି । ଜୀବନର ସବୁ ଦୁର୍ଗତି, ବିପର୍ଯ୍ୟୟ ଓ ଆପଦ ଭିତରେ ସେହି ପ୍ରେମ ହିଁ ସୁରକ୍ଷାର ଆବରଣ ବେଢ଼ାଇ ଦିଏ । କବି ବିଶ୍ୱାସର ଗାନ କରଂତି; "ଧ୍ରୁବତାରା ମୋର ଅଂଧକାର ନଭେ, ଉଜ୍ଜ୍ୱଳେ ହସିବ ପ୍ରେମର ଗୌରବେ ।" (୧୪)

କୁଂତଳାଂକ କବିତାରେ ବହୁ ଭାବରେ ଏ ପ୍ରେମର ସାଧନା ଓ ବହୁରୂପରେ ସେ ପ୍ରୀତି-ସ୍ୱରୂପଂକର ଆରାଧନାର ପ୍ରକାଶ ଘଟିଛି । ଯେ ସର୍ବତ୍ର ବିରାଜିତ, ତାଂକୁ ଯେଉଁଠାରେ ବି ଅନ୍ୱେଷଣ କରାଯାଇପାରେ । କବି ତତ୍ତ୍ୱରହସ୍ୟ ଭିତରେ ଛଂଦିବାଂଧି ହେବାକୁ ପ୍ରସ୍ତୁତ ନୁହଂତି । ନାରୀସତ୍ତାର ସ୍ୱତଃ ହୃଦୟାବେଗ ନେଇ ସେ ସାମଗ୍ରିକ ସମର୍ପଣର ବ୍ୟାକୁଳତା ପ୍ରକାଶ କରିଛଂତି । ପ୍ରେମ-ଭକ୍ତିର (୧୫) ପରଂପରାକୁ ଆକାଂକ୍ଷା କରିଛଂତି । ଧର୍ମ ଧାରଣାର ମାର୍ଗ, ଆଗ୍ନିର-ବାଗ୍ନିରକୁ ଅସ୍ୱୀକାର କରି କବି ଆତ୍ମନିବେଦନକୁ ଏକମାତ୍ର ସାଧନା ବୋଲି ଜାଣଂତି । 'ତଟିନୀ-ତରଂଗ'(୧୬)ରେ ଏହି ଏକାଗ୍ର ପ୍ରେମାର୍ଚନାର ଆକୁଳତା ଭିତରୁ କବି-ହୃଦୟର ଗାନ ଫୁଟିଛି : "କି କରି ତୋଷିବ

(୧୩) 'ଉଦ୍ଦେଶ୍ୟ' —ଗ୍ରଂଥାବଳୀ, ପୃ. ୨୭

(୧୪) —ଗ୍ରଂଥାବଳୀ, ପୃ. ୧୪

(୧୫) "ଜଗତର ଜ୍ଞାନ ଥାଉ ଜଗତରେ / ମୁଁ ପୂଜିବି ପଦ ପ୍ରେମ ବିଶ୍ୱାସରେ ।"
(ଆକ୍ଷେପ)—ଗ୍ରଂଥାବଳୀ, ପୃ. ୧୪

(୧୬) —ଗ୍ରଂଥାବଳୀ, ପୃ. ୪୪

Digitized by PPRACHIN, SOA

ପ୍ରିୟ ପ୍ରଭୁମନ ନ ଜାଣେ ଉଚିତ ସେବା / ନିତ ପ୍ରତି ତାର ହୋଇଛି କର୍ତ୍ତବ୍ୟ ଦେହ ମନ ଆତ୍ମା ଦେବା ।"

କବିଂକ ନିକଟରେ ବାହ୍ୟପୂଜାର ଉପଗୃର, ଉପକରଣ ସାମଗ୍ରୀ ନାହିଁ; (୧୭) କେବଳ ଅଂତରର ସଂଗୀତ ଅର୍ଚନାହିଁ ସମ୍ବଳ । ହୃଦୟର ସ୍ପଂଦନରୂପରେ ସମଗ୍ର ଜୀବନର ମହାରାଗିଣୀଟି ଛଂଦକଂପିତ ହୋଇଯାଇଛି । ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଦେବାଳୟର ପୂଜାରତ ଏ ନୁହେଁ; ନିରବଧି ହୃଦମଂଦିରରେ ନିଜକୁ ଉତ୍ସର୍ଗ କରିଦେବାର ଏ ଆୟୋଜନ । (୧୮) ଅସୀମର ଶାଶ୍ୱତ ପୂଜାବେଦୀରେ ସୀମାର ଏଇ କ୍ଷୁଦ୍ର ପ୍ରାଣପୂଜାର ଆୟୋଜନର ଏକ ଚମତ୍କାର ରୂପଛବି ଆଂକିଛଂତି ହିଂଦୀ ସାହିତ୍ୟର ଅନ୍ୟତମା ପ୍ରଖ୍ୟାତ ନାୟିକବି ଶ୍ରୀମତୀ ମହାଦେବୀ ବର୍ମା । (୧୯) ମଂଜ-ତଂଜ ବଦଳରେ ତେଣୁ ଜୀବନରେ ନିଜ କଥା ଅଂତରର ବିଶୁଦ୍ଧ ଆକୁତିଟିକକ ହିଁ ସେ ପୂଜାର ଉଦ୍‌ବୋଧନ ସଂଗୀତ ହେବା ସ୍ୱାଭାବିକ । କୁଂତଳାଂକ ସାଧନା-ସରି ସତତ ନିରାଜନରତା ଏକ ପୂରାପୂରି ପୂଜାରଣୀ । ପ୍ରାଣପୂରରେ ପ୍ରେମାସ୍ପଦଂକୁ ତାଂକର ଅହର୍ନିଶ ଆବାହନ । ସେ ପ୍ରିୟ ଲୌକିକ ହୁଅଂତୁ ବା ଅଲୌକିକ ହୁଅଂତୁ, କବିଂକର ପ୍ରୀତିସାଧନା ଓ ପ୍ରେମାନୁଭବରେ ଆପଣାକୁ ପୂର୍ଣୋତ୍ସର୍ଗ କରିଦେବା ଅନିବାର୍ଯ୍ୟ ହୋଇଯାଏ ।

ଏହା ସ୍ୱୀକାର୍ଯ୍ୟ ଯେ, କୁଂତଳାଂକ ରହସ୍ୟବାଦୀ ପ୍ରେମଚେତନାରେ ଅନୁଭବ ଅପେକ୍ଷା ଭାବକଳ୍ପନା ମୁଖ୍ୟସ୍ଥାନ ଅଧିକାର କରିଛି । ରୂପଦେବତାକୁ ଅରୂପ କରି ଦେଖିବାର ଆକୁଳତା କବିଂକୁ କଳ୍ପନାଶ୍ରିତା କରିଛି । ଏହି କଳ୍ପନା ଭିତରେ ହୃଦୟର ପ୍ରଣୟାବେଗ ଅସୀମାୟିତ ହେବାର ରହସ୍ୟାତ୍ମକତାକୁ ଯେପରିକି ନିଷ୍କ୍ରମଣ ଖୋଜିଛି । କୁଂତଳାଂକ ଅନୁଭବର ଚରିତି ଏକାଂତଭାବେ ବ୍ୟକ୍ତିନିଷ୍ଠ ପ୍ରଣୟର; ଅଥଚ ତାର ଉଚ୍ଚାରଣ ବ୍ୟକ୍ତି-ରୂପରେ ସୀମାବଦ୍ଧ ରହିଯାଇନାହିଁ । ପ୍ରେମର ନୀଳପକ୍ଷ କଳ୍ପନାର ଆକାଶୀ-ବକ୍ଷରେ ଅସୀମ ମୁକ୍ତିର ସନ୍ଧାନ ନେଉଛି । ଏ ପଳାୟନ ରହସ୍ୟାନୁଭୂତମୂଳକ ଅପେକ୍ଷା ଅଧିକ ରୋମାଂଟିକ ଚେତନାଧର୍ମୀ । ମାତ୍ର ଏଠାରେ ରହସ୍ୟବାଦୀ ଅମୂର୍ତ୍ତ ପ୍ରେମକାମନା ଓ ଅତୀଂଦ୍ରିୟ ଭାବୋଲ୍ଲାସର ଉଚ୍ଚାରଣକୁ ଅସ୍ୱୀକାର କରିହୁଏନାହିଁ ।

କୁଂତଳାଂକ ପ୍ରେମଭାବନାର ବିଶେଷତ୍ୱ ହେଉଛି, ଏହା ପୂରା ଆକାଶପହିଁରା ନୁହେଁ । ମାଟି ଧରଣୀର ବାସ୍ତବତା ଭିତରେ, ପାର୍ଥିବ ଚେତନାର ଜାଗ୍ରତ ଚେତନା ଭିତରେ ସେ ଆବେଗର ପରିପୁଷ୍ଟି । କବି ଏଇ ଜଗତରେ, ଏଇ ଜୀବନରେ ପ୍ରେମସ୍ୱରୂପଂକ ସନ୍ଧାନ ପାଇଛଂତି ବୋଲି

(୧୭) "କାହିଁ ପାଇବି କନକ ଦୀପ, ଜୀବନଦୀପ ଜାଳିଛି ।"

'ଅର୍ଚ୍ଚନା—ଗ୍ରଂଥାବଳୀ, ପୃ. ୧୫୧

(୧୮) "ସାରାଦିନ ରାତି ସେ ହୃଦ ଆରତି ।" —ଗ୍ରଂଥାବଳୀ, ପୃ. ୧୫୧

(୧୯) "କ୍ୟା ପୂଜା କ୍ୟା ଅର୍ଚନରେ !
ଉସ୍ ଅସୀମକା ସୁଂଦର ମଂଦିର, ମେରା ଲଘୁତମ ଜୀବନରେ ।
ଧୂପବନେ ଉଡ଼ତେ ଜାତେ ହେଁ ପ୍ରତିପଲ ମେରେ ସ୍ପଂଦନରେ ।
ପ୍ରିୟ ପ୍ରିୟ ଜପତେ ଅଧର, ତାଲ ଦେତା ପଲକୋଂକା ନର୍ତ୍ତନରେ ।"

—ମହାଦେବୀ ବର୍ମା—'ନୀରଜା', ପୃ. ୧୦୧

Digitized by PPRACHIN, SOA

ବିଶ୍ୱାସ କରଂନ୍ତି । ହୁଏତ ନରଦେହୀ ପ୍ରଣୟୀ ସେଇ ଅମୂର୍ତ୍ତ ପ୍ରେମମୟଂକର ବ୍ୟକ୍ତ-ରୂପ । ତେଣୁ ତାହାର ପ୍ରୀତିରେ କବି ଅପାର୍ଥିବ ପ୍ରେମର ସ୍ପର୍ଶ ଲଭିକରିଛଂନ୍ତି ବୋଲି ଉତ୍ଫୁଲ୍ଲ । ରବୀନ୍ଦ୍ରନାଥ ଯେ କହିଛଂନ୍ତି "ଯାହାକୁ ଆମେ ଭଲପାଉ, ତାର ମଧ୍ୟରେ ଆମେ ଅନଂତର ପରିଚୟ ପାଉ—ଏହାର ତାତ୍ପର୍ଯ୍ୟ ଏଇ ପରିପ୍ରେକ୍ଷୀରେ ସୁବୋଧ ହୋଇଉଠେ । ଏକ ବ୍ୟକ୍ତିନିଷ୍ଠ ପ୍ରେମଚେତନା ଭିତରେ ଭାବରେ ଓ ଅନୁଭବରେ ସ୍ୱୟଂ ପ୍ରେମର ଶାଶ୍ୱତ ରାଜ୍ୟକୁ ସତ୍ତାର ଏଇ ଯାତ୍ରା । ବ୍ୟକ୍ତିଗତ ପ୍ରେମ ଏକ ସୋପାନ, ଏକ ମାଧ୍ୟମ, ଏକ ଚକିତସ୍ପର୍ଶ, ଅନଂତପ୍ରେମର ତଡ଼ିତ୍ପ୍ରକାଶ । (୨୦) କବି ଯେପରିକି ଗୋଟିଏ ବୀଣାର ତାର ଛୁଆଁରେ ସଂଗୀତର ସୁଧାଲୋକକୁ ପ୍ରବେଶ କରଂନ୍ତି । ଗୋଟିଏ କ୍ଷୁଦ୍ର ତରଂଗର ସ୍ପର୍ଶରେ ସମୁଦାୟ ସମୁଦ୍ରର ସାନ୍ନିଧ୍ୟ ଲଭିକରଂନ୍ତି । କୁଂତଳାଂକ ପରି ଅନେକଂକ ଜୀବନରେ ବ୍ୟକ୍ତିଗତ ପ୍ରେମର ଚରିତାର୍ଥତାରେ ପ୍ରେମକାହାଣୀ ଯେ ପୂର୍ଣ ହୁଏନାହିଁ, ତାର ଦୃଷ୍ଟାଂତ ବିରଳ ନୁହେଁ । ସେଇ ସବୁ "ଅନଂତ ଅଭିଳାଷୀ ହୃଦୟରେ କ୍ଷୁଦ୍ର ପାର୍ଥିବ ଓ ଶାଂତ ଏକ ବ୍ୟକ୍ତିକୁ ନିବେଦିତ ପ୍ରେମ ଯେପରି ଅଂତହୀନ ରହସ୍ୟର ଦ୍ୱାର ଉନ୍ମୋଚନ କରିଦିଏ । ଏକ ଏକ କ୍ଷୁଦ୍ର ଅନୁଭୂତିର ପାହାଚ ଦେଇ ପ୍ରେମ ଲୋକର ନିର୍ବାଧ ବିସ୍ତାର ଭିତରକୁ ଚେତନାର ନିଷ୍କ୍ରମଣ ଘଟେ ।

କୁଂତଳାଂକ ପ୍ରେମଚେତନାରେ ଏଇ ଅସୀମ ଅଭିଳାଷର ଛବିଟି ଅସ୍ପଷ୍ଟ ନୁହେଁ । (୨୧) ସୀମାର ଅସୀମ କାମନା ହିଁ ଏ ପ୍ରେମାନୁଭୂତିରେ ଯେ ସାର୍ଥକତା ପାଏ—ତାହା କବିଂକ ସଂବୋଧନାତ୍ମକ କବିତାମାନଂକରେ ପୁଷ୍କଳତା ଲଭିକରିଛି ।

କୁଂତଳାଂକ ପ୍ରେମଭାବନାର ମୁଖ୍ୟବିଭବ ଆବେଗପ୍ରବଣତା ଓ ହୃଦୟର ଏକନିଷ୍ଠତା । ପ୍ରେମାସ୍ପଦଂକୁ ଯେତେ ବହିର୍ବିଶ୍ୱରେ ପ୍ରକଟିତ ଦେଖିଲେ କବି ସ୍ୱାଭାବିକ ପ୍ରାଣର ଆକର୍ଷଣ ତାଂକୁ ହୃଦୟର ଏକତାନତା ଭିତରକୁ ସବୁବେଳେ ଟାଣିଆଣିଛି । (୨୨) କୁଂତଳାଂକ ପ୍ରେମଚେତନା ସତ୍ତାର ସାମଗ୍ରିକତା ଭିତରୁ ଉଦ୍‌ବୋଧନ ଲଭିକରିଛି । ଦେହର କାମନାକୁ ବାଦ୍ ଦେଇ, ମନ-ପ୍ରାଣର ଆବେଗ ଆକୁଳତାକୁ ପରିହାର କରି ଅରୂପ, ଅମୂର୍ତ୍ତ, ଶୂନ୍ୟାତ୍ମକ ମୁକ୍ତି-ଆକାଂକ୍ଷା ତାଂକ ରଚନାରେ ପରିଦୃଷ୍ଟ ହୁଏନାହିଁ । ମନକୁ ଦେହରୁ, ଦେହକୁ ଭାବଆବେଗମୟ ହୃଦୟଠାରୁ ବିଚ୍ଛିନ୍ନ କରି ପ୍ରେମସ୍ୱରୂପକୁ ନିରାଲଂବ ସ୍ଥିତିରେ ଲୋଡ଼ିବା ନାରୀର ସାଧନା-ଅନୁକୂଳ ନୁହେଁ । ପ୍ରାଣକୁ ସତ୍ତାର ସାମଗ୍ରିକତା ସହ ଅନ୍ୱିତ କରି ଓ ଏକାଗ୍ର କରି ସମର୍ପଣର ଉଚ୍ଚାରଣ ଭିତରେ ନାରୀର ପ୍ରେମସାଧନା ରୂପାୟିତ ହୋଇଥାଏ । ତେଣୁ ଭକ୍ତି ବା ଭାବସାଧନା ନାରୀର ଈଶ୍ୱରୋପଲବ୍‌ଧିପାଇଁ ଏପର୍ଯ୍ୟଂତ ଅଧ୍ୟାତ୍ମ ଇତିହାସରେ ଅପରିହାର୍ଯ୍ୟ ହୋଇଆସିଛି । ତାର ପରମ ନୈର୍ବ୍ୟକ୍ତିକ ନିର୍ବିଶେଷ ନୁହଂନ୍ତି । ନାରୀର ଅଧ୍ୟାତ୍ମଚେତନା ଏକ ସଗୁଣ ବ୍ୟକ୍ତିରୂପ ଈଶ୍ୱରଂକୁ

---

(୨୦) "Love in its depths is a contact of the Divine Possibility or Reality in oneself with the Divine Possibilty or Reality in the loved." —Sri Aurobindo : Letters on Yoga Vol. 2 & ୬.—p. 773

(୨୧) "ସସୀମରେ ଆଜ ଅସୀମ ଲୋକନେ ପସୁଣଟି ପଡ଼େ ଉଛୁଳି ।" —ଗ୍ରଂଥାବଳୀ, ପୃ. ୯୭

(୨୨) "ମୋହର ଅଂତରେ ଶୁଭେ ସେହି ସ୍ୱର / ମୋ ମନ ମଂଦିରେ ତୋ ରୂପ ସୁଂଦର ।" —ଗ୍ରଂଥାବଳୀ, ପୃ. ୯୭

Digitized by PPRACHIN, SOA

କେଂଦ୍ରକରି ଆବର୍ତ୍ତିତ । କୁଂତଳାଂକ କବିତା ଅଦେହୀ ପ୍ରେମର କଥା କହୁନାହିଁ । ମାତ୍ର ଦେହଧର୍ମିତାକୁ ପ୍ରେମର ସଂପୂର୍ଣ ଓ ଶେଷକଥା ବୋଲି ମାନିନେଇନାହିଁ ମଧ୍ୟ । ଶୁଦ୍ଧ ପ୍ରେମକୁ ହିଁ ସେ ପରିପୂର୍ଣ ଭାବେ କାମନା କରେ । (୨୩)

ଏ ପ୍ରେମ-କାମନାରେ ଆସକ୍ତିଗତ ଦୁର୍ବଳତା, ତତ୍‌ଜନିତ ମାଳିନ୍ୟ, ସୀମାର ଦୈନ୍ୟ ପ୍ରଭୃତି ମିଶିରହିଥିବା ଅସମ୍ଭବ ନୁହେଁ । ତଥାପି ପ୍ରେମର ପାବନୀ-ଶକ୍ତିରେ କବି ପୂର୍ଣ ଆସ୍ଥାବନ୍ତୀ । ମର୍ତ୍ତ୍ୟଜୀବନର ସକଳ ପାର୍ଥିବତା ଭିତରେ ଏକମାତ୍ର ପ୍ରେମ ହିଁ ଅପାର୍ଥିବ ଶକ୍ତିସଂପନ୍ନ । ସଂସାରର ମାଳିନ୍ୟକୁ ପ୍ରେମର ଅଗ୍ନିଶିଖା ଧ୍ୱଂସ କରିଦିଏ; ତାର କାନ୍ତିଯୁକ୍ତ ସ୍ପର୍ଶ ପବିତ୍ର ଶୀତଳ କରିଦିଏ; ପ୍ରେମର ସ୍ପର୍ଶରେ ବ୍ୟକ୍ତିଜୀବନର ଲୌହମାଳିନ୍ୟ ସ୍ୱର୍ଣକାଂତି ଧାରଣକରେ । (୨୪) ପାର୍ଥିବ ଜୀବନର ଅକ୍ଷମତା ସତ୍ତ୍ୱେ ଅଂତର ଆତ୍ମାର ଶ୍ରେଷ୍ଠତା ପବିତ୍ରତା ଓ ଅପାର୍ଥିବ ଅଭିଳାଷକୁ କବି ସ୍ୱୀକାର କରଂତି । ଜୀବର ସର୍ବଶ୍ରେଷ୍ଠ ସଂପଦ ତାର ଚୈତସତ୍ତ୍ୱା ବା ଆତ୍ମା ଏବଂ ସେ ଆତ୍ମାର ଶ୍ରେଷ୍ଠକାମନା ସ୍ୱୟଂ ପ୍ରେମସ୍ୱରୂପ । (୨୫) ଆତ୍ମା ଜାଗ୍ରତ ହୋଇଉଠିଲେ ସେ ନିଜକୁ ଆଉ ସଂଗୁପ୍ତ ରଖିପାରଂତି ନାହିଁ । (୨୬) ଆତ୍ମା ହିଁ କେବଳ ସେ ପରମ ସୁଂଦର ପ୍ରେମରୂପକୁ ପ୍ରତ୍ୟକ୍ଷ କରିପାରେ । (୨୭) ପ୍ରାଣର ଏ ଅନୁଭବ, ଆତ୍ମାର ଏ ମୁଗ୍ଧ ଅନୁରାଗକୁ ଜଗତଜଂଜାଳ ଓ କର୍ମମୟ ଜୀବନ ଭିତରେ ବି ଏକାଗ୍ରଚେତନାରେ ଧରି ରଖିବାକୁ କବିଚିତ୍ତ ବ୍ୟାକୁଳ । ଅଂତରର ସ୍ନିଗ୍ଧାନୁଭୂତିଟି ବହିର୍ଜୀବନରେ ପ୍ରକଟିତ ନହେଉ ପଛେ, ସବୁ ସମୟରେ ଓ ଅବସ୍ଥାରେ ମୃଗନାଭିକସ୍ତୁରୀ ଭଳି ଏକ ମୃଦୁ ମହକ ଓ ସ୍ପର୍ଶାନୁଭୂତିର ପୁଲକବିହ୍ୱଳ ହୋଇ ରହିବାକୁ କାମନା କରିଛଂତି । (୨୮)

'ଅର୍ଚ୍ଚନା'ରେ ଏହି ପ୍ରେମଚେତନାର ଗଭୀର ଓ ମାର୍ମିକ ରୂପାନୁଭବ । କବିଂକର ବିଶ୍ୱାସ, ଜୀବନରେ ପ୍ରେମର ଉଚ୍ଚାରଣଟି ପ୍ରେମଦେବତାଂକର ଅନୁଗ୍ରହସଂଜାତ । ସେଇ ସ୍ୱରସ୍ରଷ୍ଟା, ପୁଣି

---

(୨୩) "ଦେବ ବା ନ ଦେବ, ଦେବ ବା ନିଦ୍ଦେବ, କଂଟୁ ପଦକଂଜେ ତବହେ,
ଯା ହଅ ଦେବାକୁ ହେବ, ନଭିକ୍ଷିବ ଦେବ ଦେବ ହେ ।"
କରୁଣାଭିକାଷ—ଗ୍ରଂଥାବଳୀ, ପୃ. ୬

(୨୪) "ମୋ ମନ ଲୁହା ଯଦି ତୁ ଅୟସ୍କାଂତ
ମୋତେ ପରଶି ସୁନା କର ସୁକାଂତ ।" ପୂଜା (ଅଂଜଳି) ଗ୍ରଂଥାବଳୀ, ପୃ. ୭

(୨୫) "ସର୍ବ କାମନାସାର ଜୀବ ଆତ୍ମାରେ । ସର୍ବ ସୌଂଦର୍ଯ୍ୟପୂର୍ଣ ତୋହରି ଠାରେ ।"
—ଗ୍ରଂଥାବଳୀ, ପୃ. ୮

(୨୬) "ଘନ ଅଂଧାରେ ଆତ୍ମା କାଂଦିବ ବସି / ଓହ୍ଲାଇ ଆସିବୁ ତୁ ଜ୍ୟୋତି ବରଷି ।"
—ଗ୍ରଂଥାବଳୀ, ପୃ. ୫

(୨୭) "କେଡ଼େ ସୁଂଦର ତୁହି ଏକା ସେ ଜାଣେ
ଅନୁଭବ କରିଛି ତୋତେ ଯେ ପ୍ରାଣେ ।"
—ଗ୍ରଂଥାବଳୀ, ପୃ. ୮

(୨୮) "କସ୍ତୁରୀ ଯେସନ ଯେସନ୍ତେ ମୃଗନାଭିରେ
ସ୍ମୃତି ରହିଥା ତେସନ୍ତେ ହୃଦ ଭିତରେ ।"
—ଗ୍ରଂଥାବଳୀ, ପୃ. ୮

Digitized by PPRACHIN, SOA

ସେଇ ଧ୍ୱଂ ଗୀତକାର । ଆପଣାର ପ୍ରେମରସକୁ ସୃଷ୍ଟିର ହୃଦୟପାତ୍ରରୁ ପାନକରିବାକୁ ବ୍ୟାକୁଳ । କୁନ୍ତଳାଙ୍କ କାବ୍ୟଚେତନାରେ ଏ ରହସ୍ୟବାଦୀ ପ୍ରେମବ୍ୟଂଜନା ସ୍ପଷ୍ଟ ପ୍ରତ୍ୟକ୍ଷ । (୨୯)

ନାୟିକବିଙ୍କ କାବ୍ୟୋଚ୍ଚାରଣରେ ପ୍ରେମଭାବନାର ବୈଚିତ୍ର୍ୟମୟ ମିଳନ-ବିରହର ବହୁ ଚିତ୍ର ଅଙ୍କିତ । କବିଙ୍କର ସଫଳ ଚିତ୍ରଯୋଜନା ଭିତରେ ସେଗୁଡ଼ିକ ଏକାନ୍ତ ବାସ୍ତବ ଓ ସ୍ପର୍ଶଗ୍ରାହ୍ୟ ହୋଇଉଠିଛନ୍ତି । ପ୍ରେମଭାବନାର ବୈଚିତ୍ର୍ୟ ଭିତରେ ବିରହ ମିଳନ ଉଭୟ ପଥରେ ଯେ ପ୍ରେମାସ୍ପଦଙ୍କୁ ଲାଭକରିଯାଏ, ସେ ଭାବନାଗୁଡ଼ିକ ମଧ୍ୟ କବିଙ୍କର ଏକାଗ୍ର ଧ୍ୟାନମୟତା ଭିତରେ ଜାଗ୍ରତ ହୋଇଛି । 'କେଉଁ ଦୂରଲୋକରେ ତୁମେ ରହୁଥାଅ । ତଥାପି ମନେହୁଏ ଯେପରି ଅତି ନିକଟରେ'—ଏଇ ବିଚ୍ଛେଦ ଓ ସାମୀପ୍ୟର ଯୁଗପତ୍ ଅନୁଭବରେ ପ୍ରେମଚେତନାର ଚିରନ୍ତନ ରୂପାଲୋକଟି ଉଜ୍ଜ୍ୱଳ ଉଠିଛି ।

କୁନ୍ତଳାକୁମାରୀଙ୍କର କାବ୍ୟମାନସର ପୂର୍ଣ୍ଣ ପରିଚୟ ଲାଭ ନିମନ୍ତେ ତାଙ୍କର ପ୍ରକୃତିଚେତନା-ସମ୍ବଳିତ କବିତାମାନଙ୍କର, ବିଶେଷକରି 'ଉଚ୍ଛ୍ୱାସ'ର ସଂବୋଧନାତ୍ମକ ରଚନାଗୁଡ଼ିକର ଅନୁଧ୍ୟାନ ଆବଶ୍ୟକ । ଦାର୍ଶନିକ ଏ କବିତାମାନଙ୍କୁ କୁନ୍ତଳାଙ୍କ କାବ୍ୟଚେତନାର ପୃଷ୍ଠଭୂମି ବୋଲି ବିଚାର କରିଯାଇପାରେ । କବିଙ୍କର କଳାଗତ ସାଫଲ୍ୟ ମଧ୍ୟ ଏଇ କବିତାମାନଙ୍କର ଅନ୍ତର୍ଦର୍ଶନର ରସୋତ୍ତୀର୍ଣ୍ଣ ଅଭିବ୍ୟକ୍ତିରେ ପ୍ରକଟିତ ହୋଇଛି । ଦର୍ଶନର ତର୍କସୀମାକୁ ଅତିକ୍ରମ କରି ସେ ଜୀବନର ସମଗ୍ରାନୁଭୂତି ଉପରେ ଆଧାରିତ ଭାବାବେଶମୟ ଚିନ୍ତାସାମର୍ଥ୍ୟର ମଧ୍ୟ ଯଥୋଚିତ ପରିଚୟ ଦାଚି ପାରିଛନ୍ତି ।

କୁନ୍ତଳାଙ୍କ କାବ୍ୟଚେତନାରେ ପରାବିଦ୍ୟାର ଆଧ୍ୟାତ୍ମିକତା, ଲୌକିକ ପ୍ରେମର ତୀବ୍ରତା ଓ ରହସ୍ୟବାଦୀ ଦାମ୍ପତ୍ୟଭାବନାର ସମନ୍ୱୟ ଦେଖାଯାଏ । ସମସ୍ତ ସୃଷ୍ଟିରେ ଏକ ଅସୀମ ସତ୍ତାର ଛାୟାକୁ ଅନୁଭବ କରିବାର ସମ୍ବାଦ ତାଙ୍କର ସମଗ୍ର କାବ୍ୟସଙ୍କଳନରେ ପ୍ରକାଶିତ । ଏଇ ଅବସରରେ ରହସ୍ୟବାଦୀ ହିନ୍ଦୀ ନାୟିକବି ମହାଦେବୀ ବର୍ମାଙ୍କ ସ୍ୱରଚିତ 'ସାଂଧ୍ୟଗୀତ'ର ଭୂମିକାରେ ପ୍ରଦତ୍ତ ବିଚାରଧାରାକୁ ସକଳ ପ୍ରକୃତିଭାବନାତ୍ମକ ରହସ୍ୟବାଦୀ କାବ୍ୟସମ୍ବାଦ ସମ୍ପର୍କରେ ସ୍ମରଣ କରିଯାଇପାରେ "ପହଲେ ବାହାର ଖିଲନେୱାଲେ ଫୁଲୋଁକେ ଦେଖ୍ କର ମେରେ ରୋମରୋମ ସେ ଐସା ପୁଲକ ଦୌଡ଼ ଜାତା ଥା ମାନୋ ୱହ ମେରେ ହୀ ହୃଦୟମେଁ ଖିଲ ହୋ; ପରନ୍ତୁ ଉସକେ; ଅପନେସେ ଭିନ୍ନ ପ୍ରତ୍ୟକ୍ଷ ଅନୁଭବମେଁ ଏକ ଅବ୍ୟକ୍ତ ବେଦନା ଭୀ ଥୀ । ଫିର ୱହ ସୁଖଦୁଃଖମିଶ୍ରିତ ଅନୁଭୂତି ହୀ ଚିନ୍ତନକା ବିଷୟ ବନନେ ଲଗୀ ଔର ଅନ୍ତମେ ନଜାନେ କୈସେ ମେରେ ମନସେ ଉସ ବାହର ଭୀତର ମେ ଏକ ସାମଂଜସ୍ୟସା ଢୁଁଢ଼ ଲିୟା ହୈ—ଜିସନେ ସୁଖଦୁଃଖ କୋ ଇସ ପ୍ରକାର ବୁନଦିୟାକି ଏକ ଏକ ପ୍ରତ୍ୟକ୍ଷ ଅନୁଭବକେ ସାଥ ଦୂସରେ ଏକ ଅପ୍ରତ୍ୟକ୍ଷ ଆଭାସ ମିଲତା ରହତା ହୈ ।" କୁନ୍ତଳାଙ୍କ ରଚନାରେ ମଧ୍ୟ "ସାରା ବିଶ୍ୱେ ତୁମ ଚରଣରେଖା ଗୋ" (୩୦) ପରି ସ୍ପଷ୍ଟ ଉଚ୍ଚାରଣରେ, ପୁଣି ପ୍ରକୃତିର ବହୁରୂପ ରଂଗମୟ ଚିତ୍ର ଓ ଜୀବନର ବିଚିତ୍ର ଭାବଅନୁଭୂତିମାନଙ୍କର ରୂପାୟନରେ ଏ ଭାବନାର

(୨୯) "ପ୍ରେମ କରେ କିମ୍ପା କହିବ ଗରବେ, ପ୍ରେମ କରିବା ମୋ କରଣୀ
ପ୍ରେମ ଅଧିକାର ଦେଲ ବୋଲି ସଖା, କୃତାର୍ଥ ମୁଁ ଦୀନ ପରାଣୀ ।"
—ଗ୍ରନ୍ଥାବଳୀ, ପୃ. ୧୬୩

(୩୦) 'ଅଭିମାନେ'—ଗ୍ରନ୍ଥାବଳୀ, ପୃ. ୪୭

Digitized by PPRACHIN, SOA

ସାମ୍ୟରହିଛି । ରଜନୀର ଆକାଶରେ, ବିଦ୍ୟୁତର ଚମକରେ, ପତ୍ରର ମର୍ମରରେ, ନଦୀର କଲତାନରେ ଓ ହୃଦୟରେ ଅଶ୍ରୁ ଆନନ୍ଦରେ ମିଶିରହିଥିବା ଏକ ଅପରୂପ ଶ୍ରୀସ୍ୱାମୀଙ୍କ ପ୍ରତି କବିପ୍ରାଣର ଉଚ୍ଛଳିତ ଆକାଂକ୍ଷା 'ଉଚ୍ଛ୍ୱାସ'ର ସମ୍ବୋଧନାତ୍ମକ କବିତାଗୁଡ଼ିକରେ ରୂପଲାଭ କରିଛନ୍ତି ।

କବିର ପ୍ରେମ ଲୌକିକ ହେଉ ବା ଅଲୌକିକ ହେଉ, ତାର କାବ୍ୟାଭିବ୍ୟକ୍ତି କିନ୍ତୁ ଲୌକିକ ପ୍ରତୀକ ସଂଯୋଜନାରେ । ପ୍ରକୃତିର ବହୁରୂପମୟତାରେ, ପରିବର୍ତ୍ତନଶୀଳ ବିଚ୍ଛିନ୍ନତାରେ ଅସୀମ ଚେତନା ତଥା ସୀମାହୀନ ବ୍ୟାକୁଳତାର ଯେଉଁ ଆବେଗ କବିଚିତ୍ତରେ ଜାଗେ, ତାହା ପ୍ରକୃତିର ଖଣ୍ଡିତ ଅଂଶ ସହ ବ୍ୟକ୍ତିଭାବନାକୁ ସମନ୍ୱିତ କରିଦିଏ । ମାତ୍ର ତାହା ମାନବହୃଦୟର ଅସୀମ ତୃଷାକୁ ପ୍ରଶମିତ କରିପାରେନାହିଁ । ମାନବୀୟ ସମ୍ବନ୍ଧରେ ଯେ ପର୍ଯ୍ୟନ୍ତ ଅନୁରାଗମୟ ଆତ୍ମସମର୍ପଣର ଭାବ ସୃଷ୍ଟି ହୋଇନାହିଁ, ସେ ପର୍ଯ୍ୟନ୍ତ ସେ ସମ୍ବନ୍ଧ କୌଣସି ସାର୍ଥକତା ଲାଭକରିପାରେନାହିଁ । ସୀମାର ହୃଦୟ ସଂଗୁପ୍ତ ପ୍ରେମମାଧୁରୀ ସୀମାତୀତକୁ ଉତ୍ତୀର୍ଣ୍ଣ ହୋଇନଗଲେ ହୃଦୟର ଅଭାବ ପୂର୍ଣ୍ଣ ଦୂରହୁଏନାହିଁ । ସୁତରାଂ ପ୍ରାତିଭାସିକ ଜଗତ୍‌ର ଅନେକରୂପତାରେ ଏକ ଏକ ମଧୁର ବ୍ୟକ୍ତିତ୍ୱ ଅନ୍ୱେଷଣକରି ତା ସହ ସ୍ୱତନ୍ତ୍ରଭାବେ ଏବଂ ସକଳ ଅନ୍ତର୍ଗତ ଐକ୍ୟବୋଧ ସହ ସାଧାରଣଭାବେ ଏକ ସମ୍ପର୍କର ଅନ୍ୱେଷଣ ଖୋଜିବା କାବ୍ୟଚେତନାର ଭିନ୍ନ ଏକ ସାଧନା-ସ୍ୱରୂପରୂପେ ପରିଗଣିତ ।

ଆତ୍ମା-ପରମାତ୍ମା ଅଥବା ସସୀମ-ଅସୀମର ଭାବ-ସମ୍ପର୍କ ଜାଗତିକ ପ୍ରଣୟ-ସମ୍ବନ୍ଧ ଅପେକ୍ଷା ଅଧିକ ଗଭୀର ହୋଇଥାଏ । ପୁଣି ଯେଉଁ ପ୍ରେମ (ପାର୍ଥିବ ହେଉ ବା ଅପାର୍ଥିବ ହେଉ) ଜୀବନକାଳରେ ମିଳନ ଅଣାବର୍ଜିତ ଏକ ଚିରବିରହର ଅଭିଶାପ ରୂପରେ ଆବିର୍ଭୂତ । ସାଧାରଣ ମିଳନ-ବିରହର ଭାବକର୍ଷିତ ପ୍ରେମସମ୍ପର୍କ ଅପେକ୍ଷା ସେଥିରେ ଆତ୍ମପୀଡ଼ନ ବେଦନା ଅଧିକ ତୀବ୍ର ଗଭୀର । କୁନ୍ତଳାଙ୍କ ପ୍ରାର୍ଥିବ ବିରହର ଚିରନ୍ତନତା ଅପାର୍ଥିବ ପ୍ରଣୟର ଅନନ୍ତ ତତ୍ତ୍ୱ ସହ ଏହି ଅବକାଶରେ ଏକାକାର ହେବାର ସୁଯୋଗ ପାଇଛି । କୁନ୍ତଳାଙ୍କ କାବ୍ୟଚେତନାର ବେଦନାବୋଧଟି ଲୌକିକ ତଥା ଆଧ୍ୟାତ୍ମିକ । ଚତୁଃପାର୍ଶ୍ୱର ପୀଡ଼ିତ ସମାଜ ଓ ଶୋକଗ୍ରସ୍ତ ମାନବର ଦୁଃଖଦୈନ୍ୟ ବର୍ଣ୍ଣନାରେ ଲୌକିକ ଭାବଟିର ପ୍ରକାଶ । ଆଧ୍ୟାତ୍ମିକ ବେଦନାଟି ହୃଦୟର ନିରୋଳା ଅନୁଭବ ଭିତରୁ ଉଚ୍ଛ୍ୱସିତ ହୋଇଛି । ଫୁଲଟିଏ ମଉଳିବାରେ, ଝରିଯିବାରେ ମଧ୍ୟ କବିପ୍ରାଣରେ ବେଦନାଶ୍ରୁର ଆବିର୍ଭାବ । ଆତ୍ମାର ଶାଶ୍ୱତ ବିରହଚେତନା ନାରୀସତ୍ତାର ମର୍ମମୂଳରେ ଯେପରି ଏକ ଚିରନ୍ତନ ସଜଳତା ଭିତରେ ଦ୍ରବୀଭୂତ ହୋଇଯାଇଛି । ଅନୁଭୂତିର ଏ ମାର୍ମିକତା ଓ ଅଭିବ୍ୟକ୍ତିର ଅକୃତ୍ରିମତା କୁନ୍ତଳାଙ୍କର ସାଧାରଣ ଚିନ୍ତନଧର୍ମୀ କବିତାମାନଙ୍କୁ ମଧ୍ୟ କଳାତ୍ମକ କମନୀୟତାରେ ଭରିଦେଇଛି ।

କବିଙ୍କ ରଚନାରେ ପ୍ରେମର ମୂଳସ୍ୱର ପାର୍ଥିବ । କ୍ରମଶଃ ତାହାର ଉଦାତ୍ତୀକରଣ ଘଟିଛି । ପ୍ରେମପୂତ ଅନ୍ତଃକରଣ ପ୍ରେମର ସେ ମହନୀୟ ରୂପ ଦେଖିବାକୁ ସମର୍ଥ ହୋଇଥାଏ । ପାର୍ଥିବ ଜୀବନରେ ବେଦନାର ଆତିଶଯ୍ୟ ଭିତରୁ 'ଉଚ୍ଛ୍ୱାସ'ରେ ସଙ୍କଳିତ ରଚନାମାନଙ୍କର ଭକ୍ତି ଓ ଆଧ୍ୟାତ୍ମିକ ପ୍ରବଣତା ରୂପଲାଭ କରିଛି । ସମ୍ବୋଧନାତ୍ମକ କବିତା (Ode) ଓ ଅନ୍ୟାନ୍ୟ ନୈସର୍ଗ ଭାବନାତ୍ମକ କବିତା / ଗୀତମାନଙ୍କରେ ପ୍ରକୃତି ବିରହର ଉଦ୍ଦୀପନ ବିଭାବ ରୂପେ କବି ଆତ୍ମାର ପ୍ରେମାକୁଳତାକୁ ପରିପୁଷ୍ଟ କରିଛି । ଏସବୁ ରଚନାରେ ପ୍ରକୃତି ଉପରେ ଆରୋପ ଚମତ୍କାର ଆତ୍ମିକତା ଲାଭକରିଛି । ଏ କବିତାଗୁଡ଼ିକରେ ରହସ୍ୟବାଦୀ ଚେତନାର ସ୍ୱରୂପ ଦ୍ୱିବିଧ—

Digitized by PPRACHIN, SOA

(୯) ଆତ୍ମା-ପରମାତ୍ମା ସମ୍ବନ୍ଧର ଦର୍ଶନକୁ ରୋମାଂଟିକ ଶୈଳୀରେ ଅଭିବ୍ୟକ୍ତ କରିବା, ଏବଂ (୨) ମାନସିକ ବେଦନାକୁ ରହସ୍ୟାତ୍ମକ ଅନୁଭାବନା ସହ ସମ୍ବନ୍ଧିତ କରି ରଖିବା । ସରଳ ଭାଷା, ସାବଲୀଳ ଗତିଛଂଦ ଓ ତୀବ୍ର ଅନୁଭୂତିର ସ୍ପର୍ଶ ଘେନି ଏ ରଚନାମାନ ବିଶେଷକରି 'ଶେଫାଳିପ୍ରତି' ଓଡ଼ିଆ କବିତା ରାଜ୍ୟରେ ଦୁର୍ଲଭ ମହିମା ଲାଭକରିଛି । ଏହି 'ତତ୍ତ୍ୱ'ଗୁଡ଼ିକରେ ବିଫଳତା, ଭାବବିହ୍ୱଳତା ଓ ଆଶାଆକୁଳତାର ସଜଳ ସ୍ୱର ସହ ଜୀବନାତୀତ ସମ୍ପର୍କରେ ଗଭୀର ନିଷ୍ଠା ଓ ପ୍ରତ୍ୟୟ ଚମତ୍କାର ତାତ୍ତ୍ୱିକ ସଫଳତା ଲାଭକରିଛି ।

ଏ ଆତ୍ମା-ପରମାତ୍ମା ସମ୍ବନ୍ଧ ଚିନ୍ତା ଉପନିଷଦ ପ୍ରଭାବପୁଷ୍ଟ ହେଲେହେଁ କୁଂତଳାଂକ କାବ୍ୟଚେତନା ମୁଖ୍ୟତଃ ଦ୍ୱୈତବାଦୀ । ଯୁଗ୍ମସତ୍ତାର ଅନୁଭବ ବିଳାସରେ ତାଂକର କାବ୍ୟାନୁଚିଂତା ଅଧିକ ଭାବରିବଳିତ । ଆତ୍ମା-ପରମାତ୍ମା ଅନଂତ ପ୍ରଣୟରେ ନିତ୍ୟ ସଂଯୁକ୍ତ ନିର୍ବାଧମିଳନକାମୀ । ମାତ୍ର ଅଦ୍ୱୈତ-ବିଲୟ ପାଇଁ କେଉଁଠାରେ କବି ଅଭିଳାଷ ପ୍ରକଟିତ ହୋଇନାହିଁ । ସେ ବରଂ ଚିର ପ୍ରଣୟଲୀଳାର ରସପିପାସୁ । କ୍ଷୁଦ୍ର ଓ ବୃହତ୍, ସୀମା ଓ ଅସୀମ, ନଦୀ ଓ ସମୁଦ୍ର ପ୍ରଭୃତି ଦ୍ୱୈତ ରୂପଚେତନାରେ ହିଁ ସେ ଲୀଳାବିସ୍ତାରର କାବ୍ୟସ୍ୱୀକୃତି ।

ଅର୍ଥାତ୍ ମୋକ୍ଷ ବା ନିର୍ବାଣାତ୍ମକ ନିଃଶେଷତା ନୁହେଁ, ବରଂ ଦ୍ୱୈତର ଜୟଗାନରେ କବି ସୀମାର ଲଘୁତାକୁ ବି ମର୍ଯ୍ୟାଦାପୂର୍ଣ ଦେଖିଛଂତି । ବ୍ୟକ୍ତିତ୍ୱର ଲଘୁତା ପ୍ରତି ଅବଜ୍ଞା ପରିବର୍ତ୍ତେ ଏକ ସ୍ନେହ-କୋମଳ ଉଦାର ଦୃଷ୍ଟି ତଥା ଅସ୍ତିତ୍ୱର ସାଧନା ସାମର୍ଥ୍ୟ ଏବଂ ସ୍ୱଜାତ ଅଂତଃଶକ୍ତି ଉପରେ ଗଭୀର ଆସ୍ଥା ତାଂକ କାବ୍ୟାନୁଭୂତିରେ ଉଚ୍ଚାରିତ । (୩୧) ସ୍ଫୁଲିଂଗ ଓ 'ଓଡ଼୍'ମାନଂକରେ ଏ ଲଘୁତାର ନିଃସଂକୋଚ ପ୍ରସାରଣକରି ପୂର୍ଣ ଆଶ୍ୱସ୍ତିରେ କବି ଗାନ କରିଛନ୍ତି ଯେ, ଏହି କ୍ଷୁଦ୍ରତାହିଁ ଅସୀମକୁ ନିଜ ପାଇଁ ଆକର୍ଷଣକରିବ ଓ ଅସୀମଦ୍ୱାରା ଅବଶେଷରେ ସାଦରେ ଗୃହୀତ ହେବ । ବ୍ୟକ୍ତିର ଲଘୁତା ଓ ଅସାମର୍ଥ୍ୟ କେଉଁଠାରେ ଅଗୌରବର କାରଣହୋଇ ତାଂକର ଆଶାୟୀ କବିସତ୍ତାକୁ ହତୋତ୍ସାହୀ କରିପାରିନାହିଁ, ବରଂ ଜୀବନପାଇଁ ଅସୀମ ପ୍ରେରଣା ରୂପେ ଦେଖାଦେଇଛି, କର୍ମଭୂମି ପୃଥିବୀକୁ ଲୀଳାନିକେତନ ସଜାଇଛି । ବ୍ୟକ୍ତି ଏକ ନିର୍ଜୀବ ଖେଳନା ହେବ । ପରିବର୍ତ୍ତେ ସେ ଲୀଳାର ନିତ୍ୟଦୋସର ରୂପେ ଅଂଗୀକାର ଲାଭକରିଛି ।(୩୨)

କବିଂକ ସ୍ୱରରେ ନିରାଶାର ରାଗ ରହିଛି, ମାତ୍ର ତାଂକ କାବ୍ୟ-ଦର୍ଶନ ଦୁଃଖବାଦୀ ନୁହେଁ । ଏକ ଗଭୀର ବିଶ୍ୱାସଦୀପ୍ତ ଉଜ୍ଜ୍ୱଳ ଆଶାବାଦ ତାଂକ କାବ୍ୟସ୍ୱରର ମୂଳରାଗ ବୋଲି

---

(୩୧) "ବିଧାତାର ସାର ସୃଷ୍ଟି ଅପୂର୍ବ ଜୀବନ
ମର ଦେହେ ଅମରାତ୍ମା କରେ ଯା ବସତି ।"
'କମଳପ୍ରତି'—କୁ: କୁ: ଗ୍ରଂଥାବଳୀ, ପୃ. ୪୮୩

(୩୨) "ଅକାଳେ ମରିବା ପାଇଁ ଜଗତେ ଜନମି ନାହିଁ
ଅନଂତ ଜୀବନ ପ୍ରାଣେ ଅନଂତ ପ୍ରେରଣା,
ନୁହେ ମୁଁ ମାନବମାତ୍ର ମାଟିର ଖେଳନା ।"
'ବିଷାଦିତର ବିଶ୍ୱାସ'—ଗ୍ରନ୍ଥାବଳୀ, ପୃ. ୧୯୨

Digitized by PPRACHIN, SOA

କୁହାଯାଇପାରେ । (୩୩) ଦୁଃଖର ସହଜ ଅସ୍ତିତ୍ୱକୁ ସେ ସ୍ୱୀକାର କରିଛନ୍ତି । ଦୁଃଖର ଭାବପ୍ରସାରିଣୀ ଶକ୍ତିକୁ ଆବିଷ୍କାର କରିଛନ୍ତି । ଚିନ୍ତନ ଅପେକ୍ଷା ଅନୁଭବର ଅବଦାନ ସେଠାରେ ଅଧିକ । କୁନ୍ତଳାଙ୍କ ବେଦନା ଓ ଅତୃପ୍ତିର ମୋହ ବୈରାଗ୍ୟପର ନିସ୍ପୃହବାଦ ଅପେକ୍ଷା ବରଂ ପ୍ରଣୟାନୁଭୂତିର ବେଦନାବାଦ ଉପରେ ଆଧାରିତ । ତେଣୁ ତାହା ବିଦ୍ରୋହର ସ୍ୱରମୁଖରିତ ନୁହେଁ । ଯଦିଓ ତାଙ୍କ ରଚନାରେ ଉଦ୍ଦାମ ଲାଳସା ଓ ଅତୃପ୍ତ ବାସନାର ଚିହ୍ନ ରହିଛି, ଆଶାବାଦୀ ପ୍ରତ୍ୟୟ ଭିତରୁ ସଂଯୋଗ ଆକାଂକ୍ଷାର ତୀବ୍ରତମ ଅଭିବ୍ୟକ୍ତି ମଧ୍ୟ ସେଇ ସଙ୍ଗେ ପ୍ରକଟିତ ହୋଇଛି, ଅନନ୍ତ ପ୍ରତୀକ୍ଷା, ଶାଶ୍ୱତ ବିରହ ଓ ଚିର ଅତୃପ୍ତିର ସାଧନାରୂପ ପରିବର୍ତ୍ତେ କୁନ୍ତଳାଙ୍କ କାବ୍ୟସ୍ୱରରେ ଏକ ମିଳନୋନ୍ମୁଖୀ ଅକୁଳତାର ସ୍ୱର ଅଧିକ ମର୍ମରିତ । ସାଧନା ଅପେକ୍ଷା ସିଦ୍ଧି, ପଥ ଅପେକ୍ଷା ଲକ୍ଷ୍ୟ, ପ୍ରତୀକ୍ଷା ଅପେକ୍ଷା ତୃପ୍ତିର ସ୍ୱପ୍ନ କୁନ୍ତଳାଙ୍କ ଭାବରାଜ୍ୟରେ ଅଧିକ ବଳବତ୍ତୀ ମନେହୁଏ ।

ପ୍ରେମୋପାସନାରେ ଆତ୍ମସମର୍ପଣର ତନ୍ମୟତା ସୃଷ୍ଟିର ପ୍ରତିକଣାରେ ପ୍ରିୟର ଅସୀମ ପ୍ରକାଶ ଝଲକ ଦେଖିବାକୁ ପାଏ । (୩୪) ପ୍ରଗାଢ଼ ଭାବାଭିଭୂତିରେ ଆଶା-ନିରାଶା, ସୁଖ-ଦୁଃଖ, ହସ-କାନ୍ଦର ଦ୍ୱନ୍ଦ୍ୱରେ ବି ଏକ ଏକରୂପତା ଓ ସମରସତା ଅନୁଭବ ହୁଏ । ମଧୁମୟ ଓ ବିଷଜର୍ଜର—ସବୁକିଛି ପ୍ରିୟର ଦାନ ରୂପେ ଅମୂଲ୍ୟ ହୋଇଯାଏ । ସୁଖ-ଦୁଃଖ ଓ ମିଳନ-ବିରହର ଭିନ୍ନତ୍ୱକୁ ଅତିକ୍ରମ କରିବାରେହିଁ ପ୍ରେମର ଅନ୍ତର୍ଗତ ଶକ୍ତିର ପୂର୍ଣ୍ଣ ସ୍ଫୁରଣ ଘଟିଥାଏ (୩୫) ଈଶ୍ୱରଚେତନାକୁ ବାଦଦେଇ କୁନ୍ତଳାଙ୍କ କାବ୍ୟସ୍ୱରରେ ପ୍ରେମର ଏଇ ମୂଳ ବେଦନାଦୃଷ୍ଟି ସାଫୋ, ଏଲିଜାବେଥ୍, ବାରେଟ୍ ବ୍ରାଉନିଂ, ସରୋଜିନୀ ନାଇଡୁଙ୍କ କାବ୍ୟୋଚ୍ଚାରଣର ସମକକ୍ଷ । ଏଇ ଭାବାନୁଭୂତି ମାର୍ଗରେ ବୈଷ୍ଣବ କାବ୍ୟନାୟିକା ପ୍ରୀତିସାରଭୂତା ରାଧା ଚେତନାସହ ଏକାତ୍ମିକତା ଲାଭ କବିଙ୍କୁ 'ପ୍ରେମଚିନ୍ତାମଣି'ର ପରିକଳ୍ପନା ପାଇଁ ଉତ୍ସାହିତ କରିଛି । ସଂଯୋଗ ସହ ବିଯୋଗର ସମନ୍ୱୟ ସ୍ଥାପନରେ ସେ ପ୍ରେମାନୁରାଗର ଦୁର୍ଜୟତା ପ୍ରକଟିତ । (୩୬) କବିଙ୍କର ସମଗ୍ର ଚିନ୍ତା, ଗାୟନ, ଦର୍ଶନରେ ପ୍ରିୟ ସଙ୍ଗମର ଦୁର୍ବାର କାମନା ସହ ପ୍ରେମର ଅନନ୍ତ ତତ୍ତ୍ୱ ପ୍ରକଟିତ । (୩୭)

---

(୩୩) "କ୍ଷୁଦ୍ର ହେଲେ ସୁଦ୍ଧା ମୁହିଁ ଅକାରଣେ ଜନ୍ମି ନାହିଁ
ଅନନ୍ତ ବିନାଶ ମୋର ଲେଖାନାହିଁ କପାଳେ ।
× × ଶେଷ ଗତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟିନାହିଁ ଭବ ତରୁଡ଼ାଳରେ ।"

'ଶେଫାଳି ପ୍ରତି'—ଗ୍ରନ୍ଥାବଳୀ, ପୃ. ୭୧ / ୭୨

(୩୪) କୋଟି କୋଟି ଚନ୍ଦ୍ର ସରୋବର ଜଳ ହୃଦାକାଶେ ଭାସେ ପରା
ପ୍ରେମିକ ଯେ ଯାର ସେ କି ତାହାରୂଲେ କୋଟି ରୂପେ ଦିଏ ଧରା ?"

'ଚନ୍ଦ୍ର ପ୍ରତି'—ଗ୍ରନ୍ଥାବଳୀ ପୃ. ୭୦

(୩୫) "ତଥାପି ବିଶ୍ୱାସ ଆଶା ପ୍ରେମ ଘେନି ଦୁଃଖକୁ ସୁଖ ମୁଁ ମିଶିବି ।" 'ଅଞ୍ଜଳି', ପୃ. ୫୨

(୩୬) "ଯେତେ ଦୂରେ ଥିଲୁ ଆଆଁରୁ ମୋହର / ଉଛୁଳି ଉଠିବ ହୃଦୟ ସାଗର ।"

'ଚନ୍ଦ୍ରପ୍ରତି'—ଗ୍ରନ୍ଥାବଳୀ, ପୃ. ୭୬

(୩୭) "ସେ କେଉଁ ଅମୃତାର୍ଣ୍ଣବେ ମିଶିବା କାରଣ
ଅନନ୍ତ ପ୍ରେମର ଧାରା ବହେ ପ୍ରତିକ୍ଷଣ ।"

ଅର୍ଚ୍ଚନା—ଗ୍ରନ୍ଥାବଳୀ, ପୃ. ୧୭୪

Digitized by PPRACHIN, SOA

ପ୍ରକୃତରେ ଯାହା ତାହା ଏହି ବିରହ ଆତ୍ମହାର ଗାନ । କବିଂକର ପ୍ରିୟସ୍ପୃହ-ଉଜ୍ଜ୍ୱଳ ମିଳନ ସ୍ୱପ୍ନଟି ଦୁର୍ନିବାର ଆଶା ରୂପେ ହୃଦୟର ଜାଗ୍ରତ ସ୍ପଂଦନ ହୋଇ ସଞ୍ଜୀବିତ । (୩୮) ସେ ଆଶାର ସ୍ୱପ୍ନମୟତା ଭିତରେ ସୁଖ-ଦୁଃଖମୂଳକ ଯାବତୀୟ ବିରୋଧ ଓ ବିକ୍ଷୋଭର ଅବସାନ । ପ୍ରେମରେ ବିଷାଦ ଏକ ଅନିବାର୍ଯ୍ୟ ଅନୁଭବ । ମାତ୍ର ଗାଢ଼ ପ୍ରଣୟରେ ବିଯୋଗ ବିରହରେ ବି ପ୍ରେମ ପ୍ରତି ଆଶା ଓ ଆସ୍ଥାର ବିଲୋପ ଘଟେ ନାହିଁ । କୁଂତଳାଂକ ପ୍ରେମାନୁରକ୍ତ୍ୟ ପ୍ରିୟ ପ୍ରତି ପୂର୍ଣ୍ଣ ଆସ୍ଥାବାନ । ସଂଯୋଗର ସମ୍ଭାବନା ନଥିଲେ ବି, ପ୍ରିୟାନୁରାଗର ପ୍ରତିଶ୍ରୁତ ମିଳନ ଥିଲେ ବି କବିଂକ ହୃଦୟରେ ବିରହକୁ ସହ୍ୟ କରିବାର ପ୍ରଚଣ୍ଡ ପ୍ରେମଶକ୍ତି ଜାଗ୍ରତ—ବିଗ୍ରହ ନୁହେଁ, ଯୁକ୍ତି ବା ଅନୁଧ୍ୟାନ ନୁହେଁ । ହୃଦୟର ସହଜାନୁଭୂତ ଭିତରୁହିଁ ପ୍ରେମର ଏ ଗଭୀରତାକୁ କବିଚେତନା ସ୍ପର୍ଶ କରିଛି, ଦୁଃଖ ଯେତେ ତୀବ୍ର, ପୂଜା ସଂଗୀତ ଯେତେ କରୁଣ, ଦରଦ ଓ ସାଧନାମାର୍ଗ ସେତେ ବଜ୍ରଦୃଢ଼ । ଦୁଃଖକୁ ସମଗ୍ର ସତ୍ତାରେ ଭରି ଓ ତାକୁ ଅତିକ୍ରମକରି ହିଁ କବିସତ୍ତା ପ୍ରେମର ବ୍ୟାପ୍ତି ଆଡ଼କୁ ପ୍ରସାରିତ । ଲକ୍ଷଣୀୟ, ସବୁ ନାରୀକବି ପ୍ରେମାଭିବ୍ୟକ୍ତିରେ ମୁଖ୍ୟତଃ ବିଷାଦବାଦୀ । କିଂତୁ ଆଶାବାଦୀ ମଧ୍ୟ । କାରଣ ଇଂଦ୍ରିୟ ଚରିତାର୍ଥତା ସେ ପ୍ରେମରେ ଆନୁଷଂଗିକ ହୋଇପାରେ ମାତ୍ର ସେଥିରେ ନାରୀ ଅଂତରର ସ୍ପର୍ଶାନୁଭୂତ ଏକାତ୍ମ ହୋଇପାରେନା । କେବଳ ଇଂଦ୍ରିୟ ସମ୍ଭୋଗ ଭିତରେ ନାରୀତ୍ୱର କୌଣସି ଜାଗରଣ ଘଟିନଥାଏ । ଇଂଦ୍ରିୟାତୀତର ଉଦ୍‌ବୋଧନରେ ହିଁ ତାର ପ୍ରେମର ସାର୍ଥକତା ଆସେ । ସୁଦୂର ଓ ଅଲଭ୍ୟପ୍ରତି ରୋମାଂଟିକ ବିଷାଦବାଦୀ ପ୍ରଣୟ ଆବେଗ ଶ୍ରେଣ୍ଠ ନାରୀର ଅଂତଃସତ୍ତାକୁ ଆଚ୍ଛନ୍ନ କରି ପ୍ରକଟିତ ହୁଏ । କୁଂତଳାଂକ ଭାବସତ୍ତା କ୍ଷଣିକ ମିଳନ ଓ କ୍ଷଣିକ ବିରହ ଅଜସ୍ର ସଂଗୀତ ରଚନା କରିଥିଲେବି ତାଂକ ହୃଦୟ ରାଗିଣୀର ଅବିଚ୍ଛିନ୍ନ ଲୟଟି ବିରହର ଏକତାନତା ବିଧୃତ । ମିଳନର ଭାଷା ସେଠାରେ ପ୍ରାସଂଗିକ ଓ ସାମୟିକ । ବିଷାଦ ଚେତନାରୁ କୁଂତଳାଂକ ସମଗ୍ର ପ୍ରେମୋପଲବ୍‌ଧିର ଆରଂଭ । ସେ ଉପଲବ୍‌ଧିରେ ବିରହର ଅତଳତା ସଂଜାତ ମିଳନ-ସ୍ୱପ୍ନର ଆଶା ଓ ଆନଂଦ ବି ଅଂଗୀଭୂତ । ସମୁଦ୍ରର ଢେଉ ସମୁଦ୍ରରୁ ଉଠି ମିଳାଇଯିବା ପରି କବିପ୍ରାଣରେ ମିଳନ-ବିରହର ସକଳ ସ୍ୱରାଳାପ ପ୍ରେମର ଅନଂତତାରେ ଏକାକାର ହୋଇଯାଇଛି ।

କୁଂତଳାଂକ ପ୍ରେମଗାନରେ ଏଇ ଗତି ଛଂଦ ଲକ୍ଷଣୀୟ । କେଉଁଠି ସମୁଦାୟ ସମୁଦ୍ର ରୂପକୁ କେଉଁଠି ବା ଗୋଟିଏ ତରଂଗର ସ୍ପର୍ଶ ବିହ୍ୱଳତାକୁ ସେ ପ୍ରେମଚେତନା ପ୍ରସରିଯାଇଛି । କେତେବେଳେ ସମଗ୍ର ସତ୍ତା ତରଂଗ-ଘାତ କଂପିତ ବିହ୍ୱଳ ଓ କେତେବେଳେ ସମଗ୍ର ସାମୁଦ୍ରିକ ଉଚ୍ଛ୍ୱାସକୁ ଉନ୍ମୁକ୍ତାଂତ । କୁଂତଳାଂକ ସବୁ ପ୍ରେମ-ଗାନ ରହସ୍ୟବାଦୀ ଭାବାନୁପ୍ରେରିତ ନୁହେଁ । ଏହା ପ୍ରାରଂଭରୁ ସୂଚିତ । ତଥାପି ପ୍ରେମାସ୍ପଦ ଯେଉଁଠି ଅମୂର୍ତ୍ତ ପ୍ରେମକଳ୍ପନାରେ ପ୍ରମ୍ଳାନ ଓ ଅଖଂଡ ପ୍ରେମ-ରୂପରେ ପ୍ରମୂର୍ତ୍ତ, ସେଠାରେ ରହସ୍ୟବାଦୀ ପ୍ରୀତି ଚେତନାର ଭାବପ୍ରକାଶକୁ ଉପେକ୍ଷା କରିହେବନାହିଁ ।

(୩୮) 'ଆଶା'—(ଅର୍ଚ୍ଚନା) —ଗ୍ରଂଥାବଳୀ, ପୃ. ୧୭୧

Digitized by PPRACHIN, SOA

# ବୈକୁଂଠନାଥ ପଟ୍ଟନାୟକ ( ଖ୍ରୀ: ୧୯୦୪–୧୯୭୯ )

ସବୁଜ ପଞ୍ଚକବିଂକ ଭିତରେ ବୈକୁଂଠନାଥ 'ରହସ୍ୟବାଦୀ' ରୂପେ ପରିଚିତ । ଏ ସ୍ୱତଂତ୍ର ପରିଚୟ ତାଂକର 'ସବୁଜ'-ସୁଲଭ ରୋମାଂଟିକ ଭାବଧାରାଶ୍ରିତ 'ସୁଦୂରାସକ୍ତି' ଓ ଅଲଭ୍ୟ-ପ୍ରୀତିର କାବ୍ୟାବେଗରେ ସମ୍ପୂର୍ଣ୍ଣନୁହେଁ, ବରଂ ଅତୀନ୍ଦ୍ରିୟତା ସହ କବି-ମାନସର ଏକ ଭାବ-ଗୂଢ଼ ପ୍ରତ୍ୟକ୍ଷ ସଂଯୋଗାତ୍ମକ ଉପଲବ୍ଧି ସଚେତନତାରେ ତାହାର ଉଦ୍‌ବୋଧନ । ତାରୁଣ୍ୟର ଉଦ୍ଦାମ ରୂପପ୍ରଣୟାତ୍ମକ ଉଦ୍‌ବେଳନ ଭିତରୁ ସମାରବ୍ଧ ଏ କାବ୍ୟାନୁଭବ କ୍ରମଶଃ ଏକ ସ୍ଥିତଧୀ ଧ୍ୟାନମୟ ଏକାନ୍ତତା ପ୍ରତି ଅଗ୍ରସର ପର ।

ବୈକୁଂଠନାଥଂକ ରହସ୍ୟବାଦୀ କାବ୍ୟଚେତନାର ଉତ୍ସଭୂମିରେ ପରଂପରା ଓ ସମସାମୟିକତା —ଉଭୟ ଅଂଗୀଭୂତ । ଆବାଲ୍ୟଲବ୍ଧ ପାରଂପରିକ ଅଧ୍ୟାତ୍ମ ସଚେତନାଟି କବିଂକ ଜୀବନଧାରା ଓ କାବ୍ୟାଦର୍ଶ ଭିତରେ ସଂଯୋଗ-ସୂତ୍ର ରୂପେ ବିଦ୍ୟମାନ । ତା ସହ ପାଶ୍ଚାତ୍ୟ ଦର୍ଶନର ମାନବତାବାଦ ଏବଂ ରୋମାଂଟିକ ଅତୀଂଦ୍ରିୟବାଦ ବିଭୂଚେତନାଶ୍ରିତ ଆଧ୍ୟାତ୍ମିକ ଜିଜ୍ଞାସାକୁ କବିମାନସରେ ଏକ ତତ୍ତ୍ୱାତ୍ମକ ରୂପାଭିବ୍ୟକ୍ତି ଦେବାର ପଥ ପ୍ରସ୍ତୁତ କରିଛଂତି । ବୈକୁଂଠ-କାବ୍ୟଚେତନାରେ ଦୁଇଟି ସମାଂତରାଳ ଭାବପ୍ରବାହ ଲକ୍ଷଣୀୟ; ଗୋଟିଏ ଚଳମାନ ବାସ୍ତବଜୀବନର ପ୍ରାତ୍ୟହିକତା ସଂଘାତଲିପ୍ତ, ଅପରଟି ଅଧ୍ୟାତ୍ମ ଆକୂତିରେ ଉତ୍‌କୂଳ । କବିଂକ ଆଧ୍ୟାତ୍ମିକ ଜିଜ୍ଞାସାର ସ୍ୱରୂପ ମଧ୍ୟ ଦ୍ୱିଧାଶ୍ରିତ; ଗୋଟିଏ ପରଂପରା ପରିପୁଷ୍ଟ ଭାରତୀୟ ନିର୍ଗୁଣ-ସହଜ-ଜ୍ଞାନତତ୍ତ୍ୱ ତଥା ରାଗାନୁଗା ଭକ୍ତିତତ୍ତ୍ୱ ପ୍ରଭାବିତ, ଅପରଟି ସୌଂଦର୍ଯ୍ୟ ଓ ପ୍ରେମର ଅତୀଂଦ୍ରିୟ ତତ୍ତ୍ୱମୂଳକ ପାଶ୍ଚାତ୍ୟ କାବ୍ୟ-ବିଚାର ପୋଷିତ ।

କବି ଜୀବନୀରୁ (୧) ପ୍ରତୀୟମାନ ହୁଏ ଯେ ବାଲ୍ୟକାଳରୁ ଓଡ଼ିଆ ଆଧ୍ୟାତ୍ମିକ ସଂସ୍କୃତି ଓ ବୈଷ୍ଣବ କାବ୍ୟ ସାହିତ୍ୟ ସହ କବିଚିତ୍ତର ସଂଶ୍ରବ ସ୍ଥାପିତ ହୋଇଥିଲା । ଛାତ୍ରଜୀବନ ପାଶ୍ଚାତ୍ୟ କାବ୍ୟଚେତନା ସହ ଭାବସଂଯୋଗର ଅନୁକୂଳ ଅବକାଶ ସୃଷ୍ଟି କରିଥିଲା ଏବଂ ଏଇ ରସାନୁଭୂତି ମାର୍ଗରେ ରାଧାକୃଷ୍ଣ ପ୍ରୀତିତତ୍ତ୍ୱ ନୂତନ ରସ-ଉଦ୍‌ବୋଧନ ଲାଭକରିଥିଲା । ଗୋସ୍ୱାମୀ ପ୍ରତିପାଦିତ ଶୁଦ୍ଧାଭକ୍ତି ବିଶେଷତଃ ଅପ୍ରାକୃତ ପ୍ରେମ ଓ ପରକୀୟା ତତ୍ତ୍ୱର ସହଜାନୁସରଣ, ପୁଣି ଅଭିମନ୍ୟୁ, (୨) ଗୋପାଳକୃଷ୍ଣ ପ୍ରଭୃତିଂକ କାବ୍ୟଭାବନାସ୍ଥ ପ୍ରୀତିର ରହସ୍ୟବାଦୀ ଅଲୌକିକ ବ୍ୟଂଜନା-ରୂପ ତାଂକ ଭାବମାନସରେ ପ୍ରଗାଢ଼ ହୋଇଥିଲା । ବୌଦ୍ଧଦର୍ଶନର ନିର୍ବାଣଶୂନ୍ୟତା, ତଂତ୍ର / ଯୋଗର ସହଜସାଧନାତତ୍ତ୍ୱ ଓ ନିର୍ଗୁଣର ନିରାକାର ଉପାସନା ସହ ଏ ବୈଷ୍ଣବୀୟ ଅଲୌକିକ ପ୍ରୀତି ପୁଣି ରବୀଂଦ୍ରିକ ଅପରୂପ ପ୍ରଣୟର ରହସ୍ୟୋନ୍ମୁଖିତା ତାଂକ କାବ୍ୟସ୍ୱରରେ ଏକ ମିଶ୍ରରାଗ ସୃଷ୍ଟି କରିଥିଲା ।

---

(୧) "ମୋର ସାଂସ୍କୃତିକ ଜନ୍ମ ବୈଷ୍ଣବ ଦର୍ଶନରୁ—" ବୈକୁଂଠନାଥ ଗ୍ରଂଥାବଳୀ—୧ମ ଭାଗ

(୨) ପ୍ରେମର ପ୍ରକୃତ ସ୍ୱରୂପ ଉପଲବ୍ଧି କରିବାପାଇଁ ମୁଖ୍ୟତଃ ସାମଂତ ସିଂହାରଂକ ଶ୍ରୀରାଧା ଦାୟୀ ।" ବୈକୁଂଠନାଥ ଗ୍ରଂଥାବଳୀ—୧ମ ଭାଗ, ପୃ. ୩୫

Digitized by PPRACHIN, SOA

ବୈକୁଂଠନାଥଂକ ପ୍ରଣୟ ସଂବେଗାତ୍ମକ ଅଭିଜ୍ଞାନ ମୂଳରେ ପାଶ୍ଚାତ୍ୟ ରହସ୍ୟବାଦୀ କାବ୍ୟତତ୍ତ୍ୱର ପ୍ରତ୍ୟକ୍ଷ ସଂଯୋଗଟିକୁ ଲକ୍ଷ୍ୟକରାଯାଇପାରେ । ସ୍ଥୂଳ ଭାବରେ, 'ରାଧାକୃଷ୍ଣ'ଂକୁ ଅବଲଂବନକରି ଆଦ୍ୟରୁ କବିମାନସରେ ଗଢ଼ି ଉଠିଥିବା ଯାବତୀୟ ପ୍ରେମ ତତ୍ତ୍ୱମୂଳକ ରୂପକଳ୍ପନା ପାଶ୍ଚାତ୍ୟମାନସ ଓ ତଦ୍ଦ୍ୱାରା ପ୍ରଭାବିତ ନବୋଦିତ ଭାରତୀୟ ରେନେସାଁର ଆନୁକୂଲ୍ୟତା ଲାଭକରି ଯେପରି ଅତୀଂଦ୍ରିୟ ଅଭିଜ୍ଞାନର ସ୍ୱଚ୍ଛତା ଓ ସ୍ପଷ୍ଟତା ଆହରଣ କରିଥିଲା । କବି ଏ ପ୍ରସଂଗରେ ସ୍ପଷ୍ଟ ଓ୍ୱାର୍ଡ଼ସ୍‌ୱର୍ଥ, ଶେଲି, କୀଟ୍‌ସ ଏବଂ ହ୍ୱାଇଟମାନ ତଥା ରବୀଂଦ୍ରନାଥ ଓ ମଧୁସୂଦନଂକ ପ୍ରସଂଗ ଉଠାଇ ସେମାନଂକୁ ନିଜ କାବ୍ୟପ୍ରେରଣା ମୂଳରେ ସ୍ୱୀକୃତି ଦେଇଛଂତି । ରୋମାଂଟିକ କବିମାନଂକ ସ୍ୱଚ୍ଛ ଭାବସଂପୃକ୍ତି ତାଂକ ତରୁଣ କଳ୍ପନାକୁ ସ୍ୱଚ୍ଛଂଦତା ଦାନ କରିଥିଲା ଏବଂ ସବୁଜ ପ୍ରଣୟ ଓ ଉଦ୍ଦାମ ଜୀବନାବେଗର ସ୍ୱତଃସ୍ଫୂର୍ତ୍ତ ଗାନରେ ତାଂକର ଆଦ୍ୟ ଭାବ-ମୁକ୍ତି ଘଟିଥିଲା । ଏ ପ୍ରସଂଗରେ ସ୍ମରଣଯୋଗ୍ୟ, ବୈକୁଂଠନାଥଂକ ଚରିତ୍ରର ଅଂତଃସହିତ (introvertive) ବୈଶିଷ୍ଟ୍ୟଯୋଗୁଁ ଭାବ-ନିବୃତ୍ତି ବା ପ୍ରବୃତ୍ତି ନିଗ୍ରହକୁ ପ୍ରବଣତା ତାଂକ ସ୍ୱଭାବରେ ବଳବତ୍ତର ଥିଲା ଯାହା ଫଳରେ ଅନ୍ୟ ସବୁଜକବିମାନଂକ ଭଳି କଳ୍ପନାର ଯଥେଷ୍ଟ ବିଳାସ ତାଂକ କାବ୍ୟସ୍ୱରରେ ବହୁପରିମାଣରେ ପ୍ରତିହତ । ସ୍ୱଭାବତଃ ଧ୍ୟାନମଗ୍ନତା ଓ ନିଗ୍ରହାତ୍ମକ ଭାବ-ସଂକୋଚନ ତାଂକୁ ଏକ ସମାହିତ, ସ୍ଥିର, ଧୀରପକ୍ଷ ବିହଂଗ ପରି ଆତ୍ମ-ମଗ୍ନ କରି ରଖିଛି । ସେ ଉଡ଼ିବାକୁ ବ୍ୟାକୁଳ ମନେହୁଅଂତି, ଉଡ଼ିବାର ନିଶାରେ କିଛି ମାତ୍ରାରେ ମତ୍ତ ଜଣାପଡଂତି, ମାତ୍ର ଅଜଣା ଆକାଶରେ କଳ୍ପନାର ପକ୍ଷ ମେଲି ନିଜକୁ ହଜାଇ ଦେବାକୁ ହଠାତ୍ ସାହସ କରିପାରିବନଂତି । ବରଂ ଅପ୍ରାପ୍ତି ଓ ଅତୃପ୍ତିର ଖେଦମୟ ବିଷର୍ଣ୍ଣତା ହିଁ ତାଂକ କାବ୍ୟସ୍ୱରକୁ ଅଧିକ ଭାବଗଂଭୀର କରିଛି । ସବୁଜ କବିମଂଡଳରେ ବୈକୁଂଠନାଥ ହିଁ ସବୁଠାରୁ ବେଶି ଅନୁଦ୍ଦାମ ଓ ସଂଯତ, ପୁଣି ବେଶି ଆତ୍ମ-ମଗ୍ନ ଓ ବିଷାଦବିଧୂର ବୋଧହୁଅଂତି ।

ସାଧାରଣତଃ ରୋମାଂଟିକ କାବ୍ୟ-ଚେତନାରେ ଏକ ଆଦର୍ଶଧର୍ମୀ ପୂର୍ଣ୍ଣସୌଂଦର୍ଯ୍ୟ ଓ ପ୍ରେମଲୋକପ୍ରତି ଉତ୍ସୁକତା ଅନେକତ୍ର ଅଧ୍ୟାତ୍ମ ତତ୍ତ୍ୱାଭିମୁଖୀ ହୋଇଉଠିଥାଏ । ବୈପ୍ଳବିକ ବ୍ୟକ୍ତିତ୍ୱର ଭାବସ୍ୱାତଂତ୍ର୍ୟ ପ୍ରଚଳିତ ଧର୍ମଧାରଣା, ରୀତିନୀତି ଓ ଆଚାରବିଚାର ବାହାରେ ବିଶ୍ୱପ୍ରକୃତି ଏବଂ ନିଖିଳମାନବର ସଂପୂର୍ଣ୍ଣ ସଂସ୍କାରମୁକ୍ତ ଏକ ମୁକ୍ତଲୋକରେ ବିଶ୍ୱାସୀ । ମିଷ୍ଟିକ୍ ଚେତନାରେ ଏହାଠାରୁ ଏକ ବୃହତ୍ତର ସତ୍ୟଲୋକର ଅବଧାରଣା ହୋଇଥାଏ । ଭାବଲୋକ ହିଁ ରୋମାଂଟିକ ମୁକ୍ତି-ଉପଲବ୍ଧିର ସ୍ଥଳ; ରହସ୍ୟବାଦୀର ଦିବ୍ୟାଲୋକ ପାଇଁ ଅଭିସାର-ସଂକଳ୍ପର ଉଦ୍‌ବୋଧନ ଏଇ ସଂପ୍ରସାରିତ ଚେତନାଭୂମିରୁ ।

ବୈକୁଂଠନାଥଂକ କାବ୍ୟୋପଲବ୍‌ଧିରେ ତାଂକ ଭାବମାନସର ଏଇ ରୋମାଂଟିକ ଧର୍ମୀ ରହସ୍ୟାଭିମୁଖିତା ଗତିପର୍ଯ୍ୟାୟଟି ସୁନିର୍ଦ୍ଦିଷ୍ଟ । ପ୍ରଥମରୁ କବି ଚେତନାରେ ଅଦ୍ୱୈତ ମାୟାବାଦର ସଂସ୍କାର ବଳବତ୍ତର ମନେହୁଏ । 'ଅଳକପାର୍ଥିବର ଭାବ-ଭୂମି ଉପରେ ରୋମାଂଟିକ 'ସୁଦୂର-ସୁଂଦର' କାବ୍ୟାଦର୍ଶଟି ଅପାର୍ଥିବ ପ୍ରତି ଏକ ମୋହମୟ ଅନୁରକ୍ତି ସୃଷ୍ଟି କରିଥାଇପାରେ । ପୃଥିବୀ ପ୍ରତି ଅସହିଷ୍ଣୁତା ଏବଂ ଅତୀଂଦ୍ରିୟତାକୁ ନିଷ୍କ୍ରମଣର ବ୍ୟାକୁଳତା ବାଲ୍ୟପୋଷିତ ଅଧ୍ୟାତ୍ମ-ଅଭୀପ୍ସା ସହ ମିଶିଯାଇ କବିଂକର ନିଷ୍କୃତି କାମନା ଓ ମୁକ୍ତି ସ୍ୱପ୍ନକୁ ଏ ରହସ୍ୟବାଦୀ ଅଭିମୁଖିତା ଆଣି ଦେଇପାରିଥାଏ । ଖ୍ରୀ: ୧୯୨୯ ପରର କାବ୍ୟସ୍ୱରରେ ଏ ଭାବମାନସ ସ୍ପଷ୍ଟ ।

ମାତ୍ର ଆଦ୍ୟଜୀବନର ଏଇ ପାର୍ଥିବବିରକ୍ତି ଠିକ୍ ଅନାସକ୍ତିର ବୈରାଗ୍ୟବାଣୀ ନୁହେଁ ବୋଲି ନିଃସଂଦେହରେ କୁହାଯାଇପାରେ । ସୁଂଦର ମଧୁରର ଉପଭୋଗ ବାସନା ଯେପରି ଚରିତାର୍ଥ

Digitized by PPRACHIN, SOA

ଅକ୍ଷମହୋଇ ଜୀବନ-ବିରୋଧୀ ଗାନ କରିଛନ୍ତି । କବିଚିତ୍ତ ବେଳେବେଳେ ପ୍ରବଳ ଜଗତ-ଜୁଗୁପ୍ସା ପ୍ରକାଶ କରିଛି, ପୁଣି କେତେବେଳେ ବିଶ୍ୱକୁ ଆତ୍ମୀୟତା ସୂତ୍ରରେ ଲାଭକରିବାକୁ ମଧ୍ୟ ବ୍ୟାକୁଳ ହୋଇଛି । ଶେଷପର୍ଯ୍ୟନ୍ତ ବୈକୁଣ୍ଠ କାବ୍ୟଚେତନାରେ ଏ ବିରୋଧର ସମାଧାନ ଘଟିପାରିନାହିଁ । ଏଇ ଅକ୍ଷମତାହିଁ କବିଙ୍କ ବିଷାଦବାଦିତାର ଅନ୍ୟତମ ପ୍ରମୁଖ କାରଣ ଏବଂ ବୈକୁଣ୍ଠନାଥ ଶେଷପର୍ଯ୍ୟନ୍ତ ଏଇଥିପାଇଁ ଏକ ବିରୋଧୀଚେତନାର କବି ବୋଲି ମନେହୋଇଥାନ୍ତି ।

ଦ୍ୱିତୀୟ ପର୍ଯ୍ୟାୟରେ କବିଚେତନା ଧ୍ୟାନ-ଗୂଢ଼ ଗମ୍ଭୀରତାକୁ ସମ୍ପ୍ରସାରିତ ହୋଇଛି । ବୈକୁଣ୍ଠନାଥଙ୍କ ସଫଳ ରହସ୍ୟବାଦୀ କବିତାଗୁଡ଼ିକ ମୁଖ୍ୟତଃ ଏହି କାଳର ରଚନା ଯାହା ଖ୍ରୀ: ୧୯୩୮-୩୯ ପର୍ଯ୍ୟନ୍ତ ସ୍ୱଚ୍ଛନ୍ଦ ସାବଲୀଳ ଗତିଶୀଳତା ଲାଭକରିଛି । ଏ ରଚନାମାନଙ୍କରେ କବିଚିତ୍ତର ଏକ କ୍ରମପ୍ରସାରୀ ଅନୁଭୂତି ରାଜ୍ୟରେ ବିଚରଣ ଏବଂ ଏକ ଭାବରାଜ୍ୟରେ ତାତ୍ତ୍ୱିକ ତୀକ୍ଷ୍ଣତା ଓ ସ୍ୱଚ୍ଛତା ଆହରଣ ସୁନ୍ଦର ଅଭିବ୍ୟକ୍ତି ଲାଭକରିଛି । ଏ କବିତାମାନ ନିରୋଳା ଭକ୍ତିବାଦର ନିଗଡ଼ ଅତିକ୍ରମ କରି ରହସ୍ୟାତ୍ମକ ରସ-ବ୍ୟଞ୍ଜନାର ସଫଳ କାବ୍ୟ-ଚିତ୍ର ବହନ କରିଛନ୍ତି । ପ୍ରକୃତି ଓ ପୃଥିବୀ ସହ ଜୀବନର ଆତ୍ମିକ ସଂଯୋଗ ଭିତରେ କବିପ୍ରାଣରେ 'ଜୀବନ-ଦେବତା' ରୂପପରିଚୟଟି ଏକ ନିବିଡ଼ ଭାବ-ସମ୍ପ୍ରୀତି ଲାଭକରିଛି । ଏ ପର୍ଯ୍ୟାୟର ରହସ୍ୟାତ୍ମିକା ରଚନାମାନଙ୍କରେ ବିଶେଷକରି ଯାତ୍ରୀ-ପ୍ରତୀକର ସଫଳ କାବ୍ୟାଭିବ୍ୟକ୍ତିରେ କବିଙ୍କ ମିଷ୍ଟିକ ପ୍ରବଣତାର ପୂର୍ଣ୍ଣରୂପ-ଉନ୍ମୋଚନ ଘଟିଛି । ଜୀବନ, ମୃତ୍ୟୁ, ପ୍ରେମ, ସୌନ୍ଦର୍ଯ୍ୟ ଓ ଆନନ୍ଦ ସମ୍ପର୍କୀୟ ଅବଧାରଣାମାନ ସ୍ପଷ୍ଟ ଉପଲବ୍ଧିର ପରିଚ୍ଛନ୍ନ ରୂପାଲେଖ୍ୟ ଲାଭ କରିଛନ୍ତି ।

ବୈକୁଣ୍ଠନାଥଙ୍କ ସଫଳ ପ୍ରତୀକାଙ୍କନରେ ତାଙ୍କର ରହସ୍ୟବାଦୀ କାବ୍ୟାନୁଚିନ୍ତାର ସାର୍ଥକତା ପ୍ରତିପାଦିତ । ସୀମା ଓ ଅସୀମ ଘଟିତ ଯାବତୀୟ ରହସ୍ୟ ପ୍ରତିପାଦନରେ ଏ ପ୍ରତୀକ ସଙ୍କେତଗୁଡ଼ିକ ସୁନିର୍ବାଚିତ । 'ସର୍ବାତୀତ ତତ୍ତ୍ୱ' ସର୍ବବ୍ୟାପୀ ଈଶ୍ୱର ଭୂମିକାରେ ସୃଷ୍ଟିସହ ଏକ ଉଦ୍ଦେଶ୍ୟମୂଳକତାରେ ନିତ୍ୟ ସମ୍ପର୍କିତ । ଏଇ ବିଶିଷ୍ଟ ରହସ୍ୟବାଦୀ ସିଦ୍ଧାନ୍ତଟି ବୈକୁଣ୍ଠ କାବ୍ୟାନୁଚିନ୍ତାରେ ବହୁଚର୍ଚ୍ଚିତ । ଏ ପ୍ରସଙ୍ଗରେ ତାଙ୍କର 'ବାଉଲ-ଭାବଧାରା' ଅନୁସୃତ 'ଲୀଳାକମଳ' ପ୍ରତୀକ-ତତ୍ତ୍ୱଟି ପ୍ରଣିଧାନଯୋଗ୍ୟ । ସୀମା ଓ ଅସୀମର ଚିରବିଯୋଗ ପୁଣି ନିତ୍ୟସଂଯୋଗର ବିଚିତ୍ର ରହସ୍ୟମୟତା ଭିତରେ ମୃତ୍ୟୁ, ପ୍ରେମ, ସୁଖଦୁଃଖ ପ୍ରଭୃତି ଜୀବନ-ଜିଜ୍ଞାସା କବିଙ୍କ ପ୍ରତୀକଚେତନାକୁ ଶାଣିତ ଓ ଅର୍ଥଦୀପ୍ତ କରିପାରିଛି । ବୈକୁଣ୍ଠନାଥଙ୍କ ରହସ୍ୟାନୁଚିନ୍ତାର ସାମଗ୍ରିକ ସ୍ୱରୂପ ତାଙ୍କର ପ୍ରତୀକ ନିର୍ବାଚନ ଓ ପ୍ରୟୋଗର କ୍ଷେତ୍ର, ପରିସର ଏବଂ ଦିଗ୍‌ବଳୟ ଭିତରୁ ସ୍ପଷ୍ଟ ଧରାପଡ଼େ ।

ବୈକୁଣ୍ଠନାଥଙ୍କ କାବ୍ୟପ୍ରତୀକର ପରିସର ବିସ୍ତୃତ ଓ ବ୍ୟାପକ । ବ୍ୟକ୍ତି-ପ୍ରତୀକ, ଭାବ-ପ୍ରତୀକ ଓ ପ୍ରକୃତିରୁ ଆହରିତ ବସ୍ତୁ ପ୍ରତୀକ ରୂପେ ସେମାନଙ୍କୁ ଭାଗ ନିର୍ଣ୍ଣୟ କରାଯାଇପାରେ । ପୌରାଣିକ, ଐତିହାସିକ ଏବଂ କିମ୍ବଦନ୍ତୀର ପୃଷ୍ଠଭୂମିରୁ ତାଙ୍କର ମିଥିକାଲ ବ୍ୟକ୍ତି-ପ୍ରତୀକଗୁଡ଼ିକ ନିର୍ବାଚିତ; ଯଥା — ରାଧାକୃଷ୍ଣ, ଗୋପୀ, ଚିନ୍ତାମଣି, ବିଲ୍ୱମଙ୍ଗଳ, କୁବ୍‌ଜା, ମୀରା, ବିଦ୍ୟୁତ୍ପ୍ରଭା, କିସ୍‌ସାଗୌତମୀ ଇତ୍ୟାଦି । ଭାବ ପ୍ରତୀକରୂପେ 'ଶିଶୁ' ଓ 'ଯାତ୍ରୀ'ର ତାତ୍ତ୍ୱିକ ପ୍ରୟୋଗ ଘଟିଛି । ପ୍ରକୃତି ଜଗତରୁ ଜଡ଼ ଓ ଜୀବନ୍ତ ଉଭୟେ ତାଙ୍କର କାବ୍ୟାନୁଚିନ୍ତାରେ ଅର୍ଥଦୀପ୍ତି ଲାଭକରିଛନ୍ତି । ମାନବାତ୍ମାର ପ୍ରତୀକରୂପେ ହଂସ, ସୁଖଦୁଃଖାଦିର ଭାବ ସଂବାହକ ଓ ଚେତନାନ୍ତରର ସଙ୍କେତବାହୀ ଋତୁପର୍ଯ୍ୟାୟ ( ବର୍ଷା, ଶରତ, ପୌଷ, ବସନ୍ତ ), ଅସୀମର ସୀମାୟିତ ଆଧାର ରୂପେ ପୁଷ୍ପ, ଦୀପ, ବାଦ୍ୟଯନ୍ତ୍ର ଏବଂ ଅସୀମର ଆହ୍ୱାନ ସଙ୍କେତ ପାଇଁ ବୀଣା, ବେଣୁ ପ୍ରଭୃତି ଚିତ୍ର-ପ୍ରତୀକର ସଂଯୋଜନା ଉଲ୍ଲେଖଯୋଗ୍ୟ । କବି-

Digitized by PPRACHIN, SOA

ଚେତନାରେ ମୃତ୍ୟୁ ଅନୁଚିନ୍ତା ସର୍ବାପେକ୍ଷା ଗଭୀର ଓ ବୈକୁଣ୍ଠନାଥଙ୍କ ସମଗ୍ର ଜୀବନଦର୍ଶନର ରୂପାନୁଭୂତି ପ୍ରଦାନରେ ସମଧିକ ପ୍ରଭାବଶାଳୀ । ଶିଶୁ, ପୌଷ, ଝଡ଼, ଝରାପତ୍ର ଭିତରେ ଧ୍ୱଂସ ଓ ସୃଜନର ରହସ୍ୟ ଇଙ୍ଗିତ କବିତାଗୁଡ଼ିକୁ ଆଲୋଡ଼ିତ କରିଛି । ପୁନଶ୍ଚ ବ୍ୟକ୍ତିକୁ ଅସୀମସନ୍ଧାନୀ ଏକ ଚିରନ୍ତନ ନିଃସଙ୍ଗଯାତ୍ରୀ ରୂପେ ଓ ମର୍ତ୍ତ୍ୟକୁ ପାନ୍ଥଶାଳା ରୂପେ ଦେଖୁଥିବା କାବ୍ୟାନୁଚିନ୍ତାର ରହସ୍ୟବାଦୀ ରୂପପରିଚୟ ସ୍ପଷ୍ଟ ଓ ସୁଲଭ ଯାହାଦ୍ୱାରା କବିଙ୍କର ରହସ୍ୟବାଦୀ ଭାବାନୁଚିନ୍ତାର ସର୍ବୋତ୍ତମ ଅଭିବ୍ୟକ୍ତି ବୋଲି ଗ୍ରହଣ କରାଯାଇପାରେ । ବୈକୁଣ୍ଠନାଥଙ୍କ ନିର୍ବାଚିତ ପ୍ରତୀକଗୁଡ଼ିକ କବିମାନସର ସେଇ ବିଶିଷ୍ଟ ବିଷାଦବାଦୀ ପରିଚୟକୁ ହିଁ ବହନ କରନ୍ତି । ନିଃସଙ୍ଗତା ଓ ନିରୁଦ୍ଦେଶ୍ୟତା ଭିତରେ ଯାହା ଏକ ଅନ୍ତହୀନ ଆକୁଳତା ନେଇ ନିରନ୍ତର ଆପଣାର ଯାତ୍ରା ଉଦ୍ଦେଶ୍ୟ ଓ ଜୀବନରହସ୍ୟର ସନ୍ଧାନ ଖୋଜି ବୁଲୁଛି ।

ପରିଶେଷରେ, ବୈକୁଣ୍ଠ କାବ୍ୟାଦର୍ଶ ସମ୍ପର୍କରେ ନିଃସଙ୍କୋଚରେ କୁହାଯାଇପାରେ ଯେ ଏକ ପକ୍ଷରେ ଦୃଢ଼ନିଷ୍ଠା ଓ ବିଶ୍ୱାସର ଆନୁଗତ୍ୟ ଲାଭ କରିଥିବା କବିଙ୍କ ସାକାର ଭକ୍ତିଭାବନା ଓ ଆତ୍ମାର ନିତ୍ୟ ବିରହାନନ୍ଦ ସହ ନିରାକାର ଶୂନ୍ୟତତ୍ତ୍ୱର ସଂଯୋଗ, ଅପରପକ୍ଷରେ ସମସାମୟିକ ବାସ୍ତବବାଦୀ ସାହିତ୍ୟିକ ଚିନ୍ତାଧାରା ବିଶେଷକରି ବାସ୍ତବତାର ସଂଘାତଜନିତ ସମସ୍ୟାବଳୀ ଓ ତତ୍ପ୍ରଭାବିତ ସାମ୍ୟବାଦୀ ପ୍ରତିକ୍ରିୟା ଅର୍ଥାତ୍ ଅଧ୍ୟାତ୍ମ ଆକୂତି ପୁଣି ସଂଶୟାତ୍ମିକା ଜୀବନଜିଜ୍ଞାସା କବିଚେତନାରେ ଖୁବ୍ ପାଖାପାଖି ଅଥଚ ସଂଶୟହୀନ ଦୁଇଟି ସମାନ୍ତରାଳ ଧାରାରେ ଅନୁବର୍ତ୍ତିତ ହୋଇଛନ୍ତି । ଏଇଥିପାଇଁ ବୈକୁଣ୍ଠନାଥଙ୍କ କାବ୍ୟଚେତନା ଆଦ୍ୟପ୍ରାନ୍ତ ଏକ ଅସମଞ୍ଜସ ଦ୍ୱିଧାବିଭକ୍ତ ଚେତନା ବୋଲି ମନେହୋଇଥାଏ । ଏ ଦୁଇଟିର ସାଲିସ ପ୍ରୟାସ ସତ୍ତ୍ୱେ ସମନ୍ୱୟର ସୂତ୍ରଟି ଶେଷପର୍ଯ୍ୟନ୍ତ କବି ଆବିଷ୍କାର କରିବାରେ ସମର୍ଥ ହୋଇନାହାନ୍ତି । କବିଚେତନା କୁତ୍ରାପି ଏକ ସାମଗ୍ରିକ ପୂର୍ଣ୍ଣପ୍ରସାରୀ ଦୃଷ୍ଟିବଳୟକୁ ପ୍ରସାରିତ ହୋଇପାରିନାହିଁ; ଯାହା ଜୀବନ ଓ ଜୀବନାତୀତକୁ, ସୀମା ଓ ଅସୀମକୁ, ମର୍ତ୍ତ୍ୟ ଓ ଅମର୍ତ୍ତ୍ୟକୁ ଏକତ୍ର ତଥା ଏକ କରି ପ୍ରତ୍ୟକ୍ଷ କରିପାରେ । ସୁତରାଂ ବୈକୁଣ୍ଠନାଥଙ୍କ କାବ୍ୟାଭିବ୍ୟକ୍ତିର ରହସ୍ୟବାଦୀ ଚେତନା-ଉନ୍ମେଷ ସତ୍ତ୍ୱେ ଆଲୋକ-ପ୍ରାପ୍ତିର ସିଦ୍ଧି ସମ୍ବାଦଟି ଉଦ୍‌ଘାଟିତ ହୋଇପାରି ନାହିଁ ଏବଂ ତାର ଆଭିମୁଖ୍ୟରେ ଏକ ପରିଣତିହୀନ ଭାବସ୍ଥାଣୁତ୍ୱ ଶେଷପର୍ଯ୍ୟନ୍ତ ବଳବତ୍ତର ରହିଛି । ଏହା ମଧ୍ୟ ନିର୍ଦ୍ୱନ୍ଦ୍ୱ ସତ୍ୟ ଯେ, ଜୀବନର ଘାତ ପ୍ରତିଘାତ ବିକ୍ଷୁବ୍ଧ କବିସତ୍ତାର ଅଧ୍ୟାତ୍ମ ଆକୂତି ଓ ସେଇସାଥେ ନାସ୍ତିବାଦୀ ସଂଶୟାତ୍ମକର ସଂଘର୍ଷ ଶେଷ ଜୀବନରେ ଯେଉଁ ଅସହାୟ ଆତ୍ମସମର୍ପଣର ଗାନ କରିଛି, ସେଥିରେ କବିଙ୍କ ପ୍ରକୃତ ମିଷ୍ଟିକ ରୂପପରିଚୟଟି ଅଭ୍ରାନ୍ତ ରହିପାରିନାହିଁ ।

**ରଚନା ବିଚାର :**

ବୈକୁଣ୍ଠନାଥ ଖ୍ରୀ: ୧୯୨୯ରୁ ଖ୍ରୀ: ୧୯୩୮ ସାଲ ଭିତରେ ରଚନା କରିଥିବା କବିତାଗୁଡ଼ିକ ବିଭୁବନ୍ଦନାମୂଳକ ଓ ଆତ୍ମନିବେଦନ ଭାବାଶ୍ରିତ । ନବବର୍ଷା (୩) ଓ ବିରହିଣୀ(୪)ରେ ଅସୀମ ଅରୂପଙ୍କ ପ୍ରତି କବିଚିତ୍ତରେ ପ୍ରଥମ ପ୍ରେମଜାଗରଣର ଚକିତ ଆଭାସ ଦେଖିବାକୁ ମିଳେ । ବିଲ୍ୱମଙ୍ଗଳ(୫)ରେ ଭକ୍ତିଭାବନା ଏବଂ କବିର ଦେଶ (୬) ବିଭୁପ୍ରେମର ପ୍ରଥମ ସଚେତନ ସ୍ପଷ୍ଟ ସ୍ୱୀକୃତି

(୩) ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୧ମ ଭାଗ ପୃ. ୧, ଉତ୍କଳ ସାହିତ୍ୟ, ଜ୍ୟେଷ୍ଠ ୧୩୩୬/୨ୟ ସଂଖ୍ୟା

(୪) ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୧ମ ଭାଗ ପୃ. ୫, ଉ: ସା: ୩୪ଶ ଭାଗ, ଭାଦ୍ର ୧୩୩୬/୫ମ ସଂଖ୍ୟା

(୫) ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୧ମ ଭାଗ ପୃ. ୬, ଉ: ସା: ୧୩୩୮ ମାର୍ଗଶିର ୮ମ ସଂଖ୍ୟା

(୬) ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୧ମ ଭାଗ ପୃ. ୧୧, ଉ: ସା: ୧୩୩୮ ପୌଷ ୯ମ ସଂଖ୍ୟା

Digitized by PPRACHIN, SOA

ବହନ କରିଛି । ଆରତି(୭)ରେ କବିଙ୍କର ଅସୀମ ପ୍ରତି ଅନୁରାଗର ଉଚ୍ଛ୍ୱାସମୟ ପ୍ରକାଶ ପୂର୍ବରୁ ଏହି କବିତାଗୁଡ଼ିକ କବି ଭାବନାର ରୂପାଲେଖ୍ୟ ଓ ଆଭିମୁଖ୍ୟ ପ୍ରଦାନ କରିବାରେ କ୍ଷୀଣ ଦୀପାଲୋକ ସଦୃଶ । ଅତୀନ୍ଦ୍ରିୟର ଉଦ୍‌ବୋଧନମୂଳକତାରେ ଏମାନେ ମୁଖ୍ୟତଃ ରୋମାଂଟିକ ଭାବାନୁସାରୀ । ନବବର୍ଷାରେ ପ୍ରାଣର ପ୍ରୀତି ଉଚ୍ଛାଟନ ଘଟୁଛି । ବର୍ଷାର ବାରିଧାରାପାତରେ କବି ଏକ ନବୀନ ଭାବାନୁଭୂତି ଲାଭ କରିଛନ୍ତି ଯାହାକୁ ସେ ମୁକ୍ତି ଆଖ୍ୟା ଦେଇଛନ୍ତି । ଏ ମୁକ୍ତି ଜୀବନର ବାହ୍ୟିକତାରୁ ଭାବଲୋକକୁ ହୋଇପାରେ ଯାହା କବିଙ୍କର ଅଦେଖାପ୍ରିୟର ଦୂରରାଜ୍ୟପ୍ରତି ଉନ୍ମୁଖତା ପ୍ରକଟ କରିଛି । ପାର୍ଥିବ ବନ୍ଧନ ଛିନ୍ନ କରି ଏକ ଅପାର୍ଥିବତାକୁ ଉତ୍ସାରିତ ହୋଇଯିବାର ଏ ମୁକ୍ତିଭାବନା କବିଙ୍କୁ ଯେପରି ପ୍ରଥମ କରି ନିବନ୍ଧନର ସ୍ୱାଚ୍ଛନ୍ଦ୍ୟ କଥା ଶୁଣାଇଛି । ପ୍ରାଣର ଏ ପ୍ରଥମ ମୁକ୍ତିବିଳାସ, ପ୍ରଥମ ଆକାଶ ବିଚରଣ ଶଂସିତ କାବ୍ୟସ୍ୱରକୁ କିଛି ପୁଲକ ଚଂଚଳତାରେ ଛନ୍ଦ ମୁଖର କରିଦେଇଛି । କବି ବିରାଟସତ୍ତ୍ୱାଙ୍କୁ ରୁଦ୍ର, ଚିର ଅଶାନ୍ତ, ବର୍ଷା ଚଂଚଳ, କ୍ଷିପ୍ର ଏବଂ ଗତିମୟ ଶକ୍ତିରୂପେ ଦେଖିଛନ୍ତି । ବନ୍ଧନ ଓ ଜଂଜାଳକୁ ଛିନ୍ନ କରିବା ପାଇଁ ଏକ ପୌରୁଷର, ଶକ୍ତିର ପ୍ରୟୋଜନ ରହିଛି; ପ୍ରାଣରେ ମୁକ୍ତିର ବାର୍ତ୍ତା ସେହି ଶକ୍ତିର ଉଦ୍‌ଘାଟନ କରିଛି, ସେଇ ପୌରୁଷର ପରିଚୟ ଦେଉଛି । (୮)

ଏ କବିତାର ଭାବ ଚଞ୍ଚଳତା 'ବିରହିଣୀ'ରେ ଆହୁରି ଆବେଗ ଉଦ୍‌ବେଳିତ । ଆକାଶରେ ବର୍ଷା ଆଉ କବିଚିତ୍ତରେ ବିରହବ୍ୟଥା । ପ୍ରୀତି ଏଠାରେ ଶୂନ୍ୟପୂରର ବିବାଦ । ବୈକୁଣ୍ଠ-ମାନସର ସ୍ୱଭାବସୁଲଭ ବିଷାଦବୋଧ ଅସୀମକୁ ଅପ୍ରାପ୍ତିଜନିତ ଖେଦ ସଂଜାତ—ତାର ଇଂଗିତ ମଧ୍ୟ ଏଠାରେ ରହିଛି ।

'ବିଲ୍ୱମଂଗଳ' କବିତାରେ ଚରିତ-ପ୍ରତୀକ ସହ କବିଚେତନାର ଏକାତ୍ମକତା ଘଟିଛି । ପ୍ରାଣର ଅସୀମ ଅନ୍ୱେଷଣ(୯), ଶାଶ୍ୱତ ଅଭିମୁଖେ ବ୍ୟକ୍ତିର ନିଃସଂଗ ଓ ନିଃଶେଷ ଯାତ୍ରା ସଂବାଦ ଏଥିରେ ରୂପାଭିବ୍ୟକ୍ତ ହୋଇଛି । ଅସୀମପ୍ରିୟଙ୍କ ଅଦର୍ଶନରେ ସର୍ବତ୍ର ନିରାଶାର ଅନ୍ଧାର; ଏ ନିରାଶାବସ୍ଥାର ସହ ଆଶା ଆଲୋକର ସଂକେତ, ପ୍ରିୟର ଯଥାଯୋଗ୍ୟ ହେବାପାଇଁ ସାଧନା ପ୍ରସ୍ତୁତି, କବିଚିତ୍ତରେ ରହସ୍ୟବାଦୀ ପ୍ରେମୋଦ୍‌ବୋଧନର ପ୍ରଥମ ବଳିଷ୍ଠ ସୂଚନା ପ୍ରଦାନକରେ ।

ଅସୀମ ପ୍ରୀତିର ଏ ଅଭିଳାଷ 'ବଂଶୀର ଦେଶ'ରେ ଏକ ଅସ୍ପଷ୍ଟ ଦୁର୍ବଳ ସ୍ୱରାଳାପ ତୋଳିଛି । ବରଂ ଏକ ପଳାୟନପର ରୋମାଂଟିକ ସ୍ୱପ୍ନପ୍ରବଣତା ଏଥିରେ ଉଚ୍ଛ୍ୱସିତ କାବ୍ୟକଳ୍ପନାରେ ପର୍ଯ୍ୟବସିତ ହୋଇଛି । କବିଙ୍କ ଅଭିଳଷିତ ଅପାର୍ଥିବ ସୁନ୍ଦର ରାଜ୍ୟଟି କବି ବିଗ୍ରହରେ ତାଙ୍କ 'ନିଜଦେଶ' । ଏ ନିଜଦେଶ କିମ୍ବା ବ୍ୟକ୍ତିର ଅନ୍ତଃସତ୍ତ୍ୱାର ଅଧ୍ୟାତ୍ମ-ଲୋକ କିମ୍ବା କବିସତ୍ତ୍ୱାର ନିଛକ କଳ୍ପନାଲୋକ ତାହା କାବ୍ୟସ୍ୱରରେ ସ୍ପଷ୍ଟ ନୁହେଁ । କାରଣ କବିର ମଧ୍ୟ କଳ୍ପନାସୃଷ୍ଟ ଏକ ଅପାର୍ଥିବ ରାଜ୍ୟ ରହିଛି ଯାହା ଭାଷାସାମ୍ୟର ସୁଯୋଗରେ ରହସ୍ୟାତ୍ମକ ଅଭିବ୍ୟକ୍ତିର ଅତୀନ୍ଦ୍ରିୟତାକୁ ନିଷ୍କ୍ରମଣ ଲଭିପାରେ । ଅଥଚ କବିର ଭାବଲୋକ ଓ ରହସ୍ୟବାଦୀର ରହସ୍ୟଲୋକ ଇନ୍ଦ୍ରିୟୋତ୍ତର ହେଲେ ମଧ୍ୟ ଏକ ହୋଇ

(୭) "ବୈକୁଣ୍ଠନାଥ ଗ୍ରନ୍ଥାବଳୀ" ୧ମ ଭାଗ ପୃ. ୧୬"

(୮) "ମୋର ଅନ୍ତରରେ କେବା ଜାଗେ ।" ଗ୍ରନ୍ଥାବଳୀ ୧ମ ଭାଗ, ପୃ. ୧

(୯) "ଏକାକୀ ଚାଲିଛି ମୋର ନାହିଁ ବନରାଜି
ଅନନ୍ତ ବିରହ ଭରେ ଫାଟିଯାଏ ଛାତି ।" ଗ୍ରନ୍ଥାବଳୀ ୧ମ ଭାଗ, ପୃ. ୧୧

Digitized by PPRACHIN, SOA

ନପାରଂନ୍ତି । କବି ଏ ମାଟି-ପୃଥିବୀକୁ ପ୍ରୀତିହୀନ ମରୁମୟ ଦେଖିଛଂନ୍ତି ଓ ମର୍ତ୍ତ୍ୟବାସକୁ 'ମାୟାହରଣୀ' ସନ୍ଧାନର ବିଭ୍ରାଂତ ଜୀବନ ବୋଲି ଖେଦୋକ୍ତି କରିଛଂନ୍ତି । ଏହା ଭିତରେ ରୋମାଣ୍ଟିକ ପଳାୟନବାଦ 'ଜଗତମିଥ୍ୟା'ର ବିରାଗୀ ସ୍ୱରରେ ଚମତ୍କାର ଆତ୍ମସଂଗୋପନର ଅବକାଶ ଲାଭକରିଛି । ଦୂରରାଜ୍ୟର ଅପେକ୍ଷମାଣ 'ପରାଣପ୍ରିୟ' ପ୍ରସଂଗ କବିଂକ ସୁଦୂର ପ୍ରେମ ବ୍ୟାକୁଳତାକୁ ବ୍ୟଂଜିତକରେ । ଏ ଅବକାଶରେ ଆଦ୍ୟତାରୁଣ୍ୟର ଏଇ ମର୍ତ୍ତ୍ୟବିରାଗ, ଜୀବନ ବିରକ୍ତି ଓ ଅପାର୍ଥିବ ପ୍ରଣୟାକାଂକ୍ଷାର ସମ୍ମିଳିତ ପୃଷ୍ଠଭୂମିରେ ଏକ ଭଗ୍ନ-ପ୍ରୀତି ପ୍ରତିକ୍ରିୟାଜନିତ ହତାଶକରୁଣ ମନସ୍ତାତ୍ତ୍ୱିକତା ସହ, ବିଶେଷକରି ୧୯୨୨ ସାଲରେ ରଚିତ 'ହତାଶପ୍ରଣୟ' (୧୦) ଓ ୧୯୨୪ ସାଲର 'ଦେହ ଓ ମନର ଦାବି' (୧୧) କବିତାର ତୁଳସୀ/ଭିକ୍ଟର ସୁଲଭ ପ୍ରେମବିରକ୍ତି ବୈରାଗ୍ୟ ଭାବନା ସହ ବୈକୁଂଠନାଥଂକ ଆଧ୍ୟାତ୍ମିକ କାବ୍ୟାଭିମୁଖ୍ୟକୁ ମିଳାଇ ଦେଖିବା ଅଧିକ ସଂଗତ ମନେହୁଏ ।

ଜୀବନ ବନ୍ଧନ ଭିତରୁ କବିମାନସର ଅଧ୍ୟାତ୍ମ-ନିଃସରଣ ସମୟକ୍ରମେ ଏକ ସ୍ଥିର ଭାବକେଂଦ୍ର ଲାଭକରିଥିବାର ସ୍ପଷ୍ଟ ରୂପସଂକେତ 'ଆରତି' (୧୯୨୮, ପୌଷ, ଉତ୍କଳସାହିତ୍ୟ) । କବିପ୍ରାଣର ଆକୂତି ଓ ସମର୍ପଣ ବ୍ୟାକୁଳତାରେ ଅସୀମ ସହ ଏକ ପ୍ରୀତିମୟ ସଂପର୍କ ସ୍ଥାପନ ଅଭିଳାଷର ଏହା ଏକ ସୁଂଦର ଉଚ୍ଚାରଣ ।

ଏହି ଖଣ୍ଡକବିତା ସଂକଳନଟିରେ (ପୃ. ୧୯-୬୨ 'ଗ୍ରଂଥାବଳୀ' ୧ମ ଭାଗ) କାବ୍ୟକଥା ସହ ଦାର୍ଶନିକତା, ଭାବାନୁଭୂତି ସହ ବୌଦ୍ଧିକବିଳାସ ମଧ୍ୟ ପ୍ରକାଶିତ । ସ୍ପଷ୍ଟକରି ପ୍ରଥମ ଥର ପାଇଁ ଏହି କବିତାଗୁଡ଼ିକରେ ଅରୂପ ଈଶ୍ୱରଂକୁ ହୃଦୟଦେବତା ରୂପେ ପାଇବାକୁ ଅଭିଳାଷ ପ୍ରକଟିତ । ଏଥିରେ ବିରହ ଚେତନା ରହିଛି, କ୍ରଂଦନର କଥା ବି ରହିଛି । ସେ ସବୁ ପ୍ରଥମ ପ୍ରେମବିହ୍ୱଳତାର ସ୍ୱାଭାବିକ୍ ଅଶ୍ରୁ ଗଦ୍‌ଗଦ୍‌ତା । ଏହି କବିତାକୁ କବିପ୍ରାଣରେ ଅସୀମ ଉଦ୍‌ବୋଧନର ପ୍ରଥମ ସଫଳରୂପ ସଂକେତ ବୋଲି ବିଚାର କରାଯାଇପାରେ । ପ୍ରଥମ ଅଂଶଟିରେ କବି ପାର୍ଥିବ ଜଗତ, ବ୍ୟକ୍ତିଜୀବନ ଓ

---

(୧୦) (କ) "ଭୁଲିଛି ମୁଁ ଆପଣାକୁ ପ୍ରଣୟ ଦୁର୍ବଳ × × ଶୂନ୍ୟ ଏ ସଂସାର × × ଦୟାମୟ ତୁମ ପ୍ରୀତି ଆସୁ ଅବତରି × × ଭୁଲିଯାଏ ଜୀବନର ସକଳ ଛଳନା × × କାହିଁଅଛି, ପ୍ରୀତିହୀନ ଜନ୍ମ ବଳି ସୁଂଦର ମରଣ/କେଉଁମନେ ଭୁଲିଲି ତାହା ।"

(ଖ) "ପୂର୍ଣ୍ଣତା ? ବିକାଶ ? ସେ କି ଜୀବନେ ସଂଭବ ? ଯୌବନେ ଲୁଟିଛି ତାର ସକଳ ଗୌରବ ? × × ସେହି ପ୍ରଣୟ ଉତ୍ସବ / ପାଶୋରିବା ମୋହ ପକ୍ଷେ ଟିକି ଅସଂଭବ × × ଆଗୋ ମରୀଚିକା, ଏବେ ସୁଦ୍ଧା ମୋର ଆଗେ / ପ୍ରଥମ ଯୌବନ ନବ ପ୍ରଣୟ ସୋହାଗେ / ପୁଣି କହେ କେତେ କଥା......ସେ କି ପ୍ରହେଳିକା ? / ମର୍ତ୍ତ୍ୟର ଦାନବୀ କଣେ ସେହି ରୂପଛଳେ / ଶୋଣିତ ପିପାସା ବହ୍ନି ଅହରହ ଜଳେ ।"

'ହତାଶ ପ୍ରଣୟ'—ଭାଦ୍ର ୧୯୨୨, ଉତ୍କଳ ସାହିତ୍ୟ ପୃ. ୨୫୪

(୧୧) "ଦେହର ମିଳନ ସୁଖ ଜାଣେ ନିମେଷର × × ମାତ୍ର ମୋ ପୁଲକ ଜ୍ଞାନ ଅଛ ତୁମେ ପାଶେ × × ପୁଣି ଯେ ମୁକତି ଡାକ ଶୁଭଇ ପବନେ × × ତୁମେ ଦିଶ କି କୁତ୍ସିତ ମର୍ତ୍ତ୍ୟର ସୁଂଦର । / ଶୁଣିଛି ଆଜି ଗୋ ସେହି ମୁକତି ଆହ୍ୱାନ × × ଅଜାଡରେ ତୁମ ଦାନ କରେ ପ୍ରତ୍ୟାଖ୍ୟାନ ।"

'ଦେହ ଓ ମନର ଦାବି'—୩୧ଶ ଭାଗ, ଉତ୍କଳ ସାହିତ୍ୟ ପୃ.୧୯୨/୧୯୩

Digitized by PPRACHIN, SOA

ସାଂସାରିକ ସମ୍ପର୍କକୁ ମିଥ୍ୟାଜ୍ଞାନ କରିଛନ୍ତି । ତା'ର ସତ୍ୟ ଯୌବନକୁ ଅଖଣ୍ଡ ଓ ସୃଷ୍ଟିକୁ ନନ୍ଦନ-କାନନ କରି ଦେଖିବାବେଳେ ତାତ୍ତ୍ୱିକ ଦେଖା ମନେହୁଏ । କାରଣ କବିଙ୍କ ଉପଲବ୍ଧିରେ ସଂସାର କେବଳ ମରୁ, ଦୁଃଖପୂର୍ଣ୍ଣ, ବାସନାଦଗ୍ଧ । ତେଣୁ 'ମିଥ୍ୟା ଭ୍ରମ ସୃଷ୍ଟି'ର ଅନୁଯୋଗ । ତାଙ୍କ ଅଭିଯୋଗରେ ରୂପସୌନ୍ଦର୍ଯ୍ୟ ମିଥ୍ୟା, କାବ୍ୟରଚନା ମଧ୍ୟ ମିଥ୍ୟା । ଜାଗତିକ ଅଭିଳାଷର ଚରିତାର୍ଥତା ଖୋଜିବା ଅସାର ଏବଂ ନିରର୍ଥକ । ଏ ମିଥ୍ୟାର କାରଣ ଅପୂର୍ଣ୍ଣତା । କବି ଶୁଣିଛନ୍ତି, ରହସ୍ୟର ଅନ୍ତରାଳରେ ଏକ ରୂପର ରୂପ, ଜୀବନର ଜୀବନ ଅଛନ୍ତି । କବି ତାଙ୍କୁ ସ୍ୱୀକାର କରନ୍ତି, ଦର୍ଶନ ପାଇନାହାନ୍ତି, ତେଣୁ ସବୁ ବିରୂପ ମନେହେଉଛି । ଜୀବନ ମରଣରେ ପ୍ରକାଶବୋଧ ହେଉଛି । ତେବେ କବି ଜାଣନ୍ତି, ସୀମାର ବିଚ୍ଛିନ୍ନବୋଧରେ ଅସୀମ ଉପଲବ୍ଧି ଆସେନାହିଁ; ସେଥିପାଇଁ ଲୋଡ଼ା ଆତ୍ମ ସମର୍ପଣ ।

ଅପୂର୍ଣ୍ଣତାର ଏହି ଖେଦ ଅଶ୍ରୁ ହୋଇ ଝରିପଡ଼ୁଛି । ଜୀବନରେ ଦୁଃଖ, ଜଗତରେ ସଂଘର୍ଷ ଅନିବାର୍ଯ୍ୟ । ସେମାନଙ୍କୁ ଅସହିଷ୍ଣୁତା ଦ୍ୱାରାରେ ବି ଅସ୍ୱୀକାର କରିହୁଏ ନାହିଁ । ବରଂ ସେଇମାନଙ୍କ ଭିତରେ ହିଁ ସୁଖକୁ, ଆଲୋକକୁ ଅନ୍ୱେଷଣ କରିବାକୁ ହୁଏ । ସକଳ ଶୂନ୍ୟତା ଭିତରେ ଜୀବନର ଦୁଃଖ ବରଂ ଦେବତାର ଦାନ ରୂପେ ମହାର୍ଘ ହୋଇ ଉଠିଲେ ହିଁ ଦିବ୍ୟାରାଧନା ସମ୍ଭବ ହୁଏ । ମର୍ତ୍ତ୍ୟର ମନ୍ଦିରାଳୟ ଦେବାଳୟ ହୋଇଯାଏ । ଦେବତାର ସ୍ଥାପନ ପାଇଁ ମର୍ତ୍ତ୍ୟ ବିନା ମନ୍ଦିର କାହିଁ ? ଜୀବନ ବିନା ପୂଜା କାହିଁ ? ସତ୍ତା ବିନା ପୂଜାରୀ କାହିଁ ? ଦୁଃଖ ସହନ ଭିତର ସମର୍ପଣର ଯେ ସାମର୍ଥ୍ୟ ଆସେ, ତାହାହିଁ ସ୍ୱସମର୍ପଣ ପାଇଁ ପ୍ରସ୍ତୁତ କରାଏ ।

ଏଇ ସ୍ୱୀକୃତିର ସ୍ୱାଭାବିକ ପରବର୍ତ୍ତୀ ମାନସୋପଲବ୍ଧି—ନାହିଁ ଫେରେ ମୋର ଦୃଷ୍ଟି / ତୁମର ରୂପର ସୃଷ୍ଟି । (୧୨) ଏଠାରେ ଜୀବନର ସକଳ ସୀମାବଦ୍ଧ ଖଣ୍ଡତା ଓ ଗ୍ଲାନିମାଳିନ୍ୟ ଭିତରେ ଅସୀମର ଲୀଳାପ୍ରିୟ ଇଚ୍ଛାକୁ, ନାଟ୍ୟବିଳାସକୁ ସନ୍ଧାନ କରିବାରେ କବି ସତ୍ତା ଜାଗ୍ରତ । ସଫଳତା ଓ ବିଫଳତା, ସୁଖ ଓ ଦୁଃଖ ସବୁଥିରେ ସେହି ଜୀବନ ଦେବତାଙ୍କର ସ୍ପର୍ଶ ଲାଗିରହିଛି । ପ୍ରାଣର ବୀଣାରେ ତାଙ୍କ ପ୍ରୀତିମୟ ରାଗିଣୀର ସ୍ୱରାଳାପ ଶୁଭୁଛି । ହୃଦୟ ଏକ ମଧୁର ପୁଲକମୟ ଅନୁଭବରେ ଅନ୍ତର୍ଦେବତାଙ୍କ ସମୀପରେ ଶ୍ରଦ୍ଧାବନତ ହୋଇଛି ।

ଏ ଅବନତ ଭାବ, ଦ୍ରବୀଭୂତ କୃତଜ୍ଞତା ଏକ ବିପୁଳ ପ୍ରାପ୍ତିବୋଧରୁ ସଞ୍ଜାତ । ଜୀବନର ସେଇ ସେଇ ବିଚିତ୍ର ଉପଲବ୍ଧି ଭିତରେ ପାଇବା ଓ ହରାଇବାର ରୂପାନ୍ତର ଘଟେ । ମିଳନ ବିରହର ଅନ୍ୱିତ ଘଟେ । ଜୀବନର ମୃତ୍ୟୁଞ୍ଜୟୀ ସ୍ପର୍ଶରେ ମୃତ୍ୟୁର ମଧ୍ୟ ମରଣ ଘଟେ । ଅସୀମର ଡାକ ସୀମାର ରୁଦ୍ଧଦ୍ୱାର ଭେଦି ଅନ୍ତର୍ଲୋକକୁ ପ୍ରସରିଯାଏ । ନବୋନ୍ମେଷିତ ଚେତନାର ଏ ଶୁଭାଗମ କାଳରେ କବି ପୂଜାରତି ସଜାଇଛନ୍ତି । "ଜାଣେ ମୁଁ ଜୀବନ କରିବାକୁ ଅର୍ପଣ" (୧୩) ଜୀବନ ଦେବତାଙ୍କୁ ବିଶ୍ୱାସର ଏ ସାମଗ୍ରିକ ନିର୍ଭରତାର ସମର୍ପଣ ଶକ୍ତି ତାତ୍ପର୍ଯ୍ୟପୂର୍ଣ୍ଣ । ଏକ ପରମାତ୍ମୀୟ ପ୍ରୀତି ସମ୍ପର୍କିତଙ୍କୁ ହିଁ ସବୁ ସମର୍ପଣ କରିଦେବାର ଏ ଦୃଢ଼ନିର୍ଭରତା ଜାଗ୍ରତ ହୋଇଥାଏ । ସଚରାଚର ଗୋଟିଏ ପ୍ରେମ ବିଳାସ, ଗୋଟିଏ ମଙ୍ଗଳ ଇଚ୍ଛାର ପ୍ରକାଶ, ଜୀବନର ସକଳ ଅନୁଭବରେ ଏକ ପରମ କଲ୍ୟାଣ ଚେତନାକୁ ଜାଗ୍ରତ ଦେଖିବା (୧୪) ମିଷ୍ଟିକ ଚେତନାର ଏକ ବଳିଷ୍ଠ ଅଧ୍ୟାତ୍ମ

(୧୨) ଆରତି (୪) ଗ୍ରନ୍ଥାବଳୀ ୧ମ ଭାଗ—ପୃ. ୧୮
(୧୩) ଆରତି (୪) ଗ୍ରନ୍ଥାବଳୀ / ୧ମ ଭାଗ—ପୃ. ୧୯
(୧୪) "ଅଜାଣତେ ମୋର ଏ ସକଳ ଆୟୋଜନ"—ଗ୍ରନ୍ଥାବଳୀ ୧ମ ଭାଗ ପୃ. ୧୭

Digitized by PPRACHIN, SOA

ବିଭବ । 'ଆରତି' ପର୍ଯ୍ୟାୟରେ ଈଶ୍ୱରଂକ ପ୍ରେମ-ମୟତ୍ୱ ସମ୍ପର୍କରେ ନିଶ୍ଚିଂତ ହୋଇ ରହିବାର ଏ ପ୍ରତ୍ୟୟ କାବ୍ୟରୂପରେ ପ୍ରଥମକରି ଏକ ନିର୍ଭରଶୀଳ ଆଶାମୟତାକୁ ଲାଭ କରିଛି ।

ଶରଣାଗତିର ନିର୍ଦ୍ଦିଷ୍ଟ ତାତ୍ତ୍ୱିକ ଅନ୍ତର୍ନିହିତ ନିଷ୍କାମତ୍ୱ ସ୍ତର । 'ପରମ ସତ୍ତାଙ୍କ ନିର୍ଦ୍ଦେଶିତ କ୍ରମରେ ଜୀବନର ମୁକ୍ତି' ନବଚେତନା ଏ ସନ୍ଦେଶ ଲାଭ କରିଛି । (୧୫) ତାଂକର ପ୍ରଦତ୍ତ କର୍ମ ମାଧ୍ୟମରେ ହିଁ ଜୀବନ ତାଂକର ଯଥାଯୋଗ୍ୟ ହୋଇ ଉଠିବାର ଅବକାଶ ଲଭ କରେ । ଏହାହିଁ ଗୀତା ବ୍ୟଂଜିତ କର୍ମଯୋଗ । କବି ସେହି ସାକ୍ଷାର ଅଭିଳାଷୀ । ଜୀବନ ଦେବତା ସକଳ କର୍ମ, ଭାବ ଓ ଅନୁଭବ ଭିତରେ ହୃଦୟର ପ୍ରେମକୁ ରଖି ନିଅଂତି । ବୀଣାତାରରେ ଆଘାତ କରି ହିଁ ଆନଂଦଗାନର ସ୍ୱର ତୋଳଂତି । ଜୀବନକୁ ଶୂନ୍ୟତା ଯେତେ ଅବୋରି ବସେ, ହୃଦୟର ଆନୁଗତ୍ୟ ଓ ମମତାର ନିଷ୍ଠା ସେତେ ପ୍ରଗାଢ଼ ହୋଇଯାଏ । ଅଶ୍ରୁ-ଆକୁଳ ହୃଦୟରେ ପ୍ରାଣ ପ୍ରିୟତମଂକ ପାଇଁ ଏକାଗ୍ର ପ୍ରତୀକ୍ଷା ଜାଗେ । ଅଶ୍ରୁମୁଂଚନ ଭିତରେ ଅଂତରତମକୁ ସ୍ମରଣ କରିବା ସହଜ ହୋଇଯାଏ । ଏଇ ଅଶ୍ରୁ ସାଧନା, ଦୁଃଖ ବେଦନାକୁ ଜୀବନର ତୀର୍ଥ ତପସ୍ୟା ରୂପେ ଦେଖି ପାରିବାର ମନସ୍ତତ୍ତ୍ୱରେ ଏକ ଗମ୍ଭୀର ପ୍ରେମ-ନିବେଦନର ସ୍ୱରଚେତନାଟି ସୁସ୍ପଷ୍ଟ ।

କବି ଦୃଢ଼ ପ୍ରିୟଙ୍କ ଦତ୍ତ ଦୁଃଖ-ଅଶ୍ରୁର ସାଗରରେ ଜୀବନ-ତରୀଟିକୁ ନିର୍ବାଧରେ ଚଳାଇ ନେବାର ସ୍ୱଚ୍ଛଂଦ ଅବକାଶ ଲଭ କରିବେ ବୋଲି ଭରସା କରିଛଂତି; ଜୀବନର ସକଳ ସୁଦିନ ଦୁର୍ଦ୍ଦିନରେ ସେ ପ୍ରିୟ ପ୍ରେମରେ ଭରସା କରି ବଂଚନ୍ତୁ ଏ ।

ଏ ରହସ୍ୟମୟ ପ୍ରିୟଂକୁ କବି ପରିଚୟ କରାଇ ଦେଇଛଂତି—'ସେ ଚିର ଅମୃତ' । ସୃଷ୍ଟିର ସକଳ ସୌଂଦର୍ଯ୍ୟ ଓ ମାଧୁର୍ଯ୍ୟ ଭିତରେ ସେ ଉଦ୍ଭାସିତ । ସୃଷ୍ଟିର ପ୍ରତିଟି ଛଂଦରେ ତାଂକର ବଂଦନା । କବି ବହିଃପ୍ରକୃତିରେ ବିଶ୍ୱମାଧୁରୀର ସନ୍ଧାନ ପାଇଛଂତି । ମୁକ୍ତିର ସନ୍ଦେଶ ଶୁଣିଛଂତି, ନିଜକୁ ମଧ୍ୟ ମୁକ୍ତ ଓ ପୂର୍ଣ୍ଣ ଦେଖିବାକୁ ଚାହାଂନ୍ତି । ଏଠାରେ ଅବଶ୍ୟ ଏହା ସ୍ପଷ୍ଟ ଅନୁମିତ ଯେ କବି ଚେତନାରେ ବିଶ୍ୱପ୍ରସାର ଓ ଅନ୍ତର୍ମୁଖୀନ ଅବସ୍ଥା (cosmic consciousness) ଆସିନାହିଁ । ମାତ୍ର ଏ ରୂପାଭିବ୍ୟକ୍ତ ସଚେତନତା ହେତୁ କବି ନିଜର ଅକ୍ଷମ ଅପୂର୍ଣ୍ଣତାକୁ ବରଂ ଗଭୀର ଭାବେ ଅନୁଭବ କରିଛଂତି । ଚିର ଦରିଦ୍ର ମୁଁ ଗ୍ଲାନିଟି ଯେତେ ଅପ୍ରାପ୍ତି ଓ ବଂଚନାର କ୍ଷୋଭ ନୁହେଁ, ସେତେ ଅସାମର୍ଥ୍ୟର ବିଶ୍ୱ ସୃଷ୍ଟି ଭରପୁର କରି ସ୍ରଷ୍ଟାର ଦାନ ବିବ୍ରତ ହୋଇ ପଡ଼ୁଛି । ସେ ଦାନର ପ୍ରତିଦାନ ପାଇଁ ମଧ୍ୟ କବିଂକର ସଂବଳ ନାହିଁ । କୃତଜ୍ଞତା ନିବେଦନରେ ସୁଯୋଗ ମଧ୍ୟ ଘଟିନାହିଁ । ସେ ପରମ ପ୍ରେମର ଯଥାଯୋଗ୍ୟ ପ୍ରତିଦାନ ମର୍ତ୍ତ୍ୟଜୀବନରେ ଦୁଃସାଧ୍ୟ । ଅତଏବ ପ୍ରତିଦାନ କଥା ଭୁଲି କବି ହୃଦୟ ଦାନ କରିବାକୁ ଚାହାଂନ୍ତି । ହୃଦୟର ନୀରବ ପ୍ରଣୟ ନିଷ୍ଫଳ ଅପେକ୍ଷା ଛଡ଼ା ତାଂକୁ ଆଉ କିଛି ବି ଦିଆଯାଇପାରେନା । (୧୬) ପ୍ରୀତି ଧନ୍ୟ ହୃଦୟର କେବଳ ଗୋଟିଏ ଖେଦ, ନିଜକୁ ସମ୍ପ୍ରଦାନ କରିବାର ଅକ୍ଷମତା । ଆଶ୍ୱାସନା ଆକୁଳ ହୃଦୟର ଆଶ୍ୱସ୍ତିର ବାର୍ତ୍ତା ଲଭିକରିଛି । ଅରୂପ ବନ୍ଧୁର ଦୀପ୍ତ ରୂପ ଆଭା ବିଷାଦ ତାମସୀ ବକ୍ଷରେ ଝଲି ଉଠିଛି । କବିଚିତ୍ତ ପୁଲକ ଚଞ୍ଚଳ; ମଧୁର ସ୍ୱରରେ ସିଏ ଡାକ ଦେଇଗଲେ, ପ୍ରାଣରେ ଚମକ, ବକ୍ଷରେ ଉଚାଟନ ଭରି ଦେଇଗଲେ, ତାରି ପଥରେ ବ୍ୟଗ୍ର ହୋଇ କବି ଚିତ୍ତ ଛୁଟିଯାଇଛି । ତରୁ ମର୍ମରରେ, ମଧୁ ମଳୟରେ, ତଟିନୀ

(୧୫) "ଭ୍ରମର ଆଜ୍ଞାସାର" ଗ୍ରଂଥାବଳୀ ୧ମ—ପୃ. ୧୭

(୧୬) "ନିରୋଳା କୁଟୀର ରଚି ବନ୍ଧୁପଥ ଥିବି ଚାହିଁ ।" ବୈକୁଂଠ ଗ୍ରଂଥାବଳୀ (୧ମ) ପୃ. ୨୦

Digitized by PPRACHIN, SOA

ତରଂଗରେ ଯାର ପ୍ରୀତି ନିଃସ୍ୱନ ଗୁଂଜରିତ, କବି ସେହି ପରମ ମନୋହରଂକର ମଧୁର ରୂପରେ ମଜ୍ଜିବାକୁ, ପ୍ରୀତି ମାଧୁର୍ଯ୍ୟରେ ହଜିବାକୁ ଉଚ୍ଛନ୍ନ । କବି ପ୍ରାଣରେ ଫୁଲ ଫୁଟିବାର ଆବେଗ ଆସିଛି ଫୁଲ ସବୁବେଳେ ସୌଂଦର୍ଯ୍ୟ, ମାଧୁର୍ଯ୍ୟ, ସଂପ୍ରୀତି ଓ ମୁଗ୍ଧତାର ଆଶ୍ୱାସନା ଦିଏ । ଅପାର୍ଥିବର ସଂଦେଶ ମର୍ତ୍ତ୍ୟ ଦୈନ୍ୟକୁ ଭୁଲାଇ ଦେଉ ବୋଲି କବି କାମନା କରିଛଂତି । ପ୍ରକୃତି ସହ ଘନିଷ୍ଠ ହୋଇ, ଏକାତ୍ମ ହୋଇ, ପ୍ରକୃତିର ଛନ୍ଦେ ଛନ୍ଦେ ପରିବ୍ୟାପ୍ତ ଦିବ୍ୟରୂପ ଓ ପ୍ରେମ ମାଧୁରୀ ଭୋଗ କରିବାକୁ କବି ଆଶାୟୀ ।

ଚେତନାର ଏହି ନବାଲୋକରେ କବି ସତ୍ତା ନିଜର ଅହଂସ୍ୱରୂପକୁ ପ୍ରେମ-ସାଧନା ପଥରେ ପ୍ରଧାନ ପ୍ରତିବଂଧକ ବୋଲି ଆବିଷ୍କାର କରିଛି । ଜୀବନର ଏ ଜାଗ୍ରତ ମୁହୂର୍ତ୍ତରେ ଆତ୍ମବଦ୍ଧ ଆଶାବାସନା ଓ ସୁଖଭିଳାଷ ବ୍ୟକ୍ତିକୁ ପ୍ରାତ୍ୟହିକତା ସହ ବାଂଧିରଖିଛି ବୋଲି ଦେଖିବାକୁ ପାଇଛି ।

ଆତ୍ମ ସୁଖର ଏ ବାସନାଗୁଡ଼ିକ ଝରାପତ୍ର ପରି ଜୀବନରୁ ଫିଂଗିଦେବାକୁ କବି ଇଚ୍ଛୁକ । ସେ ସବୁର ବିସର୍ଜନ ପରେ ହିଁ ଜୀବନରେ ନୂତନ ଋତୁର ସବୁଜ ସମାଗମ ସଂଭବ ହେବ । ପୌଷର ଜୀର୍ଣ୍ଣ ପତ୍ର ଝରିଗଲାପରେ ହିଁ ବସଂତରେ ଶୀର୍ଣ୍ଣ ବୃକ୍ଷ ନବମୁକୁଳିତ ହୁଏ । ପୁରାତନର ବର୍ଜନ ନୂତନର ଆବିର୍ଭାବ ପାଇଁ ଏ ପରିପ୍ରେକ୍ଷୀରେ ଅନିବାର୍ଯ୍ୟ ହୋଇଉଠେ । ଚେତନାରୁ ଚିରାଚରିତ ଆଶାଭିଳାଷକୁ ପଲିତ ପତ୍ର ପରି, ମୋହ ଭ୍ରାଂତିମାନଂକୁ ଜୀର୍ଣ୍ଣ ବଲ୍କଳ ପରି ଫିଂଗିଦେଇ ନୂତନ ଶାଖା ଓ ନବୀନ ପତ୍ରରେ ଭବ-ମୁକୁଳିତ ହୋଇ ଉଠିବାପାଇଁ କବି କାମନା କରିଛଂତି । ଏଇ କେତୋଟି ପଙ୍‌କ୍ତିରେ ଅଧ୍ୟାତ୍ମ ସାଧନା ତଥା ରହସ୍ୟବାଦୀ ଚେତନାର 'ଆତ୍ମକର୍ଷଣ'ର ପ୍ରବଣତା ପରିଲକ୍ଷିତ । ଯାହା ସତ୍ତାକୁ ବାସନା ବିମୁକ୍ତିର ଆବଶ୍ୟକତା ସଂପର୍କରେ ସଚେତନ କରିଦିଏ । କବିଂକ ଚିତ୍ତରେ ପ୍ରତ୍ୟୟ ଜାଗିଛି, ପବିତ୍ରତାର ଜଳରେ ଥରେ ଶୁଚିସ୍ନାତ ହୋଇଥିଲେ ସେ ଚୈତୀକ ସଂଧ୍ୟାବନ୍ଦି ସମ ଦେବତାଂକ ନିରାଜନାରତ ହୋଇ ରହିବେ । ସ୍ନିଗ୍ଧ, ଶାଂତ ସନ୍ଧ୍ୟାଲୋକରେ ପ୍ରାଣ ପ୍ରଭୁଂକ ବଂଦନା ପାଇଁ ଆରତି ପ୍ରସ୍ତୁତ କରିବେ । ଏହି ଆତ୍ମ ନିବେଦନ ଓ ପ୍ରତ୍ୟୟ ଲାଭ ପରେ କବିଚେତନାରେ ଅନ୍ତର ଦେବତାଂକ ଶୁଭ ନିର୍ଦ୍ଦେଶ, କଲ୍ୟାଣସ୍ପର୍ଶ ଓ ଦାନରହସ୍ୟ ଯେପରି ଖୋଲିଯାଇଛି । (୧୭) ଜୀବ ତାଂକୁ ଭୁଲିଗଲେ ମଧ୍ୟ ସେ ଜୀବକୁ ଭୁଲଂତିନାହିଁ । ଜୀବନର ସବୁ ଧୂଳି ମଳି ପଂକ କାଦୁଅ ଭିତରୁ ବି ସେ ନୀରବରେ ସବୁରି ଅଲକ୍ଷ୍ୟରେ ଫୁଲ ଫୁଟାଇବାରେ ଲାଗିଥାଂତି । ପ୍ରିୟ ସୃଷ୍ଟିକୁ ତାଂକର କିଛି ମନା ନାହିଁ । ତାଂକର 'ଦେବା ଓ ନେବା' ସବୁ ଭିତରେ କେବଳ ଏକ ଉଦାର ଆତ୍ମୀୟତାର କଲ୍ୟାଣବାର୍ତ୍ତା ନିହିତ । କବି ଏବେ ପ୍ରାଣଭରି ସେହି କଲ୍ୟାଣର ରାଗଛନ୍ଦକୁ ନିଜ ଜୀବନ ତାରରେ ଆଳାପ କରିବାକୁ ଚାହାଂତି ।

କବି-ମାନସରେ ଏ ଅବକାଶରେ ଭଲ-ମଂଦ, ପାପ-ପୁଣ୍ୟ, ସତ୍ୟ-ମିଥ୍ୟାର ଦ୍ୱଂଦ୍ୱ ସୁପରିସ୍ଫୁଟ । ଦିବ୍ୟ-ଜାତ (୧୮) ହୋଇଥିଲେ ମଧ୍ୟ ମର୍ତ୍ତ୍ୟ ଜୀବନ ପାର୍ଥିବ କଳୁଷତାଜନିତ । ଦେବତାର ସୃଷ୍ଟି

---

(୧୭) "ତୁମେ ମୋର ରାଜା ତୁମେ ମୋ ନିଯୁତି / ସକଳ କର୍ମକରଣ
ଅଜ୍ଞାତ ମୁହିଁ ଲିହିଛି ପରାଣେ / ବିଶାଳ ସୃଷ୍ଟି କାରଣ / ତୀର ପ୍ରିୟ ମୋର ଦେବତା ।"
ଗ୍ରଂଥାବଳୀ ୧ମ—ପୃ. ୬୬

(୧୮) "ମୁହିଁ ଶିଶୁ ଚିରମୁକ୍ତ, ଅମୃତ ପୀରିତି / ଅପୂର୍ଣ୍ଣ ମୋ ଜୀବନର ଅମୃତ ମୁକତି ।"
'ଦେହ ଓ ମନର ଦାବୀ'—ଉ: ସା—୩୯ଶ ଭାଗ / ୪ର୍ଥ ସଂଖ୍ୟା—ପୃ. ୧୩୩

Digitized by PPRACHIN, SOA

ହୋଇଥିଲେ ମଧ୍ୟ ପାର୍ଥିବ ସ୍ୱପଜନିତ ଅନେକ ମିଥ୍ୟାଚରଣରେ ମାନବସତ୍ତା ଜଡ଼ିତ, ତଥାପି ତାର ପ୍ରାଣରେ ଦିବ୍ୟାକାଂକ୍ଷା ଓ ଦେବଯୋଗ୍ୟ ହୋଇ ନ ପାରିବାର ଅଶ୍ରୁ ମଧ୍ୟ ସଂଚିତ । ଜଗତର ତୀର୍ଥ-ଯାତ୍ରାରେ ମାନବ-ଯାତ୍ରୀଠାରେ ଅନେକ ଧୂଳିମଳି ଲାଗେ; ବିଶ୍ୱ ମଂଦିରରେ ଦେବପୂଜା ଆଳରେ ଅନେକ ଅଦିବ୍ୟଅର୍ଚନା ଚାଲେ । ତଥାପି ଜୀବନ ନିରସ୍ତ ହୁଏ ନାହିଁ । ସେହି ମଂଦିରକୁ ପବିତ୍ର କରି ହୃଦୟକୁ ଶୁଭ୍ର ପଦ୍ମ କରି ପ୍ରାଣ ଦେବତାଂକ ଆରାଧନାପାଇଁ ଜୀବନରେ ଅବକାଶ ତଥାପି ଆସିଥାଏ । ବ୍ରତ, ଉପବାସ, ଆସନ, ପ୍ରାଣାୟାମ ବା ଯାଗଯଜ୍ଞର ଆବଶ୍ୟକତା କବି ଦେଖି ନାହାଂତି । ହୃଦୟ ନିଷ୍କଳୁଷ ହୋଇ ପାରିଲେ ଦେବତାଂକ ଦିବ୍ୟ ଆଭାରେ ଆପେ ଦୀପ୍ତିମାନ ହୋଇ ଉଠିବ ବୋଲି ସେ ଆଶା ରଖିଛଂତି ।

'ଆରତି' କେବଳ ଏକ ଭକ୍ତିରସାତ୍ମକ ଅଧ୍ୟାତ୍ମ-ସଂଗୀତ ନୁହେଁ, କବିଂକ ରହସ୍ୟବାଦୀ ସ୍ୱଭାବୋନ୍ମେଷର ପ୍ରଥମ ସ୍ପଷ୍ଟ ଉଚ୍ଚାରଣ ମଧ୍ୟ । 'ଆରତି' ନାମକରଣଟି ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ସଂଧ୍ୟାରତିର ସମୟ ନିର୍ଦ୍ଦେଶ, ପ୍ରାଣରେ ଆରତି-ଆବେଗ ଏବଂ ବାତାବରଣର ପବିତ୍ରତାର ସୂଚନା ଭିତରେ ଚେତନାର ଜାଗ୍ରତ ମୂହୂର୍ତ୍ତ ବାଙ୍ମୟ ହୋଇ ଯାଇଛି । ଜୀବନ ଦୀପ, ଧୂପ, ଗଂଧ ଓ ନୈବେଦ୍ୟ ହୋଇ ପ୍ରିୟଦେବତାର ଚରଣ ତଳେ ଲୋଟି ଯିବାକୁ ଚାହିଁଛି ।

କବିତାରେ ରୋମାଂଟିକ ଭାବାକୁଳତା ଓ ଭକ୍ତ ଗଦ୍‌ଗଦ୍‌ତାର ପ୍ରାଚୁର୍ଯ୍ୟ ସତ୍ତ୍ୱେ ରହସ୍ୟବାଦୀ ଭାବନା ସୁ-ପ୍ରଚୁର । 'ଜୀବନବଂଧୁ', 'ପରାଣପ୍ରିୟ' ପ୍ରଭୃତି ଆତ୍ମିକ ସମ୍ବୋଧନ, ପ୍ରକୃତିର ରୂପଛନ୍ଦ ଭିତରେ ଅରୂପଂକ ରୂପସଂକେତ ଲାଭ, ପ୍ରୀତି ଅଭିଳାଷ ସହ ନିଜର ସୀମା-ଦୈନ୍ୟ ସଂକୁଚିତତା, ପ୍ରସ୍ତୁତିର ଦୃଢ଼ତା, ସମର୍ପଣର ନିଷ୍ଠାପୂତା, ଅପେକ୍ଷାର ଆକୁଳତା, ନିଜକୁ ପ୍ରିୟ-ଯୋଗ୍ୟ କରିବାର ସାଧନା । ଫୁଲ ହୋଇ ଫୁଟିବାର ମଧୁର ସ୍ୱପ୍ନ ଆରତିର ଆୟୋଜନ—ଏ ସବୁ ଭାବଚେତନା ଭିତରେ ଏକ ଚିରଂତନ ପ୍ରେମାକୁଳତା ସହ ଅମର୍ତ୍ତ୍ୟ ଆକାଂକ୍ଷାର ସଂବାଦ ସ୍ପଷ୍ଟ ଲକ୍ଷଣୀୟ । ଏ ସମ୍ପର୍କରେ ବ୍ୟବହୃତ ସବୁ କ୍ରିୟା ଭବିଷ୍ୟାତ୍ମକ, କବି ଯାହା ହୋଇପାରି ନାହାଂତି, ପାଇପାରି ନାହାଂତି, ଅଥଚ କରିବାକୁ, ପାଇବାକୁ ଚାହାଂତି—ତାର ଭବିଷ୍ୟ ସୂଚନା ।

ପ୍ରିୟ ଦେବତା ଅନାହୂତ ଆସଂତି; ପୁଣି ଫେରିଯାଂତି । (୧୯) ବ୍ୟକ୍ତି ନିଜର ଅଂଧାରି ମନ ଭିତରେ ନିଜକୁ ଛପାଇ ରଖେ । ଦେବତା ଫେରିଯାଂତି । ଜୀବନ କେତେ ଅଲୋଡ଼ା ମୂଲ୍ୟହୀନତାକୁ ମୂଲ୍ୟବାନ କରି ଜାବୁଡ଼ି ଧରେ, ଅଥଚ ଯାହା ହୃଦୟର, ପ୍ରାଣର, ସମଗ୍ର ଜୀବନର ତାକୁ ଚହ୍ନି ପାରେନାହିଁ, ସ୍ୱାଗତ କରେନାହିଁ, କବାଟ ଖୋଲେନାହିଁ । ଏ 'ଲଜ୍ଜାବ୍ୟଥା' ଶେଷପର୍ଯ୍ୟଂତ କବିକୁ ଯଂତ୍ରଣା ଦେଇଛି । ଆତ୍ମଗତ ଅସାମର୍ଥ୍ୟର ନଗ୍ନରୂପ ଦେଖି କବି ଗ୍ଲାନି ପୀଡ଼ିତ ହୋଇଛଂତି । ଦୀପ ଜାଳିବାର ବ୍ୟର୍ଥତାରେ ଅଂଧାର ପ୍ରବଳତର ମନେହୋଇଛି । (୨୦)

କବି ପ୍ରାଣଦେବତାଂକ ଆବିର୍ଭାବ କାମନା କରିଛଂତି । କବି ଜୀବନରେ ପ୍ରେମ ଭକ୍ତି ବିଶ୍ୱାସର ପ୍ରୟୋଜନକୁ ଗଭୀରଭାବେ ଅନୁଭବ କରିଛଂତି । (୨୧) ମୀରାଂକ ପରି ସନ୍ନ୍ୟାସିନୀ / ଅଭିସାରିଣୀ

(୧୯) "ମୁଁ ମୋ ରୁଦ୍ଧ ଦୁଆର କରି...ମଂଦିର ପାଶୁ ଫେରିଯାଅ ତୁମେ" ଗ୍ରଂଥାବଳୀ ୧ମ
(୨୦) "ସଂଧ୍ୟା ଦୀପଟି ଜଳାଇ ବସିଲେ..." ଗ୍ରଂଥାବଳୀ ୧ମ
(୨୧) "ଜୀବନେ ଲାଗିଛି ଆଶା ବାସନାର ଋଣ
ପ୍ରେମଭକ୍ତି ବିଶ୍ୱାସର ଚେଷ୍ଟା ପ୍ରୟୋଜନ ।" ଗ୍ରଂଥାବଳୀ ୧ମ ଭାଗ—ପୃ. ୩୬

Digitized by PPRACHIN, SOA

ଆଶା, ବିଶ୍ୱାସ ଓ ଭକ୍ତିର ପାଥେୟ ନେଇ ପରମ ପ୍ରେମ ପଥରେ ଯାତ୍ରାରମ୍ଭ କରିବାକୁ ଶୁଣିଛନ୍ତି । କବି ଚେତନାରେ ମୀରା, ବିଲ୍ୱମଙ୍ଗଳ, ଚଣ୍ଡୀ ଦାସ ପ୍ରଭୃତି ସାଧକ / ଭକ୍ତ / ପ୍ରେମିକ ଚରିତ୍ରମାନ ସୁଦୂର ପ୍ରେମର ଆହ୍ୱାନ ଓ ପ୍ରତ୍ୟୟ ନେଇ ଉପସ୍ଥିତ ।

କବି ପ୍ରାଣର ପ୍ରେମାତ୍ମକ ସମର୍ପଣ ବ୍ୟାକୁଳତା (୨୨) 'ଚତୁର୍ଦ୍ଦଶପଦୀ' ଖଣ୍ଡ କବିତାଗୁଡ଼ିକରେ ସୁନ୍ଦର ଅଭିବ୍ୟକ୍ତି ଲାଭ କରିଛି । ପ୍ରଥମ କବିତାରେ 'ବନ୍ଦନା'ରେ ବ୍ୟକ୍ତିଜୀବନ ଓ ଜୀବନଦେବତାଙ୍କ ହୃଦ୍‌ଗତ ନିତ୍ୟ ସମ୍ପର୍କର ମଧୁର ବିନ୍ୟାସ 'ଲୀଳା ଅରବିନ୍ଦ' ଚିହ୍ନ ପ୍ରତୀକରେ ରୂପାୟିତ । 'ପ୍ରିୟତମ' କବିତାରେ ଏହି ଜୀବନ ଦେବତାଙ୍କ ପରିଚୟ ଉନ୍ମୋଚନ । ହୃଦୟର ଯାବତୀୟ ଅନୁଭବ ଓ ଅଭିଳାଷ ଯାହାଙ୍କୁ ନେଇ ଉଚ୍ଚାରିତ, କବି ତାଙ୍କୁ ହିଁ ପ୍ରିୟତମ ବୋଲି ନିର୍ଦ୍ଦେଶ କରିଛନ୍ତି । ଜୀବନର ନିୟାମକ ସେହି ଅରୂପଦେବତା ହିଁ କବିଙ୍କ ଜୀବନବୀଣାର ସ୍ୱର-ସ୍ରଷ୍ଟା ଓ ବାଦକ । କବି ଆପଣାର ପଥ-ସଂଗୀତକୁ ତାଙ୍କର କରୁଣାଦାନ ବୋଲି ମାନିନେଇଛନ୍ତି । (୨୩)

ଦର୍ଶନ ଓ ଉପଲବ୍‌ଧିର ଦ୍ୱନ୍ଦ୍ୱ ଭିତରୁ 'ଭଗବାନ' କବିତାର ଆତ୍ମପ୍ରକାଶ ଦର୍ଶନ ଯାହା ବ୍ୟାଖ୍ୟା କରୁଥାଉ, ଅନୁଭୂତିରେ ସତ୍ୟତାକୁ ହିଁ କବି ସ୍ୱୀକାର କରିନେଇଛନ୍ତି । ଦର୍ଶନରେ ଯିଏ ନିରାକାର, ନିର୍ବିକାର ପୁଣି ଅଜ୍ଞେୟ ଓ ଅଲଭ୍ୟ, ସେ ଯଦି ପ୍ରୀତିମୟ ନିବିଡ଼ ସ୍ପର୍ଶାନୁଭୂତିରେ ଧରାଦିଅନ୍ତି (୨୪), କବି ଆଉ ଦର୍ଶନର ଶୁଷ୍କ ତତ୍ତ୍ୱକୁ ପ୍ରୟୋଜନ ମଣିବେ କାହିଁକି ? "ମୋ ଜୀବନ ପରିପୂର୍ଣ୍ଣ ତୁମ ଅନୁରାଗେ" (୨୫)—ଏ ମଧୁରାନୁଭବ ପରେ ଆତ୍ମାର ପ୍ରେମ ସମର୍ପଣ ଛଡ଼ା ଆଉ ଭିନ୍ନ କେଉଁ ସାଧନାର ପ୍ରୟୋଜନ ବା ରହିଛି ? ଏହାପରେ କବିଙ୍କର କେବଳ ଏକମାତ୍ର ଅଭିଳାଷ ଜୀବନର ସକଳ କ୍ଷୁଦ୍ର କର୍ମ ଓ ଭାବ ଅନୁଭବ ଭିତରେ ସେହି ମଙ୍ଗଳ ଇଚ୍ଛାର ଅଭିବ୍ୟକ୍ତି ଏବଂ ପ୍ରୀତିସ୍ପର୍ଶର ଅନୁଭୂତି ନିତ୍ୟ ଜାଗ୍ରତ ରହିଥାଉ, ଜୀବନ-ଜ୍ୟୋତିଙ୍କଠାରୁ ଅନଳ-ଦୀକ୍ଷା ପରେ ଅନ୍ଧ ତାମସୀର ଆଶଙ୍କା ଚିରଦିନ ଦୂର ହୋଇଯାଉ ।

ଅନ୍ତରର ବିଶ୍ୱାସରେ ଅଜ୍ଞେୟ ଅରୂପ ନିତ୍ୟ ସତ୍ୟ ରୂପରେ ପ୍ରତିଭାତ ହୋଇଥାନ୍ତି, ଚେତନାର ସମସ୍ତ ଜଡ଼ତା ସେହି ଚିନ୍ମୟ ପ୍ଲାବନରେ ଦୂର ହୋଇଯାଏ । କବିଙ୍କର ଏକାନ୍ତ ଉପଲବ୍‌ଧିରେ ସମ୍ମୁଖ ବର୍ତ୍ତମାନକୁ ସାର୍ଥକକରି ଜୀବନ-ଈଶ୍ୱରଙ୍କ ଉପସ୍ଥିତି ସତ୍ୟ ହୋଇ ଉଠିଛି । (୨୬) ତାଙ୍କ ହସ୍ତରେ ସକଳ ଭବିଷ୍ୟତ କର୍ମଯୋଜନା ସମର୍ପିତ । କବି ଚେତନା ଏ ଯେଉଁ ଦୃଢ଼ ପ୍ରତ୍ୟୟ ପାଇଛି, ତାହା ତତ୍ତ୍ୱ, ଜ୍ଞାନ, ଯୁକ୍ତି ବଳରେ ନୁହେ ବା କାବ୍ୟିକ କଳ୍ପନାରେ (୨୭) ନୁହେଁ, ଏ ବିଶ୍ୱର ସ୍ପଷ୍ଟତା ହିଁ ଏଠାରେ କବିଙ୍କର ରହସ୍ୟବାଦ ସ୍ୱୀକୃତ ପ୍ରତ୍ୟକ୍ଷାନୁଭୂତି ଓ ପ୍ରାଣୋଚ୍ଚାରଣର ସତ୍ୟତାକୁ ସମର୍ଥନ କରନ୍ତି । ତତ୍ତ୍ୱଜ୍ଞାନ ଓ ଉପଲବ୍‌ଧିର ଏହି ଦ୍ୱନ୍ଦ୍ୱ 'ଜ୍ଞାନର ବ୍ୟର୍ଥତା' କବିତାରେ ମଧ୍ୟ

---

(୨୨) ଗ୍ରନ୍ଥାବଳୀ ୧ମ ଭାଗ—ପୃ. ୩୪

(୨୩) "ପ୍ରେରଣା ଉନ୍ମାଦ ଅଶ୍ରୁ ସବୁ ତୁମ ଲାଗି
ସକଳ ସଂଗୀତେ ମୋର ତୁମେ ରହ ଜାଗି ।" ଗ୍ରନ୍ଥାବଳୀ ୧ମ ଭାଗ—ପୃ. ୩୫

(୨୪) "ତୁମେ ଅଛ ପ୍ରାଣେ ମୋର ଏହା ଯେବେ ସତ୍ୟ" ଗ୍ରନ୍ଥାବଳୀ ୧ମ ଭାଗ—ପୃ. ୩୮

(୨୫) ଗ୍ରନ୍ଥାବଳୀ ୧ମ / ପୃ. ୩୮

(୨୬)—"ତୁମେ ସତ୍ୟ ବର୍ତ୍ତମାନେ— ଗ୍ରନ୍ଥାବଳୀ ପୃ ୪୦

(୨୭)—ଗ୍ରନ୍ଥାବଳୀ (୧ମ ପୃ ୨୮)

Digitized by PPRACHIN, SOA

ବିଶ୍ଳେଷିତ ହୋଇଛୁ । ସତ୍ତାର ସାମଗ୍ରିକ ସମର୍ପଣ ଭିତରେ ଈଶ୍ୱରଙ୍କୁ ଅଂତରସ୍ଥ କରି ଲାଭକରି ପାରିଲେ ଶୁଷ୍କ ତର୍କ-ବିଦ୍ୟାର ଚଣାଚବଣ ଆଉ ପ୍ରୟୋଜନ ହୁଏ ନାହିଁ । ଈଶ୍ୱର ସର୍ବବିଦ୍ୟା ଓ ଶାସ୍ତ୍ର ପ୍ରମାଣର ଅଗୋଚର—ଏହା ସର୍ବବାଦୀ ସମ୍ମତ ଆଧ୍ୟାତ୍ମିକ ସିଦ୍ଧାଂତ । ରହସ୍ୟାନୁଭୂତ ତାଂକୁଇ ଅଂତରସ୍ଥ କରି ଲାଭ କରିବାର ସଂବାଦ ଗଦ୍ ଗଦ୍ । ଜ୍ଞାନର ଅହମିକା ଅନଂତ ସ୍ୱରୂପଂକ ଅଶେଷ ରହସ୍ୟକୁ ଛୁଇଁ ପାରେନାହିଁ । ମାତ୍ର ହୃଦୟର ପୁଷ୍ପଦଳରେ ପ୍ରେମର ଶିଶିର ବିନ୍ଦୁ ସଜାଇ ପାରିଲେ ସେହି ପାପ୍ତ-ସ୍ପର୍ଶ ଆପଣାକୁ ଶତ ସହସ୍ର ବର୍ଣ ଛବିରେ ରୂପମୟ ହୋଇ ଧରିଦିଅଂତି, ପ୍ରୀତି ଆଲିଂଗନରେ ରହସ୍ୟମୟ ସ୍ପର୍ଶ ଦିଅଂତି । ଜ୍ଞାନର ବିବେଚନାରେ ଯେ ଦୁର୍ଲଭ ଓ ଦୁଷ୍ପ୍ରାପ୍ୟ, ପ୍ରଣୟର ବଂଧନରେ ସେ ସହଜ ପ୍ରାପଣୀୟ ହୋଇ ଉଠଂନ୍ତି । ଗର୍ବ ଅହଂକାର ସତ୍ତାରୁ ନିଷ୍କାସିତ ହୋଇଗଲେ ନିର୍ମଳ ଚିତ୍ତରେ ତାଂକ ପ୍ରେମର ବୈଚିତ୍ର୍ୟ ଫୁଟି ଉଠେ । ବୁଦ୍ଧିର ସ୍ପର୍ଧା ତିରୋହିତ ହୋଇଗଲେ ତର୍କର ଜଟିଳ ରହସ୍ୟ ପ୍ରେମର ସରଳତା ହୋଇଯାଏ । (୨୮)

'ତୁମେ ଅଛ ପ୍ରାଣେ'ର ଅନୁଭବ ପରେ ଦୁଃଖ ଅଭାବର କଥା ମିଛ । ଏ ଅନୁଭୂତି ହିଁ ସଂଶୟଚ୍ଛେଦୀ । ଏହାହିଁ ଦୁଃଖର ଆଘାତକୁ ସହିନେଇ ତା ଭିତରୁ ପ୍ରେମ ଓ ମଂଗଳକୁ ଆବିଷ୍କାର କରିବ । ଜୀବନର ତିକ୍ତ ବାସ୍ତବତା ଭିତରେ ତେଣୁ ମିଷ୍ଟିକ୍ ଚକ୍ଷୁରେ ଚିର ଯୌବନ ଓ ଅନଂତ ପ୍ରଣୟର ଉଦ୍‌ବୋଧନ । ପାର୍ଥିବ ଯୌବନ ଅନିତ୍ୟ, ରୂପବିଳାସ କ୍ଷଣିକ । ମାତ୍ର ଅପୂର୍ଣ୍ଣ ପୃଥିବୀକୁ ବାଦଦେଇ ଜୀବନର ପୂର୍ଣ୍ଣାଂଗ ସାଧନା ସଂଭବ ହୋଇପାରେନା । କାବ୍ୟଧର୍ମ ସେଇଥିପାଇଁ ମର୍ତ୍ତ୍ୟର କ୍ଷଣବିଳାସ ଭିତରେ ଅମର୍ତ୍ତ୍ୟର ଅନନ୍ତତାର ଜୟଗାନ କଲେ ବି ପୁନରାୟ କଳ୍ପଲୋକ-ସ୍ୱର୍ଗରୁ ବାସ୍ତବ ପୃଥିବୀକୁ ଆଖିଫେରାଏ । ରହସ୍ୟବାଦୀର ଏ ମାଟି-ପ୍ରୀତି ଓ ଜନବାଦୀର ମାଟି-ମୋହ ଏକ କଥା ନୁହେଁ । ଭୌତିକବାଦୀ ପକ୍ଷେ ଜନହିଁ ଏକମାତ୍ର ବାସ୍ତବ ଓ ଜନଭିନ୍ନ ଅନ୍ୟ କାହାର ସତ୍ୟତା ସ୍ୱୀକୃତ ନୁହେ । ରହସ୍ୟବାଦୀର ଜନ ଏକ ଅତି-ଚେତନ ସତ୍ତାର ଅଚେତନ ପ୍ରକାଶରୂପ । ଜଡ଼ ମହାପାପୀର ଉଦ୍‌ବୋଧନ ଭୂମି । ମାଟି ରୂପେ ଯେଉଁ ମହାମମତା ଜୀବନର ପ୍ରୟୋଜନ ପାଇଁ ଜନ ହୋଇ ହିପଡ଼ିରହିଛି ତାର ସ୍ୱୀକୃତି ଟିକକ ହିଁ ମିଷ୍ଟିକ୍‌ର ମୃତ୍ତିକା ପ୍ରଣୟ । ରବୀନ୍ଦ୍ରନାଥ ଓ ହୁଇଟମାନଂକ ମାନବତାବାଦୀ ପୃଥିବୀ-ପ୍ରେମ କାବ୍ୟାଦର୍ଶ ଏ ପରିପ୍ରେକ୍ଷିରେ ବୈକୁଣ୍ଠ ଭାବମାନସକୁ ପ୍ରଭାବିତ କରିଛି ।

ମାତ୍ର ବୈକୁଣ୍ଠନାଥ କାବ୍ୟସ୍ୱରରେ ଏ ଭାବାଦର୍ଶର ପରିଚ୍ଛନ୍ନତା ଆସିନାହିଁ । କବି-ଯୌବନ କବିତାର ବହୁ ଭାବ ଅସଂଗତି ଓ ରୂପବିକୃତିରେ 'ଭାବାନୁସରଣରେ କବିଂକ ଅସଫଳତା ପ୍ରତିପନ୍ନା 'ରୁଦ୍ରର ସଂଗୀତ', 'ବାସ୍ତବତର ତିକ୍ତ ଅନୁଭୂତି' ଇତ୍ୟାଦି ଇଂଗିତ ସତ୍ତ୍ୱେ କର୍ମସାଧନା ପରିବର୍ତ୍ତେ କବି ପଳାୟନବାଦୀ ହୋଇଉଠିଛଂତି । ଯୌବନ କ୍ଷଣିକ, ମର୍ତ୍ତ୍ୟପ୍ରୀତି ବିଭ୍ରମ, ଭବ ବଂଧନ, ତେଣୁ ଏକ ଅନଂତ ଯୌବନକୁ କଷ୍ଟ୍ରତ କାମନା । ମାଟି ପ୍ରତି ଅନୁରାଗ ନୁହେ, ବିରାଗ ବିରକ୍ତିର ପଛଭୂମିରେ ହିଁ କବିମାନସର ଏ ଆଇନିଆ ଲୌକିକ ଅଭିମୁଖିତା । ସ୍ପଷ୍ଟ କରି କହିଲେ ଶେଷପର୍ଯ୍ୟନ୍ତ ବୈକୁଣ୍ଠନାଥଂକ ଅମର୍ତ୍ତ୍ୟ ସ୍ୱପ୍ନ କେବେବି ମର୍ତ୍ତ୍ୟାଲିଂଗନକୁ ଅକୁଣ୍ଠ-ସ୍ୱୀକୃତ

---

(୨୮)—"ଜ୍ଞାନେ ଯା ରହସ୍ୟମୟ ତର୍କେ ଅମଂଗଳ
ପ୍ରେମେ ଆତ୍ମସମର୍ପଣେ ହିଶିବ ସରଳ ।" ଗ୍ରଂଥାବଳୀ ୧ମ—ପୃ ୪୧ ।

Digitized by PPRACHIN, SOA

ଦେଇପାରି ନାହିଁ । ମର୍ତ୍ତ୍ୟ ବର୍ଜନହିଁ ତାଂକର ଅମର ଜୀବନର କାବ୍ୟସାଧନା ରୂପେ ପ୍ରକଟିତ ହୋଇଛି ।

କବିଚିତ୍ତ କୋଟି ବସଂତ ଅଭିଳାଷୀ । ଜନ୍ମ-ମୃତ୍ୟୁ-ସ୍ୱୀତ ଜଗତର ଆରପାରରେ ସେ ଅନଂତ ବସଂତର ନିତ୍ୟପୁଷ୍ପ ସମାରୋହ । ପ୍ରିୟ ସାନ୍ନିଧ୍ୟ ଚିରଂତନ ଏବଂ ପ୍ରଣୟ ସଂଗୀତ ଶେଷହୀନ । (୨୯) ସେହି ଏକ ଯୌବନ ସୁଖ ଲଭ ଲାଗି ଜୀବନର କୋଟି ଜନ୍ମର ସାଧନା । ଲକ୍ଷଣୀୟ, କବିଂକର ପ୍ରେମ ଓ ଯୌବନର ଏଇ କଳ୍ପଲୋକ ରହସ୍ୟ-କବିର ମର୍ତ୍ତ୍ୟସ୍ପୃହା ଅମୃତଲୋକ ନୁହେ, ଏହା ବରଂ ମର୍ତ୍ତ୍ୟ ପରିହାରରେ, ବିଗମାର୍ଣ୍ଣିକୁ ଅମରାବତୀ. ଯାହାସହ କବି କଥିତ । 'ରକ୍ତାକ୍ତ ସଂଗ୍ରାମର ବାସ୍ତବ-ଜୀବନ 'ଲୋକର ରୂପସାମଂଜସ୍ୟ ଖୋଜି ପାଇବା ଅସଂଭବ । କବି ଅନ୍ୱେଷିତ 'ଶତଦଳ ଅମର ଚେତନାର (୩୦) ଯୌବନ କେବଳ ଆତ୍ମାର ନିତ୍ୟଗ୍ରସମସ୍ତ ପ୍ରୀତିମଣ୍ଡଳର ହିଁ ଐଶ୍ୱର୍ଯ୍ୟ, ଜନ୍ମମରଣ କ୍ଷୟଶୀଳ ଧରାରେ ତାହା ଅସଂଭବ । ଏ ଶାଶ୍ୱତାଭିଳାଷ ଓ 'ନିତ୍ୟବୃଂଦାବନ ଯାତ୍ରା'ର ବୈଷ୍ଣବୀୟ ସଂକଳ୍ପ ଭିତରେ ଅନିତ୍ୟ'କୁ ପରିହାର କରିବାକୁ ସିଦ୍ଧାଂତ କରି କବି ଯେଉଁ ରୁଧିରାକ୍ତ ସଂଗ୍ରାମ ମୁଖର ବାସ୍ତବ ଜୀବନକୁ ବରଦାନ ରୂପେ ଜୀବନ ଦେବତାଂକ ନିକଟରୁ ଭିକ୍ଷା କରିଥିଲେ. ତାହା ହୁଇଟ୍‌ମାନ ଓ ରବୀଂଦ୍ର ଭବାଦର୍ଶର ନିଛକ ଭାବୋଚ୍ଛ୍ୱାସ ମୂଳକ ଅଥଚ ଅସଫଳ ଅନୁସୃତ ରୂପେ ପୃଥିବୀ ପ୍ରୀତି ସଂବାଦରେ ମୌନ ହୋଇଯାଇଛି । କବି ଯୌବନ 'ସେ ଦେଶେ ଯିବି' ପ୍ରଭୃତି କବିତା ଗୁଡ଼ିକ ଆପାତତଃଭାବେ ରହସ୍ୟାନୁଭବାତ୍ମକ ମନେ ହେଲେହେଁ ପ୍ରକୃତ ପକ୍ଷେ ଏଗୁଡ଼ିକ ଗ୍ରସ୍ଥାବାଦୀ । ରୋମାଣ୍ଟିକ ପ୍ରେମ ଭାବନାତ୍ମକ ବୋଲି ବିଚାର କରିବା ଅଧିକ ଯୁକ୍ତି ସଂଗତ ହେବ ।

ତେବେ, 'ଅନଂତ ଯୌବନ ଓ ଚିରପ୍ରଣୟ'ର ଏହି ରୋମାଣ୍ଟିକ ବିଳାସ ଭିତରେ କବିଂକ ରହସ୍ୟାତ୍ମକ କାବ୍ୟାଭିମୁଖିତାରେ ବା ଭଲ ଭାବ-ସାଧନାର ପ୍ରଭାବକୁ ସ୍ୱୀକାର କରାଯାଇପାରେ । ଅନଂତ ଅରୂପଂକୁ 'ମନରେ ମାନୁଷ ରୂପେ ଅଂତର୍ଯାମୀ କରି ସେଇ ଅଂତର୍ଦେବତାଂକ ଅନ୍ୱେଷଣ ପାଇଁ ପଥେ ପଥେ ଯାତ୍ରା ବା ଭଲର ଜୀବନ ସାଧନା । ବିରହ ଚେତନା ପ୍ରେମାକୁଳତା, ବ୍ୟକ୍ତି-ଜୀବନ ସହ ନିତ୍ୟସଂପର୍କ ପ୍ରଭୃତି ବା ଭଲ ଭାବଧାରା ବୈକୁଣ୍ଠନାଥଂକ ରହସ୍ୟବାଦୀ କବିତା-ମାନଂକର ମର୍ମବାଣୀ ରୂପେ ଆତ୍ମପ୍ରକାଶ କରିଛି । ଅନେକ କବିତାରେ କବି ଭିକ୍ଷୁ ଓ ବାଉଲସହ ଏକାତ୍ମ ହୋଇ ଜୀବନର ଯାତ୍ରାଗୀତି ଓ ଜୀବନ ଦେବତାର ଜୟଗାନ କରିଛଂତି । 'ସୁଦୂର ଗୋପନ ପାଇଁ ଆତ୍ମାର ନିତ୍ୟ ବିରହ-ବାଉଲର ପ୍ରେମଭାବନାରେ ସୂଫୀବିରହ ଚେତନା ଓ ବୈଷ୍ଣବୀୟ ପ୍ରୀତି ଅନୁଭବର ଏ ମଧୁର ସମନ୍ୱୟ ପରିଦୃଷ୍ଟ । ପ୍ରୀତିଖେଳାରେ ମଣିଷର ସେ ନିତ୍ୟ ସହଚର । ବ୍ୟକ୍ତି ହୃଦୟର ମିଳନ ବିରହ ଅନୁଭବ ଭିତରେ ନିଜ ପ୍ରୀତିର ଉପଲବ୍‌ଧି ଖୋଜଂତି । ହୃଦୟ ଭିତରୁ ତାଙ୍କର ଡାକ ଘରଛଡ଼ା କରି ବାଉଲକୁ ଦୁଆରେ ଦୁଆରେ ଭିକ୍ଷାର୍ଥୀ ସଜାଇଦିଏ । ନିଖିଳ ତୀର୍ଥରେ ତାଂକର ଅନୁସନ୍ଧାନ ଚାଲେ । (୩୧)

(୨୯)—"ନନ୍ଦନ କାନନ ଝରେ /-ଯହିଁ ନିତ୍ୟକାଳ;
ଯହିଁ ପ୍ରିୟସନେ ଅସରଂତି ପ୍ରୀତିଦାନ ତଥି ବୃନ୍ଦାବନେ ।" ଗ୍ରନ୍ଥାବଳୀ ୧ମ—ପୃ ୨୯

(୩୦)—ଗ୍ରନ୍ଥାବଳୀ (୧ମ)—ପୃ ୪୮.

(୩୧)—"କେତେ ମୁଁ ସୁଦୂର ପଥ ଗ୍ଲହିଁ ଗ୍ଲହିଁ ଏ ପରାଣ ମନ ଦେବି ଗୋ ଭସାଇ ।"
ଗ୍ରନ୍ଥାବଳୀ (୧ମ) ପୃ ୧୯୩

Digitized by PPRACHIN, SOA

(ପ୍ରେମଦେବତାର ଏ ରହସ୍ୟଭରା ପ୍ରୀତିଖେଳ ବଡ଼ ନିର୍ମମ । ଅନୁରାଗର ଗଭୀରତା କଳିବାକୁ ସେ ଅଜସ୍ର କ୍ଲେଷ ଦିଏ । ବ୍ୟକ୍ତି ହାତରେ ଐଶ୍ୱର୍ଯ୍ୟ ଭଣ୍ଡାରର ପ୍ରଲୋଭନମୟ ଚାବିକାଠିଟିକୁ ଧରାଇଦେଇ ନିଜେ ଅଂତର୍ହିତ ହୋଇଯାଏ । ସେଇଥିପାଇଁ ତ) ।

ସେଇଥିପାଇଁ ତ "ନିତି ନିତି ବସି ତୁମରି ବିରହ ଅଶ୍ରୁରେ ରଚେ ହାର ।" (୩୨) ବିଶ୍ୱସ୍ତ ପ୍ରେମର ଗଭୀର ଆତ୍ମନିବେଦନଟି ଏଠାରେ ବଡ଼ ଚମତ୍କାର କାବ୍ୟୋତ୍କର୍ଷତା ଲାଭକରିଛି । ଏକମାତ୍ର ବିରହ-ବିଳାସକୁ ନେଇ ଅନଂତକାଳ ପ୍ରେମ-ସ୍ୱପ୍ନରେ ମଗ୍ନ ରହିବାର ବିହ୍ୱଳତା ଭିତରେ ଜୀବନର ଅନ୍ୟାନ୍ୟ ସକଳ ବିଫଳତାର ହାହାକାର ମଧ୍ୟ କ୍ଷୀଣସ୍ୱର ହୋଇଯାଏ । ବ୍ୟକ୍ତି ଜୀବନରୁ ଅନଂତ ଜଗତକୁ ନିଷ୍କ୍ରମଣର ପ୍ରବେଶପଥ ଯେ ଏଇ ବିରହର ରୁଦ୍ଧଶ୍ୱାସ ଏହାରି ସାହାଯ୍ୟରେ ବ୍ୟକ୍ତି ଶାଶ୍ୱତର ସ୍ପର୍ଶପାଏ । କାରଣ, ସୁଦୂର ପ୍ରିୟପାଇଁ ଅନାଗତ ଶୂନ୍ୟତା ଭିତରକୁ ନିରବଧି ହାତବଢ଼ାଇ ଜୀବନର ବ୍ୟର୍ଥତାବୋଧକୁ ଏଡ଼ିଦେବାର ସ୍ପର୍ଧା ହୃଦୟର ଅନଂତ ବିଶାଳ ପ୍ରୀତି ଅଭିଳାଷ ହିଁ କେବଳ କରିପାରେ । ନିଶୀଥ ନିଦ୍ରାରେ ବି ଜୀବନ-ପଦ୍ମ ଫୁଟାଇବା ପାଇଁ ଉଷା-ଶ୍ୱେତର ଆକାଂକ୍ଷା କବିଂକୁ ବଂଚାଇ ରଖେ । "ଆବିଳ ମରତେ । କର୍ଦ୍ଦମ ପାପେ (୩୩) ଏବଂ ଏହା ସତ୍ତ୍ୱେ ଦୂର ଆକାଶର ସୂର୍ଯ୍ୟ ଓ ଅମର ପ୍ରୀତିର ଆଶ୍ୱାସନା 'ମର୍ତ୍ତ୍ୟ ଜୀବନ'କୁ ପଦ୍ମ-ସଂଭାରର ପ୍ରେମ-ପ୍ରତ୍ୟୟରେ ଆଶ୍ୱସ୍ତ କରି ଉଠେ ।

ଅସୀମର ଆହ୍ୱାନ ତ ଚିରଂତନ । ତାର ଅଧରରେ "ଚିରଂତନ ବେଣୁନାଦ ।" ସୀମାର ଅସାମର୍ଥ୍ୟ ସତ୍ତ୍ୱେ, ପୀରତିର ଅଧରରେ ସେ ମଧୁର ମୁରଲୀଟି ଯେ ସେମିତି ଲାଗିରହିଛି । ଅସୀମର ଉଦ୍‌ବୃତ୍ତତା ଅନଂତ କାଳ ଧରି ସୀମାର ପଥକୁ ଅତଂନ୍ଦ୍ର ହୋଇ ଜଗିରହିଛି । ଏହାହିଁ କବିଂକ ପାଇଁ ପରମ ଆଶ୍ୱାସନାର ବାର୍ତ୍ତା ।

ଅସୀମର ଏ ସମ୍ମୋହନ ଭିତରୁ ହିଁ ସୀମା ପ୍ରାଣରେ ମୁକ୍ତିର ସ୍ୱପ୍ନ ଜାଗେ । 'ବନର ମୟୂର' ସେଇ ମୁକ୍ତ କାମନାର ପ୍ରତୀକ । ତାର ନୃତ୍ୟରେ ସେଇ ମୁକ୍ତିର ଆହ୍ଲାଦ । ବନର ମୟୂର ନଗର ସୌଧ ଉପରେ ଅଟକ ଯାଇଛି । ଦକ୍ଷିଣାମେଘକୁ ଦେଖି ତାର ଅରଣ୍ୟ ବିଳାସ; ନିର୍ବାଧ ଜୀବନ ସ୍ମୃତିମୟ ହୋଇଉଠିଛି । କବିସତ୍ତା ପାର୍ଥିବ ବନ୍ଧନ ସୀମିତ, ମାତ୍ର କବିସତ୍ତା ନିରୁତ୍ସାହିତ ନୁହେ । ବଦ୍ଧ-ଜୀବନରେ ମୁକ୍ତି ଅବଶ୍ୟ ଏକ କଳ୍ପନା; କାନନ ସୁଦୂର ଏବଂ ଗଗନ ସୁଉଚ୍ଚ । ତଥାପି, ମୁକ୍ତି ସ୍ୱପ୍ନକୁ ବାଦଦେଇ ଜୀବନର ଅର୍ଥ ଖୋଜିହୁଏନା । "ମୁକ୍ତିର ଗୀତ ପରାଣପୁରେ । (୩୩) ମର୍ତ୍ତ୍ୟ ଜୀବନ ଏକ ପଥଭୁଲା ଜୀବନ । ଅମର୍ତ୍ତ୍ୟ ଦେଶକୁ ଆତ୍ମାର ମୁକ୍ତି-ଯାତ୍ରାର ସ୍ୱପ୍ନ ଅଯଥାର୍ଥ ହୋଇପାରେନା । (୩୪) ବଂଧନ ଯେ ଦିନେ ଛିନ୍ନହେବ । ବନମୟୂର ମୁକ୍ତାକାଶ ଓ ଅରଣ୍ୟ ମମତା ଭିତରେ ମୁକ୍ତିର ଆନଂଦ ଚାଖିବ କବିଂକର ଦ୍ୱିଧାହୀନ ପ୍ରତ୍ୟୟରେ ଆତ୍ମାପାଇଁ ଏ ମୁକ୍ତି ସଂଦେଶ ଅବଧାରିତ ।

ଏହି ମୁକ୍ତି ପ୍ରତ୍ୟୟ ଓ ଆଶାବାଣୀ ବୈକୁଂଠନାଥଂକ ଶିଶୁ ଶୀର୍ଷକ ରଚନାମାନଂକରେ ସୁନ୍ଦର ଅଭିବ୍ୟକ୍ତି ଲାଭକରିଛି । ତାଂକର ରହସ୍ୟକାବ୍ୟ ଚେତନାର ଗୋଟିଏ ଧାରା 'ଅନଂତ ଅଭିସାର' ତତ୍ତ୍ୱ ଅବଲଂବନରେ ଯାତ୍ରା ପ୍ରତୀକକୁ ଆଶ୍ରୟ କରିଛି । ଅନ୍ୟଟିରେ ଆତ୍ମାର ଚିର ମୁକ୍ତି

---

(୩୨)—ଗ୍ରଂଥାବଳୀ (୧ମ) ପୃ. ୧୬୫

(୩୩)—ପୃ. ୩୬୧ ଗ୍ରଂଥାବଳୀ ୧ମ ଭାଗ

(୩୪)—"ସେ ମୋ ଜୀବନର ସତ୍ୟ"—ଗ୍ରଂଥାବଳୀ (୧ମ) ପୃ. ୩୬୧

Digitized by PPRACHIN, SOA

ସ୍ୱରୂପର ଉଦ୍‌ଘାଟନ—ଯାହାର ପ୍ରକୃଷ୍ଟ ଅଭିବ୍ୟକ୍ତି ଶିଶୁ ପ୍ରଶାନ୍ତରେ । ଗୋଟିଏ ଅନନ୍ତ ସାଧନାର ସଂଗୀତ, ଅନ୍ୟଟି ନିତ୍ୟ ସିଦ୍ଧିର ସଂବାଦ ।

ଶିଶୁ ବୈକୁଣ୍ଠମାନସରେ ଶାଶ୍ୱତର ବାର୍ତ୍ତାବହ । ଶାଶ୍ୱତ ଜୀବନ, ଶାଶ୍ୱତ ସୌନ୍ଦର୍ଯ୍ୟ ଓ ଶାଶ୍ୱତ ଆନନ୍ଦର ଚେତନାରୂପେ ଶିଶୁର ଉଦ୍‌ବୋଧନ । ଶିଶୁ-ତତ୍ତ୍ୱ ମାଧ୍ୟମରେ ବୈକୁଣ୍ଠ କାବ୍ୟ-ଚେତନାରେ ବିଶ୍ୱାତୀତତା ସହ ବିଶ୍ୱସତ୍ତା ଓ ଜୀବସତ୍ତାର ସଂପର୍କ ଯେପରି ସମନ୍ୱୟର ସୂତ୍ରଟିକୁ ଖୋଜିପାଇଛନ୍ତି । ବହୁ ବିଭଂଗ ଓ ବିଚ୍ଛିନ୍ନ ସୁର ଏକ ମହାରାଗିଣୀ ବିଧୃତ ହୋଇଯାଇଛନ୍ତି । ଶିଶୁଠାରେ ଈଶ୍ୱରୀୟ ସକଳ ସୃଷ୍ଟି-ଅଭୀପ୍‌ସା ଓ ଆନନ୍ଦ ଯେପରି ଚରିତାର୍ଥତା ଲଭିକରନ୍ତି । ତାର କାରଣ ହୁଏତ ହୋଇପାରେ, ଶିଶୁ ସତ୍ତାରେ କୌଣସି ବାହ୍ୟବିଧିର ବନ୍ଧନର ଚେତନା (ସାମାଜିକ, ରାଷ୍ଟ୍ରୀୟ, ମନସ୍ତାତ୍ତ୍ୱିକ) ଆରୋପିତ ହୋଇନଥିବାରୁ ସତ୍ତା ନିଜର ସହଜ ଓ ସ୍ୱାଭାବିକ ସ୍ଥିତିରେ ଶାଶ୍ୱତକୁ ଯଥାର୍ଥ ଅଭିବ୍ୟକ୍ତ କରିଥାଏ ।

ଶିଶୁ ଅଧିକାର-ବିକଳ ନୁହେଁ । ଅଥଚ ସମଗ୍ର ବିଶ୍ୱପ୍ରକୃତି ଓ ନିଖିଳ ଜୀବନରେ ତାର ଯେପରି ଅଖଣ୍ଡ ବିସ୍ତାର । ତାର ପ୍ରୟୋଜନ ସ୍ୱଳ୍ପ । ତେଣୁ ସମଗ୍ର ଭୁବନର ଐଶ୍ୱର୍ଯ୍ୟଭୋଗ ସଂପର୍କରେ ସେ ପୂର୍ଣ୍ଣ ଅସଚେତନ । ଶିଶୁ ଦୀନ ନୁହେଁ, ଦାନ ମଧ୍ୟ ମାଗେନାହିଁ ଏବଂ ସେ ଯେତେବେଳେ ଦାବୀ ସାବ୍ୟସ୍ତ କରେ ତାହା ନିଜସ୍ୱ ବୋଲି ସହଜାତ ଚେତନା ଭିତରୁ । ଏହି ଭାବଧାରା ଆତ୍ମପ୍ରକାଶ (୩୫) କବିତାରେ ରୂପାୟିତ । ନିଃସର୍ଗ ପ୍ରକୃତିର ଟିକେ ଟିକେ ରୂପ, ରଂଗ, ଆଲୋକ, ତରଂଗ, ପଶୁପକ୍ଷୀ, ତରୁଲତା, ପୁଷ୍ପଫଳ ସବୁ ଯେପରି ଶିଶୁର ଆନନ୍ଦ ଭିତରେ ନୂତନ ରସୋଦ୍‌ବୋଧନ ଲଭିକରନ୍ତି । ଉଦାର ଆକାଶ ଓ ବିଶାଳ ଧରଣୀ ବକ୍ଷରେ ଆତ୍ମଭୋଳା ଶିଶୁ କୌଣସି ପାର୍ଥିବ ବିଭବ ପାଇଁ ଲାଳାୟିତ ନୁହେଁ । ଆନନ୍ଦର ପ୍ରେରଣାରେ ହିଁ ତାର ଶିବସତ୍ତାର ସହଜ ନୃତ୍ୟବିଳାସ । ବିଶ୍ୱଭଣ୍ଡାରରୁ ଅକ୍ଷୟ ଆନନ୍ଦର ଧାରାକୁ ସେ ଆକଣ୍ଠ ପାନ କରେ । ପୁଣି ହୃଦୟର ଆନନ୍ଦ ସ୍ରୋତକୁ ସହସ୍ର ଧାର କରି ବସୁଧା ସାରା ବାଂଟିଦିଏ । ଅଥଚ ଏଇ ଦେବାନେବା ସହ ଏତେ ଲିପ୍ତତା ଭିତରେ ବି ତାର ଉଦାସୀନତା, ନିର୍ଲିପ୍ତତା ଅବ୍ୟାହତ ରହିଥାଏ ।

ଏଇ 'ଶିଶୁ'ର ପୂର୍ଣ୍ଣାଭିବ୍ୟକ୍ତି 'ଶିଶୁଦର୍ଶନ' କବିତାରେ । ବ୍ୟକ୍ତି ଶିଶୁ ଏଠାରେ 'ନିତ୍ୟଶିଶୁ'ରେ ରୂପାନ୍ତରିତ ହୋଇଯାଇଛି, ପୁଣି ଜୀବନର ଅମୃତ ପ୍ରେରଣା ରୂପେ ଉଦ୍‌ବୋଧନ ଲଭିକରିଛି । କବି-ସତ୍ତା ସ୍ୱଭାବତଃ ବିଷାଦ-ବିମର୍ଷ, ଶିଶୁସତ୍ତା ହର୍ଷୋତ୍‌ଫୁଲ୍ଲ ହାସ୍ୟମୟ । କବିଙ୍କ ସମ୍ମୁଖରେ କର୍ମର ଶୋଭାକୁଳ ବିଶାଳ ସମୁଦ୍ର । ସେ କର୍ମ ତରଂଗର ଆଘାତରେ ପ୍ରାଣରେ ମଧ୍ୟ ବିକ୍ଷୋଭ । ଶିଶୁର ଅନନ୍ତ ଭବିଷ୍ୟତ ଘେରି ସେ କର୍ମମୟ ଜଗତର କୋଳାହଳ ଲମ୍ବିଯାଇଥିଲେ ମଧ୍ୟ, ଶିଶୁର ଧ୍ୟାନୀ ଚେତନାକୁ ସେ ସ୍ପର୍ଶକରେ ନାହିଁ । ଶିଶୁର ଦୃଷ୍ଟି ତେଣୁ "ଅନ୍ତରର ସୁବିପୁଳ ସୁଖେ, ଆତ୍ମାର ସହଜାନନ୍ଦେ । (୩୬) ପ୍ରାଣରେ ସ୍ୱାଭାବିକ ଆନନ୍ଦରେ ଶିଶୁର ଉତ୍ସବ ଉଲ୍ଲାସ, ପରିଣତ ବୟସ କର୍ମଭାରରେ ସଂତାପିତ । ସେ ଜଗତର ସ୍ୱାର୍ଥ-ସଂଘର୍ଷ ଶିଶୁର ଚେତନାବଳୟକୁ ଆସିନଥାଏ, କବି ସେହି ଉତ୍ସବ-ମୁଖର, ଆନନ୍ଦ ମାଧୁରୀର ରହସ୍ୟ ବୁଝିବାକୁ ଶିଶୁ ନିକଟରେ ବସି ରହିଛନ୍ତି ।

---

(୩୫) "ପ୍ରକୃତିର ଶିଶୁ ମୁହିଁ ! ସବୁ ମୋର । ସକଳ ରହସ୍ୟ ମୋର, ନିତ୍ୟ ଆତ୍ମଭୋଳା ମୁହିଁ ।"
ଗ୍ରନ୍ଥାବଳୀ (୧ମ ଭାଗ)-ପୃ. ୮୫

(୩୬) 'ଗ୍ରଂଥାବଳୀ' ୧ମ ଭାଗ' ପୃ. ୮୮

Digitized by PPRACHIN, SOA

ଅଥଚ ବୃଦ୍ଧଙ୍କର ଦୃଷ୍ଟିର ଦିଗନ୍ତ ଭିନ୍ନ, ଅନୁଭୂତିର ଜଗତ ଭିନ୍ନ । ଜୀବନ ଦେବତା ଅଥବା ଅଂଧ ନିୟତି ଯିଏ ହୋଇଥାଉ, ସେହି ଅଜ୍ଞାତପତ୍ନୀର ଅବୋଧ ଇଂଗିତରେ ପରିଣତ ବୟସର ମନ ବ୍ୟକ୍ତ ଆଖିର ସବୁ ସ୍ୱପ୍ନ ଆବେଗକୁ ହରାଇବସେ । ସମୁଦ୍ରର ତରଂଗ ପରି ସୁଖାଭିଳାଷମାନ ମିଳାଇଯାଂନ୍ତି । ସମ୍ମୁଖରେ ପଡ଼ିରହେ ବଳିୟ, ଭଗ୍ନପ୍ରାଣ, ବିଷାଦର ଶୂନ୍ୟମାଳା । ଶିଶୁର ଏ ସମସ୍ୟା ନାହିଁ । ଶିଶୁର ଓଠରେ ପୁଲକମଧୁର ହସ ଓ ଆଖିର ପ୍ରସନ୍ନ ସୁଂଦର ଚାହାଣି ଯେପରି ସମ୍ମୁଖରେ ମଂଗଳ ପ୍ରଭାତର ମୁଗ୍ଧ-ଉତ୍ସବକୁ ଦେଖି ଲକ୍ଷିଥାଏ । ଅଶୋଭନ, ଅସୁଂଦର ଓ ଅଂଧକାରର କୌଣସି ସଂବାଦ ଶିଶୁ-ରାଜ୍ୟରେ ପହଞ୍ଚିପାରେ ନାହିଁ । ବୟୁସ୍କର ଦୃଷ୍ଟିରେ ଜୀବନ କେବଳ ଅଶ୍ରୁଚୟନ । (୩୭) ସ୍ୱପ୍ନର ବିହଂଗ ବାସ୍ତବତାର ଧୂସର ଦିଗଂତ ଭିତରେ ପଥଖୋଜି କ୍ଳାଂତ ହୋଇଯାଏ । ମନେହୁଏ, ଜଗତରେ ବ୍ୟକ୍ତି ଅପାଙ୍କ୍ତେୟ । ଜୀବନ ଅସାର, ମନୁଷ୍ୟ ଏକ ଅଂଧ ନିୟତିର କ୍ରୀତଦାସ । ଏହି ଅଶ୍ରୁକ୍ଷୁଭିତ ଜୀବନ ରହସ୍ୟ ବୁଝିବାକୁ କବି ଶିଶୁର ସରଳ ସ୍ୱୀକୃତିମୟ ଚେତନା ନିକଟରେ ଉପଗତ ହୋଇଛଂନ୍ତି । କବିଂକର ଏହି ଉପସ୍ଥିତିର ବ୍ୟଂଜନାଟି ବଡ଼ ଚମତ୍କାର ଭାବତାତ୍ପର୍ଯ୍ୟ ବହନ କରିଛି । "ପୁରାଣର ଶିଷ୍ୟ ଯଥା ଗୁରୁପାଶେ ଅଂତର ନିଃଶ୍ୱାସେ ।" (୩୮)

କବି ନିଜକୁ ଅଜ୍ଞାନୀ ଏବଂ ତତ୍ତ୍ୱସଂଧାନୀ ଜିଜ୍ଞାସୁ ଶିଷ୍ୟରୂପେ ଅନୁଭବ କରଂନ୍ତି । ଶିଶୁକୁ ପରମଜ୍ଞାନୀ, ସତ୍ୟଦ୍ରଷ୍ଟା, ନିତ୍ୟଯୁଗର ଋଷି ବୋଲି ଅଭିହିତ କରଂନ୍ତି । ଗୁରୁ ଅଭିଜ୍ଞ, ଅନୁଭୂତିସିଦ୍ଧ । ସୁଖ ଓ ଦୁଃଖର, ଭଲ ଓ ମଂଦର ବହୁ ଘାତ-ପ୍ରତିଘାତ ଭିତରେ ଜୀବନର ଅର୍ଥ ସଂଧାନ କରଂନ୍ତି । ସମାହିତ ଚିତ୍ତ ହୋଇଥାଂନ୍ତି । ଅଂଧାର ଓ ଆଲୁଅ—ଉଭୟକୁ ଭଲରୂପେ ଚିହ୍ନିଥାଂନ୍ତି ଓ ସେମାନଂକ ଅନିତ୍ୟତ୍ୱ ଜାଣିଥାଂନ୍ତି ବୋଲି ସେ ସୁଖରେ ବିଗତସ୍ପୃହ, ଦୁଃଖରେ ଅନୁଦ୍‌ବିଗ୍ନମନା । ଶିଶୁର ଉଦାସୀନ ନିରପେକ୍ଷତା, ଶାଂତ ମଧୁର ପ୍ରସନ୍ନତା ଭିତରେ କବି ସେଇ ଅଂତର୍ଲବ୍ଧ ଆର୍ଷପ୍ରତ୍ୟୟ । ଧୀର ଓ ଗଭୀର ଚେତନା-ସମୁଦ୍ରକୁ ଆବିଷ୍କାର କରନ୍ତି ।

ଶିଶୁର ଶିକ୍ଷାଦାନ ନୀରବରେ, ଭାଷାହୀନତାରେ । ପ୍ରକୃତ ଗୁରୁ ଓ ଶିଷ୍ୟ ମଧ୍ୟରେ ଉପଦେଷ୍ଟା ଓ ଉପଦିଷ୍ଟର ଦୂରତ୍ୱ ନଥାଏ । ଗୁରୁ ଓ ଶିଷ୍ୟର ଭାବସଂଯୋଗ ଭିତରେ ଏକ ଜୀବନର ସଂଦେଶ ଅନ୍ୟର ହୃଦୟରେ ନୀରବ ସଂଚାର ଲାଭକରେ । ଶିଶୁର ନୀରବତା ଭିତରେ ହିଁ ଯେପରି ବୟସ୍କର ପ୍ରବୀଣ ମନପାଇଁ ମହାଶିକ୍ଷା ନିହିତ । କବି ଗୁରୁ-ଶିଷ୍ୟର ପରଂପରାକୁ ସମ୍ମାନ କରି ଗ୍ରହଣଶୀଳ ଶିଷ୍ୟର ନମ୍ରମାଧୁରୀରେ ବନ୍ଦିତ ହୁଅନ୍ତି ।

କବି ଶିଶୁକୁ ସିଦ୍ଧଯୋଗୀ କହିଛଂନ୍ତି । ପୃଥିବୀର ଅସଂଖ୍ୟ ଯନ୍ତ୍ରଣା ଓ ଖୁସିର ଦ୍ୱନ୍ଦ୍ୱ ଭିତରେ ପଦ୍ମ-ପତ୍ର ପରି ତାର ନିର୍ଲିପ୍ତ ସତ୍ତା ଓ ପଦ୍ମ ସୌଂଦର୍ଯ୍ୟ ପରି ତାର ନିଷ୍ପାପ ହସ କବିଂକୁ ନିଜ ଜୀବନର ଦୁଃଖ ମଧ୍ୟ ଭୁଲାଇ ଦେଇଛି । ଶିଶୁର ହସ ଦୀପର ଆଲୋକ ପରି ଅଧରରୁ ଅଧରକୁ ସଂଚରିତ ହୋଇ ଜଗତକୁ ଯେପରି ଉତ୍ସବମୟ କରିଦିଏ, ଜୀବନକୁ ମଧୁମିତ କରିଦିଏ । ମୁହୂର୍ତ୍ତକ ପାଇଁ

(୩୭) "ବଢ଼ି ଉଠେ ଯାହା ସଂଗେ ଏ ଜୀବନ ଲୋତକ ପସରା ।"

ଗ୍ରଂଥାବଳୀ ୧ମ ଭାଗ—ପୃ. ୮୯

(୩୮) "ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା
ଉପଦେକ୍ଷ୍ୟଂନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ ।"

ଶ୍ରୀମଦ୍‌ଭଗବତ ଗୀତା—୪ର୍ଥ ଅଧ୍ୟାୟ ଶ୍ଳୋକ ପୃ. ୩୪

Digitized by PPRACHIN, SOA

ହୋଇପଡ଼େ, ଜୀବନର ସକଳ ଦୈନ୍ୟ ଓ ରିକ୍ତତାର ଅଶ୍ରୁ ଯେପରି ସେ ମଧୁର ହସ ନିକଟରେ ପରାଜୟ ବରଣ କରନ୍ତି । ସେ ଦୁର୍ଲଭ ମହିମାକୁ କବି ମୁଗ୍ଧ ସ୍ୱୀକୃତି ବାଢ଼ିଛନ୍ତି, "ସବୁ ପରାଜୟ ମେଲେ ତୁମର ସେ ହାସ, ଭଗ୍ନଜାନୁ ମାନବର ବିଜୟ ପ୍ରକାଶ । (୩୯)

ଶିଶୁ ଭିତରେ ଚିରଜୀବନର ଉଦଘାଟନ-ପ୍ରତିଶ୍ରୁତି । ଜୀବନର ଅହରହ ନିପୀଡ଼ନ ଭିତରେ, ମୃତ୍ୟୁର ନିୟତ ଆଶଂକା ଭିତରେ ଶିଶୁସୃଷ୍ଟି ଯେପରି ପ୍ରତିଥର ନୂଆକରି ସୃଷ୍ଟି ବକ୍ଷରେ ଜୀବନକୁ ଅଭିନଂଦିତ କରେ । ଥରକୁ ଥର ଆଘାତ ବିଚୂର୍ଣ୍ଣ ଜୀବନ ସଂଗ୍ରାମରେ କ୍ଷତାକ୍ତମାନବ ଯେପରି ଶିଶୁର ହସ ଭିତରେ ଆଗତ ଓ ଅନାଗତ ସମସ୍ତ ପ୍ରତିଶୋଧୀ ସ୍ପର୍ଦ୍ଧାକୁ ଉପହାସ କରି ନୂତନ ଜୀବନ ଚେତନା ଜଗାଇଦିଏ । ଧରିତ୍ରୀବକ୍ଷରେ ମୃତ୍ୟୁର ଘନଘଟା ଭିତରେ ମୃତ୍ୟୁହୀନତାର ସ୍ୱାରକୀ, ଜୀବନର ମଂଗଳ ଗୌରବର କେତନ ଯେପରି ଏହି ଶିଶୁସୃଷ୍ଟି । ପ୍ରତିଟି ଶିଶୁର ଜନ୍ମ ଭିତରେ ସ୍ୱୟଂ ଜୀବନ ଯେପରି ମୃତ୍ୟୁକୁ ପଦାନତ କରି ସୃଷ୍ଟି ବକ୍ଷରେ ଆପଣାକୁ ଆଉ ଥରେ ପ୍ରତିଷ୍ଠା କରିଦିଏ । ଶିଶୁ ସହିତ ତେଣୁ ଜୀବନ ଆଶାର ନିରୂପେ ନିତ୍ୟ ସଂପର୍କିତ ।

ଏହି ଆଶାର ନବୀନତାରେ ହିଁ ସୃଷ୍ଟିର ଜୟଯାତ୍ରା । ଜୀବନର ଆନଂଦଛଂଦ । କବିଂକ ପ୍ରାଣରେ ସେ ଛଂଦ ପୁଲକର ବିହ୍ୱଳତା । ଶାରଦ ଗଗନରେ ଶୁଭ୍ରାଲୋକପରି ଶିଶୁର ନିର୍ମଳ ନିଷ୍ପାପ ସତ୍ତାରେ ଜୀବନାଲୋକର ଅମୃତ ବିଭାସ । କବିଚେତନାରୁ ମଧ୍ୟ ବର୍ଷାଦିର ମେଘାବରଣ ଅପସୃତ ହୋଇଯିବାର ସଂକେତ ପ୍ରଦତ୍ତ । 'ଶାରଦୀୟ' ଚେତନା ଶୁଭ୍ର ନିର୍ମେଘ ନିର୍ମଳତା ଓ ଶିଶୁର ହସ ପ୍ରଭାତ-କିରଣ ଏବଂ ଆଲୋକଦୀପ୍ତିର ଯେପରି ପୂର୍ଣ୍ଣ ଅର୍ଥବ୍ୟଂଜନା ଘେନି ଉଦ୍ଭାସିତ । କବି ସେହି ଆଲୋକ ଉତ୍ସବ ଭିତରେ ହୃଦୟର ସରଳତାକୁ ଆଉ ଥରେ ଫେରି ପାଇଛଂତି । ଶୁଷ୍କ ଶାସ୍ତ୍ରଜ୍ଞାନ ଓ ଦର୍ଶନ ବିଜ୍ଞାନର ଅମୂର୍ତ୍ତ ବିଚାର ଭିତରେ ସତ୍ୟାନୁସଂଧାନର ଆଉ ପ୍ରୟୋଜନ ମଣିନାହାଂନ୍ତି । ଆତ୍ମାନୁସଂଧାନର ଏଇ ଅନ୍ତିମ ମୁହୂର୍ତ୍ତରେ ସତ୍ୟରୂପୀ ଶିଶୁ ଭଗବାନ ଅଭିନଂଦିତ ହୋଇଛି । "ଜୀବନର ନିତ୍ୟ ଭଗବାନ" (୪୦) ସମ୍ବୋଧନରେ ଶିଶୁର ଗୌରବ ନୁହେଁ, କବି ସତ୍ତାର ସାନଂଦ ତୃପ୍ତି ଓ ପ୍ରାଣର ସାର୍ଥକତା ଯେପରି ଦୀପ୍ତୋଜ୍ଜ୍ୱଳ ହୋଇଉଠିଛି ।

କବି-ଉପଲବ୍ଧିରେ ଏହି ଏକ ଶିଶୁ 'ବିଶ୍ୱ ଶିଶୁ' ଚେତନାକୁ ସଂପ୍ରସାରିତ ହୋଇଛି । ଶିଶୁ କବିଂକ ନିକଟରେ ସୁଦୂରକୁ, ଅମର୍ତ୍ତ୍ୟକୁ ମର୍ତ୍ତ୍ୟସଂଭବ୍ୟ ପ୍ରମାଣ କରିଛି । ମୃତ୍ୟୁ ପ୍ରତି ମଧ୍ୟ ତାଂକର ଆଉ ଆଶଂକା ନାହିଁ । ଗୋଟିଏ ଶିଶୁର ଜନ୍ମ ଭିତରେ ଯେପରି ମାନବାତ୍ମାର ସାମଗ୍ରିକ ମୁକ୍ତି ନିହିତ । କବିଂକର ମନେହୋଇଛି, ଯେପରିକି ଶିଶୁଭଳି ପବିତ୍ର ସୁଂଦର ପଦ୍ମଟିଏ ଫୁଟାଇ ଦେବାର ସଫଳତା ଭିତରେ ସ୍ୱୟଂ ମହାଶିଳ୍ପୀ ସ୍ରଷ୍ଟା ମଧ୍ୟ ଧନ୍ୟ ହୋଇଯାଇଛଂନ୍ତି । ଶିଶୁପ୍ରାଣର ଅମୃତ ଆନଂଦ, ସରଳତାର ସ୍ୱର୍ଗୀୟ ସୌଂଦର୍ଯ୍ୟ ଭିତରେ ନିଜର ରସାନୁଭବକୁ ପ୍ରମୂର୍ତ୍ତ କରି ବିଧାତାଂକର ଶିଳ୍ପୀ ସତ୍ତା ପରମ ସାର୍ଥକତା ଲାଭକରିଛି ।

ଶିଶୁର ଗୋଟିଏ ଦୃଷ୍ଟିପାତ ଭିତରେ, ଗୋଟିଏ ହସ ଭିତରେ ସୃଷ୍ଟିର ସବୁ ଗୋପନ ରହସ୍ୟ ଓ ସ୍ପଷ୍ଟ ଉନ୍ମୁକ୍ତ କବିସତ୍ତାର ସୀମାସଂକୋଚନତ୍ୱକୁ ଅନ୍ତର ପରିସ୍ଫୁଟ କରିଦେଇଛି । କବିଂକର ମନେ ହୋଇଚ, ଏକ ପରିଣତ ବୟସର ସୁଖ ଦୁଃଖ ଆଲୋଡ଼ିତ ଚିତ୍ତରେ ଶିଶୁପ୍ରାଣର ଶାଶ୍ୱତ ଆନଂଦଭରା

(୩୯) ଗ୍ରଂଥାବଳୀ (୧ମ)—ପୃ. ୯୦
(୪୦) ଗ୍ରଂଥାବଳୀ (୨ୟ)—ପୃ. ୯୦

Digitized by PPRACHIN, SOA

ପୂଜା ସଂଗୀତକୁ ଗାନକରିବା ଅସଂଭବ । (୪୧) ଜୀବନର ଦାସତ୍ୱ ଭିତରେ ଶିଶୁର ଆନଂଦହିଁ ଏକମାତ୍ର ମୁକ୍ତିଗୀତ । ଏ ମୁକ୍ତିଶିଶୁ ତେଣୁ କେବଳ ଆଉ ଶିଶୁ ନୁହେଁ, କ୍ଷୁଦ୍ର ନୁହେଁ, ରୂପପ୍ରକାଶ ମାତ୍ର ନୁହେଁ । ଜୀବନରାଜା ସ୍ୱୟଂ ଯେପରି ଶିଶୁରେ ବିରାଜମାନ୍ ତ । କବି ଶିଶୁକୁ ଉଷାଲୋକର ଦୀପ୍ତ ଆତ୍ମ ରୂପେ ଦେଖିଛନ୍ତି । ଶିଶୁ ମାଧ୍ୟମରେ ପୌଷପତ୍ରରେ ବସଂତ ବନାନୀର ସ୍ୱପ୍ନ ଦେଖିଛଂନ୍ତି । (୪୨) ଶିଶୁ ଯେପରି ମରଣର ବି ମୃତ୍ୟୁ ବିଧାନ କରି ଅମର ଜୀବନର ମଂତ୍ର ହୋଇ ଉଚ୍ଚାରିତ ହୋଇଛୁ ।

ପୌଷ ଋତୁ କବି ଚେତନାରେ ଏକ ପ୍ରିୟ ଭାବଦଗ୍ଧ ପ୍ରତୀକ ରୂପେ ମୃତ୍ୟୁ ଓ ଜୀବନ, ସମାପ୍ତି ଓ ଆରଂଭ, ଏକାଧାରରେ ବିଷାଦ ଓ ଆହ୍ଲାଦର କଥା କହେ । ତରୁଶାଖାରେ ବନ୍ଧୁ ପଲ୍ଲବ, ପୁଷ୍ପର ଉଦ୍‌ଗମ ପରି ଜୀବନର ତାରୁଣ୍ୟରେ ଅନେକ ଆଶାମଂଜରୀ ମୁକୁଳିତ ହୁଅଂନ୍ତି । ପୌଷରେ ଶାଖାଚ୍ୟୁତ ପଳିତ ପତ୍ରପରି ମଣିଷ ମନର ବନ୍ଧୁ ସ୍ୱପ୍ନ ଏହି ରୂପ ନୀରବ ବଳୟ ଭଜେ । କିନ୍ତୁ ସେଇ ଝରାପତ୍ରର ମର୍ମରରେ ଜୀବନର ଏକ ଭିନ୍ନ ବାର୍ତ୍ତା ଉଦ୍‌ଘାଟିତ ହୋଇଯାଏ । ବସଂତରେ ନବପଲ୍ଲବରେ, ନବ ରସ ସଂଚରଣର ଆଶା ଯେପରି ତରୁଶାଖାରେ ସଂଜୀବିତ ହୋଇଯାଏ । ଝରାପତ୍ରର ମୃତ୍ୟୁ ବେଦନା ଭିତରୁ ପତ୍ରପୁଷ୍ପର ଜୀବନାନଂଦ ଯେପରି ଉଚ୍ଛୁଳି ଉଠିବାକୁ ଚାହେଁ । ଏଇଠାରେ ହିଁ "ମରଣକୁ ଜିଣି ଜୀବନର ଜୟଗାନ" (୪୩) ସଂଭବ ହୁଏ ।

ବୈକୁଂଠନାଥଂକ ରହସ୍ୟବାଦୀ ପରିଚୟର ପୂର୍ଣ୍ଣାଭିବ୍ୟକ୍ତି 'ଯାତ୍ରୀ' ପ୍ରତୀକରେ । ଯାତ୍ରା ସଂଗୀତ ହିଁ ତାଂକର କଂଠର ପ୍ରାଣସଂଗୀତ । ଜନ୍ମଜନ୍ମାଂତ ଧରି ମାନବାତ୍ମାର ଏ ଅନଂତ ଅଭିସାର । ଦେଶେ ଦେଶେ କାଳେ କାଳେ ରୂପରୁ ରୂପରେ ଅରୂପର ସେ ଏଇ ରହସ୍ୟମୟ ଯାତ୍ରାଭିସାର, ତାକୁଇ କେଂଦ୍ରକରି ମିଷ୍ଟିକ୍‌ର ଚିରଂତନ ବିସ୍ମୟ-ଉତ୍ସାର । ବୈକୁଂଠନାଥଂକର ଯାତ୍ରାଭିବ୍ୟକ୍ତିର କାବ୍ୟ ସଂଭାର ସୁବିପୁଳ । ବିଳମ୍ବମଂଗଳ, ପଥିକାର ଆଶୀର୍ବାଦ୍, ବାଉଲ, ଭିକ୍ଷୁଗୀତ, ଶୂନ୍ୟବାଦ, ସଂକେତ-ଶିଳା, ପାନ୍ଥଶାଳା, ଯାତ୍ରା, ସ୍ମୃତିତର୍ପଣ, ମୃତ୍ତିକାଦର୍ଶନ ଆଦି ବହୁ କବିତାରେ "ମୁଁ ଚିରପଥିକ ଯାତ୍ରୀ; ଏ ମରତେ ଦୂର ପରବାସୀ ।" (୪୪) ଭାବଚେତନା ପରିପୁଷ୍ଟ । ଜୀବନ-ଦେବତା, ଚିରନଟ ଓ ଲୀଳାକମଳ ଭାବଚେତନା ସହ ଯାତ୍ରା-ପ୍ରତୀକର ସମ୍ପର୍କଟି ମଧ୍ୟ ଘନିଷ୍ଠ । ଜୀବନ ଦେବତାଂକ ପ୍ରୀତିସ୍ୱନ ଅଂତରରୁ ଉଚ୍ଚାରିତ ହୋଇ ବ୍ୟକ୍ତିକୁ ଘରଛଡ଼ା କରିଦିଏ । ଘରର ସବୁ ଆଶ୍ରୟ ଆଶ୍ୱାସନା ଓ ସ୍ନେହଶ୍ରଦ୍ଧାର ସ୍ନିଗ୍ଧାଂଚଳ ସମ୍ମୋହନକୁ ତୁଚ୍ଛ କରିଦେଇ ବ୍ୟକ୍ତି ଶୂନ୍ୟ ଆକାଶ ତଳ ଓ ଦଗ୍ଧ ମାଟି ଉପରକୁ ବାହାରିଆସେ । ସେଇ ଯେ ଆସିବା ଆରଂଭ ହୁଏ, ତାର ଆଉ ଶେଷନାହିଁ । ଯାତ୍ରା ସମାପ୍ତିର ସଂଗୀତ ଅସୀମ ସଂଧାନୀ ଭାଗ୍ୟରେ ନାହିଁ । ସେ ଚିରବିରହୀ; ବିରହାନ୍ତିତ ମିଳନର ଅନୁଭୂତି ସେ ଲଭ କରିପାରେନାହିଁ । ଅଥଚ ବିରହବ୍ୟଥିତ ଏକ ଅଦ୍ଭୂତ ମିଳନାନଂଦରେ ସେ ଯେପରି ତନ୍ମୟ ରହିଥାଏ । ଅନଂତ ବିରହର ଅଶ୍ରୁ ଆକୁଳତା ଭିତରେ ବି ହୃଦୟରେ ଏକ ମଧୁର ପୁଲକର ଆବେଗ ତାକୁ ଯେତିକି ଉନ୍ମନ ବିହ୍ୱଳ କରେ, ତାର ନିଃସଂଗତାକୁ ସେତିକି ତୀବ୍ର ମଧ୍ୟ

(୪୧) "ଯାହା ଧରି ନ ପାରଇ ଅମର କବିତା ଛଂଦ"—ଗ୍ରଂଥାବଳୀ (୧ମ)—ପୃ. ୯୨

(୪୨) "ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝରି
ପଲ୍ଲବ ପତ୍ର ବାତ୍ୟା ନିଏରେ ଉଡ଼ି ।" ଗ୍ରଂଥାବଳୀ (୧ମ) ପୃ. ୧୦୭

(୪୩) ଗ୍ରଂଥାବଳୀ (୧ମ) ପୃ. ୧୦୫

(୪୪) ପଥଗ୍ରୟୀ; ଗ୍ରଂଥାବଳୀ (୧ମ) ପୃ. ୪୪୪

Digitized by PPRACHIN, SOA

କରେ । ଏଇ ଭାବଦୋଳନରେ ଯାତ୍ରା ସଂଗୀତ କ୍ଷଣେ କ୍ଷଣେ ହର୍ଷବିଷାଦର ବିଚିତ୍ର ରାଗିଣୀ ସୃଷ୍ଟିକରିଛି ।

କବି-ମାନସରେ ଏ ଯାତ୍ରାଚିତ୍ରର ପ୍ରଥମକରି ଏକ ସୁନ୍ଦର ଓ ସ୍ପଷ୍ଟାଲେଖ୍ୟ 'ସଙ୍କେତ ଶିଳା'ରେ ରୂପାୟିତ। ଏକ ମିଥ୍ * ର ଅବଲମ୍ବନରେ ସମଗ୍ର ବିଭିନ୍ନ ଚେତନାସ୍ତରର ଯାତ୍ରାଭିସାରର ବାର୍ତ୍ତାବହ ଏ କବିତାଟି କବିଙ୍କର ରହସ୍ୟବାଦୀ ଭାବାନୁଚିନ୍ତାର ଗଭୀର ତାତ୍ତ୍ୱପର୍ଯ୍ୟ ବହନ କରିଛି । ଜୀବନର ଗୁରୁଭାର ବହନକରି ପାନ୍ଥ ଏକାକୀ ନୀରବରେ ଧରଣୀବକ୍ଷରେ ମହାଶୂନ୍ୟର ନିଃସଙ୍ଗ ନକ୍ଷତ୍ର ପରି ଚାଲିଛି । ରଜନୀର ଅର୍ଦ୍ଧଯାମରେ ନିରନ୍ଧ୍ର ଅନ୍ଧକାର, ତଥାପି ପ୍ରାଣରେ ଅସୀମ ବିଶ୍ୱାସ ଓ ଭରସା ଯେ (୪୫) ଯାତ୍ରାର ଶେଷ ଅଛି । ଅନ୍ଧକାରର ସମାପ୍ତି କେଉଁଠାରେ ବି ଅଛି । ଅନ୍ଧାରର ସେ ଦେହଳୀକୁ ଧୈର୍ଯ୍ୟ ରଖି ଅତିକ୍ରମ କରିଗଲେ ଆଲୋକମୟ ଆକାଶର ଆଶୀର୍ବାଦ ମିଳିବ ।

ଯାତ୍ରାପଥରେ ସମଗ୍ର ଚେତନାରେ ଅନେକ ସଂଘର୍ଷ, ଅନେକ ଦ୍ୱନ୍ଦ୍ୱର ବିକ୍ଷିପ୍ତ ମୁହୂର୍ତ୍ତ । ଅସରନ୍ତି ଏ ପଥଚଲାର ଜୀବନ ଭିତରେ କେତେ ମଧୁମାସ, କେତେ ସୁନ୍ଦର ମୁହୂର୍ତ୍ତ ବ୍ୟର୍ଥତା ଭଜନ୍ତି । ପାଦ ଉଠେ ଆଉ ପଡ଼େ : ଏ ଗତାନୁଗତିକତା ଭିତରେ ସକଳ ପାର୍ଥିବ ଆୟୋଜନ ଯେପରି ବୃଥା ହୋଇଯାଏ ।

ତଥାପି ରହସ୍ୟଯାତ୍ରୀର କ୍ଳାନ୍ତିହୀନ ପଦଚାଳନା । ନିଷ୍ଠାପର ନିର୍ଭର ବିଶ୍ୱାସ । ଆତ୍ମାର ସେ ପ୍ରତ୍ୟୟ ସକଳ ପ୍ରଲୋଭନ ପ୍ରତିବନ୍ଧକୁ, ନୈରାଶ୍ୟ ଓ ବିଫଳତାକୁ ଅତିକ୍ରମ କରିପାରେ । କବି ଆତ୍ମାର ସେ ନିର୍ଭର ବାଣୀଟି ପଥିକ ମୁଖରେ ଉଚ୍ଚାରିତ । (୪୬) ପଥିକର ଦୁଃଖ ନିଶ୍ଚୟ ରହିଛି । ସେ ଦୁଃଖ କିନ୍ତୁ ପଥ ଚାଲିବାର ନୁହେଁ, ପଥଚଲା ଯାହାପାଇଁ; ତାକୁ ପାଇ ନ ପାରିବାର । (୪୭) ତାର ସନ୍ଧାନରେ ସେ କେତେ ଦୁର୍ଲଂଘ୍ୟତାକୁ ଲଂଘନ କରିଆସିଛି, ଏକତ୍ରିଶଟି ଶିଳାପାବଚ୍ଛ ଅତିକ୍ରମ କରିଛି । ଶେଷ ସୋପାନ ଟପି ସିଂହାସନରେ ସେ ଐଶ୍ୱର୍ଯ୍ୟମଣ୍ଡିତ ସ୍ୱରୂପକୁ, ଦୈବତ ବିଭବକୁ , ରାଜମର୍ଯ୍ୟାଦାକୁ ସେ ଭେଟିବ, ଏ ଆଶା ସଙ୍ଗୋପିତ ।

ଏହି ପରିପ୍ରେକ୍ଷୀରେ 'ଯାତ୍ରା ସଙ୍ଗୀତ' ଭାବଚେତନାର ମର୍ମୋଦ୍‌ଘାଟନ କରାଯାଇପାରେ । ଏହା ଲକ୍ଷ୍ୟ କରାଯାଇପାରେ ଯେ, ଶୀର୍ଷକ କବିତାଟିର ପ୍ରାକ୍‌ରଚନାମାନଙ୍କର ରହସ୍ୟବାଦୀ

* 'ବତ୍ରିଶ ସିଂହାସନ'ରୁ ଆହୃତ ଏ ମିଥ୍‌ଟି—କିଂବଦନ୍ତୀର ନାୟକ ରାଜା ବିକ୍ରମାଦିତ୍ୟ । ବିକ୍ରମ ପୁରୁଷୋତ୍ତମ ଓ ବତ୍ରିଶସିଂହାସନ ଆସନୋତ୍ତମ । ପ୍ରତ୍ୟେକଟି ପିତୁଳା ଯୁକ୍ତ ପାବଚ୍ଛ ଏକ ଏକ ଊର୍ଦ୍ଧ୍ୱାରୋହଣର ସଙ୍କେତ । ବିକ୍ରମାଦିତ୍ୟଙ୍କ ଅସାଧାରଣ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତିତ୍ୱ ତାର ଅଧିକାରୀ । ଶିଳା ପାବଚ୍ଛ ସଦୃଶ ଊର୍ଦ୍ଧ୍ୱଗାମୀ ଚେତନାସ୍ତରମାନଙ୍କୁ ଅତିକ୍ରମ କରି ଆତ୍ମା ସର୍ବୋତ୍ତମତାକୁ ଲାଭ କରିଥାଏ—ଏ କବିତାରେ ତାହାର ଆଧ୍ୟାତ୍ମିକ ରୂପ ସଂକେତର ବ୍ୟଞ୍ଜନା ।

(୪୫) "ସ୍ଥିର ଚିତ୍ତ ! ନାହିଁ ଡଲେ ଦକା ।" —ଗ୍ରନ୍ଥାବଳୀ (୧ମ)—ପୃ. ୧୩୭

(୪୬) "ନିଃସଙ୍ଗ ପଥିକ ଭାବେ···ନାହିଁ ଦୁଃଖ ବିଫଳତା ଲାଗି
ବସନ୍ତ ପଉଷ ଗ୍ରୀଷ୍ମ ସକଳର ମୁହିଁ ଅନୁରାଗୀ
ମୃତ୍ୟୁ ଶଙ୍କା ଲଭ ହାନି ଭାଳିବାକୁ ନାହିଁ···ଅବକାଶ
ମଙ୍ଗଳ ଭରସା ରଖି ଚଳେ ନିତ୍ୟ ବିଧାନର ଦାସ ।" —ଗ୍ରନ୍ଥାବଳୀ ପୃ. ୧୩୬

(୪୭) "ବାଧଇ କେବଳ ପ୍ରାଣେ ନ ଭେଟିଲି ଯେବା ଆପଣାର ।" —ଗ୍ରନ୍ଥାବଳୀ ପୃ. ୧୩୭

Digitized by PPRACHIN, SOA

କାବ୍ୟୋଚ୍ଚାରଣଟି ପ୍ରାୟତଃ ତତ୍ତ୍ୱଆରୋପିତ କିଂବା ରୋମାଂଟିକ ଆବେଗ ସଂସ୍କୃତ । ଏହି କବିତା, ବିଶେଷ କରି 'ଶେଷପୃଷ୍ଠା', 'ଚିରନବୀନ' ଓ 'ଯାତ୍ରା ସଂଗୀତ'—ଏ ତିନୋଟିରେ କବିଚେତନାର ଏକ ବିପୁଳାନୁଭୂତିର ଏକକାଳୀନ ରହସ୍ୟମୟ ଉନ୍ମୋଚନ ଘଟିଛି ବୋଲି ମନେକରାଯାଇପାରେ । ନିଜକୁ ଅସୀମ-ଯାତ୍ରୀ ଓ ମାନସହଂସ ରୂପେ ଆବିଷ୍କାର କରିବା, ସୃଷ୍ଟିର ସାର୍ଥକତାକୁ ବିସ୍ମୟ ମୁଗ୍ଧ ସ୍ୱୀକୃତିଦେବା ନିଜ ପ୍ରାଣରେ ନବୀନ ପ୍ରେମର ବିହ୍ୱଳ ଅନୁରାଗ ଅନୁଭବ କରିବା କବିଂକ ରହସ୍ୟା-ଭିସାରର ମାନସ ସଙ୍କେତ । ଏହି ପର୍ଯ୍ୟାୟରୁ କବିଚେତନା ଏକ ନିରଂତର ପ୍ରସ୍ଫୁଟିତ ପଥରେ ଉତ୍ତୀର୍ଣ୍ଣପାଦ । ଜୀବନର ହର୍ଷ-ବିଷାଦ ଘଟଣା ଦୁର୍ଘଟଣାମାନ ନବ ନବ ଅର୍ଥବ୍ୟାପ୍ତି ସମୃଦ୍ଧ । ପ୍ରଥମକରି ଏଇ ସମୟର କାବ୍ୟସ୍ୱରରେ ଯେପରି କବିଂକ ରୋମାଂଟିକ ଭାବାକୁଳତାରେ ଏକ ଅନଂତ ପ୍ରୀତି-ମୂଳକ ଆବେଗର ସଂସ୍କାର ଘଟିଛି । ଅନୁଭୂତିରେ ତୀକ୍ଷ୍ଣ ସଚେତନତା ଜାଗରୂକ ହୋଇଛି । ଏ ଠିକ୍ ନୂତନ ନୁହେଁ । ଅପ୍ରତ୍ୟାଶିତ ନୁହେଁ, ତଥାପି ପୁରାତନଠାରୁ ଭିନ୍ନ । ଏଯାବତ୍ ଯାହା କବିସତ୍ତାର ଏକ କାବ୍ୟିକ ଆବେଗ ଭାବକଲ୍ପନାମୟ ବିହ୍ୱଳତା ହୋଇ ରହିଥିଲା, ଏଠାରେ ଯେପରି ତାହା ବ୍ୟକ୍ତପ୍ରାଣର ଗଭୀର ଅନୁଭୂତିଦୀପ୍ତ, ଆକୂତି ଜଡ଼ିତ । ଉଦ୍ଦୀପ୍ତ ଚେତନାର ନବ ନବ ଉପଲବ୍ଧି ଭିତରୁ ଉଚ୍ଚାରଣ-ଉଚ୍ଛ୍ୱାସିକୁ ସଂବହନ କରି ଚାଲିଛି ।

ଜୀବନ-ପଥରେ ଅନେକ ସ୍ନେହ ସଂପର୍କର ସ୍ଥାପନା ହୁଏ; ମାତ୍ର ସେ ସବୁ କ୍ଷଣସ୍ଥାୟୀ । ତଥାପି ଜୀବନର ଚିରଂତନତାରେ ସ୍ୱୟଂ ପ୍ରେମ କେବେ ହଜିଯାଏ ନାହିଁ । ଅସୀମ ଅନଂତ ଶତ ଶତ ରୂପରେ, ଶତ ଶତ ଅନୁଭବ ଭିତରେ ଆପଣାର ଶାଶ୍ୱତ ପ୍ରୀତିକୁ ହିଁ ନାନାଭାବେ ପ୍ରକଟ କରୁଥାନ୍ତି । ଜୀବନର ପ୍ରତିଟି ଭାବ ସଂପର୍କ ଭିତରେ ସେ ଜୀବସହ ନିତ୍ୟ ନୂତନ ପ୍ରୀତି ସଂଯୋଗ ରକ୍ଷାକରଂତି । 'ପୁରାଣ ପ୍ରଣୟୀ' ଓ 'ନୂତନ ଅତିଥି' (୪୮) ଅଭିବ୍ୟକ୍ତିମାନ ଏଦୃଷ୍ଟିରୁ କବିଚେତନାର ସ୍ପଷ୍ଟତା ବହନ କରଂତି । ଜୀବନର ସୂର୍ଯ୍ୟ-ବାଂଧବ ନିତିପ୍ରତି ନବ ନବ ରୂପରେ କବିଂକ ହୃଦୟାକାଶରେ ଉଦୟ-ଉତ୍ସବ ରଚନା କରଂତି । ପୃଥିବୀର ଦିଗଂତରେ ଆକାଶର ସୂର୍ଯ୍ୟ ଚିର ପୁରାତନ ପୁଣି ନିତ୍ୟ ନୂତନ । ସୂର୍ଯ୍ୟ ଆକାଶରେ ଅଖଂଡ ହୋଇ ଜଳୁଥାଏ, ଅଥଚ ପୃଥିବୀର ଦେଖାଭିତରୁ ତାର ଉଦୟ ଓ ଅସ୍ତ ଭିତରେ ପ୍ରାତ୍ୟହିକତାର ସଦ୍ୟତମ ସ୍ପର୍ଶଲାଗେ । ସୂର୍ଯ୍ୟ-ପୁରାତନ, ପୂର୍ବଦିନର; ପୁଣି ନୂତନ, ଅଦ୍ୟତନର । ପୂର୍ବଦିନର ସୂର୍ଯ୍ୟ ଆଜି ପାଇଁ ମୃତ, ଆଜିର ସୂର୍ଯ୍ୟ ଆଗାମୀ ପାଇଁ ଅସିଦ୍ଧ । ସୂର୍ଯ୍ୟ ନିଜ ମଣ୍ଡଳରେ, ନିଜ ସ୍ୱରୂପରେ ଅପରିବର୍ତ୍ତନୀୟ ଏକ, ପୁଣି ପୃଥିବୀର କକ୍ଷ-ବଳୟରେ ତାର ଆବିର୍ଭାବର ପରିବର୍ତ୍ତିତ ରୂପଟି ଭିନ୍ନ ଓ ନୂତନ । ଏହିପରି ପ୍ରାଚୀନ ଓ ନବୀନ ଉଭୟ ରୂପରେ ଶାଶ୍ୱତଂକର ଜୀବସହ ଘନିଷ୍ଠ ଲୀଳା-ସଂପର୍କ । ସେଇଥିପାଇଁ ସକଳ ଦୁଃଖାନୁଭୂତିରେ, ଜୀବନର କର୍ଦ୍ଦମାକ୍ତ ସଂଘର୍ଷ ଭିତରେ ବି ପ୍ରାଣପଦ୍ମରେ ହସ ଫୁଟିପାରେ । ସେ ସେଇଭଳି ଏକ ଅଂତରଂଗ ଆତ୍ମୀୟ; ସକଳ ଭ୍ରାଂନ୍ତି ଭିତରେ ବି ତାଂକ ପ୍ରେମ ଓ ଭୁଖାମଣା ଅକ୍ଷୁଣ୍ଣ ରହେ । ଅତୁଟ ଆଶ୍ୱାସନାରେ କବି ନିଶ୍ଚିଂତ । (୪୯)

'ଚିରନଟ ସେ ଯବନିକା ଅଂତରାଳରେ ଥାଇ ଜୀବନ ନାଟକ ସର୍ଜନା କରଂତି । ବ୍ୟକ୍ତିର ସକଳ ନିଜସ୍ୱ ସଂଳାପ ଓ ସଂଗୀତାଳାପ ତାଂକର ନିର୍ଦ୍ଦେଶନା ସୂତ୍ରଧର ସେ ଭାଗ୍ୟର ଡୋରକୁ ପରଦା ଅଂତରାଳରେ ହାତରେ ଧରି ରଖି ବ୍ୟକ୍ତିକୁ ଜୀବନ-ରଂଗମଂଚ ଉପରକୁ ହସକାଂଦର ଅଭିନୟ

(୪୮) ଗ୍ରଂଥାବଳୀ ୧ମ—ପୃ. ୩୬୫

(୪୯) "ଏମନ ପ୍ରିୟ ଥାଉ, କି ଦଇା ମୋର ଆଉ ।" ଗ୍ରଂଥାବଳୀ ୧ମ—ପୃ. ୩୬୯

Digitized by PPRACHIN, SOA

କରିବାକୁ ଛାଡ଼ିଦେଇଥାଏ । ସତ୍ତ୍ୱ ନମିତ୍ତ ମାତ୍ର,—କବି ଚେତନାରେ ଏହି ମାଧ୍ୟମ ରୂପଟି ଯେପରି ଇଂଗିତ ପୂର୍ଣ୍ଣ ବ୍ୟଂଜନା ବହନ କରିଛି । (୫୦) କବି ପ୍ରୀତିର ପ୍ରତିଦାନ ଅବଶ୍ୟ ପ୍ରତ୍ୟାଶା କରଂନ୍ତି । ମାତ୍ର ଅପ୍ରାପ୍ତିର ଅଭିମାନ ମୂଢ଼ତା ପୋଷଣ କରିନାହାଂନ୍ତି । ବରଂ ଅଶ୍ରୁଜଳରେ ସୁଖଦୁଃଖର ସମସ୍ତ ଭାବାନୁଭୂତିକୁ ସମର୍ପିଦେଇ ଜୀବନ-ପ୍ରିୟଂକ ପ୍ରତି ପ୍ରୀତି-ଆନୁଗତ୍ୟର ସଂକଳ୍ପରେ ଆତୁର ନିଷ୍ଠାପର ହୋଇଉଠିଛଂନ୍ତି । (୫୧)

ଜୀବନର ଗୀତିକାର ବ୍ୟକ୍ତି କଣ୍ଠରେ ଗୀତ ଭରିଦିଅନ୍ତି । ସେ ଗୀତର ଶେଷ ଅଛି କି ନା କବି ଜାଣଂନ୍ତି ନାହିଁ । (୫୨) କବିତ୍ୱର ଅହଂକାରଟି କଂଭୁ ତାଂକର ନାହିଁ । ଅସୀମ ସୀମା ଭିତରେ ଆପଣାର କଥା କୁହଂନ୍ତି, ଜୀବ ମୁଖରୁ ନିଜ ରଚନା ଶୁଣଂନ୍ତି । ରୂପର ରେଖରେ ଜଳାଇ ଅରୂପର ବଂଦନା ଘେନଂନ୍ତି । (୫୩)

ଏହି ପ୍ରାଣୋତ୍ସର୍ଗ ଓ ନିଃସର୍ତ୍ତ ପ୍ରେମଭାବନା 'ଯାତ୍ରାସଂଗୀତ'ରେ ଘନୀଭୂତ ହୋଇଯାଇଛି । ହୃଦୟାନୁଭବର ନିବିଡ଼ତା ଓ କାବ୍ୟାଭିବ୍ୟକ୍ତିର ରସଘନତା, ଉଭୟ ଦୃଷ୍ଟିରୁ ଏ କବିତାଟି ଓଡ଼ିଆ କାବ୍ୟରାଜ୍ୟରେ ଅତୁଳନୀୟ । ବୈକୁଂଠନାଥଂକ ସମଗ୍ର ରହସ୍ୟବାଦୀ କାବ୍ୟାଭିବ୍ୟକ୍ତି ଏହି କବିତାର ପଟ୍ଟଭୂମିରେ ବଳଂବିତ ବୋଲି କୁହାଯାଇପାରେ । ପୂର୍ବରୁ ବ୍ୟବହୃତ 'ଯାତ୍ରୀ' ପ୍ରତୀକଟି ଏଠାରେ ପଥ-ସଂଗୀତର ଲହରୀ ଛୁଟାଇଛି । ଯାତ୍ରାକାଳୀନ ବହୁ ବିଚିତ୍ର ଅନୁଭବ ଓ ଅଭିଜ୍ଞତା ସମ୍ପୃକ୍ତ ଏହି କବିତାରେ ପ୍ରାପ୍ତିବୋଧର ନୂତନ ଅଭିଜ୍ଞାନ, ସତ୍ତ୍ୱର କୃତଜ୍ଞତା, ଅଭିମୁଖିତାର ଅଭିଳାଷ ପ୍ରକଟିତ ହୋଇଛି । ମର୍ତ୍ତ୍ୟପ୍ରବାସ, ଜୀବ ଭ୍ରାଂତ, ତଥାପି ବଂଧନ ଭିତରେ ହିଁ ମୁକ୍ତିର ସାଧନା, ପ୍ରିୟଜନ ଓ ପ୍ରକୃତିରେ ଲୁକ୍କାୟିତ ଶାଶ୍ୱତ ପ୍ରେମର ରହସ୍ୟ-ଉଦ୍‌ଘାଟନରେ ସେ ମୁକ୍ତିଲାଭ ଇତ୍ୟାଦି ରହସ୍ୟବାଦୀ ଉପଲବ୍‌ଧି ଏହି କବିତାର ମର୍ମବାଣୀ ।

'ଜୀବନପାତ୍ର ମୋ ଭରିଛ କେତେମତେ'—ଚେତନାର ଏ ନବାବିଷ୍କୃତ ଅଭିଜ୍ଞାନ ପରେ ପୂର୍ବପୋଷିତ ସକଳ ଦୁଃଖ ଅପ୍ରାପ୍ତିର ଅଭିମାନ ମିଥ୍ୟା ହୋଇଯାଇଛି । ଏଯାବତ୍ କବିସ୍ୱରରେ ବିମୂର୍ଚ୍ଛିତ ରହିଥିବା ପାଇବା ନପାଇବା, ଅଶ୍ରୁ ବିରହ ଓ ମାନ-ବିରାଗ ଯେପରି ସ୍ୱର ପରିବର୍ତ୍ତନ କରିଛି । 'ନଦେଲ କିଛି ବୋଲି' କିପରି ବା ଅଭିଯୋଗ କରିବେ ? ନବଲବ୍‌ଧ ଚେତନାରେ ଜୀବନ-ପାତ୍ରଟି ଜୀବନଦେବତାଂକର ଅଶେଷ ଦାନରେ ଭରି ହୋଇଯିବାର ସମ୍ବାଦଟି, ପ୍ରିୟଦାନର ପରିପୂର୍ଣ୍ଣ ଐଶ୍ୱର୍ଯ୍ୟ ସ୍ୱରୂପଟି ଝଲସିଉଠିଛି । ଭ୍ରମମୁକ୍ତ ଚେତନାର ସ୍ପଷ୍ଟ ସ୍ୱୀକାରୋକ୍ତି, 'ହରିଛ ମୋ ଭରମ ।' ଏହା ପରେ ପ୍ରୀତି-କୃତାର୍ଥ ହୃଦୟରୁ କେବଳ ପଦେ ବିହ୍ୱଳ ଉଚ୍ଚାରଣ ହୋଇପାରେ, 'ତରଣୀ ମୋର ତବ ଘାଟରେ ବନ୍ଧିଯାଉ ।'

---

(୫୦) "ଶତ ହରଷ ବ୍ୟଥା ପୀରତି ମାଦକତା ବଂଶୀ ମୁଁ ସେ ମୋ ଗୀତସ୍ରଷ୍ଟା ।"
ଗ୍ରଂଥାବଳୀ ୧ମ—ପୃ. ୩୬୭

(୫୧) "ତା ପଦେ ଅରପେ ମୋ ବିଫଳ ଗୀତି/ନ ଥିବ ଆନ ହାଟେ ନାହିଁ ମୋ ଘାଟ
× × ମୋ ହୃଦ ପ୍ରେମନଈ ମଧୁରେ ହେଉ ଦହି ।
ସକଳ ଲୀଳା ଏ ମୋ ତୋହରି ପାଇଁ ।" ଗ୍ରଂଥାବଳୀ ୧ମ ଭାଗ—ପୃ. ୩୭୦

(୫୨) "ସାରିଲେ ଏ ମୋ ଗୀତ ସରଇ ନାହିଁ ।" ଶେଷ ପୃଷ୍ଠା—ଗ୍ରଂଥାବଳୀ ୧ମ ଭାଗ-ପୃ ୩୬୭

(୫୩) "ମୋ ମୁଖେ ତୋର ଗୀତ ତୋହରି ପାଇଁ ।" —ଏଜନ—

Digitized by PPRACHIN, SOA

କବି ଜୀବନକୁ ଅନଂତଇଂଗିତବାହୀ ନଦୀ ରୂପେ ଦେଖିଛଂନ୍ତି । ଗିରିକଂଦରରୁ ସମୁଦ୍ର ସ୍ପର୍ଶ ପର୍ଯ୍ୟଂତ ନଦୀ ଜୀବନରେ କେତେ ଦେଶ ଦେଶାଂତର, କେତେ ଶଯ୍ୟା ଶଯ୍ୟାଂତର । ନିତ୍ୟ ନୂତନ ଅନୁଭବ, ନୂତନ ସଂପର୍କ 'ସବୁ ନୂତନତାର ଆହ୍ୱାନ ମୁହୂର୍ତରେ ପଦେ ପଦେ ପୁରାତନର ବର୍ଜନ । ଜୀବନରେ ନିତ୍ୟ ନୂତନ ସଂପର୍କ, ସ୍ନେହ ବଂଧନ, ନୂତନ ଭାବ ଅନୁଭୂତି, ପୁଣି ଆଗାମୀର ଯାତ୍ରା ପଥରେ ସେମାନଂକର ବିସର୍ଜନ । ସବୁ ଏକ ଅଦେଖା ଦେବତାର ନିର୍ଦ୍ଦେଶରେ ଆସିଥାଂନ୍ତି । ତାରି ଇଂଗିତରେ ଅଂତର୍ହିତ ହୋଇଯାଂନ୍ତି । କ୍ଷଣିକର ଦେଖାକୁ ଚିରଂତନ ମନେକରି, ଆକସ୍ମିକ ଲବ୍ଧ ସ୍ନେହ ଅନୁରାଗକୁ ହୃଦୟର ଦାବୀ ମନେକରି ବ୍ୟକ୍ତି ମମତାସକ୍ତ ହୋଇପଡ଼େ । ଅଥଚ ଆତ୍ମା ସୁଦୂରବିହାରୀ ମାନସହଂସ । ପାର୍ଥିବ କର୍ଦ୍ଦମ ତାର ପକ୍ଷ ବଂଧନ କରିପାରେନା । ମାନସରୋବରର ଦୁର୍ଲଭ ମୃଣାଳକୁ ମଧ୍ୟ ସେ ଭୁଲିପାରେନା । ପ୍ରାଚ୍ୟ ଅଧ୍ୟାତ୍ମ-ଚେତନାର ଏ ବିଶିଷ୍ଟ ରହସ୍ୟବାଦୀ ଭାବପ୍ରତୀକଟି କବିଂକ ରଚନାରେ ଏକ ଚମତ୍କାର ରସବ୍ୟଂଜନା ଲାଭକରିଛି । (୫୪) ବାସନା-ଜାଲ ବନ୍ଧିତ ସତ୍ତା ସ୍ୱରାଜ୍ୟ ବିସ୍ମୃତ ହୋଇ ଅମୃତ ନାମରେ ସଂସାରର ଗରଳ ଗ୍ରାସ କରି ପଡ଼ିରହି-ଥାଏ । ମାତ୍ର ପ୍ରାଣରେ ଅମୃତର ସଂଦେଶ ଲାଭହେଲେ, ମାନସରୋବରର ସ୍ମୃତି ଜାଗରୁକ ହେଲେ ମାନସ-ହଂସ ଆଉ ଭବ-ସରସୀରେ ଧୁଂଦାଳି ହୁଏନାହିଁ ।

ସକଳ ପାର୍ଥିବ ସଂପର୍କ ସେହି ଅପାର୍ଥିବ ପ୍ରୀତି ସହ ଅନ୍ୱିତ ଲାଭକରି ହିଁ ସାର୍ଥକତା ଲଭଂନ୍ତି । ଅନ୍ୟଥା ସେମାନେ ଆଶା-କଳୁଷିତ । ପ୍ରିୟଜନର ପ୍ରେମ, ଶିଶୁର ମମତା, ପ୍ରକୃତିର ସୌଂଦର୍ଯ୍ୟ ଏ ସବୁ ସୀମା ପ୍ରାଣରେ ଅସୀମ ପ୍ରେମ ଉଦ୍‌ବୋଧନ ନିମଂତେ ଅରୂପ ଦେବତାର ରୂପମୟ ଆନଂଦ ସଂଦେଶ । ମାତ୍ର ଲୋଭାତୁରତାର ନିର୍ମମ ପୀଡ଼ନରେ ଏ ସୁକୁମାର ପ୍ରଣୟ କଢ଼ଟି ନଷ୍ଟ ହୋଇଯାଏ । ବ୍ୟକ୍ତି ଶାଶ୍ୱତର ଯେଉଁ ପ୍ରଣୟ-ସୌଭାଗ୍ୟକୁ ମର୍ତ୍ତ୍ୟ-ପ୍ରୀତି ରୂପେ ଲାଭ କରିଥାଏ, ମୋହାସକ୍ତିରେ ଉପଭୋଗ ବିଳାସ ରଚି ତାର ଅମର୍ଯ୍ୟାଦା କରେ । ଯାହା ଆନଂଦର ଅମୃତ ଧାରାରେ ପ୍ରସରି ଆସିଥାଏ, ତାହା ଭୋଗର ଆସବରେ କଳୁଷିତ ହୋଇଯାଏ । ଆଲୋକିତ ହେବା ପାଇଁ ଲାଭ କରିଥିବା ଦିବ୍ୟ ଅଗ୍ନିରେ ସେ ଆପଣାକୁ ପୋଡ଼ିଜାଳି ଦିଏ । ଗୋଟାଏ ଭ୍ରାଂତ ଦୃଷ୍ଟି ଓ ଦୁର୍ମଦ ପଦକ୍ଷେପରେ ଜୀବନର ସବୁ ମୂଲ୍ୟବୋଧ ନଷ୍ଟ ହୋଇଯାଏ । ଅସୀମର ସୁବିପୁଳ ଆୟୋଜନ, ଆବେଦନ ବୃଥା ହୋଇଯାଏ ।

ମୃତ୍ୟୁ ରୂପକ ବଣିକର ଶଠତାକୁ ନଚିହ୍ନି ବ୍ୟକ୍ତି ଜୀବନ-ହାଟରେ ହୃଦୟ-ରୂପକ ଦୁର୍ମୂଲ୍ୟ ରତ୍ନର କିଣାବିକା କରିବସେ । ମୃତ୍ୟୁ ଦିନେ ତାକୁ ଆକସ୍ମିକ ଭାବେ ପ୍ରବଂଚିତ କରି ସେ ଦୁର୍ଲଭ ମଧୁ-ମଣିଟିକୁ ଅପହରଣ କରିନିଏ ।

ତଥାପି ରହସ୍ୟବାଦୀର 'ଶାଶ୍ୱତ ନିର୍ଭରତା' ସକଳ ବିଫଳତା ଭିତରେ ବି ସାର୍ଥକତାର ଇଂଗିତ ପ୍ରାଣରେ ଲାଭକରିପାରେ । କବି ଅନଂତ ପ୍ରେମ ଉପରେ ଭରସା ରଖିଛଂନ୍ତି । ବିଶ୍ୱରାଜନଂକ ବିରାଟ ଭଂଡାର ସତରେ କେବେ ଖାଲି ହୁଏ ନାହିଁ । ମୃତ୍ୟୁ ସବୁ ହରିନେଇ ମଧ୍ୟ ନିଃସ୍ୱ କରିପାରେ ନାହିଁ । ପୌଷପର୍ବ ଝଡ଼ିଗଲା ପରେ ମଧ୍ୟ ତରୁଣ ମରଣ ହୁଏନାହିଁ । ନବ ବସଂତର କିଶଳୟ ରୂପେ ତାର

(୫୪) "ମାନସହଂସ ମୁଁ ମାନସେ ଯିବି ଉଡ଼ି/ମୋ ଦୋଷେ ପଥ ହୁଡ଼ି ଭରମେ ଅବିରତ
× × ନିଜ ବାସନା ଜାଲେ ବିକଳ ବନ୍ଧିତ/ଭୂମିର ଅଜ୍ଞାନେ ମିଳେ କି ଅମୃତ ?
ଗ୍ଳାଣ୍ଡିବି ଦୂରେ ଯିବି, ପାରିବାରେ ଭାସିବି
ଲଙ୍ଘି ହିମଗିରି ଯିବି ଗୋ ବେଳଥାଉଁ ।"
—ଗ୍ରଂଥାବଳୀ ୧ମ ଭାଗ—ପୃ ୩୬୯

Digitized by PPRACHIN, SOA

ନୂତନ ଆବିର୍ଭାବ ଘଟେ । ହୃଦୟ ରୂପମଣି ଜୀବନର ଅମୂଲ୍ୟ ପ୍ରେମ-ଧନ ଅପହୃତ ହୋଇଯାଇ-ଥିଲେ ମଧ୍ୟ ହଜିଯାଇ ନଥାଏ । ଜୀବନ ରାଜା ଯେପରି ଜୀବର ଏ ପରମ ସଂପଦକୁ ମରଣଠାରୁ କରଗତ କରି ଆପଣାର ଅସୀମ ଅତଳତାରେ ସ୍ନେହଧନ ରୂପେ ସାଇତି ରଖଂନ୍ତି । ପ୍ରେମଦେବତାଂକ ଅମୃତ ସାଗରରେ ସଯତ୍ନ ସଂଚିତ ଏଇ ପରମ ରତ୍ନଟି ହିଁ ଜୀବପରମଂକର ଅଚ୍ଛେଦ୍ୟ ବଂଧନର ସ୍ମାରକୀରୂପ । ପ୍ରାଣରୁ ଭ୍ରାଂତିର ମୋହ କଟିଗଲେ ସୀମାର ଚେତନାରେ ଅସୀମଂକର ମୂରଲୀତାନ ଉଚ୍ଚାଟନ ଭରିଦେଲେ ସେ ଅକୃପଣ ହସ୍ତର ମହାଦାନରେ ହୃଦୟ ଭରିଯାଏ । ଏହା ପରେ ଆଉ ନିଃସ୍ୱତାର ଦୁଃଖ, ମରଣର ଭୀତି ମଧ୍ୟ ରହେନାହିଁ । ପୌଷତରୁର ଶୀର୍ଣାବୟବ ମଧ୍ୟ ମଳୟ-ପୁଲକିତ ହୋଇଉଠେ । "ସକଳ ବଂଧନେ ମୋହ ଭରମ ପ୍ରେମେ ସକଳ କ୍ଷଣେ ରହେ ସେ ଜାଗି,"—ଏଇ ଉପଲବ୍ଧିର ପୁନରୁଚ୍ଚାରଣ "ଜୀବନ ଦେବାନେବା ସବୁ ତୁଆଣ ତର ।" ଏଇ ସ୍ୱୀକୃତିଟି ହିଁ ଜୀର୍ଣ ମଳିନ ବାସ, ଶୀର୍ଣ କୁଟିଳ ପତ୍ରାବଳୀ ବିଶୁଷ୍କ ପୌଷ ବିଷଣ୍ଣତାରୁ ମୁକ୍ତିଦେଇ କବିସତ୍ତାକୁ ସନ୍ଧ୍ୟାଲୋକରେ ଦୀନ ସନ୍ନ୍ୟାସୀ ସଜାଇ ଅନଂତ ପଥଧାରରେ ଠିଆ କରାଇନେଇଛି । (୫୫)

ଏଇ ଆଶାବାଦୀ ଉନ୍ମୁଖତା ହିଁ ଜୀବନକୁ ନିତ୍ୟମଧୁବନ ଯାତ୍ରା ପାଇଁ ଆଲୋକମୟ ବିଜୟ ରଥରେ ବସାଇଦିଏ । 'ଯାତ୍ରା ସଂଗୀତ'ରେ ଯେଉଁ 'ଆଲୋକ' ସଂବାଦ, 'ଅଦୂରରେ ସ୍ଥିତ ଗୋଲକ' ପ୍ରସଙ୍ଗ ରହିଛି—ସେମାନେ ଯେଉଁ 'ବିଜୟ'ର ଘୋଷଣା କରଂନ୍ତି—ତାହା ନିର୍ଦ୍ଦିଷ୍ଟ ଭାବରେ ଚରାଚରିତ ଭ୍ରାଂତ ଜୀବନାଦର୍ଶ ଉପରେ ନୂତନ ଓ ଦିବ୍ୟଚେତନାର ଜୟଗାନ । ନବଜାଗୃତିର ଉଷାଲୋକରେ ଯାତ୍ରା-କ୍ଲେଶ ସମାପ୍ତିର ଏ ଉଜ୍ଜ୍ୱଳ ସଂବାଦ, ସକଳ ସନ୍ଦେହର ନିରସନ ଓ ପୁଣ୍ୟଦର୍ଶନ ସମ୍ଭାବନା ପ୍ରସଂଗ (୫୬) କବି ଅବଚେତନରୁ ଉତ୍ଥାପିତ । ଅନୁଭୂତିର ପ୍ରତ୍ୟକ୍ଷତାକୁ ବହନକରି ଆତ୍ମାର ପୁଲକମୟ ନିଶ୍ଚିତ ସଂଗୀତ-ଗାନ "ଜୀବନଦେବତା ମୋ ଜୀବନ-ରଥେ ବିଜେ ।" ଏହି ପରିପ୍ରେକ୍ଷୀରେ ଯାତ୍ରାସଂଗୀତ କବିତାକୁ ରହସ୍ୟବାଦୀ ଉନ୍ମେଷ-ପର୍ବର ଚୈତ୍ର ଜାଗରଣର ସଚେତନ-ଗୀତି ବୋଲି ନିର୍ବିବାଦରେ ଗ୍ରହଣ କରାଯାଇପାରେ ।

ଏହି ଆଲୋକ ଅନୁଭୂତିର ସ୍ପଷ୍ଟ ଉଚ୍ଚାରଣ 'ଉତ୍ସବଦୀପ'ରେ ଅଭିବ୍ୟକ୍ତ । 'ଶିଶୁସୃଷ୍ଟି'ରେ କବିମାନସ ଦେବଧାମରେ ଏକ ମଂଗଳଦୀପର ଆଲୋକ ଆବିଷ୍କାର କରିଥିଲା । ବ୍ୟକ୍ତି ଜୀବନର ଉତ୍ସବ ପ୍ରାଂଗଣରେ ସେ ଦୀପ ଜଳିଉଠିବାର ଯେ କବି ପ୍ରତ୍ୟକ୍ଷ କରିଛଂନ୍ତି, 'ଉତ୍ସବଦୀପ' ତାରି ମୁଗ୍ଧ ସ୍ୱଗତାଳାପ । କବି ସେହି ଆଲୋକକୁ ନିତ୍ୟ ଆଲୋକ ବୋଲି କହିଛଂନ୍ତି । ଜୀବନରେ ଯାହା କିଛି

---

(୫୫) "ସନ୍ଧ୍ୟାର ଦେଶେ ଯିବାକୁ ଗୋ ମନ ଦୀନସନ୍ନ୍ୟାସୀ ପରି
ଜୀର୍ଣ ମଳିନ ଆଜ ମୋର ବାସ, ସବୁ କଳଂକ କୁଟିଳତା ହାସ
ଖସିପଡ଼ୁ × × ମୁଁ ଗୋ ମୁକ୍ତ ହୃଦୟେ ସନ୍ଧ୍ୟାଟି ନେବି ବରି ।"
—ସନ୍ଧ୍ୟାଆରତି—ଗ୍ରଂଥାବଳୀ (୧ମ)— ପୃ. ୩୭୭

(୫୬) "ଅଦୂର ପଥେ ଆଜ ମିଳନ ତାର ସାଥେ/ବିଜୟ ରଥେ ତୋର ଜୀବନ ଆଲୋକରେ ଯାତ୍ରୀପଥ ତୋର ପଲକେ ହେବ ଶେଷ/ଶେଷରେ ସଂଦେହ ସକଳ ତୋର କ୍ଲେଶ । ଧନ୍ୟ ହେବୁ ଆଜ ପୁଣ୍ୟ ଦରଶନେ ।"
—'ଯାତ୍ରା ସଂଗୀତ'—ଗ୍ରଂଥାବଳୀ (୧ମ)—ପୃ. ୩୭୨

Digitized by PPRACHIN, SOA

ପରମବାଂଛିତ ଓ ନିଭୃତ ସଂଚିତ, ସେ ସବୁକୁ ସେହି ଆଲୋକଦାତାଙ୍କୁ ସମର୍ପଣ କରିଦେବାକୁ ଚାହିଁଛଂତି ।

'ଉତ୍ସବଦୀପ'ର ଶେଷ ପଙ୍‌କ୍ତିରେ କବିଚେତନାର ଏକ ନବୀନ ଆବିଷ୍କାରର ଚମତ୍କୃତ ସଂବାଦ ପରିବେଶିତ । (୬୭) ଚେତନାର ନବଜାଗରଣ କାଳରେ ନିଜ ସଂପର୍କରେ ଯେଉଁ ସତ୍ୟଟି କବି ଉପଲବ୍‌ଧିରେ ଅନାବୃତ ହୋଇପଡ଼ିଛି, ତାହାର ଅକୁଂଠ ସ୍ୱୀକାର କରି କବି ଏଯାବତ୍ ପ୍ରକୃତ ପ୍ରେମ ସାଧନା ପରିବର୍ତ୍ତେ ଭାବକଳ୍ପନାର କାବ୍ୟିକ ଆତିଶଯ୍ୟ ଭିତରେ ମଜ୍ଜି ରହିଥିବାର ସ୍ପଷ୍ଟ ସ୍ୱୀକାରୋକ୍ତି ବାଢ଼ିଛଂତି । (୬୮)

ଜୀବନର ପ୍ରୟୋଜନମାନଂକୁ ଜୀବନଦେବତା ମହାଦାନ ରୂପେ ଅଜାଡ଼ି ଦେଇଛଂତି । ମାତ୍ର ଗୋଟିଏ ବିଷୟରେ ସେ ବଡ଼ କୃପଣ । ଆପଣାର ପ୍ରେମକୁ ସେ କେବେ ଯାଚି ଦିଅଂତିନାହିଁ । (୬୯) ସେ ପ୍ରୀତିକୁ ନ ଲୋଡ଼ିଲେ, ଆପଣାର ସର୍ବସ୍ୱ ବିସର୍ଜନ ବିନିମୟରେ ତାକୁ କାମନା ନ କଲେ ସେ କେବେ ବି ଧରାଦିଅଂତି ନାହିଁ । ଅଥଚ ନିଜ ବ୍ୟତୀତ ବାକୀ ସବୁ ସେ ଅକାତରରେ ଅଜାଡ଼ି ଦେଇଥାଂତି । ମାତ୍ର ତାଂକୁ ନ ପାଇବା ଏଇ 'ବାକୀ ସବୁ' ପାଇବାକୁ ତୁଚ୍ଛ କରିଦିଏ । ତାଂକରି ବିରହର ବେଦନାଶ୍ରୁ ଉଦ୍‌ବେଳ ହୋଇ ଜୀବର ଆତ୍ମବଢ଼ିମାର ବଂଧକୁ ଭାଂଗି ନ ଦେବା ପର୍ଯ୍ୟଂତ ଦେବତା ସୁଦୂର ଓ ଅପ୍ରାପ୍ୟ ହୋଇ ରହିଯାଂତି । (୭୦) କବିଂକର ଅହଂକାର-ଚୂର୍ଣ୍ଣ ସଂକୁଚିତ ସ୍ୱୀକାରୋକ୍ତି, "ଦେଇଛ, ଦେଇନ ଆପଣାକୁ ।" ଜୀବନପାତ୍ର ଯାର ବିପୁଳଦାନରେ ଉଚ୍ଛଳିତ, ପ୍ରତିଦାନ ରୂପେ ତାକୁ କିଛି ଦିଆଯାଇନାହିଁ—ଏଇ ଆତ୍ମଗ୍ଳାନି କବିଚେତନାରେ ପ୍ରସ୍ତୁତିପର୍ବର (purgation)ର ବିଶିଷ୍ଟ ରହସ୍ୟବାଦୀ ମାନସିକତାକୁ ସୂଚିତ କରେ ।

'ଦୈନ୍ୟପ୍ରକାଶ'ରେ ଏ ଆତ୍ମପୀଡ଼ନ ତୀବ୍ରତର । ତା ସହ ଆଶାର ଏକ ମଧୁମୟ ଇଂଗିତ ମଧ୍ୟ ସାଧନାର ସାର୍ଥକତାକୁ ସଂକେତ କରିଛି । ଏ ବିରାଟ ବିଶ୍ୱଧାମରେ ଦୂର ପରବାସୀ କ୍ଷଣଜୀବୀ ପଥିକ ନିମିଷେ ମାତ୍ର ଜୀବନକାଳ ଭିତରେ ଅସୀମ-ପ୍ରିୟଂକୁ କି ଯଥାଯୋଗ୍ୟ ଉପହାର ଦେଇପାରେ ? ତଥାପି, "ଏକଇ ଦିନର ହାସ୍ୟ ଅଶ୍ରୁ ସଂଚିତ ସବୁ ତୁମରି ପାଇଁ ।" ଅସୀମ ଅଭିମୁଖେ ସୀମାର ଯାତ୍ରାପଥରେ ବ୍ୟକ୍ତି ନିଜର ପ୍ରାତ୍ୟହିକତାକୁ, ସୁଖ ଦୁଃଖର ଅନୁଭୂତିମାନଂକୁ ଓ କର୍ମାଭିବ୍ୟକ୍ତିକୁ ସ୍ରଷ୍ଟା ଚରଣରେ ଉତ୍ସର୍ଗ କରିଦେବାହିଁ ବ୍ୟକ୍ତିର ସମର୍ପଣ ସାଧନା । ତାଂକରି କୃପାରୁ ତାଂକୁ ସମର୍ପିତ ହୋଇଥାଏ । ମାତ୍ର ଉତ୍ସର୍ଗ କ୍ରିୟାର ଚେତନାଟି, ସମର୍ପଣର ବ୍ୟାକୁଳତାଟି ସତ୍ତ୍ୱର ନିଜସ୍ୱ, ତାହାହିଁ ଭକ୍ତି ମୁକ୍ତିର ସାଧନା ।

'ଦୈନ୍ୟ ପ୍ରକାଶ'ରେ କବିଚେତନାରେ ରହସ୍ୟବାଦୀ ଉପଲବ୍‌ଧିର ଅନ୍ୟ ଏକ ଉଚ୍ଚାରଣ ମଧ୍ୟ ରହିଛି । କବି ସେହି ଅସୀମ ସତ୍ତ୍ୱର ଅଂଶହିର, ବୁଦ୍‌ବୁଦ୍ ସମ ସେଇ ମହାସାଗର ଉଦ୍‌ଭୂତ ଓ ସେଇଥିରେ ଅଂତିମ ବିଲୋପ ଜାଣି ନିଶ୍ଚିଂତ । କାସାର କମଳ, ରଜନୀଗଂଧା ପ୍ରଭୃତି ପୁଷ୍ପ-ପ୍ରତୀକ ଭିତରେ ଆତ୍ମାର ଶୁଭ୍ର ସୌଂଦର୍ଯ୍ୟ, ପବିତ୍ର ମାଧୁର୍ଯ୍ୟ ଓ ସୁରଭି-ଐଶ୍ୱର୍ଯ୍ୟର ଭାବବ୍ୟଂଜନା ନିହିତ ।

---

(୬୭) "ତୁମ ମହାଦାନ ଅଂତରେ ନାହିଁ ଧରେ ।" —ଗ୍ରଂଥାବଳୀ ୧ମ ଭାଗ—ପୃ. ୩୮୭
(୬୮) "ଗାଇ ନାହିଁ ବୋଲି ତୁମର ବିଜୟ ଗୀତି ହେ ।" —ଗ୍ରଂଥାବଳୀ ୧ମ ଭାଗ—ପୃ. ୩୮୭
(୬୯) "ଲୋଡ଼ିନାହିଁ ବୋଲି ତୁମ ଅମୃତ ପ୍ରୀତି ହେ
ପ୍ରେମମୟ ରୂପ ଲୁଚାଇଛ ମୋର ଭରତା ।" —ଗ୍ରଂଥାବଳୀ ୧ମ ଭାଗ—ପୃ. ୩୮୭
(୭୦) "ତୁମର ବିରହେ ସକଳ ବଢ଼ିମା ଭାଜେ ହେ ।" —ଗ୍ରଂଥାବଳୀ ୧ମ ଭାଗ—ପୃ. ୩୮୭

Digitized by PPRACHIN, SOA

ଏଇ ଚେତନାର, ନବ ଉପଲବ୍ଧିର କଥା ବାରଂବାର କହି ମଧ୍ୟ କବି ତୃପ୍ତ ନୁହଂନ୍ତି । ଅନ୍ତୀତର ଏକ କଳ୍ପନା-ସୁଦୂର ଭାବାନୁଚିଂତା ଆଜି ଅଂତରର ଅନୁଭବରେ ଏକାଂତ ହୋଇଯାଇଛି । ସମୁଦାୟ କବିତାର ଅଂତର୍ନିହିତ ଭାବ ସତ୍ୟ ଏହି ବାଣୀଟି (୬୧) କବିଚେତନାର ଏ ନବ ସ୍ୱରୂପର ପରିଚୟୋକ୍ତି ବୋଲି ଗ୍ରହଣ କରାଯାଇପାରେ । ତାଂକ ଅଂତରରେ ଆଜି "ମିଥ୍ୟା ଅମର ଛବି ।" ଏ ଅବସରରେ ସେ ଜୀବନର ଶତବସଂତର ଉଲ୍ଲାସ-ଉତ୍ସବକୁ ମଧ୍ୟ ଭେଟିଛଂନ୍ତି । ପୁଣି, ଶରତ ପ୍ରଭାତର ନିର୍ମଳ ଅରୁଣାଲୋକରେ ପ୍ରୀତି ପଥରେ ମୁଖରିତ ମଂଗଳ ସଂଗୀତ ଶୁଣିଛଂନ୍ତି । ଶରତର ଶୁଭ୍ର ଶେଫାଳିରେ ସେ ପ୍ରୀତି ମାଧୁର୍ଯ୍ୟ ଓ ଆନଂଦ ଘନୀଭୂତ ହୋଇଯାଇଛି । ଏ ମଧୁର ଅବକାଶରେ କବି ଏକ ବିଚିତ୍ର ଉପଲବ୍ଧିର ଗାନ ଗାଇଛଂନ୍ତି, "ବିରହ ମିଳନ ଏକାକାର ଆଜି ପରାଣ ହରାଏ କୂଳ ।" (୬୨) ଅକୂଳ ସାଗରର ସ୍ପର୍ଶ ପାଇବା ପରେ ଜୀବନନଦୀ ନିଜର ସ୍ୱତଂତ୍ର କୂଳ ଖୋଜି ପାଇବା ଦୁଷ୍କର ।

ନବୋପଲବ୍ଧିର ଏ ରସାବେଶ ବର୍ଷାଚିତ୍ରଣ ସହ କବିମାନସରେ ଏକତାନତା ଲାଭ କରିଛି । ଏଠାରେ ବର୍ଷା କେବଳ ବହିଃପ୍ରକୃତିର ଋତୁବିଶେଷ ବୋଲି ମନେହୁଏନାହିଁ । ବରଂ ଅଂତର୍ଚେତନାର, ଆର୍ଦ୍ରତାର, ରସ ଉଚ୍ଛଳତାର ପ୍ରତୀକ ବୋଲି ବୋଧହୁଏ । ମିଳନାନଂଦର ହର୍ଷୋଦ୍‌ବେଳନ, ପୁଣି ବିରହାନୁଭବର ଅଶ୍ରୁପ୍ଲାବନ, ଅଂତର ଓ ବାହାର ସ୍ପଂଦ ପରିପ୍ଲୁତକରି ଏ ଏକ ଅଭିନବ ବର୍ଷାବିଳାସ । ଏ ଯାବତ୍ ଶୁଷ୍କ ମରୁ ମନେହୋଇଥିବା କବିଂକର ହୃଦୟ ଭୂମିରେ ଏକ ବର୍ଷା ସଜଳତାର ବିପୁଳ ଆବିର୍ଭାବ, ନବ ଅନୁଭବର ବର୍ଦ୍ଧିତ ଆର୍ଦ୍ରତା ଓ ସ୍ନିଗ୍ଧ ଉତ୍ଫୁଲ୍ଲତାକୁ ମଧ୍ୟ ସୂଚିତ କରୁଛି । ଏଇ ବର୍ଷା ରାଗିଣୀ ଭିତରେ ଅମର ଜୀବନର ସମ୍ମୋହନ-ସଂଗୀତ କବି ଅଂତରରେ ସଂଙ୍କୃତ । ମରୁ ବୁକୁର ତପ୍ତ ନିଃଶ୍ୱାସକୁ ଶୀତଳ ତୃପ୍ତକରି ବର୍ଷା ଗଂତବ୍ୟ ପଥରେ ଗ୍ଲାଯାଏ । ତାର ମଂଦ୍ରଧ୍ୱନିରେ ଶୂନ୍ୟ ଆକାଶରେ ମଧ୍ୟ ବିଶ୍ୱଛଂଦ ବାଜିଉଠେ । ଆକାଶର ଶୂନ୍ୟତାକୁ, ମରୁର ନିସ୍ତବ୍ଧତାକୁ ମୁଖର ନିର୍ଜନତାକୁ ବ୍ୟାଘାତ କରି ଜୀବନର କଂପନ ଯେପରି ବର୍ଷାର ସ୍ନାୟୁରେ ଛଂଦମୟ ହୋଇଉଠେ । ଦୂର ଆକାଶର ବର୍ଷା ପୃଥିବୀର ସନ୍ତୃଷ୍ଟ ଚାତକ କଂଠରେ ଜଳ ଭରିଦିଏ । କବି ଚାତକ ପରି ବିଶ୍ୱଜୀବନର ବର୍ଷା-ଉଲ୍ଲାସକୁ ପ୍ରାଣରେ ବରଣ କରିନେବାକୁ ସମୁଦ୍ୟତ । ନବୀନତାର, ସବୁଜଶ୍ରୀର ଆଶାସ୍ଥୀ ଉଦ୍‌ବୋଧନ 'ବର୍ଷା' କବି ହୃଦୟରେ ଯେ ନୂତନ ରସାଭିଳାଷ ସୃଷ୍ଟି କରିଛି, 'ବର୍ଷା ଆସିଚି ଦୁଆରେ' ତାର ଚମତ୍କାର କାବ୍ୟୋଦ୍‌ବୋଧନ ।

ପ୍ରଭାତୀ ଏକ ସମଭାବାପନ୍ନ କବିତା । ବର୍ଷା ରସମୟତାର ଆହ୍ଲାଦବ୍ୟଂଜନା ପରି ପ୍ରଭାତ ମଧ୍ୟ ଆଲୋକ-ପ୍ରତୀକରୂପେ କବି-ଚେତନାରେ ସମାଦୃତ । ଦୁର୍ଦ୍ଦିନର ଅଂଧକାର ତିରୋହିତ ଏବଂ ଆଲୋକର ଆବିର୍ଭାବ । (୬୩) ଆଗାମୀପାଇଁ କବିହୃଦୟରେ ବିପୁଳ ଭରସା "ଅସରଳ ସକଳ ତୋ ସରଳ ଅମୃତ ହେବ ଆଜି ଗରଳ ।" ଜୀବନର ଏ ଜୟଗାନରେ ମରଣ ମଧ୍ୟ ଶଂକିତ ହୋଇଉଠେ । ଅଂତରରୁ ଜଡ଼ତା ଓ ସନ୍ଦେହର ନିରସନ ହୋଇଗଲେ ମିଥ୍ୟାର ମୋହାବରଣ

---

(୬୧) "ଦୂରର ଯା ଆଜି ଅଂତରରେ ଅନୁଭବ ।" —ଗ୍ରଂଥାବଳୀ ୧ମ—ପୃ. ୩୧୪

(୬୨) ଗ୍ରଂଥାବଳୀ—ପୃ. ୩୧୪

(୬୩) "ଅଶ୍ରୁ ସାଗର ପାରେ ଶତ ବିଫଳତା ହାଣି ଉଭିଛିରେ ଜୀବନର ସର୍ଯ୍ୟ ।" —ଗ୍ରଂଥାବଳୀ ୧ମ—ପୃ. ୪୦୪

Digitized by PPRACHIN, SOA

ଖସିଯାଏ । ପ୍ରାଣରେ ଦବ୍ୟାଗ୍ନିର ଯେଉଁ ପୁଣ୍ୟ ହୋମାନଳ ପ୍ରଜ୍ୱଳିତ ହୋଇଛି, ସେଥିରୁ ସକଳ ଅଶିବ ଅମଂଗଳ ସେଥିରେ ଭସ୍ମୀଭୂତ ହୋଇଗଲେ ଶୁଦ୍ଧ-ଆତ୍ମା ଈପ୍‌ସିତତମଂକ ଅଭିମୁଖେ ନିର୍ବିଘ୍ନ ଯାତ୍ରା କରିପାରିବ, ସେଇ ହୋମବେଦୀମୂଳେ ପ୍ରଣତ ହୋଇ କବି ଏକ ସଫଳାୟିତ ପଥବ୍ରଜର କାମନା କରିଛଂତି ।

କବି ଜାଣଂତି, ଏ ପୃଥିବୀ ଏକ ଶେଷହୀନ ପଥଯାତ୍ରା । ଅସୀମ ସଂଧାନର ଦୂର ପଥରେ କବିସତ୍ତା "ନିତ୍ୟ ଆତ୍ମଭୋଳା ଯାତ୍ରୀ ।" (୬୪) କେବଳ ପଥଚାଲିବାରେ ଯେଉଁ ଜୀବନର ମୁକ୍ତିସାଧନା, ପାଥେୟ ତାର କେବଳ କେତୋଟି ଆଶାବିଳାସ । ସେହି ଅସୀମ ଯାତ୍ରୀଙ୍କୁ ପଥକ୍ଳାଂତ ମୁହୂର୍ତ୍ତରେ ଦୂର 'ପାଂଥଶାଳା'ର ଆକର୍ଷଣ ହିଁ ନବୀନ ଆଶା, ଶକ୍ତି, ଉତ୍ସାହ ଓ ଆବେଗ ଭରିଦେଇପାରେ । ତାର ଅନୁସଂଧାନରେ ଚିରଯାତ୍ରୀର ନିତ୍ୟଯାତ୍ରା ।

ପଥିକ ପ୍ରାଣରେ ପାଂଥଶାଳାର ସ୍ଥାନ ବହୁ ଗୁରୁତ୍ୱପୂର୍ଣ୍ଣ । ସେଇ ହିଁ ତାର କ୍ଳାଂତ ମୁହୂର୍ତ୍ତର ଆଶ୍ୱାସନା । ପଥଚଲାର ପ୍ରେରଣା । ପାଂଥଶାଳା ସହ ପରିଚୟ, ସଂପ୍ରୀତି, ବିଶ୍ରାମର ଭାବଟି ମଧ୍ୟ ଅନୁବଂଧିତ । ଧରିତ୍ରୀବକ୍ଷରେ ଜୀବନର ଚଲାପଥରେ ସତ୍ତା ଅନେକ ପାଂଥଶାଳାର ସସ୍ନେହ ଆଶ୍ରୟ ପାଇଥାଏ । ହୃଦୟର ମମତା, ମାଧୁରୀ, ପ୍ରୀତି ସଂପର୍କ, ସ୍ନେହ ସୁରକ୍ଷା ପ୍ରଭୃତି ତାର ନିଦର୍ଶନ । ଜୀବନର ପ୍ରଥମ ଜାଗୃତିରେ ମାତୃ-ପ୍ରୀତି ନିବିଡ଼ ସୁରକ୍ଷା ଦେଇ ଚିରଜୀବନପାଇଁ ଏକ ଅନଂତ ମାତୃ ମମତାର ସ୍ୱପ୍ନ ସୃଷ୍ଟି କରେ । ମର୍ତ୍ତ୍ୟର ପାଂଥଶାଳା ଯେପରି ତାର ସ୍ମୃତି ସ୍ମରଣ । ଅମର୍ତ୍ତ୍ୟ ପାଂଥଶାଳା ସୁଦୂର । ମାତ୍ର ଅପୂର୍ବ ସୁଂଦର । ତାର ପରିଚୟର ରହସ୍ୟ "ସ୍ୱର୍ଣ୍ଣେ ପଡ଼େନାହିଁ ଧରା, ଚିତ୍ତ ଖାଲି କରେ ପୁଲକିତ ।" (୬୫)

ବୈକୁଂଠନାଥଂକର ରହସ୍ୟବାଦୀ ଯାତ୍ରାଭିବ୍ୟକ୍ତିର ଆଉ ଏକ ମାର୍ମିକ ରଚନା 'ଗୀତି' ଭାବଗୌରବ ଓ କଳାବୈଭବରେ ଯାହା 'ଯାତ୍ରାସଂଗୀତ'ର ସମକକ୍ଷ ହୋଇ ଧରାଯାଇପାରେ । ବୈକୁଂଠନାଥଂକ ଗୀତିକବିତାମାନ ମୁଖ୍ୟତଃ ଲିରିକ୍‌ଧର୍ମୀ । ଯୋଗୀ ବାଉଲ, ଭିକ୍ଷୁଗାନର ପରଂପରା ଅନୁସରଣରେ ଏଗୁଡ଼ିକ ଭାବସିଦ୍ଧ ଏବଂ କର୍ମପାଠବତା ଦୃଷ୍ଟିରୁ ରସସିଦ୍ଧ ମଧ୍ୟ । କାବ୍ୟକ କୃତ୍ରିମତା, ଆତ୍ମାସଧର୍ମିତା, କ୍ଳିଷ୍ଟକଳ୍ପନା ଓ ଶୁଷ୍କ ତାତ୍ତ୍ୱିକତା ପରିବର୍ତ୍ତେ ଏଗୁଡ଼ିକ ସ୍ୱଚ୍ଛଂଦ, ସାବଲୀଳ, ଲୀଳାୟିତ ଛଂଦମୟତାରେ ଏକ ଉଚ୍ଚକୋଟୀର ସାଂଗୀତିକତା ସହ ସୁବିନ୍ୟସ୍ତ ଭାବସଂପଦରେ ମଧ୍ୟ ଋଦ୍ଧିମଂତ । ଏହି କେତୋଟି ଗୀତିକବିତାକୁ ବୈକୁଂଠମାନସର ରହସ୍ୟବାଦୀ କାବ୍ୟଚେତନାର ସାର୍ଥକ ନିଦର୍ଶନ ରୂପେ ଗ୍ରହଣ କରାଯାଇପାରେ ।

ପ୍ରଥମରୁ ହିଁ ଏକ ଅଦୃଶ୍ୟସତ୍ତା ସଂପର୍କରେ ପ୍ରତ୍ୟକ୍ଷ ଉକ୍ତି 'ଅଚିଥିକେ ।' ଅନାମଧେୟ ସେ; କିଂତୁ କବିଆତ୍ମାର ସମାଦର-ଯୋଗ୍ୟ । ଅଂତରର ପରିଚୟରେ ଏତେ ବେଶି ଜଣାଶୁଣା ଯେ, ନାମ ଜଣାନଥିଲେ ବି ସେ ସଂବୋଧନରେ ତାଂକୁ ଚିହ୍ନିନେବା ସହଜ ।

ଜୀବନର ସୁଖ ଦୁଃଖ, ହର୍ଷବିଷାଦ ସବୁ କିଛି ସହ ତାର ସଂବଧ । ତାର ଇଂଗିତରେ ଫୁଲ ଫୁଟଂତି, ଉଷା ଆଲୋକସ୍ନାତା ହୁଅଂତି, ପବନରେ ତାର ସ୍ପର୍ଶ, ମର୍ମମୂଳରେ ତାର ସ୍ପଂଦନ । ଏହିଠାରେ ଜୀବନଦେବତା ଓ ଅଂତର୍ଯାମୀ ତତ୍ତ୍ୱ ଯେପରି ଅନୁଭୂତି-ସିଦ୍ଧ ହୋଇ ଉଠଂତି । ପୂର୍ବୋକ୍ତ ସେ ନିର୍ଦ୍ଦିଷ୍ଟ ପରିଚୟସ୍ୱୀକୃତିହୀନ ସତ୍ତ୍ୱେ ଜୀବନର ସକଳ ବିଭବ ଓ ପ୍ରକାଶ ସହ ଏବଂ ଭାବବନ୍ଧନମୟ ଭକ୍ତିରେ ଅଂତସତ୍ତା ସହ ଅବିଚ୍ଛିନ୍ନ ସଂପର୍କରେ ଜଡ଼ିତ ।

(୬୪)/(୬୫) ଗ୍ରଂଥାବଳୀ ୧ମ—ପୃ. ୪୪୫

Digitized by PPRACHIN, SOA

ଏ ଗୀତରେ ଚର୍ଯ୍ୟାଯୋଗୀର ସହଜସାଧନା ଓ ମୃଣାଳଦଳ ରସଘନ କମଳ ବିଳାସ ଚେତନାର ପ୍ରଭାବଟି ଲକ୍ଷଣୀୟ । ସହଜସାଧନାର ରହସ୍ୟାତ୍ମକତାକୁ କବି ଜୀବନାନୁଭବ ରୂପେ ସ୍ୱୀକୃତି ଦିଅନ୍ତି । (୭୬) ଭବ-ସରସୀର ବହୁ ଆବର୍ଜନା ଭିତରେ ବି ସରସ ସୁନ୍ଦର ଆତ୍ମା ପଦ୍ମ ବିକଶିତ । ମାନସ-ହଂସ ସେ ମୃଣାଳଦଳ ବିଳାସୀ । ଯେ ପର୍ଯ୍ୟନ୍ତ ସେ ମୃଣାଳରସ ସନ୍ଧାନ ନ କରିଛି, କ୍ଷୁଧା ତୃଷ୍ଣା ସହି ଫେରିଯିବା ତା ପକ୍ଷେ ଅସମ୍ଭବ ।

କବି ବଡ଼ ଚମତ୍କାର ଭାବରେ ପ୍ରାଣର ବ୍ୟାକୁଳତା ଓ ଆଧ୍ୟାତ୍ମ ଅଭିଳାଷକୁ ରୂପାୟିତ କରିଛନ୍ତି । ଦୁର୍ଲଭ ଆତ୍ମା ପୁଣି ଦୁଷ୍ପ୍ରାପ୍ୟ ବିଭୁପ୍ରେମ । ଜୀବନ ସେ ପରମ ଦୁର୍ଲଭତାକୁ ଲାଭ ନ କରିବା ପର୍ଯ୍ୟନ୍ତ, ଅସମ୍ଭବ ପ୍ରୀତିକୁ ସମ୍ଭବ କରି ନ ପାଇବା ପର୍ଯ୍ୟନ୍ତ ପୂର୍ଣ୍ଣତା ପାଇପାରେନାହିଁ । କ୍ଷୁଧା ନିବୃତ୍ତି ହୁଏ ନାହିଁ, ଅଥଚ ହଂସ ଅଖାଦ୍ୟ ଖାଏ ନାହିଁ । ବ୍ୟକ୍ତି ବାସନା ଜଡ଼ିତ ରହିଥିଲେ ବି ଆତ୍ମା କିଛି ଭୋଗକରେନାହିଁ । ସତ୍ୟୋପଲବ୍ଧି ଓ ବିଶୁଦ୍ଧ ପ୍ରେମ ହିଁ ତାର ଚିର ଅନ୍ୱେଷିତ ରହିଥାଏ ।

ଏ ପ୍ରେମ-ମାଣିକ୍ୟର ସନ୍ଧାନପାଇଁ ଗଭୀର ଅନ୍ୱେଷାର ପ୍ରୟୋଜନକୁ କବି ଜାଣନ୍ତି । ମୁକ୍ତା ଆହରଣ ପାଇଁ ସାଗର ଅତଳତାକୁ ଯିବାକୁ ହୁଏ । ତୀରଦେଶରେ ସାରାଜୀବନ ବିଚରଣ କଲେ ବି ତାହା ମିଳେନାହିଁ । ମୃତ୍ୟୁ ରୂପକ ଗଭୀର ଅନ୍ଧକାର ଭିତରେ ଜୀବନ ରୂପକ ସୂର୍ଯ୍ୟାଲୋକକୁ ଦେଖି ହୁଏ ନାହିଁ । ଜରା ମୃତ୍ୟୁର ଘନାନ୍ଧକାର ଭିତରେ ନିରୁତ୍ସାହିତ ନ ହୋଇ କବି ନିଜକୁ ସତ୍ୟ-ରତ୍ନ ଆହରଣ ପାଇଁ ଆତ୍ମଚିନ୍ତା ରୂପକ ସାଗରର ଗଭୀରତାକୁ ବୁଡ଼ି ଯିବାପାଇଁ ଉଦ୍‌ବୋଧନ ଦେଇଛନ୍ତି ।

କବି ପ୍ରାଣପୁରରେ ଅଜଣା ଅତିଥିଙ୍କ ମଧୁର ପଦଧ୍ୱନି ଶୁଣିଛନ୍ତି । ଆଗମନୀ ବାର୍ତ୍ତା ଲାଭ କରିଛନ୍ତି । ମାତ୍ର କବିଙ୍କର କ୍ଷୋଭ, ଜଗତର ବହୁ ଦାବାନଳ ସମ ଆକର୍ଷଣୀୟ ପ୍ରଲୋଭନରେ ମଜ୍ଜି ରହି ସେ ପ୍ରାଣର ଅତିଥିଙ୍କ ପ୍ରତି ପୂର୍ଣ୍ଣ ମନୋଯୋଗୀ ହୋଇପାରିନାହାନ୍ତି । ଅତିଥି ଆସି ଫେରିଗଲେ ।

ଜୀବନ ଦେବତାଙ୍କୁ ଅତିଥିର ରୂପକାତ୍ମକତାରେ ଏଇପରି ଅନାହୂତ ଆସିବା, ଫେରିଯିବା ଓ ସତ୍ତ୍ୱାର ଅପ୍ରସ୍ତୁତିଜନିତ ହରାଇ ବସିବାର ବର୍ଣ୍ଣନାଟି ରହସ୍ୟବାଦୀ ଚେତନାର ଏକ ପ୍ରିୟ ଅଭିବ୍ୟକ୍ତି । ବୈକୁଣ୍ଠନାଥଙ୍କ ମାନସ-ପ୍ରିୟ 'ବୈରାଗୀ ଅତିଥି'; ଏ ଅତିଥିଙ୍କ ପାଇଁ ସତ୍ତ୍ୱା ନିତ୍ୟ ଅପେକ୍ଷିତ । ଅଥଚ ସତ୍ତ୍ୱାର ପାର୍ଥିବ ଓ ପ୍ରାଣିକ ଅପ୍ରସ୍ତୁତି ଏବଂ ଅସାମର୍ଥ୍ୟ, ଅଶୁଚିର ଗ୍ଲାନି ଯେପରି ଏକ ପଥରୋଧୀ ଦରଜା । ଏଇ ଅବରୋଧର ଆରପାଖରେ ଜୀବକୁ ହୃଦୟର ପ୍ରେମ ବାଣ୍ଟିଦେବାପାଇଁ ଆସି ମଧ୍ୟ ଜୀବନଦେବତା ଫେରିଯିବାକୁ ବାଧ୍ୟ ହୁଅନ୍ତି । କବି ଜୀବନର ପରମ ପ୍ରାପ୍ତିକୁ ପାଇ ପାଇ ଯେ ହରାଇବସିଛନ୍ତି, ସେ ହାହାକାର ବ୍ୟାକୁଳତାଟି ସ୍ପଷ୍ଟ ରୂପଲାଭ କରିଛି ।

ତାଙ୍କର ଆଗମନ ଶରଦ ପ୍ରାତଃର ନିଃଶବ୍ଦତାରେ । ତେଣୁ ପଦଧ୍ୱନି ସ୍ପଷ୍ଟ । ସେ ନିଜ ଦିଗରୁ ପୂର୍ଣ୍ଣ ଅଭିବ୍ୟକ୍ତ । ମାତ୍ର ପ୍ରାତଃନିଦ୍ରାରେ କବି ଅଚେତନ । ଶରତ ପ୍ରଭାତ ଶୁଭ୍ରସୁନ୍ଦର, ଶୀତଳ ମଧୁର, ସ୍ୱଚ୍ଛ ପରିଚ୍ଛନ୍ନତା ଓ ପ୍ରଶାନ୍ତି । ଶରତ୍‌-ସୁଷମାରେ ବାସନ୍ତୀ ସୌନ୍ଦର୍ଯ୍ୟର ଉଗ୍ରତା ନାହିଁ । ଏକ

---

(୭୬) "ସହଜିଆମାନଙ୍କୁ ମୁଁ ସାମାନ୍ୟ ନେଡ଼ାନେଡ଼ୀ ବାରବୁଲା ନ କହି, ଘୃଣା ନ କରି ସେମାନଙ୍କ ଜୀବନର ନିଗୂଢ଼ ରସତତ୍ତ୍ୱକୁ ନମସ୍କାର କରିଅଛି × × × ଏହି ବୈଷ୍ଣବ କବିମାନେ ଯେଉଁ ରସତତ୍ତ୍ୱର ପ୍ରମାଣ ରଖିଯାଇଛନ୍ତି, ତାହା ଏତେଦୂର ନିଗୂଢ଼ ଓ ରହସ୍ୟପୂତ ଯେ ସେମାନଙ୍କ କଥା ଲେଖିବା ସମୟରେ ମୁଁ ଅତ୍ୟନ୍ତ ଭୀତତ୍ରସ୍ତ ହୋଇଥାଏ ।"
—ଗ୍ରନ୍ଥାବଳୀ ୧ମ ଭାଗ (ଜୀବନୀ)—ପୃ. ୩୭

Digitized by PPRACHIN, SOA

ସ୍ନିଗ୍ଧ ମୃଦୁତାର ସସ୍ନେହ ପ୍ରଲେପ ରହିଛି । ଏ ନିଃସର୍ଗ ରମଣୀୟତାରେ ଦେବାବତରଣ ଯେପରି ପ୍ରତ୍ୟାଶିତ । ମାତ୍ର କବିଚେତନାରେ ଯେ ଆଧ୍ୟାତ୍ମିକ ପ୍ରସ୍ତୁତି ଆସିନାହିଁ । ତେଣୁ ଦେବତାଙ୍କର ନିଃଶବ୍ଦ ପ୍ରତ୍ୟାବର୍ତ୍ତନ । ତଥାପି ଯିବାପୂର୍ବରୁ ସେ ନିଜର ଆସିଥିବାର ସମ୍ବାଦ ଓ ଫେରିଯିବାର ବ୍ୟର୍ଥତାକୁ ଯେପରି ଏକ କରୁଣଗାନର ମୂର୍ଚ୍ଛନାରୂପେ ଫୁଲରେ, ପବନରେ, ମେଘରେ, ଆକାଶରେ ବିଛାଇ ଦେଇଗଲେ । ସମସ୍ତ ଯେପରି ଏକ ପରମଲଗ୍ନର ଚରମ ବ୍ୟର୍ଥତାରେ ବ୍ୟଥିତ ହୋଇ ମୁହୂର୍ତ୍ତକେ ମୁହ୍ୟମାନହୋଇ ଅଟକି ରହିଗଲା ।

ଏ ବ୍ୟର୍ଥ-ଲଗ୍ନ ପାଇଁ କବି ଖେଦ କରିଛନ୍ତି । ନିଜକୁ ଦାୟୀ କରିଛନ୍ତି । (୬୭) ପ୍ରିୟ ଦେବତା ଦୂରର ନୁହଁନ୍ତି, ନିଷ୍ଠୁର ବି ନୁହଁନ୍ତି । ସେ ବାରବାର ଆସନ୍ତି । କବି ଅନୁଭବରେ ଅସୀମ ପ୍ରିୟଂକର ମରମୀ ଦରଦୀ ପ୍ରୀତି-ପ୍ରତ୍ୟାଶିତ ପ୍ରେମମୟ ରୂପଟି ସ୍ୱୀକୃତ । ନିଜର ପ୍ରୟୋଜନରୁ ସେ ଆସନ୍ତି । ସୀମାର ସ୍ନେହ ମାଗନ୍ତି ଓ ଆପଣା ପ୍ରେମର ସ୍ୱୀକୃତି ତାଠାରୁ ଲୋଡ଼ନ୍ତି । କାରଣ ପ୍ରେମରେ ଦାନ ଓ ସ୍ୱୀକୃତି-ଉଭୟ ସମାନ ମର୍ଯ୍ୟାଦାପୂର୍ଣ୍ଣ । ପ୍ରେମର ଆତ୍ମ-ଅଭିବ୍ୟକ୍ତି କାମନାଟି ଦୁର୍ଜ୍ଜୟତମ କାମନା, ଘର୍ଷଣାକର କାମନା । ପ୍ରେମ ସବୁ ଗୋପନ ରଖିପାରେ, ମାତ୍ର ନିଜକୁ ନୁହେଁ । ନିଜକୁ ସେ ପୂର୍ଣ୍ଣ ଉନ୍ମୋଚିତ କରିବାକୁ ବ୍ୟାକୁଳ ହୋଇଥାଏ । ପ୍ରତିଦାନ ନୁହେଁ, ଏଇ ପ୍ରାପ୍ତିର ସ୍ୱୀକୃତି ଟିକକ ବିନା ଯେପରି ସେ ବ୍ୟର୍ଥ ହୋଇଯାଏ । ପ୍ରତିଦାନ ନପାଇ ବି ପ୍ରେମ ତିଷ୍ଠିପାରେ, ମାତ୍ର ପ୍ରୀତିପାତ୍ରର ସ୍ୱୀକୃତି ବିନା ତାର ସ୍ଥିତି ବିପର୍ଯ୍ୟସ୍ତ ହୋଇଯାଏ । ପ୍ରିୟଦେବତାଂକୁ ଏଇ ଟିକକ ସ୍ୱୀକୃତି ଦାନର ଅସାମର୍ଥ୍ୟ ପାଇଁ କବି ଗ୍ଲାନି ପୀଡ଼ିତ ମନେ ହୁଅନ୍ତି ।

ମନମନ୍ଦିର ପ୍ରସ୍ତୁତ । (୬୮) ମାତ୍ର ଦେବତାଂକର ବିଗ୍ରହ ପ୍ରତିଷ୍ଠା ଘଟିନାହିଁ । ଯେଉଁ ମାଣିକ୍ୟରେ ସେ ବିଗ୍ରହ ନିର୍ମାଣ ହୁଅନ୍ତି, ତାକୁ କବି ଜୀବନ ସାଗରର ବେଳାଭୂମିରେ ଖୋଜି ବୁଲୁଛନ୍ତି । ଅଥଚ ସାଗରର ଅତଳଗର୍ଭରେ ସେ ମହାର୍ଘ ରତ୍ନ ତାଂକୁ ଅପେକ୍ଷା କରିରହିଛି । (୬୯) ପ୍ରାତ୍ୟହିକତାର ବହୁ ବିକ୍ଷିପ୍ତତାରେ ଇତଃସ୍ତତଃ କବିଚେତନା ନିଃଶବ୍ଦ ଜାଗ୍ରତ ଅଂତର୍ମଗ୍ନ ପ୍ରତୀକ୍ଷାରେ ଦେବତାଂକର ପଦଧ୍ୱନି ଶୁଣିବାର ଏକାଗ୍ରତାକୁ ଯେପରି ହରାଇବସିଛନ୍ତି । 'ସାଗର ବେଳାରେ ଭ୍ରମଣ ସମ୍ବାଦ'ରେ ଏଇ ଭାବ ବିକ୍ଷିପ୍ତତା ଓ 'ସାଗର ଗର୍ଭର ରତ୍ନସନ୍ଧାନ ଏକ ଧ୍ୟାନନିମଗ୍ନ ସ୍ଥିରତାର ଚେତନା ପ୍ରତୀକକୁ ବହନ କରିଛି । ଅନୁଭୂତିର ଲଂବା ଯାତ୍ରାରେ ସକଳ ବିରାଗୀର ଏଇ ମାଣିକ୍ୟ-ଅନୁରାଗୀ ସତ୍ତା ଜୀବନର କେତେ କ୍ଷତାକ୍ତ ଉପଲବ୍ଧିର, ଅଶ୍ରୁମୟ ରକ୍ତାକ୍ଷରର ଲାଂଛନା-ଜର୍ଜ୍ଜରିତ ହୋଇ ଘୂରିବୁଲୁଛି, ମାଣିକ୍ୟର ନିଜ ସ୍ଥାନକୁ ଖୋଜି ନାହିଁ ।

ବ୍ୟର୍ଥତା ତେଣୁ ଏଠାରେ ଉଭୟଂକର । ଅତିଥିଂକର ଫେରିଯିବାରେ, କବିଂକର ଅନ୍ୟମନସ୍କତା ଭିତରେ ତାଂକର ଆଗମନ-ସଜାଗ ନରହିବାରେ । ସେଇଥିପାଇଁ ରହସ୍ୟ ସାଧକର ଭାଷାରେ ସେ ହୃଦୟର ଦ୍ୱାରରେ ହିଁ ଅପେକ୍ଷା କରିବ, ଦୂରତୀର୍ଥରେ ନୁହେଁ । ହୃଦୟ ହିଁ ଅପେକ୍ଷାର ନିଜ ଜାଗା । ହୃଦୟରେ ଏକାଗ୍ର ନରହି ବାହାରେ ଖୋଜିଲେ ଦେବତା ଠିକଣା ସ୍ଥାନକୁ ଆସି ଫେରିଯାଇପାରନ୍ତି ।

---

(୬୭) "ରଖି ତୋର ଅନଳ ଖେଳା । ଫେରି ଥରେ ଚାହିଁଲୁ ନାହିଁ ।"
—ଗ୍ରଂଥାବଳୀ ୧ମ ଖଣ୍ଡ—ପୃ ୪୯୮

(୬୮) "ସରିଛି ତୋ ଦେଉଳ ତୋଳା" —ଗ୍ରଂଥାବଳୀ (୧ମ)—ପୃ ୪୯୮

(୬୯) "ଭରମୁଁ ସାଗର ବେଳାରେ × × ଆକୁଳେ ଯେ ମାଣିକ୍ୟ ଖୋଜି / ଏଥି ସେବା ମିଳଇ କାହିଁ ।" —ଗ୍ରଂଥାବଳୀ ୧ମ—ପୃ ୪୯୮/୪୮୯

Digitized by PPRACHIN, SOA

ଏ ବ୍ୟର୍ଥତା, ରହସ୍ୟଯାତ୍ରୀର ଏଇ ଅଂଗେନାଷ୍ଟ ଅନୁଭୂତି ବହୁ କରୁଣ ସ୍ନିପଥ-ସଂଗୀତରେ କାବ୍ୟାୟିତ ।

ଏ ଭାଂତି ବିକ୍ଷେପ ଭିତରେ ସନ୍ତ୍ରାର ଅଧୀରତା ସ୍ଵାଭାବିକ୍ ବଢ଼େ । ସଂଶୟ, ନୈରାଶ୍ୟ, ଦୋଦୁଲ୍ୟ-ମାନତା ଓ ବିଷଣ୍ଣତା ରହସ୍ୟ-ଯାତ୍ରୀର ନିତ୍ୟ ସାଥୀ । ଏମାନଂକ ସଂଗମୋହ ତ୍ୟାଗ କରିବାକୁ ହୁଏ । ଏହି ସଂଘର୍ଷ ଭିତରେ କବି ହୃଦୟରେ ତଥାପି ଆଶାର ଦୀପଟିକୁ ସଯତ୍ନରେ ଜଳାଇ ରଖିଛଂତି । ପ୍ରାଣର ଅତିଥି ଆସିବେ । ଜୀବନ ଧନ୍ୟ କରି କବି ତାଂକୁ ସମାଦର କରିବେ । ଆପଣାକୁ ନୈବେଦ୍ୟ କରି ତାଂକୁ ସମର୍ପି ଦେବେ—ଏଇ ଆଗ୍ରହ ଅଭିଳାଷର ତୈଳସ୍ନିଗ୍ଧ ବର୍ତ୍ତିକାଟି ସବୁଦିନେ ହୁଏତ ପ୍ରଜ୍ଜ୍ୱଳିତ ରହିନପାରେ । କେତେବେଳେ କେଉଁ ଅସତର୍କ ମୁହୂର୍ତ୍ତରେ ଆଶାବିଶ୍ଵାସରେ ପ୍ରାଣପ୍ରତିଷ୍ଠା ଲାଭ କରିଥିବା ସେ କାମନା-ଦୀପଟି ନୈରାଶ୍ୟ ବାତ୍ୟାକୁଳିତ ହୋଇ ଲିଭିଯିବା ବିଚିତ୍ର ନୁହେ । ତାର କ୍ଷୀଣତେଜରେ ମିଳୁଥିବା ଯତ୍କିଂଚିତ୍ସାମାନ୍ୟ ଆଲୋକର ଆଶ୍ୱାସନା ଟିକକ, ମଧ୍ୟ ତାହାହେଲେ ହଜିଯିବ । (୭୦) କବିଂକର ଏଇ ପ୍ରତ୍ୟୟ ହୀନତାର ଆଶଂକା ପରବର୍ତ୍ତୀ କାଳରେ 'ମୃତ୍ତିକାଦର୍ଶନ'ର କାବ୍ୟୋପଲବ୍ଧିରେ ପ୍ରମୂର୍ତ୍ତ ହୋଇଛି । ସେଠାରେ ବିଶ୍ୱାସ ପ୍ରତିହତ; ଆଶା ସ୍ତିମିତ, ପ୍ରାଣର ସବୁ ଦଂଭ, ନିଷ୍ଠା ଓ ସ୍ଵୀକୃତି ଯେପରି ମୃତ୍ୟୁର ଅଂଧକାର ଭିତରେ ମୁହ୍ୟମାନ । ଜୀବନଦେବତାଂକ ଆହ୍ୱାନ ଆଉ କାନରେ ବାଜି ପାରୁନାହିଁ । ସବୁ ଆଶା ହରାଇ ବସିବାର ବିପୁଳ ଶୂନ୍ୟତା ଯେପରି ମୃତ୍ୟୁର ଭୟଂକର ଅତଳତା ଭିତରେ ଜୀବନର ସବୁ ଦୀପୋଜ୍ଜ୍ୱଳ ମୁହୂର୍ତ୍ତଗୁଡ଼ିକୁ ନିର୍ବାପିତ କରିଦେଉଛି । ଗୀତରେ ଏଇ ଆଶଂକାମୟ ଭବିଷ୍ୟତପାଇଁ ସଚେତନ ସାବଧାନବାଣୀ ଶୁଭୁଛି । ସମୟ ଗ୍ଭଲିଯାଉଛି । କବି ଚାହାଂତି ଦୁର୍ଦ୍ଦିନ ଆସିଯିବା ପୂର୍ବରୁ ଜୀବନରେ ଦେବତାଂକ ଅଧିଷ୍ଠାନ ଚିରଂତନ ହୋଇଯାଉ, ପୂଣ୍ୟାଭିଷେକ ଅନୁଷ୍ଠିତ ହୋଇଯାଉ । ସମ୍ମୁଖରେ ମୃତ୍ୟୁରୂପକ ଭଗ୍ନନଦୀ । ତା ପୂର୍ବରୁ ଜୀବନ ନାବ କୂଳର ନିଶ୍ଚିତ ଆଶ୍ରୟ ଖୋଜି ନେଉ ।

ଏ କବିତାରେ ବିଷାଦବାଦିତାର ମୂଳସ୍ୱରଟି ବୌଦ୍ଧ 'ଶୂନ୍ୟ' ଦର୍ଶନ ଉପରେ ଅବଲଂବିତ । କବି ଜଗତକୁ ଅଲୀକ, ଜୀବନକୁ କ୍ଷଣିକ ଓ ଜୀବକୁ ଭ୍ରମବିଳାସୀ ରୂପେ ଦେଖିବାରେ ଅଭ୍ୟସ୍ତ । କବିଂକ ପ୍ରତିପାଦନରେ ଜୀବନ ବୁଦ୍‌ବୁଦ୍ ଭଳି, ଦୀପଶିଖା ଭଳି, ନଦୀପରି, ଚଳଚ୍ଚିତ୍ର ଭଳି ସାମୟିକ । ଜୀବନର ସକଳ ସମ୍ପର୍କ ଓ ହୃଦୟର ରାଗ ଅନୁରାଗମୟ ଭାବାଂତରମାନ ବୁଦ୍ ବୁଦ୍ ଭଳି କ୍ଷଣ ବିଳୟ ଭଜଂତି । ଏ ଶୂନ୍ୟବାଦୀ ଅନସ୍ତିତ୍ୱତାର ଚେତନା ପରବର୍ତ୍ତୀ କାବ୍ୟ-ଚେତନାକୁ ଗଭୀର ଭାବେ ସମାଚ୍ଛନ୍ନ କରି କବିଂକ ରହସ୍ୟବାଦୀ ପ୍ରତ୍ୟୟକୁ ମଧ୍ୟ କଠିନ ଆଘାତ କରିଛି । 'ଶୂନ୍ୟବାଦ' କବିତାର ପ୍ରତିଧ୍ୱନି 'ମୃତ୍ତିକାଦର୍ଶନ' (ଅଧ୍ୟାୟ ୩ଟି)ର ମର୍ମବାଣୀ ମଧ୍ୟ । ସ୍ପଷ୍ଟ ଅନୁମିତ ହୁଏ, କବି ଗଭୀର ମାନସ-ସଂକଟ ଭିତରେ ସମ୍ମୁଖସ୍ଥ ସଂଶୟ-ଗୁଳ୍ମାକୀର୍ଣ୍ଣ ଦୁର୍ଗମ ପଥଧାରରେ ଜୀବନର ଅପଦ୍ଧଂତ ଲକ୍ଷ୍ୟଭୂମି ପ୍ରତି ବିଶ୍ରସ୍ତ ରହିପାରିନାହାଂତି । 'ମୃତ୍ତିକା ଦର୍ଶନ' ସେ ସଂଶୟାତ୍ମାର ନିରାଶ-କ୍ରଂଦନ, ପ୍ରତ୍ୟୟହୀନତାର ନିଷ୍ପ୍ରଦୀପ ତମିସ୍ରାଭିସାର । ତଥାପି କବି ଆତ୍ମାର ଦିବ୍ୟାଭିଳାଷ, ପ୍ରାଣର ସହଜାତ ଅନଂତ ଆସ୍ପୃହା ସକଳ ନାସ୍ତ୍ୟାତ୍ମକତା ଭିତରେ ନିଜକୁ କ୍ଷୀଣରୂପେ ହେଲେ ବି ପ୍ରତିଷ୍ଠା କରିବାକୁ

---

(୭୦) "ସେ ଯେ ଦୀପ ରଖିଛୁ ଜାଳି । ସଯତନେ ତଇଳ ଢାଳି
ନିଭିବରେ ଅଚିରେ ଗୃହ୍ମ, କ୍ଷୀଣତେଜ ଯିବ ମିଳାଇ ।"

—ଗ୍ରଂଥାବଳୀ ୧ମ—ପୃ ୪୯୯

Digitized by PPRACHIN, SOA

ଉଦ୍ୟମଶୀଳ । ଖ୍ରୀ: ୧୯୩୯ଠାରୁ କାବ୍ୟ-ଚେତନାରେ କବିମାନସର ଏଇ ଭାବ ସଂଘର୍ଷ, ଉତ୍ଥାନ ପତନ ଓ ଆଶା ନିରାଶାର ବିଭଂଗ ବିଚିତ୍ର ଚିତ୍ରରୂପ ପ୍ରତିଫଳିତ । ଏହାପରେ ଆଉ ଯାଯାବରାର ଉଚ୍ଛୃଙ୍ଖଳ ନିଶ୍ଚିଂତ ରୂପ ବାଢ଼ିବା ସଂଭବ ହୋଇନାହିଁ । ଆତ୍ମାର ଆଲୋକ ସନ୍ଧାନ ଓ ତମିର ସଂଘର୍ଷ ବସ୍ତୁ ଅନ୍ତର୍ନାଡ଼ିର କୁଟିଳାବର୍ତ୍ତ, ଅଧ୍ୟାତ୍ମ ସଙ୍କଟ ଭିତରେ କାବ୍ୟ ଚେତନାକୁ ସ୍ୱବିରୋଧୀ, ଲକ୍ଷ୍ୟଭ୍ରଷ୍ଟ ଓ ଅସ୍ପଷ୍ଟ କରିବାର ଇଂଗିତପୂର୍ଣ୍ଣ । 'ମୁକ୍ତିକାଦର୍ଶନ'ରେ ଚରମତମ ମନସ୍ତାତ୍ତ୍ୱିକ ବିପର୍ଯ୍ୟସ୍ତ ଭିତରୁ କବିଂଙ୍କ ରହସ୍ୟାଭିସାର ପୁନଶ୍ଚ ସମ୍ମୁଖ ଦିଗଂତର ସଂଧାନ ଲାଭପାଇଁ ଶେଷରେ ସମର୍ଥ ହେଲାଭଳି ଆଉ ମନେ ହୋଇନାହିଁ ।

'ମୃତ୍ତିକାଦର୍ଶନ ଓ ମୃତ୍ୟୁଚେତନା—ବୈକୁଂଠନାଥଂକ ଚିଂତାମାନସରେ ଜନ୍ମ, ଜୀବନ ଓ ମୃତ୍ୟୁକୁ କେଂଦ୍ରକରି ଉପଜାତ ହୋଉଥିବା ଭାବସଂଘର୍ଷମାନ ଶିଶୁ, ପୌଷ, ମାଟି ଓ ମୃତ୍ୟୁ ଶୀର୍ଷକ କବିତାମାନଂକରେ ରୂପାୟିତ । ଜନ୍ମ ଓ ମୃତ୍ୟୁର ଦୁଇ ସୀମା ଭିତରେ ଚଳମାନ ବ୍ୟକ୍ତି-ଜୀବନର ଅଭିବ୍ୟକ୍ତିମାନ ସାର୍ଥକ କିଂବା ମାୟାବାଦୀର ନେତି—ବୈକୁଂଠନାଥଂକ କାବ୍ୟ-ଚେତନାରେ ଏଇ ଦ୍ୱନ୍ଦ୍ୱର ଗଭୀର ଆଲୋଡ଼ନ ରୂପାୟିତ ।

ମୃତ୍ୟୁ ସଂପର୍କରେ ବୈକୁଂଠନାଥଂକ କାବ୍ୟାନୁଚିଂତା ଏକ ପ୍ରବଳ ଭାବସଂଘାତର ଚିତ୍ର ଦିଏ । ଜୀବନର ଅନିବାର୍ଯ୍ୟ ପରିଣତି, ଦୈବର ଅଲଂଘ୍ୟବିଧାନର ପରିଚୟ ଭିତରେ ତାଂକର କାବ୍ୟଚେତନା ସ୍ରଷ୍ଟାର ନିଷ୍ଠୁରତା ଓ ନିଃସଂପର୍କତ୍ୱକୁ ଆବିଷ୍କାର କରି ସୃଷ୍ଟି ପ୍ରୟାସ ମୂଳରେ କୌଣସି ଶାଶ୍ୱତ ମଂଗଳ/ ଆନଂଦ ଅଭିପ୍ରାୟର ଅସ୍ତିତ୍ୱ ପ୍ରତି ସନ୍ଦିଗ୍ଧ ହୋଇପଡ଼ିଛୁ; ଅପର ପକ୍ଷରେ ମୃତ୍ୟୁର ତାତ୍ପର୍ଯ୍ୟ ଓ ଜୀବନର ସାର୍ଥକତା ଖୋଜିବାର ଅକ୍ଳାଂତ ଉଦ୍ୟମ ଭିତରେ କବିସତ୍ତା ଦାର୍ଶନିକତା ଆଡ଼କୁ ଅଭିମୁଖୀ ହୋଇଯାଇଛୁ । ମୃତ୍ୟୁଘଟିତ ଅନୁଭୂତିରୁ ସଂଜାତ ଗଭୀର ଅନ୍ତର୍ଦାହ ତାଂକର ସ୍ୱଭାବ ସୁଲଭ ବିଷାଦବାଦୀ ଚେତନାକୁ ପ୍ରବଳଭାବେ କ୍ଷତବିକ୍ଷତ କରିଛୁ । ବୈକୁଂଠନାଥଂକ ବିଷାଦବାଦୀ ବ୍ୟକ୍ତିତ୍ୱ ମୂଳରେ ମୃତ୍ୟୁଚେତନାର ପ୍ରଭାବ ସ୍ୱଳ୍ପ ନୁହେଁ । (୭୧) କବି ଚେତନାରେ ମୃତ୍ୟୁ ଓ ହେମଂତ ଗଭୀର ତାତ୍ପର୍ଯ୍ୟ ବହନ କରଂତି । ପୌଷ ମୃତ୍ୟୁର ନିଃଶେଷତାର ପ୍ରତୀକ । ମୃତ୍ୟୁ ପୁଣି କବିମାନସରେ ନବବସଂତ ପ୍ରତ୍ୟାଶାର ପୃଷ୍ଠଭୂମି ରୂପେ ସ୍ୱୀକୃତ । ଜୀବନ-ଅମୃତର ସନ୍ଧାନ ଯେନି ମରଣର ସାଗର ଭିତରୁ କବିଂକର କାବ୍ୟଲକ୍ଷ୍ମୀ ସମୁଦ୍‌ଭୂତା । ମୃତ୍ୟୁ ଭିତରେ ଜୀବନର ଜୟଯାତ୍ରା ଓ ଆତ୍ମାର ଶାଶ୍ୱତଗାନ କସ୍‌ସା-ଗୌତମୀ, ପରିନିର୍ବାଣ, ସ୍ମୃତି-ତର୍ପଣ ପ୍ରଭୃତି କବିତାମାନଂକରେ ରୂପାୟିତ । (୭୨) 'ଦେହ-ବାସ ତ୍ୟାଗ ପୂର୍ବକ ମୁକ୍ତ ହଂସ ସମ ଚିର ମୁକ୍ତ ଆତ୍ମାର ଅମର ଗତି ପ୍ରଭୃତି ଭାବ ଚେତନା ଉପନିଷଦ / ଗୀତାର ପରଂପରା ପୋଷିତ । ତତ୍ତ୍ୱତଃ କବି ଆତ୍ମାର ଅମରତ୍ୱ, ମୃତ୍ୟୁ ଭିତରେ ଜୀବନର ନୂତନ ପରିଚୟ ଓ ଜନ୍ମ ମୃତ୍ୟୁର ମଧୁର ସଂପର୍କକୁ ମାନିନେଇଛଂତି । (୭୩) କବି ମୃତ୍ୟୁକୁ ସବୁଠାରୁ ଗୌରବାବହ ସ୍ୱୀକୃତି ଦାନ କରିଛଂତି, 'ଅନଂତ ଆଶ୍ରୟ, ପରମ ଆରାମ'

(୭୧) "ଯୌବନରୁ ମୃତ୍ୟୁଦର୍ଶନକୁ ପ୍ରାଣରେ ସ୍ୱୀକୃତିପତ୍ର ଦେଇଥିବାରୁ ତାଂକ ଗୀତରେ ନୈରାଶ୍ୟ ଓ ବିଷଣ୍ଣତାର ସ୍ୱର ଅନେକତ୍ର ଝଂକୃତ ।"
—ଚିଂତାମଣି ବେହେରା—କାବ୍ୟ ଓ କଳାକାର—ପୃ. ୯୬

(୭୨) "ସର୍ବତ୍ର ବିକାଶ ତବ ହେ ଅଶ୍ରୁତ ଧ୍ୱନି
ଜୀବନ ମୃତ୍ୟୁରେ ଶୁଭେ ନିତ୍ୟ ଆଗମନୀ ।"        —ଗ୍ରଂଥାବଳୀ ୨ୟ—ପୃ. ୪୮

(୭୩) "ମଂଗଳ ଦୃଷ୍ଟିରେ ଦିଶେ ସକଳ ସୁଂଦର ।"        —ଗ୍ରଂଥାବଳୀ ୨ୟ—ପୃ. ୪୮୧

Digitized by PPRACHIN, SOA

ରୂପଦାନରେ । (୭୪) ଚରଣାଂତର ସୁଖଶଯ୍ୟା ରୂପେ ହିଁ ମୃତ୍ୟୁର ଏ ମାତୃମମତାମୟ ମଧୁର ଆଶ୍ୱାସନା ।

ଲକ୍ଷ୍ୟ କରାଯାଇପାରେ ଭାରତୀୟ ଆଧ୍ୟାତ୍ମ-ଚେତନାର ଅସ୍ତିବାଚକତା କବିଂକର ଆତ୍ମାର ଅମରତ୍ୱ ଓ ଈଶ୍ୱର ଉଦ୍ଭାସିତ ଭାବଚେତନାକୁ ପରିପୁଷ୍ଟ କରିଥିଲେ ବି ମୃତ୍ୟୁ ଜିଜ୍ଞାସାର ରୂପ ଉଦ୍‌ବୋଧନ ମୁଖ୍ୟତଃ ଜୈନ / ବୌଦ୍ଧ 'ନେତିବାଦ'ର ଶୂନ୍ୟଚେତନା ଦ୍ୱାରା ସମାର୍ଜିତ । ଜନ୍ମ ଓ ଜୀବନ ସିଦ୍ଧାଂତ ବ୍ୟାଖ୍ୟାରେ କବି 'ଅମରତ୍ୱ ଓ ଅମର୍ତ୍ତ୍ୟ'ର ସ୍ଥିରାଲୋକରେ ନିଜକୁ ପୂର୍ଣ ପ୍ରତିଷ୍ଠିତ କରିଥିବା-ବେଳେ ଏହି ଶୂନ୍ୟବାଦୀ ଅନାତ୍ମ-ସିଦ୍ଧାଂତ ପ୍ରଭାବରେ ହିଁ ତାଂକର ମୃତ୍ୟୁ ସଚେତନତା 'ଆତ୍ମା' ସମ୍ପର୍କରେ କେବଳ ନିରୁତ୍ତର ନୁହେଁ, ଆତ୍ମାର ପ୍ରତ୍ୟକ୍ଷ ଅସ୍ୱୀକାର ମଧ୍ୟ କରିଛୁ । (୭୫) ଦର୍ଶନ ବିଶ୍ୱର ଓ ଜୀବନାନୁଭବର ଏକ ମିଳିତ ବିନ୍ଦୁ ଯେ କବି ଉପଲବ୍‌ଧିରେ ରଚନା ହୋଇପାରିନାହିଁ, ଏ ଭାବସଂଘାତ ଓ ଚେତନା ବିରୋଧ ତାର ବିଷମୟ କୀଟଦ୍ରଂଷ୍ଟ ଫଳ ।

କବିଂକ ପ୍ରାଣରେ ମୃତ୍ୟୁ ଯେଉଁ ପ୍ରବଳ ସଚେତନତା ଭରିଦେଇଛି ତାହା ଜୀବନର କ୍ଷଣିକତାର ଉପଲବ୍‌ଧି । ମୃତ୍ୟୁର ଆଘାତରୁ କବିଂକର ଜୀବନଜିଜ୍ଞାସାର ମୂଳସ୍ୱର ମର୍ମିତ । କବି ସ୍ୱୀକାର କରିଛଂତି, ଜ୍ଞାନ, ଦର୍ଶନ, ଶାସ୍ତ୍ର ପୁରାଣ ମୃତ୍ୟୁବେଦନାର ଉପଶମ କରିପାରଂତି ନାହିଁ । ମୃତ୍ୟୁର ରହସ୍ୟଭେଦ ଶକ୍ତି ଶାସ୍ତ୍ରର ନାହିଁ । ମୃତ୍ୟୁ ରହସ୍ୟକୁ ସ୍ୱୟଂ ଜୀବନ ମଧ୍ୟ ଭେଦ କରିପାରେ ନାହିଁ । ତେଣୁ ତାକୁ ଜୟ କରିପାରେ ନାହିଁ । ମୃତ୍ୟୁର ଅଂଧାର ରହସ୍ୟ ଭିତରେ ବରଂ ନିଜେ ହଜିଯାଏ । (୭୬) ଜୀବନର ଏ ବିଲୁପ୍ତି, ଏ ପରାଜୟକୁ କବି ଅନିବାର୍ଯ ସୃଷ୍ଟି ବିଧାନ ରୂପେ ଉପାୟହୀନତାରୁ ଭିତରୁ ମାନିନେଇଛଂତି । ମାତ୍ର ପ୍ରାଣରେ, ହୃଦୟରେ, ନିର୍ଦ୍ୱଂଦ୍ୱ ସ୍ୱୀକୃତିରେ ମାନି ପାରିନାହାଂତି । ଅବଚେତନରେ ମୃତ୍ୟୁ ପ୍ରତି ଅସହିଷ୍ଣୁତା ଓ ସ୍ରଷ୍ଟା ପ୍ରତି ବିକ୍ଷୋଭ ବିଦ୍ରୋହ ହିଁ ପ୍ରକାଶର ସୁଯୋଗ ନ ପାଇ ଅଂତର୍ଦାହରେ ପରିଣତ ହୋଇଛି । ସେଇ ଅଂତର୍ଦାହର ସୁପରିଣତ ରୂପାଲେଖ୍ୟ 'ମୃତ୍ତିକାଦର୍ଶନ' । ବୈକୁଂଠନାଥ ଆଦ୍ୟ କବି ଜୀବନରେ ଏକ ବିଶ୍ୱାସର ଆଶୀର୍ବାଦ ଲୋଡ଼ିଥିଲେ— ଯାହା ସକଳ ଘାତ ପ୍ରତିଘାତ ଭିତରେ ବି ଜୀବନକୁ ଜୀବନଦେବତାଂକ ସହ ନିତ୍ୟ ଦୃଢ଼ ବାଂଧିରଖିବ । (୭୭) 'ମୃତ୍ତିକାଦର୍ଶନ' ଆମୂଳାଂତ ଏହି ବିଶ୍ୱାସର ଉଚ୍ଛେଦ ସମ୍ବାଦ । (୭୮) ସଂଶୟ

---

(୭୪) ସ୍ମୃତି ତର୍ପଣ— —ଗ୍ରଂଥାବଳୀ ୨ୟ—ପୃ. ୪୮୧

(୭୫) "ଆଗେ ପଛେ ହସଇ କାଳ ଛଂଦିଛି କେ ନିରିଣା ଜାଲ
ସତ୍ୟ କାହିଁ ? ସକଳ ଭୁତ, କଳପନା କରଇ ବାଇ ।'
—'ମୃତ୍ତିକାଦର୍ଶନ'—ଗ୍ରଂଥାବଳୀ ୨ୟ—ପୃ. ୨୫୧

(୭୬) "ଯୁଗେ ଯୁଗେ ନରଶିଶୁ ଅଂଧକାରେ ଗୃହିଁ × × ପୁଚ୍ଛିଅଛି ଜୀବନର ଗୁପତ ରହସ୍ୟ ମାତର ରହସ୍ୟମୟୀ ମୌନ, ମୌନତର × × ମୃତ୍ୟୁ, ଅଂଧକାର-ଜୀବୀ ଶେଷ ପରିଣତି ।"
—'ମୃତ୍ତିକାଦର୍ଶନ'—ଗ୍ରଂଥାବଳୀ ୨ୟ—ପୃ. ୨୫୦

(୭୭) "ତୁମର ବିଶ୍ୱାସେ ଦୁଃଖ ଦୈନ୍ୟ ସହିବାରେ ହୁଏ କ୍ଷମ ।"
—'ଆରତି'—ଗ୍ରଂଥାବଳୀ—୧ମ ପୃ. ୧୭

(୭୮) "ହରିଛି ବିଶ୍ୱାସ ଦିବ୍ୟଜ୍ଞାନ ମୃତ୍ୟୁ କ୍ରୂର"
—'ସ୍ମୃତି ତର୍ପଣ'—ଗ୍ରଂଥାବଳୀ ୧ମ—ପୃ. ୪୮୫

Digitized by PPRACHIN, SOA

ଚେତନାରେ 'ମୃତ୍ତିକାଦର୍ଶନ' ପୂର୍ବାକ୍ ଚେତନାର ପ୍ରତିଧ୍ୱନି ବୋଲି ବେଳେବେଳେ ମନେହୁଏ। (୭୯) ଏହାର ଭାଷାରେ ସବୁ ମାଟିରୁ ଜନ୍ମ ଓ ମାଟିରେ ବିଲୟ; ଈଶ୍ୱର, ଧର୍ମ, ଶାସ୍ତ୍ର, ଭଲମଂଦ ଚିଂତା ଅସାର। ମୃତ୍ୟୁ ସମ୍ମୁଖରେ ଅଦୃଷ୍ଟ ପୁରୁଷ ଭଗବାନ ମଧ୍ୟ ଶକ୍ତିହୀନ। (୮୦) ଦେହ ମାଟିରେ ମିଶିଗଲା ପରେ ମୁକ୍ତି ପ୍ରଶ୍ନ ଅବାଂତର। ଦେହ ବିନା ଜୀବ ନାହିଁ। ଆତ୍ମା ଏକ 'ଗାଲ୍‌ଗଳ୍ପ, ମିଥ୍ୟା-କଳ୍ପନା, ସତ୍ୟ ମୃତ୍ୟୁ, ସତ୍ୟ ମାଟି।' "ମୃତ୍ୟୁର ମାତ ସକଳ ମାତର ସାର। ଏ ଜୀବନ 'ମହାଶୂନ୍ୟେ ବାରବାର କୀଡ଼ା।" (୮୧) ଅମରତ୍ୱର ଜୟଗାନ ନିରର୍ଥକ। ସ୍ରଷ୍ଟା ଉଦାସୀନ, ସୃଷ୍ଟି ସହ ସଂପର୍କ-ହୀନ। (୮୨) କ୍ଷଣିକର ଖେଳଭୂମି ଏ ଧରାଧାମରେ ପଥଧାରକୁ ସ୍ଥିତ ସଂଗ୍ରହ କରି ବ୍ୟକ୍ତି ମୃତ୍ୟୁ ଅଭିମୁଖେ ଯାତ୍ରାକରେ। ସମଗ୍ର ଜୀବନରୁ ତାର ସେତିକି ପ୍ରାପ୍ୟ। ମାଟିରୁ ସ୍ଥଳପଦ୍ମ ପରି ଜୀବନର କ୍ଷଣବିକାଶ। ସେତିକି ଆନଂଦ ସମୁଦାୟ ଜୀବନର ପ୍ରାପ୍ୟ।

ମୃତ୍ୟୁ ହିଁ ସାଂତ୍ୱନା। ମୃତ୍ୟୁରେ ଯଂତ୍ରଣାର ସମାପ୍ତି। ମୃତ୍ୟୁ ଜୀବନ ପାଇଁ ଏକମାତ୍ର ଆଶାର ସଂଗୀତ। (୮୩) ଦର୍ଶନ ନୁହେଁ; ସ୍ରଷ୍ଟା ପୁରୁଷ ନୁହଂତି। (୮୩କ)

ମୃତ୍ୟୁ ଦୁଃଖର କାରଣ ରୂପେ କବିଂକ ଜୀବନରେ ଆବିର୍ଭୂତ। ଆତ୍ମୀୟକୁ, ହୃଦୟର ସ୍ନେହଧନକୁ ଅପହରଣ କରି ସେ ଅନିର୍ବାଣ ଅଗ୍ନି-ଜ୍ୱାଳା ଜୀବନରେ ଜାଳିଦେଇଛି। ସେ ଯଂତ୍ରଣାରୁ ନିଷ୍କୃତି କେବଳ ସେହି ମୃତ୍ୟୁରେ ହିଁ ଅଛି। (୮୪) ତାର ମାତୃ ମମତା, ଆଶ୍ୱାସନା ସଂଗୀତ, ଶୀତଳଶାଂତି କବିଂକର ଏକମାତ୍ର ଅଭିଳଷିତ। (୮୫)

ମୃତ୍ୟୁର ବାସ୍ତବତାରେ ସକଳ ଅପାର୍ଥିବଚେତନା କବିଚେତନାରେ ଅବାସ୍ତବ ହୋଇପଡ଼ିଛଂତି। ମୃତ୍ୟୁ ସତ୍ୟ ରୂପେ ଜୀବନର ପ୍ରତ୍ୟକ୍ଷତାରେ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ସମାଗତ; ସେ ପ୍ରତ୍ୟକ୍ଷାନୁଭବରେ ମୁହୂର୍ତ୍ତ-ସତ୍ୟ ମୃତ୍ୟୁ ଅଲଂଘ୍ୟ ସ୍ୱରୂପରେ ଚିରଂତନ ସତ୍ୟକୁ ବିସ୍ତାରିତ। (୮୫କ) ମୃତ୍ୟୁର ଏ

(୭୯) (କ) ମିଶଇ ଅନଳେ ଦେଖ ଦେହ ପଂଚଭୂତେ।" —ଗ୍ରଂଥାବଳୀ ୨ୟ ଭାଗ—ପୃ. ୨୩୮
(ଖ) "ମାଟି !···ପ୍ରାଣୀ ଲଭଇ ଉଦ୍‌ଭବ, ପୁନଶ୍ଚ ଲଭଇ ତହିଁ ବିଲୟ ଗୌରବ।"
—ଗ୍ରଂଥାବଳୀ ୨ୟ—ପୃ. ୨୩୦

(୮୦) "ସତ୍ୟ ମୃତ୍ୟୁ, କାଳଗ୍ରସ୍ତ, ବିସ୍ତୀର୍ଣ୍ଣ ଏ ମାଟି / ତୁଷ୍ଣୀ ଭଗବାନ। ଥରେ ଗୃହିଁଲେ ତରସି।"
—ଗ୍ରଂଥାବଳୀ ୨ୟ—ପୃ. ୨୩୯

(୮୧) ମୃତ୍ତିକାଦର୍ଶନ—ଗ୍ରଂଥାବଳୀ ୨ୟ—ପୃ. ୨୩୯

(୮୨) "ଅଦୃଷ୍ଟ ପୁରୁଷ କିଏ ? ଦେବତା ମଂଗଳମୟ ?
—କେମନେ ମଂଗଳମୟ ? ଲିହ ଏତେ ବ୍ୟଥା ?"
—ମୃତ୍ତିକାଦର୍ଶନ—ଗ୍ରଂଥାବଳୀ ୨ୟ—ପୃ. ୨୩୫

(୮୩) "ଅପୂର୍ବମାନବ ପ୍ରାଣେ ମରଣ ସଂଗୀତ।" —ଗ୍ରଂଥାବଳୀ ୨ୟ—୨୩୫

(୮୩କ) "ଅଶ୍ରୁରେ ଦେଇନ ଆସି କେହି ବରାଭୟ,
ଦେଖିନାହିଁ ଛଂତ କାହିଁ ପ୍ରଭୁ ଦୟାମୟ।" —ଗ୍ରଂଥାବଳୀ ୨ୟ—ପୃ. ୨୩୯

(୮୪) "ଜାଣିଛି ସରିବ ଦିନେ ଅଶ୍ରୁକ୍ଷତ କ୍ଳେଶ।" —ଗ୍ରଂଥାବଳୀ ୨ୟ—ପୃ. ୨୪୪

(୮୫) "ସକଳ ସଂଗ୍ରାମ ଶେଷେ ଗୌରବ ନିର୍ବାଣେ / ଆଚ୍ଛାଦନ କରେ ଅଂତେ ଏ ସୃଷ୍ଟି ପରାଣେ,
ପରମ ଜନନୀ ସମ ଢାଳଇ ଆଶ୍ୱାସ"— —ଗ୍ରଂଥାବଳୀ ୨ୟ—ପୃ. ୨୫୦

(୮୫କ) "ସେହି ତୁମେ ପରମ ସତ୍ୟ ପ୍ରତ୍ୟକ୍ଷାନୁଭୂତି। ବାସ୍ତବ ଜୀବନ, ସାର ମରଣର ସ୍ମୃତି।"
—ଗ୍ରଂଥାବଳୀ ୨ୟ—ପୃ. ୨୪୩

Digitized by PPRACHIN, SOA

ଚିରଂତନତା ଜୀବନର କ୍ଷଣିକତାର ପରିପ୍ରେକ୍ଷୀରେ । (୮୬) ମରଣର ବିଳଂବିତ ପ୍ରଚ୍ଛଦ ଉପରେ ଜୀବନର ଖଂଡିତ ରୂପାୟନ । ଆସିବା ଓ ଯିବାର କ୍ଷଣିକ ଜୀବନ ମୃତ୍ୟୁର ଅଖଂଡ ପଥରେ ହିଁ ଅନୁବର୍ତ୍ତିତ । ଜୀବନର ଏ କ୍ଷଣିକତା ହିଁ ସତ୍ୟ । ଅଖଂଡ ମୃତ୍ୟୁ-ବିସ୍ତାର ମଧ୍ୟରେ ତାର ଏ ଖଂଡ-ସୌଂଦର୍ଯ୍ୟ ହିଁ କବି ସ୍ୱୀକୃତ । ସାଂତ-ଜୀବନର ଉପଲବ୍ଧି ଭିତରୁ କବିଚେତନାର ମୃତ୍ୟୁର ଏ ଅନଂତ ବ୍ୟାପ୍ତି ନିଖିଳ ଉପଲବ୍ଧି ଭିତରେ ପ୍ରମୂର୍ତ୍ତ ହୋଇଛି । ମୃତ୍ୟୁ ଆଉ ମୁଦ୍ରିତର ଘଟଣା ବିଶେଷ ନୁହେଁ । ଅନଂତ କାଳ ଧରି ଅନଂତ ଜୀବନ ମୃତ୍ୟୁ ପାରାବାରରେ ବିଲୀନ, ଏ ମୃତ୍ୟୁ ଶାଶ୍ୱତ, ସାମୁଦ୍ରିକ । (୮୭)

ମୃତ୍ୟୁର ଏହି ଶାଶ୍ୱତ ରୂପୋପଲବ୍ଧି-ତାର ଅଂଧକାରତମ ରୂପର ହିଁ ଉପଲବ୍ଧି । (୮୮) ଏ ଅଂଧକାର ଦୁର୍ଭେଦ୍ୟ, ମୃତ୍ୟୁର ରହସ୍ୟ ଦୁର୍ଭେଦ୍ୟ । ଅଂଧକାରର ବ୍ୟାପ୍ତିରେ ଖଂଡର, କ୍ଷଣର, ନିର୍ଦ୍ଦିଷ୍ଟତାର କିଛି ବି ସୀମାନିର୍ଦ୍ଧାରଣ ସମ୍ଭବ ନୁହେଁ । ଅଂଧକାର ଏଇ ଅବସ୍ଥାରେ ହିଁ ବିଶ୍ୱବ୍ୟାପ୍ତ, ଜାଗତିକ । ମୃତ୍ୟୁ ଅନଂତ, ଅସୀମ, ନିତ୍ୟ ବୋଲି କବିଂକ ଉଚ୍ଚାରଣରେ ତାର ଏଇ ରହସ୍ୟ ଦୁର୍ବୋଧ୍ୟତା ହିଁ ରୂପାୟିତ । ଏଇ ଅଂଧକାର ବଳୟକୁ ଅତିକ୍ରମ କରି କବିସତ୍ତା 'ମୃତ୍ତିକାଦର୍ଶନ'ର ଘାତପ୍ରତିଘାତ ପର୍ଯ୍ୟାୟରେ ମୃତ୍ୟୁ-ଭିନ୍ନ କୌଣସି ଆଲୋକସତ୍ୟର ଆଭାସ ଲାଭ କରିପାରିନାହିଁ । (୮୯)

ମୃତ୍ୟୁ ନିକଟରେ ଜୀବନର ସକଳ ରହସ୍ୟର ଉତ୍ତର ଏକ ଅନୁଚ୍ଚାରିତ ନୀରବତା । ମୃତ୍ୟୁ ସେହିପରି ଏକ ରହସ୍ୟ—ଯାହା ଜୀବନକୁ ଜୀବନାତୀତ ପ୍ରତି ଜିଜ୍ଞାସୁ କରିଥାଏ । ମୃତ୍ୟୁ ନଥିଲେ ଜୀବନର ପ୍ରଶ୍ନ ନଥାଂତା, ଉପଲବ୍ଧି ମଧ୍ୟ ନଥାଂତା ।

କବି ଚେତନାର ଅଗ୍ରଗତି କଂରୁ ଏହି ପ୍ରଶ୍ନ ଭିତରେ ହିଁ ସ୍ତବ୍ଧ ହୋଇଯାଇଛି । ମୃତ୍ୟୁର ଉପଲବ୍ଧିକୁ ସତ୍ୟ ବୋଲି ମାନିନେବାପରେ 'ମୃତ୍ୟୁପର' ତାଂକପାଇଁ ଯୁକ୍ତିହୀନ ହୋଇଯାଇଛି । ଜୀବନ କ୍ଷଣିକ ବୋଲି ହିଁ ସୁଂଦର ମଧୁର ହୋଇ ବଂଚିରହୁ—(୯୦) ଏ ଆତ୍ମ ପ୍ରବୋଧନା ଭିତରେ ନୈରାଶ୍ୟ ଓ ବିକ୍ଷୋଭର ସ୍ୱର ଅଧିକ ସ୍ପଷ୍ଟ । ଏ ପର୍ଯ୍ୟାୟରେ କବି ପ୍ରତର୍କିତ୍ୟା ବାସ୍ତବବାଦରୁ ସଂଶୟବାଦ ଆଡ଼କୁ ଅଗ୍ରସର । (୯୧) କବି ଆତ୍ମାର ରହସ୍ୟାଭିସାର ପଥରେ ଏହା ଚେତନାର

---

(୮୬) "ଜୀବନର ଅପୂର୍ଣ୍ଣତା ତହିଁ ପରିପୂର୍ଣ୍ଣ ।" —ଗ୍ରଂଥାବଳୀ ୨ୟ—ପୃ. ୨୪୫

(୮୭) "ସିଂଧୁ ଅଭିମୁଖେ ସ୍ରୋତସ୍ୱତୀ ବହିଯିବ
× × ଡାକଇ ମରଣ ଶାଂତ ଡାକଇ ସାଗର ।" —ଗ୍ରଂଥାବଳୀ ୨ୟ—ପୃ. ୨୪୬

(୮୮) (କ) "ମରଣ ସମାନ ସତ୍ୟ ଅଂଧକାର ମେଳେ" —ଗ୍ରଂଥାବଳୀ ୨ୟ—ପୃ. ୨୪୯

(ଖ) "ଶ୍ଳୈବଗେ ପରମ ସତ୍ୟ ମୃତ୍ୟୁ ବିଭାବରୀ ।" —ଗ୍ରଂଥାବଳୀ ୨ୟ—ପୃ. ୨୪୨

(୮୯) (କ) "ଶେଷ ପରିଣତି ମାଟି ମାଟି ଆଦରଣ" —ଗ୍ରଂଥାବଳୀ ୨ୟ—ପୃ. ୨୨୯

(ଖ) "ସତ୍ୟ ପୁଣି ମୃତ୍ୟୁ—ପରମ ବିଶ୍ୱାସ ମୋର, ନିତ୍ୟ ଭଗବାନ ।"
—ଗ୍ରଂଥାବଳୀ ୨ୟ—ପୃ. ୨୪୪

(୯୦) "ଜୀବନ ! ଜୀବନ ! ଜୀବ ସୃଷ୍ଟି ସୁବିପୁଳ ।
ସେ ମୋର ସୌଂଦର୍ଯ୍ୟ ସତ୍ୟ ସଙ୍ଗୀତ ଅତୁଳ ।" —ଗ୍ରଂଥାବଳୀ ୨ୟ—ପୃ. ୨୪୪

(୯୧) "ଅଟଳ ବିଶ୍ୱାସ ତୋର ଆତ୍ମ ପ୍ରବଂଚନା × × ବାସ୍ତବ ରୁ, ପୁଣି ମୁହିଁ
× × ମଧ୍ୟେ ଭଗବାନ × × ଧର୍ମଭୟ. ରାଜଭୟ, ଅଜାତର ଭୟ ।"
—ଗ୍ରଂଥାବଳୀ ୨ୟ—ପୃ. ୨୩୦

Digitized by PPRACHIN, SOA

ଅଂଧତାମସୀ (dark night of the soul) ପର୍ବ ବୋଲି ନିର୍ବିବାଦରେ କୁହାଯାଇପାରେ । (୯୨) କବି ନିଜକୁ ଜୀବନ-ଯାତ୍ରୀ ନୁହେଁ, ମରଣଯାତ୍ରୀ ବୋଲି ହିଁ ପ୍ରତିପନ୍ନ କରଂତି । (୯୩)

'ମୃତ୍ତିକାଦର୍ଶନ'ର କାବ୍ୟୋପଲବ୍ଧିରେ ଅଂଧକାରର ଆର୍ତ୍ତନାଦ ଭିତରେ ସ୍ରଷ୍ଟା ପ୍ରତି ବିଦ୍ରୋହ ମୁଖ୍ୟ ସ୍ୱର ରୂପେ ଉଚ୍ଚାରିତ ଏବଂ ବୈକୁଂଠ ମାନସରେ ସଂଶୟବାଦ (୯୪) ପ୍ରଗ୍ଳେଦନାକାଂକ୍ଷୀ ମଧ୍ୟ । ଏ ପ୍ରସଂଗରେ ସ୍ମରଣୀୟ, ଅଧ୍ୟାତ୍ମବାଦ ସହ, ରହସ୍ୟବାଦର ଗଭୀର ସଂପୃକ୍ତି ସତ୍ତ୍ୱେ ଅଧ୍ୟାତ୍ମବାଦୀ ରହସ୍ୟବାଦୀ ହେବା ଅପରିହାର୍ଯ୍ୟ ନୁହେଁ । ଏକ 'ଅତିଚେତନା' ସହ ବ୍ୟକ୍ତି ଅନୁଭୂତିର ପ୍ରତ୍ୟକ୍ଷ ସଂପର୍କ ହିଁ ରହସ୍ୟ ଚେତନାର ମୂଳ ଉପାଦାନ । ଏ ଚେତନାଶକ୍ତିଙ୍କୁ ବ୍ୟକ୍ତି 'ଈଶ୍ୱର' ନାମାଂକିତ କରିବାକୁ ବାଧ୍ୟନୁହେଁ । ମୃତ୍ୟୁ ମଧ୍ୟ ଅତିକାଗତିକତାର ଚେତନା ପ୍ରତୀକ ରୂପେ ଇଂଦ୍ରିୟୋତ୍ତର ଉପଲବ୍ଧି ଆଣିପାରେ । ମୃତ୍ୟୁ 'ମହାକାଳ' ସ୍ୱରୂପରେ ସେଇ ଉପଲବ୍ଧି ସ୍ତରରେ ହିଁ କ୍ଷଣକୁ ଶାଶ୍ୱତ, ଦେଖାକୁ ଅଦେଖା ସହିତ ସଂଯୁକ୍ତ କରିଦିଏ । ମାତ୍ର ମୃତ୍ତିକାଦର୍ଶନରେ ମୃତ୍ୟୁ ସଂପର୍କରେ ସେଇଭଳି ବ୍ୟାପକ ଓ ବିସ୍ତୃତ ଦୃଷ୍ଟି ସାମର୍ଥ୍ୟର ପରିଚୟ ମିଳେନାହିଁ । ମୃତ୍ୟୁ ଏକ ସଚେତନ କ୍ରିୟାଶୀଳ ଶକ୍ତି ଏବଂ ଅତିକାଗତିକ ବିସ୍ମୃତିରେ ବିରାଜିତ, ମାତ୍ର ତାହା ଯେ ବ୍ୟକ୍ତିର ସାଂତଚେତନାକୁ ଅନଂତ ଉଦ୍‌ବୁଦ୍ଧ କରିପାରେ, ଅସୀମର ସାକ୍ଷାତ୍ ପ୍ରତୀକ ରୂପେ ସୀମାକୁ ସ୍ପର୍ଶ କରିଥାଏ, କବି ଉପଲବ୍ଧି ଭିତରୁ ମୃତ୍ୟୁର ଏ ମହିମ୍ନ ପରିଚୟ ପ୍ରକାଶଲାଭ କରିନାହିଁ । (୯୫)

ରହସ୍ୟବାଦୀ ଉପଲବ୍ଧି ମାନବ-ମନସ୍ତତ୍ତ୍ୱର ଦୁଇ ବିପରୀତ କୋଟୀରେ ସଂଚରଣଶୀଳ । ମନାତୀତ ସ୍ତରଠାରୁ ଚେତନାର ଅବତଳ ପର୍ଯ୍ୟଂତ ଏହାର ପରିବିସ୍ତାର । ଅସ୍ତିତ୍ୱର ଏକ ପାର୍ଶ୍ୱରେ ପ୍ରକାଶ୍ୟରୂପ ଜୀବନ ଏବଂ ଅପରତ୍ର ଅପ୍ରକାଶ୍ୟ ସ୍ଥିତିରୂପ ମୃତ୍ୟୁ । ଚେତନାର ପ୍ରତ୍ୟେକ ସ୍ତରରେ ଏ ଜୀବନ ଓ ମୃତ୍ୟୁର ଭିନ୍ନ ଭିନ୍ନ ରୂପ ପ୍ରକାଶ । ଏକ ପାର୍ଶ୍ୱରେ ଜୀବନର ବିସ୍ତାର କ୍ଷଣିକ ପ୍ରତିଶ୍ୱାସଠାରୁ ନିତ୍ୟ ଉଦ୍‌ଭାସ ପର୍ଯ୍ୟଂତ । ସେହିପରି ଅପରପାର୍ଶ୍ୱରେ ମୃତ୍ୟୁ ମୁହୂର୍ତ୍ତର ଘଟଣା ବିଶେଷ ରୂପେ ଆବିର୍ଭୂତ ହୋଇ ଅନଂତବ୍ୟକ୍ତ ମହାକାଳ ରୂପେ ପ୍ରତିଭାତ ହୁଏ । ଏକ ପାର୍ଶ୍ୱରେ ମହାପ୍ରାଣ ବା ପରମ ଚିନ୍ମୟ ଓ ଅନ୍ୟ ପାର୍ଶ୍ୱରେ ମହା ଅଚେତନ ବା ନିଶ୍ଚେତନ । ଉଭୟତ୍ର ମହାବ୍ୟାପ୍ତିର ଅଖଂଡ ଅନଂତ ତତ୍ତ୍ୱ ବିସ୍ତାରିତ । ଏହା ହିଁ ରହସ୍ୟବାଦୀର ଶାଶ୍ୱତ ମୃତ୍ୟୁଚେତନା । ଅସ୍ତିତ୍ୱର ଉପସ୍ଥାପନାରେ

---

(୯୨) "ବିଶାଳ ସୃଷ୍ଟି ଅଂଧାର କୋଣେ ରୁ କ୍ଷଣଜୀବୀ /ଅଗଣିତ ଦୀପ ତୋହର ସମାନ ଗଲେଣି ଲିଭି । × × ସେଇ ଅଂଧାରୁ ଜନମ ତୋରରେ ମିଶିବୁ ତହିଁ × × କ୍ଷୀଣ ପବନରେ ଲିଭିଯିବୁ ଦିନେ……" —ଗ୍ରଂଥାବଳୀ ୨ୟ—ପୃ. ୨୫୩

(୯୩) "କେବଳ ଗୁଣିବା ସାର ମରଣ ଯାବତ ।" —ଗ୍ରଂଥାବଳୀ ୨ୟ—ପୃ. ୨୪୭

(୯୪) (କ) ତୋହପର ଆସେ ଯାଏ ଜୀବନ ନିଚୟ / ସୃଷ୍ଟିରେ ହୋଇନ କାହିଁ ଅଭ୍ୟୁଦୟ କ୍ଷୟ । —ଗ୍ରଂଥାବଳୀ ୨ୟ—ପୃ. ୨୦୦

(ଖ) "ବଂଧୁ ଭୁଲେ ହେଲକ ଦେଖା ? ଦଶିଲ କ ଆଲୋକ ରେଖା ?" —ଗ୍ରଂଥାବଳୀ ୧ମ—ପୃ. ୨୫୩

(୯୫) "ତା କୋଳେ ଲଗିଛୁ ଆମ ଅଖଂଡ ସଂଗ୍ରାମ ପରାଜୟେ ମୃତ୍ୟୁ ଜୟେ ପୂରେ ମନସ୍କାମ ।" —ଗ୍ରଂଥାବଳୀ ୨ୟ—ପୃ. ୨୩୨

Digitized by PPRACHIN, SOA

ଅନଂତ ଜୀବନର ଜୟଗାନ କରି ମୃତ୍ୟୁକୁ ଉପେକ୍ଷା କରିବା ଯେପରି ଏକଦେଶଦର୍ଶିତା, ମୃତ୍ୟୁର ଚରମତାକୁ ସ୍ୱୀକୃତ ଦେଇ ଜୀବନର ନିତ୍ୟତାକୁ ଅସ୍ୱୀକାର କରିବା ସେହିପରି ବିଚାର ମୂଢ଼ତା । ଜୀବନ ଓ ମୃତ୍ୟୁ ସୃଷ୍ଟି ରହସ୍ୟରେ ଉଭୟେ ସତ୍ୟ, କାହାରିଂକୁ ଫାଂକ ଦେବାର ଉପାୟ ନାହିଁ, ଏକକୁ ଅପର ଅପେକ୍ଷା ଶକ୍ତିଶାଳୀ କହିବାର କୌଣସି ଭିତ୍ତିଭୂମି ନାହିଁ । ଧର୍ମ ଦର୍ଶନତତ୍ତ୍ୱ ଯାହା ସ୍ୱାବ୍ୟସ୍ତ କରଂତୁ ପଛକେ, ରହସ୍ୟୋପଲବ୍‌ଧିରେ ଉଭୟ ପରସ୍ପରର ରୂପାଂତର ପ୍ରକାଶ ମାତ୍ର । ମୃତ୍ୟୁ ସ୍ୱୟଂ ଏକ ରହସ୍ୟାସ୍ୱାଦ । ସୃଷ୍ଟିକ୍ରିୟାର ଅନଂତ ରହସ୍ୟ ଭିତରୁ ଏକତମ; ଅବଶ୍ୟ ପ୍ରବଳତମ । ତାର ଏ ରହସ୍ୟମୟତାରେ ହିଁ ଜୀବନର ଉପୋଦ୍‌ଘାତ । ମୃତ୍ୟୁର ଅଖଂଡ ନିଶ୍ଚେତନତା ଭିତରୁ ଜୀବ ଯେ ଜୀବନର ଆକାଂକ୍ଷାକୁ ବାରଂବାର ଘୋଷଣାକରି ମାଟି ଭିତରୁ ପୁଣି ସଂଭୂତ ହୁଏ, ତାହାହିଁ ଜୀବନ ଓ ମୃତ୍ୟୁ ସଂବଂଧୀୟ ଯାବତୀୟ ତଥା ଜୀବନ ଓ ମୃତ୍ୟୁର ପରସ୍ପର ଅଂତର୍ଗତ ଏକମାତ୍ର ରହସ୍ୟ ବିସ୍ମୟ ।

ମାଟିରେ ଯେତ ସବୁ ସରିଯାଏ, ତେବେ ମାଟି ଭିତରୁ ଚେତନାର ଜାଗରଣ କିପରି ସଂଭବ, ମୃତ୍ୟୁ ଯାହାକୁ ଜଡ଼ କରିଦିଏ, ସେଇ ଜଡ଼ ଭିତରୁ ଜୀବନ କିପରି ରୂପାଂତର ହୁଏ, ମୃତ୍ୟୁ ସତ୍ତ୍ୱେ ଜୀବନର ଅଭିଯାନ କାଳବକ୍ଷରେ କିପରି ଅବ୍ୟାହତ ଏହାର ଉତ୍ତର ମିଷ୍ଟିକ ସ୍ୱାଭାବିକ ଭାବେ ଆଶାକରେ । ମୃତ୍ୟୁ ଯାହାର ଦେହକୁ ଧ୍ୱଂସ କରିଦିଏ, ତାର ସ୍ମୃତିକୁ ବା ଧ୍ୱଂସ କରିନପାରେ କିପରି ? ମୃତ୍ୟୁ ତେବେ କଣ ଦେହର ନା ଦେହୀର ? ସ୍ମୃତିରେ ଦେହୀର ପ୍ରାଣଧାରଣ ମୃତ୍ୟୁର ଚରମତାକୁ କେଉଁ ଶକ୍ତିରେ ଉଲ୍ଲଂଘନ କରେ ? ଦେହରୁ ଦେହୀକୁ ବାଦ୍‌ଦେଇ ବିଚାର କରିବା ଏ ଅବକାଶରେ ଅନିବାର୍ଯ୍ୟ ହୋଇପଡ଼େ ।

କବି ଗାନ କରଂତି, "ସକଳ ବଳୟେ ସାର ହୁଏ ପ୍ରୀତି-ସ୍ମୃତି ।" ଏ ବଳୟ କିଂତୁ କେଉଁ ସକଳର ? ଦେହର ? ନାମରୂପର ? ନା ସ୍ୱୟଂ ଅସ୍ତିତ୍ୱର ? ମନେହୁଏ, 'ମୃତ୍ତିକାଦର୍ଶନ'ର ଭାବଚେତନାରେ ଦେହ, ପ୍ରାଣ, ମନ, ଅସ୍ତିତ୍ୱ ସବୁ ଏକାତ୍ମବୋଧକ ରୂପେ ପ୍ରଯୁକ୍ତ । ସମୁଦାୟ ଅସ୍ତିତ୍ୱକୁ ଶାରୀରିକ, ପ୍ରାଣିକ, ମାନସିକ ପ୍ରଭୃତି ସତ୍ତ୍ୱାର ସ୍ତରଗତ ପ୍ରକାଶ ସହ ଅଭେଦ ସ୍ଥିତିରେ ଦେଖିବା ଭିତରୁ ହିଁ ଏ ଭାବ ବିପର୍ଯ୍ୟୟ ସଂଘଟିତ । ଦେହର ବିଳୟକୁ ଅସ୍ତିତ୍ୱ ବିଳୟ ଏବଂ ଜୀବନାବସାନକୁ ଆତ୍ମାବସାନ ବୋଲି ସିଦ୍ଧାଂତ କରିବା ମୂଳରେ କବିମାନସରେ ତାତ୍‌କାଳିକ ଦୁଃଖାଘାତଜନିତ ଭାବଗତ ମୁହ୍ୟମାନତାହିଁ ସକ୍ରିୟ ଏବଂ 'ବୌଦ୍ଧ ନିର୍ବାଣ' ଦର୍ଶନ ସଂପର୍କରେ ଏକ ଭ୍ରାଂତ ବିଚାର ବୋଧ ମଧ୍ୟ ପ୍ରଚ୍ଛନ୍ନ ବିଦ୍ୟମାନ ।

ବୌଦ୍ଧ ଦର୍ଶନକୁ ସମ୍ମାନ କରି ଜୀବନର ଅନିତ୍ୟତା, କର୍ମଫଳ, ଜନ୍ମାଂତରବାଦ ଓ ସ୍ମୃତି-ସଂପର୍କକୁ ସ୍ୱୀକାର କରିଛଂତି । ଏହି ଦର୍ଶନ ଜନ୍ମ ଓ ମୃତ୍ୟୁକୁ ଅଖଂଡ ସମୟର ନିତ୍ୟ ସ୍ରୋତଧାରାରେ ସ୍ଥାନ ଓ କାଳର ନିର୍ଦ୍ଦିଷ୍ଟ ପୃଷ୍ଠଭୂମିରେ ସଂଘଟିତ ଘଟଣା ବିଶେଷ ବୋଲି ଜ୍ଞାନକରେ । ପରମ ଚେତନା ଅସ୍ତିତ୍ୱହୀନ, ଅନାତ୍ମ (ଅନାତ୍ତ); ସତ୍ତ୍ୱା କେବଳ କାମନା ବାସନା, ଆର୍ତ୍ତି ଅଭିଳାଷର ପିଂଡୀକୃତ ପାର୍ଥିବ ସଂଭୂତି । ଜନ୍ମାଂତର ପ୍ରକ୍ରିୟା ଭିତରେ ସ୍ମୃତିବିନାଶ ମାଧ୍ୟମରେ ସତ୍ତ୍ୱାର କର୍ମବଂଧନ ନାଶ ଓ ବାସନା ଜଗତରୁ ନିଷ୍କୃତି ହିଁ ନିର୍ବାଣ । ବୌଦ୍ଧ ଚେତନାର ରହସ୍ୟବାଣୀ ସ୍ୱୀକୃତ ତାର ଅଷ୍ଟଶୀଳ ସାଧନ ଚର୍ଯ୍ୟାରେ ନୁହେଁ, ଏଇ ନିର୍ବାଣ ସ୍ୱରୂପର ଅନିର୍ବଚନୀୟତାରେ ସ୍ୱୀକୃତ । ମାତ୍ର ସତ୍ତ୍ୱା ବିନାଶଶୀଳ ଓ ଶୂନ୍ୟ ଏକମାତ୍ର ସତ୍ୟ । ମାଧ୍ୟମିକାର ଏ ପ୍ରତିପାଦନରେ ନିର୍ବାଣ ଉପଲବ୍‌ଧିଟି କାହାର ଓ କେଉଁଠାରେ, ଏ ବିଷୟରେ ବୌଦ୍ଧ ସିଦ୍ଧାଂତ ନୀରବ; ସଂଭବତଃ ଏଇଥି

Digitized by PPRACHIN, SOA

ପାଇଁ ଯେ ଏକ ପରମ ଅସ୍ତିତ୍ୱ ହିଁ ସ୍ୱୟଂ ନିର୍ବାଣଘଟିତ ସକଳ ଅସ୍ତିନାସ୍ତିର ବୋଧ ନିରପେକ୍ଷ ସ୍ଥିତରେ ବିଦ୍ୟମାନ ।

ବୈକୁଂଠନାଥଂକ ଦାର୍ଶନିକତା ଶୂନ୍ୟବାଦକୁ ଗ୍ରହଣ କରିଛି । କାଳର ଅକ୍ଷୟତ୍ୱକୁ ଗ୍ରହଣ କରିଛି । ମାତ୍ର ନିର୍ବାଣକୁ ଅର୍ଥଭେଦଦୃଷ୍ଟିରେ ମୃତ୍ୟୁର ପରିଭାଷା ରୂପେ ଗ୍ରହଣ କରିଥିବା ମନେହୁଏ । ନିର୍ବାଣ ଜୀବନାତୀତ, ମରଣାତୀତ ମଧ୍ୟ; ଅର୍ଥାତ୍ ପାର୍ଥିବ ଜନ୍ମ ଓ ମୃତ୍ୟୁ କ୍ରିୟାର ଅଧୀନ ନୁହେଁ, ନିସ୍ୱାମକ ମଧ୍ୟ ନୁହେଁ । ବରଂ ଜୀବନ ହିଁ ନିର୍ବାଣଲବ୍ଧ ଭବ ନିର୍ବାପନ ସୁଖର ଉପଭୋକ୍ତା, ମୃତ୍ୟୁ ନୁହେଁ । ଏହିଠାରେ ଅସ୍ତିତ୍ୱର ମରଣ ବିଜୟ ।

ବୈକୁଂଠମାନସରେ ମୃତ୍ୟୁ ହିଁ ଶେଷ ସିଦ୍ଧାଂତ, ଜୀବନ ନୁହେଁ । ରହସ୍ୟବାଦୀ ବିଶ୍ୱରେ ଜୀବନ ଓ ମୃତ୍ୟୁ ଉଭୟେ ଏକ ଅସ୍ତିତ୍ୱର ହିଁ ଦୁଇ ପାର୍ଶ୍ୱକ୍ରିୟା । ସେମାନଂକର ଶକ୍ତି ସ୍ୱତଂତ୍ର ଓ ଜୟ ପରାଜୟର ବିଗ୍ରହ ଭୂମି ଆପେକ୍ଷିକ । ମୃତ୍ୟୁର ମହା ନିଶ୍ଚେତନାକୁ କାଟି ଜୀବନ ଆବିର୍ଭୂତ ହୁଏ ଏବଂ ମୃତ୍ୟୁ ଭିତରେ ମଧ୍ୟ ନିତ୍ୟତା ସହ ସଂଯୁକ୍ତ ହୁଏ । ଏହିଠାରେ ଜୀବନ ମୃତ୍ୟୁଠାରୁ ଅଧିକ ଶକ୍ତିଶାଳୀ । ପଶ୍ଚାତ୍ତରେ ଜୀବନର ପାର୍ଥିବ ସ୍ଥିତିକୁ ମୃତ୍ୟୁ ଭାଂଗିଦିଏ । ନିତ୍ୟତା ସହ ତାର ସଂପର୍କକୁ ଆହ୍ୱାନ ଦିଏ । ଏହାହିଁ ତାର ସ୍ପର୍ଦ୍ଧା ଶକ୍ତି । ମୃତ୍ୟୁର ଏ ମହାଶକ୍ତି ଜୀବନ ପର ପ୍ରଚଂଡ ।

ମାତ୍ର ରହସ୍ୟଚେତନାରେ ମୃତ୍ୟୁର ମୂଲ୍ୟାବଧାରଣ ଜୀବନର ପରିପ୍ରେକ୍ଷୀରେ । ମୃତ୍ୟୁର ଯଦି କିଛି ମୂଲ୍ୟ ବିଶ୍ୱର ଥାଏ, ତାହା କେବଳ ଜୀବନକୁ ଅମୂଲ୍ୟ ବୋଲି ଉପଲବ୍ଧି କରିବାକୁ ସାହାଯ୍ୟ କରିବାରେ । ଜୀବନକୁ ଅନିତ୍ୟ ପ୍ରମାଣ କରିବାକୁ ଆପ୍ରାଣ ଉଦ୍ୟମ ଭିତରେ ସେ ତାର ନିତ୍ୟତାକୁ ଯେପରି ପରୋକ୍ଷ ସାବ୍ୟସ୍ତ କରେ । ତାହା ଜୀବନର ଗୌରବ, ମୃତ୍ୟୁର ଗୌରବ ବି । ଜୀବନକୁ ତାର ଏଇ ମହାମୂଲ୍ୟ ତାର ସ୍ୱୀକୃତି ଠିକକ ଦେଇପାରୁ ନଥିଲେ ମାନବ ଅନୁଚିଂତାରେ ମୃତ୍ୟୁ ବି ଅକିଂଚନ୍କର ହୋଇଯାଇଥାଂତା ।

କବି ଜୀବନକୁ ଶୂନ୍ୟବାଦୀର କ୍ଷଣବିଳାସ କରି ଦେଖିଛଂତି । ମାତ୍ର ମୃତ୍ୟୁକୁ ଅତିକ୍ରମ କରି ଯେ ମହାକାଳ ବିରାଜିତ, ମୃତ୍ତିକା ତାହାର ଅମର୍ତ୍ତ୍ୟ ସଂଧାନର ନିତ୍ୟ ସାଧନାଭୂମି, କବି ତାହାକୁ ମରଣର କୃଷ୍ଣାବରଣ ଭେଦକରି ଦେଖିପାରିନାହାଂତି । ମରଣର କଳାଗୁଳି ଭିତରେ ଉଭୟ ମରଣ ଓ ଜୀବନର ଅତୀତ ଅଦୃଷ୍ଟ ହୋଇ ରହିଯାଇଥାଂତି । ଏ ଅବକାଶରେ ମୃତ୍ୟୁ ସ୍ୱୟଂ ମହାକାଳରୂପେ ବିରାଜିତ । (୧୬) ବୈକୁଂଠ ଚେତନାରେ ଏହାହିଁ ମୃତ୍ୟୁର ମହାଜାଗତିକ ବା କସମିକ (cosmic) ଉପଲବ୍ଧି । ମାତ୍ର ଏ ମୃତ୍ୟୁ ଗୀତାର କରାଳମୁଖ ପ୍ରଚଂଡ ବିଶ୍ୱଗ୍ରାସୀ ମହାଚେତନାର ମହିମ୍ନ ସ୍ତରକୁ ଉନ୍ନୀତ ହୋଇପାରିନାହିଁ । ଏ ମୃତ୍ୟୁ ଜୀବନର ବିନାଶରେ ଆପଣାକୁ ପ୍ରତିଷ୍ଠା କରିଛି, ଅସ୍ତିତ୍ୱର ଉଦ୍‌ଘୋଷଣା କରିପାରିନାହିଁ ।

କବିଚେତନାରେ ଏ ମୃତ୍ୟୁ ଯେ ଏଇପରି ଏକମାତ୍ର ମହାସତ୍ୟ, କାରଣ ଆଜିଯାଏ ଧରାର ଜୀବନ ଏହାର ଶକ୍ତିକୁ ପ୍ରତିହତ କରି ଚିରଂତନ ହୋଇପାରିନାହିଁ । 'ଚିରଂଜୀବୀ'ର ପାର୍ଥିବ ସଂଭୂତ ସଂଭବ ହୋଇପାରିନାହିଁ । ମୃତ୍ୟୁ ସମ୍ମୁଖରେ ଜୀବୀର ସକଳ ସାମର୍ଥ୍ୟ ପ୍ରତିହତ, ଜୀବନ ସ୍ତବ୍ଧ । କବି ମୃତ୍ୟୁର ଶକ୍ତି ନିକଟରେ ନତମସ୍ତକ । ଜୀବନପାଇଁ ଗ୍ଲାନି ପୀଡ଼ିତ । ମରଣ ଅଭିଳଷିତ, କବି ଦୁଃଖ ଛଳରେ

---

(୧୬) "ଆପଣାର ଗ୍ରୁଏ ଶିଖା କ୍ରମେ ସିବ ଶଂକ / ଅଂତମେ ନିର୍ବାଣ ପ୍ରାପ୍ତି ଭସ୍ମେ ସ୍ଥିତରଖି ।
ଯେ ଦେହ କରିଛି ଗ୍ରାସ ଯେ ବା କଲି ଗ୍ରାସ / ସକଳର ଲାଗି କାଳ ତୀବ୍ର କାଳ ଉପହାସ ।"
—ଗ୍ରଂଥାବଳୀ ୧ମ—ପୃ. ୨୪୨

Digitized by PPRACHIN, SOA

ଭୂଧିସିକ୍ତ ଜୀବନରୁ ନିଷ୍କୃତି ସ୍ୱାଭାବିକ ବୋଲି । ଏହା ସ୍ପଷ୍ଟ ଯେ, ମୃତ୍ୟୁର ଅନିବାର୍ଯ୍ୟତା ତାକୁ ଏଠାରେ ଯେତେ କାବ୍ୟ-ଗୌରବ ଦାନ କରିଥିଲେ ବି କବିମାନସରେ ତାର ସ୍ୱୀକୃତି ଆହ୍ଲାଦଦାୟୀ, ଶ୍ଳାଘ୍ୟ ନୁହେଁ । ଏ ମନସ୍ତତ୍ତ୍ୱର ସୂକ୍ଷ୍ମ ପ୍ରକ୍ରିୟାଟି ନିରୁପାୟତାର, ବାଧ୍ୟବାଧକତାର, କବିଂକର ମୃତ୍ୟୁଗାନରେ ଯେତେ ଉଲ୍ଲାସ, ତୃପ୍ତିର ଉଚ୍ଚାରଣ ଥିଲେ ବି ମୂଳସ୍ୱରଟି ବେଦନାର ଅଶ୍ରୁଳ ଅଶ୍ରୁ-ଆଳାପ । (୯୭)

ମୃତ୍ୟୁର ପରିବ୍ୟାପ୍ତ ଘନାଂଧକାର ମଧ୍ୟରେ ଜୀବନର ଶିଖା କ୍ଷଣିକପାଇଁ ଜଳେ ଓ ନିଭେ । କବି ସେହି କ୍ଷୁଦ୍ର ମୁହୂର୍ତ୍ତର ଆଲୋକ-ଗୌରବ ଗାନ କରିବାକୁ କୁଂଠିତ ନୁହଂନ୍ତି । ମାତ୍ର ତାର ନିର୍ବାପିତ ହୋଇଯିବାର ବିଷଣ୍ଣ କରୁଣତାଟିକୁ, ବିଧୁର ସ୍ୱଗତାଳାପଟିକୁ ଲୁଚାଇ ପାରନାହାଂନ୍ତି । ମୃତ୍ୟୁ ଯଦି ମହତ୍ତମ, ପରମ ଅଭିଳଷିତ, ସୁଂଦର ଓ ମଧୁର, ମରଣ ଯଦି ଜୀବନର ସାର୍ଥକତାଦାନକାରୀ ତେବେ ଏ ଅଶ୍ରୁସଂଗୀତ କାହିଁକି ? ଜୀବନ ବ୍ୟର୍ଥ ହୋଇଗଲା ବୋଲି ଅନୁଶୋଚନା କାହିଁକି ? ସଂଗୁପ୍ତ ମନଶ୍ଚେତନାରେ କବି ଜୀବନର ସକଳ ବ୍ୟର୍ଥତାପାଇଁ ମରଣକୁ ଦାୟୀ କରିଛଂନ୍ତି । ସଂତାନ ଅପହରଣ କରି ମୃତ୍ୟୁ କବି ଆତ୍ମାକୁ ଯେ ସଂତପ୍ତ କରିଛି, ତାର ଉପଶମ ପାଇଁ ମୃତ୍ୟୁ ଛଡ଼ା କବିଂକର ଉପାୟାଂତର ନାହିଁ । ଜୀବନର ଶେଷଦିନ ପର୍ଯ୍ୟଂତ ମରଣର ଏ କ୍ରୂର ନିଷ୍ଠୁରତାକୁ ସେ ଭୁଲିପାରିବେ ନାହିଁ । ମୃତ୍ୟୁର ପ୍ରତିଶୋଧ ନେବାକୁ କିଂନ୍ତୁ ସେ ଅକ୍ଷମ । ସେହି ନିଷ୍ଫଳ ପୌରୁଷ, ଜୀବନର ସେହି ନିଃସହାୟ ବିଡଂବନା ହିଁ କବିଂକୁ ଜୀବନ-ସଂକୁଚିତ କରିଛି । କାବ୍ୟସ୍ୱରରେ ମୃତ୍ୟୁର ଜୟଗାନ ଅନେକଟା ପରାଜିତ ନତମସ୍ତକ ସୈନିକର ବିରୋଧୀ ଓ ବିଜୟୀ ଶକ୍ତିକୁ ସ୍ୱୀକୃତି ଦାନ । ଏ ପ୍ରଶସ୍ତିଗାନ ଆତ୍ମତୃପ୍ତିରୁ ଉଚ୍ଚାରିତ ଆହ୍ଲାଦ ସଂଗୀତ ନୁହେଁ; ବରଂ ମୃତ୍ୟୁର ଆଘାତରେ ବିଶ୍ୱାସର ଦୁର୍ଜୟ ଦୁର୍ଗ ଭାଂଗିଯିବା ଅବସ୍ଥାରେ ଏହା ଆତ୍ମାର ସଂଶୟ ଗାନ, କବି କଂଠରେ ମରଣର ଜୟଗାନ ଆତ୍ମଦହନ ଓ ଅଭିମାନର ପ୍ରତିକ୍ରିୟା ମାତ୍ର । ମୃତ୍ୟୁକୁ ପରମାତ୍ମମୀୟ ରୂପରେ ଦେଖିବାର ନିଜର ଭାବିବାର ପ୍ରୟାସ ମୂଳରେ ରହିଛି ଜୀବନ ପ୍ରତି ଅଭିମାନ—ଯେହେତୁ ଜୀବନକୁ ନିଜର କରି ରଖିହେଲା ନାହିଁ ।

ଏ ମୃତ୍ୟୁ ଚରମ । 'ମୃତ୍ତିକା ଦର୍ଶନ'ର ମୃତ୍ୟୁ ଅନୁଚିଂତା ଅନାଦି, ଅନଂତ ଓ ଅସୀମ ତତ୍ତ୍ୱକୁ ଧାରଣ କରିଥିଲେ ବି ରହସ୍ୟବାଦୀ ଶାଶ୍ୱତ ପର୍ଯ୍ୟାୟକୁ ଉନ୍ନୀତ ହୋଇପାରି ନାହିଁ; କାରଣ, ଏଥିରେ ଆଶା, ବିଶ୍ୱାସ, ଆନଂଦର କଥା କିଛି ନାହିଁ । ମରଣ ହିଁ କବିଂକର ଏକମାତ୍ର ଆଶା । ନିରଣାର କବଳରୁ ସେ ଜୀବନକୁ ମୁକ୍ତ କରିପାରେ, ଏହା ହିଁ ତାର ଆନଂଦ ରୂପର ସର୍ବୋତ୍ତମ ପରିଚୟ ।

ମିଷ୍ଟିକ ଦୁଃଖର ଗାନ କରିପାରେ, ବ୍ୟଥାର କଥା କହିପାରେ, ଅଂଧକାରର ଆଶଂକା କରିପାରେ, ମାତ୍ର ନିରାନଂଦର ଅନଂତତାରେ ବିଶ୍ୱାସୀ ନୁହେଁ । ତାପାଇଁ ମୃତ୍ୟୁରେ ହଜିଯିବା ଜୀବନର ପରିସମାପ୍ତି ନୁହେଁ । ବୈକୁଂଠନାଥ ଜୀବନକୁ ମୃତ୍ୟୁରେ ବିଳୟ ଦେଖିଛଂନ୍ତି । ଅଥଚ ମୃତ୍ୟୁ ଭିତରୁ ଜୀବନର ଉଦ୍‌ଭବର କଥା କହିପାରି ନାହାଂନ୍ତି, ମୃତ୍ୟୁ ରୂପକ ସାଗରରେ ଜୀବନ ରୂପକ ନଦୀ ଆପଣାର ଏକକଗାନକୁ ଛାଡ଼ି ତା ସହ ମିଳିତଗାନ କରିବ—ଏତିକି ସ୍ୱୀକୃତି ବ୍ୟତୀତ 'ମୃତ୍ତିକା-ଦର୍ଶନ'ରେ ମୃତ୍ୟୁର ଜୀବନ ସହ ଅନ୍ୟ କୌଣସି ସଂଯୋଗ ପ୍ରତିଷ୍ଠା ହୋଇପାରି ନାହିଁ ।

ରହସ୍ୟବାଦୀ ଉପଲବ୍‌ଧିରେ ସଚରାଚର ମୃତ୍ୟୁ ଏକ ଅତିସଚେତନ ଅବସ୍ଥା । ଅସୀମର ଏକ ପ୍ରମୂର୍ତ୍ତ ରୂପାୟନ, ଯାହା ଅସୀମର ଶକ୍ତି ସଂପର୍କରେ ଆଭାସ ଦେଇଥାଏ ମାତ୍ର । ମୃତ୍ୟୁ ଜୀବନର

(୯୭) "ମୃତ୍ତିକା ସଂଗୀତ ପ୍ରାଣେ କରଇ ଅସ୍ଥିର
ତା ଠାରୁଁ ମଧୁରତର ଶୁଣି ନାହିଁ ଗୀର ।"
—ଗ୍ରଂଥାବଳୀ ୨ୟ—ପୃ. ୨୪୫

Digitized by PPRACHIN, SOA

ବିରୋଧୀ ବା ସମାପ୍ତି ନୁହେଁ, ବରଂ ପ୍ରସ୍ତୁତି—ଏବଂ ଅସୀମ ସହ ଅନ୍ତରର ସଂଯୋଗବିନ୍ଦୁ । ମୃତ୍ୟୁ ମାଧ୍ୟମରେ ଜୀବନର ଅନଂତତ୍ୱ ସତ୍ତ୍ୱ, ଦେହାତୀତ ସତ୍ତ୍ୱ, ଅସୀମ ଓ ଅତି-ଜାଗତିକତା ସତ୍ତ୍ୱ ସ୍ୱଚ୍ଛନ୍ଦ ଯୋଗାଯୋଗ ଘଟେ । ମୃତ୍ୟୁ ମାଧ୍ୟମରେ ଜୀବନର ଦେହବଂଧନରୁ ପ୍ରଥମ ପୂର୍ଣ ନିଷ୍କ୍ରମଣ ଘଟେ । ତେଣୁ ରହସ୍ୟବାଦୀ ଚେତନାରେ ମୃତ୍ୟୁ କେଉଁଠାରେ ବି ନିଜ ସ୍ୱରୂପରେ ଶେଷ କଥା ନୁହେଁ । ଜୀବନର ଅନ୍ତିମ ପରିଣତି ନୁହେଁ । ମୃତ୍ୟୁରେ ହିଁ ଜଣାଯାଏ ବୋଲି ତ ଜୀବନ ଦୁର୍ଲଭ । ବୈକୁଂଠମାନସରେ ମୃତ୍ୟୁ ଘଟିତ ବିଷାଦବାଦୀ ଜଡ଼ତା ତାଂକ ମନଶ୍ଚେତନାର ଏକ ଭୟଂକର ବିପର୍ଯ୍ୟସ୍ତ ଓ ସଂଘାତମୟ ମୂହୂର୍ତ୍ତର କଥା କହୁଛି । 'ମୃତ୍ତିକାଦର୍ଶନ' ପରବର୍ତ୍ତୀ କାବ୍ୟ-ରୂପରେ ମଧ୍ୟ କବିଂକର ମେଟାଫିଜିକାଲ୍ ଦୃଷ୍ଟିଭଂଗୀ ଆଉ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଭିତରେ ସଂହତ ରହିପାରି ନାହିଁ । ପ୍ରାଣର ସବୁ ଅନ୍ୱେଷଣ ଯେପରି ମୃତ୍ୟୁର ନିଃଶବ୍ଦତା ଭିତରେ ଶେଷ ହୋଇଯାଇଛି । କେତେବେଳେ ଏଇ ନିଃସହାୟତା ଅଶ୍ରୁବିଂଦୁ ରୂପେ ଝରିପଡ଼ୁଛି, କେତେବେଳେ ତାତ୍ତ୍ୱିକତାର ଶରଣାପନ୍ନ ହୋଇଛି ଆଉ କେତେବେଳେ ସଂଶୟର ବାଲିବଂଧ ଉପରେ ପ୍ରମାଦ ଗଣିଛି ।

'ମୃତ୍ତିକାଦର୍ଶନ'ର ମୃତ୍ୟୁ-ସ୍ୱୀକୃତି ଓ ଜୀବନ-ଉପେକ୍ଷା ଏକ ସ୍ୱାଭାବିକ ଭାବଚେତନାର କ୍ରମ-ପରିଣତି ମୂଳକ କାବ୍ୟ-ସଂବାଦ ନଥିଲା । ବରଂ ଏହା ତାଂକ ଚେତନାର ଏକ ଅନାବିଷ୍କୃତ ସ୍ୱରୂପର ଅପ୍ରତ୍ୟାଶିତ ଉନ୍‌ମୋଚନ ଆଘାତ ରୂପେହିଁ ସମୁଚ୍ଚାରିତ । କବିଚେତନା ଏ ଯାବତ୍, ସଂସାର ଅଳୀକ, ସଂପର୍କ ମିଥ୍ୟା ଓ ଜୀବନକୁ ଭ୍ରାଂତି ରୂପେ ଦେଖିବାରେ ଅଭ୍ୟସ୍ତ ଥିଲା । ଅପାର୍ଥିବ ଜଗତହିଁ ତାର ଏକମାତ୍ର ଶାଶ୍ୱତ-ସଂଧାନର କ୍ଷେତ୍ର ଥିଲା । ଏ ପରିପ୍ରେକ୍ଷୀରେ ଜୀବନରେ ଏଇଭଳି ବାସ୍ତବ ଆଘାତ ତାଂକର ପୂର୍ବପୋଷିତ ଆଧ୍ୟାତ୍ମିକ ବିଶ୍ୱରକୁ ଏକପାର୍ଶ୍ୱିକ ଓ ଅପୂର୍ଣ ଦୃଷ୍ଟି ବୋଲି ପ୍ରମାଣିତ କରିବାକୁ ଯେପରିକି ଉଦ୍ଦିଷ୍ଟ ଥିଲା । ମାଟି ଓ ଆକାଶ, ଉଭୟର ସ୍ୱୀକୃତି ହିଁ ପୂର୍ଣ ଜୀବନର ସ୍ୱୀକୃତି; କବି ଏ ଯାବତ୍ ମାଟିକୁ 'ମିଛ' କହି ଆକାଶକୁ ଏକମାତ୍ର ବାସ୍ତବଜ୍ଞାନ କରିଥିଲେ । ମାଟିର ବାସ୍ତବତାକୁ ପ୍ରତିପନ୍ନ କରି ଅବାସ୍ତବ ଓ ବାସ୍ତବର ବିଶ୍ୱରଭୂମିର ଊର୍ଦ୍ଧ୍ୱରେ ଯେ ଅସ୍ତିତ୍ୱର ଉଦ୍‌ଘୋଷଣା କରିବାକୁ ହୁଏ, ମାଟିର ବାସ୍ତବତା ଉପରେ ପଦଚାଳନା କରି ଯେ ଅବାସ୍ତବର ଅନ୍ୱେଷଣ ପଥରେ ଯିବାକୁ ହୁଏ, ତାହାର ଶିକ୍ଷା ପାଇଁ ଯେପରିକି କବିଂକ ଜୀବନରେ ମୃତ୍ୟୁର ଏ ଅଭାବନୀୟ ପଦକ୍ଷେପ । ବୈକୁଂଠମାନସରେ ମୃତ୍ୟୁର ରହସ୍ୟବାଦୀ ଜିଜ୍ଞାସା ଯଦି ଉନ୍‌ମୋଚିତ ହେବାର ପ୍ରକୃତ ଅବକାଶ ଲଭ କରିଥାଏ, ତାହା ଏଇ ଦାରୁଣ ଅବସର, ଏଇ ଚରମ ଭାବବିପର୍ଯ୍ୟସ୍ତ ମୂହୂର୍ତ୍ତ । ପାର୍ଥିବ ଅସ୍ୱୀକୃତିକୁ ମୃତ୍ୟୁର ଏ ଦୁଃସହ ଅଭିଘାତ କବି ପୋଷିତ ସକଳ ଅପାର୍ଥିବ ଅଭିଳାଷକୁ ଯେପରି ଚୂର୍ଣ୍ଣୀଭୂତ କରି ତାଂକର ସମଗ୍ର ଚେତନାକୁ ମୃତ୍ତିକାଆଚ୍ଛନ୍ନ କରିଦେଲା ।

କବିଂକର ଏ ବାସ୍ତବ-ଅଭିଜ୍ଞାନ ଓ ମର୍ତ୍ତ୍ୟ-ସ୍ୱୀକୃତି ଅସଂଭବ ହୋଇ ରହିଥାଂତା, ଯଦି ସେ କେବଳ ନିତ୍ୟ ମଧୁବନ ବିଳାସୀ ହୋଇ ଚିରଦିନ ସୁଦୂର ଗୋଲକ ଅଭିଳାଷରେ ଜାଗ୍ରତ ଜୀବନକୁ ଆଖିବୁଂଜି ଦେଇଥାଂତେ । ଅଥଚ ଜୀବନର ପୂର୍ଣ ରୂପୋଦ୍‌ବୋଧନ ପାଇଁ ଅପାର୍ଥିବକୁ ଧାରଣ କରିବାକୁ ଏ ଧରଣୀର ବାସ୍ତବତା ଟିକକ ଯେ ଏକାଂତ ଅପରିହାର୍ଯ୍ୟ, ମୃତ୍ୟୁର ପ୍ରମର୍ତ୍ତ ସ୍ପର୍ଶ ବିନା କବି ସେ ଜୀବନ-ତତ୍ତ୍ୱ ପ୍ରତି ହୁଏତ ସଚେତ ହୋଇପାରି ନଥାଂତେ । ଅମର୍ତ୍ତ୍ୟ ବିହାରୀ କବିକଳ୍ପନା ମୃତ୍ୟୁର ଏକ ପ୍ରଚଂଡ ବିସ୍ଫୋରଣରୁ ହିଁ ମାଟି ପୃଥିବୀରେ ପ୍ରଥମ ପଦପାତର ଅବସର ଲଭିକଲା, ସେହି ଆଘାତର ମୂହ୍ୟମାନତା 'ମୃତ୍ତିକାଦର୍ଶନ' । ଏ ଯେପରି କବି ସଂପ୍ରକ ଆସିଥିବା, ଅବହେଳା କରି-ଆସିଥିବା ଚେତନାର, ସ୍ୱୀକୃତି ପାଇ ପାରିନଥିବା ଅବହେଳିତ ଜୀବନର ଚରମ ପ୍ରତିଶୋଧ । ମନୁଷ୍ୟର ପ୍ରେମକୁ ଅସ୍ୱୀକାର, ହୃଦୟ ସଂପର୍କକୁ ତାଚ୍ଛଲ୍ୟ, ଦାଂପତ୍ୟ ଓ ସନ୍ତାନ ସୃଷ୍ଟିକୁ ଘୃଣା,

Digitized by PPRACHIN, SOA

ବର୍ଜନ ଯେ ବୈରାଗ୍ୟର କେତେବଡ଼ ଅହଂକାର ମୃତ୍ୟୁ ତାର ଅବିଷ୍କାର ସଂବାଦ । କବିଙ୍କ ଅବଚେତନର ଏକ ଅନ୍ଧାର କୋଣକୁ ମୃତ୍ୟୁର ଏ ପ୍ରଥମ ଅଂଗୁଳି ସଙ୍କେତ । ବନ୍ଧନ ରୂପେ ତିରସ୍କୃତ ମର୍ତ୍ତ୍ୟ ପ୍ରୀତି ହିଁ ଅମର୍ତ୍ତ୍ୟ ଆନନ୍ଦର ପ୍ରମୂର୍ତ୍ତ ସମ୍ବେଗ । ଏ ସତ୍ୟର ଅନୁଭବ କବି ମୃତ୍ୟୁର କଷାଘାତ —ଆଶୀର୍ବାଦରୁ ହିଁ ଲାଭ କରିଛନ୍ତି । ତେଣୁ ମୃତ୍ୟୁ ଏତେ ପ୍ରିୟ, ଜୀବନ ଏତେ ଆତ୍ମୀୟ ହୋଇ-ଉଠିଛି । ପୁଣି ବ୍ୟକ୍ତିଗତ ଦୁଃଖ କବିଙ୍କୁ ବିଶ୍ୱସମ୍ବେଦୀ କରିଦେଇଛି । ସଂସାର. ଆତ୍ମୀୟ ସ୍ୱଜନ, ବିଶ୍ୱଜନ ଓ ପୁତ୍ର ଶୋକାତୁର ଅପର ହୃଦୟ ପାଇଁ କବି ଜୀବନ ସଂଗୀତ ଗାନ କରିବାକୁ ଉଦ୍‌ବୁଦ୍ଧ ହୋଇଛନ୍ତି ।

ଗଭୀର ବିଚାର କରି ଦେଖିଲେ, 'ମୃତ୍ତିକାଦର୍ଶନ' ଯଦିଓ ଏକ ମୃତ୍ୟୁ ସଂଗୀତ ତେବେ ତାର କାବ୍ୟଚେତନାରେ ଜୀବନ ହିଁ ପ୍ରଥମ ଓ ଅନ୍ତିମ ଜିଜ୍ଞାସା । ଜୀବନକୁ ସ୍ପର୍ଶ କରିଛୁ ବୋଲି ମୃତ୍ୟୁ ସମ୍ପର୍କରେ ସଚେତନତା, ଜୀବନର ପରାଜୟ ଘଟିତ ଗ୍ଲାନି ପାଇଁ ମୃତ୍ୟୁରେ ଏ ମୁହ୍ୟମାନତା । ମାତ୍ର ଯେତେ ମରଣ-ଗାନ କଲେ ବି କବି ଅନ୍ତଃଗଭୀରରେ ଜୀବନ ଅଭିଳାଷୀ, ବିଶ୍ୱଜୀବନ ଅଭିଳାଷୀ, ବିଶ୍ୱଜୀବଙ୍କ ପାଇଁ ଅନନ୍ତଜୀବନର ଅଭିଳାଷୀ;—ବିଚାର ବିଭ୍ରାନ୍ତ ଓ ମନସ୍ତାପଗ୍ରସ୍ତ ସଂଶୟାତ୍ମା ଏ ସଂଗୁପ୍ତ ମର୍ମାଭିଳାଷଟିକୁ ବୁଝି ନ ପାରିଲେ ମଧ୍ୟ କାବ୍ୟ ସ୍ୱରରେ ଏକ ଅସୀମଅନ୍ୱେଷାର ଉଦ୍‌ଘାଟନ କରୁ କରୁ ଆଭାସ ଇଂଗିତରେ ବିଦ୍ୟମାନ । 'ମୃତ୍ତିକାଦର୍ଶନ' ମୃତ୍ୟୁର କବିତା, ଆଉ ଜୀବନର କବିତା ବି । ମୃତ୍ୟୁର ଜୟଗାନ ଭିତରେ ଜୀବନର ବିଜୟ ଅଭିଳାଷ ପ୍ରଚ୍ଛନ୍ନ । 'ମୃତ୍ତିକା-ଦର୍ଶନ'ରେ ମୃତ୍ୟୁ ଓ ମାଟି ସମପର୍ଯ୍ୟାୟବାଚୀ, ଅସୀମର ଦ୍ୟୋତକ । ତଥାପି ଉଭୟେ ନିର୍ଜୀବ । ଏକମାତ୍ର ଜୀବନ ହିଁ ଚେତନାର ସ୍ପନ୍ଦନ ରୂପେ ଅଭିନନ୍ଦିତ । ଏ ସ୍ପନ୍ଦନ ଯେତେ କ୍ଷୀଣ ହେଲେ ବି, ବିବର୍ତ୍ତନ ଧାରାରେ ଏକ ଚରମ ଅଚୈତନ୍ୟ ଭିତରୁ ଚେତନାର କ୍ଷୀଣାବିର୍ଭାବ ରୂପେ କାଳବକ୍ଷରେ ପରମଚେତନା ଅଭିମୁଖେ ନିତ୍ୟ ଗତିଶୀଳ; କବିଙ୍କ ଦୁଃଖମଗ୍ନ ବିମୂଢ଼ତା ସାମୟିକ ଭାବେ ଏ ଗତି ଅଭୀପ୍ସାକୁ ବିସ୍ମୃତ ଥିଲେ ବି ଜୀବନକୁ 'କ୍ଷଣିକ ସତ୍ୟ'ର ଅଂଗୀକାର ଭିତରେ ପୂର୍ଣ୍ଣତାର ଅର୍ଦ୍ଧେକ-ସ୍ୱୀକୃତ ସଂବାଦ ପ୍ରକଟିତ । ତାତ୍‌କାଳିକତାର ଅବରୁଦ୍ଧ ଅଂଭୀପ୍ସା ପ୍ରତିଫଳିତ ରୂପରେ କବି ମୃତ୍ତିକା-ଗ୍ରସ୍ତ । ତଥାପି ମୃତ୍ୟୁ ରୂପକ ମହାନ୍ଧକାର ଭିତରେ ବିଦ୍ୟୁଲ୍ଲେଖା ତୁଲ୍ୟ ପ୍ରଚଣ୍ଡ ଅନୁଭବର ଉଦ୍‌ଭାସନରେ କବି ହୃଦୟର ଏକ ଶାଶ୍ୱତଭିଳାଷକୁ ପ୍ରତ୍ୟକ୍ଷ କରିଛନ୍ତି, ଯଦିଓ ସେ ଶାଶ୍ୱତ-ସ୍ୱରୂପ ଦୁଃଖ-ବିମୂଢ଼ ନଷ୍ଟ୍ରିୟ ଚେତନା ଭିତରେ ସ୍ପଷ୍ଟ ରୂପଲାଭ କରିବା ପ୍ରତ୍ୟାଶିତ ନଥିଲା ।

ଜୀବନର ଘଟଣା ଦୁର୍ଘଟଣାମାନଙ୍କୁ ଚରିତ୍ର କ୍ରିୟା ପ୍ରତିକ୍ରିୟା ଭିତର ଦେଇ ବ୍ୟକ୍ତି ଆପଣାର ଜୀବନ ସିଦ୍ଧାନ୍ତର ବିଚାର କରେ । ମିଷ୍ଟିକ ମଧ୍ୟ ବ୍ୟକ୍ତି ମନସ୍ତତ୍ତ୍ୱର ବହିର୍ଭୂତ ନୁହେଁ । ଜୀବନକୁ ଅସ୍ୱୀକାର କରି ଜୀବନାତୀତରେ ସନ୍ଧାନ ରହସ୍ୟ-ସାଧନା ସ୍ୱୀକୃତ ନୁହେଁ, ତାହା କୌଣସି ପୂର୍ଣ୍ଣାଂଗ ସାଧନାର ଅନୁଚର୍ଯ୍ୟା ବି ନୁହେଁ । ନାସ୍ତି ସାଧନା ଏକ ଆପେକ୍ଷିକ ସାଧନା । ଆସକ୍ତି-ଦର୍ଶନ ମଧ୍ୟ ଏକ ପାର୍ଶ୍ୱିକ ଦୃଷ୍ଟି । ବୈକୁଣ୍ଠନାଥଙ୍କ କାବ୍ୟଚେତନା ବିଭିନ୍ନ ସମୟରେ ଏ ଦୁଇ କୋଟୀରେ ଦୋଳାୟିତ; ମାତ୍ର ଯାତାୟାତର ଭାରସାମ୍ୟ ସ୍ଥାପନର ସହଜ ସୂତ୍ରଟିକୁ ଲାଭ କରିପାରିଥିବା ଭଳି ମନେ ହୁଏ ନାହିଁ । ତେଣୁ ଏତେ ତୀବ୍ର ବିକ୍ଷୋଭ, ଭାବ ସଂଘାତର ଘର୍ଷଣ ବିକଳ ସ୍ୱର ।

ଏ ଭାବ ବିକ୍ଷୋଭ ମିଷ୍ଟିକ ମଧ୍ୟ ଭୋଗକରେ । ତାର ମନସ୍ତତ୍ତ୍ୱ ମଧ୍ୟ ବ୍ୟକ୍ତି ଚେତନାର ସକଳ ଅବସ୍ଥା ଅଧୀନ । ତେବେ ତାର ପ୍ରତିକ୍ରିୟା ଏତେ ଅଗଭୀର ଓ ଉଚ୍ଛ୍ୱସିତ ନୁହେଁ । ସେ ଘଟଣା ସଂଘାତରେ ବିଚଳିତ ହୁଏ, ମାତ୍ର ସହସା ସିଦ୍ଧାନ୍ତ ନିଏନାହିଁ । ଭାବ-ଆଚ୍ଛନ୍ନତା ଭିତରେ ବି ସେ

Digitized by PPRACHIN, SOA

ଅର୍ଥ-ଜିଜ୍ଞାସା କରେ । ସେ ଅର୍ଥପ୍ରାପ୍ତିର ସାର୍ଥକତାରେ ହିଁ ତାର ଜୀବନର ସତ୍ୟତା ଲାଭ । ରହସ୍ୟବାଦୀର ସାଧନା ତେଣୁ ଅନୁଭୂତିର, ଉପଲବ୍ଧିର ସାଧନା ।

ସେ ଅନୁଭବ ଏକ ଅଦୃଶ୍ୟ ଅଜ୍ଞେୟର ମଂଗଳ ଇଂଗିତମୟ ବିଶ୍ୱାସ ଉପରେ ଆଧାରିତ । ଭକ୍ତ-ମଂଦର ବିଶ୍ୱର ରହସ୍ୟବାଦୀ ନିଜର ସୁଖ ଦୁଃଖ ବୋଧ ଭିତରୁ କରେନାହିଁ । ବ୍ୟକ୍ତିଗତ ଭାବ ଅନୁଭୂତି ତାର ସତ୍ୟର ବିଶ୍ୱର ମାପ ନୁହେଁ । ସୁଖ-ଦୁଃଖକୁ, ହର୍ଷ-ବିଷାଦର ଭାବାନୁସଙ୍ଗମାନଂକୁ ସେ ଅନୁଭବ କରୁଥିଲେ ମଧ୍ୟ ସବୁ ଜୀବନ ଦେବତାଂକର ବ୍ୟକ୍ତିଜୀବନ ପ୍ରତି ଉଦ୍ଦେଶ୍ୟମୂଳକ ଇଂଗିତ ପ୍ରେରଣ ବୋଲି ସେ ଗ୍ରହଣ କରିନିଏ । ଏଇଥିରୁ ଆସେ ସମର୍ପଣ, ସ୍ୱୀକୃତି । ଏହାର ମୂଳ ଉଦ୍‌ବୋଧନଟି ଆନଂଦର; ଭଗ୍ନଚିତ୍ତର ଅନନ୍ୟୋପାୟ ମୃତ୍ୟୁସ୍ୱୀକୃତି ନୁହେଁ ।

'ମୃତ୍ତିକାଦର୍ଶନ' ମୃତ୍ୟୁର ମୂହ୍ୟମାନତା; ବୈକୁଂଠନାଥଂକ ବାସ୍ତବବାଦୀ ଦର୍ଶନର ପୂର୍ଣ ରୂପ ଜିଜ୍ଞାସା । ଏତିକ କହିବାର କଥା, ଏ କବିତାର ଜୀବନ ଜିଜ୍ଞାସା କବିଂକୁ ଦାର୍ଶନିକ କରିଛୁ; ମାତ୍ର ମିଷ୍ଟିକର ସରଳ ସ୍ୱୀକୃତି, ସହଜ ବିଶ୍ୱାସ ଏବଂ ଶାଂତି ଓ ସମର୍ପଣର ତୀର୍ଥପୀଠ ନିକଟରେ ପହଂଚାଇ ପାରିନାହିଁ । ରହସ୍ୟର ଯାତ୍ରାପଥରେ ଏ ଅଂଧକାର ଆଚ୍ଛନ୍ନତା, ଅସହାୟ କାତରତା ଓ ଜୀବନ-ସଂଘର୍ଷର ନିଃସଙ୍ଗ ବିଳାପ ଆତ୍ମାର ସେହି ଭୟଂକର ବିପର୍ଯ୍ୟୟକ ତମିସ୍ରାଭିସାରର ରୂପଚେତନା ଯାହା 'ମୃତ୍ତିକାଦର୍ଶନ' ପରବର୍ତ୍ତୀ କାବ୍ୟୋଚ୍ଚାରଣରେ ମଧ୍ୟ ସମ୍ପୂର୍ଣ ତିରୋହିତ ହୋଇନାହିଁ ଏବଂ ଶେଷପର୍ଯ୍ୟଂତ କବି-ମାନସିକତାକୁ ତୃଷା ଅଧିକେ ସମାଚ୍ଛନ୍ନ କରିରଖିଛି ।

## ପରବର୍ତ୍ତୀ କାବ୍ୟୋପଲବ୍ଧି

କବି ଆତ୍ମାରେ ସଂଶୟ ଓ ବିଶ୍ୱାସର ଦ୍ୱଂଦ୍ୱ ଭିତରୁ ଜନ୍ମ ମୃତ୍ୟୁର ଗତାନୁଗତିକତାରେ ଜୀବନ ନିଜର ସ୍ଥାନ ଖୋଜିବୁଲିଛି । ବିରୋଧୀ ଭିତରେ ସମ୍ବନ୍ଧ ଖୋଜୁଛି । କବିଂକର ଅନୁଭୂତିର ପୃଥିବୀ ରୁକ୍ଷ, ଅଥଚ ଆଖିରେ ରମ୍ୟବୃଂଦାବନର ସ୍ୱପ୍ନ । କଳ୍ପନାର ଅଳକାକୁ ସାଜି ରଖିବାର ଦୁର୍ନିବାର ନିଶାରେ ଜୀବନ ଯେତେ ପ୍ରମତ୍ତ ହେଲେ ବି ମୃତ୍ୟୁର ଗୋଟିଏ କୁଠାରାଘାତ ସବୁ ନିଶ୍ଚିହ୍ନ କରିଦିଏ । ସ୍ୱର୍ଗ ଏବଂ ଆଲୋକ ଅପହଂଚ ହୋଇଯାଏ । ବାସ୍ତବତାର ଆଘାତରେ ହୃଦୟର ସବୁ କୋମଳ କାବ୍ୟକଳା ବିଶୁଷ୍କ ହୋଇଯାଏ ।

ତଥାପି ଏଇଭଳି ନୀରସ, ଶୂନ୍ୟ, ଭୟାନକ ମୁହୂର୍ତ୍ତରେ ହିଁ ଜୀବନରେ ରସ ଉପଲବ୍ଧିର ନୂତନ ଦ୍ୱାର ଉନ୍ମୋଚିତ ହୋଇଥାଏ । ଜୀବନ ଜଡ଼ ଉପରେ ଆତ୍ମ-ଶକ୍ତିରେ ପ୍ରତିଷ୍ଠିତ ରହିବାକୁ ଯେପରି ଏକ ଭୟଂକର ଜିଦ୍‌ଖୋର ଅବୋଧ କିଶୋର । ତାର ସ୍ୱପ୍ନମୟ ଆଖି ଦେଖେ ରୁକ୍ଷ, ନୀରସ, ଧରଣୀ ବକ୍ଷରେ ଆକାଶର ସ୍ନେହଧାରା ସଂଗୋପନରେ ଝରିପଡ଼େ । ସେ ପ୍ରୀତି ସ୍ପର୍ଶରେ ପୁଲକିତ ମାଟି ହୃଦୟର ଅମୃତ ଆନଂଦକୁ ସଂବହନ କରି ଫୁଲ ଫୁଟିଉଠେ । ଆକାଶର ଆର୍ଦ୍ରତା ତାକୁ ମଧ୍ୟ ସ୍ପର୍ଶକରେ । ଅସୀମର ଆଶ୍ୱାସନା ଭରିଦିଏ । ତପସର ତପ୍ତ ଖରକାଳ ହୁଏତ ତାର କୋମଳ ତନୁକୁ ଦଗ୍‌ଧ କରିଦେବ । ତଥାପି ରାତ୍ରିର କାକର ମୁହୂର୍ତ୍ତକ ପାଇଁ ହେଲେ ବି ତାକୁ ଶୀତଳ ଶାଂତି ଦେଇଯାଏ । ଆକାଶ-ଆଲିଂଗନରେ ମୁଗ୍‌ଧ ରୂପ-ସ୍ନାତ ଶିଶିର ବିଂଦୁରେ ଉଦୟ ଭାନୁର ନବାନୁରାଗ ଝଲସିଉଠି ଫୁଲ ଦେହରେ ତାର ପ୍ରୀତିସ୍ନିଗ୍‌ଧ କିରଣରୁ ଗାରେ ଲେପିଦିଏ । ଏଇ ମାଟିର ଫୁଲ, ଆକାଶର କାକର, ଟିଗୋଟିଏ ସଜପାଖୁଡ଼ା ଉପରେ ଝଲଝଲ ଏକ ମୁକ୍ତା ବିଂଦୁ,—

Digitized by PPRACHIN, SOA

କବିଂକ ସବୁ ପ୍ରଶ୍ନର ଉତ୍ତର ଯେପରି ଏକାଥରକେ ରୂପନେଇ ଉଦ୍ଭାସିତହୋଇଯାଏ । (୯୮) ଆକାଶ ଓ ପୃଥିବୀର ଏ ନିବିଡ଼ ଅଥଚ ସୁଦୂର ସମ୍ପ୍ରୀତିର ବାର୍ତ୍ତା ଯେପରି କବିଂକ ଅନ୍ୱେଷିତ ଜୀବନଦେବତାଂକ ସ୍ନେହାନୁରାଗ ସମ୍ବନ୍ଧରେ ନିଶ୍ଚିତ ଭରସାର ବାଣୀ ଶୁଣାଇ ଦେଇଛି । ଇଂଦ୍ରିୟୋପଲଭ୍ୟ ଏ ଜଗତ ଓ ଜୀବନର ଅଂତରାଳରେ ଏକ ଅଦୃଶ୍ୟ ଶକ୍ତି-ସକଳ ଆପାତଃ ବିନାଶଶୀଳତା ଭିତରେ ବି ଅସ୍ତିତ୍ୱକୁ ଆପଣା ସମ୍ମୋହନରେ ନିତ୍ୟ ଜାଗ୍ରତ କରି ରଖିଛି—ଏ ଯେପରି ତାର ଆଶ୍ୱାସନା—ମଧୁର ମମତା ସ୍ପର୍ଶ ।

କବିଂକ ନିରାଶାବାଦୀ ଭାବସ୍ରୋତର ଉଦ୍ଭ୍ରାନ୍ତତାରେ ବ୍ୟତିକ୍ରମ ଘଟାଇ ଜୀବନର ଏ ଚିରଂତନ ଆଶା-ସ୍ୱପ୍ନର ଏକ ମୁଗ୍ଧ ଉଦ୍‌ସାରଣ ରୂପଲାଭ କରିଛି 'ଶରତର ଦିବାଲୋକରେ' । (୯୯) ଯାହାକୁ ଏକ ଭିନ୍ନସ୍ୱରର କବିତା ବୋଲି ସହଜରେ ଅନୁଭବ କରିହୁଏ । ସ୍ୱାନୁଭୂତିର ସ୍ୱଚ୍ଛତା ଶରତର ପରିଚ୍ଛନ୍ନତା ସହ ଏକାତ୍ମତା ଲାଭ କରିଛି ।

ଋତୁ ପର୍ଯ୍ୟାୟରେ ଭାରତୀୟ ମାନସରେ ଶରତ ଯେଉଁ ଭାବଚିତ୍ରଟି ବହନକରେ, ତାହା ସ୍ନିଗ୍ଧ, ଶାଂତ ମାଧୁର୍ଯ୍ୟର, ପରିଚ୍ଛନ୍ନ ଓ ଉଜ୍ଜ୍ୱଳ ଶୁଭ୍ରତାର । ପ୍ରକୃତି ଯେପରି ତାର ସ୍ନେହାଂଚଳ ତଳେ ଧରଣୀକୁ ଆଚ୍ଛାଦିତ କରି ରଖିଥାଏ । ନିର୍ମେଘ ଆକାଶର ଦିଗଂତ ଘେରା ନୀଳିମା ବିସ୍ତାର ଓ ଶ୍ୟାମ-ସୁଂଦର ପୁଷ୍ପିତା ପୃଥିବୀ—ଶରତର ଶ୍ରେଷ୍ଠ ସୌଂଦର୍ଯ୍ୟ ସମ୍ଭାର । ତାର ଶୁଭ୍ର ପରିଚ୍ଛନ୍ନତା ଭିତରେ ନିର୍ମଳ ଆଲୋକର ବାର୍ତ୍ତାଟି ସ୍ପଷ୍ଟ । କବିଚେତନାରେ ଏହି ଶରଦୋପମ ନିର୍ମଳତା, ନିଷ୍କଳୁଷତା ସ୍ପଷ୍ଟ ଉପଲବ୍ଧିର ଦ୍ୟୋତନା । ଶାରଦ ପୃଥିବୀରେ ଜଳସ୍ଥଳମୟ ହୋଇ ପ୍ରକୃତିର ସ୍ନେହସ୍ପର୍ଶ ଭିତରେ ସଂଗୁପ୍ତ ଏକ ଅଜଣା ଅନୁରାଗଧାରା ଧରଣୀକୁ ଛୁଇଁଯାଇଛି । କବିଂକର ନିର୍ମଳ ଚେତନାକୁ ମଧ୍ୟ ପ୍ରସରି ଯାଇଛି । କା'ର (୧୦୦) ସର୍ବନାମୀ ବ୍ୟକ୍ତିଟି କବିଂକର ଜଣାଶୁଣା ଅଥଚ ଅଜଣା; ସମ୍ପର୍କର ଦେହଳୀ ଭିତରେ ତାକୁ କେବେ ବି ବାଂଧି ରଖିହେବନାହିଁ ।

ବଳାକାର ପଙ୍କ୍ତିରେ କବି ମୁକ୍ତିର ଆହ୍ୱାନ ଶୁଣିଛଂତି । ପକ୍ଷୀ ମୁକ୍ତିର ପ୍ରତୀକ । ତାର ପକ୍ଷରେ ଉଡ଼ିବାର ଉଦ୍‌ଗ୍ରତା । ପୃଥିବୀରୁ ଆକାଶକୁ ନିର୍ବାଧ ବିସ୍ତାର ସେ ପକ୍ଷର ମୁକ୍ତିସ୍ପଂଦନ । ଆକାଶ ମୁକ୍ତିର କ୍ଷେତ୍ର । ମୃତ୍ୟୁ ମୂହ୍ୟମାନ, ମୃତ୍ତିକା ଆଚ୍ଛନ୍ନ ଉଦାସୀ କବିପ୍ରାଣରେ ଏ ମୁକ୍ତିସଂଦେଶ ଅପୂର୍ବ ଭାବାଂତର ସୃଷ୍ଟି କରିଛି । ଏକ ଅଜଣା ଆନଂଦର ଆଶା ତାଂକୁ ଉଜ୍ଜୀବିତ କରିଛି । ପ୍ରକୃତିର ଆନଂଦ ସହ ହୃଦୟର ଆନଂଦ ସଂଯୋଗ ଲାଭକରି ଏକ ଶାଶ୍ୱତ ଆନଂଦର ସମ୍ଭାବନାରେ କବିଚିତ୍ତକୁ ଆଶ୍ୱାସନା-ମଧୁର କରିଛି ।

ଏଇ ଆନଂଦ, ସ୍ଥିରବୋଧ ଓ ଅନୁଭୂତିର ସ୍ପଷ୍ଟତା କବିଚେତନାର ଏକ ନିର୍ଦ୍ଦିଷ୍ଟ ସମାହିତ ଉପଲବ୍ଧିରୁ ଉଦ୍ଭାସିତ । ରଚନାଦୃଷ୍ଟିରୁ ଶାରଦୀୟ ଅନୁଭବର ସଫଳ ରସାଭିବ୍ୟକ୍ତି ଘଟି ପାରିନଥାଏ । ମାତ୍ର ରହସ୍ୟାତ୍ମକ ଭାବାନୁଭୂତି ବିଶ୍ଳେଷଣପାଇଁ 'ଶରତର ଦିବାଲୋକେ' କବିତାର

(୯୮) 'ଉପମାବିବ୍ରୋଧ'—ଗ୍ରଂଥାବଳୀ ୧ମ—ପୃ. ୫୬୭

(୯୯) "ଆଜି ଶରତର ଦିବାଲୋକେ"—(ରଚନାକାଳ ଗତ ୧୯୪୨)

ଗ୍ରଂଥାବଳୀ ୧ମ—ପୃ. ୫୬୩

(୧୦୦) "ନଭେ, ଜଳେ ଥଳେ ପରିବରିକେକାର, ଖେଳି ବୁଲେ ଅନୁରାଗ ।"

ଗ୍ରଂଥାବଳୀ ୧ମ ଭାଗ—ପୃ. ୫୬୩

Digitized by PPRACHIN, SOA

ଏକ ମୂଲ୍ୟବାନ ସ୍ୱୀକୃତି ରହିଛି । ଏହି ନବଲବ୍‌ଧ ଆଶା 'ମୃତ୍ତିକାଦର୍ଶନ'ର ନିର୍ଗୁଣ-ବକ୍ଷବ୍‌ଧ ଜୀବନ ସଂଗ୍ରାମ ପାଇଁ ଏକ ନୀରବ ଆତ୍ମ-ସ୍ନିଗ୍‌ଧ ସ୍ନେହାଂଚଳର ସଂଭାବନାକୁ 'ସିନ୍ଧୁ ତୀରେ' କବିତାର ଭାବ-ବାଣୀ ରୂପେ ମଧ୍ୟ ସଫଳ ଉପସ୍ଥାପନା କରିଛି । (୧୦୧)

ସିଂଧୁ ତରଂଗର ଉଦ୍‌ଭବ ଓ ବିନାଶ ଜୀବନ ଓ ମୃତ୍ୟୁର ଅହରହ ସଂଗ୍ରାମକୁ ପୁନରୁକ୍ତ କରିଛି । ଏହା ସହ ମାନବ ପ୍ରାଣର ଚିରଂତନ ଅମରତ୍ୱର ଆକାଂକ୍ଷାଟି ମଧ୍ୟ ବ୍ୟଂଜିତ । (୧୦୨) ସେଇ ବ୍ୟଂଜନାର ପୂର୍ଣ ତାତ୍ତ୍ୱିକ ଉପଲବ୍‌ଧି 'ସତ୍ୟ ହେଉ ଉଷା ଅଭ୍ୟୁଦୟ'ରେ ଭାବମଂଜୁଳତା ଲାଭକରିଛି ।

କ୍ଷଣିକତା ସହ ଚିରଂତନତାର ଅନ୍ୱିତି—ଏ ବୁଝାମଣା ଯେମିତି ଏକ ଅଘଟଣ ଭିତରେ ହିଁ ସଂଭବ ହୋଇଥାଏ । ମୃତ୍ୟୁରେ ଜୀବନର ଶୂନ୍ୟତାରେ ପୂର୍ଣତାର ଉଦ୍‌ଘାଟନ ପ୍ରତିଶ୍ରୁତି ମିଳେ । ପ୍ରକୃତିର ଶାଂତ ବକ୍ଷରେ ଅକସ୍ମାତ ଝଡ଼ ଆସେ ଏବଂ ଚାଲିଯାଏ । ତାର ଆସିବାର ଖବର ଶୁଷ୍କ ପତ୍ରଟି ଧରିରଖେ । ଗୋଟାଏ ପ୍ରବଳ ପବନର ବେଗ ସଂଘାତରେ ପତ୍ରଟିଏ ଉଡ଼ିଯାଏ । ସାମଗ୍ରିକ ବିଗ୍ରହରେ ଏହା ଏକ ସାଧାରଣ ନିତ୍ୟ ଘଟଣା । ମାତ୍ର ସେ ପତ୍ରଟି ପାଇଁ, ସେଇ ମୁହୂର୍ତ୍ତର ଏହା ଏକ ବିଶେଷ ଘଟଣା । ଏଇଠାରେ ହିଁ ଅସ୍ତିତ୍ୱବାଦୀର ବିଜୟ; ଜନ୍ମର, ଜୀବନର ସାର୍ଥକତାର ଉଦ୍‌ଘୋଷଣା । ଅନଂତ କାଳବକ୍ଷରେ ଅନେକ ମହାପ୍ଲାବନ ଭିତରେ ଗୋଟିଏ ପତ୍ରର କ୍ଷୁଦ୍ର ପ୍ରାଣରେ ନବୀନ ସ୍ୱପ୍ନର ଜାଗରଣ ମଂତ୍ର ଉଚ୍ଚାରଣକରି ସୃଷ୍ଟି ପୁଣି ଚେଇଁଉଠେ । ଜୀବନ ଜାଗିଉଠେ । ପୁରାତନର ଅବଶ ଶିଥିଳତା ଭିତରୁ ନବସ୍ପଂଦନର ପୁଲକ ପ୍ରବାହ ଛୁଟେ । ଝଡ଼ ଆସେ, ଯାହା ଝରିବାର ସବୁ ଖସିପଡ଼େ । ଶାଖାରେ ପୁଣି ନବପତ୍ର ଅଂକୁରିତ ହୋଇଯାଏ । ନବ ଉଷାର ଏ ନବ ପତ୍ରୋଦୟ ହିଁ ସୃଷ୍ଟିର ନିତ୍ୟ ନୂତନ ପୁରାଣ ସତ୍ୟ । ନୂତନ ଉଷାର ଉଦୟ ନ ହେଲେ, ନୂତନ କିରଣ ଓ ତେଜ ନେଇ ନୂତନ ଦିନର ସୂର୍ଯ୍ୟ ନ ଆସିଲେ, ପୃଥିବୀରେ ନୂତନ ଜୀବନ ସଂଭବ ହୁଅଂତା ନାହିଁ । ଗୋଟାଏ ମୁହୂର୍ତ୍ତର କ୍ଷୟ ପରେ ସେ ସ୍ଥାନ ପୂରଣପାଇଁ ଆଉ ଗୋଟାଏ ମୁହୂର୍ତ୍ତ ଆସଂତାନାହିଁ । ଏଇ ସ୍ଥାଣୁତ୍ୱକୁ ଖଂଡକରି ପ୍ରବହମାନ ସମସ୍ତ ସୃଷ୍ଟିକୁ ପ୍ରତି ମୁହୂର୍ତ୍ତରେ ନବତନ କରି ତୋଳେ । ଉଷା ସେହି ସଦ୍ୟ ନବୀନତାର ପ୍ରତ୍ୟକ୍ଷ ସ୍ୱୀକୃତି ।

ଝଡ଼ ଧ୍ୱଂସ ଭିତରେ ଏହି ଉଷା-ଦୃଷ୍ଟିକୁ ସଂକେତିତ କରିଥାଏ । ଯାହା ଜୀର୍ଣ, ରହିବାରଂତା ନାହିଁ, ତାକୁ ଝଡ଼ ଧ୍ୱଂସକରେ । ସେ ଝଡ଼ ଏକ ପରିପ୍ରେକ୍ଷୀ ମାତ୍ର । ଝରିବା ହିଁ ପ୍ରକୃତ ଘଟଣା । ଯାହାର ଜୀବନ ରସ ଶୁଖିଯାଇଚି, ସେ ତ ଝରିବ । ଝଡ଼ ନିମିତ୍ତ ମାତ୍ର । ସେ କେବଳ ବଂଚିବାର ଛଳନାକୁ ଧ୍ୱଂସକରେ । ଶୁଷ୍କ ପତ୍ର ଯେ ବୃଂତଲଗ୍ନ ରହିଥାଏ, ବୃଂତର ଏଇ ଛଳନାକୁ ଝଡ଼ ଭାଂଗିଦିଏ । ଝଡ଼ ଏକ ବିପୁଳ ଶକ୍ତିର ଅଂଶ । ଯେଉଁ ଶକ୍ତି ପତ୍ରକୁ ବୃନ୍ତସହ ସଂଲଗ୍ନ କରି ରଖିଥାଏ, ସେହି ଶକ୍ତି ଏକ ଅସୀମ ପ୍ରବେଗରେ ଆପଣାକୁ ବହୁଗୁଣିତ କରି ଶୁଷ୍କପତ୍ରକୁ ଶାଖାଚ୍ୟୁତ କରେ, ଏସବୁ ଏକ ମହାଇଂଗିତର ଅବୋଧ ରହସ୍ୟାତ୍ମକତାରେ ସଂଘଟିତ । ଏସବୁ ମୂଳରେ ଜାଗ୍ରତ ସେଇ ଏକ ଶାଶ୍ୱତ

(୧୦୧) "ସବ ଅନୁଭୂତି ଲୁପ୍ତକରୁ ଗରଜନ / ଯେଉଁକ୍ଷେ ବେଲାଭୂମି ପ୍ରୀତିଚରଣ ଲଂଘନ ।
ଜନନୀ ପରଶ ସମ ନୀରବତା କୋଳେ / ମୁଦିବ ଯୁଗଳ ଆଖି ଆରାମେ ନିରୋଳେ ।"
ଗ୍ରଂଥାବଳୀ ୧ମ—ପୃ. ୬୭୫

(୧୦୨) "ବେଲାଭୂମେ ତରଂଗର ଅଭିନୟ ତଳେ/ଦେଖାଇ ମାନବ ଭାଗ୍ୟ ଏଥି ପ୍ରତିଫଳେ × ×
ଅଖଂଡ ସଂଗ୍ରାମ ! ନର ଅନଂତ ପିପାସା ।" ଗ୍ରଂଥାବଳୀ ୧ମ—ପୃ. ୬୭୪

Digitized by PPRACHIN, SOA

ଅଗ୍ନିପଦ୍ମ ଯାହା ନବପତ୍ର ରୂପେ ପଲ୍ଲବିତ ହୋଇଯାଏ, ପୁଣି ଝଡ଼ର ଉଦ୍ଦାମବେଗ ଭିତରେ ମୃତ୍ୟୁ ତାଂଡବ ରଚନା କରିଦିଏ । ସ୍ରଷ୍ଟାର ଏ ସୃଜନ-ସ୍ୱପ୍ନର ପ୍ରଥମ ପରିଚୟଟି କୋମଳ, ସୁଂଦର, ଶେଷ ସ୍ୱରୂପଟି ଉଗ୍ର, ପ୍ରବଳ । ମାତ୍ର ସେ ଉଗ୍ରତା, ଧ୍ୱଂସକାରୀ ଭୀଷଣତା ଭିତରେ ବି ଅନାଗତ ଏକ ସୃଷ୍ଟି ପାଇଁ ମଧୁର ଆଶାର, ସୁକୁମାର ସ୍ୱପ୍ନ ଲୁଚିରହିଛି । ଝଡ଼ ଯାହା କ୍ଷୟକରେ, ତାହା କେବଳ ଜୀର୍ଣ୍ଣ, ଆବର୍ଜନାର ସ୍ତୂପ, ନବୀନର ଉଦ୍‌ବୋଧନ ପାଇଁ ଝଡ଼ ଯେପରି ସ୍ରଷ୍ଟାର ପ୍ରସ୍ତୁତି ଉଦ୍ୟମ ।

କବିସତ୍ତା ଏ ଧ୍ୱଂସ ମଧ୍ୟରେ ନିଜର ବ୍ୟକ୍ତିଗତ, ଏକକ ନିରାପତ୍ତା ଚିଂତା କରୁଂନାହାନ୍ତି । ଝଡ଼ୀପତ୍ରର ପହ୍ଣୁଆର ଭିତରେ ସେ ଆପଣାକୁ ଏକତମ କରି ଦେଖିଛି । ମହାପ୍ଲାବନ ଭିତରେ ଆଶ୍ରୟ ଲୋଡ଼ିଛି । ଭଗ୍ନ ପ୍ରାଣରେ ବଂଚିବାର ମୋହ ନାହିଁ, ବରଂ ମୃତ୍ୟୁର ମଧୁର ସ୍ୱପ୍ନ ରହିଛି । ଏ ମୃତ୍ୟୁ ଅଭିଳାଷ 'ମୁକ୍ତିକାଦର୍ଶନ'ର ମରଣ-ବ୍ୟାକୁଳତାଠାରୁ ଭିନ୍ନ । କବି ଚେତନା ମୃତ୍ୟୁ ସାହାଯ୍ୟରେ ପ୍ରାଚୀନତାର ନିର୍ମୋକ ଖସାଇ ପୁଣି ନୂତନ ଜୀବନର ଆଶୀର୍ବାଦ ଲୋଡ଼ିଛି ।

ସ୍ପଷ୍ଟ ନ କହିଲେ ମଧ୍ୟ କବି ଏଠାରେ ଶୁଷ୍କପତ୍ର ସହ ନିଜକୁ ଏକାତ୍ମକରି ଦେଖିଛଂନ୍ତି । ପତ୍ରହିଁକୁ ଆତ୍ମାର ଅମରତ୍ୱ ସହ ଏକତ୍ର ଦେଖିଛଂନ୍ତି ।

ପ୍ରକୃତରେ ଯେମିତି କିଛି ମରେନାହିଁ । କିଛି ହଜେନାହିଁ । ଏକ ମହାପ୍ଲାବନରେ ସବୁ ସ୍ଥାନାଂତର ଲଭଂନ୍ତି, ଘଟଣାଂତର ପ୍ରାପ୍ତ ହୁଅଂନ୍ତି । ଅଂଧାରରୁ ଆଲୋକକୁ, ଅସତ୍ୟରୁ ସତ୍ୟକୁ, ଅଶୋଭନରୁ ଶୋଭନକୁ, ମୃତ୍ୟୁରୁ ଅମୃତତ୍ୱକୁ ସତ୍ତାର ଏ ଅଭିସାର । ଅଂଧାର ଅସତ୍ୟ, ମୃତ୍ୟୁକୁ ଛଳନା, ଅନସ୍ତିତ୍ୱର ଭ୍ରାଂତି କହି ଏଡ଼ାଇ ଯାଇ ହୁଏନାହିଁ । ତାକୁ ଅତିକ୍ରମ କରି ଅଗ୍ରଗତି ସାଧିବାକୁ ହୁଏ । ସେଇ ଅତିକ୍ରମଣର ଶକ୍ତି ସବେଗହିଁ ଝଡ଼ ସଂଘାତ । ରାତ୍ରିର ସମାପ୍ତିରେ ଉଷାର ଅଭ୍ୟୁଦୟ, ମାତ୍ର ସନ୍ଧ୍ୟା-ଗଗନରେ ରାତ୍ରିର ଅଂଧାରକୁ ଅସ୍ୱୀକାର କରି କେହି ସୂର୍ଯ୍ୟସକାଳ ପାଖରେ ପହଂଚି ପାରଂତିନାହିଁ । ଅଂଧାର ବସ୍ତୁତ, ବସ୍ତୁତ ହିଁ ମୃତ୍ୟୁ । ଅଂଧାର ଲୁଚାଇଦିଏ, ମୃତ୍ୟୁ ଭୁଲାଇଦିଏ । ଆଲୋକରେ କିଂତୁ କିଛି ଲୁଚିରହେନାହିଁ । ଚେତନାରେ ସତ୍ୟାଲୋକର ଉଦ୍‌ଘାଟନ ପରେ ଜୀବନର ଆଉ କିଛି ମୃତ୍ୟୁ ଅଂଧାର ଭିତରେ ହଜିଗଲା ବୋଲି ମନେହୁଏନାହିଁ ।

ମୃତ୍ୟୁ ଚେତନା ମୂଳକ ଯାବତୀୟ କାବ୍ୟ-ଜିଜ୍ଞାସା 'ନବକଳେବର'ରେ ଉତ୍ତର ଲାଭ କରିଥିବାପରି ମନେହୁଏ । କବି ମୃତ୍ୟୁ ଭିତରେ ଏଯାବତ୍ ସଂହାର ଦେଖିଛଂନ୍ତି । ସଂହାର ପରବର୍ତ୍ତୀ ସୃଷ୍ଟି ସମ୍ଭାବନାକୁ ମଧ୍ୟ ପ୍ରତ୍ୟକ୍ଷ କରିଛଂନ୍ତି, ମାତ୍ର ଧ୍ୱଂସର ଶେଷ ଓ ସୃଷ୍ଟିର ଆଦ୍ୟ ମୁହୂର୍ତ୍ତକୁ, ଗୋଟିକର ଶେଷ ଓ ଅପରଟିର ଆରଂଭର ସେଇ ବିଂଦୁଟିକୁ ଧରିପାରିନାହାଂନ୍ତି । ମୃତ୍ୟୁରେ ପ୍ରିୟଜନଙ୍କୁ ହରାଇ ଦେଇ ହୃଦୟ ନିଜେ ହଜିଯିବାର ଅତଳ ଶୂନ୍ୟତାରେ ବୁଡ଼ିଯାଏ । ସେହି ହୃଦୟ ପୁଣି ନୂତନ ସୃଷ୍ଟି ରୂପ ଇଚ୍ଛାରେ ନିଜକୁ କିପରି ଜାଗ୍ରତ କରିପାରେ, କବି ଚିତ୍ତରେ ଏ ପ୍ରଶ୍ନ ବହୁବାର ପ୍ରତିଦ୍ୱନ୍ଦ୍ୱୀ ସୃଷ୍ଟି କରିଛି । କବି ହୃଦୟର ଏ ସୃଷ୍ଟି କାମନାକୁ, ପ୍ରାଣୀର ଜୈବିକ ଆସ୍ପୃହାକୁ ଆକ୍ଷେପ କରିଛଂନ୍ତି, ବିସ୍ମୟକର ମଧ୍ୟ ଭାବିଛଂନ୍ତି । ସେହି ପ୍ରଶ୍ନ ଏଠାରେ ଯେପରି ସମାଧାନରେ ଇଂଗିତ ଲାଭକରିଛି ।

ବସ୍ତୁତଃ ପ୍ରକୃତରେ ଧ୍ୱଂସ ଲୀଳାକୁ ପ୍ରତ୍ୟକ୍ଷକରି କବିପ୍ରାଣରେ ଭାବାଂତର ଜାତ ହୋଇଛି । ମାତ୍ର ଏହା ବିଷାଦର ପ୍ରେରଣା ନୁହେଁ । ଆପାତତଃ ବିଲୁପ୍ତି ଓ ଅସାର୍ଥକତା ଯେପରି ସବୁ ସାର୍ଥକ ମୂଲ୍ୟାୟନକୁ ଅଂତସଂଗୁପ୍ତ କରି ରଖିଥିବାର ନିଗୂଢ଼ ସମ୍ବାଦଟିକୁ କବି ଚେତନା ଲାଭକରିଛି । କବିଙ୍କ କ୍ରମ ସ୍ଥିର, ଶାଂତ ଓ ବ୍ୟାପ୍ତ ହୃଦୟାନୁଭବ ସୃଷ୍ଟିଲୀଳାର ଭଂଗାଗଢ଼ା ରୂପାଂତର ଭିତରର ଏକ ଅପରି-ବର୍ତ୍ତନୀୟତାକୁ ସାକ୍ଷାତ କରିଛି । ଝରିଯିବାର, ବିଲୁପ୍ତିର ପରିଣତି କିପରି ? ଶୂନ୍ୟତାର ସ୍ୱରୂପ କଣ ?

Digitized by PPRACHIN, SOA

ଭିନ୍ନ ଏକ ସୃଷ୍ଟିର ଉତ୍ସ ମଧ୍ୟ କେଉଁଠାରେ ? ମଣିଷମନର ଏ ଅନାଦି ବିସ୍ମୟ ଚିରନ୍ତନ ସୃଷ୍ଟିତତ୍ତ୍ୱର ଆଦିରହସ୍ୟ ଅନୁସନ୍ଧାନ କରିଆସିଛି । କବିଚେତନାରେ 'ସୃଷ୍ଟି-ଧ୍ୱଂସ'ର ଏ ରୂପାଂତର ବିସ୍ତାର ବିସ୍ତୃତକ୍ଷେତ୍ର ମଣିଷର ମନ । ଜୀବନର ସମସ୍ତ କିଛି ହରାଇବା ପାଇବାର ହସାବନିକାଶ ହୃଦୟର ଭୂମିରେ । ହୃଦୟର ଅନୁରାଗରେ ସବୁ କିଛି ନୂଆହୋଇ ବଂଚଉଠଂତି । ହୃଦୟ ନିଜକୁ ହରାଇ ବସିଲେ ସବୁ ଶୂନ୍ୟ ହୋଇଯାଏ । ହୃଦୟରେ ହୃଦୟ-ନଂଦନ ମନମୋହନ ବିରାଜିତ ଥିବାଯାଏ ତାହା ମଧୁର ବୃଂଦାବନ । ତାଂକ ବିହୁନେ କିଂତୁ ସେ ହୃଦୟ-ଶ୍ମଶାନ । ରମ୍ୟ-ବୃଂଦାବନ ଓ ରିକ୍ତ ଶ୍ମଶାନ ତେଣୁ ଭିନ୍ନ ନୁହଂତି, ନାମାଂତର ମାତ୍ର । ପ୍ରୀତି ହିଁ ପ୍ରିୟପାଇଁ ହୃଦୟକୁ ସରସ ବୃଂଦାବନ ସଜାଇଦିଏ ବା ପ୍ରିୟବିରହରେ ଧ୍ୱଂସର ଶ୍ମଶାନରେ ପରିଣତ କରେ । ବ୍ୟକ୍ତିର ହୃଦୟ ସବୁ ହରାଇବାର କ୍ଷୁଦ୍ରାନୁଭୂତିରେ ଶ୍ମଶାନ ଓ ପ୍ରିୟର ପ୍ରୀତି-ରାଗାନୁଚିଂତାରେ ବୃଂଦାବନ । (୧୦୩) ଏଇ ବୃଂଦାବନ ହିଁ ମିଷ୍ଟିକର ଅରୂପରାଜ୍ୟ; ଯାହା କୌଣସି ଅବାସ୍ତବ ଅମର୍ତ୍ତ୍ୟ ଲୋକ ନୁହେଁ । କବିଂକ ବିଶ୍ୱାସରେ ଜୀବନର ସେହି ପ୍ରିୟତମ କେବଳ ଜଣେ ହୋଇ ପାରଂତି, ଯାହାଂକୁ ହୃଦୟ ତାର ଅଖଂଡ ଓ ପୂର୍ଣ ପ୍ରେମାନୁଭବକୁ ସ୍ୱେଚ୍ଛାରେ ସମଗ୍ରଭାବେ ସମର୍ପଣ କରିପାରେ । ସେ ବ୍ୟକ୍ତି ଜୀବନର ଅଧୀଶ୍ୱର, କବିଂକ 'ଜୀବନ ଦେବତା' । ମହାନ୍ ହୃଦୟ-ରତ୍ନକୁ ତାଂକ ପାଖେ ହଜାଇ ଦେଲେ ବ୍ୟକ୍ତି ପ୍ରୀତିର ନବଜନ୍ମ ହୁଏ ।

କବିତାରେ ରବୀଂଦ୍ରଂକ 'ଯେ ନଦୀ ମରୁପଥେ ହାରାଲୋ ଧାରା'...ର ସ୍ୱରସଙ୍କରଟି ବେଶ୍ ସ୍ପଷ୍ଟ । ସବୁ ଅପ୍ରାପ୍ତି ଭିନ୍ନ ଏକ ପ୍ରାପ୍ତି ସ୍ୱରୂପରେ ସାର୍ଥକ । ଆଖିର ଦେଖାରେ ଅନେକ ଫୁଲ ମଉଳିଯାଂତି । ଅନେକ ସାଗର-ମୁଖୀ ତଟିନୀ ମରୁ-ପଥରେ ଶୁଷ୍କଶଯ୍ୟା ବିରଚନା କରଂତି । କେତେ ଢେଉ କୂଳ ଛୁଇଁବା ପୂର୍ବରୁ ଭାଂଗି ମିଳାଇଯାଂତି । କେତେ ଆଶାର ବୋଇତ ବିଫଳତାର ସମୁଦ୍ରରେ ଚୂନା ହୋଇଯାଂତି । ତଥାପି ସେମାନେ ନିରୁଦ୍ଦେଶ୍ୟ ସୃଷ୍ଟି ନୁହଂତି । ସେମାଂନଙ୍କ ପାଇଁ ସମ୍ବେଦୀ ପ୍ରାଣର ଅନୁରାଗମୟ ଅଶ୍ରୁବିଂଦୁର ଉତ୍ସର୍ଗ ମୁହୂର୍ତ୍ତରେ ହିଁ ସେମାନଂକର ପ୍ରୀତିମୟ ଅଭିଷେକ ଘଟେ । ମୃତ୍ୟୁ ଭିତରେ ହୃଦୟର ପ୍ରୀତି ସିଂହାସନରେ ପ୍ରିୟଜନ ଅମର ଜୀବନର ନବକଳେବର ପ୍ରାପ୍ତ ହୁଏ ।

ଅମରତ୍ୱ ତେଣୁ ମଣିଷ ମନର, ପ୍ରେମର ହିଁ ଦାନ । ପ୍ରୀତିର ଐଶ୍ୱର୍ଯ୍ୟଟିକୁ ହରାଇ ବସିଲେ ମଣିଷ ନିଃସ୍ୱ । ପ୍ରୀତିର କନକସ୍ପର୍ଶରେ ସବୁ ଧୂଳିମାଳିନ୍ୟ ସ୍ୱର୍ଣଶୋଭିତ ହୋଇଯାଂତି । ସେଇ ପ୍ରୀତି ହିଁ ଭଗ୍ନପ୍ରାଣକୁ ନୂତନ ଆଶା ଓ ସାହସ ସଂଗ୍ରହଦ୍ୱାରା ଆଗାମୀର ସ୍ୱାଗତ ପାଇଁ ପ୍ରସ୍ତୁତ କରେ ।

କବି ମନର ସଦା ବିକ୍ଷୋଭିତ ପ୍ରଶ୍ନ-ତରଂଗଟି ଏଇଠାରେ ଯେପରି ସ୍ଥିରକୂଳ ଲାଭକରିଛି । ସନ୍ତାନର ମୃତ୍ୟୁ ସତ୍ତ୍ୱେ ବ୍ୟକ୍ତିର ପୁନର୍ବାର ସୃଷ୍ଟି ପ୍ରୟାସ, ଅମର ପ୍ରୀତିର ଜୀବନାନଂଦ ପ୍ରକାଶ— ଏହାହିଁ ସେ ଉତ୍ତର । କ୍ଷୁଦ୍ରତାର ଗ୍ଲାନିକୁ, ଅପୂର୍ଣତାର ଅକ୍ଷମତାକୁ ପ୍ରୀତି ନିଜେ ପୂର୍ଣ କରିଦିଏ । (୧୦୪) ସୀମା ପ୍ରାଣରେ କ୍ଷୁଦ୍ର-ପ୍ରୀତି କାମନା ଭିତରେ ଅସୀମ ପ୍ରେମର ଅନଂତ ମହତ୍ତ୍ୱହିଁ ପ୍ରତିଭାତ । (୧୦୫)

ଏଇ ଭାବଚେତନା 'ସନ୍ଧ୍ୟାରାଗ', 'ପ୍ରୀତିକପଟି', 'ବାଜିକର' ପ୍ରଭୃତି କବିତାରେ ମଧ୍ୟ ସମ୍ପ୍ରସାରଣ ଲାଭ କରିଛି । କବିଂକ ଉପଲବ୍ଧିରେ ପୃଥିବୀରେ ସବୁ କିଛି ଅଚର ଓ ଗତିଶୀଳ । ଜୀବନର ଗତି-

---

(୧୦୩) "ହୃଦୟ ଶ୍ମଶାନେ ବିରଚଇ ରାଗେ ବୃଂଦାବନ ।" ଗ୍ରଂଥାବଳୀ ୨ୟ—ପୃ. ୩୬

(୧୦୪) "ଅପୂର୍ଣ ଯେତେ ମରେନାହିଁ ପ୍ରୀତି କରେ ତା ପୂଖ ।" ଗ୍ରଂଥାବଳୀ ୨ୟ—ପୃ. ୩୫

(୧୦୫) "ସବୁଠ ହସଇ ଯୀରତି ପ୍ରକାଶ ସେ ଭଗବାନ ।" ଗ୍ରଂଥାବଳୀ ୨ୟ—ପୃ. ୩୫

Digitized by PPRACHIN, SOA

ମୃତ୍ୟୁ ଅଭିମୁଖୀ । ମାତ୍ର ଏହାହିଁ ଜୀବନର ପ୍ରମାଣ । ଗତିଶୀଳତା ହିଁ ଜୀବନ; ମୃତ୍ୟୁରେ ସକଳ ଗତି ପ୍ରବାହ ପ୍ରତିବଦ୍ଧ ।

ମାତ୍ର ଏ ଗତି ନିରର୍ଥକ ନୁହେଁ, ପୁଣି କେବଳ ଆପଣାପାଇଁ ସାର୍ଥକ ନୁହେଁ । ମୁହୂର୍ତ୍ତ ମୁହୂର୍ତ୍ତ ହୋଇ ଚିରନ୍ତନର ବାର୍ତ୍ତା ଏ ଗତିରେ ସନ୍ନିବେଶିତ। ମୁହୂର୍ତ୍ତିକତା ପରମପ୍ରାପ୍ତି ନୁହେଁ । ତେଣୁ ତାଙ୍କୁ ଜାଣି ପୁଣି ଅଗ୍ରଗତି ଗୋଟିଏ ମୁହୂର୍ତ୍ତରେ, ଗୋଟିଏ ବିନ୍ଦୁରେ, ଗୋଟିଏ ସ୍ଥିତିରେ ସବୁ ଯଦି ମିଳିଯାଉଥାନ୍ତା, ପର ମୁହୂର୍ତ୍ତକୁ ଆଉ ଯାତ୍ରାର ପ୍ରୟୋଜନ ନଥାନ୍ତା । ଗତି ତେଣୁ ଉଦ୍ଦେଶ୍ୟମୁଖୀ । ପରିପୂର୍ଣ୍ଣତାର ଆନନ୍ଦ ସେହି ଉଦ୍ଦେଶ୍ୟ (୧୦୬) କ୍ଷଣିକ ସମ୍ଭୋଗ ତୃପ୍ତି ସେ ଆନନ୍ଦର ଆଭାସମାତ୍ର । ଯାତ୍ରାପଥରେ ଯାହା ପ୍ରିୟ ମନେହୁଏ, ଭଲଲାଗେ, ସେଠି ଅଟକିଗଲେ ଆଉ ଯାତ୍ରା ଶେଷ କରି ହୁଏନାହିଁ । ତେଣୁ ଗତି ପ୍ରୟୋଜନ । ପୁନଶ୍ଚ ସବୁ କିଛି ଗତିଶୀଳ ହେତୁ କେହି କାହାକୁ ଧରି ରଖିପାରେନାହିଁ । ପ୍ରତ୍ୟେକ ପ୍ରତ୍ୟେକ ହାତରୁ ଅନିବାର୍ଯ୍ୟ ଭାବେ ଖସିଯାଉଛି । ତାପାଇଁ ହା ହୁତାଶ ନିଷ୍ପ୍ରୟୋଜନ । କ୍ଷଣିକ କାମ୍ୟ ନୁହେଁ; ଚିରନ୍ତନ ହିଁ ଆକାଂକ୍ଷିତ ଜୀବନ-ପଥରେ ଯେତେ ହାନିଲାଭ, ଯେତେ ପ୍ରାପ୍ତି ଓ ବଂଚନା, ଯେତେ ସୃଷ୍ଟି ଓ ବିନଷ୍ଟି, ସେ ସବୁ ଏକାନ୍ତ ନିଜର ଅର୍ଜନ ବା ସ୍ୱୋପାର୍ଜିତ ହୋଇ ବ୍ୟକ୍ତିକୁ କର୍ତ୍ତୃତ୍ୱର ଅଭିମାନରେ ଜଡ଼ିତ କରି ରଖୁଛି । ଅହଂର ଏହି ଅଧିକାର-ସମ୍ବନ୍ଧର ଭ୍ରାନ୍ତି ହିଁ ହର୍ଷବିଷାଦର ଉଭିତ୍ତି ଖେଳାଏ । କ୍ରୀଡ଼ାକାର ରୂପୀ ଅଦୃଶ୍ୟ ବାଜିକର ବିସ୍ମୃତ ରହିଯାଏ । କିନ୍ତୁ ସବୁ ଅନିତ୍ୟତା ଭିତରେ ତାର ବଂଶୀର ଆହ୍ୱାନ ହିଁ ଏକମାତ୍ର ସତ୍ୟ; ସଚେତନ ଆତ୍ମାରେ ସେ ନାଦ ପ୍ରତିଧ୍ୱନିତ ହୁଏ ।

ଏ ଜଗତ ଓ ଜୀବନର ସମସ୍ତ ସେହି ବଂଶୀତାନ ବିଧ୍ୱନିତ । ସେ ବଂଶୀବାଦକର ଆନନ୍ଦ ସଙ୍ଗୀତରେ ସବୁ କିଛି ପୁଲକିତ । ତେଣୁ ତ୍ୟାଗ ନୁହେଁ, ବିସର୍ଜନ ନୁହେଁ, ସମର୍ପଣରେ ସେ ଆନନ୍ଦ ଦେବତାର ଆରାଧନା ରଚିବାକୁ ହୁଏ । (୧୦୭) ଏହି ପରିପ୍ରେକ୍ଷୀରେ 'ସନ୍ଧ୍ୟାରାଗ'ରେ ବ୍ୟକ୍ତିଜୀବନ ପ୍ରତି କବିମନର ଏକ ଅନୁରାଗମୟ ମୁକ୍ତିସନ୍ଦେଶ ସମ୍ପ୍ରେରିତ । ଜନ୍ମ ଓ ମୃତ୍ୟୁର ନିଗଡ଼ ଭିତରେ ବାନ୍ଧି ଏକକ ଜୀବନର ମର୍ତ୍ତ୍ୟ ସମ୍ଭୋଗ ଓ ବଂଚନା ଭିତରେ କବି ମୁକ୍ତି ଅନ୍ୱିତ ଖୋଜିଛନ୍ତି । ମାଟିରୁ ଜୀବର ସୃଷ୍ଟି । ପଙ୍କରୁ ଶ୍ୱେତପଦ୍ମପରି । ଦେହକୁ ବାଦଦେଇ ଦିବ୍ୟତ୍ୱ ସାଧନା ସମ୍ଭବ ନୁହେଁ । ସତ୍ତ୍ୱାର ଦେହାଶ୍ରୟୀ ପରିଚୟକୁ ଅସ୍ୱୀକାର କରି ଅଦେହୀ ସନ୍ଧାନ ଲୋଡ଼ିବା ଏକ ଭ୍ରାନ୍ତିକ ସାଧନା ମାତ୍ର । ଅସୀମ ଅବଧାରଣପାଇଁ ସୀମାରୂପଧାରଣ ଏକାନ୍ତ ପ୍ରୟୋଜନ । ଏହା ରହସ୍ୟବାଦୀ ମାନେ ବିଶ୍ୱାସକରେ । ବ୍ରହ୍ମ ଓ ବ୍ରହ୍ମାଣ୍ଡକୁ ଉଭୟରୂପରେ ସ୍ୱୀକାର ଓ ଏକତ୍ର ଭାବରେ ଉପଲବ୍ଧ କରିବାହିଁ ମିଷ୍ଟିକର ଅନୁଭବ ବୈଶିଷ୍ଟ୍ୟ । (୧୦୮)

---

(୧୦୬) "ସବୁ ଚଲମାନ ଆନନ୍ଦର ସନ୍ଧାନେ ।" ସନ୍ଧ୍ୟାରାଗ—ଗ୍ରନ୍ଥାବଳୀ ୨ୟ—ପୃ. ୨୭୬

(୧୦୭) (କ) "ତାହାର ଦରବ ଯତନେ ସାଜଇ ହେବ ବୋଲି ତାର ଭୋଗ୍ୟ ।"

'ସହଜତତ୍ତ୍ୱ'—ଗ୍ରନ୍ଥାବଳୀ ୨ୟ—ପୃ. ୨୯୬

(ଖ) "ସକଳ ବାସନା ସବୁ ଲୋଭନୀୟ ଧନ
ଇନ୍ଦ୍ରିୟ ସୁଖ ଲାଗି ଯେତେ ପ୍ରୟୋଜନ
ସ୍ରଷ୍ଟା ପାୟରେ କରିଦେଲେ ଅରପଣ
ଗୋପିନୀ ସମାନ ହୋଇଯିବୁ ତନମନ ।" 'ସନ୍ଧ୍ୟାରାଗ'—ଗ୍ରନ୍ଥାବଳୀ—୨ୟ ପୃ. ୨୮୧

(୧୦୮) "ଏ ଦେହକୁ ଆଶ୍ରାକରି ଲକ୍ଷ ଶତଦଳ / ଫୁଟି ପ୍ରାଣବନ୍ତ କରେ ସହସ୍ର ପଲ୍ଲବ ।"

ଗ୍ରନ୍ଥାବଳୀ ୨ୟ—ପୃ. ୧୨୮

Digitized by PPRACHIN, SOA

ଏ ଦେହ କିନ୍ତୁ ଆପଣାଠାରେ ସାର୍ଥକ ନୁହେଁ । ଆପଣା ପୂର୍ତ୍ତିରେ ସନ୍ତୃପ୍ତ ନୁହେଁ । ଦେହରେ ରହି ମଧ୍ୟ ସତ୍ତ୍ୱର ସେ ହେତୁ ବିଦେହପାଇଁ ଆକୁଳ । କବି ଚେତନାରେ ଏ ଦେହ ସମ୍ଭୋଗ ବା ବିଦେହ ଅଭିଳାଷ—କିଛି ବି ମିଥ୍ୟା ନୁହେଁ । ପ୍ରାଣପଦ୍ମର ସ୍ୱପ୍ନାଭିଳାଷ, ଆତ୍ମବିସ୍ତାରର ସମ୍ଭାବନା ସହସ୍ର ପୁଷ୍କର ହୋଇ ଫୁଟିଉଠେ । ପଦ୍ମର ଜଳ ସହ, ପୃଥିବୀ ସହ ଯେଉଁଳି ସମ୍ପର୍କ, ଆକାଶର ସୂର୍ଯ୍ୟ ସହ ସେଉଁକି । ଆଧାରଚ୍ୟୁତ ହୋଇ ସେ ବଞ୍ଚିପାରେନା, ପୁଣି ସୂର୍ଯ୍ୟସାଧନା ବ୍ୟତିରେକେ ତାର ସୃଷ୍ଟି ନିରର୍ଥକ ।

ଏ ବିଦେହ ସାଧନା କିନ୍ତୁ ଏତେ ସହଜରେ ରାସ୍ତା ପାଏ ନାହିଁ । ଦେହର ଦାବିକୁ ଉପେକ୍ଷା କରି ପ୍ରବର୍ଜ୍ୟା ଓ ନିବୃତ୍ତିଧ୍ୟାସନ ଆଚରଣ କରିବା ସାଧନାର ସଫଳ ରାସ୍ତା ନୁହେଁ । ଦେବତାର ଆଶୀର୍ବାଦ ପାର୍ଥିବ ସମ୍ଭୂତିକୁ ଯେ ପରିପୂର୍ଣ୍ଣ କରି ରହିଛି, ଜୀବନର ସକଳ ଭାବସମ୍ପର୍କ ଓ ଆତ୍ମାନୁଭବରେ ତାହା ସହସ୍ରଶାଖ ପ୍ରେମ ହୋଇ ଝରିଯାଇଛି । ସେସବୁକୁ 'ମିଥ୍ୟା' ଜ୍ଞାନକରି 'ଶୂନ୍ୟମୁଖୀ' ହୋଇ ନିର୍ବାଣ ଖୋଜିବାର ଅର୍ଥ କବିଚିତ୍ତ ବୁଝେନାହିଁ । ବରଂ ପ୍ରୀତିମୁଗ୍ଧ କୃତଜ୍ଞତାରେ ଦ୍ରବୀଭୂତ ହୋଇଯାଏ । (୧୦୯) କବି ମାନେଇ ରୂପରସ ଉପଭୋକ୍ତା । ସୃଷ୍ଟିର ସୌନ୍ଦର୍ଯ୍ୟ, ପ୍ରାଣର ଆନନ୍ଦକୁ ଉପେକ୍ଷା କରି କବି ପରମ ସୁନ୍ଦରାନନ୍ଦଙ୍କୁ ଖୋଜିବାପାଇଁ ଭବ ବିରାଗୀ ସାଜିପାରେନାହିଁ । ବୈକୁଣ୍ଠନାଥଙ୍କ କବିସତ୍ତ୍ୱାରେ ଜଗତ ଓ ଜୀବନର ମଧୁର ଭାବ ଆବେଦନ ବୃଥା ହୋଇ ଯାଇନାହିଁ । ବରଂ ତାଙ୍କର ରସପାୟୀ ଚିତ୍ତ ସୃଷ୍ଟିର ରସ-ପ୍ରବାହ ଭିତରେ ହିଁ ରସରାଜଙ୍କ ସହ ରସାଳାପ କରିବାକୁ ବ୍ୟଗ୍ର । (୧୧୦)

ଆଲୋଚ୍ୟ ପର୍ଯ୍ୟାୟରେ କବିଙ୍କର ରହସ୍ୟବାଦୀ କାବ୍ୟସିଦ୍ଧାନ୍ତମାନ ସହଜିଆ ବୈଷ୍ଣବ ମାର୍ଗାନୁସାରୀ । କବି ଯେ ବୈଷ୍ଣବର ସହଜ ପ୍ରେମସାଧନା ପନ୍ଥାରେ ବିଶ୍ୱାସୀ ଓ ଅନୁରାଗୀ, ତାହା ତାଙ୍କର 'ସହଜତତ୍ତ୍ୱ' ଶୀର୍ଷକ କବିତାମାନ ଓ ସହଜ-ସାଧକ କବିମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନରେ ପ୍ରକଟିତ । (୧୧୧)

---

(୧୦୯) "କ୍ଷଣ ସୁଚାରଣରେ ବାନ୍ଧି କଲ ଧାତ୍ରିମାନ
କୃତକୃତ୍ୟ ହେଲ ପ୍ରାଣ / ମାତ୍ର କୃତଜ୍ଞତା ହେଲନାହିଁ କହି ।
'କୃଷ୍ଣା'—ଗ୍ରନ୍ଥାବଳୀ ୨ୟ ଭାଗ—ପୃ. ୧୬୯

(୧୧୦) "ଲହରୀ ଛନ୍ଦେ ଚନ୍ଦ୍ରକିରଣ ନାଚେ / ନାଚେ ଯୌବନ ନଶ୍ୱର ଦେହ ଛାଞ୍ଚେ /
ନାଚେ ଆନନ୍ଦ ପରମ ଜ୍ୟୋତିକଥା × × ଚଳଭୂରୁ ଛେଦ ଉଚ୍ଛୁଳ ପଡ଼େ ରହସ୍ୟ × ×
ମୀନାଗିଲା ଥୋପ ନୁହଇ ରୂପସୀ ବପୁରୀ ପଦ୍ମଗନ୍ଧ / ସେଇ ଫୁଲବାସେ ଝରି ଫୁଲହାସେ
ହସଇ ପରମାନନ୍ଦ / ବିମୋହନ ରୂପ ନୁହ ଗୋ ଦୁର୍ବିସହ / ଶ୍ୟାମସୁନ୍ଦର ବଂଶୀଲହର /
ତନୁଲତା ତୋର ବିରଜ ବାର୍ତ୍ତାବହ ।"
'ସହଜତତ୍ତ୍ୱ', ଗ୍ରନ୍ଥାବଳୀ ୨ୟ ଭାଗ ପୃ. ୨୧୬

(୧୧୧) "ମୋର ଜୀବନର ଶେଷଭାଗରେ ମୁଁ ଯେଉଁ ସହଜତତ୍ତ୍ୱ କାବ୍ୟ ଲେଖିଛି, ସେଥିରେ ଏଇ ସହଜଧର୍ମୀ ଓ ସହଜପନ୍ଥୀମାନଙ୍କର ଜୀବନଲେଖ୍ୟ ଚିତ୍ରଣ କରିବାର ଚେଷ୍ଟା କରିଛି । × × ନିସର୍ଗ ରସତାତ୍ତ୍ୱିକ କବି ସମ୍ରାଜ ସୁକୌଶଳୀ ଖଳିକାର ପରି ନାଗପାଶ ସହିତ ଖେଳି

Digitized by PPRACHIN, SOA

ସହଜସାଧନା କଂଣ୍ଡ ସବୁଠାରୁ ଅସହଜ । ଦେହର ସ୍ୱୀକୃତିରେ ଏ ସାଧନାର ଅସ୍ତମାରଂଭ ହେତୁ ଦେହ ଓ ଦେହାଶ୍ରିତର ସଂଘର୍ଷ ପ୍ରତିପଦରେ ଅନିବାର୍ଯ୍ୟ ହୋଇଥାଏ । ଜୈବିକ ଜାଂତବତା ଆତ୍ମାର ସବୁ ମୁକ୍ତିକାମନାକୁ ଅଶଟଂଶି କରି ଉଡ଼ାଇଦେବାକୁ ଚେଷ୍ଟାକରେ । ତର୍କ ଜଂଜାଳରେ ଚିତ୍ତକୁ ସଂଶୟୀ କରିଦିଏ । ତାର ପ୍ରତିରୋଧପାଇଁ ଆଚରିତ ନିବୃତ୍ତିମୂଳକ ମାନସିକତାର ବଳାତ୍କାର ମାନସିକ ଅବସାଦ ବଢ଼ାଏ । ଭକ୍ତିବାଦ ଓ ମାୟାବାଦର ଏ ଦ୍ୱଂଦ୍ୱ (୧୧୬) ସହଜରେ ସଠିକ୍ ପଥକୁ ଧରାଇଦିଏ ନାହିଁ । ଅଥଚ ମାୟା ବୋଲି ସବୁ କିଛି ଉଡ଼ାଇଦେବାର ଉପାୟ ନାହିଁ । କବିଚିତ୍ତ ଏ ପ୍ରବୃତ୍ତି-ନିବୃତ୍ତିର ପ୍ରବଳ ଦ୍ୱଂଦ୍ୱ ପୀଡ଼ିତ : ତାଂକର ତତ୍କାଳୀନ କାବ୍ୟସ୍ୱରରେ ସେହି ଅସମନ୍ୱିତ ଦ୍ୱିଜ-ଚେତନା ରୂପର ବିକଳ ପ୍ରକାଶ ଘଟିଛି । ଅର୍ଥାତ୍ ତାଂକର କବିସତ୍ତା (poet personality) ରହସ୍ୟବାଦୀ ରୂପାନୁଭୂତି ପାଇଁ ସହଜ ସାଧନାଭୂମିକୁ ଲକ୍ଷ୍ୟ କରିଥିଲେ ମଧ ତାଂକର ପରଂପରାଗ୍ରସ୍ତ ନିରହ ପରାଯ଼ଣ ମୁମୁକ୍ଷୁ ସତ୍ତା ସେ ସହଜାନଂଦର ନିର୍ଦ୍ୱଂଦତାକୁ ସଂପ୍ରସାରିତ ହୋଇପାରିନାହିଁ ।

କବି ଦୃଷ୍ଟିରେ ବୈଷ୍ଣବୀୟ ସହଜତତ୍ତ୍ୱ ବ୍ୟାଖ୍ୟାମୂଳରେ ଯେଉଁ ମୂଲ୍ୟବାନ୍ ସାଧନାର କଥା ଉଦ୍‌ଘୋଷିତ, ତାହା ପ୍ରୀତିସାଧନା । ପ୍ରେମର ମୂଲ୍ୟକଳନା ସହଜ ନୁହେଁ; ଅଥଚ ଅନଂତ ପ୍ରେମର ମୂଲ୍ୟ ବାଢ଼ି ନ ପାରିବା ପର୍ଯ୍ୟଂତ ଜୀବର ମୁକ୍ତିନାହିଁ । ସ୍ୱୟଂ ପରମ ଶ୍ରେଷ୍ଠ ଜୀବକୁ ପ୍ରେମସାଧନାର ଦୁର୍ଜ୍ଞେୟ ରହସ୍ୟପଥରେ ବାଟ କଢ଼ାଇ ନେବାପାଇଁ ଯେପରି ପ୍ରୀତିଖେଳା ରଚନା କରଂତି, ଅନଂତ ଯୁଗଧରି ପରମ ଶାଶ୍ୱତ ଆତ୍ମା-ବଧୂର ଜାଗ୍ରତ ମୁହୂର୍ତ୍ତକୁ ଅପେକ୍ଷା କରଂତି, ସ୍ୱୟଂ ପଥଶ୍ରମ କରି ତାର ଦ୍ୱାରରେ ଉପଗତ ହୁଅଂତି । ମାତ୍ର ସେ ଅପ୍ରତ୍ୟାଶିତ ମୁହୂର୍ତ୍ତରେ ଦରଜା ଖୋଲି ନଥିଲେ; ଦ୍ୱାର ଦେଶରେ ପ୍ରତୀକ୍ଷ୍ୟ ବ୍ୟାକୁଳ ଅଶ୍ରୁମୟ ଆଖିଦୁଇଟି ପ୍ରତୀକ୍ଷାର ଖୋଲା ରାସ୍ତା ଉପରକୁ ଲଂବିଯାଇ-ନଥିଲେ, ତାଂକ ଆସିବାର ପାଦଶବ୍ଦ ଫେରିଯିବାର କ୍ଷୀଣଧ୍ୱନି ହୋଇ ମିଳାଇଯାଏ । ଦେବତାର ପ୍ରେମ ଲାଭ କରିବା ବଡ଼ ଦୁଷ୍କର, ତାର ଅଭ୍ୟର୍ଥନା କରିବା ମୂଲ୍ୟ ଦେଇ ଜାଣିବା ଆହୁରି ଦୁଃସାଧ । ପ୍ରୀତି ଅନୁଗ୍ରହ ଏଇଥିପାଇଁ ଦୁର୍ଭୋର, ଦୁର୍ବହ ଅନୁଗ୍ରହ; ତାର ଯଥାଯୋଗ୍ୟ ମର୍ଯ୍ୟାଦା ଦେଇ ଜାଣିବା, ସ୍ୱାଗତ ରୀତି ଶିଖିବାହିଁ ପ୍ରଣୟୀର ପ୍ରକୃତ ସାଧନା । ସମଗ୍ର ବୈଷ୍ଣବ ଦର୍ଶନ ଏହି ପ୍ରୀତିସିଦ୍ଧାଂତକୁ ଅବଲଂବନ କରି ବିକଶିତ। ବୈକୁଂଠନାଥ ଭକ୍ତ । ପ୍ରେମିକମାନଂକୁ କେତେବେଳେ ସ୍ୱ ସାଧନାର ପ୍ରେରଣାରୂପେ, କେତେବେଳେ ଏକାତ୍ମ ବା ସ୍ୱରୂପଗତ କରି ଦେଖିବା ଭିତରେ ନିଜଠାରେ ପ୍ରାଣପ୍ରିୟ ଶ୍ରୀକୃଷ୍ଣଂକ ପାଇଁ ଏହି ପ୍ରେମ ସାମର୍ଥ୍ୟ କାମନା କରିଛଂତି ।

ବୈଷ୍ଣବ କାବ୍ୟ ପରଂପରାର ବୈଶିଷ୍ଟ୍ୟ ହେଉଛି (କ) ପ୍ରେମର ଅପ୍ରାକୃତ ତାତ୍ତ୍ୱିକ ବ୍ୟାଖ୍ୟା, (ଖ) ରାଧାକୃଷ୍ଣଂକ ପ୍ରେମ ପ୍ରତୀକତ୍ୱ । କବିଚେତନାରେ ରାଧା ଓ କୃଷ୍ଣ କୌଣସି ନିର୍ଦ୍ଦିଷ୍ଟ ଯୁଗ-ଜାତ ପ୍ରଣୟୀ ଯୁଗଳ ନୁହଂତି । ସେମାନେ ନିତ୍ୟ କାଳର ପ୍ରଣୟୀ ଓ ପ୍ରଣୟିନୀ ସତ୍ତା । ବୈଷ୍ଣବ ଉପାସନାରେ ଶ୍ରୀକୃଷ୍ଣ ପ୍ରେମ-ଈଶ୍ୱରର ଘନୀଭୂତ ରୂପପ୍ରକାଶ ଓ ଶ୍ରୀରାଧା ପ୍ରୀତି ସାଧନାର ରୂପବିଗ୍ରହାନ୍ୱିତା । ପ୍ରତି ଜୀବ ଅଂତଃସ୍ୱରୂପରେ ଶ୍ରୀରାଧା, ପ୍ରତ୍ୟେକ ଚିତ୍ତରେ ରାଧାପ୍ରାଣର ପ୍ରୀତି ନିଗୂଢ଼ ଏବଂ ତାହା ତାର

---

ପାରଂତି । ମୁଁ ସେହି ସର୍ପକୁ ଖେଳେଇବାକୁ ଚେଷ୍ଟା କରୁଛୁ, ଗ୍ରେଟ ନ ବାଜିଲେ ଈଶ୍ୱରଂକ ଦୟା ବୋଲି ମନେକରିବ ।”

‘ଜୀବନୀ ଓ ସ୍ମୃତି’—ଗ୍ରଂଥାବଳୀ ୧ମ ଖଣ୍ଡ ପୃ. ୩୭

(୧୧୬) “ଜୀବଥିବାଯାଏ ମୃଗୀ ନାଚିବ ମାୟାରେ ।”

ଗ୍ରଂଥାବଳୀ—୨ୟ ପୃ. ୮୯

Digitized by PPRACHIN, SOA

ଅଲକ୍ଷ୍ୟରେ ମଧ୍ୟ କୃଷ୍ଣ ପ୍ରେମ ପ୍ରତି ଉଚ୍ଛ୍ୱସିତ । ଶ୍ରୀକୃଷ୍ଣ ତେଣୁ ବୈଷ୍ଣବ ସାଧନାରେ କେବଳ ସାକାର ଅବତାରୀ ଭକ୍ତଦେବତା ନୁହଁନ୍ତି, ସେ ନିଖିଳ ହୃଦୟସ୍ଥ ଅନ୍ତର୍ଯ୍ୟାମୀ ଅରୂପ ପ୍ରେମଦେବତା । (୧୧୩)

ବୈଷ୍ଣବ ପ୍ରୀତିର ଲକ୍ଷଣ ନେଇ ଶ୍ରୀ ରୂପ ଗୋସ୍ୱାମୀ ପ୍ରତିପାଦନ କରିଛନ୍ତି : "ସର୍ବଥା ଧ୍ୱଂସ ରହିତଂ ସତ୍ୟପି ଧ୍ୱଂସକାରଣେ ।" ଧ୍ୱଂସ ହେବାର କାରଣ ଅଛି, ଧ୍ୱଂସ ନାହିଁ । ସକଳ ପାର୍ଥିବ, ସମ୍ପର୍କ ଧ୍ୱଂସପ୍ରବଣ, ନଷ୍ଟଶୀଳା ମାତ୍ର ପ୍ରେମ ଧ୍ୱଂସ ରହିତ, ତେଣୁ ଅପାର୍ଥିବ । ହୃଦୟରେ ବାହ୍ୟକାରଣ (ରୂପ, ଗୁଣ, ବିଭ୍ରମ) ବ୍ୟତିରେକେ ଅନୁରାଗ ସ୍ୱତଃ ଜାଗରିତ ହେଲେ, ତାହାକୁ ରତିଭାବ କୁହାଯାଏ । ଏହି ଭାବର ଚରମ ପରିପାକ 'ମହାଭାବ' ଯାହାର ପୂର୍ଣ୍ଣ ସ୍ୱରୂପା ଶ୍ରୀରାଧା । ସବୁ କିଛିକୁ ତୁଚ୍ଛ କରିପାରେ, ଭୁଲିଇପାରେ ଯେ ପ୍ରେମ, ସେଇ ଆତ୍ମସୁଖ ଲିପ୍ସାହୀନ ରାଧା-ପ୍ରେମର ସମସ୍ତ ଉଦ୍ୟମ ପ୍ରିୟସୁଖପାଇଁ । ସର୍ବଦା ଅନୁଷ୍ଠିତ, ସମର୍ପଣମୂଳକ, ଅପରିବର୍ତ୍ତିତ ଏହି ପ୍ରେମହିଁ ଦିବ୍ୟପ୍ରେମ ।

ବୈକୁଂଠନାଥଂକର ପ୍ରୀତିତତ୍ତ୍ୱର ଉପସ୍ଥାପନା ଓ ବ୍ରଜବାସିମା ଏବଂ ଶ୍ରୀକୃଷ୍ଣଂକର ପ୍ରେମ-ବିଳାସ ରଚନାମାନଂକରେ ଏ ଅପ୍ରାକୃତ ପ୍ରେମ-ତତ୍ତ୍ୱର ପ୍ରତିଷ୍ଠା ପ୍ରୟାସ ଏବଂ ନିଜକୁ ବ୍ରଜାଂଗନା ତଥା ଭକ୍ତ ଚରିତମାନଂକ ସହ ଏକାତ୍ମତା ମାର୍ଗରେ ସେ ଅଦେଖା ପ୍ରେମର ସାଧନା ସାମର୍ଥ୍ୟ ଆୟତ୍ତ କରିବାର ଆକୁଳତା ପ୍ରକଟିତ । କୃଷ୍ଣ-ପ୍ରେମ ସାଧନାର ପ୍ରଧାନ ଦିଗ ବିରହଚେତନା (୧୧୪) । (କ) ସାମୟିକ ବ୍ରଜ ବିରହ, (ଖ) ମଥୁରାଯାତ୍ରାପରର ଚିରଂତନ ବିରହ । ଜୀବ ପ୍ରାଣରେ ବିରହର ସାଧନା ରାଧାଭାବର ସରଳ ପ୍ରେମ ଓ ପ୍ରତ୍ୟୟ ସିକ୍ତ ଅଶ୍ରୁ-ଆରାଧନା ମାର୍ଗରେ ସମ୍ପାଦିତ । 'ବଂଶୀନାଦ' ଅନଂତ ପ୍ରୀତିର ଆକର୍ଷଣ ଓ ବିରହର ଉଚ୍ଚାଟନ ରୂପେ କବିଂକ ଦ୍ୱାରା ସ୍ୱୀକୃତ ଓ କାବ୍ୟସ୍ୱରରେ ସମାଚ୍ଛନ୍ନ ।

ଗୋପୀପ୍ରେମର ସାର୍ଥକତା ଯେ ବିରହାନୁଭବରେ ଏବଂ ପ୍ରିୟ-ଉନ୍ମୁଖତା ଏକମାତ୍ର ପ୍ରଣୟ ସାଧନା, 'ଗୋପୀଭାଷା' ସେହି ତତ୍ତ୍ୱାଶ୍ରିତ । ବଂଶୀ ସୁଂଦର ପ୍ରୀତିର ଆକର୍ଷଣକୁ ସ୍ୱର କରି ଶୁଣାଇଦିଏ । ଗୋପବାଳା ଅଜଣା ସମ୍ମୋହରେ ନିଜକୁ ଭୁଲେ, ଘରଗୃହଛାଡ଼େ, ଲୋକାପବାଦ ସହେ ଏବଂ ଯମୁନା ପୁଳିନର ନିର୍ଜନତାରେ ନିଜକୁ ସମର୍ପିଦିଏ । ଏ ବିରହ ବ୍ୟଥାରେ ପ୍ରେମ ସାଧନାର ଅସ୍ପମାରଂଭ ବୋଲି କୁହାଯାଇପାରେ ।

ଲକ୍ଷଣୀୟ, ବୈକୁଂଠନାଥଂକ ରାଧା / କୃଷ୍ଣ / ଗୋପୀତତ୍ତ୍ୱ ସଂକଳିତ ବହୁକବିତାର ସ୍ୱର ନିତାଂତ ପାରଂପରିକ । କବି ଯେତେ ରହସ୍ୟବାଦୀ ଅପ୍ରାକୃତ ତତ୍ତ୍ୱ-ରୂପ ବାଛିଲେ ବି କାବ୍ୟସ୍ୱରରେ ଅନେକତ୍ର ସ୍ଥୂଳ ପ୍ରେମଚେତନା ହିଁ ରୂପାୟିତ । 'ଗୋପୀଭାଷା'ରେ ଊର୍ଦ୍ଧ୍ୱତର ଚେତନା ଆରୋପ ପ୍ରୟାସ ସତ୍ତ୍ୱେ ରଚନା ରୂପରେ ଦୈହିକ ଭୋଗଲିପ୍ସାର ଦୁଃସହ ଗୁଂଜନକୁ ଏଡ଼ାଇ ହୁଏ ନାହିଁ । ସ୍ୱାଭାବିକ ଭାବେ ମନେହୁଏ, ଅଗଣିତ ବୈଷ୍ଣବକବିଂକର ନିଷ୍କଳୁଷ ଅପାର୍ଥିବ ପ୍ରଣୟର ଅଜସ୍ର ମହତ୍ତ୍ୱ ଗାନ ସତ୍ତ୍ୱେ ଯେଉଁ ବାସନାସକ୍ତ କାମକଳାସାର ସମ୍ଭୋଗଚିତ୍ର ଯୁଗ ଯୁଗଧରି ଭାରତୀୟ

(୧୧୩) "ବୈଷ୍ଣବଧର୍ମ ପୃଥିବୀର ସମସ୍ତ ପ୍ରେମ ସମ୍ପର୍କର ମଧ୍ୟେ ଈଶ୍ୱରକେ ଅନୁଭବ କରତେ ଚେଷ୍ଟା, କରିୟାଛେ ।

—ରବୀଂଦ୍ରନାଥ 'ପଂଚଭୂତ' ଉଦ୍ଧୃତ—ବୈଷ୍ଣବ ସାହିତ୍ୟ—ପୃ. ୮୭

(୧୧୪) ବୈଷ୍ଣବ କବିଗଣ ବିରହକେ ପ୍ରଧାନ କରିୟା ପ୍ରେମେର ଭିତରେ ସୂକ୍ଷ୍ମତାର ଓ ଅତଲତାର ସୃଷ୍ଟି କରିୟାଛେନ । ବିରହ ଅବଲଂବନେ ପ୍ରେମେର ଏଇ ଯେ ସୃଷ୍ଟି ଏବଂ ଗଭୀର ସୁର ତାହାଇ ରାଧା-ପ୍ରେମକେ ଆଧ୍ୟାତ୍ମିକ ଲୋକେ ଉତ୍ତରଣ କରାଇତେ ସହାୟକ ହଇୟାଛେ ।"

ଶଶିଭୂଷଣ ଦାଶଗୁପ୍ତ—'ଶ୍ରୀରାଧାର କ୍ରମବିକାଶ'—ପୃ. ୧୪୪

Digitized by PPRACHIN, SOA

ଜନଜୀବନକୁ ଏକ ଛଳନାତ୍ମକତା ଭିତରେ ଦୂଷିତ କରି ରଖିଛୁ, (୧୧୫) ବୈକୁଂଠନାଥଂକ କାବ୍ୟ ପ୍ରୟାସ ସେଥିରୁ ମୁକ୍ତ ନୁହେଁ । ବହୁ ବୈଷ୍ଣବ କବିତାରେ ସେଇ ଦେହବିଳାସର ବ୍ୟଂଜନା, ସେଇ ଅଣଆତ୍ମିକ କୁତ୍ସା ଲଜ୍ଜାହୀନତା, ମଧ୍ୟଯୁଗୀୟ କାମୁକ ଲେଖନୀର ଅନର୍ଗଳ ଉନ୍ମାଦନା; ଏବଂ ସବୁ ସତ୍ତ୍ୱେ ମଧ୍ୟ ସେଇ ଛଳନାତ୍ମକ ବୈଷ୍ଣବୀୟ ଯୁକ୍ତିରେ ଏଇ ଦେହମନ-ଯୌବନର ଅଧୀର ଶୃଂଗାର-କାମନାକୁ ଦିବ୍ୟ-ପ୍ରେମ ରୂପେ ଗ୍ରହଣ କରିନେଇ 'ଦେହେ ମନେ କ୍ଷୁଧାର ଜ୍ୱାଳା'ର ନିର୍ଲଜ୍ଜ ନିବେଦନ ଭିତରେ ମର୍ତ୍ତ୍ୟ ସଂଭୋଗ ବାସନାକୁ ସଂକେତିତ କରି ପୁଣି ସେଇ ଏକ କବିତାରେ ଏ କାବ୍ୟସ୍ୱରର ନିର୍ବିବାଦ ବିରୋଧ କରାଯାଇପାରେ, "ମୋ ପ୍ରୀତିରେ ନାହିଁ ତିଳେ ତ ଅନଳ ଦାହ !"

ବରଂ କୁହାଯାଇପାରେ, ବୈକୁଂଠମାନସରେ ବୈଷ୍ଣବତତ୍ତ୍ୱ ଓ ରାଧାକୃଷ୍ଣ-ପ୍ରତୀକାତ୍ମକତାର ପ୍ରକୃତ ରହସ୍ୟବାଦୀ ଭାବରୂପଟି କବିଂକର ଅରୂପ-ଅଭିଳାଷରେ ହିଁ କଥିତ୍ତ ପ୍ରକଟିତ । କବିଚେତନାରେ ଯେଉଁଠି ବୈଷ୍ଣବ ପ୍ରୀତିସାଧନା ଜୀବନଦେବତା ଓ ଅରୂପ ପ୍ରଣୟର ଭାବଚେତନାଶ୍ରିତ; ବାଉଲଗାନ, ରବୀନ୍ଦ୍ର ଭାବନା ଓ ଶେଲି/ସ୍ୱିନ୍‌ବର୍ଣ୍ଣ ପ୍ରଭାବିତ ହୋଇ ଯେଉଁଠି ଅତୀନ୍ଦ୍ରିୟ ସ୍ପର୍ଶରେ ଉଦ୍‌ଜୀବିତ 'ସେଠାରେ ସେ କାବ୍ୟଭାବନାକୁ ରହସ୍ୟବାଦୀ ସ୍ୱରୂପ ଅସ୍ୱୀକାର କରିହେବନାହିଁ । ମାତ୍ର ମନେହୁଏ କବିଙ୍କ ରସାବେଦନ ତୃଷ୍ଣା ପ୍ରଶମନ ପାଇଁ ବ୍ରଜ ବୃଂଦାବନର ପ୍ରେମ ଏକ ଅବଲଂବନ ରୂପ ମାତ୍ର ଥିଲା । କବିଂକ ପ୍ରାଣନାୟକ ଶ୍ରୀକୃଷ୍ଣ କାବ୍ୟନାୟକ ସ୍ୱରୂପରେ ଅତୀନ୍ଦ୍ରୀୟ ପ୍ରେମ ଦୟିତ ପରିବର୍ତ୍ତେ ସାକାର ଭକ୍ତଦେବତା ରୂପେ ହିଁ ସମାଦୃତ ହୋଇଛନ୍ତି । ସ୍ଥୂଳତଃ ବ୍ରଜପ୍ରେମ ଅଭିଳାଷୀ ବୈକୁଂଠନାଥ ରହସ୍ୟବାଦୀ ପ୍ରେମକବି ଅପେକ୍ଷା ବରଂ, ଜଣେ ବୈଷ୍ଣବ ଭକ୍ତକବିର ପରିଚୟରେ ଅଧିକ ଭାବନିଷ୍ଠ ମନେହୁଅନ୍ତି । ତଥାପି ବୈଷ୍ଣବ ଭାବପ୍ରତୀକାଶ୍ରିତ ଅନେକ କବିତା ବୈକୁଂଠନାଥଂକ ଉତ୍ତରଣ ପ୍ରେମ

---

(୧୧୫) "ଅନେକ ମନୀଷୀ ରାଧାକୃଷ୍ଣେର ଲୀଲାକେ ରୂପକ ବା Allegory ହିସାବେ ଗ୍ରହଣ କରେନ । ତାହାଁରା ମନେ କରେନ, ବୈଷ୍ଣବ କବିରା ରୂପକେର ଆଶ୍ରୟ ଗ୍ରହଣ କରିୟା ଭଗବାନେର ପ୍ରତି ଜୀବେର ଆକର୍ଷଣ, ତାହାଁର ସହିତ ମିଲନେ ଭକ୍ତେର ଆନଂଦ ଓ ତାହାର ବିରହେ ଭକ୍ତେର ମର୍ମବେଦନାର ବର୍ଣନା କରିୟାଛେନ । ଅଥବା ସୀମା ଓ ଅସୀମେର ସଂପର୍କଇ ବୈଷ୍ଣବ କବିତାର ବିଶେଷତ୍ୱ × × ଭକ୍ତ ଓ ଭଗବାନେର ସଂପର୍କ ରାଧା ଓ କୃଷ୍ଣେର ଉପର ଆରୋପିତ ହଇୟାଛେ । ଅର୍ଥାତ୍ ପଦାବଲୀ ସାହିତ୍ୟେର ମିଷ୍ଟିସିଜମ୍ ଅଂତର୍ନିହିତ ନୁହେଁ, ଆରୋପିତ । ଅନେକେ ବଲେନ, ରାଧାକୃଷ୍ଣେର ପ୍ରଣୟ ଗୀତ ପ୍ରଥମେ ଅଧ୍ୟାତ୍ମତତ୍ତ୍ୱ ବର୍ଜିତ ଲୌକିକ ପ୍ରେମ-ଗୀତ ମାତ୍ର ଛିଲ । କ୍ରମେ ଇହାର ମଧ୍ୟେ ଆଧ୍ୟାତ୍ମିକତାର ଆରୋପ ଘଟିୟାଛେ । ତାରପର ଚୈତନ୍ୟୋତ୍ତର ଯୁଗେ ଇହା ଏକେବାରେ ଅପ୍ରାକୃତ ଜଗତେର ସାମଗ୍ରୀ ହଇୟା ଉଠିଆଛେ । × × ବୈଷ୍ଣବ ମହାଜନେରା ସଖୀଭାବ ଆଶ୍ରୟ କରିୟା ରାଧାକୃଷ୍ଣେର ଲୀଲାରସ ଆସ୍ୱାଦନ କରିୟାଛେନ × × ଆମରା । ବୈଷ୍ଣବ ପଦାବଲୀ ସାହିତ୍ୟ ହଇତେ ମିଷ୍ଟିସିଜମ୍‌ଏର ଅନେକ ଦୃଷ୍ଟାଂତ ଆହରଣ କରିତେ ପାରି ସତ୍ୟ କିଂତୁ ଆମରା ମରମିୟା ବଲିତେ ଯେ ଶ୍ରେଣୀର କବିତାଗଣକେ ବୁଝି (ଯେମନ ବାଂଲାର ବାଉଲ), ବୈଷ୍ଣବ କବିଗଣ ସେ ଶ୍ରେଣୀର ମିଷ୍ଟିକ ନହେନ ।"

ତ୍ରିପୁରାଶଂକର ସେନଶାସ୍ତ୍ରୀ—ବୈଷ୍ଣବ ସାହିତ୍ୟ ପୃ. ୧୯୪/୧୯୫

Digitized by PPRACHIN, SOA

ଭାବନାକୁ କିଛି କିଛି ସଂକେତିତ କରିଛି । କେଉଁ ଅଦୃଶ୍ୟ ବେଣୁତାନ, (୧୧୬) 'ନୂଆ ଅନୁଭବ'ର ମାର୍ଗଦେଇ ଚେତନାକୁ ସମ୍ପ୍ରସାରିତ ହୁଏ । ସକଳ ବାହ୍ୟ କୋଲାହଳ ସେଇ ଅଂତଃଶ୍ରୁତ ବେଣୁସ୍ୱନ ନିକଟରେ ମୌନ ହୋଇଯାଂତି । ରାଧା-ରୂପ ବ୍ୟକ୍ତି ଆତ୍ମା ତାର ପରିଚିତ ଗୋପପୁରରୁ ଉତ୍ଥିତ୍ ହୋଇ ଜୀବନ-ଯମୁନା କୂଳରେ ପ୍ରତୀକ୍ଷାର ମୂର୍ତ୍ତି ରୂପେ ଉଚାଟିତ ହୋଇଯାଏ । ତାପରେ କେବଳ ଗୋଟିଏ ଜଗତ ହିଁ ସତ୍ୟ ପ୍ରତିଭାତ ହୁଏ । ତାହା ପ୍ରୀତିର ଜଗତ । ମିଳନ ବା ବିରହ, ଅଶ୍ରୁ ଓ ଉଲ୍ଲାସ ସବୁ ଅବସ୍ଥାରେ ସେହି ପ୍ରେମାନୁଭବର ବିହ୍ୱଳତା । ସେ ଅଲୌକିକ. ପ୍ରେମର ସାଧନାରେ ଜୀବନର ସବୁ ଦେବାନେବା ଅର୍ଥାଂତର ଲଭିକରଂତି । କବି ତାହାର ସ୍ୱଗତୋକ୍ତି କରିଛଂତି, "ଧନ୍ୟକରୁ ସେ ପ୍ରୀତିଦେବତାର ସେବା / ଧୂଆଁ ହୋଇଯାଉ ଏ ଜୀବନେ ଦେବାନେବା ।"

ବ୍ୟକ୍ତିବାସନାର ଏହି ତୁଚ୍ଛତା, ଅଙ୍କକଷା କବିତାରେ ଗଭୀର ଅର୍ଥବ୍ୟଂଜନା ବହନ କରିଛି । ଅସୀମର ଲକ୍ଷ ଆବେଗ ନେଇ ସୀମା ଧରିବିଚରଣ କରେ । ସମଗ୍ର ଜୀବନ ଧରି ଅଜସ୍ର ଅନୁଭବ ସାଇତି ରଖିଥାଏ । ମନେକରେ, ଏ ସବୁର ଏକତ୍ରୀକରଣ ହିଁ ସାମଗ୍ରିକତା, ପୂର୍ଣ୍ଣତା । ତଥାପି ଶେଷକୁ ତା ଜୀବନ ଖାତାରେ ଅପୂର୍ଣ୍ଣତାର ଚିହ୍ନ ରହିଯାଏ । ଜୀବନବ୍ୟାପୀ ସଂଚୟନ ବୃଥା ହୋଇଯାଏ । କବିଚେତନାରେ ଏହା ସ୍ପଷ୍ଟ ହୋଇ ପ୍ରତିଭାତ ଯେ ଜୀବନରେ ଯେଉଁ ସମ୍ପୃକ୍ତି ଓ ଅନୁଭୂତିଗୁଡ଼ିକୁ ବ୍ୟକ୍ତି ମୂଲ୍ୟବାନ ଭାବି ସମାଦର କରେ, ସଯତ୍ନ ରଖେ, ସାମଗ୍ରିକତାର ବିଗ୍ରହରେ ତାହା ତୁଚ୍ଛ । (୧୧୭) କବି-ଚେତନାର ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାତ୍ମ ଉପଲବ୍ଧି । କାବ୍ୟସ୍ତରରେ ଅହଂର ଏହା ପ୍ରଥମ ସ୍ପଷ୍ଟ ସୀମାସଚେତନତା, ଅସୀମ ପ୍ରସାରଣ ଓ ଅବାରିତ ଚେତନା ବିସ୍ତୃତିର ଆଦ୍ୟ ଉଦ୍‌ବୋଧନ ।

ସବୁ ଯୁକ୍ତି-ବିଯୁକ୍ତିର ହିସାବ ପରେ ଜୀବନ-ଖାତାରେ 'ଶୂନ' ଆସିଯାଏ । ସେ 'ଶୂନ୍ୟ' ଉପଲବ୍ଧିରୁ ପୂର୍ଣ୍ଣର ସ୍ୱରୂପ ଜିଜ୍ଞାସା ସମାରବ୍ଧ ହୁଏ । ପୂର୍ଣ୍ଣତା ପ୍ରାପ୍ତି ପୂର୍ବରୁ ଶୂନ୍ୟ-ସଚେତନତା ରହସ୍ୟୋପଲବଧିର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଅବସ୍ଥା । ନିଜକୁ ଶୂନ୍ୟ ବୋଲି ଆବିଷ୍କାର କରିବାର ମୁହୂର୍ତ୍ତ ହିଁ ଆଉ ଏକ ପୂର୍ଣ୍ଣକୁ ଇଂଗିତ କରେ, ସେ ପୂର୍ଣ୍ଣତାର ଅଭିଳାଷୀ ଓ ଅଭିସାରୀ କରାଏ ।

ଏ ଶୂନ୍ୟତାର ପ୍ରାରଂଭିକ ଉପଲବଧିଟି ସଂଚୟଗତ । 'ସଂଚିତ' କିଛି ନାହିଁ । ନିଜର କିଛି ନାହିଁ । ସର୍ବଶୂନ୍ୟ । ଏ ଶୂନ୍ୟତାର ପ୍ରଥମ ଅନୁଭବ ଦୁଃଖ ହତାଶା । କ୍ରମ-ପରିଣତି ପଥରେ ଏ ଶୂନ୍ୟତାର ଅନ୍ତିମ ଅବସ୍ଥାରେ ସେ ମୁଁ ମଧ୍ୟ ରହେନାହିଁ । 'ମୋର' ଚେତନା ରହେନାହିଁ । ତାହାହିଁ ଅହଂ ବିଲୁପ୍ତି । ଚେତନାରେ ମୁଁ ବା ମୋର ଜନିତ ଭାବ ଅନୁଭବ ହିଁ ସତ୍ତ୍ୱାର ପ୍ରଥମ ଓ ଶେଷ ବଂଧନ, ଆବରଣ, ସୀମା ଓ ଅସୀମର ମଧ୍ୟବର୍ତ୍ତୀ ବ୍ୟବଧାନ ।

କବିଚେତନାର ଶୂନ୍ୟ-ଉପଲବ୍ଧି ଅବଶ୍ୟ ଅହଂ-ଶୂନ୍ୟ ହୋଇପାରିନାହିଁ । ହିସାବ ନିକାଶରେ ଯୋଗ ବିୟୋଗର ଶେଷଫଳ ଶୂନ୍ୟ ହୋଇଯାଇଛି ସତ, ବାକୀ ରହିଯାଇଛି ଖାତାଟା, ଯେଉଁଥିରେ

(୧୧୬) "ଅଦୃଶ୍ୟକାନକୁ ବଂଶୀଧ୍ୱନି ଅନିବାର ।" ଗ୍ରଂଥାବଳୀ ୨ୟ, ପୃ. ୧୮୩

(୧୧୭) "ଯେତୋଟି ମିଶାଇ ତହୁଁ ବଳି ଫେଡ଼ିଲି,
ବୁଦ୍ଧି ବିବେକର ଗରଦନ ମୋଡ଼ିଲି ।
ପଉରୁଷର କେତେ ଭେଳିକି ଦେଖାଇଲି,
ପଥ ସରିବାକୁ ଯା ହସାଇଲି ହେ ।" ଗ୍ରଂଥାବଳୀ ୨ୟ-ପୃ. ୩୬୮

Digitized by PPRACHIN, SOA

ସେ ହିସାବ କଷା । ଜୀବନର ଅନୁଭବ, ସଂଗ୍ରହ ସରିଯାଇଛି । ବାକି ରହିଯାଇଛି ସ୍ୱୟଂ ଜୀବନ । 'ସ୍ୱ'-ଚେତନା । ମୁଁ କୁ ବାଦ୍‌ଦେବା ଏତେ ସହଜ ନୁହେଁ । ତାର ସ୍ୱାର୍ଥବୋଧକୁ ଚେତନାକୁ ଉତ୍ତର ଦେବାପାଇଁ ଲୋଡ଼ା ଏକ ଭିନ୍ନ ସମର୍ଥ-ଶକ୍ତି । ତାହା ଜୀବନ ଦେବତାଙ୍କର । ଜୀବନର ସକଳ ସଞ୍ଚିତ ସଂଚୟର, ବ୍ୟର୍ଥତା ଓ ବେଦନାର ଚରମ ମୂଲ୍ୟାୟନ କେବଳ ସେଇ ହିଁ ଯଥାର୍ଥ କରିପାରିବେ ।

ଏହି ଭାବଧାରାଟି ପୌଷପରାଗ କବିତାରେ ମଧ୍ୟ ପୁଷ୍ଟିଲାଭ କରିଛି । ଜୀବନର ଯାତ୍ରାପଥରେ ସତ୍ତା ଏକାକୀ । ପଥଘାଟରେ ବିପୁଳ ଅନୁଭୂତି ଚୟନ । ବହୁ ସୁଖ ଦୁଃଖର ଅନୁଭବ, ଅଶ୍ରୁ ଉଲ୍ଲାସର ଆସ୍ୱାଦନ । ଅନେକ ତା ଆଗ୍ରହକୁ ଛୁଇଁଛନ୍ତି । ସେମାନଙ୍କ ପାଖରେ ଆଖି ଲସିଯାଇଛି । ପାଦ ଅଟକି-ଯାଇଛି । ସବୁଜ ପେଡ଼ିରେ ସେମାନଙ୍କୁ ସାଇତିରଖି ଦିଆଯାଇଛି । ଜୀବନରେ ଏ ସ୍ମୃତି ଚୟନ, ଏ ସଂଗ୍ରହଭାର କ୍ରମଶଃ ବଢ଼ି ଚାଲିଛି । ସବୁ ଘଟଣା, ଦୁର୍ଘଟଣା, ଭଲମନ୍ଦ, ଅନୁଭୂତି ଆବେଗ ସହ ନିଜକୁ ଏକାକାର କରି ବ୍ୟକ୍ତି ଆପଣାକୁ ବହୁ ଭାବେ ଭୁଲିଇଛି । ପରିଣାମରେ ନିଜକୁ ସେ ଅଜସ୍ର ଖଣ୍ଡ କରି ବାଂଟିଦେଇଛି ଯିନା, କିଛି ଚରିଂତନ କରି ଧରିରଖିପାରିନାହିଁ । ଜୀବନର ଅସଂଖ୍ୟ ଦୃଶ୍ୟାଂତରର ଯବନିକା ଅଂତରାଳବର୍ତ୍ତୀ ଦୃଶ୍ୟକାରଂକୁ (୧୧୮) କେବେ ସ୍ମରଣ କରିନାହିଁ ।

ଅଦୃଶ୍ୟ ସୂତ୍ରଧର ସଂପର୍କରେ ଏ ସଚେତନତା କବିଂକୁ ଜଣାଇ ଦେଇଛି ଯେ ଜୀବନରେ କିଛି ଅନାହୂତ ନୁହେଁ; ଆକସ୍ମିକ ବା ଗତାନୁଗତିକ ନୁହେଁ । ସବୁ ସେଇ ପ୍ରାଣନିୟଂତାଂକ ଇଚ୍ଛା ଓ କର୍ମ; ଯାହାକୁ କବି ନିଜର ବୋଲି ମୋହରି ବସାଇଛଂତି । ସଂଗୀତକାରର ସବୁ ସ୍ୱରକୁ ନିଜ କଂଠରେ ବାଂଧି ଦେଇଛଂତି । (୧୧୯) ଅନ୍ୟର ଗଂଡାଘର ଲୁଟି କଉଡ଼ିର ବାହ୍ୟାଡ଼ଂବର କଲେବି ମନ ଭିତରେ 'ପରଧନ ଧାରୁଆ' ବୋଲି କବି ଗ୍ଲାନି ଅନୁଭବ କରିଛଂତି ।

ଏ ନୂତନ ସଂଜ୍ଞା ସତ୍ତାର ଆତ୍ମ ଶୁଚିକାଷ୍ଠ ବହ୍ନି ସଂଜ୍ଞା । କବି ବ୍ୟାକୁଳ ହୋଇଉଠିଛଂତି ଯାହାର ଜିନିଷ ତାକୁ ସମର୍ପି ଦେବାପାଇଁ, ନିଜେ ମଧ୍ୟ ତାର ହୋଇଯିବା ପାଇଁ । ତେଣୁ କବିଂକର ଏକାଂତ ପ୍ରାର୍ଥନା—ପ୍ରାଣର ଶେଷ ସଂଗୀତ ସତ୍ତା ଚରଣରେ ନୈବେଦ୍ୟ ହୋଇରହୁ ।

ଏ ଆକୁଳତା ଶେଷଯାତ୍ରୀକୁ ମଧ୍ୟ ସଂସ୍କୃତ । ମୁଁ ର ସବୁ ପରିଚୟ ମିଥ୍ୟା ହୋଇଯାଇଛି । ପଥଘାଟର ସବୁ ସଂପର୍କ, ପାନ୍ଥଶାଳାର ସକଳ ମମତା ଶେଷ ହୋଇଯାଇଛି । ବେଳଦେଖି ପ୍ରିୟ ଯାହାବାଟେ ଛପିଗଲେ । ପାଚିଲାପତ୍ର ସବୁ ଝଡ଼ିଗଲେ । ଜୀବନ ସନ୍ଧ୍ୟାରେ ପଥଶ୍ରାଂତ କବି ନିଜର ଅସହାୟ ଶୂନ୍ୟତା ଭିତରେ ଏକାକୀ । ସେ ଏକ ଭୟଙ୍କର ଶୂନ୍ୟତା ଯାହା ଆଖି ଆଗରେ କି ହାତ ପାହାନ୍ତାରେ କେଉଁଠି କିଛି ରଖାଇ ଦେଇନାହିଁ । କବି ଖୋଜିଛଂତି ଜୀବନ ବଂଧୁକୁ; ଯାହାର ସାନ୍ନିଧ୍ୟ ସକଳ ନିଃସଂଗତାକୁ ଦୂର କରିଦେବ, ଯାହାର ବଂଶୀସ୍ୱନ ସକଳ ନିର୍ଜନତାକୁ ସ୍ୱରମୂର୍ଚ୍ଛିତ କରିଦେବ ।

---

(୧୧୮) "ନାଟର ଗୁରୁ କାହିଁ ହଜିଲୁ"— ଗ୍ରଂଥାବଳୀ ୨ୟ—ପୃ. ୩୬୧

(୧୧୯) "ତୋହର ନିର୍ଦ୍ଦେଶେ ଗାଇଲି ଗୀତ ମନ ମଉଜେ
ବଂଶୀ ରଂଧ୍ରେ ମୋ ଲହରି ତୋଳିଦେଲୁ ସହଜେ
ଛଂଦ ଗୁଂଥିଲି ଆପଣା ପରଗ୍ଧର
ଛଂଦ ସ୍ରଷ୍ଟାର ନଦେଲି ନାମେ ଗାର ।" ଗ୍ରଂଥାବଳୀ ୨ୟ—ପୃ. ୩୬୨

Digitized by PPRACHIN, SOA

ଅଂତରର ସଂଗୁପ୍ତ ଦେବତା ସବୁ ବାହ୍ୟ କୋଳାହଳ ଥମିଗଲା ପରେ ହିଁ ଆସଂତି । ସବୁ ଫୁଲବନ ଦଗ୍‌ଧ ହୋଇଗଲାପରେ ଝଂଝାପବନରେ, ନୀରବ ରାତ୍ରିରେ ତାଂକର ଆଗମନ । ସେତେବେଳକୁ କବି ବିଶ୍ୱକୁ ଯାହା କରିବାର କଥା କହିସାରିଥିବେ । ମନର ଚଂଚଳତା, ପ୍ରାଣର ଉଦ୍ଦାମତା ଶିଥିଳ ହୋଇଯାଇଥିବା ଆତ୍ମ ପ୍ରତିଷ୍ଠାର ସବୁ ଆସ୍ଫାଳନ ଥମିଯାଇଥିବ । ସବୁ ଶେଷପରେ ସେ ପ୍ରିୟବଂଧୁ ଆସିବେ କିଛି ଶୁଣିବାକୁ ନୁହେଁ, ନେବାକୁ ନୁହେଁ, ଶୁଣାଇବାକୁ, ଦେବାକୁ । ଜନ କୋଳାହଳ ସ୍ତବ୍‌ଧ ହୋଇଯାଇଥିବ । ଜଗତ ଓ ଜୀବନର ସବୁ ଦାବୀର ମୂହୂର୍ତ୍ତ ଅତିକ୍ରାଂତ ହୋଇଥିବ । କାହାରି ଆଉ କିଛି ବି ପ୍ରୟୋଜନ ନଥିବା ବେଳେ ହିଁ ସେ ଆସିବେ ନିଜର ପ୍ରୟୋଜନରେ, ଭଲ ପାଇବାର ପ୍ରୟୋଜନରେ । ଶୂନ୍ୟ ଜୀବନକୁ ଭରି ଦେଇଯିବେ ଅଜସ୍ର ଅନୁରାଗରେ । ମୂକ ହୃଦୟକୁ ବାଣୀମୟ କରିନେଇଯିବେ ଅନଂତ ଯୁଗର ଅକ୍ଷୟ ପ୍ରେମଗାନରେ ।

ଜୀବନର ସକଳ କାବ୍ୟପ୍ରେରଣା ତାଂକରି ଦାନ । ଜୀବନର ବୈଭବଦୀପ୍ତ, ସୌରଭମୟ ମୂହୂର୍ତ୍ତ-ଗୁଡ଼ିକ ଅମୂଲ୍ୟ ଗ୍ରାବଦ୍ୟୁତି ହୋଇ ରଜନୀଗଂଧା ପରି ଫୁଟିଉଠଂତି । ବିଶ୍ୱ ହୃଦୟକୁ ରୂପମୁଗ୍‌ଧ, ଗଂଧ ଆକୁଳ କରିଦିଅଂତି । କଳାଦୃଷ୍ଟିରେ ଯାହା ଭବ୍ୟ, ସୁଂଦର, ସାର ସେ ସବୁକୁ କବି ନିଜର ସୃଷ୍ଟି ମନେ ନକରି ଆଜି କଳାକାରର ସୃଜନୀ-ସ୍ୱପ୍ନ ବୋଲି ସ୍ୱୀକାର କରଂତି । ସେ ଅଦୃଶ୍ୟ କଳାକାରର ଅସୀମ ରୂପତୃଷ୍ଣା ଅଶେଷ ରୂପସମ୍ଭାରରେ ବି ସରେନାହିଁ । ତେଣୁ "ଘଟ ପରେ ଘଟ ସାଜିଅଛୁ ନଟ ।" ଏ ରୂପସୃଷ୍ଟି ସହ ବିକାଶ ମଧ୍ୟ ଅଚ୍ଛେଦ୍ୟ ସମ୍ପର୍କଯୁକ୍ତ । ଫୁଲ ଫୁଟିବା ଯେତିକି ସତ୍ୟ, ଝରିବା ବି ସେତିକି ସାର୍ଥକ । "ଶୂନ୍ୟ ଆଜି ଶେ ଏକଇ ପ୍ରଶ୍ନ କାହିଁକି ଫୁଟିଲି ଫୁଲ ।" ଏହାର ଏକମାତ୍ର ଉତ୍ତର ଉଭୟେ ଏକ ଶିଅ।ଳୀ ସ୍ରଷ୍ଟାର ଆନଂଦ-ବିଧାନ । ଫୁଲ ଫୁଟାଇବାରେ ତାର ଯେତିକି ଶିଳ୍ପ ସଫଳତା ତାକୁ ବୃଂତରୁ ଖସାଇଦେବାରେ ମଧ୍ୟ ତାର ସେତିକି କବିତ୍ୱ । ସେଥିପାଇଁ ଝରିଯିବାରେ ଦୁଃଖର କାରଣ ଫୁଲପାଇଁ ନାହିଁ । ମଣିଷ ପାଇଁ ମଧ୍ୟ ନାହିଁ । ଫୁଟଂତା ଫୁଲ ପ୍ରତି ହୃଦୟର ଯେତିକି ଶ୍ରଦ୍ଧା ଆକର୍ଷଣ ଜନ୍ମେ, ଝରାଫୁଲ ମଧ୍ୟ ସେଇ ପ୍ରୀତି ସଂବେଦନା, ସ୍ରଷ୍ଟାର ଅଭିପ୍ରାୟ-ସ୍ୱୀକୃତିକୁ ସେତିକି କାମନାକରେ । ଯେଉଁ ପ୍ରୀତି କେବଳ ପ୍ରସ୍ଫୁଟିତ ପୁଷ୍ପପାଇଁ, ତାର ରୂପ ଓ ଗଂଧ ପାଇଁ, ତାହା ଆତ୍ମପ୍ରୀତି, ପୁଷ୍ପପ୍ରୀତି ନୁହେଁ । ସେ ପ୍ରୀତିରେ କେବଳ ଭୋଗ ଅଛି, ଭୋଗର ମହତ୍ତ୍ୱ ନାହିଁ । ଏହା ସତ୍ୟ ଯେ ସୃଷ୍ଟି ଉପଭୋଗ ପାଇଁ, ଜୀବନ ଆନନ୍ଦ ପାଇଁ ଅଭିପ୍ରେତ । ସୌଂଦର୍ଯ୍ୟର ଚରିତାର୍ଥତା ଆନଂଦ କରେ, ଏ ଭୋଗ କିଂତୁ ଭୋଗୀଠାରେ ମର୍ଯ୍ୟାଦାପାଏ ନାହିଁ । ଭୋଗ୍ୟର ଉତ୍ସର୍ଗରେ ହିଁ ତାର ସାର୍ଥକତା, ହୃଦୟର ମୁଗ୍‌ଧପ୍ରୀତି ଉପଭୋଗର ପଥଦେଇ ଭୋଗ୍ୟ ବା ଭଲଲାଗିବାର ଉତ୍ସକୁ ସଂପ୍ରସାରିତ ହୋଇ ନପାରିଲେ ତାହା କେବଳ ସ୍ୱାର୍ଥର ଆମୋଦରେ ପର୍ଯ୍ୟବସିତ ହୁଏ । ଆପଣାର ଭଲଲାଗିବାକୁ ବାଦଦେଇ ଭଲପାଇବାର ନିଚାରଣ ଯେପରି କରିହୁଏ ନାହିଁ, ସେହିପରି କେବଳ ଭଲଲାଗିବାର ସୀମିତ ଦେହଳୀ ଭିତରେ ପ୍ରୀତି ଆବେଗକୁ ବାନ୍ଧି ରଖିଦେଲେ ଭଲପାଇବାର ସାର୍ଥକତା ହୃଦୟ ବୁଝିପାରେ ନାହିଁ । ଜୀବନ ସେ ପ୍ରେମର ମୂଲ୍ୟକୁ ନା ନିଜପାଖେ, ନା ଅନ୍ୟପାଖେ, କେଉଁଠାରେ ବି ବାଢ଼ିପାରେ ନାହିଁ । ପ୍ରକୃତ ପ୍ରେମ ଶୁଦ୍ଧ ଅନୁରାଗ କାଳଜୟୀ, ଆତ୍ମଜୟୀ ମଧ୍ୟ । ସେଠାରେ ଫୁଟିବା ପରି ଝରିବା ମଧ୍ୟ ଦୀପ୍ତିମଂତ । ସେ ପ୍ରେମ ନିଜପାଇଁ ଯେପରି ଗ୍ରହଣ କରି ଶିଖିଥାଏ, ନିଜକୁ ସେହିପରି ଉତ୍ସର୍ଗ କରିଦେବାର ସାମର୍ଥ୍ୟ ମଧ୍ୟ ଅର୍ଜନ କରିଥାଏ । ଫୁଟଂତା ଫୁଲର ରୂପ ରୂପମହକ ସେ ପ୍ରାଣଭରି ଉପଭୋଗ କରିପାରେ । ମଉଳା ପାଖୁଡ଼ାକୁ ମଧ୍ୟ କୋମଳ ଗୃହାଣି ଓ ପରମ ସ୍ନେହରେ ଆଉଁସି ଦେଇପାରେ । ପ୍ରୀତିର ଏହି ଶକ୍ତିହିଁ ଯୁଗେ ଯୁଗେ ସୀମାର କ୍ଷୁଦ୍ରପ୍ରାଣ ଭିତରେ ଅସୀମ ଆବେଗକୁ ଧାରଣ କରିବାର ସାମର୍ଥ୍ୟ ଦେଇଛି ।

Digitized by PPRACHIN, SOA

ତାକୁ ଅସୀମ ଅଭିଳାଷୀ, ଅମିତ ପ୍ରସାରୀ କରିଛି । ପ୍ରୀତିର ଏଇ ଆଶା-ବିଶ୍ୱାସ ଭିତରେ ଯେଉଁ ଆନଂଦର ଉଦ୍‌ବୋଧନ ତାହା ହିଁ ରାସରଙ୍ଗିକର ନିତ୍ୟବସନ୍ତ ହୋଇବ ।

ଏ ଅସୀମ ସମ୍ବାଦ 'ଡାହୁକ ଡାକେ'ରେ ମଧ୍ୟ ଅଭିବ୍ୟକ୍ତ । ଏ ଅବକାଶରେ ଇଂରାଜୀ କବି ଓ୍ୱାର୍ଡସ୍‌ଓ୍ୱାର୍ଥଂକର 'To the Cuckoo କବିତାଟିକୁ ସ୍ମରଣ କରାଯାଇପାରେ । ପକ୍ଷୀ ସ୍ୱରରେ ଅସୀମର ସମ୍ବାଦ । ଡାହୁକର ସ୍ୱରରେ ଯେପରି ବ୍ୟକ୍ତ ପ୍ରାଣର ଆକୁଳତା, ପୁଣି ବିଶ୍ୱଜୀବନର ଆଶ୍ୱାସନା ଏକତ୍ର ମୂର୍ଚ୍ଛିତ । ସେ ଆଶା ଆନଂଦର ସ୍ପର୍ଶ ଗଗନପବନରେ, ତରୁ ଶାଖାରେ ଆଉ କବି ପ୍ରାଣ-ପୁରରେ । ଡାହୁକର ଡାକରେ କବିଂକ ମାଇଁ "ଆଲୋକ ରାଜ୍ୟେ ଗଂଗା ପଡ଼ଇ ଝରି"— ବର୍ଣ୍ଣନାରେ ସ୍ୱର, ଆଲୋକ ଓ ଗଂଗା—ଏ ତିନୋଟି ଯେଉଁ ପ୍ରତୀକରେ ଜ୍ଞାନ, ପ୍ରେମ ଓ ପବିତ୍ରତାର ତ୍ରିବେଣୀ ସଂଗମ ଘଟିଛି । ଦିବ୍ୟ-ପକ୍ଷୀ ରୂପେ Cuckoo ଓ୍ୱାର୍ଡସ୍‌ଓ୍ୱାର୍ଥଂକୁ ଅପାର୍ଥିବ ରାଜ୍ୟପ୍ରତି ଉଚ୍ଚକିତ କଲାଭଳି ଡାହୁକ କବିଂକୁ ଆଲୋକ ରାଜ୍ୟର କଥା କହୁଛି । (୧୨୦) ନିଖିଳ ସଂଗୀତର ସ୍ୱର ଝଂକାର ତୋଳୁଛି । କବି ଚିତ୍ତରେ ଏକ କ୍ଷୀଣ ଆଶଂକା ମଧ୍ୟ ଜାଗିଛି । ପ୍ରୀତି ସହ ସଂଶୟ ଯେ ନିତ୍ୟକ୍ଷେତ୍ରରେ ବନ୍ଧା । ନିଃସଂଶୟ ପ୍ରୀତି-ଧାରାବାହୀର ସାମର୍ଥ୍ୟ କହୁଛି । ପ୍ରୀତିର ଆକର୍ଷଣ ଯେତେ ପ୍ରଗାଢ଼, ତାର ରହସ୍ୟମୟତା ସେତେ ଗଭୀର । ତା ସ୍ଥାୟିତ୍ୱ ସମ୍ପର୍କରେ ଆଶଂକା ସେତେ ପ୍ରବଳ ବୋଧହୁଏ, ସତ୍ତାର କ୍ଷୁଦ୍ରତା, ଅପୂର୍ଣ୍ଣତାର ଗ୍ଳାନି ଭିତରେ ପ୍ରଣୟାନୁଭବ ବ୍ୟକ୍ତିକୁ ଏଭଳି କେ ବିପୁଳ, ଉଦାର ଓ ପ୍ରସାରିତ ବିହ୍ୱଳତା ଆଣିଦିଏ ଯେ ଏହା ସତ୍ୟ ଓ ସମ୍ଭବ ବୋଲି ସହଜରେ ବିଶ୍ୱାସ ଜନ୍ମେନାହିଁ । ରଜନୀଗଂଧାରେ ତାହାର ପ୍ରତିଧ୍ୱନି । (୧୨୧)

ସୂଚିତ 'ପରମାନଂଦ ପରକାଶ' ଦୁଇଟି ଋତୁ ଶୀର୍ଷକ କବିତାରେ କବିଂକ ମୁଗ୍ଧାନୁଭୂତି ସ୍ପଷ୍ଟ । ଗୋଟିଏ ନବବସନ୍ତ ଅପରଟି 'ବର୍ଷନ୍ତ ମେଘ' କବିଙ୍କର ବିଷଣ୍ଣ ମନ-ପୃଥିବୀରୁ ଜୀର୍ଣ୍ଣ ପତ୍ରର ପୌଷିକୁ ହଟାଇ ନବୀନ ବସନ୍ତର ସବୁଜ ଆବିର୍ଭାବ ହୋଇଛି । ଚରାଚରତ ବେଦନାତୁର କବିସ୍ୱରରେ ଏକ ଆଶାବନ୍ତର ମୁଗ୍ଧ ଆଳାପ ଶୁଭୁଛି । (୧୨୨) ନବବାତ, ନବପତ୍ର ଓ ନବପୁଷ୍ପର ପରିପାଟୀରେ ସବୁଜାୟିତ । ଧରଣୀ ସହ କବିଂକ-ମନର ସବୁଜ ତାରୁଣ୍ୟବି ଚେଇଁଉଠିଛି । ଏ ତାରୁଣ୍ୟ ଗୋଟାଏ ଯୌବନର ଜୟଗାନ ମୂର୍ଚ୍ଛିତ ନୁହେ । ସମଗ୍ର ଜୀବନ ଯେପରି ତାରୁଣ୍ୟର ପ୍ରାଂଗଣକୁ ଅବତରି ଆସିଛି । କବିଂଙ୍କର ପ୍ରୌଢ଼ ଧୀର ଚେତନାରେ ଜୀବନକୁ ସଶ୍ରଦ୍ଧ ଆଲିଂଗନ ଦେବାର ବିହ୍ୱଳତା ଆସିଛି ।

ବସନ୍ତର ନବପତ୍ର, ଧୀର ସମୀର, ସବୁଜ ଧରା ଓ ନୀଳ ଆକାଶ କବି ଚିତ୍ତରେ ଯେଉଁ ଉଚ୍ଚାଟନ ଜଗାଇଗଲା, ତାହା ବର୍ଷନ୍ତ ମେଘର ଅନଂତ ଧାରାରେ କବିଂକୁ ଉଦ୍ବୁଳାବିତ କରିଦେଇଛି । କେବଳ

(୧୨୦) ଡାହୁକ ଆଣିଛି ପରମାନଂଦ ବାଣୀ ।" ଗ୍ରଂଥାବଳୀ ୨ୟ—ପୃ. ୩୧୯

(୧୨୧) "ଭାଗ୍ୟେ ଅଛିକି ବିପୁଳ ବିଶାଳ ପ୍ରାଣ ସମୁଦ୍ରେ ମିଶି ଏ ସତ୍ତା ହଜି ।" ଗ୍ରଂଥାବଳୀ ୨ୟ ପୃ. ୩୯୯

(୧୨୨) "ଅନେକ ସମୟରେ ମୋର ମନେ ହୋଇଛି, ମୋର କାବ୍ୟଜୀବନର ଇତି ହେଲା । ଅବସର ଗ୍ରହଣର ଛ'ମାସ ପରେ ହଠାତ୍ କେତେଗୁଡ଼ିଏ ଟେବୁଲ ଗୋଲାପ ଫୁଟିଥିବାର ଦେଖି ପୂର୍ବ ଭାବୋଚ୍ଛ୍ୱାସ ପୁଣି ଫେରିଆସିଛି । ନବବସଂତ, କ୍ଷୀଣବସଂତ ଆଦି ସେହି ସମୟର ଲେଖା ।"

ବୈକୁଂଠନାଥ ପରିକ୍ରମା —ପୃ. ୧୮

Digitized by PPRACHIN, SOA

ଗୋଟାଏ ରୋମାଂଟିକ୍ ଉଚ୍ଛ୍ୱାସ ଭିତରୁ ଏ ବର୍ଷାବିଳାସ କବି ରଚନା କରିନାହାଂନ୍ତି, ଏହା ଭିତରୁ ସେ ପ୍ରାଣର ପ୍ରତ୍ୟୟ ପାଇଛଂନ୍ତି, ପ୍ରୀତିର ମହ୍ଲାର ଶୁଣିଛଂନ୍ତି । ଶୂନ୍ୟ ନଦୀର ତୃଷିତ ବୁକୁ ଘନ ଆଷାଢ଼ର ଅଜସ୍ର ଧାରାପାତରେ ଭରିଯାଇଛି । ଚପଳା ଚମକରେ ଅଂଧାରିତ ଚେତନାକାଶରେ ନୂତନ ଆଶାଲୋକ ଝଲସିଉଠିଛି । ଜୀବନପ୍ରିୟଂକ ଅନୁରାଗ ବସ୍ତୁଭାବେ ଓ ବସ୍ତୁରୂପେ ଫୁଟିଉଠିଛି । କବି ସେ ନିବିଡ଼ ସାନ୍ନିଧ ଓ ସଂପ୍ରୀତିକୁ ସମଗ୍ର ସତ୍ତାରେ ଲାଭ କରିଛଂନ୍ତି । (୧୨୩)

କବି ଏ ବିପୁଳ ଉପଲବ୍‌ଧିର ସ୍ୱରୂପ ବିଶ୍ଳେଷଣ ମଧ୍ୟ କରିଛଂନ୍ତି । ବର୍ଷାର ଏ ଆକାଶୀଗାନ ଧରାର ସଂଗୀତ ନୁହେଁ, ତ୍ରିଭୁବନ ଏହାକୁ ଧାରଣ କରିପାରିନାହିଁ । କବି ଅସୀମ ସଚେତନ; ମାତ୍ର ସୀମା-ବଂଧନ ମୁକ୍ତ ନୁହଂନ୍ତି । ବଜ୍ରନିନାଦ ଅହଂକୁ ପରାଭବ ଦେଇଛି । ବିଚୂର୍ଣ୍ଣ କରି ପାରିନାହିଁ । ସେ ଅହଂର ବିନାଶ ପରେ ହିଁ ଚେତନାର ନବଜନ୍ମ ଘଟେ । ତାହା ହିଁ କବି ଉଦ୍‌ପ୍ରେକ୍ଷିତ ସତ୍ତାର ଅନାବିଳ ଶିଶୁତ୍ୱ । ଦେବଶିଶୁର ଏ ନବପରିଚୟରେ ହିଁ ସତ୍ତାର ଦିବ୍ୟ-ଯାତ୍ରା ପଥରେ ସାର୍ଥକ ପଦକ୍ଷେପ (୧୨୪) ସଂଭବ ।

କବି ପ୍ରାଣରେ ସଂଶୟ-ଆବିର୍ଭୂତ । ରହସ୍ୟାନୁଭବର ପ୍ରାଥମିକ ସ୍ତରଲବ୍‌ଧ ଏ ଆନଂଦାନୁଭବ ଏକ ସାମୟିକ ଅବସ୍ଥା ଅସୀମଧାରଣର ଶକ୍ତି ଏପର୍ଯ୍ୟନ୍ତ ସେ ଲାଭ କରିନାହାଂନ୍ତି । ଏକ କ୍ଷୀଣାବୟବା ନଦୀର ସମୁଦାୟ ଆକାଶୀପ୍ଳାବନ ଧାରଣ ଅସଂଭବ । ଅଜସ୍ର ଆଷାଢ଼ରେ ଯାହା ନିଃସରି ଯାଉଛି, ଆକାଶ ମେଘଶୂନ୍ୟ ହୋଇଗଲେ, ତାହା ପୁଣି ଶୁଷ୍କଧାର ହୋଇଯିବ । କବିଂକଠରେ ତେଣୁ ଆଶଂକାର ଆର୍ତ୍ତନାଦ, "ସରି ଆସେ ଯେବେ ରସର ସମୃଦ୍ଧି ।" (୧୨୫) ଆକାଶ ମେଘହୀନ ହୋଇଗଲେ, ଧରାବକ୍ଷ ଜଳଶୂନ୍ୟ ହୋଇଯାଏ । ଚେତନାରୁ ଅନଂତ ରସ ପ୍ରସ୍ରବଣ ଗୁପ୍ତ ହୋଇଗଲେ ସତ୍ତା ପାର୍ଥିବ ଶୁଷ୍କତାରେ ସଂତାପିତ ହୁଏ । ଏହି ଶୁଷ୍କତା, ଶୂନ୍ୟତା ଓ ଅଂଧକାରର ଆଶଂକା ଭିତରୁ ହିଁ ଅଶାନ୍ତ ଆତ୍ମାର ଆର୍ତ୍ତଧ୍ୱନି ଶୁଭେ, "ତମସୋ ମାଂ ଜ୍ୟୋତିର୍ଗମୟ", "ଅଂଧକାରରୁ ମେଘ ଲୋକେ ନିଅ ଡାକି ।"

ଆକାଶରୁ ମେଘ ଅଦୃଶ୍ୟ ହୋଇଗଲେ ପୃଥିବୀରୁ ରସଧାରା ଅଂତର୍ହିତ ହୋଇଯାଇପାରେ; କିଂନ୍ତୁ ବିଲୁପ୍ତ ହୁଏନାହିଁ । କବିଚିତ୍ତରେ ବଳିଷ୍ଠ ପ୍ରତ୍ୟୟ, ଜୀବନର ରସଗଂଗା ଉତ୍ସ ସଂଗୁପ୍ତ । 'ପୁଣି କେବେ ମେଘରେ ବିଦ୍ୟୁତ୍ ସଂଚାର କରି, ଜୀବନରେ ଆଲୋକ ଆନଂଦର ଧାରା ଛୁଟାଇ ସେ ନବଜଳଧର, ପୁଣି କବିଂକ ଚିତ୍ତାକାଶରେ ରୂପଲାଭ କରିବେ । ଆକାଶ-କଂଠରୁ ବର୍ଷାମୁଖର, ଶ୍ୟାମଳ-ରାଗର ମେଘମହ୍ଲାର ଶୁଣିବାକୁ କବି ଚିତ୍ତ ଗୃହକ ସଦୃଶ ଉତ୍କଣ୍ଠିତ ରହିଯାଇଛି । ମାଟିରେ ପାଦଥୋଇ, ଆକାଶକୁ ଆଖିଟେକ ଅଦୃଶ୍ୟକୁ ଗ୍ରହି ରହିଥିବା ତ ମିଷ୍ଟିକର ଚିରଂତନ ଭାଗ୍ୟ । ଏ ରହସ୍ୟବାଦୀ

---

(୧୨୩) "ବାରି ହେଉନାହିଁ ଦିବସ ଏ ଅବାରିତ,
ଚିର ଆନଂଦ ! ପ୍ରାଣ ସମୁଦ୍ର ! ଅପୂର୍ବ କିବା ସଂଗୀତେ ଉଠେ ମାତି ।"
ଗ୍ରଂଥାବଳୀ—୨ୟ—ପୃ. ୪୧୧

(୧୨୪) "ପ୍ରପଂଚଧାରା ଉଜ୍ଜୀବିତ ଏ ରୂପ କିବା ଅନୁପମ
ପରମାନଂଦ ଅମୃତ ଶିଶୁ ପୟରେ ମୋ ନମୋନମ ।"
ଗ୍ରଂଥାବଳୀ—୨ୟ—ପୃ. ୪୧୧

(୧୨୫) ଗ୍ରଂଥାବଳୀ—୨ୟ—ଭାଗ ପୃ. ୪୧୨

Digitized by PPRACHIN, SOA

ଜୀବନାନୁଭବ ବର୍ଣ୍ଣନାରେ କବି ଚରିଦ୍ୱନ ମିଷ୍ଟିକ୍‌ପ୍ରୀତି ସାଧନାର ଏ ବିଂଡବିତ ଭାଗ୍ୟର ବିଳାପ ହିଁ କରିଛନ୍ତି । କବିଙ୍କ ରହସ୍ୟବାଦୀ କାବ୍ୟସ୍ୱର ଶେଷପର୍ଯ୍ୟନ୍ତ ଏହି ଆଶା ଓ ସଂଶୟ, ସଂଘର୍ଷ ଓ ପ୍ରତ୍ୟୟର ମିଶ୍ରିତ ଗାନ ରଚନା କରିଛି । ପ୍ରେମ, ସୌନ୍ଦର୍ଯ୍ୟ ଓ ଆନନ୍ଦ, ଏହାର ଉଦ୍‌ବୋଧନରେ ତାଙ୍କ ରଚନାରେ ଏକ ମିଷ୍ଟିକ-ସୁଲଭ ଭାବିକ ଆବେଗ ଅଛି; ମାତ୍ର ତାର ଐକ୍ୟତାନିକତାଟି ବାରମ୍ବାର ଲଘୁଭଙ୍ଗ କରିଛି ।

## ଉପସଂହାର :

ବୈକୁଣ୍ଠନାଥ ଯେ ଅନେକ ସମୟରେ ଏକ ବିରୋଧୀ ସ୍ୱରର କବି ମନେହୁଅନ୍ତି, ତାର କାରଣ ହୋଇପାରେ ଜୀବନର ଦ୍ୱନ୍ଦ୍ୱାତ୍ମକତାକୁ ତାଙ୍କର ଅନୁଭବ ଅତିକ୍ରମ କରିବାରେ ସଫଳ ହୋଇପାରିନାହିଁ । ସଚେତନ ଭାବନା ଓ ଅବଚେତନ ମନରେ, ବିଭିନ୍ନ ସତ୍ତାଗତ ଚେତନା ସ୍ତରରେ ସଂଯୋଗ ଓ ସଂଗତି ସ୍ଥାପନ ହୋଇପାରିନାହିଁ । ସେଥିପାଇଁ ଶ୍ରଦ୍ଧାମୁଗ୍ଧ ହୃଦୟରେ ଗୋଟିଏ ଭାବ ମଧୁର ମୁହୂର୍ତ୍ତରେ ସେ ଏକ ସୁନ୍ଦର ସୁକୁମାର ଫୁଲଟିଏ ଫୁଟାଇ ଦିଅନ୍ତି । ପର ମୁହୂର୍ତ୍ତରେ ସନ୍ଦିଗ୍ଧ ସଂଶୟରେ ତାକୁ କୀଟ-ଦଂଷ୍ଟ କରିଦିଅନ୍ତି । ତାଙ୍କ ରଚନାର ରହସ୍ୟ ଚେତନାରେ ଅନେକତ୍ର ମିଷ୍ଟିସିଜମ୍‌ର ଦୁର୍ଜ୍ଞେୟତା ପରିବର୍ତ୍ତେ ଦୁର୍ବୋଧ୍ୟ ଅସ୍ପଷ୍ଟତାର ରହସ୍ୟାଚ୍ଛନ୍ନତା ହିଁ ଅଧିକ ପ୍ରକଟିତ । ପୁନଶ୍ଚ 'ମୃତ୍ତିକା ଦର୍ଶନ'ର ପରବର୍ତ୍ତୀ କାବ୍ୟଚେତନା ଏକ ଭୟଙ୍କର ସଂଶୟବାଦୀ ଆବର୍ତ୍ତ ଭିତରେ ସମୟ ବିଶେଷରେ କବିଙ୍କର ଅଧ୍ୟାତ୍ମ ପ୍ରତ୍ୟୟକୁ ମଧ୍ୟ ପ୍ରଶ୍ନ କରିଛି । କବି ପୂର୍ଣ୍ଣ ନିଷ୍ଠାର ସହିତ ଜଣେ ସମ୍ପୂର୍ଣ୍ଣ ସଂଶୟବାଦୀ/ନେତିବାଦୀ/ ଅସ୍ତିତ୍ୱବାଦୀ ବି ହୋଇପାରି-ନାହାନ୍ତି । ଆଦ୍ୟ ଜୀବନର କାବ୍ୟାଦର୍ଶ ଓ ଅଧ୍ୟାତ୍ମ ଅଭୀପ୍‌ସା ପରିଣତ କାଳର ରଚନାମାନଙ୍କରେ ଯେପରି ଏକ ଗୋଲକଧନ୍ଦାରେ ବିଘୂର୍ଣ୍ଣିତ । ପ୍ରତ୍ୟେକଟି ଚେତନା ପ୍ରତ୍ୟେକଟି ଅନୁଭବକୁ, ପ୍ରତ୍ୟେକଟି କାବ୍ୟୋଚ୍ଚାରଣ ପ୍ରତ୍ୟେକଟି ଭାବୋପଲବ୍‌ଧିକୁ ଯେପରି ବିରୋଧ କରିଛନ୍ତି । ଶୂନ୍ୟତାର ଅନ୍ଧାରି-ସଂଘର୍ଷ-ସମୁଦ୍‌ଭୂତ ଏକ ଭୟାନକ ସଂଶୟାତ୍ମକ ଆତ୍ମଦହନ ଶକ୍ତିହୀନତାର ବିଳାପ ରୂପେ କାବ୍ୟ ସ୍ୱରରେ ମୁଖର ହୋଇଉଠିଛି ।

କବିଚେତନା ସଂଘର୍ଷ ବିମୁଖ । ମନେହୁଏ, ସ୍ୱଭାବତଃ ଆବେଗମୟ କବିସତ୍ତା ଅତ୍ୟଧିକ ଭାବ-ବିହ୍ୱଳତା ହେତୁ ଜୀବନ-ସମୁଦ୍ରର ତୀରଭୂମିରେ ଅନୁଭୂତିର ଯାବତୀୟ ତରଙ୍ଗାଘାତରେ ଆଲୋଡ଼ିତ ହୋଇଛି । ମଧ୍ୟ ସମୁଦ୍ରର ନିସ୍ପନ୍ଦତା କବିଙ୍କ ପାଇଁ ସୁଦୂର, ଅଲଭ୍ୟ ହୋଇପଡ଼ିଛି । ଲକ୍ଷଣୀୟ, ବୈକୁଣ୍ଠନାଥ କେଉଁଠାରେ ବି ଶାଶ୍ୱତ ପ୍ରତ୍ୟକ୍ଷର କଥା କହିନାହାନ୍ତି । ରହସ୍ୟ ଉପଲବ୍‌ଧିର ଚରମ ସଂବାଦ କବି ପ୍ରାଣରେ ବାଜିଛି । ସମସ୍ତ ଜୀବନରେ ସେଇ ଏକ ଉପଲବ୍‌ଧିର ଅପେକ୍ଷା ଓ ଆତ୍ମପ୍ରସ୍ତୁତି କବିଙ୍କ ସମଗ୍ର କାବ୍ୟୋପଲବ୍‌ଧିର ବାଣୀ । (୯୬) ଏହାର ନିଦର୍ଶନ ସ୍ୱରୂପ ବିଭିନ୍ନ ସମୟରେ ଲିଖିତ 'ବିଲ୍ୱମଙ୍ଗଳ' ଶୀର୍ଷକ କବିତାମାନ ପ୍ରଣିଧାନଯୋଗ୍ୟ । "ଏକାକୀ ଭୁଲିଛି ମୋର ନାହିଁ ଦିନରାତି / ଅନନ୍ତ ବିରହଭରେ ଫାଟିଯାଏ ଛାତି"ର ଯେଉଁ ଅଶ୍ରୁଳ ବିଳାପ କବି ଆତ୍ମାରୁ ଉଚ୍ଚାରିତ ହୋଇଛି କାଳର ବିପୁଳ ବ୍ୟବଧାନ ପରେ ମଧ୍ୟ ସେ ବିରହ ଶୂନ୍ୟତା ଓ ଯାତନା ସଂବାଦର ପରିସମାପ୍ତି ଆସିନାହିଁ । ପ୍ରଥମ ବିରହାନୁଭବ ଓ ଅନ୍ଧକାର-ସଚେତନତା

---

(୯୬) "ତୁମ୍ଭ ଦରଶନ ଲଗି ଘାଟ ତୁଠେ ଜାଗି ଜାଗି/ଦିବାଲୋକ ହେଲା ଆସି କ୍ଷୀଣ ।"
ଗ୍ରନ୍ଥାବଳୀ—୨ୟ—ପୃ. ४୧୮

Digitized by PPRACHIN, SOA

("ବାହାରେ ଅଂଧାର । ପୁଣି ଭିତରେ ଅଂଧାର") (୧୬୭) (କ) ସହ ଆବେଗମୟ ପ୍ରଗଲ୍‌ଭତା ରହିଛି, ଏହା କବି ଜୀବନର ଉନ୍ମେଷରେ ରଚିତ । ଶେଷ ଜୀବନରେ ସେହି ବିରହାଂଧକାର କବିଂକ ଗାମ୍ଭୀର୍ଯ୍ୟମୀରବତା ଭିତରକୁ ଫେରି ଆସିଛି, "ଦିଶବଢ଼ିଗଲେ ତମିର କାଳ/ଗୁହିଁ ମୋତେ ହସଇ କାଳ/ କାଂଡାରେ ମୁଁ ବୃଥା ଭରମି ମରୁଚି ମହାଶୂନ୍ୟେ ନହିଁ ଧାରଣା ଧ୍ୟାନ ।" (୧୬୭) (ଖ)

'ବୃଥା ଭରମି ମରୁଚି'—ଏ ସଂଶୟୋକ୍ତି କୌଣସି ଅସ୍ତ୍ୟାତ୍ମକଉକ୍ତି ଅପେକ୍ଷା ଅଧିକତର ନାସ୍ତି-ବାଚକତା ସଂଭୁକ୍ତ । କବିଂକର ସାଧକ ସତ୍ତାର ନିଷ୍ଠାଶକ୍ତି ଓ ପ୍ରତ୍ୟୟ ଦୃଢ଼ତାର ଅଭାବହିଁ ଏଠାରେ ବଳବତ୍ତର । କବି ଜଣେ ଦୃଢ଼ ଅଧ୍ୟାତ୍ମବାଦୀର ପରିଚୟ ବହନ କରଂତି, ମାତ୍ର ଈଶ୍ୱରଂକ ମଂଗଳ ଅଭୀପ୍‌ସା ନିକଟରେ ସେ ନିଜକୁ ପୂର୍ଣ ଉନ୍ମୁକ୍ତ, ନିଷ୍କପଟ, ନିର୍ଦ୍ୱଂଦ୍ୱ ଓ ନିଃସର୍ତ୍ତ ନିଷ୍ଠାରେ ଅବଚଳିତ ରହିପାରି ନାହାଂତି । କବି ତତ୍ତ୍ୱରେ ସ୍ୱତଃ ଈଶ୍ୱରଂକ ଅସ୍ତିତ୍ୱ ସଂପର୍କରେ ଅବିଶ୍ୱାସ ନାହିଁ, ମାତ୍ର ତାଂକର ପ୍ରକାଶ ଓ ଉଦ୍ଦେଶ୍ୟରେ କାବ୍ୟଗତ ଚେତନା ସଂଶୟ ରହିଛି । କବି ଅଭିବ୍ୟକ୍ତିରେ ସେ ଯେପରି ବ୍ୟକ୍ତି ଜୀବନସହ; ସୃଷ୍ଟି ଜଗତସହ ସଂପର୍କଶୂନ୍ୟ ନିଷ୍ଠୁର ନିରାସକ୍ତ ନିର୍ବିଚଳ ଈଶ୍ୱର । ଏ ପ୍ରକାର ବିଭୁସ୍ୱୀକୃତି-ଦାର୍ଶନିକ ସ୍ୱୀକୃତି ହୋଇପାରେ, ରହସ୍ୟାତ୍ମକ ନୁହେଁ । ମିଷ୍ଟିକର ଈଶ୍ୱର ଓତଃପ୍ରୋତ ତାର ଜୀବନ ସହ ଜଡ଼ିତ ରହିଥାଂତି । ସକଳ ବେଦନାନୁଭବ, ସଘାତ ସଂଘର୍ଷ ଭିତରେ ବି ହୃଦୟରେ ତାଂକର ଆନଂଦମୟତ୍ୱର ଅକୁଂଠ ସ୍ୱୀକୃତି ରହିଥାଏ । ବ୍ୟକ୍ତିଜୀବନ ସହ ଈଶ୍ୱରଂକର ସଂପର୍କ ଏକ ନିରବଚ୍ଛିନ୍ନ ଭାବବନ୍ଧନମୟ ଓ ପ୍ରାଣସଂଯୋଗ ରୂପେ ରହସ୍ୟୋପଲବ୍ଧିରେ ସ୍ୱୀକୃତ ହୋଇଥାଏ । ଜୀବନରେ ଲବ୍‌ଧ ଦ୍ୱଂଦ୍ୱର ଘାତ ଅଭିଘାତର ଅର୍ଥକୁ ମିଷ୍ଟିକ ସ୍ୱତଃ ବୁଝିପାରେନା । ମାତ୍ର ଜୀବନଦେବତାଂକ ସହ ନିଜର ଆତ୍ମିକ ସଂପର୍କଟିକୁ ମୁହୂର୍ତ୍ତେ ବି ବିସ୍ମୃତ ହୋଇପାରେନା ।

"ନିଷ୍ଠୁର ତୁମେ, ନିର୍ମମ ତବ ଆନଂଦ ଆୟୋଜନ" ପୁଣି, "ଧରଣୀର ଏହି ଦୁର୍ଦ୍ଦିନେ ତମେ ଦେଉନାହିଁ କିଆଁ ଦେଖା," ପ୍ରଭୃତି ପଙ୍‌କ୍ତି ଭିତରେ ଶ୍ରୁତ ଯେଉଁ ପ୍ରତିକ୍ରିୟାଟି ଆରଂଭରୁ ଶେଷ ପର୍ଯ୍ୟଂତ ବୈକୁଂଠ-କାବ୍ୟସ୍ୱରରେ ବଳବତ୍ତର, ତାହା ହେଲା, ଜୀବନକୁ ପୂର୍ଣସ୍ୱୀକୃତିର ଅଭାବ । ଏ ଗୁଡ଼ିକୁ ବାସ୍ତବବାଦୀ ଚଂତାଧାରା ବୋଲି ବିବେଚନା କରି ବସିଲେ ସ୍ମରଣ କରିବାକୁ ହୁଏ ଯେ ରହସ୍ୟବାଦ ବାସ୍ତବ-ବିରୋଧୀ ଅବାସ୍ତବବାଦ ନୁହେଁ । ମିଷ୍ଟିକ ସାମ୍ୟବାଦୀ ବା ହିତବାଦୀ (altruist) ବା ନୈତିକ ପ୍ରବକ୍ତା (moralist) ନୁହେଁ । ସେ ସମଗ୍ରତାବାଦୀ । ମାନବତାବାଦ ଏହାର ଅଂତର୍ଭୁକ୍ତ । ରହସ୍ୟବାଦୀ ସମଗ୍ରତାକୁ ଗ୍ରହଣ କରେ, ସ୍ୱୀକାର କରେ ଓ ଆପାତତଃ ବିରୋଧ ସତ୍ତ୍ୱେ ସବୁ ଦ୍ୱଂଦ୍ୱର ସମନ୍ୱୟରେ ବିଶ୍ୱାସ ରଖେ । ମାତ୍ର ବୈକୁଂଠ କାବ୍ୟର ଭକ୍ତିକସ୍ୱର ଯେପରି ଭାବୋଚ୍ଛ୍ୱାସ ପ୍ରବଣ, ନୀତିବାଦୀ ଭାଷଣ ସେହିପରି ପ୍ୟୁରିଟାନିକ୍ (puritanic) ଓ ସାମ୍ୟବାଦୀ ଆହ୍ୱାନ ତଦ୍ରୂପ ପ୍ରାଚୀର ପତ୍ର କର୍କଶ । କବି ଜୀବନ ଯେଉଁଠି ବିରୋଧ ଓ ଅନାକାଂକ୍ଷିତକୁ ଭେଟିଛି; ବର୍ଜନ ତତ୍ପର ମାନସିକ ପ୍ରତିକ୍ରିୟା ଖେଳିଛି, କବି ତାଠାରୁ ନିଷ୍କୃତି ଗୁହିଁଛଂତି କିଂବା ତାକୁ ତତ୍ତ୍ୱତଃ ପ୍ରତିଷ୍ଠାକରି ଏକ ଦର୍ଶନାନୁଗ ମନସ୍ତାତ୍ତ୍ୱିକ ସାଲିସ ଗୁହିଁଛଂତି । (୧୬୮) ଭାବ ଓ

(୧୬୭) (କ) ଗ୍ରଂଥାବଳୀ ୧ମ—ପୃ. ୩୩୭ । (ଖ) ଗ୍ରଂଥାବଳୀ—୨ୟ—ପୃ. ୪୬୩

(୧୬୮) "ଜୀବନର କ୍ଷୁଦ୍ର ବୃହତ୍ତ ଘଟଣାବଳୀରୁ ତୁମେ ପ୍ରତ୍ୟୟ ନକର । intelligently ବୁଝିବାକୁ ଓ logically ବିଶ୍ୱାସ କରିବାକୁ ହେବ ।" ବୈକୁଂଠନାଥ ପରିକ୍ରମା (ଚିଠିପତ୍ର—) ପୃ. ୨୨୭

Digitized by PPRACHIN, SOA

ଉପଲବ୍ଧିର କ୍ଷେତ୍ରରେ ତାର ନିଷ୍କପଟ ପ୍ରତିଷ୍ଠା କିନ୍ତୁ ହୋଇପାରିନାହିଁ । ଯେପରି ମୃତ୍ୟୁ ଓ ଅମରତ୍ୱକୁ, ପୌତ୍ର ଓ ଶିଶୁର ରୂପାଦର୍ଶ ରୂପେ ବାଛି ନେଇଥିଲେ ବି ବାସ୍ତବ ଜୀବନରେ ମୃତ୍ୟୁର ଅଭିଘାତରେ ଅମରତ୍ୱର ସକଳ ସମ୍ଭାବନା ତାଙ୍କ ପାଇଁ ସଂଶୟାତ୍ମକ ହୋଇପଡ଼ିଛି । 'ମୃତ୍ତିକାଦର୍ଶନ' ପରେ କାବ୍ୟରୂପରେ ଆଉ 'ଶିଶୁ' ପ୍ରତୀକ ପ୍ରୟୋଗର ସୁଲଭ-ପ୍ରବଣତା ବା ଅମର ଜୀବନର ଉଦ୍‌ଘାଟନ ପ୍ରୟାସ ଦେଖିବାକୁ କ୍ୱଚିତ୍ ମିଳେ । ସକଳ ପ୍ରତିକୂଳତା ଭିତରେ ଆତ୍ମଶକ୍ତିରେ ଅଟଳ ରହିବା—ଏ ମିଷ୍ଟିକ୍ ପ୍ରତ୍ୟୟ କୁଣ୍ଠିତ ସମର୍ପଣର ଖେଦୋକ୍ତି କରିପାରେ ନାହିଁ । ବୈକୁଣ୍ଠନାଥଙ୍କ କାବ୍ୟସ୍ୱରରେ ସାଧକର ବ୍ୟାକୁଳତା ଅଛି, ସାଧନାର ଦୃଢ଼ତା ପ୍ରକଟିତ ହୋଇନାହିଁ । ସେଥିପାଇଁ, ଜୈବିକ କ୍ଷୁଧାତୃଷା ମୈଥୁନ, ସାମାଜିକ ଅନ୍ୟାୟ, ଦୁଃସ୍ଥିତ ଦାରିଦ୍ର୍ୟ, ନୈତିକ ସ୍ଖଳନ ଓ ମିଥ୍ୟାଗ୍ରର ଏସବୁ ଦୈବିକ ବିରୋଧୀ ମାନବୀୟ ସମସ୍ୟା ସମ୍ମୁଖରେ ସେ ପ୍ରତିହିଂସା-କ୍ଷୁବ୍ଧ ହେଲେ ବି ସଂଘର୍ଷର ସମ୍ମୁଖୀନ ନହୋଇ ସମାଧାନ ସଂକେତ ନଖୋଜି, କିମ୍ବା ମିଷ୍ଟିକ୍ ବିଶ୍ୱାସର ସୃଷ୍ଟି-ରହସ୍ୟମୂଳକ ବିବର୍ତ୍ତନ ସିଦ୍ଧାନ୍ତକୁ ସ୍ୱୀକୃତି ନଦେଇ କେବଳ ଭାଗ୍ୟଦେବତାର ନିର୍ଦ୍ଦେଶ ବୋଲି କୁଣ୍ଠାରେ ମାନିନେଇଛନ୍ତି । ଏହା ରହସ୍ୟବାଦୀର ସର୍ବ-ସମର୍ପଣ ନିଶ୍ଚିନ୍ତତା ପରିବର୍ତ୍ତେ ବରଂ ଭକ୍ତର ଅଭିମାନୀ-ନିଷ୍ପୃହତା ବୋଲି ପ୍ରତିପନ୍ନ ହୁଏ । ବଞ୍ଚିବାର ସହଜଗାନ ସେଥିପାଇଁ ତାଙ୍କ ଅନ୍ତଃଗହ୍ୱରରୁ ଉଚ୍ଚାରିତ ହୋଇପାରିନାହିଁ । (୧୨୯)

ଶିବ ଓ ଅଶିବ, ଭଲ ଓ ମନ୍ଦ ବୈକୁଣ୍ଠନାଥଙ୍କ କବିତାରେ ଉଭୟର ସ୍ୱୀକୃତି ଅଛି, ସମନ୍ୱୟ ନାହିଁ । ଅତିକ୍ରମ ନାହିଁ । ତେଣୁ ଶେଷରେ ମରଣ ନିକଟରେ ଜୀବନର ପରାଜୟ, ମାଟି ନିକଟରେ ବ୍ୟକ୍ତିର ନତି ସ୍ୱୀକାର । ଅଥଚ ମିଷ୍ଟିକ ମାଟି ଉପରେ ଜୀବର, ଜଡ଼ ଉପରେ ଚିତ୍‌ଶକ୍ତିର ବିଜୟରେ ବିଶ୍ୱାସ କରିଥାଏ । (୧୩୦) ମାତ୍ର ମୃତ୍ତିକାଦର୍ଶନ ପର୍ଯ୍ୟାୟରେ ଦୋହଲିଯାଇଥିବା କବି ସଂଶୟାତ୍ମା ତତ୍ତ୍ୱର ସାନ୍ତ୍ୱନା ଲୋଡ଼ିଛି; ଭକ୍ତର ଆଶ୍ରୟ ଲୋଡ଼ିଛି, କିନ୍ତୁ ସେ ସାନ୍ତ୍ୱନା ଓ ଆନନ୍ଦର ଅନୁଭବ ସ୍ୱରୂପର କାବ୍ୟୋଚ୍ଚାରଣ ଆଉ ଘଟିନାହିଁ ।

କ୍ଷତ୍ର ଲଗ୍ନର ତମିର ଯନ୍ତ୍ରଣା ଭିତରେ କବିଚେତନା ସୂର୍ଯ୍ୟ ସନ୍ଧାନ କରିପାରିନାହିଁ । ଆଲୋକ ପ୍ରତ୍ୟୟ ହରାଇ ବସିଛି । ପରାଜ-ମୁକ୍ତିର ଆଲୋକ ସମ୍ବାଦ ତେଣୁ କାବ୍ୟସ୍ୱରରେ ଅଶ୍ରୁତ ରହିଯାଇଛି । ପ୍ରାକ୍-ମୃତ୍ତିକାଦର୍ଶନର ମୃତ୍ୟୁଭାବନାମୂଳକ କବିତାରେ ଯେଉଁ କ୍ଷୀଣ ସଂଶୟ ଚେତନା 'ଅଜ୍ଞାନବିସ୍ମୟ' ରୂପରେ ଅସ୍ଫୁଟ ସ୍ୱର ତୋଳିଥିଲା, ଉତ୍ତର ଜୀବନରେ ତାହା ପୂର୍ଣ୍ଣ ରୂପେ ବିସ୍ତାର କରି ଯେପରି ବିରାଟ ପ୍ରଶ୍ନବାଚୀ ହୋଇ ଉଚ୍ଚହୋଇଛି । (୧୩୧) ଏ ସଂଶୟ ଚେତନା 'ପ୍ରମାଣ କରିଦେ ଆଜି' କବିତାରେ କବିଙ୍କ ଅବଚେତନରେ ସଂଗୁପ୍ତ ସାମଗ୍ରିକ ବିରୋଧ, ବିକ୍ଷୋଭ ଓ ବିଦ୍ରୋହକୁ ଯେପରି ବାଙ୍‌ମୟ କରିଛି । କବି ଦ୍ୱନ୍ଦ୍ୱାଲୋକରେ ବିଘୂର୍ଣ୍ଣିତ ହେବା ସ୍ୱୀକାର କରିଛନ୍ତି । (୧୩୨) 'ପରମ ସତ୍ୟ

(୧୨୯) "ଯୈସେ ହୁ ରଖୋ, ତୈସେ ରହୋ, (ସୁରଦାସ) ଛଡ଼ା କି ଉପାୟ × × ବଡ଼ ନିଃସଙ୍ଗ, ବଡ଼ ଏକାକୀ ।" ବୈକୁଣ୍ଠନାଥ ପରିକ୍ରମା—(ଚିଠିପତ୍ର) ପୃ. ୧୨୯

(୧୩୦) "ଜଡ଼ ଉପରେ ଚିନ୍‌ମୟର ବିଜୟ ଯେନ୍ତି ଯେଉଁ ରହସ୍ୟବାଦୀ ବିଶ୍ୱାସ ।" ଶ୍ରୀ ଅରବିନ୍ଦଙ୍କ ପତ୍ରାବଳୀ (ବିଦ୍ୟର, ବିଜ୍ଞାନ ଓ ଯୋଗ)

(୧୩୧) "ତାକେ ଅସହାୟ କଣ୍ଠ ଫଟାଇ ତୁମ୍ ସତ୍ତାର ପ୍ରମାଣ ଦିଅ ହେ ଆଜି ।" ବୈକୁଣ୍ଠ ଗ୍ରନ୍ଥାବଳୀ ୨ୟ—ପୃ. ୫୧୩

(୧୩୨) ଗ୍ରନ୍ଥାବଳୀ—୨ୟ ପୃ. ୫୧୪

Digitized by PPRACHIN, SOA

ସନାତନ ତୁମ୍ଭେ' 'ବଂଧୁ ଯେବେଟି ନୁହେ କଳ୍ପନାବାଜ'—ଏ ସଂଦେହ ମନସ୍ତତ୍ତ୍ୱ ଦୃଷ୍ଟିରୁ ଅସ୍ୱାଭାବିକ ନୁହେଁ । ଅଧ୍ୟାତ୍ମ ଅନୁଭବ ଦୃଷ୍ଟିରୁ ଅସଂଭବ ମଧ୍ୟ ନୁହେଁ । ବିଶ୍ୱାସ ଓ ନିଷ୍ଠାର ଅଟଳ ନିର୍ଭରତାରେ ଏଇ ଅଂଧାରବଳୟକୁ ଅତିକ୍ରମ କରିଯିବାହିଁ ରହସ୍ୟ ସାଧନାର ସିଦ୍ଧି ସଂବାଦ । କବି ସେହି ଅତିକ୍ରମ-ଶକ୍ତିର ଅଭାବ ସ୍ୱୀକାର କରିଛଂତି । (୧୬୭) ରହସ୍ୟର ଅନ୍ୱେଷଣ ପଥରେ କବି-ସତ୍ତା ଆତ୍ମଦ୍ୱଂଦ୍ୱର ଘୂର୍ଣିବିପାକରେ ଶେଷପର୍ଯ୍ୟଂତ ନିଜକୁ ହିଁ କେଂଦ୍ରକରି ଘୂରିବୁଲୁଛି । ଅଗ୍ରଗତି, ଊର୍ଦ୍ଧ୍ୱଗତି ବା ଅଭ୍ୟଂତର ଗତି ସବୁଠାରେ କେବଳ ସେହି ଆବର୍ତ୍ତନର ସ୍ୱରୂପ ପରିକ୍ଷିତ; ବିବର୍ତ୍ତନର ସଂବାଦ ନାହିଁ । ଗତି ରହିଛି, ପ୍ରଗତିର ନବୋପଲବ୍ଧି ନାହିଁ । (୧୬୮) ତେଣୁ, "ଅନିର୍ଦ୍ଦିଷ୍ଟ ଯାତ୍ରାରେ ତାର ବିରାଟ ଅଂଧକାର ।"

ହୋଇପାରେ, ଆଦ୍ୟ ତାରୁଣ୍ୟରେ କବି ହୃଦୟର ଉକ୍ତ ଆବେଗ ଓ ସୌଂଦର୍ଯ୍ୟ କଳ୍ପନା ଯାହାର ଏକ ମଧୁର ଭାବମୂର୍ତ୍ତି ରଚନା କରିଥିଲା, ଜୀବନର ଅନୁଭବ-ପ୍ରତ୍ୟକ୍ଷତା ଭିତରେ ତାକୁ ରୂପମୟ କରି ନ ପାଇବା ପର୍ଯ୍ୟଂତ ସେ କାଳ୍ପନିକ ରହିଯିବାହିଁ ସ୍ୱାଭାବିକ । ଅଂତର୍ଦୃଷ୍ଟିରେ ସତ୍ୟସ୍ୱରୂପର ପ୍ରଭାସ୍ୱର ଉଦ୍‌ଘାଟନ ନ ହେବା ପର୍ଯ୍ୟଂତ ଅନସ୍ତିତ୍ୱର ସଂଶୟ ସଂଭାବନାକୁ ଏଡ଼ାଇ ହଆଯାଇ-ନପାରେ । ସଂଶୟରେ ଅବଶ୍ୟ ସତ୍ୟର ଜିଜ୍ଞାସା ଥାଏ, ମାତ୍ର ଏହା ଉତ୍ତରର ଉପଲବ୍ଧି-ଜଗତ ନୁହେଁ । ସବୁ ସଂଶୟ-ଗ୍ରଂଥିର ଉଚ୍ଛେଦ ଓ ନିରସନ ପରେ ହିଁ ନିର୍ମଳ ଚେତନାରେ ସତ୍ୟ-ସୂର୍ଯ୍ୟର ଉଷା ଉଦୟ ହୁଏ । ସତ୍ୟର ପ୍ରତିଷ୍ଠା ଘଟିଥାଏ ଅବିଚଳ ନିଷ୍ଠାର ଧରଣୀ ଓ ପ୍ରଜ୍ଞାର ପ୍ରଦୀପ୍ତ ଆକାଶରେ । ସତ୍ୟକୁ ମାନିନେବା ପାଇଁ ଯେ ପ୍ରମାଣ ଖୋଜେ; ସେହି ପ୍ରମାଣ-ଖୋଜାହିଁ ସତ୍ୟ ଓ ତାର ସଂଧାନୀ ମଧ୍ୟରେ ବ୍ୟବଧାନ ହୋଇ ଉଭାହୁଏ ।

କବିଂକର ରବୀଂଦ୍ରନାଥଂକୁ ସଂବୋଧନ କରି ରଚିତ କବିତାଟିର ସ୍ୱୀକାରୋକ୍ତିରେ ଏ ଅପ୍ରାପ୍ତିର ସଂବାଦ ରହିଛି । (୧୬୯) କବି ଆଜୀବନ ରବୀଂଦ୍ର ଭାବାଦର୍ଶ ପ୍ରଭାବିତ । ବହୁ ପ୍ରତୀକ, ରୂପଚେତନା ଓ ପ୍ରକାଶ ଭଂଗୀରେ ରବୀଂଦ୍ରମାନସର ସ୍ପର୍ଶ ଲାଗିଛି । ତଥାପି ତାଂକ ବାସ୍ତବବାଦ, ମାନବତାବାଦର ଅନସ୍ୱୀଗାନ ରବୀଂଦ୍ର ଚେତନାର ବିଶ୍ୱମାନବତାର କୋଟୀକୁ ଉନ୍ନୀତ ହୋଇପାରିନାହିଁ । ନାଁ ଅଂତର ଦେବତା, ନାଁ ମାଟିର ମଣିଷ, କେଉଁ ପ୍ରସଂଗରେ ବି ତାଂକ କାବ୍ୟଚେତନା ରବୀଂଦ୍ର ଅନୁଭୂତିର ବିସ୍ତୃତି କି ଗଭୀରତାକୁ ଛୁଇଁ ପାରିନାହିଁ । କବିଗୁରୁଂକ ବିଶ୍ୱପ୍ରସାରୀ ଋଷି ଦୃଷ୍ଟି ଦୁଃଖ ଦେଖିଛି, ମୃତ୍ୟୁ ଦେଖିଛି, କିଂତୁ ଜୀବନ-ବର୍ଜନ କରିନାହିଁ, ଜୀବନରୁ କିଛି ବି ବଜିନ କରିନାହିଁ । ଅସୀମ ସୃଷ୍ଟିର ଅନଂତ ବେଦନା, ନିଖିଳ ପ୍ରାଣର ବିପୁଳ କ୍ଷୟକ୍ଷତି କବି ଅଂତରକୁ ଆଶ୍ରୟ କରି ଅନ୍ତର ଦେବତାଂକ ନୈବେଦ୍ୟ ଭାଗ୍ୟଲାଭ କରିଛି । ବିଶ୍ୱକବିଂକ ଦୁଃଖର ରୂପାନୁଭୂତିରେ ସମଗ୍ର ବିଶ୍ୱର ଭାଗରହିଛି । ତେଣୁ ସେ ବିଶ୍ୱପ୍ରସାରୀ ଦୁଃଖର ଶୂନ୍ୟତା ଭିତରେ

(୧୬୭) "ତୁମର ଖେଳକୁ ଅଭାଜନ ହେଲି, ପଳାଇ ଆସିଲି ଡ଼ରି ।"

ଗ୍ରଂଥାବଳୀ—୨ୟ ପୃ. ୪୯୭

(୧୬୮) "ପ୍ରମାଣ ଦିଅ ହେ ଆଜି"                                    ଗ୍ରଂଥାବଳୀ—୨ୟ—ପୃ. ୫୧୪

(୧୬୯) "ଆଲୋକ ସତ୍ୟ ସଂଧାନୀ କବି / ବିହ୍ୱଳ ଗୃହିଁ ଆନଂଦ ପାରାବାର
ଧନ୍ୟ କବି ହେ, ତୁମ ଅନୁଭୂତି / ପରମ ଭାଗ୍ୟବାନ
ମୋ ପଥର କାନେ ନ ପଡ଼ିଲା ଦିନେ ବଂଧୁ ବଇଁଶୀ ତାନ ।"

ଗ୍ରଂଥାବଳୀ—୨ୟ—ପୃ. ୫୧୪

Digitized by PPRACHIN, SOA

ବିଶ୍ୱାଳିଂଗନର ଉଦାରତା ମଧ୍ୟ ଆସିଛି । ପକ୍ଷାଂତରେ ବୈକୁଂଠନାଥ ଚିରଦିନ ଏକାକୀ, ସୁଦୂରଯାତ୍ରୀ । ତାଂକର ଯାତ୍ରାନୁଭୂତିର ଆନଂଦ ବିଷାଦ କେବଳ ତାଂକରି । କିଂତୁ ରବୀନ୍ଦ୍ରନାଥଂକ ଯାତ୍ରାଗାନରେ ନିଖିଳ ବିଶ୍ୱର ପଥ-ସଂଗୀତ ପଦମିଳାଇଯାଏ । "ଚଲେଛେ ମାନବଯାତ୍ରୀ ଯୁଗ-ଯୁଗଧରି···" ଏ ଯାତ୍ରା ସଂବାଦ ଶ୍ରବଣରେ ମନେହୁଏ ତାଂକ ସହ ସମପଦରେ ପ୍ରତିଟି ବ୍ୟକ୍ତି ତାଂକରି ବିଶେଷ ଅଂତରୋପଲବ୍ଧି ଭିତର ଦେଇ ଯେପରି ଅସୀମକୁ ପ୍ରସାରିତ ହୋଇ ଚାଲିଛି, କବିଂକ ଜୀବନ ଦେବତାଂକୁ ଆପଣାର ନିଭୃତପ୍ରିୟ ରୂପେ ଆବିଷ୍କାର କରୁଛି । ବୈକୁଂଠକାବ୍ୟରେ ସଂସାର ଜଂଜାଳ, ନାରୀ-ନରକ, ପ୍ରେମ-ପାପ, ରୂପ-ରକ୍ତ । ଜୀବନ-ସଂକୀଳ ଓ ଚେତନା-ମୃତ୍ୟୁ ଶଂକିତ । ଜୀବନକୁ ଅକୁଂଠ ଆଲିଂଗନ ବିମୁଖୀ ଏହି କାବ୍ୟସ୍ୱର କେତେବେଳେ 'ମୃତ ପୃଥିବୀ' ପ୍ରତି ବିରକ୍ତିରେ ସୁଦୂର ଅଭିଳାଷୀ ପୁଣି କେତେବେଳେ ମାଟି ପ୍ରତି ଅଂଧ ଆସକ୍ତିରେ ଜୀବନର ସକଳ ପରିଣତିକୁ ମାଟିମୟ କରି ଦେଖିଛି । ମାଟିରେ ଏ ଶେଷ ପରିଣତି ନିର୍ଦ୍ଦିଷ୍ଟ ଭାବେ ଦେହର, ଏ ଚାର୍ବାକ ଦର୍ଶନ ମଧ୍ୟରେ ବୌଦ୍ଧ ନିର୍ବାଣ ତତ୍ତ୍ୱର ଶୂନ୍ୟ ସଂବାଦ ଯଥାର୍ଥ ମିଳିପାରିବନାହିଁ । ନିର୍ବାଣ ବିଷାଦ ବିମର୍ଷ ଭାବ-ଚେତନା ନୁହେଁ, ବରଂ ତାର ଅତିକ୍ରମଣ ।

ଲକ୍ଷଣୀୟ, 'ଶିଶୁ' କବିତା ପର୍ଯ୍ୟାୟରେ କବି ଜୀବନକୁ ମୃତ୍ୟୁ ଉପରେ ପ୍ରତିଷ୍ଠା କରିଛଂତି । ପିତୃ-ପ୍ରତିମ ଶ୍ରୀଯୁକ୍ତ ବିଶ୍ୱନାଥ କର ଓ ନିଜ ଭଗ୍ନୀପତିଂକ ମୃତ୍ୟୁ-ସଂଗୀତରେ ଆତ୍ମାର ଅବିନାଶିତ୍ୱ ବ୍ୟାଖ୍ୟା କରିଛଂତି, ମାତ୍ର 'ମୁକ୍ତିକାଦର୍ଶନ'ରେ ଏ ସକଳ ବିଶ୍ୱାସ ଓ ଚିଂତାଧାରା ବିପର୍ଯ୍ୟସ୍ତ ହୋଇଯାଇଛି । ପ୍ରଥମ ପର୍ଯ୍ୟାୟରେ 'ଶିଶୁ'ର ଜନ୍ମ ଅବସରରେ କବି ମୃତ୍ୟୁକୁ ତତ୍ତ୍ୱତଃ ଉଲଂଘନ କରିଛଂତି, କିଂତୁ ଶିଶୁ ପୁତ୍ରର ମୃତ୍ୟୁରେ ଯେଉଁ ମରଣ ଶୋକରେ ମୂହ୍ୟମାନ ହୋଇଛଂତି, ସେଥିରେ ଜୀବନର ସକଳ ମୃତ୍ୟୁଜୟୀ ସ୍ୱୀକୃତିର ସଂଭାବନା ଉପେକ୍ଷିତ ହୋଇଛି । କବିଂକ ମାଟିପୃଥିବୀର ବାସ୍ତବାସକ୍ତ ଓ ଆକାଶୀସ୍ୱପ୍ନର ଅମର୍ତ୍ତ୍ୟଚାରଣ ସଂଯୋଗହୀନ । ସ୍ୱର୍ଗ ଓ ନରକ, ଜୀବନ ଓ ମୃତ୍ୟୁ, ଭଲ ଓ ମଂଦ ଏବଂ ସୀମା ଓ ଅସୀମର ବିଭେଦ କବିଚେତନାରେ ପ୍ରବଳ । ମାତ୍ର ସେମାନଂକର ମିଳିତବିଂଦୁଟି ଶେଷ ପର୍ଯ୍ୟଂତ ଆବିଷ୍କାର କରି ପାରିନଥିବାରୁ ସେ ଗୋଟିକରୁ ଅପରଟିକୁ ନିଷ୍କ୍ରମଣର ପଥ ସହଜରେ ପାଇନାହାଂତି । ତାଂକ ରହସ୍ୟବାଦୀ କାବ୍ୟସାଧନାର ଏହା ହିଁ ବ୍ୟର୍ଥତା । ଏହାର କାରଣ ହୋଇପାରେ, ଯାହା ସତ୍ୟ ରୂପେ ତାଂକ ନିକଟରେ ତତ୍ତ୍ୱତଃ ଅଭିକର୍ଷିତ, ଅନୁଭୂତିର ପରୀକ୍ଷା ନିରୀକ୍ଷା ଭିତରେ ସେ ସବୁର ପ୍ରତିପାଦନ କରିନପାରି କବିଚେତନା ସୁଦୂର ମିଥ୍ୟା କଳ୍ପନା କହି ଉଡ଼ାଇ ଦେଇଛି । କବି ବୈକୁଂଠନାଥ ଓ ତାତ୍ତ୍ୱିକ ବୈକୁଂଠନାଥଂକ ଶେଷ ପର୍ଯ୍ୟଂତ ଦୁଇଟି ଭିନ୍ନ ସତ୍ତାରେ ସମାଂତର ଯାତ୍ରାରଚନା କରିଛଂତି ।

ଅଥଚ ରହସ୍ୟବାଦୀ ଚେତନା କିଛି ବି ବର୍ଜନ କରେନାହିଁ, ମାୟା ବୋଲି ଉପେକ୍ଷା କରେନାହିଁ କିଂବା ଅଂଧଆସକ୍ତିରେ ମଧ୍ୟ ଆଚ୍ଛନ୍ନ ହୁଏନାହିଁ । ରହସ୍ୟବାଦୀ କାବ୍ୟ ସଂବେଗ ଜୀବନର ସବୁ ଉପଲବ୍ଧିକୁ ପୂର୍ଣ୍ଣ ଏବଂ ଯଥାମାନ୍ୟ ସମାଦର ଦିଏ । ରୂପ, ସୌଂଦର୍ଯ୍ୟ, ପ୍ରେମର ଚରିତାର୍ଥତା ଭିତରେ ସମସ୍ତ ସୃଷ୍ଟି ସଂବାଦ, ସମଗ୍ର ଜୀବନାନୁଭବ ଦେଇ ସୀମାର ଆନଂଦ ଓ ଯଂତ୍ରଣାକୁ ସେ ଯେତିକି ପ୍ରତ୍ୟକ୍ଷ କରେ, ଅସୀମ ସହ ତାର ସଂଯୋଗ ଓ ଅନ୍ୱିତିର ରହସ୍ୟ ଗଭୀରତାକୁ ସେତିକି ପ୍ରକାଶକରେ ମଧ୍ୟ । 'ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ', (ରବୀନ୍ଦ୍ରନାଥ) ଏ କାବ୍ୟସ୍ୱର ଯୋଗୀର ନୁହେଁ, ଭୋଗୀର ନୁହେଁ, ଜୀବନାନୁରାଗୀର । ଏହା ମାନବାତ୍ମାର ଶାଶ୍ୱତ ମୁକ୍ତିବାଣୀ । ବ୍ୟକ୍ତି ବିଶ୍ୱମୟଂକୁ ହୃଦ୍‌ଗତ କରି ଥରେ ଲାଭକରିପାରିଲେ ସର୍ବ ଉପଲବ୍ଧିର ଅତୀତ ବିଶ୍ୱାତୀତଂକୁ ବିଶ୍ୱ ସୃଷ୍ଟିର

Digitized by PPRACHIN, SOA

ପ୍ରତ୍ୟେକଟି ସ୍ୱତଂନ୍ତ୍ର ସ୍ଥିତି ଭିତରେ ସ୍ୱାଭାବିକ ଗ୍ରହଣ କରିନେବାରେ ଆଉ କେଉଁଠି କିଛି ଅସୁବିଧା, ବିରୋଧ ବା ସଂଶୟ ଜାତ ହୁଏନାହିଁ । ବୈକୁଂଠନାଥଂକ ସୀମା ଶଂକିତ ଓ ବର୍ଜନଶୀଳ ଚେତନା କୁଂଠାରେ ଏ ବିଶ୍ୱବରଣର ଦୁଃସାହସିକତା ସଂଭବ ହୋଇପାରିନାହିଁ ।

ହୋଇପାରେ, ବୈକୁଂଠ ମାନସରେ ରହସ୍ୟବାଦୀ ଅଭିମୁଖିତାର ସ୍ଥାଣୁତ୍ୱପାଇଁ ମୃତ୍ୟୁଚେତନା ଅଧିକଦାୟୀ । (୧୩୬) ମାତ୍ର ଦେଖିବାକୁ ଗଲେ ଜୀବନସହ ବ୍ୟକ୍ତିର ଗୂଢ଼ତମ ଏବଂ ନିବିଡ଼ ପରିଚୟ ଘଟେ ପ୍ରେମ ତଥା ମୃତ୍ୟୁ ଭିତରେ । ପ୍ରେମ ଓ ମୃତ୍ୟୁ ମାଧ୍ୟମରେ ସୀମା ଅସୀମ ସଂବେଗ ଲାଭକରେ, ଅସୀମାୟିତ ହେବାର ସୁଯୋଗ ଲାଭକରେ । ଏମାନେ ଜୀବନର ସବୁଠାରୁ ଶକ୍ତିଶାଳୀ ଅନୁଭବ ବୋଲି କୁହାଯାଇପାରେ । କାରଣ, ପ୍ରେମ ଓ ମୃତ୍ୟୁ ସହ ଜୀବନର ସାକ୍ଷାତକାର ଚେତନାର ଗଭୀରତମ ସ୍ଥଳରେ । ଏମାନଂକୁ ନେଇ ତେଣୁ ଜୀବନର ଏତେ ପ୍ରଶ୍ନ । ଏମାନଂକ ସଂପର୍କରେ ଏତେ କୌତୂହଳ ଓ ଭୟ । ହୁଏତ ଜୀବନ ଏମାନଂକୁ ଅନନ୍ୟୋପାୟ ହୋଇ ସ୍ୱୀକାର କରିନିଏ; ବେଳେବେଳେ ଅସାମର୍ଥ୍ୟର ଅସହାୟତାରେ ଆତ୍ମପ୍ରତ୍ୟୟ ହରାଇବସେ । ଅଥବା, ଏମାନଂକୁ ଉଲ୍ଲଂଘନ କରି ନିରୁଦ୍‌ବିଗ୍ନ ରହିବାର ଆନଂଦପୂର୍ଣ୍ଣ ଶକ୍ତିକୁ ନିଜ ଭିତରେ ଆବିଷ୍କାର କରେ ।

ପ୍ରେମ ଜୀବନରେ ସ୍ୱପ୍ନମୟ ଉଚ୍ଛ୍ୱାସ ଭରିଦେଇ ଚେତନାର ପ୍ରସାରଣ କରେ । ଆଉ ପ୍ରିୟଜନର ମୃତ୍ୟୁ ହୃଦୟରେ ଶୂନ୍ୟତା ସୃଷ୍ଟିକରେ । ପ୍ରେମ ଓ ମୃତ୍ୟୁରେ ଏହି ଭାବବିସ୍‌ଫୋରଣ ଭିତରୁ ଚେତନାର ନବୋନ୍‌ମେଷ ଘଟେ । ବ୍ୟକ୍ତି ନିଜକୁ ବା ଏକକୁ ହରାଇ ବିଶ୍ୱକୁ ଲାଭ କରିବାର ସାଧନା ଏଇ ଅନୁଭବସ୍ତରରେ ସଂସାଧିତ ହୋଇଥାଏ । ତାହାହିଁ ବୋଧହୁଏ ଜୀବନ ପ୍ରତି ମୃତ୍ୟୁର ଅମୃତ ଆଶୀର୍ବାଦ, ପ୍ରେମର ଅମୂଲ୍ୟ ସଂଭାଷଣ । ଏକକୁ ନେଇ ମୃତ୍ୟୁ ବହୁକୁ ଭଣ୍ଡିଦେଇପାରେ । ମାତ୍ର ମୃତ୍ୟୁ ନିକଟରେ ନତି ସ୍ୱୀକାର କରି ଜୀବନକୁ ଅସ୍ୱୀକାର କରି ବସିଲେ, ମରଣୋତ୍ତର ପ୍ରତି ସଂଶୟାପନ୍ନ ହୋଇଗଲେ, ମରଣର ରୁଦ୍ଧଦ୍ୱାର ଆଉ ଖୋଲେନାହିଁ । ଚେତନା ମରଣୋତ୍ତରର ସନ୍ଧାନ ଆଉ କରିପାରେନାହିଁ । ମୃତ୍ୟୁର ଚରମତା ନିକଟରେ କବିଚେତନାର ପରାଜୟ ପରେ ଜୀବନପାଇଁ ନୂତନ ଅନୁଭୂତିର କୌଣସି ବାଟ ପାଖରେ କାବ୍ୟପୁରୁଷ ପହଞ୍ଚି ପାରିନାହିଁ ।

ବୈକୁଂଠ ଚେତନାର ଧ୍ୟାନମଗ୍ନତା ଓ କାବ୍ୟଜିଜ୍ଞାସା ଜୀବନର ଅନୁଭୂତିମାନଂକ ଭିତରୁ ଅର୍ଥ ସାମଂଜସ୍ୟ ଖୋଜି ବସିବାର ଦୁସ୍ତର ପଥ ବାଛିନେଇଛି, ମାତ୍ର ସାମଂଜସ୍ୟ ସ୍ୱରୂପଟି ଲାଭ କରିପାରି ନାହିଁ । ତେଣୁ ତାଂକ ରଚନାରେ ଯାତନାନୁଭବର ଚିତ୍ର ପର୍ଯ୍ୟାପ୍ତ । ଦୁଃଖ ଓ ପରୀକ୍ଷାର କଥା ଅନେକ, ଅଭିମାନ ଅଭିଯୋଗ ପ୍ରଚୁର । ଗଭୀର ଜୀବନ ଜିଜ୍ଞାସା ତାଂକୁ ତାତ୍ତ୍ୱିକ କରିଦେଇଛି, ମାତ୍ର ମରଣ ଶଂକିତ ଓ ଜୀବନ ସଂକୁଚିତ ଚେତନା ଆଉ ଜୀବନମୟଂକୁ ଅନୁଭୂତିର ନିବିଡ଼ତା ଭିତରକୁ ଘେନି ଆସିପାରିନାହିଁ । ବୈକୁଂଠଂକ ରହସ୍ୟବାଦୀ କାବ୍ୟସାଧନା ତେଣୁ ଆଦ୍ୟପ୍ରାଂତ ଯାତ୍ରା ପ୍ରତୀକରେ ହିଁ

---

(୧୩୬) " ୧୯୩୯ ମସିହା ମଧ୍ୟଭାଗରେ ନିଜ ସଂତାନ ବିୟୋଗଜନିତ ଖେଦ ଏହି ଭଗବଦ୍‌ ବିଶ୍ୱାସୀ ଆଧିଭୌତିକ କାବ୍ୟମାନସକୁ ପ୍ରବଳ ବେଗରେ ଆଂଦୋଳିତ କରିଥିବା ଲକ୍ଷ୍ୟ କରାଯିବ । ବୈକୁଂଠନାଥ କ୍ରମେ ସଂଶୟବାଦୀ ହୋଇପଡ଼ିଛଂତି ଓ ଭଗବାନଂକ ତଥାକଥିତ ସ୍ଥିତି ଓ ଶକ୍ତି ଉପରେ ସଂଦେହ ସ୍ଥାପନ କରିଛଂତି × × ଏ ସଂଶୟ କେବଳ ବୈକୁଂଠନାଥଂକର ନୁହେଁ କାବ୍ୟ ଜଗତରେ ସମସ୍ତ ସଂଶୟବାଦୀ ଚେତନାର ।"
ଡ଼ଃ ନିତ୍ୟାନଂଦ ଶତପଥୀ, 'ବୈକୁଂଠନାଥ ପରିକ୍ରମା'—ପୃ. ୧୯୦

Digitized by PPRACHIN, SOA

ସିଦ୍ଧ । ତାଂକ ରହସ୍ୟଗାନଗୁଡ଼ିକ କେବଳ ପଥଚଲାର ସଂଗୀତ । (୧୩୭) ଯାତ୍ରା ଓ ଯାତ୍ରୀ, ପଥପ୍ରାଂତ, ପାଂଥଶାଳା, ମର୍ତ୍ତ୍ୟପ୍ରବାସ, ସୁଦୂରଧାମ ଆଦି ରୂପଚେତନା ଭିତରେ ଯାତ୍ରାରଂଭର ସୂଚନା ରହିଛି । ଯାତ୍ରାନୁଭୂତିର ସଂବାଦ ରହିଛି । ପଥପ୍ରାଂତର ଆକର୍ଷଣ ଓ ସଂଘାତର ଚିତ୍ର ବି ରହିଛି । ମାତ୍ର ଯାତ୍ରାଶେଷରେ ତୃପ୍ତ ନିଶ୍ଚିଂତତା ଓ ପରମପ୍ରାପ୍ତିର ମୁଗ୍ଧ ମଧୁର ନୀରବତାକୁ ଭେଟିଥିବାର କାବ୍ୟ ସଂବାଦ ଶେଷ ପର୍ଯ୍ୟଂତ ଉଚ୍ଚାରିତ ହୋଇପାରିନାହିଁ ।

ଏ ଯାତ୍ରା ସଂଗୀତ ହିଁ ସୂଚାଇଦିଏ ଯେ ବୈକୁଂଠନାଥ ବିରହର କବି । ତାଂକ ରହସ୍ୟବାଦୀ କାବ୍ୟାନୁଭବ ବିରହ-ତତ୍ତ୍ୱ ଉପରେ ଆଧାରିତ । ବିରହ ତାଂକର ଏକମାତ୍ର ପ୍ରତ୍ୟକ୍ଷାନୁଭବ ଯାହାକୁ ସମ୍ବଳ କରି ସେ ପ୍ରେମ-ସ୍ୱରୂପଂକ ଚିରଂତନ ଅନ୍ୱେଷଣରେ ଆତ୍ମାର ନିର୍ଜନ ରାଜ୍ୟକୁ ନିଃସଂଗ ଯାତ୍ରା ରଚିଛଂନ୍ତି । ବିରହର ବ୍ୟଥା, ଅଶ୍ରୁର ବିଷାଦରାଗିଣୀ ସେଥିପାଇଁ ସେ କାବ୍ୟସ୍ୱରରେ ଏତେ ମାର୍ମିକ ଓ ବିଶ୍ୱସ୍ତ । ବିରହର ଅନିର୍ବଚନୀୟତା ଲୌକିକତାରୁ ଅଲୌକିକର ଉଦ୍‌ବୋଧନ ମାର୍ଗରେ କବିଂକୁ ଅତୀଂନ୍ଦ୍ରିୟ ପ୍ରୀତି ସାଧନାର ରହସ୍ୟବଳୟକୁ ଉତ୍‌କ୍ଷେପିତ କରିଛି । ତେଣୁ ତାଂକର ପ୍ରଣୟ ଭାବନାର ରହସ୍ୟାତ୍ମକତା ତାଂକର ମିଳନ ଆନଂଦଗାନରେ ସାର୍ଥକ ନୁହେଁ, ଏହା ଆରୋପିତ, ପ୍ରକ୍ଷେପ । ତାଂକ ପ୍ରଣୟାନୁଭବ ମୁଖ୍ୟତଃ ବିରହାନୁଭବ । ସେ ବିରହ ଚଂଡୀଦାସଂକର ବ୍ୟାକୁଳତାରେ, ବିଲ୍ୱମଂଗଳଂକର ଏକାଗ୍ରତାରେ, ମୀରାଂକର ଆରାଧନାରେ ଓ ଶ୍ରୀରାଧାଂକର ମହାଆବେଶମୟୀ ବିରହ-ତନ୍ମୟତାରେ ଏକାତ୍ମତା ଲାଭ କରିବାକୁ ଉନ୍ମୁଖ ହୋଇଛନ୍ତି । ବୈକୁଂଠନାଥଂକ ରହସ୍ୟବାଦୀ କାବ୍ୟୋଚ୍ଚାରଣର ମୂଳ ପ୍ରେରଣାଟି ଏହିଠାରେ ।

---

(୧୩୭) "ପଥର ସଂଗୀତ ମୋର ତୁମରି କରୁଣା
ସକଳ ବୈରାଗ୍ୟ ଆଶା ସ୍ୱପ୍ନଜାଲ ବୁଣା
ପ୍ରେରଣା, ଉନ୍ମାଦ, ଅଶ୍ରୁ, ସବୁ ତୁମ ଲାଗି
ସକଳ ସଂଗୀତେ ମୋର ତୁମେ ରହ ଜାଗି ।" 'ପ୍ରିୟତମ'—ଗ୍ରଂଥାବଳୀ ୧ମ—ପୃ. ୩୯

Digitized by PPRACHIN, SOA

## ମାୟାଧର ମାନସିଂହ (ଖ୍ରୀ: ୧୯୦୫–୧୯୭୩)

ସୌଂଦର୍ଯ୍ୟ ଓ ପ୍ରଣୟର କବିରୂପେ ମାୟାଧର ମାନସିଂହ ଓଡ଼ିଆ ସାହିତ୍ୟର ବିଦଗ୍‌ଧମଂଡଳୀରେ ବହୁଚର୍ଚ୍ଚିତ । ତାଂକ କାବ୍ୟଚେତନାର ରହସ୍ୟବାଦୀ ବ୍ୟଂଜନାଟି ମଧ୍ୟ ସେଇ ସୌଂଦର୍ଯ୍ୟ ଓ ପ୍ରଣୟର ରୂପାନୁଭୂତି ମଧ୍ୟରେ ସଂଗୃହୀତ । ମାନସିଂହ ଜଣେ ମୁଗ୍‌ଧ ଓ ବିଦଗ୍‌ଧ ରୋମାଂଟିକ କବି; ଜଣେ ଜୀବନ-ସଚେତନ କବି ମଧ୍ୟ । ମାନସିଂହ-ସୃଷ୍ଟି-ସଂଭାର ଆଦ୍ୟାଂତ ଏକ ଉତ୍ସୋଚ୍ଛଳ ଶିଳ୍ପ-ଉଲ୍ଲାସ ଏବଂ ଜୀବନବାଦୀ ପ୍ରାଣପ୍ରାଚୁର୍ଯ୍ୟରେ ରଞ୍ଜିମଂତ । ତାଂକ କାବ୍ୟସ୍ୱର ରହସ୍ୟବାଦୀ ଅଂତର୍ମୁଖ୍ୟ ସଚେତନ ହୁଏତ ନୁହେଁ, ମାତ୍ର ତାଂକ ରଚନାରେ ମିଷ୍ଟିକ ଭାବଚେତନା ସଂବଳିତ ବହୁ ଉଚ୍ଚାରଣ ରହିଛି— ଯାହାର ଅନୁଭୂତିଗତ ସତ୍ୟତା ଓ ପ୍ରକାଶଗତ ବିଶ୍ୱସ୍ତତାକୁ ଅସ୍ୱୀକାର କରିହୁଏ ନାହିଁ ।

ମାନସିଂହ କାବ୍ୟଚେତନାରେ ରହସ୍ୟଧର୍ମିତାର ଚିଂତାତ୍ମକ ଓ ଅନୁଭବାତ୍ମକ—ଦ୍ୱିବିଧ ପ୍ରକାଶ ରହିଛି । ଗୋଟିଏ ହେଉଛି ବୁଦ୍ଧିବାଦୀ ବିଚାରପ୍ରବଣତା, ଯାହା ଉପସ୍ଥିତ ଜୀବନର ଅନେକ ଅସମାହିତ ପ୍ରଶ୍ନପାଇଁ ଚେତନା-ସଂଘାତର ଘୂର୍ଣ୍ଣାବର୍ତ୍ତ ଭିତର ଦେଇ ଏକ ଶାଶ୍ୱତ 'ଉତ୍ତରଲୋକ'ରେ ଭାବ ସମାଧାନ ମାଗିଛି । ଜନ୍ମ-ଜୀବନ-ମୃତ୍ୟୁ ସଂପର୍କିତ ମେଟାଫିଜିକାଲ୍ ଜିଜ୍ଞାସାରେ ଧର୍ମଭାବନା ଓ ଅଧ୍ୟାତ୍ମ ସଂବେଗ ମୂଳକ ରହସ୍ୟାନୁଚିଂତାର ସ୍ୱାଭାବିକ ଅନୁପ୍ରବେଶ ଘଟିଛି । ଏ ପର୍ଯ୍ୟାୟରେ, କବି ମାନସିଂହ ଅପେକ୍ଷା ବୁଦ୍ଧିବାଦୀ ଚାକର ମାନସିଂହ ହିଁ ଅଧିକ ପ୍ରଗଲ୍‌ଭ । ମାତ୍ର ଯଥାର୍ଥରେ ତାଂକ ମିଷ୍ଟିସିଜମ୍‌ର ମୂଳ ଉଚ୍ଚାରଣଟି ତାଂକ କବିଧର୍ମ ଭିତରୁ ହିଁ ପ୍ରକାଶଲାଭ କରିଛି । ଏ ରହସ୍ୟାତ୍ମିକତା ମାନସିଂହ କାବ୍ୟଚେତନାରେ ଆକସ୍ମିକ ନୁହେଁ । ବିସ୍ମୟକର ନୁହେଁ । ରହସ୍ୟଚେତନାର ମୂଳରୂପଟି ମର୍ମଗତ ଉପଲବ୍‌ଧିର । ବ୍ୟକ୍ତଠାରେ ବିଶ୍ୱାତୀତର ବିଶ୍ୱାତ୍ମକ ଉପଲବ୍‌ଧି । ସେ ଉପଲବ୍‌ଧିର କ୍ଷେତ୍ର ଏ ସମଗ୍ର ଜଗତ ଓ ସମୁଦାୟ ଜୀବନ । ରୂପାଶ୍ରୟୀ ସୌଂଦର୍ଯ୍ୟ ଓ ଭାବାଶ୍ରୟୀ ପ୍ରେମର ଅନୁଭୂତି ମଧ୍ୟରେ ତାହାର ପ୍ରାରଂଭିକ ଉଦ୍‌ବୋଧନ ।

ମାନସିଂହ ଏକ ରୋମାଂଟିକ କବି । ତାଂକ କବିତ୍ୱରେ କିଂତୁ ରୋମାଂଟିକ ସ୍ୱଚ୍ଛଂଦତାଟି କଳ୍ପନା ମୋଦର ଯଥେଷ୍ଟ ବିଳାସ ତୃପ୍ତିକୁ ସାର ମଣିନାହିଁ; ବରଂ କଳ୍ପନାର ଅତୀତଲୋକ ପ୍ରତି କବିଧର୍ମର ସ୍ୱତଃସ୍ଫୂର୍ତ୍ତିକୁ ଉଚ୍ଚାଟିତ କରିଛି ।

"ଜୀବନରେ ଯାହା ସୁଂଦର, ଯାହା ସତ୍ୟ, ମୁଁ କେବଳ ତାହାର ଉପାସକ ଓ ଭକ୍ତ । (୧) କବିଂକର ଏହି ଜୀବନାଦର୍ଶ ଭିତରୁ ତାଂକର ସମସ୍ତ କାବ୍ୟାନୁଭୂତିର ଉଦ୍‌ବୋଧନ । ସତ୍ୟକୁ ସୌଂଦର୍ଯ୍ୟ ସହ ଏକକରି ଉପଲବ୍‌ଧି କରିବା ତାଂକର ସାମଗ୍ରିକ କାବ୍ୟ-ସାଧନା ଏବଂ ସେ ସତ୍ୟକୁ ପ୍ରେମ-ଅନୁଭବ ଭିତରେ ଏକାତ୍ମକରି ଲଭ କରିବା ତାଂକର ସମୁଦାୟ ଜୀବନ-ସାଧନା ବୋଲି ବିଗ୍ରହ କରାଯାଇପାରେ ।

ମାନସିଂହ ଏକ ମୁଗ୍‌ଧ କବି, ବିହ୍ୱଳ କବି; ରୂପ-ମୁଗ୍‌ଧ ଓ ପ୍ରଣୟ-ବିହ୍ୱଳ । ଉଭୟତ୍ର ତାଂକର କବିସୁଲଭ ଉଚ୍ଛ୍ୱସିତ ବ୍ୟକ୍ତିତ୍ୱର ସ୍ୱାକ୍ଷର । ଏ ଉଭୟ ମାର୍ଗରେ ତାଂକ କାବ୍ୟଚେତନାର କେବଳ

---

(୧) 'ଡଗର'—୧୪ଶ ବର୍ଷ / ୧ମ ସଂଖ୍ୟା

Digitized by PPRACHIN, SOA

ଶିଳ୍ପଗତ ସଫଳତା ଓ କଳାତ୍ମକ ଉତ୍ତୀର୍ଣ୍ଣତା ଲାଭ ହୋଇଛି ତା ନୁହେଁ, ତାଙ୍କ ବ୍ୟକ୍ତିତ୍ୱର ଭୂୟୋବିକାଶଟି ମଧ୍ୟ ପଥପରିଷ୍କାର ପ୍ରଧାନ କରିଛି ।

ରୂପ ଓ ପ୍ରେମପ୍ରତି ମାନସିଂହଙ୍କ ପ୍ରତିକ୍ରିୟାଟି ପ୍ରାରମ୍ଭରୁ ଆବେଗ ଉଚ୍ଛ୍ୱସିତ ଓ କ୍ରମଶଃ ତାହାର ସ୍ୱଗ୍ଳାପତି ଧ୍ୟାନମୟ ଗଭୀରତା ଭିତରକୁ ଅପସୃତ । ମାନସିଂହଙ୍କ ପ୍ରଥମ କାବ୍ୟୋଚ୍ଛ୍ୱାସ ଇତସ୍ତତଃ ପ୍ଲାବିତ ଅଜସ୍ର ବାରିପାତ ତୁଲ୍ୟ, କ୍ରମଶଃ ସେମାନେ ଏକ ନିର୍ଦ୍ଦିଷ୍ଟ ସ୍ରୋତଶଯ୍ୟା ଅଭିମୁଖୀ ହୋଇଛନ୍ତି— ଯେପରି ଉତ୍କୂଳ ପ୍ଲାବନ ତଟର ଦୃଢ଼ ବନ୍ଧନ ଭିତରକୁ କ୍ରମେ ପ୍ରବାହିତ ହୋଇଆସିଛି । ପ୍ରଥମରୁ ବନ୍ଧ ପ୍ରାବୃଟଧାରା ଉଚ୍ଛଳ ଗିରିନଦୀ ଯେପରି କବିଚିତ୍ତରେ ଏଣେତେଣେ ବହୁଃପ୍ରସ୍ରବଣର ଅଭିବ୍ୟକ୍ତିର ଉଚ୍ଛ୍ୱାସକୁ ବହନ କରିଆସିଛନ୍ତି । ତା'ପରେ କଂରୁ ଏକ ନିର୍ଦ୍ଦିଷ୍ଟ ଶଯ୍ୟାଧାର, ସ୍ରୋତରୂପ, ତଟବନ୍ଧନ ଓ ସମ୍ମୁଖଗତି, ଯାହା ଶେଷରେ ସମୁଦ୍ର ନିର୍ଘୋଷ ଶୁଣିଛି, ଧ୍ରୁବ ଏତ ବା ସମୁଦ୍ରମଜ୍ଜନ ଲଭିଛି । କବିଚିତ୍ତ ଅନେକ ଘାତପ୍ରତିଘାତ ଭିତରେ ଶେଷରେ ସମନ୍ୱୟର ବିନ୍ଦୁଟିରେ ଉପନୀତ ହୋଇଛି ।

ପ୍ରାକ୍-'ଧୂପ' କବିତାଗୁଡ଼ିକ ରୂପମୁଗ୍ଧତାର । 'ଧୂପ' ପ୍ରଣୟ ବିହ୍ୱଳତାର । 'ଧୂପ' ପରବର୍ତ୍ତୀ ରଚନାମାନ ପ୍ରଣୟର ଅର୍ଥ ଖୋଜାର, ଜୀବନସହ ପ୍ରେମର ସମ୍ପର୍କ ନିର୍ଦ୍ଧାରଣର । 'ଅକ୍ଷତ' ଓ 'ଜୀବନଚିତା' ଜୀବନର ସାମଗ୍ରିକ ଅବଧାରଣା ପ୍ରୟାସ । 'କୃଷ୍ଣ'ରେ କବି ଆତ୍ମାର ଶାଶ୍ୱତକୁ ମୁଖାପେକ୍ଷୀ ହେବାର ପ୍ରତିଶ୍ରୁତି ସ୍ୱୀକାର, ବିସ୍ମୟ ଓ ସ୍ୱୀକୃତିର ପ୍ରତିଫଳନ । 'ସିନ୍ଧୁ ଓ ବିନ୍ଦୁ' କବିସତ୍ତାର ସମନ୍ୱୟ ଓ ସମର୍ପଣର ସହଜ ଉଚ୍ଚାରଣ-ଗୀତ ।

ଯୌବନର ରୂପାସକ୍ତି ଓ ପ୍ରେମାନୁଭବ ଭିତରୁ କବି ଜୀବନରେ ସତ୍ୟର ଜିଜ୍ଞାସା, ଶାଶ୍ୱତର ଉଦ୍‌ବୋଧନ । ଉଭୟ ମାନବୀୟ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ରୂପମୁଗ୍ଧତା ଏବଂ ରୂପରୁ ରୂପାତୀତ ପ୍ରତି ଆକର୍ଷଣ—ଏହା ହିଁ ମାନସିଂହ କାବ୍ୟପ୍ରବାଦ । ସୁନ୍ଦରୀ-ନାରୀ ପ୍ରତି ଉନ୍ମୁଖତା ଏବଂ ସୁନ୍ଦର ପରିବେଶ ଭିତରେ ତନ୍ମୟତା ରୋମାଣ୍ଟିକ କବି ରାଧାନାଥଙ୍କ ସ୍ୱରର ଅନୁରୂପ କାବ୍ୟପ୍ରଧାନ ଲୋଡ଼ିଛି । (୧) କବିଙ୍କର ଏ ରୂପଘନ ପ୍ରେମଭାବନା ମଧ୍ୟ ଆଦ୍ୟ କାବ୍ୟ-ରୂପରେ ପ୍ରବଳଭାବେ ପ୍ରକାଶିତ । ମାତ୍ର ତାରୁଣ୍ୟର ଏହି ପ୍ରଗଲ୍‌ଭ ପ୍ରଣୟ ଓ ପ୍ରବଳ ରୂପାସକ୍ତି କ୍ରମଶଃ ପ୍ରେମସ୍ୱରୂପର ଗଭୀର ବ୍ୟାପ୍ତିକୁ ପ୍ରଧାନ କରିଛି ଏବଂ ଦୂରତମ ନକ୍ଷତ୍ରଲୋକ ପର୍ଯ୍ୟନ୍ତ ସେ ଯାହାର ପଦଧ୍ୱନି ଶୁଣିଛି । ମାନସିଂହ କାବ୍ୟ ସୃଷ୍ଟି ସେହି "ଏକ ଅନ୍ୱେଷଣଶୀଳ, ପରିପର ଅଭିଜ୍ଞତା ଦେଇ ସଦା ପରିବର୍ତ୍ତିତ ଓ କ୍ରମ ପ୍ରସାରିତ ବିବର୍ଦ୍ଧିତ ମାନବାତ୍ମାର ପ୍ରଲମ୍ବିତ ଆର୍ଟ-ସାଲେଖ୍ୟ ।" (୩)

ଫଳତଃ ମାନସିଂହଙ୍କର କାବ୍ୟୋଚ୍ଚାରଣ ତାଙ୍କ ଅନ୍ତଃଚେତନାର ବିବର୍ତ୍ତନାତ୍ମକ ବିକାଶର ରୂପାଲେଖ୍ୟ । ପ୍ରତ୍ୟେକଟି ପର୍ଯ୍ୟାୟର ଚମତ୍କାର ଅଭିଲେଖ, ଚେତନାର ଉତ୍‌ଥାନପତନ, ଅନ୍ଧାର ଓ ଆଲୋକମୟ ଅନୁଭବର ସମସ୍ତ ପରିଚୟ କବିଙ୍କ ସତ୍ୟନିଷ୍ଠ କାବ୍ୟୋକ୍ତିରେ ମୁଦ୍ରାଙ୍କିତ। ମାନସିଂହଙ୍କ କାବ୍ୟ ବୈଶିଷ୍ଟ୍ୟଟି ମୁଖ୍ୟତଃ ଉନ୍ମୋଚନର । କବି ନିଜକୁ କେଉଁଠାରେ ଆବୃତ, ସଙ୍କୁଚିତ କରି ନାହାନ୍ତି ବା ସତ୍ୟାନୁଭବର ଅପଲାପ କରି ନିଜକୁ ଭିନ୍ନ ବ୍ୟକ୍ତିତ୍ୱରୂପେ ପ୍ରତିପନ୍ନ କରିବାର ଆୟାସ କରିନାହାନ୍ତି । ତାଙ୍କର ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ତାଙ୍କ ଭାବ-ସ୍ୱାଚ୍ଛନ୍ଦ୍ୟକୁ ଯେତିକି ଉନ୍ମୁକ୍ତିର ପରିସର ଦେଇଛି, ସତ୍ୟ ପ୍ରତି ଶ୍ରଦ୍ଧାଶୀଳତା ତାଙ୍କୁ ସେତିକି ଅକପଟ ଆତ୍ମୋଚ୍ଚାରଣର ଅବସର

(୧) "ରୂପ ଆକର୍ଷଣ ପ୍ରବଳ କିବା ନରେ ଅମରେ ।" ରାଧାନାଥ ଗ୍ରନ୍ଥାବଳୀ ପୃ. ୫୦ (ଚନ୍ଦ୍ରଭାଗା)
(୩) 'ନିଃସର୍ଗର ଉଦ୍‌ଗାତା ମାନସିଂହ'—ଶ୍ରୀ ଦାଶରଥି ଦାସ 'ମାନସିଂ ସୃଷ୍ଟି ସମୀକ୍ଷା' ପୃ. ୪୭

Digitized by PPRACHIN, SOA

ଦେଇଚ । ମାନସିଂହ ନିଜ ଭାବ-ମାନସକୁ ଭିନ୍ନ-ଭିନ୍ନ ଉଖାରେଛନ୍ତି । ଭଲମନ୍ଦର ଅସଂକୋଚ ଆବିର୍ଭାବ ପ୍ରକାଶ କରିଛନ୍ତି । ତା ଭିତରେ ସତ୍ୟର ସନ୍ଧାନପ୍ରୟାସଟି ବଳବତ୍ତର ହୋଇଉଠିଛି । କବିଙ୍କ ପକ୍ଷରେ ସୌନ୍ଦର୍ଯ୍ୟ ଓ ପ୍ରେମ, କେହି ବି ନିଜପାଇଁ ପରିଣତି-ସାର୍ଥକ ନୁହନ୍ତି । ତାହା ପାଶ୍ଚାତ୍ୟ ରୋମାଂଟିସିଜମ୍‌ର ଭାବାଦର୍ଶ; ମାତ୍ର ପ୍ରାଚ୍ୟଦର୍ଶନରେ ଏମାନେ ମହତ୍ତର ଏକ ରୂପାଦର୍ଶ ଓ ପ୍ରଣୟାଦର୍ଶର ସନ୍ଧାନମାର୍ଗ ରୂପେ ପରିଗଣିତ । ସେହି ଯାତ୍ରାପଥର ବିବରଣୀ ଅବଶ୍ୟ ମାନସିଂହ କାବ୍ୟ ପରିଚୟର ମୁଖବନ୍ଧ । ମାତ୍ର ତାଙ୍କ କାବ୍ୟାଦର୍ଶ ଯେଉଁଠାରେ ତାଙ୍କୁ ଜୀବନର ପରମପ୍ରାପ୍ତି ପ୍ରତି ଉଦ୍‌ବୁଦ୍ଧ କରିଛି, ସେ 'ପରମ' ସହ କବି ବ୍ୟକ୍ତିତ୍ୱର ସମ୍ପର୍କଜନିତ ପ୍ରତିକ୍ରିୟାଟି ଯେଉଁ ଉପଲବ୍ଧି ଶାଣିତ ଅଭିବ୍ୟଂଜନା ଲାଭ କରିଛି, ସେହି ଭାବାନୁଭୂତିର ପରିପ୍ରକାଶଟି ଯେ ନିତାନ୍ତ ରହସ୍ୟବାଦୀ ଭାବାଶ୍ରିତ ହୋଇପଡ଼ିଛି, ଏହା ହିଁ ତାଙ୍କ କାବ୍ୟ ବିଚାର ପ୍ରସଙ୍ଗରେ ଉଲ୍ଲେଖନୀୟ ।

କବିଧର୍ମ ଓ ରହସ୍ୟଭାବନାର ଏକ ମିଳିତକ୍ଷେତ୍ର ରହିଛି । ଉଭୟେ ପ୍ରେମ ଓ ରମଣୀୟତା ମାର୍ଗରେ ଶାଶ୍ୱତ-ଉପଲବ୍‌ଧିର ସମ୍ଭାବନାକୁ ମାନିନିଅନ୍ତି । ପ୍ରେମ ଭିତରେ ପରମଙ୍କୁ ଉପଲବ୍‌ଧି କରିବାଟି ଅଂତର୍ମୁଖୀ ଚେତନାସିଦ୍ଧି (introvertive) । ସେହିପରି ସୌନ୍ଦର୍ଯ୍ୟ ମାର୍ଗରେ ଶାଶ୍ୱତଙ୍କୁ ସାକ୍ଷାତକାର କରିବାରେ ବହିର୍ମୁଖୀ ରହସ୍ୟାନୁଭବ (extrovertive) ଉପଜାତ । ଅନନ୍ତ ପ୍ରେମ ହୃଦୟର ପ୍ରୀତି ଭାବନା ଓ ଅନୁଭବ ଭିତରେ ସତ୍ତାକୁ ଅଂତର୍ଗତ କରି ରଖେ । ସୌନ୍ଦର୍ଯ୍ୟ ଇନ୍ଦ୍ରିୟ ଆକର୍ଷଣଦ୍ୱାରା ସତ୍ତାକୁ ବହିଃସ୍ଥ ବିଶ୍ୱସୃଷ୍ଟି ସହ ମିଳିତ କରେ । ଉଭୟମାର୍ଗରେ ଏହିପରି ଦିବ୍ୟ ଅଭୀପ୍ସାଟି ମାନବଚରିତ୍ରରେ ଇଂଗିତମୟ ହୋଇଉଠେ । 'ଯାହାକୁ ଆମେ ଭଲପାଉ, ତାରି ମଧ୍ୟରେ ଆମେ ଅନନ୍ତର ପରିଚୟ ପାଉ' (ରବୀନ୍ଦ୍ରନାଥ), ଏ ଉକ୍ତିଟି ଶ୍ରେଷ୍ଠ କବିର ବି, ମିଷ୍ଟିକର ବି !

ବହିର୍ଜଗତର ରୂପରଂଗ ବ୍ୟକ୍ତିଚରିତ୍ରକୁ ମୁଗ୍ଧକରେ । ସ୍ରଷ୍ଟା ପ୍ରତି ସମ୍ଭ୍ରମଶୀଳ କରେ । ମାତ୍ର ଏହା ରହସ୍ୟବସ୍ତୁ ଭିତରେ ସ୍ରଷ୍ଟାଠାରୁ ଏକ ଦୂରତ୍ୱର ବ୍ୟବଧାନରେ ସୃଷ୍ଟିକୁ ରଖିଥାଏ । ସୌନ୍ଦର୍ଯ୍ୟ ନୈସର୍ଗିକ ହେଉ ବା ଶାରୀରିକ ହେଉ, ବ୍ୟକ୍ତିକୁ ଆପଣାଠାରୁ ଭିନ୍ନ, ଊର୍ଦ୍ଧ୍ୱ ଓ ମହାନ୍ ଏକ ଚେତନାର ସମ୍ବାଦ ଦିଏ । ବିରାଟ ଓ କ୍ଷୁଦ୍ର, ଅସୀମ ଓ ସୀମା, ସ୍ରଷ୍ଟା ଓ ସୃଷ୍ଟି ଏହି ଦ୍ୱନ୍ଦ୍ୱାତ୍ମକତାରେ ଏ ଭାବ ପ୍ରକଟିତ । କିନ୍ତୁ ହୃଦୟର ଅନୁଭୂତି ମଧ୍ୟରେ ପ୍ରେମ ଯେଉଁ ତୀବ୍ରତା ସୃଷ୍ଟିକରେ ତାହା ବ୍ୟକ୍ତିର ସାମଗ୍ରିକତାକୁ ବିହ୍ୱଳ କରେ । ସୌନ୍ଦର୍ଯ୍ୟ ସମ୍ଭୋଗ କାଳରେ ବ୍ୟକ୍ତି ଜଣେ ଦର୍ଶକ ବା ଉପଭୋକ୍ତା । ମାତ୍ର ପ୍ରେମାନୁଭବରେ ସତ୍ତା ଏକ ବିଗଳିତ ପ୍ରବାହ, ବିହ୍ୱଳିତ ଉଚ୍ଛ୍ୱାସ । ନିଜ ଠାରୁ ଭିନ୍ନ, ଦୂର ସବୁ କିଛିକୁ ଯେପରି ଅଂତର୍ଗତ କରି ଲାଭ କରିବାର ରହସ୍ୟ ପ୍ରେମ ବ୍ୟକ୍ତିକୁ ଜଣାଇଦିଏ ।

ପାଶ୍ଚାତ୍ୟ ରହସ୍ୟଚେତନା ମୁଖ୍ୟତଃ ଏହି ସୌନ୍ଦର୍ଯ୍ୟାଶ୍ରୟୀ ପ୍ରେମସାଧନା । ମାନସିଂହଙ୍କ କାବ୍ୟସ୍ୱର ପାଶ୍ଚାତ୍ୟମାନସ ପ୍ରଭାବିତ ବହିର୍ମୁଖୀ ଚିନ୍ତାଧାରାର ପ୍ରବକ୍ତା । କବି ଏକ ନିର୍ଦ୍ଦିଷ୍ଟ ରୋମାଂଟିକ ଆବେଗ ପ୍ରବଣତା ଭିତରୁ ପ୍ରେମୋପଲବ୍‌ଧିର ମାର୍ଗରେ କ୍ରମଶଃ ରହସ୍ୟବାଦୀ ଗଭୀରତାକୁ ଅପସରି ଆସିଛନ୍ତି । ପ୍ଲାଟୋନିକ ପ୍ରେମବନ୍ଦନାର ଏ ଯେପରି ମୂର୍ତ୍ତାୟିତ ସାଧନା ।

ଓ୍ୱାର୍ଡସ୍‌ଓ୍ୱାର୍ଥ ଓ କଲରିଜ୍‌ଙ୍କ ପ୍ରକୃତି ପ୍ରେରଣା, କୀଟସ୍ ଓ ରସେଟିଙ୍କ ସୌନ୍ଦର୍ଯ୍ୟଭାବନା ଏବଂ ଶେଲିଙ୍କ ରୂପୋତ୍ତର ପ୍ରେମସାଧନା—ଏ ସବୁ ଭାବାଦର୍ଶ ମାନସିଂହଙ୍କ ନବୋଦିତ କାବ୍ୟଚେତନାକୁ ପ୍ରଭାବିତ କରିଥିବା ତ ସ୍ୱାଭାବିକ, କବିମାନସକୁ ଏ ପଥରେ ସଚେତନ ପ୍ରରୋଚିତ କରିଛି ରବୀନ୍ଦ୍ର କାବ୍ୟାଦର୍ଶ ।

Digitized by PPRACHIN, SOA

ରବୀନ୍ଦ୍ର ଚେତନା ସେହିପରି ଏକ ଅନିବାର୍ଯ୍ୟ ଐତିହାସିକ ଓ ସାହିତ୍ୟିକ ଯୁଗ ଫଳଶ୍ରୁତି ଥିଲା ଯାହାର ପ୍ରଭାବ ସମସାମୟିକ ଭାରତର କାବ୍ୟସ୍ୱରକୁ ପୂର୍ଣ ପ୍ରଭାବିତ କରି ରଖିଥିଲା । ମାନସିଂହ କବିତାରେ ତାହାର ପ୍ରତିଧ୍ୱନି ବା ସମର୍ଥନ ଶ୍ରୁତ ହେବା ବିଚିତ୍ର ନୁହେଁ; ବରଂ ମାନସିଂହଙ୍କ ଭାବଗତ ଉପଲବ୍ଧିରେ ଯେ ସାମ୍ୟରୂପ ପ୍ରଦର୍ଶିତ, ସମାନ୍ତରାଳ ଭାବ-ରୂପ ବିସ୍ତୃତିରେ ସେଗୁଡ଼ିକ ହିଁ ତାଙ୍କର କାବ୍ୟ-ବୈଶିଷ୍ଟ୍ୟ ।

ଏ କାବ୍ୟ ପରିଣତି ବ୍ୟକ୍ତିଗତ ପ୍ରେମାନୁଭବ ଓ ଦୁଃଖର ରୂପଚେତନା ଭିତରୁ କ୍ରମଶଃ ବିଶ୍ୱମାନବପାଇଁ ପ୍ରୀତି ଓ ସହାନୁଭୂତି ଆଡ଼କୁ ପ୍ରସାରିତ ହୋଇଯାଇଛି । ଖ୍ରୀଷ୍ଟଧର୍ମର ମହାନ୍ ପ୍ରେମ ଏବଂ ପାଶ୍ଚାତ୍ୟ ମାନବତାବାଦ ସହ ପ୍ରାଚ୍ୟ ବୌଦ୍ଧ-କରୁଣାର ଭାବଚେତନାଟି ସେ କାବ୍ୟାଦର୍ଶକୁ ଗଭୀର ଗମ୍ଭୀର କରିଦେଇଛି । ବ୍ୟକ୍ତିଗତ ସୂକ୍ଷ୍ମାନୁଭୂତିର ସବଲିମେଶନ ସ୍ତରରେ ମଧ୍ୟ ପ୍ରେମିକ କବିଙ୍କର ପ୍ରେମଭାବନା ବୈଷ୍ଣବ ପ୍ରୀତି-ଚେତନା ସହ ମିଶିଯାଇଛି ।

ପ୍ରେମ କବିଙ୍କୁ ଅନ୍ତର୍ମଗ୍ନ ଅନୁଭବ ଭିତରେ ଲୀନ ନିବିଡ଼ କରିଛି । ଇନ୍ଦ୍ରିୟାନୁଭୂତି ମାର୍ଗରେ ରୂପରୁ ରୂପୋତ୍ତରକୁ, ଦେହାସକ୍ତିରୁ ଅନ୍ତରାନୁରକ୍ତିକୁ, ବ୍ୟକ୍ତିରୁ ନୈର୍ବ୍ୟକ୍ତିକତାକୁ, କ୍ଷଣରୁ ଚିରନ୍ତନକୁ ଏହାର ପ୍ରସାରଣଶୀଳତା । ହୃଦୟର ଗୋଟିଏ ବିନ୍ଦୁରେ ନିଖିଳ ଚିତ୍ତକୁ ଚଳୋଚ୍ଛଳ କରିଦେବାର ବ୍ୟଞ୍ଜନା-ସାମର୍ଥ୍ୟଟିକୁ ମାନସିଂହ କାବ୍ୟସ୍ୱରରୁ ଅସ୍ୱୀକାର କରିହୁଏ ନାହିଁ । ବିଶ୍ୱ ଚରାଚର ଯେଉଁ ପ୍ରଣୟ-ଲୀଳାରେ ଐକ୍ୟବଦ୍ଧ, ଅନ୍ତଚେତନାରେ ସେହି ଏକ ହିଁ ଶାଶ୍ୱତ ପ୍ରେମ-ସ୍ୱରୂପ—ଏ ବହିଃରୂପ ଓ ଅନ୍ତଃରୂପ ଅନୁଭବର ସୁସଂଗତିରେ ମାନସିଂହ-କବିତାର ରହସ୍ୟବାଦୀ ରୂପ ପ୍ରତିଷ୍ଠା ।

ଏ ପ୍ରସଙ୍ଗରେ ସୂଚିତ କରାଯାଇପାରେ—ପ୍ରେମ ଓ ସୌନ୍ଦର୍ଯ୍ୟତତ୍ତ୍ୱ ଅତୀନ୍ଦ୍ରିୟ ଶାଶ୍ୱତ ପରି ରୋମାଣ୍ଟିକ ଚେତନାରେ ନୈର୍ବ୍ୟକ୍ତିକ ତତ୍ତ୍ୱବିଶେଷ । ରୋମାଣ୍ଟିକ ଅତୀନ୍ଦ୍ରିୟ ଉପଲବ୍ଧି ମୁଖ୍ୟତଃ ଏକ ଶିଳ୍ପୋପଲବ୍ଧି । ତତ୍ତ୍ୱସହ ବାସ୍ତବର, ଚିରନ୍ତନ ସହ କ୍ଷଣିକର ସମ୍ବନ୍ଧ ରହସ୍ୟକୁ ମାନସିଂହଙ୍କ କାବ୍ୟ-ଜିଜ୍ଞାସା ହୁଏତ ତତ୍ତ୍ୱାନୁସନ୍ଧାନ ମାର୍ଗରେ ଦେଖିବାକୁ ଚେଷ୍ଟା କରିଛି । ତତ୍ତ୍ୱକୁ ପ୍ରାଣମୟ, ମର୍ମାନୁଭବରେ ଲାଭ କରିବାର ଏ ପ୍ରବଣତାଟି ପୂରାପୂରି ରହସ୍ୟବାଦୀ ଦୃଷ୍ଟିଭଙ୍ଗୀ ସମର୍ଥିତ । ତତ୍ତ୍ୱର ଦୂରତାକୁ ମିଷ୍ଟିକ୍ ଚେତନା ସବୁବେଳେ ଆତ୍ମିକ ନିବିଡ଼ତାରେ ଉଲ୍ଲଂଘନ କରିବାକୁ ଚେଷ୍ଟିତ । ସେଠାରେ ନିର୍ଗୁଣ ନିରପେକ୍ଷ ବ୍ରହ୍ମଙ୍କୁ ମଧ୍ୟ ଆତ୍ମାନୁଭବରେ 'ଇଷ୍ଟ' ପରିଚୟରେ ଗୁଣମୟ ହେବାକୁ ପଡ଼େ । 'ଅନ୍ତର୍ଯ୍ୟାମୀ' ପରିଚୟଟି ଶ୍ରେଣ୍ଠ ରହସ୍ୟବାଦୀ ଉପସ୍ଥାପନାରେ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ ଅଭିବ୍ୟକ୍ତ । ଯେତେ ବିଦେହ, ଇନ୍ଦ୍ରିୟାତୀତ, ଲୋକୋତ୍ତରର କଥା କହିଲେ ମଧ୍ୟ ଶାଶ୍ୱତଙ୍କୁ ଏକାନ୍ତ କରି ହୃଦଗତ ନ କରିବା ପର୍ଯ୍ୟନ୍ତ ରହସ୍ୟବାଦୀ ମୁକ୍ତିସନ୍ଧାନ ଶେଷ ହୁଏନାହିଁ । ଯେତେ ଅଜ୍ଞେୟ, ସୁଦୂର ଓ ମହିମାବିପୁଳ ହୋଇଥିଲେ ବି ମିଷ୍ଟିକର 'ଈପ୍ସିତତମ' ସବୁବେଳେ 'ହୃଦୟବଲ୍ଲଭ' । ଏହି ବଲ୍ଲଭ ଦୁର୍ଲଭ ହେବା ତ ସ୍ୱାଭାବିକ । ବଲ୍ଲଭ ଶବ୍ଦଟି ବ୍ୟକ୍ତିଗତ ସମ୍ପର୍କର, ମଧୁର ଦାମ୍ପତ୍ୟର ଭାବ ପ୍ରକାଶକ । ତତ୍ତ୍ୱସହ ଏଇ ପ୍ରେମ ସମ୍ପର୍କ, କିମ୍ବା କୌଣସି ସମ୍ପର୍କ ବି ସ୍ଥାପିତ ହୋଇପାରେନା । କେବଳ ତାର ବୌଦ୍ଧିକ ଜିଜ୍ଞାସା ହୋଇପାରେ । ରୋମାଣ୍ଟିକ 'ଶାଶ୍ୱତ' ଓ ରହସ୍ୟବାଦୀ 'ଶାଶ୍ୱତ'ର ବିସ୍ତୃତ ଭିନ୍ନତା ଏଇଠାରେ । ମାନସିଂହ କାବ୍ୟର ରହସ୍ୟବାଦୀ ଉଦ୍‌ବୋଧନ ଏଇ ଆତ୍ମାନୁଭବର ପ୍ରକାଶରେ । ରବୀନ୍ଦ୍ରନାଥ, ଲକ୍ଷ୍ମୀକାନ୍ତ, ବୈକୁଣ୍ଠନାଥଙ୍କ 'ଜୀବନଦେବତା' ପରି ମାନସିଂହଙ୍କର 'ଦୁର୍ଲଭବଲ୍ଲଭ' ଚିତ୍ର ପ୍ରକାଶରେ ଏ ଶାଶ୍ୱତର ବ୍ୟକ୍ତିକ ରୂପପ୍ରୟାସ ଠିକ୍ ରୋମାଣ୍ଟିକ ଭାବାଦର୍ଶାନୁସାରୀ ନୁହେଁ, ବରଂ ଅଧିକ ମରମିୟା ଭାବବିଳାସୀ ।

Digitized by PPRACHIN, SOA

କବିମାନଙ୍କର ଶାଶ୍ୱତସନ୍ଧାନୀ । ଶାଶ୍ୱତର ବ୍ୟଂଜନାକୁ ଯେଉଁ କବିଚିତ୍ତ ଯେତେ ପରିମାଣରେ ଲାଭ କରିପାରେ ସେ ସେତେ ମହତ୍ତର କାବ୍ୟସିଦ୍ଧିର ଅଧିକାରୀ ହୁଏ । ତାର ଅନୁଭବ ଯେତେ ଅଂତଃପ୍ରସାରୀ ହୁଏ, ବହିଃବିଶ୍ୱର ସାକ୍ଷାତକାର ଓ ସୃଷ୍ଟି ରହସ୍ୟର ଅବବୋଧ-ସାମର୍ଥ୍ୟ ତା ନିକଟରେ ସେତେ ସ୍ପଷ୍ଟ ଓ ବ୍ୟାପକ ହୋଇଯାଏ । ଗଭୀର ଆତ୍ମମଗ୍ନ କବି ହିଁ ପ୍ରବଳ ବିଶ୍ୱ ସଚେତନ । ସ୍ୱଭାବ ଧାରଣର ଶକ୍ତି ବିଶ୍ୱର ରହସ୍ୟ-ଉନ୍‌ମୋଚନ-କ୍ଷମତା ଭିତରେ କବିକୁ ଆପାତଃ ପ୍ରେକ୍ଷର ଅଂତର୍ଗତ ମୂଳସତ୍ୟର ଅନ୍ୱେଷଣ ପଥକୁ ନେଇଯାଏ ।

ମାନସିଂହ କାବ୍ୟସ୍ୱରରେ ବହୁ ବିରୋଧାଭାସ, ଅସଂଗତି ଓ ବହୁ ବୈଚିତ୍ର୍ୟ-ବିଳାସର ଅଯୌକ୍ତିକତା ସମ୍ପର୍କରେ ସମାଲୋଚନା କ୍ଷେତ୍ରରେ ବହୁ କଳଗୁଂଜନ ଶୁଣାଯାଏ । ମାତ୍ର ପୂର୍ଣ୍ଣତା ପଥରେ ସତ୍ତାର ଚେତନାଗତ କ୍ରମୋତ୍ତରତାର ସ୍ୱାଭାବିକ ପ୍ରକାଶ-ରୂପରେ ହିଁ ସେମାନେ ଆବିର୍ଭୂତ । ବ୍ୟକ୍ତିତ୍ୱର ବିକାଶଧାରାରେ ଏ ନିର୍ଦ୍ଦିଷ୍ଟ ପ୍ରବହମାନତା ଏଇପରି ପାର୍ଥିବରୁ ଅପାର୍ଥିବ; ଇଂଦ୍ରିୟରୁ ଇଂଦ୍ରିୟାତୀତ, ରୂପରୁ ରୂପୋତ୍ତରତାକୁ ଗତି କଲାବେଳେ ସତ୍ୟର ପୂର୍ଣ୍ଣ ଉପଲବ୍ଧି ଘଟେ । (ଏଇ ପ୍ରବହମାନତାର ଗତିଛଂଦ ଭଂଗ ହେଲେ ହିଁ ଆତ୍ମ-ସଚେତନତା ଓ ଆତ୍ମ-ନିଷ୍ଠପରତାର ଅଭାବ ଘଟିଲେ ହିଁ ବିରୁଦ୍ଧ ବାକ୍ୟାଳାପଜନିତ ଅସଂଗତି ଘଟିଥାଏ, ଯାହା କେତେକ ତଥାକଥିତ ଓଡ଼ିଆ ରହସ୍ୟବାଦୀ କବିତାରେ ଦେଖିବାକୁ ମିଳିଥାଏ ।) ଆତ୍ମ-ଉନ୍‌ମୋଚନର ସେଇ ଉତ୍‌ଥାନ ପତନ ଜନିତ ଧାରାଟି ଧୀର, କ୍ରମିକ ଓ କୁଟିଳାବର୍ତ୍ତ (spiral) । କିଂତୁ ମାନବୀୟ ବୁଦ୍ଧିର ବିଚାରଧାରାଟି ସର୍ବଦା ସରଳ-ରୈଖିକ । ଏହା ବ୍ୟକ୍ତିତ୍ୱକୁ କେତେକ ନିର୍ଦ୍ଦିଷ୍ଟ ମାନସିକ ମାପକାଠିରେ ତଉଲିବାରେ ଅଭ୍ୟସ୍ତ । ତେଣୁ ନୈତିକ, ଅନୈତିକ, ବାସ୍ତବବାଦୀ, ଅଧ୍ୟାତ୍ମବାଦୀ ପ୍ରଭୃତି କୃତ୍ରିମ ବିଭାଜନଦ୍ୱାରା ବ୍ୟକ୍ତିତ୍ୱକୁ ସାମୟିକ ଚିହ୍ନିତ କରିବାକୁ ସେ ଆୟାସ-ତତ୍ପର । ବୁଦ୍ଧିବିଗ୍ରହର ଅନେକ ସୂକ୍ଷ୍ମଜାଲକୁ ଫାଂକି କିଂତୁ ସତ୍ତାର ବିବର୍ତ୍ତନ ଅଂଧାର ଓ ଆଲୋକଚେତନାର ସବୁ ବିରୋଧାଭାସ ଭିତରେ ଆପଣାର ଅଖଂଡ ଏକତ୍ୱକୁ ଉପଲବ୍ଧି କରିବାର ଜ୍ୟୋତିର୍ମୟ ପଥରେ ଗତିକରିଥାଏ । ଅତଏବ କବିଚେତନାର ଏହାହିଁ ସବୁବେଳେ ଉଦ୍‌ଘୋଷଣ । ବିରୋଧାଭାସ ଭିତରେ ତାର ସତ୍ୟପ୍ରକାଶ । (୪)

ମାନସିଂହଙ୍କ କବିତାଗୁଡ଼ିକ ଏଇ ଆଲୋକ ଅଂଧାର, ଆଶାନିରାଶା ଓ ଅନ୍ୱେଷଣର ସଂବାଦମୁଖର । ତାଂକ ଚେତନାର ପରିପୂର୍ଣ୍ଣତା ପଥରେ ବହୁ ପଥକ୍ଲାଂତିର ପୀଡ଼ା ତଥା ନବନବ ଉପଲବ୍ଧିର ଆନଂଦଧ୍ୱନି ମର୍ମରିତ । କବିଂକର ବ୍ୟକ୍ତିତ୍ୱରେ ବିରୋଧ ନୁହେଁ, ବରଂ ସାମଂଜସ୍ୟର ସୂତ୍ର ଖୋଜୁଥିବା ବିରୋଧାଭାସଗୁଡ଼ିକର ସଂଗଠିକରଣହିଁ ତାଂକ କାବ୍ୟସାଧନାର ସାମଗାନ । ମାନସିଂହଙ୍କ ସାଧନା ଏକ ପୂର୍ଣ୍ଣ ବ୍ୟକ୍ତିତ୍ୱର ସାଧନା ବୋଲି କୁହାଯାଇପାରେ । ସେଇ ବ୍ୟକ୍ତିତ୍ୱ ମଧ୍ୟରେ କବିଂକ ଦେହ ମନ ପ୍ରାଣର ସକଳ ଧର୍ମ ସ୍ୱୀକୃତି ଓ ସାମଂଜସ୍ୟ ଲୋଡ଼ିଛି । (୫)

---

(୪) "Do I contradict myself ?
Yes I contradict myself I contain multitudes."—Whitman—(Songs of Myself)—Leaves of Grass—p. 51

(୫) "ଆମ ଆଖି ଆଗରେ ଏକ ଧାରାପଥଯାତ୍ରୀ ମାନବାତ୍ମାର ଜଡ଼ରୁ ଚେତନକୁ, ଜୀବରୁ ଶିବକୁ, ଆପାତ ସତ୍ୟରୁ ପ୍ରକୃତ ତଥ୍ୟତାକୁ କ୍ରମିକ ଊର୍ଦ୍ଧ୍ୱଗତି, ଶନୈଃ ସବଲମେଶନ୍‌···କବିଂକର ଏଇ ଗୃହୀକୃଷ୍ଟ ଜୀବନ ଓ ପ୍ରକୃତି ଦେଇ ଅଂତରାଳକୁ ବିଶ୍ୱବ୍ୟାପ୍ତ ଦୈବତଚେତନାର ଅନ୍ୱେଷଣ ।" —ଦାଶରଥି ଦାସ 'ମାନସିଂହ ସୃଷ୍ଟି ସମୀକ୍ଷା'—ପୃ. ୪୮

Digitized by PPRACHIN, SOA

କାବ୍ୟବିଚାର : (୧) ସୌଂଦର୍ଯ ଉପଲବ୍‌ଧି, (୨) ପ୍ରେମ ଅନୁଭୂତି :

"ପ୍ରେମ, ସୌଂଦର୍ଯଶ୍ରିଙ୍କାର ଏକ ଅସୀମପ୍ରସାରୀ ପଥ ଆଛେ, ହୃଦୟର ମଧ୍ୟ ଦିୟେ ଯାର ରାଜପଥ । ସେଇ ପଥ ଦିୟେ ଅଗ୍ରସର ହୟେ ଗେଲେ ଏମନ ଏକ ଜାୟଗାୟ ପୌଛାନୋ ଯେତେ ପାରେ, ଯେଖାନ ଥେକେ ଚାଇଲେ ଜଗତେର ସମସ୍ତ ଆପାତବିରୋଧ ନିରସ୍ତ ହୟେ ତାର ଅନ୍ତର୍ଲୀନ ରୂପଲୋକ ଫୁଟେ ଉଠତେ ପାରେ । × × × ଅତି ଜାଗତିକ ସୌଂଦର୍ଯ ତତ୍ତ୍ୱ, ରୂପଲୋକେର ଊର୍ଦ୍ଧ୍ୱତମ ଆକାଶେର ପ୍ରେରଣା ଏଇ ସୌଂଦର୍ଯପ୍ରେମଲୋକ, ଏଇ ଭୂସ୍ୱର୍ଗ ସୃଷ୍ଟି ହଲ କବିର ସମାନେ ପ୍ରଧାନ ଟ୍ରେଲେଂଜ ।" (୬)

ମାନସିଂହ କାବ୍ୟଭାବନା ଏଇ ଟ୍ରେଲେଂଜକୁ ପ୍ରଥମରୁ ଭେଟିଥିବା ପରି ମନେହୁଏ । ଖ୍ରୀ: ୧୯୨୩ରେ ମାତ୍ର ଅଠରବର୍ଷ ବୟସରେ କବି ଲେଖିଥିଲେ 'କବିର ନିମଂତ୍ରଣ ।' ନିହାତି ଅପରିପକ୍ୱ ତାରୁଣ୍ୟର ଆବେଗ-ଉଚ୍ଛ୍ୱସିତ ଭାବ-କଳ୍ପନା-ସୃଷ୍ଟ ଏହି କବିତାରେ ତାଂକ କାବ୍ୟ-ସାଧନାର ସମଗ୍ର-ବିକାଶ ରୂପର ଭବିଷ୍ୟତଟି ଯେପରି ତାଂକ ଅଲକ୍ଷ୍ୟରେ ନିର୍ଦ୍ଧାରିତ ହୋଇଯାଇଥିଲା । କବି କୈଶୋରରେ ଜ୍ୟୋତ୍ସ୍ନା, ସ୍ୱପ୍ନ, ସ୍ମୃତି ପ୍ରଭୃତି ରମଣୀୟ ମଧୁରସିକ୍ତ ଭିତରେ ବନ୍ଦୀହୋଇଥିବାବେଳେ ପ୍ରାଣରେ ହଠାତ୍ ଏକ ନିମଂତ୍ରଣର ଡାକ ଶୁଣିଛି । ତାପରେ ସମଗ୍ର ଜୀବନ ସେହି ଅଜ୍ଞାତ ନିମଂତ୍ରଣକାରୀର ସନ୍ଧାନ । ପ୍ରକୃତିର ଫୁଲ ଆଉ ଷୋଡ଼ଶୀର ପ୍ରେମରେ ଆଦ୍ୟଯୌବନ ସେ ଡାକର ସ୍ଥାନ ସନ୍ଧାନ ସାମୟିକ ପାଇଛି । ଶେଷରେ ନିଜ ହୃଦୟରେ ତାର ଚିରଂତନ ଉତ୍ସକୁ ଶେଷ ଜୀବନ ଆବିଷ୍କାର କରିଛି । ତାପରେ ଈଶଗୀତି, ବଂଦନ ।

କବି 'ହୃଦୟର ଡାକ' ସହ ଈଶ୍ୱରସ୍ମରଣର ଭାବସଂଯୋଗର ହେତୁ ନିର୍ଦ୍ଦେଶ କରିପାରିନାହାଂତି । ହୃଦୟର ଏ ଡାକ କଣ ତେବେ ଈଶ୍ୱରଂକର ? ଈଶ୍ୱରଂକର ସ୍ୱର ତାଂକ ନିଜସ୍ୱର ? ମାନସିଂହଙ୍କ ସମଗ୍ର ବାଣୀ ସାଧନା ଏଇ ରହସ୍ୟର ଉତ୍ତର-ପ୍ରୟାସ । ପ୍ରଥମେ 'ବାହାରର' ନିମଂତ୍ରଣ ପ୍ରସଂଗ । ସେ ବାହାର କଣ ବିଶ୍ୱପ୍ରକୃତି ? ନିଖିଳ ହୃଦୟ ? ପ୍ରକୃତି ଫୁଲର ମହକ ଦେଇ ଓ ପୃଥିବୀ ଗଭୀର ପ୍ରେମ ଦେଇ ତାଂକର ଏ ଅନ୍ୱେଷଣକୁ ସମ୍ମାନ କରିଛି । କବି-କଳ୍ପନାରେ ସେ ଡାକ ପ୍ରଥମେ ବାହାରୁ ହିଁ ଶୁଭିଛି । ନିଜ ଭିତରୁ ନୁହେଁ । କୈଶୋରର, ଯୌବନର ସ୍ୱତଃ ପ୍ରବଣତା ବହିର୍ମୁଖୀ । ତାର ଅନୁଭବ ଜଗତ ଇଂଦ୍ରିୟ-ସଂଗୃହୀ । (୭) ବହିର୍ବିଶ୍ୱ ଓ ଅଂତଃରାଜ୍ୟରେ ଯେଉଁ ଭାବମୟ ସମ୍ପର୍କଟି ଆଦ୍ୟଯୌବନରେ ସ୍ଥାପିତ ହୁଏ, ତାହା ଜଗତକୁ ଜୀବନଠାରୁ ବଡ଼ କରି ଦେଖେ । ମନେହୁଏ, ଜୀବନର ସବୁ ପ୍ରାପ୍ୟ ଏ ଜଗତ ଭିତରେ ମିଳିଯିବ । ପରମପ୍ରାପ୍ତିଟି ବିଶ୍ୱପ୍ରକୃତିରେ କିଂବା ମଣିଷ ହୃଦୟରେ କେଉଁଠି ଯେମିତି ଲୁକ୍‌କାୟିତ । ଜଗତ ଓ ତାର ମଣିଷ ଯେମିତି ବ୍ୟକ୍ତିର ସବୁ ସକଳ ପ୍ରୟୋଜନ ପୂରଣ କରିପାରିବ । ତାର ସକଳ ଇଚ୍ଛାର ସାର୍ଥକତା ଦେଇପାରିବ ।

କ୍ରମଶଃ ଜଗତ ଓ ବ୍ୟକ୍ତିଜୀବନର ଭାବସମ୍ପର୍କ ଭିତରେ ଉଭୟଂକର ନିଜସ୍ୱ ଇଲାକାଟିର ସୀମା ରୂପ ସ୍ପଷ୍ଟ ହୋଇଉଠେ । ଜଗତ ଭିତରେ ଜୀବନ ଆଉ ନିଜକୁ ପୂରା ହଜାଇପାରେନା । ଜୀବନର

(୬) ସୁମିତ ଚରଣ ସରକାର—(ବିଶ୍ୱକବିର ଆବିର୍ଭାବ)—'ରବୀଂଦ୍ରାୟଣ—ପୃ. ୧୯୮

(୭) "ନିତି ନିତି ସେଥିପାଇଁ ଆସେ ପ୍ରାଣେ ନିମଂତ୍ରଣକାର
ସେଥିପାଇଁ କ୍ଷୁଦ୍ରହିଆ ଉଡ଼ିବୁଲେ ସମସ୍ତ ସଂସାର ।
ହୃଦୟ ଆଲୋକ,
ନ ପାଇଲେ ପୁଣି କାହିଁ ଖୋଜିବାକୁ ବିଶ୍ୱରେ ବାହାର ।"

'ହୃଦୟର ଡାକ'—ମାନସିଂହ ଗ୍ରଂଥାବଳୀ—ପୃ. ୪୧

Digitized by PPRACHIN, SOA

ଅନୁଭୂତ ଭିତରେ ବରଂ ଜଗତର ନବନବ ରୂପୋପଲବ୍ଧି ଘଟେ । ହୃଦୟର ଭାବ ଅନୁଭବରେ ଜଗତରୁ ପ୍ରାପ୍ତିର ମୂଲ୍ୟ ନିର୍ଧାରିତ ହୁଏ ।

ଯେଉଁ ଡାକଟି ପୃଥିବୀର ଯେକୌଣସି ସ୍ଥାନର, ଯେକୌଣସି ବ୍ୟକ୍ତିର ବୋଲି ମନେହୋଇଥାଏ, ଅଥଚ କେଉଁଠାରେ ବି ଧରାଦେଇନଥାଏ, ଶେଷରେ ତାହା ନିଜ ହୃଦୟର ଅଭ୍ୟଂତରରୁ ସମୁଚ୍ଚାରିତ ବୋଲି ଜଣାପଡ଼ିଯାଏ । ନିଜକୁ ବାଦ୍‌ଦେଇ ଏ ଯାବତ୍ ତାର ଅନ୍ୱେଷଣ ଚାଲିଥିଲା, ତେଣୁ ତାର ପୂର୍ଣ୍ଣ ପରିଚୟ ମିଳିନଥିଲା । ଅଥଚ ହୃଦୟ ତାର ଜନ୍ମସ୍ଥାନ । ହୃଦୟର ତଂନ୍ତୀରେ ହିଁ ସେ ଅଜଣା ସଙ୍ଗୀତର ପ୍ରଥମ ସୂଚନା । ଗାନ ସମୟରେ ବହୁ ତାଳମାନର ରାଗାଳାପ ଭିତରେ ବାରବାର ମୂଳଲୟଟିକୁ ଫେରି ଆସିବାକୁ ହୁଏ । ଏ ମୂଳର ସନ୍ଧାନ ନେବାପାଇଁ ଯେ ନିଜଠାରୁ ବିଚ୍ଛିନ୍ନ ହୋଇ ସାରାଜୀବନ ସେ ବିଚ୍ଛିନ୍ନତାର ଦୁଃଖ ଓ ଅନ୍ୱେଷଣର କଷ୍ଟଭୋଗି, ପୁଣି ଶେଷରେ ସେଇ ନିଜ ଭିତରକୁ ଫେରିବାକୁ ହୁଏ, ଚେତନାର ଏଇ ପୂର୍ଣ୍ଣଯାତ୍ରାର ତତ୍ତ୍ୱଟି ଯେପରି ସେଦିନ କିଶୋର କବିଂକର କଳ୍ପନା-ଦୃଷ୍ଟି ବଳୟ ଭିତରକୁ ସଂକ୍ରମିତ ହୋଇ ଆସିଥିଲା ।

କବିତାରେ ଫୁଲ ଓ 'ଷୋଡ଼ଶୀ'ର ରୂପଚିତ୍ରଟି ଅତି ସ୍ୱାଭାବିକ ଅଥଚ ଭାବତାତ୍ତ୍ୱିକ ପୂର୍ଣ୍ଣ । ପ୍ରକୃତିରେ ସୁରମ୍ୟ ଫୁଲ ଓ ସଂସାରରେ ପ୍ରେମଶୀଳା ଷୋଡ଼ଶୀର ନବପ୍ରଣୟ ଭାବଭୂଲ୍ୟ ସୃଷ୍ଟିର ମୂଳପ୍ରେମଟିର ପ୍ରଥମ ରୂପ-ଆବିର୍ଭାବ । କବିଂକର ନବତାରୁଣ୍ୟର ଆକର୍ଷଣ ତେଣୁ ସେଇମାନଂକ ପ୍ରତି । ଅଥଚ ସକଳ ଜାଗତିକ ପ୍ରେମ କ୍ଷଣିକ, ସାମୟିକ ତୃପ୍ତି । ତାହା ଜୀବନର ଚିରଂତନ ପ୍ରେମ-ପ୍ରୟୋଜନକୁ ତୃପ୍ତ କରିପାରେନାହିଁ । ଏଇ ଅତୃପ୍ତି ବୋଧ ହିଁ ସମସ୍ତ କ୍ରମେ କବିଚେତନାକୁ ଅନଂତ ପ୍ରଣୟ ଅଭିଳାଷୀ କରିଦେବାର ସମ୍ଭାବନା ବହନ କରିଛି । ଏଇ ଅନ୍ୱେଷଣର ଆକୁଳତା ହିଁ ପରେ ଯେବେ କବି ଆତ୍ମାରେ ମର୍ମରିତ ହୋଇଛି ।

"ହେ ଅଜ୍ଞାତ ସଖା ମମ, ତମେ ଅଛ କାହିଁ  
ଦିଅ ମତେ ତବ ସ୍ପର୍ଶ ପ୍ରଣୟ କୋମଳ  
କ୍ଳାଂତ ମୁଁ ସନ୍ଧାନେ ମୋର ଆଉ ଶକ୍ତି ନାହିଁ  
ତୁମକୁ ନ ପାଇ କଂରୁ ଜୀବନ ବିଫଳ ।" (୮)

ସମଗ୍ର ମାନସିଂହ କାବ୍ୟସର ପ୍ରକୃତି ଓ ନାରୀର ସୌନ୍ଦର୍ଯ୍ୟ ଏବଂ ପ୍ରୀତିମୁଗ୍‌ଧତାର ବିହ୍ୱଳ ଗାନ କରି କରି ଏଇ ବିଶ୍ୱୋତ୍ତର ପରମ ପ୍ରେମ ନିକଟରେ ଅଂତିମରେ ହୃଦୟର କାମନାର୍ପଣ କରିଛି ।

**ସୌନ୍ଦର୍ଯ୍ୟାନୁଭୂତ**—ମାନସିଂହ କାବ୍ୟଚେତନାର ଆଯୁମାରଂଭ ସୌନ୍ଦର୍ଯ୍ୟ ପିପାସା ଭିତରେ । କବିଂକର ସୌନ୍ଦର୍ଯ୍ୟ ଚେତନା ଓ ପ୍ରେମଚେତନାର ନାନା ସ୍ତର ଦେଇ ତାଂକ କାବ୍ୟରୂପରେ ନାନା ବୈଚିତ୍ର୍ୟ ଓ ଭାବାନୁସଙ୍ଗର ପ୍ରତିଫଳନ ।

ମାନସିଂହଂକ ସୌନ୍ଦର୍ଯ୍ୟ ଉପଲବ୍‌ଧି ଠିକ୍ ପ୍ଲାଟୋ । ଦର୍ଶନର, ଦାଂତେଂକ ସୌନ୍ଦର୍ଯ୍ୟସାଧନାର ବା ଶେଲିଂକର ଊର୍ଦ୍ଧ୍ୱାଭିସାରର ନୁହେଁ । ଏ ଉପଲବ୍‌ଧିରେ ରସେଟି ଓ ରାଧାନାଥ, କୀଟ୍‌ସ ଓ ରବୀଂଦ୍ର-ନାଥଂକ ସୌନ୍ଦର୍ଯ୍ୟ ଉପଲବ୍‌ଧିର ତାତ୍‌କାଳିକ ଶାଶ୍ୱତ-ଉନ୍ମୁକ୍ତିର ସଂବାଦ ପ୍ରତିଧ୍ୱନିତ । କବିଂକପାଇଁ ବହିଃସୌନ୍ଦର୍ଯ୍ୟ ଏକ ବିଚ୍ଛିନ୍ନ ପ୍ରକାଶ ନୁହେଁ, ସ୍ୱୟଂ ଦ୍ରବ୍ୟସୌନ୍ଦର୍ଯ୍ୟ ପାର୍ଥିବ ରୂପରେ ବିଦ୍ୟମାନ । ମାନସିଂହ କାବ୍ୟଚେତନାର ସୌନ୍ଦର୍ଯ୍ୟାଭିବ୍ୟକ୍ତି ଦ୍ୱିବିଧ; ଗୋଟିଏ ରମଣୀ-ରୂପଆଶ୍ରିତା, ଅପରଟି

(୮) 'ଏକାଂତ ଏକାକୀ' (କୃଣ)—ମାନସିଂହ ଗ୍ରଂଥାବଳୀ (୧ମଭାଗ)—ପୃ. ୪୩୭

Digitized by PPRACHIN, SOA

ନିଃସର୍ଗରରୂପ-ଲୋକ ବ୍ୟଂଜିତ। । ପ୍ରକୃତିର ରୂପଝଲକ କବିଚିତ୍ତକୁ ଦୂର ସୁଷମା-ଲୋକ ପ୍ରତି ଆକୃଷ୍ଟ କରିଛି । ସେ ସୌଂଦର୍ଯ୍ୟ ତାଂକ ଚେତନାକୁ ଦେଶ କାଳରେ ଦୂର ବିସ୍ତାରିତ କରିଛି । ପ୍ରକୃତିର ରୂପଲୀଳା ଭିତରେ ଦେଶକାଳକୁ ଏ ଅତିକ୍ରମଣ ଇତିହାସର ସ୍ମୃତିସ୍ୱପ୍ନ ହୋଇ ପୁଣି ଅନଂତ ଶାଶ୍ୱତର ସ୍ପର୍ଶରାଗ ଧରି କବିଚିତ୍ତକୁ ବାରବାର ଅସ୍ମିତା-ନିମଗ୍ନ କରିଛି । କୋଣାର୍କ ଓ ମହାନଦୀରେ ଜ୍ୟୋତ୍ସ୍ନା-ବିହାରର ଅବକାଶରେ ରୂପରୁ ଅରୂପକୁ ଯାହାର ଏ ବ୍ୟାକୁଳତା ଉତ୍ତରଣ କାବ୍ୟଚେତନାରେ ଏକ ସ୍ଥିର ଭାବାବେଶ ରୂପେ ଫୁଟିଉଠି । କବି ନାନାସ୍ତବେ ବୁଝାଇବାକୁ ଚେଷ୍ଟା କରିଛଂତି ଯେ ସୌଂଦର୍ଯ୍ୟ ନାରୀ ବା ପ୍ରକୃତି ଯାହାର ହୋଇଥାଉ କେଉଁ ଦୁର୍ଲଭ ମୁହୂର୍ତ୍ତରେ ମାନବଚିତ୍ତ ତାର ଅପରୂପତାକୁ ପ୍ରତ୍ୟକ୍ଷକରି ବ୍ୟକ୍ତି-ସୀମାବୋଧ ଅତିକ୍ରମ କରିଯାଏ ଓ କ୍ଷଣସ୍ଥାୟୀ ସେହି ମୁହୂର୍ତ୍ତରେ ଅନଂତ-ଆଚ୍ଛନ୍ନ ହୋଇଯାଏ । ଜ୍ୟୋତ୍ସ୍ନା-ଲୋକରେ କୋଣାର୍କର ସୁଷମା-ରୂପ ପରିଗ୍ରହ କରି କବିଚିତ୍ତକୁ ଅନଂତ ବିହ୍ୱାରୀ କରିଛି । ଏ ପ୍ରସ୍ତରୀଭୂତ ସୁଷମା ଜୀବଂତ ହୋଇ ଉଠିବାର ସଂଭାବନାତ୍ମକତାରେ କବିଚିତ୍ତର ଅନଂତପ୍ରତୀକ୍ଷା ଦେଶଗତ ଓ କାଳଗତ ସୀମା ଅତିକ୍ରମ କରି ଜାଗି ରହିଛି । କବିଂକ ସୌଂଦର୍ଯ୍ୟ ଉପଲବ୍‌ଧିର ଚରମୋତ୍କର୍ଷ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର'— କେବଳ ପ୍ରକୃତିର ମୁଗ୍‌ଧ ରୂପବଂଦନା ନୁହେଁ । ଶାଶ୍ୱତ ସୌଂଦର୍ଯ୍ୟ ସହ କବିମାନସର ଭାବମୟ ସାକ୍ଷାତକାରଟିର ଏକ ବିସ୍ମୟ ବିଚିତ୍ର ସଂବାଦ ମଧ୍ୟ ଏଥିରେ ପରିବେଶିତ । ସୁଂଦରୀ ପ୍ରକୃତି ଏହିଠାରେ ତାକୁ ସୁଂଦରର ଯେଉଁ ପ୍ରେରଣା ଯୋଗାଇଛି, ସାରାଜୀବନ ସତ୍ୟ ଓ ଶିବର ଶୁଭ୍ରାଲୋକ ପଥରେ ତାର ଅନ୍ୱେଷଣ ଅତୁଟ ରହିଛି । ଜ୍ୟୋତ୍ସ୍ନା-ରାତିରେ ମହାନଦୀରେ ନୌବିହାର କାଳରେ କବିହୃଦୟର ନିଃସର୍ଗ ପ୍ରକୃତିର ରୂପମାଧୁର୍ଯ୍ୟକୁ ଉପଭୋଗ କରୁ କରୁ ଅଂତଃଗହନରେ ସ୍ୱୟଂ ସୌଂଦର୍ଯ୍ୟଲକ୍ଷ୍ମୀକୁ ଯେପରି ଉଦ୍‌ଭାସିତା ଦେଖିଛଂତି । ଅନିର୍ବଚନୀୟର ସେଇ ଅପୂର୍ବ ସାକ୍ଷାତ ମୁହୂର୍ତ୍ତରେ କବି ଭାବମୂଢ଼, ବାକ୍‌ହରା ହୋଇଯାଇଛଂତି । (୯) କବିଂକ ଉପଲବ୍‌ଧିରେ ସେଇ ପରମ ସୁଂଦର ମୂର୍ତ୍ତିମାନ ଏ ସୃଷ୍ଟି ଯାହାର ପୂଜାବେଦୀ । ଜୀବନକୁ ତାଂକରି ନିକଟରେ ନୈବେଦ୍ୟ-ଅର୍ପଣ କରିଦେଇ କବି ଏ ପରମମୁହୂର୍ତ୍ତକୁ ଧନ୍ୟ କରିଛଂତି ।

ମାନସିଂହଂକ ସୌଂଦର୍ଯ୍ୟ ଲକ୍ଷ୍ମୀଟି କିଂତୁ ମୂଳତଃ ନାରୀ ରୂପାଶ୍ରିତା । କବିଂକ ପାଇଁ ସୌଂଦର୍ଯ୍ୟର ପ୍ରଥମ ସ୍ପଂଦନଚମକଟି ନାରୀର ରୂପରେ ଓ ତାର ହୃଦୟର ପ୍ରେମରେ । ସୌଂଦର୍ଯ୍ୟ ଧ୍ୟାନରେ ପ୍ରକୃତି ଓ ନାରୀ କବିଂକପାଇଁ ଏକ ହୋଇ ଯାଇଛଂତି । 'ରତି' କାବ୍ୟଲକ୍ଷ୍ମୀଂକର ସେଇ ପ୍ରଥମ ପ୍ରାଣସ୍ପଂଦନ । 'ଉର୍ବଶୀ' ସେଇ ସୌଂଦର୍ଯ୍ୟ-ବିଳାସ । ସେଇ ଶାଶ୍ୱତସୁଂଦରୀଂକର ବ୍ୟକ୍ତରୂପ, ଭୋଗ୍ୟରୂପ ଓ ସାଧନାରୂପ ଯଥାକ୍ରମେ କବିଂକର ମାନସୀ, ପରକୀୟା ଓ ପରିଣୀତା । 'ସେଦିନର କବିତା'ଠାରୁ 'ହେମଶସ୍ୟ' ପର୍ଯ୍ୟଂତ କବିପ୍ରାଣର ସେଇ ଅଚରିତାର୍ଥ ସୌଂଦର୍ଯ୍ୟସ୍ୱପ୍ନର ସ୍ୱଗ୍‌ଲାପ । ପରିପୂର୍ଣ୍ଣ ସୌଂଦର୍ଯ୍ୟପ୍ରତିମା ବାରଂବାର କବିଂକ ବିମୁଗ୍‌ଧ ଚେତନାକୁ ଊର୍ଦ୍ଧ୍ୱପ୍ରସାରିତ କରିଛି, ପୁଣି ସ୍ୱପ୍ନଭଂଗର ଆଘାତରେ କବିସତ୍ତାକୁ ଭୂଲୁଂଠିତ କରିଛି । ବିଶ୍ୱର ସୌଂଦର୍ଯ୍ୟସାରକୁ ହୃଦୟର ଅନୁଭବ ଭିତରେ ଆକର୍ଷଣ କରି କବି ରୂପ ସହ ଅରୂପର ମିଳନସାଧନା କରିଛଂତି । ରବୀଂଦ୍ରନାଥଂକ

(୯) "...ଏହି ବିପୁଳ ଶୋଭାରେ
ଅନୁଭବେ ଆତ୍ମା କାର ସ୍ପର୍ଶ ଏ ଅଂତରେ
ବଚନୁ ଅତୀତ ମୁହିଁ ପ୍ରଣମେ ତାହାରେ ।"
'ମହାନଦୀରେ ଜ୍ୟୋତ୍ସ୍ନାବିହାର'—ମାନସିଂହ ଗ୍ରଂଥାବଳୀ (୧ମ)—ପୃ. ୩୧୭

Digitized by PPRACHIN, SOA

ସ୍ୱଧାରେ ଏଇ ସୁଷମାମୟୀ 'ଅଂତରେ ଅଂତର ବାସିନୀ, ବାହାରେ ବଚନ ରୂପିଣୀ ।' (୧୦) କବି ହୃଦୟ ଏକ ଭିତର ବାହାରର ନିତ୍ୟ ଯିବ ଆସିବାର ଏକ ଅଖଂଡ ଧାରାବାହିକତା ସରଣୀ ।

କବିଂକ ରୂପାସକ୍ତ ଦୈହିକ, ତା ଭିତରେ ସ୍ୱବଗତ ସୌଂନ୍ଦର୍ଯ୍ୟ ଧ୍ୟାନର ଗଭୀରତା କଂରୁ ସମ୍ମିଶ୍ରିତ । ଏ ସୌଂନ୍ଦର୍ଯ୍ୟ ଚେତନା ସହିତ ପ୍ରଣୟ ଭାବନା ଅନିବାର୍ଯ୍ୟ ଭାବେ ଜଡ଼ିତ । ପାଶ୍ଚାତ୍ୟ ପ୍ରେମଚେତନାରେ ରୋମାଂଟିକ ସାଧନାର ଏକ ପାର୍ଶ୍ୱରେ ଜନ୍ ଡନ୍ (John Donne), ଅପରପାର୍ଶ୍ୱରେ ଶେଲି; ଦୈହିକ ଓ ଆତ୍ମିକ ଉଭୟ ଭିତ୍ତିରେ ସୌଂଦର୍ଯ୍ୟର ଅନଂତ ଉଦ୍‌ବୋଧନ । ଦେହରୂପ ମଧ୍ୟରେ ଅଧ୍ୟାତ୍ମ ପ୍ରେମ / ସୌଂନ୍ଦର୍ଯ୍ୟଲୋକର ସାଧନା । ମାନସିଂହଙ୍କ କାବ୍ୟରେ ସେଇ ସାଧନା ସଂକେତ ସ୍ପଷ୍ଟ । "ନର ସୌଂଦର୍ଯ୍ୟରେ, ଭକ୍ତ ସମ ଅଛୁ ଗୃହି ମୁଗ୍ଧ ନୟନରେ । (୧୧) କବି ସାଧନାଅଂକ ପରେ ଏ ଅନନ୍ତ ରୂପବଂଦନା ମାନସିଂହଂକ ମୁଗ୍ଧ ସ୍ୱରରେ ହିଁ ଉଚ୍ଚାରଣ ଲାଭକରିଛି । କବି ସ୍ରଷ୍ଟାର ସୌଂଦର୍ଯ୍ୟବୋଧ ଓ ଶିଳ୍ପ ପରିକଳ୍ପନାର ପରିଚୟକୁ ନାରୀ ରୂପରେ ଲାଭ କରିଛଂନ୍ତି । କେବଳ ଯୌବନର ପ୍ରୀତି ସଂପର୍କ ଭିତରେ ନାରୀର ରୂପମୁଗ୍ଧତା ନୁହେଁ, ପ୍ରାକ-ଧୂପ କାଳରୁ ମଧ୍ୟ ପ୍ରେମ ଓ ଲାବଣ୍ୟର ସେଇ ମଧୁର ପ୍ରତିମାଟି ତାଂଙ୍କ ମାନସ କଳ୍ପନାରେ ରତି, ଉର୍ବଶୀ ରୂପେ କବିର ସ୍ୱପ୍ନକୁ ଉଦ୍ଭାସିତ କରିଛି । ଖ୍ରୀ: ୧୮୮୮ରେ ରଚିତ 'ରତି' କବି କଳ୍ପନାରେ ସେହି ଚିରଂତନୀ ସୃଜନୀ ପ୍ରେରଣାର ରୂପ ଆବିର୍ଭାବ ଯାହା ଆତ୍ମାର ପ୍ରୀତି ରୂପେ ସୃଷ୍ଟିର ଆଦ୍ୟରୁ ସଂଚରିତ । (୧୨) ଉର୍ବଶୀ ତାର ଆଧାରଗତ ମୂର୍ତ୍ତିରୂପ । ନିତ୍ୟ ସୁଷମାମୟୀ, ଅମ୍ଳାନଯୌବନା, 'ବିଶ୍ୱର ପରମ ସ୍ୱପ୍ନ' ସେ ମୋହିନୀର ସବିଶେଷ ପରିଚୟ 'ଅଭେଦ୍ୟା ରୂପସୀ'; ସକଳ ସଂଭୋଗର ସ୍ପର୍ଶାତୀତ ରାଜ୍ୟରେ ତାର ବିଦେହ ସ୍ଥିତି । କବି ଏହିପରି 'ଉର୍ବଶୀ' ଓ 'ରତି' ରୂପରେ ମାନବର ସୌଂଦର୍ଯ୍ୟ ତୃଷ୍ଣା ଓ ଅମୃତ ପ୍ରଣୟ ଅଭିଳାଷର ସଂଧାନ କରିବା ଭିତରେ ଅମର୍ତ୍ତ୍ୟଲୋକରେ କଳ୍ପନା-ପ୍ରବେଶ କରିଛଂନ୍ତି ।

ପ୍ରଥମ ପ୍ରଣୟ କୈଶୋର ସ୍ୱପ୍ନର, ପ୍ରଥମ ତାରୁଣ୍ୟଜାତ ଭାବବିଳାସର । ପ୍ରିୟା ସେଠାରେ କେବଳ ମାନସୀ । ସେ କାମନା ଅବଶ୍ୟ ମାଟିର ପୃଥିବୀକୁ ଛୁଇଁବାର ଅବସର ଲାଭ କରିଛି ('ଇରାନୀ କଶୋରୀ') । ମାତ୍ର ସେ ନାରୀ ଅପରିଚିତା, ଅସଂପର୍କୀୟା' ତଥାପି କବି ତାର ମାନସ-ପୂଜାରୀ । (୧୩) କବିଂକ ସୌଂଦର୍ଯ୍ୟ ସଂଭୋଗ କଂରୁ କ୍ରମଶଃ ସ୍ତରଗତ ମର୍ଜନା ଲାଭ କରିଛି । ରୂପାସକ୍ତ, ଦେହଭୋଗ ଓ ଦେହୋତ୍ତରର ଆକର୍ଷଣ ମାର୍ଗରେ ତାର ଗତି । 'ଇରାନୀ କଶୋରୀ'ରେ ନିତାଂତ ରୂପଲୁବ୍ଧ କବିଦୃଷ୍ଟି 'ଧୂପ'ରେ ଦେହାସକ୍ତିର 'ମୋ ପ୍ରିୟା ସମ ନାହିଁ ସୁଂଦରୀ'-ର

---

(୧୦) ରବୀଂଦ୍ରନାଥ—ସଂଚୟିତା (ଚିତ୍ରା) —ପୃ. ୨୦୪

(୧୧) 'ପ୍ରେମଶଶ୍ୟ' (ଆତ୍ମାର ସୌଂଦର୍ଯ୍ୟ)—ମାନସିଂହ ଗ୍ରଂଥାବଳୀ (୧)—ପୃ. ୧୯୧

(୧୨) "ଆଦ୍ୟ ମୁଁ ଅଂତ ମୁଁ ବିଶ୍ୱର ସ୍ଥିତି ଗୋ
ନିୟମ ମୁଁ ସୃଷ୍ଟିର ଜୀବନର ଗତି ଗୋ
କୋଟି କୋଟି ନିତ୍ୟକ ଭାବନା / ଅଶ୍ରୁତ ସାଧନା / ଆତ୍ମାର ପ୍ରୀତି ଗୋ ସେହନର
କବିତା ।" ମାନସିଂହ ଗ୍ରଂଥାବଳୀ ( ମ ଭାଗ) ପୃ. ୧୪

(୧୩) "ପୂଜାରୀ ମାଗେନାହିଁ ଦେବତା ପରିଚୟ
କେବଳ ଆରାଧନେ ତା ସୁଖ ସଂଚୟ ।"
(ଇରାନୀ କଶୋରୀ—ହେମପୁଷ୍ପ) ମାନସିଂହ ଗ୍ରଂଥାବଳୀ (୧ମ)—ପୃ. ୧୩୫

Digitized by PPRACHIN, SOA

ମୁଗ୍‌ଧଗାନ ଛଳରେ କାବ୍ୟନାୟିକାର ପ୍ରେମ-ସ୍ନିଗ୍‌ଧ ରୂପଶ୍ରୀକୁ ଶଙ୍ଖଘଣ୍ଟି କରିଛି । ଏଥିରେ ଦେହ ସୌନ୍ଦର୍ଯ୍ୟସହ ନାରୀସତ୍ତାର ପ୍ରୀତି-ଉଜ୍ଜ୍ୱଳ ସୁଷମାମାଧୁରୀ ଚିତ୍ରିତ ମଧ୍ୟ ମିଶିରହିଛି । 'ହେମଶସ୍ୟ'ରେ ନାରୀର ରୂପସମ୍ମୋହନ ଅଂଚଳରେ କବି ମନରେ ଲୁଚିପାରିବ ସୌନ୍ଦର୍ଯ୍ୟର ଜଳ୍ପନା ଜାଗିଛି ।

କବିଙ୍କ ପରିଣତ ବୟସର ପରିପକ୍ୱ ଚେତନା ନାରୀର ଦୁଇରୂପର ମହନୀୟ ପରିଚୟକୁ ଉପଲବ୍‌ଧି କରିଛି । ଗୋଟିଏ ଶାଶ୍ୱତ ପ୍ରେମିକାର ମୁଗ୍‌ଧ ପ୍ରୀତିଶୀଳା ମାଧୁର୍ଯ୍ୟମୟୀ ରୂପ, ଅପରଟି ମହାଜନନୀ ରୂପର ଐଶ୍ୱର୍ଯ୍ୟମୟୀ ଭୂମା-ଆବିର୍ଭାବ । ଚିରଂତନ ସୃଜନ ପ୍ରେରଣାର ବ୍ୟକ୍ତ ଲୀଳା-ରୂପ । କବି ଯୌବନ କେବଳ ନାରୀର ସୌନ୍ଦର୍ଯ୍ୟ ବଂଦନା କରିନାହାନ୍ତି; ସମଗ୍ର ଜୀବନଧରି ନାରୀତ୍ୱର ପୂଜାରତି ବି ସଜାଇଛି । ଭଗ୍ନୀ, ପ୍ରିୟା, ପତ୍ନୀ କନ୍ୟା ଓ ମାତୃ-ପରିଚୟରେ ନାରୀର ଭିନ୍ନ ଭିନ୍ନ ରୂପାବସ୍ଥାରେ କବିଚେତନା କେଉଁଠି ଅସଂଗତି ଦେଖିନାହାନ୍ତି । ବୈକୁଂଠନାଥଂକ ତାରୁଣ୍ୟପୂର୍ଣ୍ଣ କଟାକ୍ଷର ଶରବ୍ୟ 'ଧୂଳିସନ୍ତାନବତୀ'ର ନବମାତୃତ୍ୱ ପ୍ରତି କବି ମାନସିଂହଙ୍କର ବରଂ ସଶ୍ରଦ୍ଧ ପ୍ରଣତାଂଜଳି ରହିଛି । ନାରୀର କେବ ରୂପଗତ ସୌନ୍ଦର୍ଯ୍ୟ ନୁହେଁ, କେବଳ ପ୍ରଣୟ ଛଳଛଳ ଲାବଣ୍ୟଶ୍ରୀ ନୁହେଁ, ତାର ଚେତନା ଲୋକର ଯେଉଁ ଜ୍ୟୋତ୍ସ୍ନୋଜ୍ଜ୍ୱଳ ଶୋଭାମାଧୁରୀ ଝର ସୃଷ୍ଟି ଚିତ୍ତକୁ ମୁଗ୍‌ଧ ପ୍ରଶାଂତ କରେ, କବିଙ୍କ ସ୍ୱରରେ ତାହାର ସ୍ତୁତିଗାନ । ନାରୀସତ୍ତାରେ ଅକ୍ଷୟ ପ୍ରେମସୁଧାର ଚିରଂତନ ଉତ୍ସଟିକୁ ସେ ସନ୍ଧାନ କରିଛଂତି ଯାହା ଭୋଗକଳୁଷିତା ଭୋଗବତୀ (ପାତାଳଗଂଗା) ଧରଣୀବାହୀ ଭାଗୀରଥୀ ଓ ସ୍ୱର୍ଗର ମଂଦାକିନୀରୂପେ କବିଚିତ୍ତକୁ ଜୀବନର ଅନୁଭୂତି ସମୃଦ୍ଧ ମାର୍ଗରେ ପୁଷ୍ଟ କରିଛି । (୧୪)

ପ୍ରେମାନୁଭବ—"ଗଭୀର ସୁଖଦୁଃଖ ମଧ୍ୟ ଦେଇ, ନବନବ ଅନୁଭୂତି ମଧ୍ୟଦେଇ, ମାନବାତ୍ମାର ଯେଉଁ ଜନ୍ମାନ୍ତର ହୁଏ, ତାହା ହିଁ ପ୍ରେମ ।"(୧୫)

ଜୀବନର ଶକ୍ତି ବିଚ୍ୟୁତି, ଅସଂପୂର୍ଣ୍ଣତା ଓ ଅବସାଦଗ୍ରସ୍ତ ଏ ଜୀବନର ସୁଖ ଦୁଃଖମୟ ପ୍ରକାଶ ଭିତରେ ସୁଖାନୁଭବର ପ୍ରତ୍ୟାଶାରେ ହିଁ ପ୍ରେମ ଏତେ ମଧୁର । ପ୍ରେମ ଜୀବନର ଦୁଃଖତାପକୁ ଗ୍ରହଣ କରିନେଇ ତାକୁ ସୁଂଦର ମଧୁର କରିବାର ଅଲୌକିକ ସମ୍ମୋହନ ଭରିଦିଏ । ତାହା ହିଁ ପ୍ରେମର ଦୁର୍ଲଭ ମହିମା ଏବଂ ପ୍ରେମ ମର୍ତ୍ତ୍ୟଲୋକୀୟ ହୋଇ ମଧ୍ୟ ଏଇଥିପାଇଁ ଅମର୍ତ୍ତ୍ୟ ସମ୍ପଦ । ଏଇ ପ୍ରେମର ଗୁଣଗାନ କରି ରବୀଂଦ୍ରନାଥ ଲେଖିଥିଲେ, "ଯାକେ ଆମରା ଭାଲୋବାସି, ତାର ମଧ୍ୟେ ଅନନ୍ତକେ ଆମରା ନିବିଡ଼ କରେ ଉପଲବ୍‌ଧି କରି । ସେଇ ସତ୍ୟ ଉପଲବ୍‌ଧିର ଲକ୍ଷଣ ହଚ୍ଛେ, ପାଓୟା ସତ୍ତେ ନାପାଓୟାଟିକେ ଅନୁଭବ କରା ।" (୧୬)

ମାନସିଂହଙ୍କ ପ୍ରଣୟାଭିସାର ରୂପରୁ ଅରୂପକୁ, ଇଂଦ୍ରିୟଗ୍ରାହ୍ୟରୁ ଅତୀନ୍ଦ୍ରିୟତାକୁ । ପାର୍ଥିବ ପ୍ରେମର ଅପାର୍ଥିବ ଉଦ୍‌ଗତି ମାନସିଂହଙ୍କ ପ୍ରେମରୂପକୁ କୋଷମୁକ୍ତ ନବଜାତ ପ୍ରଜାପତି କରି ନିର୍ମଳ ସୁଂଦର

(୧୪) "ଆପଣ ନାରୀଠାରୁ ହିଁ ପ୍ରେମ ସାଧନା ଆରମ୍ଭ କରିଛନ୍ତି । ଭଲପାଇଛନ୍ତି ରୂପବତୀ ଓ ରସବତୀ ନାରୀର ସାକାର ରୂପ ଓ ନିରାକାର ରସ ମାଧୁର୍ଯ୍ୟକୁ । ସେଇ ନାରୀ ହିଁ ଆପଣଙ୍କ ପ୍ରେମକୁ ମୁକ୍ତି ଦେଇଛି, ଦେଇଛି ମଧ୍ୟ ଗତି ଓ ଶକ୍ତି ।"

ମହାପାତ୍ର ନୀଳମଣି ସାହୁ—'ମାନସିଂହ ପରିକ୍ରମା' —ପୃ. ୧୮୭

(୧୫) ମାୟାଧର ମାନସିଂହ (ଉଦ୍ଧୃତ)—ମାନସିଂହ ସୃଷ୍ଟି ସମୀକ୍ଷା—ପୃ. ୫୭

(୧୬) ରବୀଂଦ୍ରନାଥ 'ପଶ୍ଚିମ ଯାତ୍ରୀର ଡାଏରୀ' (ଉଦ୍ଧୃତ—କବିମାନସୀ/ ଜଗଦୀଶ ଭଟ୍ଟାଚାର୍ଯ୍ୟ) ପୃ. ୩୬୫

Digitized by PPRACHIN, SOA

କରିଛି । ନାରୀର ବ୍ୟକ୍ତିସତ୍ତାଠାରୁ ନୈର୍ବ୍ୟକ୍ତିକ ନାରୀତ୍ୱ ପଥରେ କବିଙ୍କ ପ୍ରେମର ଯାତ୍ରାଭିସାର । ଏଇଭଳି ପ୍ରଣୟୋନ୍ମୁଖତା ରହସ୍ୟ ସଂପର୍କରେ କବି ବୋଦଲେୟାର ଥରେ ପ୍ରଣୟିନୀ More-Marie ଙ୍କୁ ଉଦ୍ଦେଶ୍ୟକରି ଲେଖିଥିଲେ, "Through you Marie, I shall be strong and great. Like Petrach, I shall imortalise my Laura. Be my guardian angel, my muse and my Madona and lead me into the path of beauty.(୧୭) କବିଙ୍କ ମନର ଏ ପ୍ରେମ ଆକାଂକ୍ଷା ଅନେକ ଭାବେ ମିଷ୍ଟିକର ଈଶ୍ୱର ଅଭିଳାଷ ଅନୁରୂପ । କବିଙ୍କ ପ୍ରେମ ଅବଶ୍ୟ ଏକ-ରୂପ-ନିଷ୍ଠ ନଥିଲା; ମାତ୍ର ବହୁ-ରୂପ ବିଳାସ ମଧ୍ୟ ତାର ପ୍ରାଣଧର୍ମ ନୁହେ । ବାସନା-ଦଗ୍ଧ ପ୍ରେମକୁ ପରିପୂର୍ଣ୍ଣ ଆତ୍ମଦାନ ମାର୍ଗରେ ନିର୍ମଳ ଓ ଊର୍ଦ୍ଧ୍ୱାଭିସାରୀ କରିବା, ପୁଣି ସେଇ ପ୍ରେମର ମହାନ୍ ଚୈତନ୍ୟ ଉପଲବ୍ଧି କରି ତାହା ସ୍ରଷ୍ଟାଙ୍କ ଶ୍ରେଷ୍ଠଦାନ ବୋଲି ସ୍ୱୀକାରକରିବା ମାନସିଂହଙ୍କ ଭାବସାଧନାର ଏକ ବୈଶିଷ୍ଟ୍ୟ ପ୍ରକାଶ । ମାନସିଂହଙ୍କ ପ୍ରୀତିମୁଗ୍ଧ ପ୍ରାଣ ନାରୀର ରୂପକୁ, ଦେହକୁ, ମନକୁ ଓ ଆତ୍ମାକୁ ପରିପୂର୍ଣ୍ଣ ଶ୍ରଦ୍ଧାଂଜଳି ବାଢ଼ିଛି । ଦେହକୁ ଅଶ୍ରଦ୍ଧା ନକରି, ରୂପଚେତନାକୁ ଆଶ୍ରୟ ନକରି, ପ୍ରେମ ଓ ସୌନ୍ଦର୍ଯ୍ୟର ପୂର୍ଣ୍ଣାଂଗ ସାଧନା ସମ୍ଭବ ହୁଏନାହିଁ । ଦେହର ଏ ଆଦ୍ୟ ଭୂମିକାକୁ ଯଥାଯଥ ସ୍ୱୀକୃତି ନଦେବା କବିଙ୍କର ସତ୍ୟାନୁସଂଧାନର ଅପଳାପ ହୋଇଥାନ୍ତା । ବୈଷ୍ଣବ ପ୍ରୀତିରେ ମଧ୍ୟ ଏଇ ରୂପମାର୍ଗରେ ଅରୂପ ପ୍ରେମସାଧନାର ନିଦର୍ଶନ ରହିଛି । (୧୮) ତଥାପି ସେ ଦେହର ବଂଧନକୁ, ରୂପର ସୀମାକୁ ଅତିକ୍ରମ କରିବାରେ କବିଙ୍କ ପ୍ରେମ ନିତ୍ୟ ସଚେତ ଓ ଯତ୍ନଶୀଳ । କବିଙ୍କ ନିଜସ୍ୱ ପ୍ରତିପାଦନରେ, "ପ୍ରେମର ଭିତ୍ତି ହୋଇପାରେ ଦେହ; ମାତ୍ର ଏହାର ପରିସୀମା ଦେହାତୀତ । ଏହାର ପ୍ରକୃତି ସ୍ଥୂଳ, ମାତ୍ର ପ୍ରତିକ୍ରିୟା ସୂକ୍ଷ୍ମ । ଏହାର ଅନୁଭୂତି ବ୍ୟକ୍ତିଗତ, ମାତ୍ର ଅଭିବ୍ୟକ୍ତି ନିରପେକ୍ଷ ।" (୧୯)

ମହାନଦୀରେ ଜ୍ୟୋତ୍ସ୍ନା-ଯାମିନୀରେ କବିଙ୍କର ସୌନ୍ଦର୍ଯ୍ୟରୂପୀ ଶାଶ୍ୱତ ସହ ସାକ୍ଷାତକାର ହେବାପରି ନାରୀପ୍ରେମର ଅନବଦ୍ୟମୟ ମୁହୂର୍ତ୍ତରେ ତାଙ୍କ ଚେତନାର ଶାଶ୍ୱତ-ନିଷ୍କ୍ରମଣ ଅନୁରୂପ କାବ୍ୟସ୍ୱୀକୃତି ଲାଭକରିଛି ।

"କ୍ଷୁଦ୍ରଜୀବନ ମହାଜୀବନରେ ଧୀରେ ଧୀରେ ଧୀରେ ମିଶେ
ଭାସିଯାଏ ଆମ ମିଳନମାଧୁରୀ ସୃଷ୍ଟିର ଦଶଦିଶେ ।
ସ୍ଥୂଳ ଧରଣୀର ଜଡ଼ ଅନୁଭବ ଦେହ ମନୁ ଧୀରେ ଛୁଟେ
ହୃଦୟ କଳରୁ ସୌରଭ ସମ ମହିମ୍ନ ସ୍ତବ ଫୁଟେ ।"(୨୦)

ପୁଣି ଶାସ୍ତ୍ର ନୁହେ, ଦର୍ଶନ ନୁହେ. ନାରୀର ପ୍ରେମ ହିଁ ତାଙ୍କୁ ଅମରତ୍ୱରେ ଆତ୍ମାର ନବଜନ୍ମ ପ୍ରତି ବିଶ୍ୱାସୀ କରାଇଛି । 'ଧୂପବିତରଣ', 'ବିରହୀଗାଥା' ପ୍ରଭୃତିରେ ପ୍ରେମର କାଳାତୀତତା ଓ କବି-ଆତ୍ମାର ପ୍ରଣୟ ପଥରେ ନିତ୍ୟ ଅଭିସାରର ସଙ୍ଗୀତ ବିଧୃତ । 'ପ୍ରେମ ଓ ସିଦ୍ଧି'ରେ କବି "ଧରଣୀ ସେଦିନ ମତେ ଯା ଦେବାର ଦେଲା"—ର ତୃପ୍ତିରେ ନାରୀ ପ୍ରାଣର ପୂର୍ଣ୍ଣ ପ୍ରେମାଂଜଳି

(୧୭) ଉଦ୍ଧୃତ—ମନୋରଂଜନ ଦାସ—'ରବୀନ୍ଦ୍ର ପରିଚୟ' ପୃ. ୯୯
(୧୮) "ରୂପ ଲାଗି ଆଖି କାନ୍ଦେ ଗୁଣେ ମନ ଭୋର
ପ୍ରତି ଅଂଗ ଲାଗି କାନ୍ଦେ ପ୍ରତି ଅଂଗ ମୋର ।" (ଜ୍ଞାନଦାସ)
(୧୯) ମାନସିଂହ (ମୁଁ କାହିଁକି ଲେଖେ)—ଡଗର : ୧୪/୧ ସଂଖ୍ୟା.
(୨୦) ମିଳନ-ମାଧୁରୀ (ହେମଶସ୍ୟ)—ମାନସିଂହ ଗ୍ରଂଥାବଳୀ (୧ମ) ପୃ. ୨୧୭

Digitized by PPRACHIN, SOA

ଗ୍ରହଣ କରି ଧନ୍ୟ ହୋଇଥିବାର ଜଣାଇଛନ୍ତି । ଧରାରେ ସବୁକିଛି ବିମିଶ୍ରିତ । ତଥାପି ପ୍ରୀତି ଧରାସାର । ଏକମାତ୍ର ପ୍ରେମ ହିଁ ମର୍ତ୍ତ୍ୟ ସହ ଅନନ୍ତର ସଂଯୋଗ ବିନ୍ଦୁ । ପାର୍ଥିବ ହୃଦୟରେ ଅପାର୍ଥିବ ଅନୁଭବର ପ୍ରଥମ ଉଚ୍ଚାରଣଟି ପ୍ରେମର । ପ୍ରେମର ଆବେଗ ଯେପରି ଅସୀମର ଆକୁଳତାରେ ସୀମାକୁ ତା ଜୀବନର ପ୍ରଥମ ଶକ୍ତି ଧକ୍କାଟି ଦେଇଥାଏ । ଅସୀମର ଉନ୍ମୁକ୍ତ ଦିଗନ୍ତ ପ୍ରତି କ୍ଷୁଦ୍ର ଦୃଷ୍ଟି ବଳୟକୁ ଉଚ୍ଚକିତ କରିଦିଏ । ସେଥିପାଇଁ ପ୍ରେମ ବ୍ୟକ୍ତି ହୃଦୟକୁ ପୃଥିବୀର ମହତ୍ତମ ଦାନ, ଶ୍ରେଷ୍ଠ ଉପହାର । ସକଳ ପାର୍ଥିବପ୍ରାପ୍ତି ଭିତରେ ଏ ପ୍ରେମ ହିଁ ପରମପ୍ରାପ୍ତି । ପ୍ରଣୟୀମାନଙ୍କୁ ଦେଖି କହୁନାହାନ୍ତି; ଦେବାଳୟ ଜ୍ଞାନ କରିଛନ୍ତି । ନାରୀର ହୃଦ-ସିଂହାସନରେ ପ୍ରତିଷ୍ଠିତ ହୋଇ ପ୍ରୀତିଦେବତାର ମହିମା ବଢୁଛନ୍ତି । ନାରୀଙ୍କୁ କେନ୍ଦ୍ରକରି ପ୍ରଣୟର ଜଗତ ବିସ୍ତାରିତ । ( )

ମାନସିଂହଙ୍କ ପ୍ରେମଚିନ୍ତା ବୈଷ୍ଣବ ପରମ୍ପରା ପୁଷ୍ଟ । ପୁଣି ଇଂରାଜୀ ରୋମାଣ୍ଟିକ ଚେତନା ଓ ରବୀନ୍ଦ୍ର ପ୍ରେମାଦର୍ଶ ଦ୍ୱାରା ବହୁଭାବେ ପ୍ରଭାବିତ । ତଥାପି କବିମାନସରେ ତାର ପୁନର୍ଜନ୍ମକୁ ଅସ୍ୱୀକାର କରିହୁଏନାହିଁ । "ଏଇ କେତେ ମୁହୂର୍ତ୍ତର ଗଭୀର ପ୍ରଣୟ/ନିଖିଳ ଜୀବନେ ବ୍ୟାପି କରୁ ମଧୁମୟ"ର ଅଭିଳାଷ ଭିତରେ ଯେ ପ୍ରେମର ନବଜନ୍ମ । ଅନ୍ତମଲ୍ୟ, ରବୀନ୍ଦ୍ରନାଥ, ଶେଲିଙ୍କ ପରି ମାନସିଂହଙ୍କ ପ୍ରଣୟର ଏ ଅନନ୍ତ ଅଭିସାର କଳ୍ପନାର ଲୁହେ । ଏ ଅଭିସାର କିଛି ସମସାମୟିକ ସବୁଜ ପ୍ରଣୟ-କାବ୍ୟ ଚେତନାର ପୃଥିବୀ ସହ ନିଃସମ୍ପର୍କମୂଳକ ଆକାଶୀ ଅଭିସାର ନୁହେ । ପୁଣି ସବୁଜ ସ୍ୱରର ସୁଦୂର ଓ ଅପରିଚୟର ପ୍ରକ୍ଷେପନ ମାନସିଂହ କାବ୍ୟଚେତନାକୁ ଦିଗ୍‌ଭ୍ରଷ୍ଟ କରିପାରିନାହିଁ । ପରିଚିତ ଓ ନିକଟ ମହଲରୁ ହିଁ ତାଙ୍କ ଜୀବନର ଅନୁଭବ ସଂଗ୍ରହ ଏବଂ ଅପରିଚୟର କୌତୂହଳମୟ ବିସ୍ମୟ-ଉଦ୍‌ବୋଧନ ।

ପ୍ରେମ ଓ ସୌନ୍ଦର୍ଯ୍ୟର ଶାଶ୍ୱତ ଅଭିଳାଷ ସହ କବିଚେତନାର ପରୋକ୍ଷ ଆଧ୍ୟାତ୍ମିକ ଜିଜ୍ଞାସାଟି ମଧ୍ୟ କାବ୍ୟସ୍ୱରରେ ପ୍ରକଟିତ । 'ସେଦିନର କବିତା' ଠାରୁ 'ହେମଶସ୍ୟ' ପର୍ଯ୍ୟନ୍ତ ପ୍ରାରମ୍ଭିକ ରଚନା ସବରେ 'ଅପରିଚିତ ଶାଶ୍ୱତ'ର ରହସ୍ୟ ବିସ୍ମୟ ଜିଜ୍ଞାସା ଅଭାସ ଇଂଗିତରେ ବିଦ୍ୟମାନ, ଯାହା ରହସ୍ୟବାଦୀ ଉଦ୍‌ବୋଧନର ଆଦ୍ୟ ସଂକେତ ପ୍ରଦାନ କରେ ।(୨୨)

'ଉଦାସୀପାନ୍ଥ'ରେ (୨୩) ପ୍ରେମ ସମ୍ପର୍କର ଓ ବିଶ୍ୱମୁକ୍ତି ଅଭିଳାଷର ପ୍ରଥମ ସ୍ପଷ୍ଟ ରୂପସଂକେତ ରହିଛି । 'ବିଶ୍ୱଦେବାଳୟ' କବିଙ୍କ ଶାଶ୍ୱତ ଲାଭ ଆକାଂକ୍ଷାର ସ୍ୱପ୍ନଗ୍ରହଣ, ପରବର୍ତ୍ତୀ ମେଟାଫିଜିକାଲ ଓ ଅଧ୍ୟାତ୍ମ ଭାବଚେତନାର ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଅନୁଧ୍ୟାନ ଦିଗରେ ଏକ ମୂଲ୍ୟବାନ ରଚନା । ଏହାର ଅନ୍ତର୍ଗତ ସ୍ଥୂଳଧାରଣାଟି 'ନିତ୍ୟ', 'ସିନ୍ଧୁ ଓ ବିନ୍ଦୁ' ପର୍ଯ୍ୟାୟରେ ଗଭୀର ଭାବସମ୍ପନ୍ନ-ଅଭିବ୍ୟକ୍ତି ଲାଭକରିଛି । ଅରୂପ ଦେବତାକୁ ଅବଲମ୍ବନ କରି କବିମନର ଆଦ୍ୟ ରୋମାଣ୍ଟିକ ସ୍ୱପ୍ନଟି, ଅଧ୍ୟାତ୍ମ ରୂପାନ୍ତରର ସ୍ପଷ୍ଟ ଚିହ୍ନ ଲାଭକରିଛି ନିମ୍ନ ପଦଟିରେ—

---

(୨୧) "ଭ୍ରମର ଚୌଦିଗେ ଘେରି, ଊର୍ଦ୍ଧ୍ୱେ, ତଳେ, ପାଶେ
କେନ୍ଦ୍ର କରି ପ୍ରେମ ତବ ଅଲକ୍ଷିତେ ଭାସେ ।"
ମନୋରଥ— ଗ୍ରନ୍ଥାବଳୀ ୧ମ—ପୃ. ୨୨୪

(୨୨) "Mysticism is not first of an act of union, but predominantly the life lived in the knowledge of this wholly other..."
Rudolf Otto—'Mysticism : East and West'—P. 159

(୨୩) ଗ୍ରନ୍ଥାବଳୀ ୧ମ—ପୃ. ୧୬୧

Digitized by PPRACHIN, SOA

"ଚରଣ ତଳୁ ଅଂତରୀକ୍ଷ ଭେଦ
ମହାବ୍ୟୋମ ସ୍ପର୍ଶେ ଯେ ଦେଉଳ
ଏଇ ଯେ ଘାସେ ପୂଜାର ବେଦ ତାରୁ
ନକ୍ଷତ୍ରରେ ଅଲୋକିତ ତା ଚୂଳ ।" (୧୪)

ମାନସିଂହ-କାବ୍ୟଚେତନା ରୋମାଣ୍ଟିକ ସୁଦୂରସକ୍ତିଠାରୁ ଯେ ଅତଳାଗତକ ଲୋକ ପ୍ରତି ସଂଚରଣଶୀଳ—'ବିଶ୍ୱଦେବାଳୟ' ଠାରୁ 'ମହାପଥର ଯାତ୍ରୀ' (ସିଂଧୁ ଓ ବିନ୍ଦୁ) ତାର ଧମାଭିବ୍ୟକ୍ତି । ଅରୂପକୁ ରୂପମୟ କରି, ଇଂଦ୍ରିୟାତୀତକୁ ଇଂଦ୍ରିୟୋପଲବ୍ଧି ଭିତରେ ଲାଭ କରିବାର କାମନାରେ ରହସ୍ୟବାଦୀ ଅଭିପ୍ରାୟଟି ଗଭୀରଭାବେ ମିଶିଯାଇଛି । ଧ୍ରୁବତାରା (ପୃ. ୧୮୦), ଉପହସିତ (ପୃ. ୧୭୧) ଗୀତାର୍ପଣ (ପୃ. ୧୬୪), ଦୁଃଖମୟ ସୃଷ୍ଟି (୧୯୭) * ପ୍ରଭୃତିରେ ଏହି ଭାବଧାରା ପରିପୁଷ୍ଟ । 'ହେମଶସ୍ୟ'ରେ ମଧ୍ୟ ଏହି ଭାବଚେତନା ସମ୍ୟକ୍ ପ୍ରକାଶିତ ।

ରୂପପର ପ୍ରଣୟ ରୂପୋତ୍ତର ହେବା ମାର୍ଗରେ କବିଚେତନାରେ ଅରୂପ ଈଶ୍ୱରଙ୍କୁ କେଂଦ୍ର କରି ବହୁ ଭାବାନୁଷଙ୍ଗ ଜାତ ହୋଇଛି । 'ଦେହ ଓ ସ୍ନେହ', 'ଭକ୍ତି', 'ପ୍ରାର୍ଥନା', 'ଜିଜ୍ଞାସା', 'ବିରାଟସ୍ରଷ୍ଟା', 'ସନ୍ଦେହ', 'ଦୁଃଖମୟ ସୃଷ୍ଟି', 'ସୃଷ୍ଟି ଓ ଧ୍ୱଂସ', 'ବିଶୁଦ୍ଧ ସନ୍ଦେହ', 'ମୁକ୍ତି ନାହିଁ ମାଗେ' ପ୍ରଭୃତି କବିତାମାନ ମାନବାତ୍ମାର ନିତ୍ୟସନ୍ଦେହ ଓ ଶାଶ୍ୱତ ଆକର୍ଷଣରେ ବାତ୍ୟାକୁଳିତ ଚେତନାର ବାର୍ତ୍ତା ଭିତରେ କବିଙ୍କ ଉତ୍ତର ଜୀବନରେ ଚେତନାର ଅଧ୍ୟାତ୍ମ ଜାଗରଣର ବହୁ ସମ୍ଭାବନାମୟ ସୂଚନା ନିହିତ ।

ଏହି ପର୍ଯ୍ୟାୟରେ ସ୍ରଷ୍ଟାପ୍ରତି ସଂଶୟର ସଜ୍ଞାନ ଘୋଷଣା, "ପ୍ରାୟ ନାସ୍ତିକ ମୁଁ ।"(୧୫) ( 'ପ୍ରାୟ' ଶବ୍ଦ ପ୍ରୟୋଗର ଅସତର୍କତା ବିସ୍ମରଣୀୟ ) ବାକ୍ୟ ସରଳଭାବରେ ନିର୍ଦ୍ୱଂଦ୍ୱ ସ୍ୱୀକୃତ ଅଜଣାଦେବତା ବୁଦ୍ଧି ନିର୍ଭର ବୟସ୍କ ମନର ତର୍କଣାରେ ସଂଶୟାତ୍ମକ ହୋଇପଡ଼ିଛଂତି । ତଥାପି ଲକ୍ଷଣୀୟ, ସୃଷ୍ଟିର ବିରାଟତ୍ୱ ଓ କ୍ରିୟାଶୀଳତା ମୂଳରେ ଏକ ଅଦୃଶ୍ୟ ଇଂଗିତର ସୁଦୃଢ଼ ନିର୍ଦ୍ଦେଶକୁ କବି ଆବିଷ୍କାର କରଂତି । ଏ ଆବିଷ୍କାରଟି ମଧ୍ୟ ସେହି ତାର୍କିକ ମନର; ସବୁ ସଂଶୟର ସମାଧାନହୀନତା ସତ୍ତ୍ୱେ ବିଶ୍ୱନିୟମ ବା ଗତି ସଂକେତରେ ଯେଉଁଠି ସେ ଦେଖେ, "ସନ୍ଧାନ ମିଳଇ ଏକ ବିରାଟ ସ୍ରଷ୍ଟାର / ପ୍ରବୁଧ ଚିତ୍ତବୃତ୍ତି କରେ ମହିମା ଯାହାର ।"(୧୬)

କବି ଏ ପ୍ରାଥମିକ ସଂଶୟର କାରଣ ମୂଳରେ ଏଇ ସୃଷ୍ଟି ନିହିତ ଦୁଃଖକୁ ଦେଖିଛଂତି । ଅଥଚ ଏଇ ସୃଷ୍ଟି, ମାନବାତ୍ମା ହିଁ ଈଶ୍ୱରଂକ ନିକଟକୁ ବାରମ୍ବାର ଫେରାଇ ଦେଉଛି । ସବୁ ଦୁର୍ବିପାକ ଓ କଷ୍ଟ ସତ୍ତ୍ୱେ ମାନବ ହୃଦୟରେ ପ୍ରେମ କରୁଣା ଓ ବିଶ୍ୱାସର ଧାରା ସଂଚରିହୁଛି ଏବଂ ସ୍ରଷ୍ଟାକୁ ଏହି ସଂଚିବା ପାଇଁ କୃତଜ୍ଞତା ଜଣାଉଛି—ମାନାବାତ୍ମାର ଏଇ ପରମାଶ୍ଚର୍ଯ୍ୟ ଶକ୍ତି କବିଙ୍କ ନାସ୍ତିକ ମାନସିକତାକୁ ପୁଣି ଈଶ୍ୱରଂକ ପ୍ରତି ବିଶ୍ୱାସର ପଥରେ ଟାଣିନେଉଛି ।

କବି କଂଭୁ ବୈରାଗୀର ଗୈରିକ ଅଭିଳାଷୀ ନୁହଂତି, ବରଂ ସୁଖଦୁଃଖମୟ ସେଇ ମର୍ତ୍ତ୍ୟ ଜୀବନର ଅନୁରାଗୀ । ନିଖିଳ ସହ ଚିତ୍ତ ମିଳାଇ ଧରାର ଦୁଃଖ ଭୋଗ କରିବାରେ ଆପଣାର ବିଶିଷ୍ଟତା

(୧୪) 'ବିଶ୍ୱଦେବାଳୟ (ହେମପୁଷ୍ପ)—ମାନସିଂହ ଗ୍ରଂଥାବଳୀ (୧ମ), ପୃ. ୧୯୭
* ମାନସିଂହ ଗ୍ରଂଥାବଳୀ ୧ମ ଭାଗ
(୧୫) 'ଭକ୍ତିପ୍ରେରଣା—ମାନସିଂହ ଗ୍ରଂଥାବଳୀ (୧ମ), ପୃ. ୧୧୫
(୧୬) ମାନସିଂହ ଗ୍ରଂଥାବଳୀ ( ମ ଭାଗ) ପୃ. ୧୯୭.

Digitized by PPRACHIN, SOA

ରହିଛଂନ୍ତି । ବିଶ୍ୱାଳିଂଗନର କାମନା ଭିତରେ ତାଂକର ବୈଷ୍ଣବ ସତ୍ତାଟି ସ୍ନେହସିକ୍ତ ହୋଇପଡ଼ିଛି । ଦୁଃଖଭୋଗକୁ କବି ପ୍ରାଣରେ ଧାରଣ କରି ଜୀବନକୁ ମହାର୍ଘ ଓ ପୃଥିବୀକୁ ସହନକ୍ଷମ କରିବାକୁ ଚାହିଁଛଂନ୍ତି । 'କୃଶ' ପର୍ଯ୍ୟାୟରେ ଏ ଚେତନାହିଁ ଗଭୀରତର ଭାବଭିତ୍ତି ଲାଭକରିଛି ।(୨୭) 'ସେହନର କବିତା'ଠାରୁ 'ହେମଶସ୍ୟ' ପର୍ଯ୍ୟଂନ୍ତ ଗଢ଼ି ଆସିଥିବା ବ୍ୟକ୍ତିଗତ ରୂପ ଓ ପ୍ରଣୟ ସାଧନାର ଉତ୍ତକୂଳିତ ଯମୁନା-ସ୍ରୋତଟି 'ଅକ୍ଷତ' ଓ 'କୃଶ' ରଚନା କାଳରେ 'ବିଶ୍ୱମାନବତା'ର ପ୍ରସାରିତ ଜାହ୍ନବୀ-ପ୍ରବାହ ସହ ସମ୍ମିଳିତ ହୋଇଯାଇଛି । 'ସିଂଧୁ ଓ ବିଂଦୁ' ସେହି ମହାପ୍ରବାହର ସମୁଦ୍ରମଜ୍ଜନ କାଳୀନ ମହାସଂଗୀତ ।

ଅକ୍ଷତ—'ଅକ୍ଷତ'ର ଭୂମିକାରେ କବି କହିଛଂନ୍ତି, "ମନୁଷ୍ୟର ଚିତ୍ତ ସବୁବେଳେ ଏକ ଅଦୃଶ୍ୟ ଶକ୍ତି ସଂଗେ ନିଜକୁ ସଂପର୍କିତ ରଖି ଏକପ୍ରକାର ମାନସିକ ସୁଖ ଆସ୍ୱାଦନ କରିବାକୁ ଚାହେଁ । × × ଲେଖକ × × ଈଶ୍ୱର ନାମକ ସେହି ଶାଶ୍ୱତ ରହସ୍ୟମୟ ଅଦୃଷ୍ଟ ପୁରୁଷ ନିକଟରେ ତାହାହିଁ କରିବାକୁ ଯାଉଛି ।"

ନିଜକୁ ଉନ୍ମୁକ୍ତ କରିପାରିବା ଭଳି ଏକ ଆତ୍ମୀୟତା, ଅଂତରଂଗତା ପାଖରେ ହିଁ ସୁଖଦୁଃଖର କଥା କୁହାଯାଇଥାଏ । ସେହି ଆତ୍ମୀୟ-ରୂପର ପରିଚୟ ପିତା, ବଂଧୁ, ପ୍ରିୟ ('ଅଭିମାନ'-ଗ୍ରଂଥାବଳୀ ୧ମ, ପୃ. ୨୮୯) । କବିଂକ ଅଂତର ଈଶ୍ୱରଂକୁ ଆକାଂକ୍ଷା କରେ । ମାତ୍ର ବାସ୍ତବତାର ଆଘାତ ତାକୁ ନିରୀଶ୍ୱରବାଦୀ ହେବାକୁ ପ୍ରରୋଚିତ କରେ । ଏ ଅସ୍ୱୀକୃତି ମୂଳରେ କବି ମନସ୍ତତ୍ତ୍ୱର ସମାଧାନ ଲୋଡ଼ଂନ୍ତି, "ଅଭିମାନରେ ସେ ମୋର" (୨୮) ଈଶ୍ୱର ଯଦି ସତରେ ନାହାଂନ୍ତି, ମାନବ ହୃଦୟ ତାଂକୁ ଏତେ ଖୋଜେ କାହିଁକି ? କବିଂକର ଅଭିଯୋଗ, ଈଶ୍ୱର ମଣିଷର ଏକମାତ୍ର ନିଜର ହୋଇ ମଧ୍ୟ ତାକୁ ଭୁଲିଂନ୍ତି ବା ଭୁଲିବାର ଛଳନା କରଂନ୍ତି । ତେଣୁ ଏ ଅଭିମାନ । (୨୯)

ମନସ୍ତତ୍ତ୍ୱର ବିଚାରରେ ଅଭିମାନଟି ଅଧିକାର ପ୍ରସଂଗ ସହ ବିଜଡ଼ିତ—ଏବଂ ଏ ଅଧିକାର ଆତ୍ମୀୟତାର ଦାବୀରେ ପ୍ରତିଷ୍ଠିତ ! ମନର ବିଶ୍ୱାସ ଅବିଶ୍ୱାସକୁ ଅପେକ୍ଷା ନକରି ହୃଦୟ ସେ ସଂପର୍କକୁ ସ୍ୱୀକାର କରିନିଏ, ତେଣୁ ତାର ନୀରବ ଅପେକ୍ଷା । ପାର୍ଥିବ ଜୀବନ ଶୁକ୍ତିପରି ବିବର୍ଣ ମୂଲ୍ୟହୀନ ହୋଇପାରେ, ମାତ୍ର ଈଶ୍ୱରପ୍ରେମରୂପକ ମୁକ୍ତା ତହିଁରେ ସଂଜାତ ହେଲେ ତାହା ମହାର୍ଘ ହୋଇଯାଏ । 'ଧୂପ'ର କବି ମାନସିଂହ ଥରେ କହିଥିଲେ "ମାନବିକ ପ୍ରେମ ଅପେକ୍ଷା ଜୀବନର ମହତ୍ତର ଓ ସୁଂଦରତର ଅନୁଭୂତି ଅଛି ।" (୩୦) ଇଏ ସେହି ମହତ୍ତର, ପ୍ରତ୍ୟାଶାହୀନ ଅପଣ୍ୟ

(୨୭ "ଦୁଃଖ ଦୈନ୍ୟ ନାହିଁ ଆଉ ଆଜ ମୋ ବିଶ୍ୱାସ
ତୁମରି ଲୀଳା ହିଁ ମୋର ମିଳନ ପ୍ରୟାସ ।"

'କୃଶ'—ମାନସିଂହ ଗ୍ରଂଥାବଳୀ—ପୃ. ୪୫୩

(୨୮) ମାନସିଂହ ଗ୍ରଂଥାବଳୀ ୧ମ—ପୃ. ୨୮୯

(୨୯) "ଶୁକ୍ତି କିଂବା ଖୋଲି ମୋର ହୃଦସିଂଧୁ ଜଳେ
ଅପେକ୍ଷି କରୁଣାମୁକ୍ତା ପଡ଼ିବ ଗର୍ଭରେ ।"

ମାନସିଂହ ଗ୍ରଂଥାବଳୀ—୧ମ—ପୃ. ୨୮୯

(୩୦) 'ଧୂପର ଭୂମିକା'

Digitized by PPRACHIN, SOA

ପ୍ରେମ । (୩୧) ଏଇ ଅନୁଭୂତ ହିଁ ଜଣାଇଦଏ "ଜାଣିଲି ମାଣକ, ତୁମେ ଏକ ଓ ଅନେକ । (୩୨) ଆକାଶଠାରୁ ପୃଥିବୀ ପର୍ଯ୍ୟନ୍ତ ସେ ପ୍ରେମ ସ୍ୱରୂପଙ୍କ ବସ୍ତାର । ଜୀବନର ସୁଖ ଦୁଃଖ ତାଙ୍କର ସଙ୍ଗୀତ ସ୍ୱର । ବିଶ୍ୱଜଗତ ଓ ଅନ୍ତର୍ଗତରେ ସେଇ ପରମ ଐକ୍ୟ ସମ୍ବାଦ । (୩୩) ପରିଦୃଶ୍ୟମାନ ପ୍ରକୃତିରେ, ଜନଜୀବନରେ ପୁଣି ଜୀବନ ସଂଗ୍ରାମର ଅନ୍ତର୍ଲିବଧ ସୁଖ-ଦୁଃଖରେ ଏ ପରମଐକ୍ୟ ପ୍ରତି ଅନିବାର୍ଯ୍ୟ ପ୍ରବଣତା ପ୍ରକଟିତ । ବିଶ୍ୱ-ବସ୍ତୁତ ଓ ଅନ୍ତଃସଂଗୁପ୍ତ ଏହି ଐକ୍ୟତତ୍ତ୍ୱଟି ସେହି ପ୍ରେମ ଯାହା କବି ରୂପାନୁଭୂତିରେ ଲଭିକରିଛନ୍ତି ।

ମାନବର ଅନ୍ତରରେ ଏଇ ଯେ ଦେବତା ଲୁକ୍କାୟିତ (କବିଗୌରବ, ପୃ. ୬୧୩) ସେ ଦେବତା ସହ କବିଙ୍କ ସମ୍ପ୍ରୀତି ଯେ ନିତାନ୍ତ ଘନିଷ୍ଠ, ତାର ସ୍ୱୀକାରୋକ୍ତିର କବିତା, 'ହୃଣ ବହନ୍ତି' (ପୃ. ୬୧୩ ଗ୍ରନ୍ଥାବଳୀ ୧ମ) । କବି ହୃଦୟରେ ସେହି ମହାନ୍ ପ୍ରେମ ତାର ଆଲୋକର ଆଭାସ ଓ ଶକ୍ତିର ଇଙ୍ଗିତ ନେଇ ଜାଗ୍ରତ, ଯାହା ବ୍ୟକ୍ତିଗତ ଭାବ ଅନୁଭବ, ସୁଖ-ଦୁଃଖକୁ ଈଶ୍ୱରଙ୍କ ବିରାଟ ବେଦନାବୋଧର ଅଂଶ ବିଶେଷ ବୋଲି ମାନିଛି । ବ୍ୟକ୍ତିସତ୍ତାର ଏଇ ନବୋଦ୍ବୁଦ୍ଧ ପ୍ରେମଶକ୍ତି ଜୀବନବାନ୍ଧବଙ୍କର ବିରାଟ ଦୁଃଖଭାରର କିଞ୍ଚିତ୍ ଯାଚନା କରିଛି—ଯାହା ତାଙ୍କୁ ଅନ୍ତତଃ ପ୍ରିୟ ସାନ୍ନିଧ୍ୟର ନିରବଧି ଅନୁଭବ ଦେଇପାରିବ । କବିଙ୍କର ଏଇ ସାନ୍ନିଧ୍ୟ କାମନା ଓ ପ୍ରେମାସ୍ପଦଙ୍କୁ ଲଘୁଭାର କରିବାକୁ ବ୍ୟାକୁଳତା ।' ସେ ଭାବଦରଦ ଆକୂତି କୌଣସି ଦୂରତମ, ନିଃସମ୍ପର୍କ ଉଦ୍ଦେଶ୍ୟରେ ନୁହେଁ । ମାନସିଂହଙ୍କ ଦରଦୀ କବିଚିତ୍ତ ଜଗତର ସୁଖ-ଦୁଃଖ ପ୍ରତି ନିର୍ବିସକ୍ତ ନୁହେଁ, ଉଦାସୀନ ନୁହେଁ, ବରଂ ପ୍ରବଳ ସମ୍ବେଦନଶୀଳ । ମାତ୍ର ଏ ଦୁଃଖାନୁଭବ ଭିତରେ ବି ଆଉ ଈଶ୍ୱରଙ୍କ ପ୍ରତି ଆକ୍ଷେପ ବା ସଂଶୟାତ୍ମକ ପ୍ରତିକ୍ରିୟା ନାହିଁ । ମନେହୁଏ କବିଙ୍କର ଅଭିଜ୍ଞତା ସମୃଦ୍ଧ ଓ ଅନୁଭୂତି-ନମନୀୟ ପରିଣତ ବୟସର ବୁଦ୍ଧିଟି ସବୁ କିଛିର ଅନ୍ତରାଳରେ ଏକ ମହାନ ଇଚ୍ଛାର ବିରାଟ ସଂକଳ୍ପକୁ କ୍ରିୟା-ତତ୍ପର ଦେଖିଛି । ପୁଣି ଅନୁଭବ କରିଛି ଯେ, ସେ ସଂକଳ୍ପଟି ନିଜେ ସବୁ କରୁଥିଲେ ମଧ୍ୟ, ସବୁ ସଂଘଟଣ ମୂଳରେ ରହିଥିଲେ ମଧ୍ୟ, ସଂଭୂତ ପାଇଁ ଦେହୀ ସତ୍ତାର ଅନିବାର୍ଯ୍ୟ ଆବଶ୍ୟକତା ଲୋଡ଼େ । କବିଙ୍କର ଏହି ବ୍ୟକ୍ତିଗତ ଅନୁଭବ ସକଳ ଅଧ୍ୟାତ୍ମ ସାଧନାର ଉପଲବ୍ଧି-ଲଭ୍ୟ ଓ ସକଳ କଳାତ୍ମକ ସାଧନାର ମାର୍ଗ-ରୂପ । ଅରୂପ ଅତୀନ୍ଦ୍ରିୟକୁ ରୂପମୟ ଇନ୍ଦ୍ରିୟ ଭୋଗ୍ୟ କରି ତା ଭିତରେ ରୂପୋତ୍ତରତା, ଇନ୍ଦ୍ରିୟୋତ୍ତରତାକୁ ବ୍ୟଞ୍ଜିତ କରିତୋଳିବା କଳାସୃଷ୍ଟିର ଏକମାତ୍ର ଶିଳ୍ପ ସାଧନା । ଯଥାର୍ଥ ଅତୀନ୍ଦ୍ରିୟବାଦୀ କବି ତେଣୁ ଏ ଇନ୍ଦ୍ରିୟଗ୍ରାହ୍ୟ ସୃଷ୍ଟିକୁ ବିଶ୍ୱସ୍ରଷ୍ଟାର କେବଳ ଏକ କଳାତ୍ମକ ଅଭିବ୍ୟକ୍ତି ବୋଲି ହିଁ ଜାଣେ । "ତୁମରେ ଚହ୍ଲିଲି ଯାକେ" (୩୪) ସ୍ୱୀକାରୋକ୍ତିଟି ତେଣୁ ଏକ ଅସଚେତନ ବା ନିଛକ କାବ୍ୟିକ ଆବେଗ ପ୍ରବଣତା ବୋଲି ମନେହୁଏନାହିଁ । ଏ ଚକ୍ଷୁ ପ୍ରାଣର, ଅନ୍ତରର ଓ ଆତ୍ମାର, ଯାହା ପରେ ବ୍ୟକ୍ତି ଆଉ ନିଜର କ୍ଷୁଦ୍ର-ସୀମା ଭିତରେ ସବୁ କିଛି ଆବୋରି ପାରେନାହିଁ । ନିଜକୁ ଭିନ୍ନ କରି, ବଡ଼ କରି ଦେଖିପାରେନାହିଁ । ବରଂ ସକଳ ସୃଷ୍ଟିକୁ ବୃହତ୍ତର ବିଶ୍ୱବଳୟର ଭିତରେ ଅବସ୍ଥିତ ଥିବାର ଦେଖେ ।

---

(୩୧) ମାନସିଂହ ଗ୍ରନ୍ଥାବଳୀ—୧ମ ଭାଗ, ପୃ. ୬୮୯-୬୯୦

(୩୨) 'ଏକ ଓ ବହୁ'—ଗ୍ରନ୍ଥାବଳୀ, ୧ମ ଭାଗ ପୃ. ୬୯୦

(୩୩) "ମୂର୍ଦ୍ଧ ହୋଇ ସୃଷ୍ଟି କାବ୍ୟ କରୁ ଅଧ୍ୟୟନ
ସଂଗିଲିଣି ବହୁ ଦୂରେ ତତ୍ତ୍ୱ ବ୍ୟାକରଣ ।" ଗ୍ରନ୍ଥାବଳୀ ୧ମ ଭାଗ, ପୃ. ୬୯୦

(୩୪) 'ହୃଣ ବହନ୍ତି'—ମାନସିଂହ ଗ୍ରନ୍ଥାବଳୀ, ୧ମ ପୃ. ୬୧୩

Digitized by PPRACHIN, SOA

କବି କେଉଁଠି ଚିରନ୍ତନ ସାନ୍ନିଧ୍ୟ-ସୁଖର କାମନା ରଖିଛନ୍ତି । ପ୍ରେମ ସମ୍ପର୍କରେ ଏ ଲୋଭଟି ଚଳେ । ବରଂ ପ୍ରେମ ସମ୍ପର୍କର ସକଳ ମାଧୁର୍ଯ୍ୟ ଏଇ ଲୋଭଟିକୁ କେନ୍ଦ୍ରକରି ଗଢ଼ି ଉଠେ । କବି ସୁଖଭୋଗ ବା ଦୁଃଖରୁ ନିଷ୍କୃତି ଖୋଜୁନାହାନ୍ତି । କେବଳ ଚିରନ୍ତନ ନିକଟ-ସୁଖ ଇଚ୍ଛାର ସମର୍ପଣ ପ୍ରକାଶ କରିଛନ୍ତି । ନରକର ଦୁର୍ଭେଦ୍ୟ ଅନ୍ଧାର ଓ ଦୁର୍ଗମ ପଥରେ ବି ସେହି ଦିବ୍ୟପ୍ରେମ ଯେ ବ୍ୟକ୍ତିକୁ ତ୍ୟାଗ କରିନାହିଁ, ବରଂ ଅଭୟଦାନ କରିଛି, ସେଇ ଆଶ୍ୱାସନାଟିକିକ ନରକକୁ ସହ୍ୟ କରିନେବା ପାଇଁ କବିଙ୍କ ପ୍ରାଣରେ ଶକ୍ତି ଭରିଦେବ ।

ଜୀବନର ଅନୁଭବମାନ କବିଙ୍କୁ ସୁଖଦୁଃଖର ମୂଳରୂପ ନିକଟରେ ପହଞ୍ଚାଇ ଦେଇଥିବାପରି ମନେହୁଏ । 'ପାନ୍ଥଗାଥା'ରେ (ଗ୍ରନ୍ଥାବଳୀ ୧ମ-ପୃ..୬୯୫ କବି ହୃଦୟଙ୍ଗମ କରିଛନ୍ତି, "ଏଥି ସୁଖୀ ହେବାପାଇଁ କେତେ ଅଳ୍ପ ଦ୍ରବ୍ୟ ଲୋଡ଼ା ।" ଅଳ୍ପରେ ତ ସୁଖ ନାହିଁ, ମାତ୍ର ଏ ସୁଖ ବସ୍ତୁନିର୍ଭର । ପ୍ରକୃତ ସୁଖୀ ତାଠୁ ଅଳ୍ପକୁ ବି ଯଥେଷ୍ଟ ମଣିଥାଏ । ପୁଣି ଜଗତରେ ସୁଖନାମରେ ଯାହା କିଛି ଖୋଜାଯାଏ, ସେ ସବୁ ତ ସୁଖର ଆଶ୍ୱାସନା ମାତ୍ର । ବ୍ୟାବହାରିକ ପ୍ରୟୋଜନ ଶେଷରେ ସେମାନଙ୍କ ସୁଖ ଦାନର ସାମର୍ଥ୍ୟ ମଧ୍ୟ ଶେଷ । ଅଥଚ ସ୍ୱୟଂ ସୁଖ ଅନନ୍ତ ଆତ୍ମାର ଚିରନ୍ତନ ଅନ୍ୱେଷଣ ଏବଂ ସକଳ ପ୍ରୟୋଜନ ବୋଧର ସମାପ୍ତିରେ ହିଁ ଉପଲବ୍ଧ । (୩୫)

'ପାନ୍ଥଗାଥା' ଅବଶ୍ୟ କଳାଗତ ସଫଳତା ପାଇପାରିନାହିଁ । ମାତ୍ର କବିଙ୍କର ଆତ୍ମଦର୍ଶନ ଓ ଜୀବନ ଜିଜ୍ଞାସାର ସ୍ପଷ୍ଟ ପରିଚୟ ବହନ କରିଛି । ଲୌକିକ ଧର୍ମଧାରଣା ପ୍ରତି ବିମୁଖତା ଓ ଶାସ୍ତ୍ରବିରୋଧ, କବିଚେତନାରେ ମୁକ୍ତ ଓ ଈଶ୍ୱର' ଏବଂ ଶାଶ୍ୱତ ପ୍ରେମର ସ୍ୱରୂପ, ତା ସହ ପୃଥିବୀ ସହ କବି ପ୍ରାଣର ନିବିଡ଼ ବନ୍ଧନ ସମ୍ପର୍କଟି ମଧ୍ୟ ଏଇ ସୂତ୍ରରେ ଉନ୍ମୋଚିତ । କବିଙ୍କ ଈଶ୍ୱର ତୁଙ୍ଗ ଦେବାଳୟର ପାଷାଣ ବିଗ୍ରହ ନୁହଁନ୍ତି, ଜୀବନ-ବାନ୍ଧବ ! ହୃଦୟର ଈଶ୍ୱର ରୂପେ ଆତ୍ମରାଜ୍ୟରେ ତାଙ୍କର ପରିପୂର୍ଣ୍ଣ ଐଶ୍ୱର୍ଯ୍ୟାଭିଷେକ । ପୃଥିବୀପ୍ରତି ମମତାସିକ୍ତ କବିଚିତ୍ତ; ତଥାପି କବି ଜାଣନ୍ତି ଏ ପୃଥିବୀ ପାନ୍ଥଶାଳା । ତାକୁ ଚିରୁଦିନ ନିଜର ସ୍ୱବାସରୂପେ ପାଇବାର ଇଚ୍ଛା ହିଁ ଲୋଭ । ମାତ୍ର ଦୁଇଦିନ ପାଇଁ ତାର ମଧୁର ଆଶ୍ରୟ ଲଭି, ପୁଣି ତାକୁ 'ମାଟିମୟ' ବୋଲି ଅଶ୍ରଦ୍ଧା କରିବାର ଅକୃତଜ୍ଞତା କବି ସହ୍ୟ କରିପାରନ୍ତି ନାହିଁ । ପୃଥିବୀକୁ ଈଶ୍ୱରଙ୍କର ଜୀବପାଇଁ ସ୍ନେହ ଉପହାରରୂପେ ଗ୍ରହଣ ଓ ଉପଭୋଗ କରିବାରେ ହିଁ ହୃଦୟର ଶ୍ରଦ୍ଧା ନିବେଦିତ ହୁଏ । ସେଇଥିପାଇଁତ ଫୁଲରେ ମହକ, ବୁକୁରେ ପ୍ରୀତି । ଜୀବର କଲ୍ୟାଣପାଇଁ ସେଇ ପରମ ଅନୁକମ୍ପାଟି ବୀଜ, ଶସ୍ୟ, ଅନ୍ନ । ସେଇ ପୁଣି ପ୍ରାଣ ପବନ । ଏ ଅବବୋଧର ଚମତ୍କାରିତା ଭିତରେ ଦାର୍ଶନିକ ମାନସିଂହଙ୍କ ସହ କବିଚିତ୍ତ ଏକାଠି ହୋଇଯାଇଛି । କବିଙ୍କ କହିବା କଥା, ଏ ପୃଥିବୀର ଅମୃତକୁ ଲୋଭ କଲେ ହିଁ ବିଷର ଦୁଃଖ ମିଳେ । କବି ଜୀବନର ଅଭିଜ୍ଞତା ଏତିକି ଶିଖିଛନ୍ତି ଯେ, ଆତିଥେୟତାରେ ଯାହା ପରମ ଉପଭୋଗ୍ୟ, ଲୋଭାକ୍ତିରେ ତାହାହିଁ ଦୁଃଖପ୍ରଦ । ଏହା ଏକ ନୈତିକ ପ୍ରବଚନ ମନେହେଲେ ମଧ୍ୟ ଏଠାରେ ଏହା ଅନୁଭୂତିସିଦ୍ଧ ଜ୍ଞାନରୂପେ ଉଚ୍ଚାରିତ । ସମସ୍ତଙ୍କୁ ଏକ ସ୍ରଷ୍ଟା-ସମ୍ଭୂତ ବୋଲି ଜାଣିବା ଯେଉଁ ଜ୍ଞାନ, ସେହି ଜ୍ଞାନର ପ୍ରକାଶିକା ଭାବଟି ସମସ୍ତଙ୍କ ପ୍ରତି ଶ୍ରଦ୍ଧା ଏବଂ ତାହାର ବିପରୀତ ରୂପଟି ପରାର୍ଥସାଧନ ବା ଅନ୍ତତଃ ପକ୍ଷେ ଅପର ପ୍ରତି ଦ୍ୱେଷ-ହୀନତା । କବି ଏକ ଚିରସୁଖ, ଶାଶ୍ୱତରେ ବିଶ୍ୱାସୀ । ମାତ୍ର ଏ ସୁଖ ବୈରାଗ୍ୟର ନେତି ନୁହେ । ଚେତନାର ଉତ୍ତରାଧିକାରୀ ମାନସିଂହଙ୍କ ସାଧନାର

(୩୫) "ମୁଁ ଜାଣେ ଈଶ୍ୱର ସୃଜିଲେ ସୁନ୍ଦର ବିଶ୍ୱ ଜୀବ ଭୋଗ ପାଇଁ ।" ଗ୍ରନ୍ଥାବଳୀ, ୧ମ ପୃ:୬୯୫

Digitized by PPRACHIN, SOA

ବୈଶିଷ୍ଟ୍ୟ । ପ୍ରାଚ୍ୟଦର୍ଶନର ଭିତରେ କବି ଅଂତରାତ୍ମାର ନିଗୂଢ଼ ଦ୍ୱାରରେ ଶ୍ରଦ୍ଧା ବିଶ୍ୱାସର ଏକାଗ୍ର କରାଘାତରେ ସେ ଶାଶ୍ୱତର ଦ୍ୱାର ମୁକ୍ତହୁଏ ।

ସେ ଶାଶ୍ୱତ ଜରାମରଣହୀନ । ଅଥଚ ସୃଷ୍ଟିବକ୍ଷରେ ଆପଣାକୁ ନେଇ ତାର ଜନ୍ମମୃତ୍ୟୁର ନିତ୍ୟଲୀଳା । ବ୍ୟକ୍ତି ଖଣ୍ଡିତ ଚେତନାରେ ଆପଣାକୁ ସେ ସୁଖ ଓ ଦୁଃଖର ଖଂଡ଼ିତ ରୂପରେ ଦେଖିଥାଏ । ଜୀବନରେ ତେଣୁ କିଛି ବି ଅନୁଭବ ବ୍ୟର୍ଥ ନୁହେଁ । ସ୍ଥାନ ସମୟର ବଂଧନକୁ ଅତିକ୍ରମ କରି ତାର ଚିରଂତନତ୍ୱ ଝଲକିଉଠେ । କବି ବୈଦିକ 'ଋତ'କୁ, ଶାଶ୍ୱତ ବିଧାନକୁ ଏଇଠାରେ ସ୍ୱୀକୃତି ଦେଇ ସୃଷ୍ଟିର ଭଂଗାଗଢ଼ାକୁ ଅର୍ଥାନ୍ୱିତ ଦେଖିଛଂତି । (୩୬) ଏଇ ରାଜପଥକୁ କବି 'ସହଜପଥ' (ଗ୍ରଂଥାବଳୀ ୧ମ ପୃ. ୩୦୦) ବୋଲି ଚିହ୍ନିଛଂତି । ରୂପସୃଷ୍ଟିରୂପେ ବିଶ୍ୱବେଦନାକୁ ହୃଦୟର ପୂର୍ଣପାତ୍ରରୁ ପାନ କରି, ତା ଭିତରୁ ଜୀବନର ଭିନ୍ନସ୍ୱାଦ ଗୃହି, ଜୀବନଦେବତାଂକୁ ଚିହ୍ନି ରଖିବାର ଏ ସହଜ ପଥଟିକୁ ରୂପାନ୍ୱିତ କରିବା ପ୍ରତିଟି କଳାସୃଷ୍ଟିର ଶାଶ୍ୱତ ଅଭିଳାଷ । ତେଣୁ ଶାସ୍ତ୍ରରେ ଯାହା ଦୁର୍ଲଭ, ଦୁର୍ଗମ, ଦୂର, କବିଧର୍ମରେ ତାହା ସୁଲଭ, ସରଳ, ନିକଟତର । କବିର ଯୋଗନାହିଁ କି ଯାଗ ନାହିଁ । ତାର ଧୂନୀ ପ୍ରକୃତିର ପୂଜାବେଦୀରେ, ହୃଦୟର ଧୂପାଳତିରେ । ପ୍ରକୃତି ଭିତରେ ଯେଉଁ ବିରାଟ ବିଶ୍ୱନିଙ୍କର ବିପୁଳ ଆୟୋଜନ, ମାନବ ହୃଦୟରୁ ତାରି ମୁଗ୍ଧ ସମ୍ବର୍ଦ୍ଧନାଟିକର ଉଚ୍ଚାରିତ ହୋଇପାରିଲେ ହିଁ ତାର ଆରାଧନା ସଫଳ ହୁଏ । ଫୁଲର ହସରେ ଯେଉଁ ଆନଂଦ ଆସରର ସମ୍ବାଦ, ମାନବର ନିସ୍ପୃହ ସ୍ୱୀକୃତିରେ ତାର ସାର୍ଥକତା । ସେତିକିବେଳେ ହିଁ ଜୀବନର ସୁଖ ଦୁଃଖ ସବୁ ଗୋଟି ଗୋଟି ହୋଇ ପୂଜାର୍ଚନାର ସମ୍ଭାର, ନୈବେଦ୍ୟ ଉପଚାର ରୂପେ ମହାର୍ଘ ହୋଇଯାଏ ।

ଜଗତର ସକଳ ସମ୍ପର୍କ, ଜୀବନର ସକଳ ଅନୁଭବ, ଏମାନେ ହିଁ ହୃଦୟାସୀନ ଅଂତର୍ଯାମୀଂକର ସିଂହାସନ ଅଭିମୁଖୀ ଶତ ଶତ ପଥ । ତେଣୁ ହସରେ ଓ କାଂଦରେ ସେଇ ଦେବତାଂକୁ ଅନୁଭବ କରିହେବ, ପାଇହେବ ।

କବି ପାଶ୍ଚାତ୍ୟ ଭାବମାନସ ପ୍ରଭାବିତ । ତଥାପି ବୌଦ୍ଧ ବିଶ୍ୱ-କରୁଣାବାଦ ଓ ବୈଷ୍ଣବ ବିଶ୍ୱାନୁରାଗ ଚେତନା ଦ୍ୱାରା ମଧ୍ୟ କମ୍ ପ୍ରଭାବିତ ନୁହଂତି । ପାଶ୍ଚାତ୍ୟ ଚେତନାରେ ଭଲ ଓ ମନ୍ଦ, ଈଶ୍ୱର ଓ ସଇତାନ ଦୁଇଟି ନିତ୍ୟ ପରସ୍ପରବିରୋଧୀ ଦ୍ୱିବିଧ ସତ୍ତା, ମାତ୍ର ପ୍ରାଚ୍ୟ ଚେତନା ଭଲ-ମଂଦକୁ ଶାଶ୍ୱତର ଦ୍ୱିମୁଖୀ ପ୍ରକାଶବୋଲି ଗ୍ରହଣ କରିଛି ଏବଂ ସ୍ରଷ୍ଟା-ପୁରୁଷକୁ ସବୁ ଦ୍ୱୈତବୋଧକୁ ଆତ୍ମସାତ୍ କରି ଭଲମଂଦର ଊର୍ଦ୍ଧ୍ୱରେ ନିର୍ବିକାର ସ୍ୱରୂପରେ ଅବସ୍ଥାପିତ କରିଛି ।

କବି ଆଧ୍ୟାତ୍ମ ବିବର୍ତ୍ତନରେ ବିଶ୍ୱାସୀ । "ଚେଷ୍ଟା ଓ ବିକାଶ ଦୁଇ ସୃଷ୍ଟିର ନିୟମ । (୩୭) ଆତ୍ମନବଂଧ ବା ତାମସିକ ପୂଜାରୀତିକୁ ପ୍ରକୃତ ଆଧ୍ୟାତ୍ମିକତା ବୋଲି କବି ବିଗ୍ରହଂତି ନାହିଁ । ମାନବାତ୍ମ ବିକାଶର ସ୍ତରେ ସ୍ତରେ ଅଂତର୍ଗତ ଦିବ୍ୟଚେତନା କ୍ରମ ପ୍ରତିଭାତ ହୁଏ । କବି ବୌଦ୍ଧ-ନିରୀଶ୍ୱରବାଦ ସହ ଶ୍ରୀରାମକୃଷ୍ଣଂକ ବିଶ୍ୱାନୁଭୂତିକାକୁ ଏକାଠି କରି ବିଚାର କରିବା ଭିତରେ ଏଇ ଚେତନାର କ୍ରିୟାଶୀଳତା ହିଁ ବ୍ୟଂଜିତ କରିଛଂତି ।

---

(୩୬) "ଅଲଂଘ୍ୟ ନିୟମକାଲେ ବଂଧା ସେ ଈଶ୍ୱର
ବିଶ୍ୱରେଣୁ ମହାକାଳ ତାଂକ ରାଜପଥ ।"

ଗ୍ରଂଥାବଳୀ, ୧ମ—ପୃ. ୨୧୬

(୩୭) ମାନସିଂହ ଗ୍ରଂଥାବଳୀ (୧ମ) ପୃ. ୩୦୦

Digitized by PPRACHIN, SOA

କବି ପ୍ରବୀଣର ପାଣ୍ଡିତ୍ୟ, ଜ୍ଞାନ ଏସବୁ ବର୍ଜନ କରି ଶିଶୁର ସହଜ ସାରଲ୍ୟ କାମନା କରନ୍ତି— ଯାହା ନିଃସଂଶୟ ବିଶ୍ୱାସରେ ଜୀବନକୁ ଓ ଜୀବନଦେବତାକୁ ଗ୍ରହଣ କରିନେବ । ଶାସ୍ତ୍ର ଈଶ୍ୱରଙ୍କ ସମ୍ପର୍କରେ ତର୍କ କରିପାରେ, ଉପଦେଶ ଦେଇପାରେ; ମାତ୍ର ଈଶ୍ୱରୋପଲବ୍ଧି ଅଣିପାରିବ ନାହିଁ । ଏହା କେବଳ ବିଶ୍ୱାସ ହିଁ ପାରେ । ସେ ବିଶ୍ୱାସ ହୁଏତ ଅନ୍ଧ । ମାତ୍ର ସେହି ଗାଢ଼ ଅନ୍ଧତ୍ୱର ପ୍ରବଳ ଅନ୍ଧକାର ଭିତରୁ ସତ୍ୟର ଆକସ୍ମିକ ଉଦ୍ଭାସନ ଘଟେ । ସେ ବିଶ୍ୱାସର ପ୍ରକାଶ ଶିଶୁର ସରଳତାରେ । ଶିଶୁ ମଧ୍ୟରେ ହିଁ କବି ଈଶ୍ୱରଙ୍କ ଦିବ୍ୟ-ରହସ୍ୟକୁ ଉଦ୍‌ଘାଟନ କରିଛନ୍ତି ।

ତାହା ପୁଣି ସନ୍ତାନର ମୃତ୍ୟୁର ପ୍ରତିକ୍ରିୟା ଭିତରେ । କନ୍ୟାର ମୃତ୍ୟୁରେ ଶୋକାକୁଳ ପିତୃହୃଦୟର ଅଭିନବ ଉପଲବ୍ଧି, "ବୁଝିପାରିଲି ଯିବା ବସି ମୋହ ମୂଢ଼ତାରେ / ବୁଝିଛି ମୁଁ ଏବେ ମୋର କ୍ଷୁଦ୍ର ହୃଦ୍‌ଧନ / କରିଅଛି ଈଶ୍ୱରେ ଓ ମତେ ମୁଖାମୁଖୀ/ନାହିଁ ପାରିଥିଲି ଯାହା ବହୁ ସାଧନାର ।"(୩୮) ସନ୍ତାନ ମୃତ୍ୟୁର ପ୍ରତିକ୍ରିୟା, ଦୁଃଖ, ଜିଜ୍ଞାସା, କ୍ରନ୍ଦନ, ଇତ୍ୟାଦି ଏକ ଅଦ୍ଭୁତ ସ୍ୱୀକୃତି, "ସେ ମହାସୃଜନ ସ୍ରୋତେ, ଘଟେ ପ୍ରତିକ୍ଷଣେ, ଜନ୍ମ ମୃତ୍ୟୁ ।" (୩୯) ତଥାପି ପ୍ରତିଟି ଜନ୍ମ, ପ୍ରତିଟି ମୃତ୍ୟୁ ମଧ୍ୟ ନିଜସ୍ୱ ଏକ ସାର୍ଥକତାର ବାର୍ତ୍ତାବହ । ପ୍ରତିଟି କ୍ଷୁଦ୍ର ଜୀବନ-ବିନ୍ଦୁରେ, "ସୃଷ୍ଟି-ସ୍ଥିତି-ପ୍ରଳୟର ବିରାଟ ନାଟକ ।"(୪୦) ଏ ଅସ୍ତିତ୍ୱବାଦୀ ସ୍ୱୀକୃତି ପ୍ରତ୍ୟେକ ଅସ୍ତିତ୍ୱ-ସଚେତନ ସତ୍ତାର, ପ୍ରତ୍ୟେକ ଉତ୍କ୍ରାନ୍ତ କବିଦୃଷ୍ଟିର, ରସୋତ୍ତୀର୍ଣ୍ଣ ଶିଳ୍ପ-ସୃଷ୍ଟିର । ତାହାହିଁ ଜୀବନକୁ କବିର ସ୍ୱୀକୃତି, ସୃଷ୍ଟିର ମୂଲ୍ୟାଙ୍କନ ଓ ସ୍ରଷ୍ଟାଙ୍କ ପ୍ରତି ସଶ୍ରଦ୍ଧ କୃତଜ୍ଞତା । ଏହା ଅବାସ୍ତବତା କିମ୍ବା ବୈରାଗ୍ୟର ନୀରବତା ଅବଲମ୍ବନ ପାଇଁ ଅଙ୍ଗୁଳି ସଙ୍କେତ ନୁହେ । ମୁହୂର୍ତ୍ତକର ଜୟଗାନ ପାଇଁ ଚିରନ୍ତନକୁ ଉପେକ୍ଷା କରିବା ବାସ୍ତବବାଦ ନୁହେ । ମୁହୂର୍ତ୍ତର ସ୍ୱୀକୃତି ଭିତରେ ଚିରନ୍ତନର ଜୟଗାନ ହିଁ ପ୍ରକୃତ ବାସ୍ତବ ସଚେତନତା । ଶିଳ୍ପ-ସୃଷ୍ଟି ଓ ଅଧ୍ୟାତ୍ମ ଉପଲବ୍ଧି ଏହି ବାସ୍ତବତାର ଭିତ୍ତିରେ ହିଁ ଜୟସ୍ତମ୍ଭ ନିର୍ମାଣ କରନ୍ତି । 'କ୍ଷୁଦ୍ରହୃଦ୍‌ଧନ' ପଦଟିରେ କେତେ ଭାବ ନିଗୂଢ଼ ରହିଛି । ହଜିଯିବା ଧନ ସାମାନ୍ୟ ହୋଇପାରେ । ମାତ୍ର ହୃଦୟର ସ୍ନେହଧନରୂପେ ତାହା ଅମୂଲ୍ୟ । କବି ଦୃଷ୍ଟିରେ ତାର ଅଉ ଏକ ମହତ୍ତ୍ୱ ଯେ ଏହା ସୃଷ୍ଟି ପ୍ରତି, ସ୍ରଷ୍ଟା ପ୍ରତି, ଜୀବନ ପ୍ରତି, କବିଙ୍କ ସମ୍ବେଗାତ୍ମକତାକୁ ଏଭଳି ସମ୍ପୂର୍ଣ୍ଣ, ନିର୍ଦ୍ଦିଷ୍ଟ ଓ ମୁଖାମୁଖୀ କରିଦେଇପାରିଲା । ସେ ଯେପରି ଜଣାଇବାକୁ ଆସିଥିଲା, "ବିଶ୍ୱେ ନାହିଁ ରୂପ ଆଉ ସ୍ନେହର ମରଣ ।"(୪୧) ଅମରତ୍ୱର ଏ ଅଦ୍ଭୁତ ମହିମାଗାନ । ଛେଦଶୀଳ ସମ୍ପର୍କ, ନଶ୍ୱରଶୀଳ ରୂପର ପାର୍ଥିବ ବିନଷ୍ଟି ପରେ ମଧ୍ୟ ହୃଦୟର ସ୍ନେହରସର ଚିରମମତାର୍ଦ୍ର । ଜୀବନ ସମ୍ପର୍କରେ ଏ ବିଶିଷ୍ଟ ସତ୍ୟଟି ଯେଉଁ ଉପଲବ୍ଧି ଭିତରୁ ପ୍ରାପ୍ତ ହୋଇଥାଏ, ତାହାହିଁ ମିଷ୍ଟିକର ରହସ୍ୟୋପଲବ୍ଧି । ରହସ୍ୟବାଦତ କେବଳ ଅତୀନ୍ଦ୍ରିୟ ତତ୍ତ୍ୱର କଥା କହେନା, ବରଂ ଇନ୍ଦ୍ରିୟର ଅତୀନ୍ଦ୍ରିୟତାକୁ ଅଭିସାରର ତତ୍ତ୍ୱଟି ହିଁ ରହସ୍ୟବାଦର ଏକମାତ୍ର ପ୍ରତିପାଦ୍ୟ ଏବଂ ଏ ବିଷୟରେ ଇନ୍ଦ୍ରିୟ-ଜୀବୀ ସହିତ ଅତୀନ୍ଦ୍ରିୟ ସମାନ ପ୍ରାଧାନ୍ୟ ଲାଭ କରନ୍ତି । କବିଙ୍କ ପ୍ରତିପାଦନରେ ମାନବର ହୃଦୟ କେତେ ସ୍ନେହ ଧାରଣ କରିପାରେ ତାର ଅବଧାରଣା ପାଇଁ ଯେପରି ଏ ପ୍ରୀତିସମ୍ପର୍କର ସୃଷ୍ଟି । ମୃତ୍ୟୁରେ ସେହି ସମ୍ପର୍କର ରୂପଗତ ଆଧାର ଯେପରି ଅଙ୍ଗତ୍ୟାଗ କରି ମନୋଗତ ଭାବନାରୂପେ ଅନ୍ତଃଗମ୍ଭୀରରେ ନିଜ ମୂଲ୍ୟ କଳିବାକୁ ପ୍ରବେଶ କରେ ।

'ଅକ୍ଷତ'ର ଏହି ପୃଷ୍ଠଭୂମିରୁ 'ଜୀବନଚିତା' 'ନିଃଶ୍ୱ' ଓ 'ସିନ୍ଧୁ ଓ ବିନ୍ଦୁ'ର ଭାବବଳୟରେ କବିଙ୍କର ରହସ୍ୟବାଦୀ କାବ୍ୟ ଚେତନାର କ୍ରମୋତ୍ତରିତ ପ୍ରକାଶ-ଧାରାଟିକୁ ସ୍ପଷ୍ଟ ନିର୍ଦ୍ଧାରଣ କରିହେବ ।

(୩୮, ୩୯, ୪୦, ୪୧) ମାନସିଂହ ଗ୍ରନ୍ଥାବଳୀ ୧ମ—ପୃ. ୩୦୮

Digitized by PPRACHIN, SOA

'ଜୀବନଚିନ୍ତା'ର କବିତାଗୁଡ଼ିକ ପାର୍ଥିବ ଯନ୍ତ୍ରଣା ପୂର୍ଣ୍ଣ ଭବ୍ୟ ଅଭୀପ୍ସାର ସଂଘର୍ଷ ସଂବାଦର ସ୍ୱଗତୋକ୍ତି ରୂପେ ବିବେଚିତ ହୋଇପାରେ । ପୃଥିବୀର କ୍ଲେଦ, ଜୀବନର ଖେଦ, ଜଗତର ଅସାରତା, ବାସ୍ତବତାର ରିକ୍ତତା ଏ କବିତାଗୁଡ଼ିକରେ ସ୍ପଷ୍ଟରୂପେ ପ୍ରତିଫଳିତ । ତା ଭିତରେ କବିଚେତନା ସୃଷ୍ଟିର ଉଦ୍ଦେଶ୍ୟକୁ, ମର୍ତ୍ତ୍ୟବାସର ସାର୍ଥକତାକୁ ଖୋଜିଛି । କଳ୍ପନାମୋଦୀ କବି ଜୀବନକୁ ଊର୍ଦ୍ଧ୍ୱରୁ ଓ ବୃହତ୍ତର ପରିପ୍ରେକ୍ଷୀରୁ ବିଚାର କରିବାକୁ ଆରମ୍ଭ କରିଛନ୍ତି ।

କବି ଜୀବନବାଦୀ । ଜୀବନକୁ ଜନ୍ମମୃତ୍ୟୁର ନିୟନ୍ତ୍ରଣାଧୀନ ଦେଖନ୍ତି । କିନ୍ତୁ ସେତିକି ତାର ଇତିବୃତ୍ତି ବୋଲି ମନେକରନ୍ତିନାହିଁ । ଉପନିଷଦୀୟ ବିଚାର ତାଙ୍କ ହୃଦୟରେ ମଧ୍ୟ ବିଶ୍ୱାସ ଥାପିଛି ଯେ, ମାନବ ଅମୃତର ପୁତ୍ର, ଦେବଲୋକଜାତ । ଭାରତୀୟ ଜନ୍ମାନ୍ତରବାଦ ଓ ସୃଷ୍ଟିତତ୍ତ୍ୱମୂଳରେ ନିହିତ ଏକ ଭବ୍ୟସଙ୍କଳ୍ପର ଭୂମିକା ମଧ୍ୟ କବିଚେତନାର ସମର୍ଥନ ଲାଭକରିଛି । ଏହା ସହ ସୃଷ୍ଟିର ଅଜ୍ଞାନତା, ବିଭ୍ରାନ୍ତି ଓ ଅକ୍ଷମତା ଭିତରୁ ମାନବଚେତନାରେ ସେ ଭବ୍ୟତ୍ୱର ରୂପବିକୃତି ତଥା ଜୀବର ଦୁଃଖଭୋଗ—ଏ ଜ୍ଞେୟବାଦୀ (Gnostic) ଅନୁଭବ ମଧ୍ୟ ସ୍ପଷ୍ଟ ହୋଇଉଠିଛି ।

ମାନସିଂହ କିନ୍ତୁ ମାୟାବାଦର ସ୍ତାବକ ନୁହନ୍ତି, ଯଦିଓ ବିଶ୍ୱକୁ 'ମାୟା' ବୋଲି ଅନେକ ସ୍ଥଳରେ ସେ ସଂଶୟ କରିଛନ୍ତି । ମାତ୍ର ସେ ମାୟାଠାରୁ ପଳାୟନ ପରିବର୍ତ୍ତେ ବରଂ ତାର କୁହେଳିକା ଅପସାରଣ ତାଙ୍କ ସାଧନାର ଲକ୍ଷ୍ୟ ବୋଲି ଅନୁମିତ ହୁଏ । ନିଜ କ୍ଷୁଦ୍ର ଜୀବନକୁ ନିଖିଳ ପୃଥିବୀ ଓ ଅଖିଳ ହୃଦୟର ପ୍ରେମାମୃତରେ ନିମଜ୍ଜିତ କରି ନିଜଠାରେ ଭୂମାର ବିସ୍ତୃତିକୁ କାମନା କରିଛନ୍ତି । ବର୍ଜନ ପରିବର୍ତ୍ତେ ଆଲିଙ୍ଗନ, ବିତୃଷ୍ଣା ପରିବର୍ତ୍ତେ ବିଶ୍ୱାନୁରାଗ ତାଙ୍କ କାବ୍ୟସାଧନାର ମୁଖ୍ୟ ବିଭବ ରୂପେ ପ୍ରକାଶିତ ହୋଇଛି ।

'ଜୀବନଚିନ୍ତା'ର କବିତାଗୁଡ଼ିକ କୌଣସି ଉତ୍ତରଣ ଭାବଚେତନାର ସଙ୍କେତ ବହନ କରନ୍ତି ନାହିଁ । ଏମାନେ କିନ୍ତୁ କବିମାନସର ଏକ ଗୂଢ଼ ଅଭୀପ୍ସାର ସନ୍ଧାନପ୍ରୟାସୀ, ଯାହା କେବଳ ତାତ୍କାଳିକତାକୁ ଚରମ ସିଦ୍ଧାନ୍ତ ରୂପେ ମାନିନନେଇ ତାରି ଭିତରୁ ଚିରନ୍ତନତାକୁ ପ୍ରତ୍ୟାଶା କରେ । କବି ଏ ରୂପଚେତନାରେ ରବୀନ୍ଦ୍ରଭାବ ସାଧନାର ବହୁ ନିକଟବର୍ତ୍ତୀ ମନେହୁଅନ୍ତି ।

ଜୀବନଚିନ୍ତାର କବିତାଗୁଡ଼ିକ ଅଧ୍ୟାତ୍ମ ଆକୂତି ମୂଳକ । ପ୍ରାରମ୍ଭିକ କାବ୍ୟସ୍ତରରେ ପ୍ରବଳ ପ୍ରତିକ୍ରିୟାତ୍ମକ ଦୁଃଖାଚ୍ଛନ୍ନତା ବିଦ୍ୟମାନ (ବିଶେଷକରି, 'ନିଦ୍ରିତ ଭଗବାନ' ଯାହା 'ଧୂପ' ମାନସିକତାର ରୂପଜ-ପ୍ରଣୟ ପ୍ରତି କବିଭାବନାର ଏକ ସଚେତନ ପ୍ରତିକ୍ରିୟାଥିଲା) । ମାତ୍ର ମାନସିଂହଙ୍କ ରୋମାଣ୍ଟିକ କବିହସ୍ତ ଯେ ଭାବ-ବିଳାସମୟ ଅନୁଚିନ୍ତାର ସୀମାଲଙ୍ଘନ କରିପାରେ, ଜୀବନର ଗଭୀରତାକୁ ପ୍ରବେଶ କରି ଜାଣେ, ବାସ୍ତବତା ଓ ରୋମାଣ୍ଟିକ ଭାବରାଜ୍ୟ ଭିତରେ କବିଧର୍ମକୁ ବ୍ୟକ୍ତିତ୍ୱର ପରିପୂର୍ଣ୍ଣତା ଦିଗରେ ନିୟୋଜିତ କରିପାରେ, ଏ ପ୍ରୟାସ 'ଜୀବନଚିନ୍ତା'ରେ ପ୍ରଥମଥର ପାଇଁ ସ୍ପଷ୍ଟ ହୋଇଉଠିଛି । 'ନିଦ୍ରିତ ଭଗବାନ'ର ସ୍ୱରଟି ନିଶ୍ଚିତ ଭାବରେ ଭାବ-ଗମ୍ଭୀର ନୁହେଁ—ବରଂ ବେଶୀ ଆବେଗ ଗଦ୍‌ଗଦ । ଅଧ୍ୟାତ୍ମ ଯନ୍ତ୍ରଣା ଅପେକ୍ଷା ପାର୍ଥିବ ଜୀବନ-ଯନ୍ତ୍ରଣାର ସ୍ୱର ଏଠାରେ ଅଧିକ ମୁଖରିତ । ମାତ୍ର ସବୁ ଉଚ୍ଛଳ ଉଚ୍ଛ୍ୱାସ ଭିତରେ କବି ପୂର୍ଣ୍ଣ ସଚେତନ ଯେ ଆତ୍ମା ନିରଞ୍ଜନ । ପୃଥିବୀରେ ଦିବ୍ୟତ୍ୱର ପ୍ରତିଷ୍ଠା ପାଇଁ ତାର ଧରାବତରଣ । ମାତ୍ର ପୃଥିବୀର ସମ୍ଭୋଗଲାଳସା ଓ ଭୋଗ ପ୍ରୟାସ ଭିତରେ ସତ୍ତା ପଥଚ୍ୟୁତ ହୁଏ ।

ଏ କବିତାରେ ସ୍ୱର୍ଗ ଏକ କଳ୍ପିତ ଅପାର୍ଥିବ ଲୋକ ଯାହା କେବଳ ରୋମାଣ୍ଟିକ ଭାବବିଳାସରେ ସମ୍ଭବ ହୋଇପାରେ । ମାନବ କଳ୍ପନାର ସବୁ ସୁଖଭୋଗମୟ ସେ ରାଜ୍ୟ । ତଥାପି 'ଆଲୋକବାସୀ

Digitized by PPRACHIN, SOA

ମୁଁ' 'ଅମୃତମିଶ୍ର', 'ଦେବତାରେ ଏ ଯେ ସଂସାର ଭୁଲିଗଲ' ପ୍ରଭୃତି ଉଚ୍ଚାରଣଗୁଡ଼ିକ ଆତ୍ମାର ପତନ ସମ୍ପର୍କରେ କବିଙ୍କ କ୍ଷୋଭ ଓ ଉଦ୍ଧ୍ୱଗତିର ଅଭିଳାଷ ପ୍ରକାଶ କରେ । ଆତ୍ମାର ଦୁର୍ଗତି ପାଇଁ କବି କାମିନୀ-କାଞ୍ଚନକୁ ଦାୟୀ କରନାହାନ୍ତି, ବରଂ ଅନ୍ତର୍ଗତ ବାସନାବିଳାସ ଓ ଅଜ୍ଞାନତାକୁ ଅସ୍ୱୀକାର କରିଛନ୍ତି । (୪୨) ଏ ସ୍ୱୀକାରୋକ୍ତି ଭିତରେ ପ୍ରତି ଜୀବର ସ୍ୱତନ୍ତ୍ର ଆତ୍ମଦାୟିତ୍ୱ ଓ ଆତ୍ମବିକାଶରେ ସ୍ୱତନ୍ତ୍ର ଭୂମିକାଟି ସଙ୍କେତିତ । ଜଗତର ଭଲ ମନ୍ଦ ସବୁଥିରେ ପ୍ରାକୃତ ଓ ଆଧ୍ୟାତ୍ମିକ ପ୍ରତ୍ୟେକଟି ମାନବାତ୍ମାର ଭାଗ ରହିଛି, ସେଥିପାଇଁ ପ୍ରତ୍ୟେକଟିର ଦାୟିତ୍ୱ ସ୍ୱତନ୍ତ୍ର ଭାବେ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ପୂର୍ଣ୍ଣ ଜୀବନର ଅଧିକାରୀ । ସେ ପୂର୍ଣ୍ଣତା ଲାଭପାଇଁ ପ୍ରତ୍ୟେକର ସ୍ୱତନ୍ତ୍ର ପ୍ରୟାସ ଆବଶ୍ୟକ । ଏହା ସମବାୟ ପ୍ରଚେଷ୍ଟା ନୁହେଁ । ପ୍ରତ୍ୟେକ ଏକକ ସୃଷ୍ଟିର ଏହି ଉଦ୍ଦେଶ୍ୟମୂଳକତା ହିଁ ରହସ୍ୟବାଦୀ ଚେତନାର ପ୍ରଧାନ ସାଧନା-ସ୍ତମ୍ଭ ରୂପେ ପରିଗଣିତ, ଯାହା ଅଦ୍ୱିତ୍ୱବାଦୀ ଦର୍ଶନର ସାର ନିର୍ଯାସ ରୂପେ ପ୍ରତିପାଦ୍ୟ ।

'ଧରଣୀବାସ'ରେ (ଗ୍ରନ୍ଥାବଳୀ ୧ମ—ପୃ. ୩୬୮) ଏହି ଭାବଚେତନାଟି ଅଧିକ ଅନ୍ତର୍ମର୍ମୀ ଓ ଗମ୍ଭୀରତର । ପୃଥିବୀରେ ମଣିଷ ଯେ ଦେବତ୍ୱ ଭୁଲେ, ସେ ଦୋଷ କାର ପୃଥିବୀର ? ଏ ଜିଜ୍ଞାସା କବିଙ୍କୁ ଠିକଣାପଥ ଖୋଜାଇଛି । "ଥରେ ଥରେ ଲଗେ ମୋତେ ଏ ଜୀବନ ଅମୃତରୁ ଜାତ, ନୁହେଁ ଏହି ମୃତ୍ତିକାରୁ ଜାତ" (୪୩) ଆତ୍ମଜିଜ୍ଞାସାର ଏ ବର୍ଣ୍ଣିତ ଭାବରୂପଟି ମିଥ୍ୟା କଳ୍ପନାର, ତର୍କଣାର, ପାଣ୍ଡିତ୍ୟର ବୋଲି ମନେହୁଏ ନାହିଁ ।ବରଂ ଏହା ଏକ ନିବ୍ୱୋଳା ଅନୁଭବର ସରଳ ଅକୃତ୍ରିମ ଅକପଟ ଅଭିବ୍ୟକ୍ତି ବୋଲି ମନେହୁଏ । ସତ୍ୟାନୁସନ୍ଧାନ ମାର୍ଗରେ କବି ଦର୍ଶନ ବା ଶାସ୍ତ୍ର ଅନୁଶୀଳନ ନକରି କବିଧର୍ମର ହିଁ ଶରଣାଗତ ହୋଇଛନ୍ତି । କାରଣ କାବ୍ୟାନୁଭବ ସ୍ୱଜ୍ଞାତ୍ମକ, ପ୍ରତ୍ୟକ୍ଷ ଓ ପ୍ରେରଣାତ୍ମକ । କବିଙ୍କ ଅନୁଭବରେ ଆତ୍ମା ଧରାବତରଣ କଲାବେଳେ ମୃତ୍ତିକାର କର୍ଦ୍ଦମ ସ୍ପର୍ଶରେ ଆପଣାର 'ଦୈବତ' ଅଭିମାନକୁ ବିସ୍ମୃତ ହୋଇଗଲା । ଅତଏବ ଦିବ୍ୟଧାମରୁ ବିଚ୍ୟୁତିଟି ହିଁ ବିଷମତମ ଦଣ୍ଡ ।

କବିଙ୍କ ଦୃଷ୍ଟିରେ ଏ ମର୍ତ୍ତ୍ୟବାସ ସ୍ୱବାସ ନୁହେଁ । ମାନବ 'ନିଃସଙ୍ଗ ଅତିଥି'—ଏ ପ୍ରୟୋଗ ଗଭୀର ରହସ୍ୟବାଦୀ ତାତ୍ପର୍ଯ୍ୟପୂର୍ଣ୍ଣ । କିନ୍ତୁ ସେ ଅତିଥି-ଧର୍ମ ଭୁଲେ, ଏଇ ମହାଭ୍ରାନ୍ତିଟି ପାଇଁ ତାକୁ ଚରମମୂଲ୍ୟ ଦେବାକୁ ହୁଏ । ଅତିଥି ଆତିଥେୟତାକୁ ସଶ୍ରଦ୍ଧ କୃତଜ୍ଞତାରେ ଗ୍ରହଣ କରିନେବା ପରିବର୍ତ୍ତେ ଯଦି ତାକୁ ନିଜସ୍ୱ ଦାବୀରେ ବଳାତ୍କାର କରି ନେବାକୁ ବସନ୍ତି, ତେବେ ଅତିଥିର ସକଳ ମର୍ଯ୍ୟାଦା କ୍ଷୁଣ୍ଣ ହୁଏ । ଉପଭୋଗ-କାମନା ବିଷମଜଞ୍ଜାଳ ହୋଇ ତାକୁ ବାନ୍ଧିଦିଏ । ଶୃଙ୍ଖଳିତ ପୁଷ୍ପହାର ପାଦସାଙ୍କୁଳି ହୋଇ ଛନ୍ଦିଦିଏ । ଲୋଭ ଅପରିମିତ କ୍ଷୁଧା ହୋଇ ସକଳ ଆନନ୍ଦଧାରାକୁ ଗ୍ରାସ କରିଦିଏ । ସଖୀ ଆପାତତଃ ପ୍ରାପ୍ତିକୁ ଚରମ-ପ୍ରାପ୍ତି ବୋଲି ଭ୍ରମକଲା ତାର ପରମ ଦିବ୍ୟତ୍ୱ ବିସ୍ମୃତ ହୁଏ ।

କବି ବୌଦ୍ଧଚେତନାର ଜନ୍ମ, ତୃଷ୍ଣା ଓ ଦୁଃଖବାଦ ପ୍ରଭାବିତ ମନେହୁଅନ୍ତି । ଖ୍ରୀଷ୍ଟଧର୍ମର ଅନନ୍ତ ପ୍ରେମତତ୍ତ୍ୱ ଓ ବୌଦ୍ଧଦର୍ଶନର ପରମକରୁଣା ସେ ହୃଦୟରେ ଗ୍ରହଣ କରିଛନ୍ତି । କବି ତତ୍ତ୍ୱ ସନ୍ଦର୍ଭରେ ମାନବାତ୍ମାର ଅସହାୟତା, ଦିବ୍ୟ-କୃପାର ପ୍ରୟୋଜନକୁ ଇଙ୍ଗିତମୟ କରିଦେଇଛନ୍ତି,

---

(୪୨) "ବିରାଟ ସେ ଆଜ ଧାଉଁଛି କ୍ଷୁଦ୍ର ଆଗେ
ବସେ ମୁହିଁ ଯେ ସୃଷ୍ଟି କରୁଛି ବିଷ ।"
ଗ୍ରନ୍ଥାବଳୀ ୧ମ—ପୃ. ୩୮୪

(୪୩) ଗ୍ରନ୍ଥାବଳୀ ୧ମ—ପୃ. ୩୮୮

Digitized by PPRACHIN, SOA

''ଅବଶେଷେ ଅଂତରୀକ୍ଷେ ନକ୍ଷତ୍ରଙ୍କ ମାଗେ ପରିତ୍ରାଣ । (୪୪) ପୃଥିବୀ ଦୁଃଖ ତ ଦିଏ, ଜୀବନର ସଂଘର୍ଷ ତାଂକୁ ଯେତେ ପ୍ରବଳ ହୁଏ, ସେତେ ମନେପକାଇଦିଏ ଯେ ଜୀବନ ଏଭଳି ଏକ ଉତ୍ସ ସମ୍ଭୂତ, ଯାହା ଦୁଃଖାତୀତ । ସେ ଉତ୍ସର ସନ୍ଧାନରେ ଚେତନାରେ ପ୍ରଥମକରି ଅନଂତର ଉଦ୍‌ବୋଧନ ଜାଗେ । ସେ ଅଂତରର ଦ୍ୟୋତନା ପ୍ରଥମେ ଜାଗେ ଭୂମାସ୍ପୃକ୍ତ ଆକାଶରୁ । ଜୀବନ ଦେଖେ ପୃଥିବୀକୁ ନିଜପାଇଁ ବାଂଧି ରଖିବାର ଅକ୍ଳାଂତ ଉଦ୍ୟମ ଭିତରେ ସେ ପାର୍ଥିବ ଆକର୍ଷଣରେ ନିଜେଇ ଛନ୍ଦିବାନ୍ଧି ହୋଇ ଯାଇଛି । ଏବେ ଆକାଶରେ ତାର ମୁକ୍ତି ସ୍ୱପ୍ନ, ସମ୍ଭାବନା, ଆଶ୍ୱାସନା । ମାତ୍ର ଆକାଶ ସହ, ସେ ନିରାଳଂବ ବାସ୍ତବୀୟ ସ୍ଥିତି ସହ ଜୀବନ ଯେ ସମ୍ପର୍କହୀନ ହୋଇଥାଏ ? ଜୀବନର ସ୍ୱାଭାବିକ ପ୍ରବୃତ୍ତି ଏପରି ଯେ, ସେ ଅପରିଚୟର ନିକଟରେ କୌଣସି ଅଭିଳାଷ ନେଇ ଅସଂକୋଚ ଭାବେ ଉପଯାଚକ ହୋଇ ପହଞ୍ଚିପାରେନାହିଁ । ଅକାଶସହ ପରିଚୟର ସମ୍ପର୍କଟିକୁ ସହଜ ସ୍ତରରେ କେଉଁ ଏକ ଦିବ୍ୟଧାମ ସହ ସେ ସଂପୃକ୍ତ, ସେତିକି ଭରସାରେ ସତ୍ତ୍ୱର ପରିତ୍ରାଣ କାମନାରେ ଏ ଆକାଶୀ ସଂଯୋଗ ।

ମାତ୍ର କବି ମାଟିକୁ ଉପେକ୍ଷା କରିନାହାଂନ୍ତି । ମୃତ୍ତିକାସ୍ନେହକୁ ହତାଦର କରିନାହାଂନ୍ତି । ଏ ମାଟି ପୃଥିବୀର ସୁଖ ଦୁଃଖକୁ ଏପରି ନିବିଡ଼ କରି ମିଶାଇ ସେ ହୃଦୟରେ ସାଇତି ରଖେ, ଯେପରି ମନେହୁଏ ମଣିଷ ଏକାଂତଭାବେ ମାଟିର ଜୀବ । (୪୫) ପୃଥିବୀର ତପୋମୟ ଧୂଳିକଣାରେ ସେଥିପାଇଁ ତାର ଅସରନ୍ତ ଜୀବନାମୃତର ସନ୍ଧାନ । କବି ମାୟାବାଦୀର ସାଧନାକୁ ଉପେକ୍ଷା କରିଛଂନ୍ତି । ସେହିପରି ଆକାଶୀ ଉଲ୍ଲଂଘନ ଭିତରେ ମୁକ୍ତିର କଳ୍ପନାକୁ ମଧ୍ୟ ତାଚ୍ଛଲ୍ୟ କରିଛଂନ୍ତି । କବିଚେତନାରେ ଆସକ୍ତି ଓ ମୁକ୍ତିର ଏଇ ବିଶେଷ ଦ୍ୱନ୍ଦ୍ୱସଂଘର୍ଷ ଅବସ୍ଥାର ସୂଚନା ‘ଶେଷ କଥା’, ବିଶୃଙ୍ଖଳ ସୃଷ୍ଟି’, ଦକ୍ଷିଣାପ୍ରିୟ ପ୍ରଭୃତିରେ କିଛି କିଛି ପ୍ରକଟିତ । ଏ ଏଭଳି ଏକ ସମୟର ସୂଚନା, ଯେତେବେଳେ ଅସୀମର ଆହ୍ୱାନ ପ୍ରାଣରେ ବାଜେ, ଚେତନା ଉଚ୍ଛାଟିତ ହୁଏ, ସୀମାର ଅସହାୟତା ମଧ୍ୟ ସ୍ପଷ୍ଟ ହୋଇଉଠେ, ଏ ଚେତନା ସଂଘର୍ଷ ବେଳେବେଳେ ତୀବ୍ର ହୋଇ ବ୍ୟକ୍ତିକୁ ଭାବ-ବିମୂଢ଼ କରିଦିଏ । ମନେହୁଏ ସବୁ କେବଳ ପ୍ରଶ୍ନ; ଜୀବନ ଯେଭଳି ଉତ୍ତରହୀନ ଏକ ପ୍ରଶ୍ନ ମାତ୍ର ।

ସୃଷ୍ଟିର ଅଦ୍ଭୁତ ନିୟମରେ ଯେଉଁଠାରୁ ପ୍ରଶ୍ନର ଆରଂଭ, ସେଇଠାରେ ହିଁ ଉତ୍ତରର ବୀଜ ନିହିତ । ମାଟି ହିଁ ଜୀବନ-ସଂଘର୍ଷରୂପେ, ଜୀବନର ସମ୍ପର୍କିତ ପ୍ରଶ୍ନକୁ ଚେତନାରେ ଉଜ୍ଜୀବିତ କରେ । ମାଟିହିଁ ତେଣୁ କବିଂକର ଜୀବନ ସଂପର୍କରେ ପ୍ରଥମ ସ୍ପଷ୍ଟ ଆବେଗାତ୍ମକ ପ୍ରଶ୍ନ । ମାଟିରୁ ତାର ଉତ୍ତରର ସନ୍ଧାନ । ମାଟି ସଂକେତକରେ ଆକାଶକୁ, ଊର୍ଦ୍ଧ୍ୱାଭିମୁଖିତାକୁ, ବ୍ୟାପ୍ତିକୁ । ଚେତନା ଆକାଶ ପରି ବିସ୍ତୃତ, ନୀରବ ଓ ଊର୍ଦ୍ଧ୍ୱମୁଖୀ ହେବାର ରହସ୍ୟକୁ ବୁଝିପାରିଲେ ଦେଖେ ଆକାଶ ମଧ୍ୟ ମାଟିମୁହାଁ । ଅର୍ଥାତ୍ ଉତ୍ତର ଯେ ମାଟି ଭିତରେ -- ଏଇ ପ୍ରତିଶ୍ରୁତି, ନିର୍ଦ୍ଦେଶ ।

ପ୍ରକୃତିର ନିତ୍ୟ ରୂପସୃଷ୍ଟି, ଗ୍ରୀଷ୍ମାଦି ଋତୁଲୀଳା ମାନବଚେତନାକୁ ମୁଗ୍ଧକରେ । ମନେହୁଏ ଏଇ ପ୍ରକୃତି ଭିତରେ ସବୁ ରହସ୍ୟ ସଂଗୁପ୍ତ, ମାତ୍ର ବ୍ୟକ୍ତିର ସୀମିତ ବୋଧଶକ୍ତି ପ୍ରକୃତିର ଇଂଗିତରୁ ପରମଶାଶ୍ୱତର ପୂର୍ଣ ଅବବୋଧ ଲାଭ କରିପାରେନାହିଁ । ପ୍ରକୃତିର ଲୀଳାଖେଳା ସବୁ ବହିର୍ଜଗତରେ । ବ୍ୟକ୍ତିର ବୁଝାମଣାଗତ ଭାବଶକ୍ତିରେ ହିଁ ପ୍ରକୃତି ସଚେତନ ହୋଇଉଠେ । ସେ ବୁଝାମଣାର ଛଂଦ

(୪୪) ମାନସିଂହ ଗ୍ରଂଥାବଳୀ ୧ମ—ପୃ. ୩୮୯

(୪୫) ''ତଥାପି ଧରଣୀ, ତୁମ୍ଭେ ପ୍ରିୟ ଏତେ ସତେ । ଗୁରୁ ଅକଲ୍ୟାଣ ତୋ ମାଟିରେ । ମାନବର ଗୁରୁ ସ୍ନେହ, ବିଧାତା ବିଧାନେ ।'' ମାନସିଂହ ଗ୍ରଂଥାବଳୀ ୧ମ—ପୃ. ୩୮୯

Digitized by PPRACHIN, SOA

ପତନଟି ଘଟିଲେ ପ୍ରକୃତି ତା ପାଇଁ ଜଡ଼ ପାଲଟିଯାଏ । ଯେଉଁ ସଂବେଦନଶୀଳତା ଭିତରେ ମାନବ ହୃଦୟରେ ପ୍ରକୃତିର ଭାବ ନିବେଦନ ପ୍ରତିସ୍ପଂଦନ ଜଗାଏ, ସେ ସଂଯୋଗ ସୂତ୍ରଟି ତୁଟିଗଲେ ପ୍ରକୃତି ବ୍ୟକ୍ତି ଭାବନାର ବାହାରେ ପଡ଼ିରହେ ।

ସେଇ ଜଡ଼ମାଟି ତଥାପି ଜୀବନର ପରମ ଉତ୍ସରଟିକୁ ଧରିରଖିଥାଏ । ପୃଥିବୀର ଅସଂଖ୍ୟ ଜଂଜାଳ, ଅନୁଦାର ଆଘାତର ଯଂତ୍ରଣା ସତ୍ତ୍ୱେ ଜୀବନ ଜାଗ୍ରତଥାଏ; ସକଳ ପ୍ରତିକୂଳତା ସମ୍ମୁଖରେ ବଂଚିରହିବାର ସେଇ ପ୍ରବଳ ଶକ୍ତିଟି, ହୃଦୟର ସେହି ଦୁର୍ଜୟ ଦୁର୍ବାର ଆକୂତିଟି ଯେପରି ଜୀବନକୁ ଧରଣୀର ପ୍ରୀତିମୟ ଅବଦାନ ରୂପେ ଲବ୍ଧ ହୋଇଥାଏ । ପୃଥିବୀର ଏଇ ପ୍ରୀତିଦାନ ଏକମାତ୍ର ଦାନ ଯାହା ଜୀବନକୁ ବଂଚିବାର ଯୋଗ୍ୟ କରିଛି, ବଂଚିବାର ସାର୍ଥକତା ଦେଇଛି । ନିଜର ଅମୂଲ୍ୟତାରେ ଜୀବନକୁ ମହାର୍ଘ କରିଛି । ସେଇ ପ୍ରୀତିର ସୁରଭି ହିଁ ଜୀବନର "ମରଣ ମଧ୍ୟେ ଅମୃତ ଆଘ୍ରାଣ" (୪୬) ସକଳ ପରାଜୟର ଗ୍ଲାନି ଭିତରେ ତାହା ହିଁ ଜୀବନର ଏକମାତ୍ର ଜୈତ୍ରଗାନ । (୪୭)

ଏ ପ୍ରୀତିଭାବନା ସହ ବୈଦିକ ବାଙ୍ମୟର 'ମଧୁମିତା ପୃଥିବୀ' ରୂପଚେତନାଟି ମିଶି ରହିଛି । ଏ ପ୍ରୀତିରେ ଧରଣୀର ଅଶ୍ରୁ ମିଶିଛି । ଏ ଆଶ୍ରୟଟିର ପରିକଳ୍ପନା ସେହିଠାରେ ଓ ସେତିକିବେଳେ ଯେତେବେଳେ ଏ ଧରା ମାନବର ଲୀଳା ଖେଳାପାଇଁ ଧରଣୀର ସୃଷ୍ଟି ବୋଲି ରହସ୍ୟବାଦୀ କବିଗୁରୁ ବାଢ଼ିଛି । ସ୍ରଷ୍ଟାର ଏ ସୃଷ୍ଟି ପ୍ରୀତିକୁ ବୈରାଗୀର 'ବିରକ୍ତ-ଦର୍ଶନ' ବୁଝେ ନାହିଁ । ମାଟି ଅନୁରାଗୀ ଜୀବନବାଦୀ ହିଁ ବୁଝେ । କବି ଏଠାରେ ହୁଇଟ୍‌ମ୍ୟାନ ଓ ରବୀନ୍ଦ୍ରଚେତନାର ଅଧିକ ନିକଟତର । ସ୍ରଷ୍ଟାର ପ୍ରୀତି ଯେ ଧରାର ଆଶ୍ରୟ ରୂପ ଓ ଧରାବାସୀର ଆଶ୍ୱାସନା, ଏ ପ୍ରୀତି ସମ୍ପର୍କର ଉଦ୍‌ବୋଧନ କେନ୍ଦ୍ର କେବଳ ଧରାଧାମରେ, ଧରାବର୍ଜିତ କଳ୍ପିତ ଅମରାରେ ନୁହେଁ । ଏହା ହିଁ କବିଙ୍କ ପ୍ରତିପାଦନ ।

'ଜୀବନଚିନ୍ତା'ରେ କବିକର୍ତ୍ତୃକ ଚିରାଚରିତ ଧର୍ମଧାରଣାର ଈଶ୍ୱରତତ୍ତ୍ୱ (Theology) ଉପେକ୍ଷିତ । କବି ଦିବ୍ୟ, ଅମୃତ, ଶାଶ୍ୱତ, ସ୍ୱର୍ଗ ଏ ଶବ୍ଦମାନଙ୍କର ପର୍ଯ୍ୟାପ୍ତ ପ୍ରୟୋଗ, ଧର୍ମାତ୍ତ୍ୱିକ ଦାବୀରୁ ନୁହେଁ, ଅଧ୍ୟାତ୍ମ-ପ୍ରତୀକ ରୂପେହିଁ ଆବଶ୍ୟକ ମଣିଛନ୍ତି । ସୌଂଦର୍ଯ୍ୟ / ପ୍ରେମ / ସତ୍ୟ ତାଙ୍କର ବିଧାତାପୁରୁଷ ବୋଲି ମନେହୁଅଂତି । କବି ଆତ୍ମାର ଅମରତ୍ୱରେ ପୂର୍ଣ୍ଣ ବିଶ୍ୱାସ ଥାପି ସ୍ପଷ୍ଟ ଘୋଷଣା କରନ୍ତି, "ପାର୍ଥିବ ମୋ ଜନ ଆତ୍ମା, ହୃଦଗର ଜ୍ୟୋତି ସଦାକାଳେ ।" କବି ଜୀବନର ସକଳ ଅନୁଭୋଗକୁ ଆପଣାର ଅସାମର୍ଥ୍ୟ ବୋଲି ମାନିନେଇଛନ୍ତି । ସତ୍ୟ ଶିବକୁ ସଂଧାନ କରିବାର ବ୍ୟାକୁଳତା ମର୍ତ୍ତ୍ୟଚେତନାର ଅସତ୍ୟ-ଅଶିବ ଭିତରେ ମଧ୍ୟ ରହିଛି । ଧର୍ମ, ଶାସ୍ତ୍ର, ମନ୍ଦିରର ଈଶ୍ୱର ସେ ସତ୍ୟ/ଶିବର ସ୍ଥାନ ପୂରଣ କରିପାରିନାହାଂତି । ('ଶୃଙ୍ଖଳ ସୃଷ୍ଟି', 'ମୂକଦେବତା' 'ଦେବପୂଜା') ମାତ୍ର ଯେଉଁ ପ୍ରୀତି-ରୂପ ଭିତରେ କବି, "ପାଏ ଥରେ ଥରେ/ଦେବତାର ଅନୁଭବ ମୋର ଏଇ ଜୀବନ ପଥରେ", (୪୮) ବୋଲି କହିଥିଲେ, ସେଇ ପ୍ରେମ ହିଁ ଏବେ ଈଶ୍ୱରଙ୍କ ସ୍ଥାନ ପୂରଣ କରିଛି । ସୌଂଦର୍ଯ୍ୟରସିକତା କବିଙ୍କୁ ଚେତନାର ଊର୍ଦ୍ଧ୍ୱଲୋକରେ 'ଦେହହୀନ ସୌଂଦର୍ଯ୍ୟର କ୍ରୀଡ଼ା' ଉପଭୋଗ

(୪୬) ଗ୍ରଂଥାବଳୀ ୧ମ—ପୃ. ୩୮୯

(୪୭) "ଅନଂତ ବ୍ୟର୍ଥତା ମଧ୍ୟେ ଏ ଧରଣୀ, ଏ ଦାନ ପରମ ।" ଗ୍ରଂଥାବଳୀ ୧ମ—ପୃ. ୩୯୦

(୪୮) 'ବଂଧନ' (ହେମଶସ୍ୟ) ପୃ. ୩୯୯, ଗ୍ରଂଥାବଳୀ ୧ମ

Digitized by PPRACHIN, SOA

ପାଇଁ ସୁଯୋଗ ଦେଇଛୁ ଏବଂ ପ୍ରେମ ଦେଇଛୁ ସେ ସୌନ୍ଦର୍ଯ୍ୟ ସାଧନାର ଚରମ ମୂଲ୍ୟ । ପାର୍ଥିବ ଚେତନାରୁ ଅଧ୍ୟାତ୍ମ ଉପଲବ୍ଧିର ଏ ଗତିମାର୍ଗ ବା କ୍ରମରୂପାନ୍ତରଟି ସକଳ ଅତୀନ୍ଦ୍ରିୟବାଦୀ କାବ୍ୟାଦର୍ଶ ସ୍ୱୀକୃତ । କବି ଏଇ ପ୍ରେମ-ସ୍ୱରୂପ ଈଶ୍ୱରଙ୍କୁ ହିଁ ଦୃଶ୍ୟମାନ ଧରଣୀର ସ୍ତରେ ସ୍ତରେ ବିଦ୍ୟମାନ ଦେଖିଛନ୍ତି । 'ବିଶ୍ୱରୂପ' କବିତାଟି ଉପନିଷଦୀୟ ଉପଲବ୍ଧି 'ତସ୍ୟ ଭାସା ସର୍ବମିଦଂ ବିଭାତି'ର କାବ୍ୟୋଚ୍ଛ୍ୱାସ ମାତ୍ର । ନିର୍ଜନ ଗିରିଗୁହା, ଦେବାଳୟ ବା ଯୋଗାସନର ନିର୍ଲିପ୍ତତାରେ ଈଶ୍ୱରଙ୍କୁ ଖୋଜିବା ଏକମାତ୍ର ଅଧ୍ୟାତ୍ମ ସାଧନା ନୁହେଁ । ଚେତନାକୁ ବିଶ୍ୱମୟ ପ୍ରସାରି ପାରିଲେ ଏ ଉପଲବ୍ଧି ସର୍ବଥା ସମ୍ଭବ । ଏହାହିଁ ମିଷ୍ଟିକର ବହିର୍ମୁଖୀ (Extrovertive) ରହସ୍ୟୋପଲବ୍ଧି । କବିଙ୍କ ନିରୋଳା ଉପଲବ୍ଧିରେ ଏ ସାକ୍ଷାତକାରଟିର ସଂବାଦ ପରିବେଶିତ । "ଯହିଁ ମୁଁ ପକାଏ ଦୃଷ୍ଟି ମୋର/ ତହିଁ ପାଏ ବିରାଟ ସ୍ରଷ୍ଟାର ସତ୍ୟ ସ୍ପର୍ଶ ମୋ ଇନ୍ଦ୍ରିୟେ ।" କେବଳ ଭବ୍ୟ, ବିରାଟ, ମହାନ୍‌ରେ ତାଙ୍କର ପ୍ରକାଶ ନୁହେଁ, ତୁଚ୍ଛାତିତୁଚ୍ଛରେ ମଧ୍ୟ ତାଙ୍କର ବିଳାସ, ବ୍ୟକ୍ତିର ଶ୍ୱାସଧାରେ, ଧରଣୀର ଅଣୁତମ ସ୍ଥିତିରେ ମଧ୍ୟ ତାଙ୍କର ଅସ୍ତିତ୍ୱ-ଉଦ୍‌ଭାସ । କାବ୍ୟିକ ରସୋତ୍ତୀର୍ଣ୍ଣତାକୁ ଲାଭ କରିନପାରିଲେ ବି ଏ କବିତାମାନ ଭାବବିପୁଳ । "ଖିଲ ବିଶ୍ୱ ଯାର ପୂଜାବେଦୀ / ଦେଉଳରେ କାର ପୂଜା ପୁରୋହିତ କରେ"—ଏ ଉକ୍ତି ଏକ ବିପୁଳଦ୍ରଷ୍ଟା କବିପ୍ରାଣର ମୁଗ୍ଧ ବନ୍ଦନାଗୀତି ରୂପେ ଉଚ୍ଚାରିତ ।

କବିଙ୍କ ପ୍ରତିକ୍ରିୟା–ଯିଏ ସର୍ବପ୍ରକାଶର ମାଧ୍ୟମରୂପେ ଆଲୋକକୁ ସୃଷ୍ଟି କରିଛନ୍ତି, ଦେବାଳୟର ରୁଦ୍ଧ ଅନ୍ଧକାର ଭିତରେ ସେ ବନ୍ଦୀ ଅବସ୍ଥାରେ ଗୋପନ ରହିବେ କାହିଁକି ? "ଅନ୍ତରରୁ ଅନ୍ତରୀକ୍ଷେ ବ୍ୟାପି ବିରାଜିତ ଯେ ଭୁବନେଶ୍ୱର"—ତାଙ୍କୁ ନିରୁଦ୍ଧ ଶିଳାମନ୍ଦିରରେ ନିର୍ଜୀବ ବିଗ୍ରହ ସଜାଇଦେବାକୁ କବିଙ୍କ ମୁକ୍ତ ଚେତନା ବିଦ୍ରୋହ କରିଛି । କବି ଚେତନାର ଅନୁଭବକୁ ପ୍ରତି ଜୀବନ ଭିତରେ ଖୋଜନ୍ତି । ବିବେକାନନ୍ଦଙ୍କ ନିର୍ଦ୍ଦେଶିତ, "ବହୁରୂପେ ସମ୍ମୁଖେ ତୋମାର'—ଯେଉଁ ଜୀବ ଈଶ୍ୱରଙ୍କ ସଚଳ ପ୍ରତିମା ହୋଇ ବିଦ୍ୟମାନ, ସେଇ ବୈଷ୍ଣବ ବନ୍ଦିତ ନରନାରାୟଣ, ହୁଇଟ୍‌ମାନଙ୍କ 'Divine average'ର ସୁଖ-ଦୁଃଖ ବୋଧ ସହ ଅନ୍ତରଙ୍ଗ ହେବାହିଁ ଐଶ୍ୱରିକ ସାନ୍ନିଧ୍ୟ । ତାଙ୍କର ଲୁହ ପୋଛିଦେବାରେ ଦେବତାଙ୍କୁ ସ୍ପର୍ଶ କରିବାର ମୁଗ୍ଧାନୁଭବ ଲାଭ । କବିମାନେ ଯେ କେବଳ କଳ୍ପନାବିଳାସୀ ଅବାସ୍ତବ ଏକ ସ୍ୱର୍ଗସୁଖପିପାସୀ, ପଳାୟନ ପର ଅତୀନ୍ଦ୍ରିୟବିଳାସୀ ପଦ୍ମଭୃଙ୍ଗ, ସମକାଳୀନ ଓଡ଼ିଆ ସାହିତ୍ୟରେ ପ୍ରକଟିତ କବିଧର୍ମର ଏ ପ୍ରବଣତାକୁ ଯେପରି ମାନସିଂହଙ୍କର ବିପୁଳ ଜୀବନବୋଧ କଳାପ୍ରାଣ ଶିଳ୍ପୀଚେତନା ପ୍ରବଳଭାବେ ବିରୋଧ କରେ । ମାନସିଂହଙ୍କ ଆତ୍ମସଚେତନ କାବ୍ୟୋଚ୍ଚାରଣ ବରଂ ଅଧିକ ବାସ୍ତବତାମୁଖୀ, ସମଗ୍ର ଜୀବନ ଓ ବିଶ୍ୱମାନବର ସମୁଦାୟ ସୁଖଦୁଃଖ ଜୀବସ୍ପନ୍ଦିତ । କବି ସମାଜର ଅର୍ଥଗତ ବିଭେଦରେ ବ୍ୟଥିତ । ମାତ୍ର ମାର୍କ୍‌ସୀୟ ଅର୍ଥନୀତିଗତ ସାମ୍ୟବାଦରେ ଏହାର ସମାଧାନ ଦେଖିନାହାନ୍ତି । ସେ ବରଂ ଏ ବିଷୟରେ ବେଶି ପ୍ରାଚୀନ । ଭାରତୀୟ ସାମ୍ୟବାଦୀ ଚେତନାର ମୂଳ-ଋକ୍ 'ସଂଗଚ୍ଛଧ୍ୱଂ ସଂବଦଧ୍ୱଂ'ରେ ଅଭିଳାଷୀ । ଦିବ୍ୟ-ଉତ୍ସ-ବୋଧୀ ଗଭୀର ମାନବିକତାରୁ ସଞ୍ଜାତ ସ୍ନେହ ପ୍ରେମ କରୁଣାହିଁ ଅପରର ଦୁଃଖ ଲାଘବ ପାଇଁ ସମର୍ଥ; ଧ୍ୱଂସ ନୁହେଁ, ତାହା ମଧ୍ୟ ଏକପ୍ରକାର ବିରୋଧ, ବିଭେଦ । ଭାରତୀୟ ବିଶ୍ୱର ବୈଷମ୍ୟ ଭିତରେ ଦ୍ୱନ୍ଦ୍ୱର କୌଣସି ସମାଧାନ ଦେଖେନାହିଁ, ସାମ୍ୟର ସୂଚନା ପାଏନାହିଁ । ଏ ଚେତନାର ଉତ୍ତରଦାୟାଦରୂପେ ମାନସିଂହ ବୈଦିକ ଋଷି କବିର ବାଣୀକୁ, ବୁଦ୍ଧଙ୍କର ଆଶ୍ୱାସନା ଓ ରାମକୃଷ୍ଣଙ୍କର ସ୍ନେହମୟତାକୁ ପୁଣି ଯେପରି ବିଂଶ ଶତକରେ ପ୍ରତିଧ୍ୱନିତ କରିଛନ୍ତି । ଘୃଣା ନିନ୍ଦା ପ୍ରଭୃତି ପ୍ରତି କବିଙ୍କ ସଂକୋଚନ ଏବଂ ସକଳ ଶାସ୍ତ୍ରବନ୍ଧନ, ସାମ୍ପ୍ରଦାୟିକ ବିଭେଦ, ସାମାଜିକ ଓ

Digitized by PPRACHIN, SOA

ଆର୍ଥନୀତିକ ବୈଷମ୍ୟର ଊର୍ଦ୍ଧ୍ୱରେ ଏକ ସୁନ୍ଦର ସମାଜ ଜୀବନ ଗଠନ ତାହାହିଁ ମାନସିଂହଙ୍କର ପରିକଳ୍ପିତ ୟୁଟୋପିଆ ।

ରହସ୍ୟବାଦୀ ଦୃଷ୍ଟିକୋଣରୁ 'ଜୀବନଚିତା' କବିଙ୍କ ଅଧ୍ୟାତ୍ମ ବିବର୍ତ୍ତନରେ ଆତ୍ମଶୁଦ୍ଧି ପର୍ଯ୍ୟାୟ (Purgation) ବୋଲି ବିଚାର କରାଯାଇପାରେ । ଏହା କବିଙ୍କର ଆତ୍ମାଭିସାର ପଥର ଅନ୍ଧକାର-ସଚେତନତାର କାବ୍ୟରୂପ । ସଙ୍କଟ ଏକ ଆତ୍ମଗ୍ଲାନି, ସଂକୋଚ, ଅସହାୟବୋଧ,—ଏହି ଖେଦ ବ୍ୟକ୍ତିଗତଭାବେ ଅଜ୍ଞାନତା ସଂପର୍କିତ ଓ ସାମାଜିକ ଜୀବନରେ ବିଭେଦ ବୈଷମ୍ୟଜନିତ ମନସ୍ତାପ ସୃଷ୍ଟି । କବି ଉଭୟର ସମାଧାନ ଲୋଡ଼ିଛନ୍ତି, ଆଲୋକ ଖୋଜିଛନ୍ତି । (୪୯) କ୍ରମଶଃ ଚେତନାର ଗଭୀରତାକୁ ପ୍ରବେଶ କରିଛନ୍ତି । ଆତ୍ମଗ୍ଲାନି ପୀଡ଼ିତ ଚେତନା ପ୍ରଥମେ ପ୍ରଥମେ ଅଦୃଷ୍ଟ ଦୈବ ନିକଟରେ ଅଭିଯୋଗ କରେ, ବିଦ୍ରୋହ କରେ, ଯନ୍ତ୍ରଣାକୁ ବଡ଼ କରି ଦେଖେ; କ୍ରମଶଃ ଦେଖେ ଯେ ତାର ସକଳ ଯନ୍ତ୍ରଣାବୋଧର ଉତ୍ସ ସେଇ ନିଜେ, ତାହାର ସୀମାସ୍ଥିତି । ତାପରେ ଆରମ୍ଭ ହୁଏ ଭିନ୍ନ ଏକ ଯନ୍ତ୍ରଣା, ଆତ୍ମ ସଂକୋଚନର, ଅନୁତାପର । ଗ୍ଲାନିମୁକ୍ତ ହେବାପାଇଁ ଦେବତା ନିକଟରେ ଈଶ୍ୱର ନିବେଦନ ଗୁଞ୍ଜରିଉଠେ, କ୍ରମଶଃ ସତ୍ୟର ଆଉ ଏକ ପାର୍ଶ୍ୱ ତାର ଚେତନାରେ ଉଦ୍‌ଭାସିତ ହୋଇଉଠେ ଯେ ଚିତ୍ତଶୁଦ୍ଧି ପାଇଁ ଦେବତା ଯେଉଁ ଶକ୍ତି ପ୍ରେରଣ କରନ୍ତି, ତାକୁ ଗ୍ରହଣ କରିବାର ସାମର୍ଥ୍ୟ ମଧ୍ୟ କ୍ଷୀଣାଧାର ଈଶ୍ୱର ନଥାଏ । ସେ ଅକ୍ଷମତାର ଯନ୍ତ୍ରଣାହିଁ ଚିତ୍ତ-ଶୁଦ୍ଧିର ପ୍ରକୃତ ଯନ୍ତ୍ରଣା, ଯାହା କେବଳ ଉଚ୍ଚାରଣ କରିପାରେ, "ତୁମ କରୁଣାଯୋଗ୍ୟ ନୁହେଁ ମୁଁ, ତୁମ କରୁଣା ଲୋଡ଼ା ମାଗିବି ।"(୫୦) ଜୀବନ ଯେଉଁ ଦୁଃଖ ଭୋଗୁଛି ତାହା ବୋଧେ ତାର ଉଚିତ ପ୍ରାପ୍ୟ । ଅବଶ୍ୟ, 'ଅଭିମାନ କରିବନାହିଁ'ର କାରୁଣ୍ୟ ଭିତରେ କବି ହୃଦୟର ଅଭିମାନ ବେଶ୍ ଇଙ୍ଗିତମୟ ହୋଇ-ଉଠିଛି । ଦେବତାର ଇଚ୍ଛା କବି ମାନିନେବାକୁ ପ୍ରସ୍ତୁତ, ମାତ୍ର ଏହା ନିରୋଳା ଅଭିମାନର ଅବୁଝାପଣ ନୁହେଁ । 'ଦୁଃଖ ଶାନ୍ତି ମନେହେଲେବି ପରମ କରୁଣାର ଏକ ପରୋକ୍ଷ ରୂପ, ଈଶ୍ୱର ଅହଂକାରନାଶ ପାଇଁ ଜୀବନର ଦୁଃଖଭୋଗ । ଏ ନୂତନ ଉପଲବ୍ଧି କବିଚେତନାରେ ନୂତନ ଅଧ୍ୟାତ୍ମ ଉନ୍ମୀଳନର ସୂଚନା ଦିଏ । 'ଆହୂତି' 'ତୁମର ପ୍ରୟୋଜନ' ଓ 'କୃତାର୍ଥ' ପରି କବିତାମାନଙ୍କରେ ଜୀବନର ଦୁଃଖ ଦୁର୍ବିପାକକୁ ଦେବତାର ଉଦ୍ଦେଶ୍ୟମୂଳକତା ରୂପେ ଚିହ୍ନିବାକୁ ଏବଂ ଗ୍ରହଣ କରିନେବାକୁ କବିଚିତ୍ତ ପ୍ରସ୍ତୁତ । ଏ ନବୀନ ଉପଲବ୍‌ଧିରେ କବି ଦେଖନ୍ତି ଚିରନ୍ତନ ସୃଷ୍ଟି ଯଜ୍ଞରେ ବିଶ୍ୱ ମଙ୍ଗଳ ପାଇଁ ବ୍ୟକ୍ତି ଜୀବନକୁ ଶ୍ରଦ୍ଧାପୂତ ହୋମାନଳରେ ଆହୁତି ଦେବାକୁ ହୁଏ । ସେ ଆହୁତିରେ ବ୍ୟକ୍ତିଜୀବନ ସିଦ୍ଧ ହୁଏ, ଶୁଦ୍ଧ ହୁଏ । ଦୁଃଖ ସେହି ହୋମାଗ୍ନିର ତପ୍ତ ଧାସ । ଆତ୍ମାର ପବିତ୍ରତା ସେହି ଯଜ୍ଞ-ଧୂପର ମହକ ଉଲ୍ଲାସ ।

ଅନଳ ସ୍ନାନ ପରେ କବିଚେତନା କ୍ରମଶଃ ସ୍ୱର୍ଣ୍ଣପ୍ରଭ ହୋଇଉଠୁଛି । ଅଗ୍ନି ଦାହ କଲେ ମଧ୍ୟ ଆଲୋକିତ କରିଥାଏ । କବି ସେ ଆଲୋକକୁ ବିଶ୍ୱର ଅନ୍ଧକାର ବିନାଶ ପାଇଁ କାମନା କରନ୍ତି । ତାହାହିଁ ସକଳ ଦୁଃଖଭୋଗର ସାର୍ଥକତା । ନିରର୍ଥକ ଅଶ୍ରୁ ସେଇ ଉପଯୋଗ ଭିତରେ ପରମ ଚରିତାର୍ଥତା ଲାଭକରେ । ଈଶ୍ୱର ଏ ଦୀନତମ ସ୍ୱୀକୃତି ହିଁ ତାର ଅହଂକାରନାଶର ପ୍ରାଥମିକ ସଙ୍କେତ ।

---

(୪୯) "ଦେବତା ଧରି ହାତ ଆଲୋକ ଜାଳି ମୋର ପଥରେ ।" 'ଆଲୋକ ମାଗେ'

—ଗ୍ରନ୍ଥାବଳୀ, ୧ମ ପୃ. ୪୦୪

(୫୦) 'ଆହୁତି' ଗ୍ରନ୍ଥାବଳୀ ୧ମ ପୃ. ୪୦୫

Digitized by PPRACHIN, SOA

ଦୁଃଖ ମଧ୍ୟରେ ଯେ ଅହଂ ବିଲୋପର ପଥ ପ୍ରଧାନ ହୁଏ, କବି ଚେତନାରେ ଏ ଉପଲବ୍ଧି ସ୍ପଷ୍ଟ ହୋଇଉଠିଛି । ତେଣୁ 'ଦିବ୍ୟକୃପା' ସମ୍ପର୍କରେ ଏକ ଅମ୍ଳ-ଗମ୍ଭୀର ବିଶ୍ୱାସ ନିଷ୍ଠିତ ପଥରେ କବିସତ୍ତାର ଯାଚାଭିସାର ରଚନା । ଭକ୍ତିମାର୍ଗ, ଅଧ୍ୟାତ୍ମ ସାଧନା, ରହସ୍ୟଚେତନାର ଏହି ସ୍ତରପର୍ଯାୟ ତେଣୁ ଏକ ବିଶେଷ ପଥ-ସୂଚକ ସ୍ତମ୍ଭ ଚିହ୍ନ ।

ଅହଂ ଯେତେ ସଂକୁଚିତ ହୋଇଆସେ, ଈଶ୍ୱରଙ୍କ କରୁଣାର ସ୍ୱରୂପ ସେତେ ସ୍ପଷ୍ଟ ହୋଇଉଠେ । ତେଣିକି ଦୁଃଖର ଭୟ ଆଉ ରହେନାହିଁ । ବରଂ ମନେହୁଏ ବ୍ୟକ୍ତିଗତ ସବୁ ଦୁଃଖକୁ ଆତ୍ମସାତ୍ କରି ପରମ କଲ୍ୟାଣ ଏକ ସ୍ନେହମୟ ଆଶ୍ୱାସନା ଯେପରି ଆକାଶରୁ ମାଟିକୁ ଘେରି ଉଚ୍ଛ୍ୱଳିତ ହୋଇଯାଇଛି । ତେଣିକି ପ୍ରାଣରେ କେବଳ କୃତକୃତ୍ୟତା, କୃତଜ୍ଞତାର ବୋଧଟି ଜାଗିରହେ । ଯେପରି ସମଗ୍ର ଜୀବନର ବିହନମୟରେ ଜନ୍ମଜନ୍ମାଂତର ଧରି ସ୍ରଷ୍ଟାର ଏ ଅହେତୁକ ସ୍ନେହର ପ୍ରତିଦାନ ଦେଇହେବନାହିଁ । ବ୍ୟକ୍ତିର କୃତଜ୍ଞତାଟିକିକ ଏତେ କ୍ଷୁଦ୍ର ଯେ ତାହା ମଧ୍ୟ ଅର୍ପଣଯୋଗ୍ୟ ନୁହେଁ— ଅଥଚ ସେତିକ ଛଡ଼ା ସତ୍ତାର ନିଜସ୍ୱ ବା କଣ ?

'ଦୁବାର ଆରାଧନା'ରେ ଏହି ଭାବଚେତନାର ଏକ ଚମତ୍କାର ପ୍ରତୀକାତ୍ମକ ଅଭିବ୍ୟଂଜନା ଘଟିଛି । ଏ କବିତାଟିକୁ କବିଆତ୍ମାର ଅଂତର୍ଦେବତାଂକୁ ନିବେଦିତ ଗମ୍ଭୀର ପ୍ରାଣ ସମର୍ପଣ ସଂଗୀତ ବୋଲି କୁହାଯାଇପାରେ ।

ଦୂବା ଉଦ୍ଭିଦ ସୃଷ୍ଟିର କ୍ଷୁଦ୍ରତମ ପ୍ରକାଶ । ତଥାପି ବିରାଟ ସୂର୍ଯ୍ୟର ଆଲୋକ ତାକୁ ମଧ୍ୟ ସ୍ନେହସ୍ପର୍ଶ ଦିଏ । ପ୍ରୀତି ସଂପର୍କରେ କ୍ଷୁଦ୍ର ବିରାଟର ବିଚାର ଅର୍ଥହୀନ । ଏହାହିଁ କବିତାର ମର୍ମାର୍ଥ । ଈଶ୍ୱରଂକ ଅସୀମ ପ୍ରେମ ସଂପର୍କରେ ବ୍ୟକ୍ତି ଆତ୍ମାର ଆଶା, ଅଧିକାର ଓ ଭରସାର ଦୃପ୍ତ ମନସ୍ତତ୍ତ୍ୱ ଏଥିରେ ପ୍ରତିଫଳିତ ।

ପ୍ରୀତିପାତ୍ର ଯେତେ କ୍ଷୁଦ୍ର ହେଲେ ମଧ୍ୟ ଏକ 'ପ୍ରେମ-ରୂପ'ର ଅଂଶଭୁକ୍ତ । ଏ ଗର୍ବ ସଚରାଚର ସ୍ୱାଭାବିକ । ପ୍ରେମ ସ୍ୱୟଂ ବିରାଟ, ମହାନ୍ । ସେଇ ବିରାଟତ୍ୱ ଭିତରେ ଯାହା କିଛି ଅଂତର୍ଭୁକ୍ତ ହୁଏ, ସବୁ ତାର ଛୁଆଁ ପାଏ । ମଳୟର ସ୍ପର୍ଶ କେବଳ ଚଂଦନ ତରୁରେ ନୁହେଁ, ଦୂବାଦଳରେ ବି ଲାଗେ । ଆକାଶର ସୂର୍ଯ୍ୟାଲୋକ ଧରିତ୍ରୀର କୋଣ ଅନୁକୋଣ ଚମକିତ କରିଦିଏ । ଏହା ହିଁ ପ୍ରେମର ଅଭିମାନ । (୫୧) ପ୍ରେମର ମଧୁ ସବୁ ସ୍ୱାଦକୁ ମଧୁର କରିଦିଏ । ଏ ଅନୁଭବଟି ପାର୍ଥିବ ଅପାର୍ଥିବ ସକଳ ପ୍ରେମ ସମ୍ପର୍କରେ ପରିଲକ୍ଷିତ । ପ୍ରେମ ଏକ ଅଗ୍ନି କଣା ଭୂଲ୍ୟ । ଯେତେ କ୍ଷୁଦ୍ର ତାର ଆଧାର, ଯେତେ କ୍ଷୀଣ ତାର ପ୍ରକାଶ ହେଲେ ମଧ୍ୟ ତାହା ସାପ୍ତିମଂତ, ଦାହିକାଶକ୍ତିପୂର୍ଣ୍ଣ, ଆଲୋକିତ ନକରି ତାହା ରହିପାରିବନାହିଁ । କିଏ, କେଉଁଠାରେ, କେତେବେଳେ, କିପରି ଆଲୋକିତ ହେବ, ଆଲୋକଧାର ନିକଟରେ ସେ ପ୍ରସଙ୍ଗ ଅବାଂତର । ପ୍ରେମର ଅବିନାଶୀ ପ୍ରକାଶରେ ସବୁ କିଛି ଶାଶ୍ୱତର ମହତ୍ତ୍ୱମତା ଭିତରକୁ ପ୍ରସରି ଆସଂତି । ସ୍ପର୍ଶମଣି ଲୌହମାଳିନ୍ୟକୁ ପୋଛି ଦେବାପରି ପ୍ରେମ ହୃଦୟ ସକଳ ତିକ୍ତତାକୁ ମଧ୍ୟ ମଧୁର ରସାଣିତ କରିଦିଏ । ତେଣୁ ପ୍ରେମାସ୍ପଦ ସମ୍ପର୍କରେ ପ୍ରତ୍ୟେକର ଏକ ମଧୁର ଅଭିମାନ, "ଭାବେ ମୁଁ ମୋହଲାଗି ନିତ୍ୟ ଆସ ।"

---

(୫୧) "ଆମି ବିପୁଲ କିରଣେ ଭୁବନ କରି ଯେ ଆଲୋ,
ତବୁ ଶିଶିରଟିରଣାତେ ଆପ୍ନେ ଧିତେ ପାରି, ବାସିତେ ପାରିଯେ ଭାଲୋ ।"
ରବୀନ୍ଦ୍ରନାଥ—'ଉତ୍ସର୍ଗ' (ପ୍ରସାଦ)—'ସଂଚୟିତା'—ପୃ. ୪୬୫

Digitized by PPRACHIN, SOA

କବିସତ୍ତ୍ୱା ନିଜର କ୍ଷୁଦ୍ରତା ସମ୍ପର୍କରେ ସଚେତନ, ତଥାପି ବିରାଟ ସହ ତାର ସମ୍ବନ୍ଧ-ସୂତ୍ର ସମ୍ପର୍କରେ ସେ ପୂର୍ଣ୍ଣ ଆଶ୍ୱସ୍ତ। ତାର ପ୍ରମାଣ, ବହିର୍ଜଗତର ସୂର୍ଯ୍ୟାଲୋକସହ ଅଂତରର ଆଲୋକମୟତାର ଭାବଗତ ସାମଂଜସ୍ୟ ସ୍ଥାପନା। ଏହା ଜାଗରଣ ପ୍ରତୀକର (psychic awakening ତାତ୍ପର୍ଯ୍ୟପୂର୍ଣ୍ଣ ଉଚ୍ଚାରଣ। ଆଲୋକଧାରା ସତେ ଯେପରି ଦେବତାର ହସ ରୂପେ ତାଂର ଶ୍ରଦ୍ଧା ଓ ଆନଂଦକୁ ପୃଥିବୀର କୋଣ ଅନୁକୋଣ ବିସ୍ତାରିଦିଏ। ସ୍ନାନରତମ, କ୍ଷୀଣତମକୁ ତାର ପରମ ଆଶ୍ୱାସ ପ୍ରେରଣ କରେ। ଅଥଚ କ୍ଷୁଦ୍ର ପ୍ରାଣରେ ତାହାର ଛୁଆଁ ଯେ ବାଜେ ("ସ୍ନାନ ଦୂବା ମୁଁ ନିତ ତୁମରେ ସ୍ମରେ।" ସ୍ପଂଦନ ଯେ ଜାଗେ, ସେକଥା ପୁଣି ସେ ମହାନ୍ ପ୍ରେମ ଜାଣେ, ଏ ସ୍ୱାଭାବିକ ପ୍ରଶ୍ନ ଆଶଂକା ବି କବି ପ୍ରାଣରେ ଜାଗିଛି। କ୍ଷୁଦ୍ର ଅଳ୍ପକେ ଭରିଯାଏ, ଅଳ୍ପକେ ଉଚ୍ଛ୍ୱସିତ ହୁଏ। ନିବିଡ଼ବିଧି ବିପୁଳାନୁଭୂତିର ଭାବୋଲ୍ଲାସ ପରେ ଏହା ସ୍ୱାଭାବିକ ମନସ୍ତାତ୍ତ୍ୱିକ ଆଶଂକା ଯେ, ବିରାଟ ନିକଟରେ କ୍ଷୁଦ୍ରର ଏ ପ୍ରୀତି ସମ୍ବାଦଟି ପହଞ୍ଚେ ତ ! ଏ ପ୍ରଶ୍ନ ବିରାଟର ସାମର୍ଥ୍ୟକୁ ନୁହେଁ, ନିଜ ସଙ୍କୋଚନର ଲଜ୍ଜାକର ଅସାମର୍ଥ୍ୟକୁ।

ପ୍ରେମର ପ୍ରଧାନ ଅବଲଂବନ କିଂତୁ ଆଶା; ସକଳ ନାସ୍ତିବାଚକତା ଭିତରେ ବି ଯାହା ନିର୍ବାତ ରହିଥାଏ। ସେ ଆଶା ଯେପରି ମୋହମୟୀ ଭାଷାରେ କବିଂକୁ ଆଶ୍ୱାସନା ଦେଇଯାଏ—ବିଭୁ କରୁଣାର ସୂର୍ଯ୍ୟାଲୋକ ପ୍ରଥମ ସକାଳରେ ବିପୁଳ ଧରିତ୍ରୀକୁ ଭେଟିଲା ବେଳେ ସାମାନ୍ୟ ତୃଣ ବୋଲି ଦୂବାକୁ ଉପେକ୍ଷା କରେନାହିଁ, ବରଂ ସନ୍ତୋଳିଯାଏ। ପ୍ରାପ୍ତିର ଏଇ ଟିକକ ସ୍ୱୀକୃତିରେ କବିର ଅଭିମାନ ତୃପ୍ତ ହୋଇଉଠେ—"ହେ ପ୍ରେମିକ, ଖାଲି ମୋପାଇଁ ଯେପରି ପେଷିଛ ତାରେ।" (୫୨) ଆଗମନପରି ବିଦାୟ ଲଗ୍ନରେ ମଧ୍ୟ ସେ ପ୍ରେମ ସେହିପରି ବିଶ୍ଳସ୍ତ। ସନ୍ଧ୍ୟାର ଅସ୍ତରାଗ ଯେପରିକି ସେ ପ୍ରୀତିର ବିଷଣ୍ଣ ବିଧୁର ହସ ଟିକକରେ ବିଦାୟ ବାର୍ତ୍ତାର ମୌନ ପ୍ରକାଶ। ଦୂବା କ୍ଷୁଦ୍ର ହେଲେ ବି ପ୍ରେମର ଏଇ ଆୟୋଜନରେ କୃତକୃତ୍ୟ ହୋଇଯାଏ। ବିରାଟ ପ୍ରୀତିକୁ ଯତ୍ସାମାନ୍ୟ ପ୍ରତିଦାନ ସ୍ୱରୂପ ଶିଶିର ପ୍ରଣତି ଢାଳିଦିଏ।

କ୍ଷୁଦ୍ରତାର ଗ୍ଲାନି କିଂତୁ କବିଚେତନାରେ ପଳେ ପଳେ, ପ୍ରୀତିର ସେ ଦୁର୍ଭାବନା, ଶଂକା ଓ ସଂଶୟ ପ୍ରଣୟାନୁଭୂତି ସହ ନିତ୍ୟ ଜଡ଼ିତ। କବିଂକର ସଶଂକ ପ୍ରଶ୍ନ, "ନିବିଡ଼ ଏ ପୂଜା ଅବହେଳାର ଅଛି କି ଜାଣି ?" ପୁଣି କ୍ଷୁଦ୍ର ଦୂବାର ଏ ହୃଦୟ ନିବେଦନ ଟିକକ ବିରାଟର ଅପମାନ କରୁନାହିଁ ତ !"—ଏ କୁଂଠାଟିକୁ ପ୍ରୀତିର ମନସ୍ତତ୍ତ୍ୱରୁ ବାଦ୍ ଦେଇ ହେବନାହିଁ।

କବି ବଡ଼ ସଂତର୍ପଣରେ ହୃଦୟର ଗୁପ୍ତ ଭାବନାଟିକୁ ବାଢ଼ି ଛଂତି "ବୋଲନି ହେ ନାଥ ଜାଣେନି ମୁଁ ତୋତେ।" ପ୍ରଣୟର ଗୌରବରେ ଆପଣାର କ୍ଷୁଦ୍ରତାଗତ ସକଳ ଗ୍ଲାନି ସହଜରେ ମନେହୁଏ। ପ୍ରିୟର ସ୍ୱୀକୃତି ହିଁ ପ୍ରଣୟର ଏକମାତ୍ର ଅଭିମାନ, ପ୍ରୀତିପାତ୍ରର ଏକମାତ୍ର 'ମାନ'। ପ୍ରିୟତ ହତାଦର ସହିହୁଏ, ମାତ୍ର ପ୍ରେମକୁ ତାର ଅସ୍ୱୀକୃତି ? ହୃଦୟ ସହ ବଂଧା ସେଇ ଗୋଟିଏ ସମ୍ପର୍କର ଅସ୍ୱୀକୃତିରେ ଜଗତର ସବୁ ସମ୍ପର୍କ ଅର୍ଥହୀନ ହୋଇଯାଏ। ସେଇ ଗୋଟାଏ 'ନାଁ'ର ବଜ୍ରାଘାତରେ ଯେପରି ବ୍ୟକ୍ତିର ହସଖୁସିର ସମଗ୍ର ଦୁନିଆଁ ଭୂମିକଂପ-ବିପର୍ଯ୍ୟସ୍ତ ହୋଇଯାଏ। କବି ତେଣୁ କାମନା କରଂତି, 'ପ୍ରେମ ଅତଂତଃ ଏକ ପ୍ରତିଶ୍ରୁତି ହୋଇ, ସତ୍ୟାଭାସ ହୋଇ ବଂଚି ରହିଥାଉ। ପ୍ରୀତିର ଆଶାରେ ଏକ ଯାଦୁକରୀ ମାୟା ଅଛି ଯାହା ପ୍ରେମ-ଯୋଗ୍ୟ ହେବାପାଇଁ ବ୍ୟକ୍ତିକୁ ତାର ଅଲକ୍ଷ୍ୟରେ ବି ପ୍ରସ୍ତୁତ କରେ।

(୫୨) ମାନସିଂହ ଗ୍ରଂଥାବଳୀ, ୧ମ—ପୃ. ୫୦୩

Digitized by PPRACHIN, SOA

ସେଇ ପ୍ରସ୍ତୁତର ସୂଚନା, "ଚଂଦନ ପଂକେ ମୁ ବୁଝିଲିଣି ଭେଦାଭେଦ ।" (୫୩) ତାର ପୂର୍ଣ ଉପଲବ୍ଧି 'ରିକ୍ତତାର ଗୌରବ ।' ପାଇବା ନ ପାଇବାର ବିଚାରଟି ତ ସଦାବେଳେ ଆପେକ୍ଷିକ । ସଚରାଚର ଈଶ୍ୱର ବା ଜୀବନର ଅଧୀଶ୍ୱରଂକ ନିକଟରେ ଜୀବନର ବସ୍ତୁ ପାଇବା ନ ପାଇବାର ହିସାବ ଅଭିମାନ ଅଭିଯୋଗମାନ ଶୁଣାଯାଇଥାଏ, ଏହା ମଧ୍ୟ ଦେଖାଯାଏ ଯେ, ଗଭୀରତର ଉପଲବ୍ଧିରେ ପାର୍ଥିବ ପ୍ରାପ୍ତି ଅପାର୍ଥିବ ଲାଭ ପଥରେ ଅଂତରାୟ ହୋଇପାରେ ।

ପୃଥିବୀର ଦାନ ରୂପ 'ଭାଗ୍ୟ' ଶ୍ରେଷ୍ଠ କବିଂକ ବିଚାରରେ ଦୁର୍ଭାର ଦୁର୍ଭାଗ୍ୟ, ଯାହାଠାରୁ ନିଷ୍କୃତି ଲଭି ସେ ମଥା ନତ କରିବାର ସହଜ ସୁଯୋଗକୁ ଲାଭ କରିଛଂତି । ଶୂନ୍ୟପାତ୍ର ଏବେ ପୂର୍ଣତାର ଅପେକ୍ଷାରେ । କବି ଏଥିରୁ ତୁଚ୍ଛ କବିତ୍ୱ ବା ଅଧ୍ୟାତ୍ମ-ଅହଂକାର ପାଇଁ ଲେଖିଥିବା ଭଳି ମନେହୁଏ ନାହିଁ । ଜୀବନର ଅଶ୍ରୁଦଗ୍ଧ ଅନୁଭବ ଭିତରୁ ସେ ଏ ସତ୍ୟକୁ ନିଜସ୍ୱ କରି ଲାଭକରିଛଂତି ।

ଏଇ ଅଧ୍ୟାତ୍ମ ଭାବନା ପରବର୍ତ୍ତୀ କାବ୍ୟସଂକଳନ 'କୃଷ୍ଣ'ରେ ଅଧିକ ଗଭୀର ଓ ଅନୁଭୂତ ରସାଣିତ ରହସ୍ୟବାଦୀ ଉଚ୍ଚାରଣ ରୂପ ଲାଭ କରିଛି ।

'କୃଷ୍ଣ' ସଂକଳିତ ସନେଟଗୁଡ଼ିକୁ କବି "ଏକ ଶୋକ ବିକ୍ଷୁବ୍ଧ, ଅଶ୍ରୁ-ଦଗ୍ଧ ପ୍ରାଣର କାତର-ବାଣୀ ଓ ଚରମାକାଂକ୍ଷା" ବୋଲି ଭୂମିକାରେ ମତ ବ୍ୟକ୍ତ କରିଛଂତି । ଶୋକାକୁଳ ଚିତ୍ତରେ ହିଁ ଅଶ୍ରୁ ଆକାଂକ୍ଷାର ସାର୍ଥକ ଉଚ୍ଚାରଣ ଘଟେ । ଦୁଃଖସହ ସାକ୍ଷାତ୍କାର ପୂର୍ବରୁ ଜୀବନ ଆକାଂକ୍ଷାର ରୂପ ଜାଣେନାହିଁ । ଏ ସଂପର୍କରେ Mr. Josiah Royce ଙ୍କର 'The World of the Individual' ପୁସ୍ତକରେ ପ୍ରଦତ୍ତ ନିମ୍ନୋକ୍ତ ମଂତବ୍ୟଟି (୫୪) ପ୍ରଣିଧାନଯୋଗ୍ୟ ।

'କୃଷ୍ଣ' ଦୁଃଖର ସଂସାରର ପ୍ରତୀକ । ତାର ବାହ୍ୟରୂପଟି ଶାନ୍ତିବିଧାନ । ଜୀବନର ସବୁ ଦୁଃଖ ଶାନ୍ତି ବୋଲି ମନେହୁଅଂତି । ଆତ୍ମକୃତ ଅପରାଧ ପାଇଁ ହେଉ ବା ନିରପରାଧ ବିବେଚନାରେ ହେଉ, ଏ ଶାନ୍ତିକୁ ହୃଦୟସ୍ଥ ଗ୍ରହଣ କରିପାରେନାହିଁ । ଦୁଃଖପ୍ରତି ଶ୍ରେଷ୍ଠ ସ୍ୱାଭାବିକ ଭାବେ ମାନବର ଏକ ପ୍ରତିକୂଳାତ୍ମକ, ବର୍ଜନାତ୍ମକ ପ୍ରତିକ୍ରିୟା ରହିଛି । ମାତ୍ର ଜୀବନର ବିକାଶ ଓ ବ୍ୟକ୍ତିର ଆତ୍ମସଚେତନତାର ବିବର୍ତ୍ତନ ପଥରେ ଦୁଃଖର ଏକ ସବିଶେଷ ଭୂମିକା ରହିଛି । ଦୁଃଖ ତାର ଉଦ୍ଭବ କାରଣ ସଂପର୍କରେ ପ୍ରଶ୍ନ ଉଠାଇ ବ୍ୟକ୍ତିକୁ ନିଜ ସଂପର୍କରେ ଚିଂତା କରିବାର ପ୍ରୟୋଜନ ସୃଷ୍ଟିକରେ । ଦୁଃଖ ଭିତରେ ବ୍ୟକ୍ତି ଅଭିଜ୍ଞତା ଅର୍ଜନ କରେ । ଚେତନା ପରିପକ୍ୱତା ଲାଭର ଅବସରପାଏ । ଏ ଅବକାଶରେ ଦୁଃଖ ଆଉ ଶାସ୍ତି ମନେହୁଏନାହିଁ ।

---

(୫୩) 'ଅନୁତପ୍ତ'—ମାନସିଂହ ଗ୍ରଂଥାବଳୀ ୧ମ—ପୃ. ୪୦୮

(୫୪) "The experience of life, amidst all the chaos of our present form of consciousness, brings home to us this great truth that the perfection of the spirit is a perfection through the including and transcending of sorrow, and brings at home in a form that leaves us no doubt that unless God knows sorrow, he knows not the higest good, which consists in the overcoming of the sorrow."

ମନୋରଂଜନ ଦାସ—'ଅଗାଂଧ ପରିଚୟ'—ପୃ. ୫୦

Digitized by PPRACHIN, SOA

ତଥାପି ଏ ଦୁଃଖ ଏକ ଭାର ଏବଂ ଦୁର୍ଭାର । ପୁଣି ସେ ଭାର ବହନ ଜୀବନପାଇଁ ଏକ ଅନିବାର୍ଯ୍ୟତା, ଜନ୍ମ ମୃତ୍ୟୁ ସଞ୍ଚାର ଇଚ୍ଛାଧୀନ ନୁହେଁ । ଅଥଚ ଜନ୍ମ ମୃତ୍ୟୁର ଲଂବା ରାସ୍ତାରେ ଜୀବନକୁ ତାର ସବୁ ଦୁଃଖଭାର ଏକାକୀ ବହନ କରିବାକୁ ହୁଏ । ଏହାହିଁ ଜୀବନକୁ କ୍ରୁଶ ସହ ଏକ କରି ଦେଖିବାର ତାତ୍ପର୍ଯ୍ୟ ।

ପାଶ୍ଚାତ୍ୟ ଜଗତରେ ଯୀଶୁଙ୍କର କ୍ରୁଶବିଦ୍ଧ ହେବାର ଐତିହାସିକ ଘଟଣାଟି ପରବର୍ତ୍ତୀ ମାନବୀୟ ଚେତନାର ଇତିହାସକୁ ବହୁ ଭାବେ ପ୍ରଭାବିତ କରିଛି । ଖ୍ରୀଷ୍ଟଧର୍ମ ବିଶ୍ୱାସ ବିଚାରରେ ଯୀଶୁ ନିଜ ମୃତ୍ୟୁପାଇଁ ବହନ କରି ଆଣିଥିବା କ୍ରୁଶ ନିଖିଳ ମାନବର ସାମୂହିକ ପାପବୋଧର ପ୍ରତୀକ; ଅନଂତ କରୁଣାବଶତଃ ଯୀଶୁ ସେ ବିରାଟ ବୋଝକୁ ଶାସ୍ତିରୂପେ ନିଜେ ବହନକରି ଅତୀତ ଓ ଆଗାମୀର ସମସ୍ତ ମାନବୀୟ ପାପ କ୍ଷାଳନ କରିଦେଇଛଂତି ।

ଯୀଶୁଙ୍କର ଏ ମୃତ୍ୟୁ ଘଟଣାର ତାତ୍ପର୍ଯ୍ୟଟି ମାନବହୃଦୟର କୋମଳତମ ବୃତ୍ତିଟିକୁ ପ୍ରବଳଭାବେ ଆଲୋଡ଼ିତ କରିଥାଏ । ପାଶ୍ଚାତ୍ୟ ଧର୍ମୀୟ ବିଚାରରେ କ୍ରୁଶ ମାନବଚରିତ୍ରର ଦୈବତ ସମ୍ଭାବନା ଓ ବିଶ୍ୱ ପ୍ରେମ ଲାଭର ଆଶ୍ୱାସନାତ୍ମକ ପ୍ରତୀକ ହୋଇ ରହିଆସିଛି । ପୁଣି ପାଶ୍ଚାତ୍ୟ ଭାବମାନସ ଧର୍ମାନୁଚିଂତା ନିରପେକ୍ଷତାରେ ମଧ୍ୟ କ୍ରୁଶକୁ ଅବଶ୍ୟ-ବହନୀୟ ବ୍ୟକ୍ତି-ଆତ୍ମାର ଯଂତ୍ରଣା, ସାମାଜିକ ତଥା ପାର୍ଥିବ ନିର୍ଯାତନାର ରୂପପ୍ରତୀକଭାବେ ସ୍ୱୀକାର କରିଛି । ସାଂପ୍ରତିକ ସାହିତ୍ୟରେ କ୍ରୁଶ କେବଳ ଏକ ନିର୍ଦ୍ଦିଷ୍ଟ ଧର୍ମଗୋଷ୍ଠୀର ପ୍ରତୀକତାରେ ସୀମିତ ରହିନାହିଁ, ଏହା ସାର୍ବଜନୀନ ସଂବେଦନଶୀଳତାରେ ଭାବ-ବିସ୍ତୃତି ଲାଭକରିଛି । ଯୀଶୁ ସମଗ୍ର ମାନବସୃଷ୍ଟିର ପରମ ହୃଦୟଧନ ଏବଂ କ୍ରୁଶ ତାଙ୍କ ବ୍ୟକ୍ତି-ଆତ୍ମାର ଯଂତ୍ରଣା ରୂପେ ନିଖିଳ ଚିତ୍ତଲୋକକୁ ପୀଡ଼ିତ କରିଛି । କବି ମାନସିଂହ କ୍ରୁଶକୁ ଈଶ୍ୱରଙ୍କର ବିଶ୍ୱଯଂତ୍ରଣା-ବହନର ସ୍ମାରକୀ ଏବଂ ବ୍ୟକ୍ତି ଜୀବନର ବେଦନାବୋଧକୁ ସେଇ ଯଂତ୍ରଣାର ଅଂଶ ରୂପେ ସ୍ୱୀକାର କରିଛଂତି ।

'କ୍ରୁଶ'ର ସନେଟ୍‌ଗୁଡ଼ିକରେ କ୍ରୁଶ-ପ୍ରତୀକ ପ୍ରତି କବିଂକ ଭାବାତ୍ମକ ପ୍ରତିକ୍ରିୟାର ଦ୍ୱିବିଧରୂପ ପ୍ରକଟିତ । ଗୋଟିଏ ତାତ୍ତ୍ୱିକ, ମନନଶୀଳ, ଅନ୍ୟଟି ସଂବେଦନାତ୍ମକ, ଅନୁଭୂତିସିଦ୍ଧ । ଐତିହାସିକ କ୍ରୁଶବିଦ୍ଧ ଘଟଣା କବିଚେତନାରେ କେବଳ ଲଘୁ ଭାବପ୍ରବଣତାକୁ ଉଦ୍ରିକ୍ତ କରିନାହିଁ, ତାର ତାତ୍ପର୍ଯ୍ୟ ଗଭୀରତା ମଧ୍ୟ କବି-ଉପଲବ୍ଧିରେ ଅର୍ଥପ୍ରାପ୍ତ ହୋଇଉଠିଛି ।

କଳାଗତ ସାର୍ଥକତା ବିଚାରରେ କ୍ରୁଶ ହୁଏତ ମାନସିଂ ଶିଳ୍ପ-ପ୍ରତିଭାର ସଫଳ ରୂପାୟନ କରିପାରିନାହିଁ । ମାତ୍ର ତାଂକ ବ୍ୟକ୍ତିତ୍ୱର ସାଧନା ପ୍ରୟାସ ଏଥିରେ ଯଥାଯଥ ଅଭିବ୍ୟକ୍ତି ଲାଭକରିଛି । କବିତା ମାନସିଂହଂକର ଭାବପ୍ରକାଶର ଅଭ୍ୟସ୍ତ ଭଙ୍ଗି । କବି ସକଳ ମାର୍ମିକ ଚିଂତା ଓ ଉପଲବ୍ଧିକୁ ବାଙ୍ମୟ କରିବାରେ ସେହି ପରମାତ୍ମୀୟା କବିତାର ଆଶ୍ରୟନେବା ସ୍ୱାଭାବିକ । କଳାଗତ ସଚେତନତା ଓ ରସସିଦ୍ଧିର ଆୟାସ 'କ୍ରୁଶ'ରେ ପରିଲକ୍ଷିତ ନହେଲେ ମଧ୍ୟ ନିରୋଳା ବ୍ୟକ୍ତିମାନସର ଭାବାନୁସଂଗତ ଓ ଚେତନାବିକାଶର ଏହା କିଂତୁ ଏକ ମୂଲ୍ୟବାନ ସାକ୍ଷୀରୂପ । ଅକ୍ଷତ ତୁଳନାରେ କ୍ରୁଶର ସନେଟ୍‌ଗୁଡ଼ିକ ତତ୍ତ୍ୱଦୃଷ୍ଟିରୁ ଯେତିକି ବ୍ୟାପ୍ତ ଭିତ୍ତିକ, ଭାବ ଓ ଉପଲବ୍ଧି ଦୃଷ୍ଟିରୁ ସେତିକି ଗଭୀର ଓ ଭାବ-ବିସ୍ତୃତ ହୋଇପାରିଛଂତି ।

'କ୍ରୁଶ'ର ଅନ୍ତର୍ନିହିତ ରହସ୍ୟବାଦୀ ଚେତନାର ପ୍ରଧାନ ଲକ୍ଷଣଗୁଡ଼ିକୁ ଚିହ୍ନିତ କରିଯାଇପାରେ । ଯଥା—

Digitized by PPRACHIN, SOA

(୧) ଅପରୋକ୍ଷ ସାକ୍ଷାତ୍କାର ବା ଅନୁଭବଗତ ଉଚ୍ଚାରଣ ( ଦେଖିଛୁ, ଶୁଣିଛୁ, ଜାଣିଛୁ—ଇତ୍ୟାଦି) ।
(୨) ଚୈତ୍ତ ଜାଗରଣ ।
(୩) ଚେତନାର ଊର୍ଦ୍ଧ୍ୱଗତି, ବିସ୍ମୃତି ଓ ଗମ୍ଭୀରତାର ଅନୁଭବ, ପାର୍ଥିବ ଅସଂପୃକ୍ତି, ସଂସାର ବିଚ୍ଛିନ୍ନତାବୋଧ ।
(୪) ବ୍ୟକ୍ତି ଓ ବିଶ୍ୱର ଅନ୍ତର୍ଗତ ସମ୍ପର୍କର ମର୍ମୋଦ୍‌ଘାଟନ, ସୃଷ୍ଟିର ଉଦ୍ଦେଶ୍ୟମୂଳକତାର ରହସ୍ୟ ବିଗ୍ରହ ।
(୫) ବିଶ୍ୱମୟ ଅନୁଭୂତି, ଐକ୍ୟାନୁଭୂତି ।
(୬) ନୈର୍ବ୍ୟକ୍ତିକଙ୍କୁ ବ୍ୟକ୍ତିରୂପ ଅନ୍ତର୍ଯ୍ୟାମୀ ରୂପେ ସ୍ୱୀକୃତି ।
(୭) ଆତ୍ମାର ଅମରତ୍ୱ ଓ ଜନ୍ମାନ୍ତରରେ ବିଶ୍ୱାସ ।
(୮) ସ୍ୱପ୍ନ ବା ଅଂତର୍ବୋଧରେ ବିଶ୍ୱାସ ।
(୯) ସମର୍ପଣ ଓ ସନ୍ତୁଷ୍ଟି, ଭବ୍ୟକୃପାରେ ଆସ୍ଥା ।
(୧୦) ପ୍ରଶାନ୍ତି ଓ ଆନନ୍ଦବୋଧ ଇତ୍ୟାଦି ।

ପ୍ରଥମରୁ କବିତାର ସ୍ୱରରେ କବିଙ୍କର ଅଂତର୍ମଗ୍ନ ହେବାର ଅଭିଳାଷଟିକକ ସ୍ମରଣୀୟ । ବହିଃ ବିକ୍ଷିପ୍ତ ଚେତନା ସମ୍ବୃତ ହୋଇ ଅଂତର୍ମୁଖୀ ଐକ୍ୟ ଭିତରକୁ ଅପସୃତ ହେବାକୁ ଚାହିଁଛି । ବିଶ୍ୱର ବହିଃପ୍ରାଂଗଣରେ ଇତସ୍ତତଃ ଧାବିତ ଏକ ଶ୍ରାନ୍ତ-ପୀଡ଼ିତ ସତ୍ତାର ଏ କ୍ଲାଂତିକର ଅବସନ୍ନତା ପ୍ରଥମକରି ନୀରବତା ଓ ନିଷ୍କଳତାର ଏକ ଆଶ୍ରୟ ଖୋଜୁଛି । (୫୫)

ନୀରବତାର ସେ ମୁହୂର୍ତ୍ତିଟିରେ କବି ଆତ୍ମସ୍ମରଣ କରିବାକୁ ସ୍ପୃହାଂତ । ନିତ୍ୟ କୋଳାହଳମୟ ଜଗତର ଏ ମହାସଂଗମ କ୍ଷେତ୍ରରେ ଏକାଂତ ନିଃସଙ୍ଗ ନିଭୃତଟିକକ ଏବେ କାମ୍ୟ । ନିଜ ସ୍ୱତଂତ୍ରତାର ସ୍ୱଚ୍ଛ ସମ୍ବାଦ ପାଇବାପାଇଁ କାବ୍ୟପୁରୁଷ ପ୍ରାତ୍ୟହିକତାର ସବୁ ସମ୍ପର୍କ ସହ ଜଡ଼ିତ ରହି ମଧ୍ୟ, ପ୍ରିୟଜନଂକର ସ୍ନେହସୁଧା ଆସ୍ୱାଦନ କରି ମଧ ଅତୃପ୍ତ । କବି ଚେଣ୍ଡ ଏକ ନିବାଧ ନିର୍ବିଘ୍ନ ମୌନମୟ ନିଃସଙ୍ଗତାର ଅଭିଳାଷୀ । କବିଙ୍କ ଅନୁଭବରେ କିଂରୁ ସେ ନିଃସଙ୍ଗତା ପ୍ରକୃତରେ ପରମ ଉତ୍ସଂଗମୟ । "ସେହି ନୀରବ ବନ୍ଧରେ ତମ ସହ ମୁଖାମୁଖୀ ହେଲେ" (୫୬)—ଏ ଏକାକୀତ୍ୱ ସାର୍ଥକ ହୋଇଯାଏ । ସେ ସୁଖାନୁଭବର ମୁହୂର୍ତ୍ତିରେ ଅପରର ସଂଗସୁଖ ପ୍ରୟୋଜନ ହୁଏ ନାହିଁ । ସେହି ନୀରବ ନିର୍ଜନ କ୍ଷଣରେ ସମସ୍ତ ବିଶ୍ୱର ବ୍ୟାପ୍ତ ଭିତରକୁ ଜୀବନ ଯେପରି ପ୍ରସରି ଯାଏ । (୫୭) ଚେତନାରେ ଏକ ବିଶ୍ୱଜାଗତିକ ରୂପାଭିବ୍ୟକ୍ତିର (cosmic manifestation) ଅବବୋଧ ଜାଗ୍ରତ ହୁଏ । (୫୮) 'ବିଶ୍ୱପ୍ରାଣ' କବିତାରେ ଏ ବିପୁଳାନୁଭବର ମୁଗ୍ଧ ଉଚ୍ଚାରଣରେ କାବ୍ୟଗତ ପ୍ରେରଣା ଓ କବିଙ୍କ

(୫୫) ଉଚ୍ଛୃଂଖଳ—ପୃ. ୪୫୪ (ଗ୍ରଂଥାବଳୀ ୧ମ)
(୫୬) 'ବିଶ୍ୱପ୍ରାଣ'—ଗ୍ରଂଥାବଳୀ ୧ମ ଭାଗ—ପୃ. ୪୪୧
(୫୭) "ତାରକାରୁ ତୃଣଭେଦୀ ପ୍ରସାର ଯାହାର"—ଗ୍ରଂଥାବଳୀ ୧ମ ପୃ. ୪୪୧
(୫୮) "ସବୁ ଦ୍ୱାର ରୋଧି ଖାଲି ତବ ବାତାୟନ, ଖୋଲିଦେଲେ ବିଶ୍ୱ ମତେ ଦିଏ ଆଲିଂଗନ"। ଗ୍ରଂଥାବଳୀ ୧ମ ପୃ. ୪୪୧

Digitized by PPRACHIN, SOA

ଜୀବନର ଅନ୍ତୃତ ମିଶି ଏକ ହୋଇ ଯାଇଥିଲା ପରି ମନେହୁଏ । (୬୯) କବି ଆବେଗମୟୀ କାବ୍ୟୋଚ୍ଛ୍ୱାସରେ ଜୀବନ-ବିଚାର ପରିବେକ୍ଷଣ ପରିବର୍ତ୍ତେ ପ୍ରଥମକରି ସତ୍ୟଲାଭପାଇଁ ଆତ୍ମଗତ ପ୍ରଜ୍ଞା-ଶକ୍ତିର ପ୍ରୟୋଜନ ଲୋଡ଼ିଛନ୍ତି । (୭୦) କବି ଚିତ୍ତ ନବୋଦ୍‌ଗତ କମଳ କୋରକ ପରି ଶାଶ୍ୱତର କରୁଣାଲୋକ ଉନ୍ମୁଖ । ଏଇ ଆଲୋକ ଅଭିଳାଷକୁ କେନ୍ଦ୍ରକରି ମାନସିଂହଙ୍କ କବିପ୍ରାଣର ଭାବପ୍ରବଣତା ସହ ଅଧ୍ୟାତ୍ମ-ସତ୍ତାର ସଚେତ-ଜିଜ୍ଞାସାଟିର ସଂଘଟିତକରଣ କରିଛନ୍ତି । 'ଦୀପ୍ତର ଆକର୍ଷଣ' ସନେଟ୍‌ଟିରେ । ଗାଢ଼ ଅଂଧକାର ଭିତରେ କ୍ଷୁଦ୍ର ପତଙ୍ଗର କ୍ଷୀଣପ୍ରାଣ କାଚଘେରି ଜ୍ୱଳମାନ ଶିଖାର ଦୁର୍ବାର ଆକର୍ଷଣରେ ଅସ୍ଥିର ହୋଇ ଅଂଧଭଳି ପିଟି ହୋଇ ମୃତ୍ୟୁ ବରଣ କରେ । ଏ ମୃତ୍ୟୁ କ'ଣ ଅନୁଶୋଚନାର ନା ଆତ୍ମତୃପ୍ତିର ? ପତଙ୍ଗ ଆଲୋକପ୍ରାପ୍ତ ହେଲା ନା ନାହିଁ, ତାହା ଆଉ କେହି ବି କହିପାରିବ ନାହିଁ । ମାତ୍ର ଯେଉଁ ଅଗ୍ନି ସେ ଲୋଡ଼ିଥିଲା, ମୃତ୍ୟୁର ଶୀତଳବକ୍ଷରୁ ସେ ଅଗ୍ନିରୂପ ଆଶ୍ୱାସନାକୁ ଲାଭ କରିପାରିଲା, ପୁଣି ମୃତ୍ୟୁର ମହାବ୍ୟାପ୍ତି ଭିତରେ ତାର ପତଙ୍ଗତ୍ୱର କ୍ଷୁଦ୍ରତା ହଜାଇ ବିରାଟ ବ୍ୟାପ୍ତି ସହ ଏକୀଭୂତ ମଧ୍ୟ ହୋଇଗଲା । ମୃତ୍ୟୁ ଏଠାରେ ଏକାବେଳକେ ବିଲୁପ୍ତିର ପୁଣି ବିମୁକ୍ତିର । ବିନାଶର ପୁଣି ବିସ୍ଥିତିର । ତେଣୁ ଏ ମୃତ୍ୟୁ ଯେତିକି ଶୋଚନାର, ସେତିକି ତୃପ୍ତିର ବି । ରହସ୍ୟବାଦୀ ଭାବଚେତନାରେ ମୃତ୍ୟୁ ଭିତରେ ମୃତ୍ୟୁକୁ ଅବଲଂବନ କରି ଜୀବନର ଏହି ଅମରତ୍ୱରେ ରୂପାନ୍ତର ଲାଭ ଏକ ଅନିବାର୍ଯ୍ୟ ଦୃଷ୍ଟିଭଂଗୀ, ଯାହା କେବଳ ନିଛକ କାବ୍ୟକଳ୍ପନାର କୌଶଳରେ ଅର୍ଥସୌକର୍ଯ୍ୟ ଓ ଭାବସଂଗତି ଲାଭ କରିନପାରେ । ପତଙ୍ଗର ଆଲୋକପିପାସା କବିଚିତ୍ତରେ ମଧ୍ୟ ବିକ୍ଷୋଭ ସୃଷ୍ଟି କରିଛି । ପତଙ୍ଗ, ଆଲୋକ, ଝଡ଼, କାଚଘର ଇତ୍ୟାଦି କବି ଚେତନାରେ ଗଭୀର ବ୍ୟଂଜନାପ୍ରାପ୍ତି ଲାଭକରିଛନ୍ତି । କବି କୁହନ୍ତି, "ଅଶାନ୍ତ ଝଡ଼ରେ ଦେବ ଏକମୁର୍ଚ୍ଛି ଝାସ ।" ଅଧ୍ୟାତ୍ମ ବେଦନା ଏହି ବିପୁଳ ଝଡ଼, ସତ୍ତାର ସାମଗ୍ରିକତାକୁ ଯାହା ଆଂଦୋଳିତ କରିଦିଏ । ବ୍ୟକ୍ତି ତାପରେ ନିଜର କ୍ଷୁଦ୍ରତାକୁ ବିସ୍ମରଣ ହୋଇ ଏକ ପ୍ରବଳ ଉଦଗ୍ରତାରେ ଅସୀମର ଝଡ଼ମୟ ଅଶାନ୍ତ ଆକର୍ଷଣ ଭିତରକୁ ଉଦ୍ଦାମ ଝାସଦିଏ । ହୁଏତ ପତଙ୍ଗ ଭଳି ତାର ମଧ୍ୟ ପରିଣତି 'ମରଣ' ହୋଇପାରେ । ତଥାପି ସେ ମରଣରେ ମଧ୍ୟ 'ଆଲୋକ ସଂଧାନୀ'ର ଯାତ୍ରାରଂଭର ପ୍ରୟାସଟିକର ଚରିତାର୍ଥତା ଲାଭକରେ । (୭ )

କବିଙ୍କ କାବ୍ୟପ୍ରକାଶ କେବଳ ଏହି ଯାତ୍ରାରଂଭର ମୁଖଶାଳା ନୁହେଁ; ଯାତ୍ରାପଥର ଚଟଶାଳା, ଯାତ୍ରାଶେଷର ମଧୁଶାଳା * ମଧ୍ୟ । ଏଇ କାବ୍ୟୋକ୍ତି ଭିତର ଦେଇ ମାନସିଂହଙ୍କର ବ୍ୟକ୍ତି ଜୀବନର ମହାମଂଦିରକୁ ପ୍ରବେଶ କରି ଶାଶ୍ୱତର ପୂଜାରତି ଦେଖାଯାଇପାରେ ।

---

(୬୯) "ଚିତ୍ତ ମୋର ଭାବ ଛଳଛଳ
ମିଶିବାକୁ ତବ ମହା ଜୀବନରେ ଯାଇ ।"
ଉଦ୍‌ଗମନ (କୃଷ୍ଣ) ଗ୍ରଂଥାବଳୀ ୧ମ—ପୃ. ୪୪୧

(୭୦) ଉଦ୍‌ଗମନ—ଗ୍ରଂଥାବଳୀ ୧ମ—ପୃ. ୪୪୧

(୭୧) "ବଂଚିବାକୁ ଅନ୍ଧକାରେ ଯୁଗ ଯୁଗାନ୍ତର
ମୃତ୍ୟୁ ନିଜ ଭଲ ରୂପ ଦେଖି ଆଲୋକର ।" ଗ୍ରଂଥାବଳୀ ୧ମ ପୃ. ୪୪୭

* ରହସ୍ୟବାଦୀ ଅଭିବ୍ୟକ୍ତିରେ 'ମଧୁଶାଳା' ବା ମଧୁଗ୍ରାଳୟ ଉଭୟ ଦେବାଳୟ ଓ ମଦିରାଳୟ ଅର୍ଥରେ ସାଂକେତିକ ରୂପେ ପ୍ରଯୁକ୍ତ । ବେଦର ସୋମ, ଖ୍ରୀଷ୍ଟୀୟ ବର୍ଣ୍ଣନାର ଆସବ ଓ ସୁଫୀ କାବ୍ୟର 'ମଧୁଶାଳା', ମଦ୍ୟ, ପିଅଲା, ସାକୀ-ଦିବ୍ୟାନନ୍ଦର ପ୍ରତୀକ ରୂପେ ଗୃହୀତ ।

Digitized by PPRACHIN, SOA

କବି 'କୃଶ'ର ସନେଟ୍‌ଗୁଡ଼ିକ ରଚନା କାଳରେ ଏକ ନୂତନ ଚେତନା ଜାଗୃତର ଉଲ୍ଲେଖ କରିଛନ୍ତି ଯାହା ସେ ପୂର୍ବରୁ ନିଜ ଭିତରେ ଅବିଷ୍କାର କରିନଥିଲେ । "ଆଜ ଯେ ପାଇଛୁ ଶେଷେ ଭ୍ରମର ସଂଧାନ, ଅନ୍ତର୍ହିତ ମୁକ୍ତା" (୭୨)—ଏ ନବାବିଷ୍କୃତ ଚେତନାକୁ କବି ସୁପର୍ଣ୍ଣ ବା ସ୍ୱର୍ଣ୍ଣପ୍ରଭ ପକ୍ଷ ବୋଲି ସଂକେତ କରିଛନ୍ତି । ବେଦ ତଥା ଉପନିଷଦରେ ଆତ୍ମା ହିରଣ୍ମୟ ପକ୍ଷଯୁକ୍ତ କିଂବା ସ୍ୱର୍ଣ୍ଣାଭ ହଂସ ପ୍ରତୀକରେ ଅଭିବ୍ୟକ୍ତ । ହଂସ, ସ୍ୱର୍ଣ୍ଣ, ପକ୍ଷ, ଏସବୁ ସଂକେତ ଅଧ୍ୟାତ୍ମବ୍ୟଂଜନାଶ୍ରିତ । ସ୍ୱର୍ଣ୍ଣବର୍ଣ୍ଣର ଅଧ୍ୟାତ୍ମତାପୂର୍ଣ୍ଣ ପରମଚେତନାସଂପର୍କିତ । ରହସ୍ୟବାଦୀ ରସାୟନ (alchemy) ମଧ୍ୟ ବସ୍ତୁର ପରମ ମୌଳିକ ରୂପାଂତରତାକୁ ସୁବର୍ଣ୍ଣତ୍ୱ ଲାଭ ବୋଲି ସାବ୍ୟସ୍ତ କରେ । ସୁବର୍ଣ୍ଣ ସାରତ୍ୱ ଓ ଐଶ୍ୱର୍ଯ୍ୟର ପ୍ରତୀକ । ପୁଣି, ହଂସ ସେହିପରି ଅସାର ତ୍ୟାଗ କରି ସାର ଗ୍ରହଣ କରେ । ସେ ନିର୍ମଳ ମାନସରୋବର (ନିର୍ମଳ ମାନସ) ନିବାସୀ । ପକ୍ଷ ଶକ୍ତି ସବୁବେଳେ ସ୍ୱାଚ୍ଛଂଦ୍ୟ, ବିମୁକ୍ତ ଊର୍ଦ୍ଧ୍ୱଗତି, ଦୂରଗତି ଓ ନିଃସୀମ ଅଭିଳାଷର ଉଦ୍‌ବୋଧନା ଦିଏ । କବି 'ଜୀବହଂସ' ସଂକେତରେ ସ୍ୱୀୟ ଚେତନାର ଏଇ ଊର୍ଦ୍ଧ୍ୱଗତି, ସୁବିସ୍ତୃତି ଓ ସ୍ୱାଚ୍ଛଂଦ୍ୟର ଭାବକୁ ବ୍ୟକ୍ତ କରିଛନ୍ତି । ଧରିତ୍ରୀମାଳିନ୍ୟରୁ ସାମୟିକ ହେଲେ ବି ଉଠି ଆକାଶର ବନ୍ଧମାନ ମୁକ୍ତିକୁ ସ୍ପର୍ଶ କରିବାର ଅନୁଭୂତି ପାଇଛନ୍ତି । (୭୩) 'ଧରି ତେଜ ଅନ୍ତରୀକ୍ଷ ସୁଧା ଆହରଣ' କବିର କଳ୍ପନାଲବ୍ଧ ସୁଖ ନୁହେ । ଏ ସୁଧା ଜୀବନାନଂଦ, ସହଜମୁକ୍ତ ସୁଖକୁ ନିର୍ଦ୍ଦେଶ କରେ । ବ୍ୟକ୍ତିକୁ ବାସନାଜଂଜାଳରୁ ମୁକ୍ତି ମିଳେ । ଦିବ୍ୟଭାବର ନିର୍ମଳତା ଓ ବନ୍ଧମାନତାର ପ୍ରଶାନ୍ତି ପ୍ରାଣରେ ବାଜେ । ଶରୀରରେ ପୁଲକ ହର୍ଷ ଫୁଟିଉଠେ । ବିଶ୍ୱପ୍ରସାରୀ ଚିତ୍ତମୁକ୍ତିର ଏ ସୁଦୁର୍ଲଭ ମୁହୂର୍ତ୍ତରେ ଧରଣୀର ଦୁଃଖତାପ ବ୍ୟକ୍ତି ଅଂଖିରେ ସମବେଦନାଶ୍ରୁ ହୋଇ ଜମିଯାଏ ।

ମାତ୍ର ପୂର୍ଣ୍ଣ ପରିଶୁଦ୍ଧ ହୋଇନଥିବା ଚିତ୍ତ ଏ ଦିବ୍ୟ ଆବେଶକୁ ଅଧିକକାଳ ଧରି ରଖିବାର ସାମର୍ଥ୍ୟ ହାସଲ କରିନଥାଏ । ତେଣୁ କବିଚେତନାରେ ପୁନର୍ବାର ଧରିବିତରଣର ଅନୁଭବ ଓ ଆଲୋକ ଅପସାରଣଜନିତ ବିଷାଦବୋଧ ଦେଖାଦିଏ । ଚୈତନ୍ୟଜାଗୃତି ସତ୍ତାର ଏକ ଆଂଶିକ ଜାଗୃତି । ଏହା ଅଂତରାତ୍ମାର ଜାଗୃତି । ମାତ୍ର ସେ ସମୟରେ ବ୍ୟକ୍ତିର ଦେହମନପ୍ରାଣ ପ୍ରଭୃତି ବିଭିନ୍ନ ସତ୍ତାଂଶ ନିମ୍ନ ଭୌତିକ ଚେତନାସ୍ତରରେ ଅବିକଶିତ ବା ଅର୍ଦ୍ଧବିକଶିତ ଅବସ୍ଥାରେ ରହିଥାଆନ୍ତି । ତେଣୁ ଆତ୍ମାର (Psycnic) ସ୍ୱ ଭୂମିରେ ଚେତନାର ସାମୟିକ ଊର୍ଦ୍ଧ୍ୱଗତି ପୁଣି ପ୍ରାଣମୟ ପ୍ରବେଗ, ଦେହଗତ ଅକ୍ଷମତା ଓ ମାନସିକ ବିଷ୍ଫୁରଭ୍ରାଂତି ଭିତରକୁ ଖସିଆସେ ।

ଲକ୍ଷ୍ୟକରାଯାଇପାରେ, ମାନସିଂହଙ୍କର ଆଧ୍ୟାତ୍ମିକତାର ମୂଳ ପ୍ରେରଣାଟି ବୌଦ୍ଧଦର୍ଶନ ପ୍ରଭାବିତ । ଏହା ରବୀନ୍ଦ୍ରନାଥଙ୍କ ପୂର୍ଣ୍ଣମାନବତାବାଦ ଓ କେତେକ ପରିମାଣରେ ଶ୍ରୀ ଅରବିନ୍ଦଙ୍କ ପୂର୍ଣ୍ଣ-ଜୀବନ-

---

(୭୨) ମାନସିଂହ ଗ୍ରଂଥାବଳୀ ୧ମ—ପୃ. ୪୪୫

(୭୩) "ସୁପର୍ଣ୍ଣ ପକ୍ଷରେ ମୁହିଁ ଉଠେ ବେଳେବେଳେ ଅନୁଭବି ମୁକ୍ତ ସୁଖ ।"
ମାନସିଂହ ଗ୍ରଂଥାବଳୀ ୧ମ ଭାଗ—ପୃ. ୪୪୫

Digitized by PPRACHIN, SOA

ବାଦ ଦ୍ୱାରା ପ୍ରଭାବିତ ମଧ୍ୟ । ଏହି ଭାବାଦର୍ଶମାନ ମାନବାତ୍ମାର ବିବର୍ତ୍ତନାତ୍ମକ ପୂର୍ଣ୍ଣବିକାଶ-ସିଦ୍ଧାନ୍ତ (୭୪) ଉପରେ ପ୍ରତିଷ୍ଠିତ । ଏହି ସିଦ୍ଧାନ୍ତ ଅନୁସାରେ ଏ ସୃଷ୍ଟି ସମଗ୍ରଭାବେ ଓ ବ୍ୟକ୍ତିଜୀବନ ଏକକଭାବେ ଏକ ମହାଜୀବନର ପୂର୍ଣ୍ଣାଭିବ୍ୟକ୍ତିର ସଚେତନ କ୍ରମବିବର୍ତ୍ତନ ପ୍ରକ୍ରିୟା । (୭୫) ସୃଷ୍ଟି କେବଳ ଜଡ଼ରୁ ଜୀବନକୁ କ୍ରମବିବର୍ତ୍ତିତ ନୁହେଁ;—ଜଡ଼>ଜୀବ>ଜଳଜ>ଉଦ୍‌ଭିଜ>ପ୍ରାଣୀ>ମାନବ—ଏହା ଯାନ୍ତ୍ରିକ ବିକାଶ ନୁହେଁ । ମାନବଠାରେ ପ୍ରକୃତିର ରୂପାତ୍ମକ ବା ସ୍ଥୂଳବିବର୍ତ୍ତନଟି ହୁଏତ ଚରମତାକୁ ଲାଭକରିଛି । ମାତ୍ର ତାର ଗୁଣାତ୍ମକ ବିବର୍ତ୍ତନଟି ମାନବର 'ମନ' ଚେତନାରୁ ସମାରବ୍ଧ ବୋଲି କୁହାଯାଇପାରେ । ଆଦି ମାନବର ଜୈବିକ ସ୍ଥିତି ଓ ପ୍ରାଣିକ ଆସ୍ପୃହା କ୍ରମଶଃ ସ୍ପଷ୍ଟ ମାନସିକ ବିକାଶକୁ ଏବଂ ଏ ମାନସବିକାଶ ଏକ ପୂର୍ଣ୍ଣମାନସକୁ (ବ୍ୟକ୍ତିସତ୍ତା ସ୍ତରରେ) ଓ ବିଶ୍ୱମାନସକୁ ଏବଂ ତତ୍ପରେ ମନାତୀତକୁ ଗତିଶୀଳ । ଏ ବିକାଶ କେବଳ ମାନସିକ ଓ ତତ୍ତ୍ୱଗତ ପରିପୂର୍ଣ୍ଣତାର ଲକ୍ଷ୍ୟାଭିଳାଷୀ ନୁହେଁ । ଏହା ସତ୍ତାର ସାମଗ୍ରିକ ସମ୍ପୂର୍ଣ୍ଣତା ଅଭିମୁଖୀ—ଯାହା ଭିତରେ ବ୍ୟକ୍ତିର ହୃଦୟବୃତ୍ତି, ଈଶ୍ୱରବୋଧ ଓ ଶାରୀରିକ ଦିବ୍ୟରୂପତା ମଧ୍ୟ ଅନ୍ତର୍ଭୁକ୍ତ । ଏ ସାଧନା ପୁଣି ବ୍ୟକ୍ତିର ପୂର୍ଣ୍ଣ, ନିର୍ବାଧ, ସ୍ୱଚ୍ଛନ୍ଦ ଓ ଏକାକୀତ୍ୱର ଅପେକ୍ଷା ରଖେ ।

ଆର୍ଯ ଚେତନାର ଜନ୍ମାନ୍ତରବାଦ ଓ ହିନ୍ଦୁ ଅବତାରବାଦ ଏହି ବିବର୍ତ୍ତନଧାରାର ନିର୍ଦ୍ଦିଷ୍ଟ ରୂପାଭିବ୍ୟକ୍ତି ରୂପେ ମାନସିଂହ କାବ୍ୟଚେତନାରେ ସ୍ୱୀକୃତ । ରାମ, କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ ପ୍ରଭୃତି ମହାମାନବଗଣ ଏହି ବିକାଶଧାରାର ସାକ୍ଷୀପୁରୁଷ ରୂପେ ଆବିର୍ଭୂତ । ପାଶ୍ଚାତ୍ୟ ଦ୍ୱୈତବାଦ ଓ ଖ୍ରୀଷ୍ଟୀୟାନ ପ୍ରେମଧର୍ମ ସହ ବୌଦ୍ଧ ଦର୍ଶନର ମୈତ୍ରୀ, କରୁଣା ତଥା ଉପନିଷଦର ଆତ୍ମବିକାଶରେ ସ୍ୱାଧୀନତାର ଚେତନା ମାନସିଂହ କାବ୍ୟସ୍ୱରରେ ସମନ୍ୱୟ ଲାଭକରିଛି । କବିଙ୍କ ଜୀବନଦର୍ଶନ ଓ ରଚନାରେ ତେଣୁ ଯେଉଁ ବିଶ୍ୱାସ ଈଶ୍ୱରର ସ୍ଥିରରୂପମାନ ପ୍ରତିଫଳିତ, ତାହା ଏଇସବୁ ଭାବଧାରା-ନିଗୂଢ଼ ରହସ୍ୟାତ୍ମକତାର ପୁନର୍ଧ୍ୱନି ମନେହେବା ବିଚିତ୍ର ନୁହେଁ । ଏ ଈଶ୍ୱରଗୁଡ଼ିକ ହେଲେ —

---

(୭୪) "ୟୁରୋପରେ ବିବର୍ତ୍ତନବାଦ କେବଳ ବାହ୍ୟବିଶ୍ୱରରେ ଘଟେ ବୋଲି ପ୍ରଚଳିତ ହୋଇ-ଆସିଛି । ଭାରତ କିନ୍ତୁ ତାର ଧର୍ମଦେଇ ବିବର୍ତ୍ତନବାଦକୁ ମନୁଷ୍ୟର ଆତ୍ମିକ ବିକାଶରେ ନିୟୋଜିତ କରିଛି । ବେଦାନ୍ତର କର୍ମ, ଜ୍ଞାନ ଓ ଭକ୍ତିଯୋଗ କେବଳ ସଙ୍କ ବିବର୍ତ୍ତନବାଦ ଛଡ଼ା ଆଉ କିଛି ନୁହେଁ । ଅର୍ଥାତ୍ ଏ ସବୁରୁ ଯେ କୌଣସି ଗୋଟିକର ଆଶ୍ରୟ ନେଲେ, ମନୁଷ୍ୟ ଅନ୍ଧକାରରୁ ଆଲୋକକୁ, ସ୍ଥୂଳରୁ ସୂକ୍ଷ୍ମକୁ, ମୃତ୍ୟୁରୁ ଅମୃତକୁ, ପଶୁରୁ ଦେବତ୍ୱକୁ ଉନ୍ନୀତ ହେବ । ଭାରତୀୟ ଧର୍ମର ନିର୍ଦ୍ଦେଶ ଏହି ଯେ, ରାଜାଠାରୁ ପାରିଆପର୍ଯ୍ୟନ୍ତ ପ୍ରତ୍ୟେକେ ନିଜନିଜର ସାମାଜିକ କର୍ତ୍ତବ୍ୟ ମଧ୍ୟରେ ବିବର୍ତ୍ତିତ ହେବାର ପୂର୍ଣ୍ଣ ସୁଯୋଗ ଅଛି । ମୁଁ ମନେକରେ, କବି ଓ ଲେଖକ ପକ୍ଷରେ ସାହିତ୍ୟ ଓ କବିତା ଏହି ଆତ୍ମଉନ୍ନୟନର ଏକ ପରମ ଉପାୟ ।

ମାନସିଂହ—(ମୁଁ କାହିଁକି ଲେଖେ)—'ମାନସିଂହ ସୃଷ୍ଟି ସମୀକ୍ଷା'—ପୃ. ୭/୮

(୭୫) "Human freedom consists in this that we don't yet know what we shall be, because we are not yet finished. We are begun; what we have already become and are now becoming plays a part in what we shall become.

L. Susan Stebbing —Philosophy & the Physicists

ମନୋରଂଜନ ଜାନା—ରବୀନ୍ଦ୍ର ପରିଚୟ, ପୃ. ୮୩

Digitized by PPRACHIN, SOA

(୧) ମାନବାତ୍ମାର ଜନ୍ମସୂତ୍ରରେ ଚରିତ୍ରକଣା ରୂପେ ପ୍ରାପ୍ତ ଦିବ୍ୟତା ।
(୨) ଦିବ୍ୟଚେତନା ମାନବାତ୍ମା ମାଧ୍ୟମରେ ସମଗ୍ର ସୃଷ୍ଟିକୁ ସର୍ବତୋଭାବେ ଦିବ୍ୟାଭିମୁଖୀ କରିବାରେ ବିବର୍ତ୍ତନ ମାର୍ଗରେ ନିତ୍ୟ କ୍ରିୟାଶୀଳ ।
(୩) ବ୍ୟକ୍ତିର ସ୍ୱପ୍ରକାଶ ନିମିତ୍ତ ସକଳ କର୍ମ ସେ ବିବର୍ତ୍ତନରି ରୂପାନ୍ତର !
(୪) ନବାନୁଭୂତିର ପ୍ରିୟ ପ୍ରିୟତା ସୁଖଦୁଃଖ ରୂପେ ପ୍ରତିଭାତ ।

'ବିକାଶର ଅଂଗ', 'ଆପେକ୍ଷିକ ଦୃଷ୍ଟି', 'କ୍ଷଣ ପ୍ରତ୍ୟେକର' ପ୍ରଭୃତି କବିତାରେ ଏ କବିଦର୍ଶନ ରୂପାୟିତ । ସ୍ଥୂଳତଃ କବିଙ୍କ 'କ୍ଷଣ' ଚେତନା ଭିତରେ ଏହି ବିବର୍ତ୍ତନଧାରାର ପ୍ରତ୍ୟେକଟି ଜନ୍ମ ଓ ଜୀବନର ସୃଷ୍ଟି ସାର୍ଥକତା ହିଁ ବ୍ୟଂଜିତ । ପରିପୂର୍ଣ୍ଣତା ଅଭିମୁଖେ ବ୍ୟକ୍ତିର ଯାତ୍ରାକାଳରେ ଜୀବନର ଅନିବାର୍ଯ୍ୟ ଅନୁଭବ ହିଁ କବିଚେତନାର କ୍ଷଣ । ବିକାଶର ମହାଭାବମୟ ଅଂଶ ତାର ସୁଖଦୁଃଖ । ଏ ଉଚ୍ଚାରଣ କବି ଅଂତରର ପ୍ରତ୍ୟୋପଲବ୍ଧିରୁ ସଂଜାତ । ମାନବ ବିବର୍ତ୍ତନ ଧାରାରେ ଏକ ଅସହାୟ, ବାଧ, କର୍ତ୍ତୃତ୍ୱହୀନ ଜୀବ ନୁହେଁ ! ସେ ଏକ ସଚେତନ, ସକ୍ରିୟ, ସ୍ୱୟଂଦୀପ୍ତ, ଦୃଢ଼, ସୃଷ୍ଟି-ସଂକଳ୍ପ-କ୍ଷମ ଶକ୍ତି ରୂପେ ଆବିର୍ଭୂତ । ନିଜ ମାଧ୍ୟମରେ ହିଁ ସେ ବିବର୍ତ୍ତନ ପ୍ରକ୍ରିୟାକୁ ରୂପାୟିତ ଓ ସଂବାହିତ କରେ । 'କ୍ଷଣ'ର ବହୁ କବିତାରେ ଏ ଭାବଧାରାର ପରିପ୍ରକାଶ ଘଟିଛି । (୬୬) ଏ ସଂପର୍କରେ କବି ମଂତବ୍ୟ କରିଛନ୍ତି, "ତୁମ ହାସ୍ୟ ଅଶ୍ରୁ ସୁଖ ଦୁଃଖହିଁ ଈଶ୍ୱର । ଗଭୀର ଅନୁଭବରେ ଯେଉଁ ଦୀର୍ଘ ନିଃଶ୍ୱାସ ତୁମେ ଗ୍ରହଣ କର, ଯେଉଁ ଅଶ୍ରୁ ତୁମେ ତ୍ୟାଗ କରିଚ, ସେଇ ହିଁ କ୍ଷଣ ।" (୬୭) *

ଅନୁଭୂତିର ଗଭୀରତାରେ ସବୁକିଛିର ରହସ୍ୟ ଉଦ୍‌ଘାଟିତ ହୋଇଗଲେ ପରେ ଚେତନାରେ ଏକ ଚମତ୍କାର ବୁଝାମଣା ଆସେ ଯାହା ବ୍ୟକ୍ତିଠାରେ ସହ୍ୟଶକ୍ତି ଆଣିଦିଏ । ଦୁଃଖଭୋଗ ପ୍ରାଥମିକ ସ୍ତରରେ ସତ୍ତ୍ୱାକୁ ସ୍ରଷ୍ଟା ପ୍ରତି ସ୍ୱାଭାବିକ ଭାବେ ବିମୁଖୀ, ପ୍ରତିକ୍ରିୟାଶୀଳ କରେ । କ୍ରମଶଃ ସେ ଦୁଃଖକୁ ସେ ବିଶ୍ୱଦୁଃଖର ଅଂଶ ବିଶେଷ ବୋଲି ଉପଲବ୍ଧି କରେ । ତାର ବ୍ୟକ୍ତିଗତ ଦୁଃଖ ଯେ ଈଶ୍ୱରଙ୍କ ବିଶ୍ୱ-ଦୁଃଖର ବୋଝକୁ ଆଂଶିକ ଭାରମୁକ୍ତ କରୁଛି, ଏ ଅନୁଭବ ବରଂ ତାକୁ ଅଧିକ ତୃପ୍ତି ଦିଏ; ପୁଣି ଈଶ୍ୱରଂକ ଅନଂତ କରୁଣା ଓ ସର୍ବଂସହା ପ୍ରେମ ତାର ଏଇ ଦୁଃଖକୁ ମଧ୍ୟ ବର୍ଜନ ନ କରି ନିଜ ଭିତରେ ପରମ ସ୍ନେହରେ ବହନ କରି ଚାଲିଛି, ଏ ରୂପ ମହାନ୍ ଉଦାରତା ନିକଟରେ ସେ କୃତଜ୍ଞତାରେ ସ୍ୱତଃ ନତଶିର ହୋଇଯାଏ । ବ୍ୟକ୍ତି ଜୀବନର ସୁଖ ଦୁଃଖର ପରମ ଅନୁଭବୀ ଈଶ୍ୱରଂକର ବିଶ୍ୱବେଦନାରୁ ଅନୁସୃତ ବୋଲି ଜାଣିବା ପରେ ନିଜର ଅନୁଭବ ମାନଂକୁ ସେ

---

(୬୬) (କ) "ତୁଚ୍ଛ ବିନ୍ଦୁ ମନୁଷ୍ୟ ଯାଏ ଜୀବନ ପ୍ରକାଶେ / କୋଟି କୋଟି ବର୍ଷ ଧରି ଏହି ଧରିତ୍ରୀରେ ।" ପୃ. ୪୮୧

(ଖ) "ମନୁଷ୍ୟର ଜୟ ଯାହା ଜୟ ଈଶ୍ୱରର × × × ପ୍ରତି ଜୟେ ଗୁପ୍ତ ଭୂମା ଲଭେ ଆବର୍ତ୍ତନ "—ପୃ. ୪୯

(ଗ) "ଆମେଇ ପ୍ରତ୍ୟେକେ ଏକ ଗୋପନ ଈଶ୍ୱର / ପ୍ରତିଟି ସଂଗ୍ରାମେ ଆତ୍ମା ହୁଏ ଊର୍ଦ୍ଧ୍ୱତର / ପ୍ରତିଟି ସଂଗ୍ରାମୀ କର୍ମ ତପସ୍ୟା ପରମ ।"

ପୃ. ୪୯୭—ଗ୍ରଂଥାବଳୀ, ୧ମ ଭାଗ ।

(୬୭) "ନିଜେଇ ଈଶ୍ୱର ତୁମେ ପ୍ରତି ଧରିବାର୍ଯ୍ୟ / ଈଶ୍ୱର ବିକାଶ ପାଇଁ ଜନ୍ମ ଜନ୍ମାଂତର ବୋହିବାକୁ ହେବ ଅନୁଭବ କ୍ଷଣରାଶି ।" 'ନିଜେଇ ବୋହିବ' ପୃ. ୪୮୨

* ପାଦଟୀକା 'ନିଜେଇ ବୋହିବ'—ପୃ, ୪୮୨—ଗ୍ରଂଥାବଳୀ ୧ମ ଭାଗ

Digitized by PPRACHIN, SOA

ଈଶ୍ୱରାର୍ପିତ କରିନେବାକୁ ସମର୍ଥ ହୁଏ । ଏ ସମର୍ପଣରେ ସେ ସଚେତ୍ୟମୁକ୍ତ ହୁଏ । କୃତଜ୍ଞତା ସ୍ୱରୂପ ପ୍ରଷ୍ଟାଙ୍କ ସୃଷ୍ଟି ଅନୁଭବ ଭିତରୁ କଣ୍ଟକତ୍ତ୍ୱ ବହନ କରିବାକୁ ଅନୁଯୋଗୀ ହୁଏ । (୬୮) ଏ ଆଗ୍ରହ ତୁଚ୍ଛା କୃତଜ୍ଞତା ନୁହେଁ । ଏଥିରେ ସମସ୍ତ ବିଶ୍ୱର ସୁଖ ଦୁଃଖ ପ୍ରତି ଏକ ଉଦାର ମନୋଭାବ ଓ ନିଜର କରିନେବାର ଆକୁଳତା, ତା ସହ ଈଶ୍ୱରଙ୍କ ପ୍ରତି ମାନବାତ୍ମାର ଗଭୀର ପ୍ରେମଭାବନା ମିଶି ରହିଥାଏ ।

ଏ ପ୍ରେମ ଭାବନାର ଆଦ୍ୟରୂପ ଅବଶ୍ୟ ସଙ୍କୁଚିତ, ସଙ୍କୀର୍ଣ୍ଣ; ମାତ୍ର ନିଷ୍ପାପ ଓ ପ୍ରକାଶ ବିଶୁଦ୍ଧ । (୬୭) 'ତୁମରେ ଚାହିଁଲି ଯାକେ'—ଏଇ ନିଷ୍ପାପ ଅଭିବ୍ୟକ୍ତି ଯାହା ଚେତନାର ଦ୍ରବ୍ୟ ସଚେତନତା ଓ ଦୁଃଖର ତାତ୍ତ୍ୱିକ ଉପଲବ୍ଧିବୋଧ କ୍ଷମତାର ପ୍ରକାଶ-ରୂପ । ଦୁଃଖହିଁ ଏହି ନବପରିଚୟ ସୂତ୍ର । ଦୁଃଖର ହୋମାନଳ ପ୍ରଜ୍ୱଳିତ ଜୀବନ-ବେଦୀରେ ହିଁ ଶାଶ୍ୱତ ସହ ସୀମାର ପରିଣୟ ନିଷ୍ପନ୍ନ ସଂଘଟିତ ।

ଦୁଃଖ ସହ ମାନସିକ ବୁଝାମଣା ପରେ ଦୁଃଖାନୁଭବକୁ ଗ୍ରହଣ କରିନେବାଭଳି ମମତ୍ୱ ଉଦାରତା କବି ହୃଦୟରେ ନିଭକରିଛନ୍ତି । ଏହାପରେ ସନ୍ଧାନ ମେ ବିଜୟୋଲ୍ଲାସକୁ କବି ସ୍ରଷ୍ଟାଙ୍କ ନିତ୍ୟ ଆନନ୍ଦମୟ ପରିଚୟ ଉପସ୍ଥାପନାର ଆଉ ଏକ ସଫଳ ପଦକ୍ଷେପ ବୋଲି ବିଚାରିଛନ୍ତି । ଏ ବିଚାର ପରେ ଦୁଃଖ ତାର ସ୍ୱତନ୍ତ୍ର ଓ ଏକକ ରୂପ ଚେତନାକୁ ହରାଇଦିଏ । ରୁଦ୍ର ଓ ଶିବ, ଭୀଷଣ ଓ ମନୋହର, ସଂଗ୍ରାମ ଓ ଶାନ୍ତିର ଆପାତଃବିରୋଧର ମୂଳସୂତ୍ରଟି ଚେତନାର ବୋଧଗମ୍ୟ ହୋଇଗଲେ ଆଉ ବିଚାରଜନିତ-ଜନିତ ଦୁଃଖାତ୍ମକ ଭ୍ରାନ୍ତ ପ୍ରତିକ୍ରିୟା ଉପୁଜେ ନାହିଁ । ବରଂ ଅପେକ୍ଷାକୃତ ପରିଚୟ-ରୂପ ଫୁଟି ଉଠେ । ଅସ୍ତିତ୍ୱର ପୂର୍ଣ୍ଣାନୁଭବର ଯାତ୍ରାପଥରେ ସୁଖ ଦୁଃଖମାନେ ଯେ କେବଳ ଚେତନା ଗୂଢ଼ ହେବାର ସୋପାନମାନ—ସେ ସଙ୍କେତ ରହସ୍ୟ କବି ଆବିଷ୍କାର କରିଛନ୍ତି । କବି ଦୁଃଖକୁ ଜୀବନର ପୂର୍ଣ୍ଣାଂଗତା ଓ ସମଗ୍ରତା ପ୍ରତି ଉଦ୍‌ବୋଧିତ କରେ ବୋଲି କହନ୍ତି । ଦୁଃଖ ଯେପରି ଆନନ୍ଦ ବଜାରକୁ ପ୍ରବେଶିବା ପଥର ଯାତ୍ରା-କ୍ଳାନ୍ତ, ଶ୍ରମଶ୍ରାନ୍ତ ଯେପରି ଆନନ୍ଦକୁ ଅବରୋଧ କରି ରହିଥିବା ଦ୍ୱାରକୁ, ଆନନ୍ଦ ଅନୁଭବର ସଂଗୁପ୍ତ ଶକ୍ତିଟାକୁ ଦୁଃଖ ଆଘାତ କରି ଖୋଲିଦିଏ । ଦୁଃଖର ଏ ଆଘାତ ବିନା, ସ୍ପର୍ଶ ବିନା ବ୍ୟକ୍ତିର ଆନନ୍ଦ ସଂଧାନ ନିରର୍ଥକ ହୋଇଯାନ୍ତା । (୭୦) ମୃତ୍ୟୁର ଅଂତରାଳରେ ଅମୃତ, ପ୍ରସ୍ତର ଚଟାଣରେ ବାରିବାହ ସଂଗୁପ୍ତ । ମୃତବୀଜରେ ସମ୍ଭାବନ ପୁଷ୍ପାରେ—ଏହାହିଁ ତ ଜୀବନର ଅମୃତତ୍ୱ । ଏହି ମହାତତ୍ତ୍ୱର ଅବଧାରଣା ପରେ 'ସୃଷ୍ଟି ଅନନ୍ଦମୟ'ର ଅର୍ଥ ଉଦ୍‌ଭାସିତ ହୋଇଯାଏ ।

---

(୬୮) "ତୁମରେ ଚାହିଁଲି ଯାକେ ବନ୍ଧ ଚେତନାରେ,
ନିଜ ଦୁଃଖ ଶ୍ରେଷ୍ଠ ଶ୍ରେଷ୍ଠ ଦିଶୁଥିଲା ବଡ଼
ଆଜି ତ ଜାଣିଛି ସୁଖ ଦୁଃଖ ତୁମଠାରେ
ତଥା ନାହ୍ଲୁ ସ୍କନ୍ଧେ ଦୁଃଖ ବେଦନା ତୁମ୍ଭର ।"
'ନିଜେଇ ବୋହିବ'—ଗ୍ରଂଥାବଳୀ ୧ମ, ପୃ. ୪୮୬

(୬୯) "ଜନ୍ମେ ଜନ୍ମେ ତୁମ୍ଭ କ୍ରୁଶ ସାନନ୍ଦେ ବହିବି
ଯଦି ଖାଲି ଆଗେ ତବ ପଦ ଦେଖୁଥିବି ।"
ପୃ. ୪୮୩, ଗ୍ରଂଥାବଳୀ ୧ମ

(୭୦) "ଅଛି ଦୁଃଖ ଜୀବନରେ, ମୃତ୍ୟୁ ସୃଜନରେ
ଜୀବନର ଜୟକାର ତାରି ଆବିଷ୍କାରେ ।"
ଦୁଃଖଜୟ—ଗ୍ରଂଥାବଳୀ, ୧ମ, ପୃ. ୪୯୦

Digitized by PPRACHIN, SOA

କବିଦୃଷ୍ଟି ଦେଖେ, ଧରାର ସବୁ ନୈରାଶ୍ୟ ଭିତରେ ଆନନ୍ଦର ଫଲ୍‌ଗୁ ଅନ୍ତଃସଲିଳା । ତାହା ହିଁ ଧୂଳିଃଧରାର ଜୀବନାନନ୍ଦ, ମୃତ୍ୟୁଞ୍ଜୟୀ ଅମୋଘ ଆଶା । 'ଦୁଃଖ ମୃତ୍ୟୁ ବକ୍ଷେ ଧରି ଜୀବନର ଗାନ ।'' (୭୧)

ଦିବ୍ୟ ଚେତନାଂଶ ରୂପେ ବିଶ୍ୱଜୀବନ ସହ ବ୍ୟକ୍ତିସତ୍ତାର ମିଳନସଂପର୍କ 'ଜନ୍ମ' ସନେଟ୍‌ଗୁଚ୍ଛିକରେ ସ୍ପଷ୍ଟ ପ୍ରକଟିତ । ''ଜନ୍ମ ଦେଇ ବିଶ୍ୱସାଥେ ମିଳିତ ଜୀବନ ।'' (୭୨) ଉକ୍ତିରେ କବିଙ୍କ ମାନସ ଉର୍ଦ୍ଧ୍ୱଗତିର, ଚେତନାର ପ୍ରଜ୍ଞାଲୋକରେ ଶାଶ୍ୱତକୁ ସୀମା ଭିତରେ ପ୍ରକଟିତ ହେବାର (୭୩) ସତ୍ୟୋପଲବ୍ଧିର ସଂବାଦ ପ୍ରକାଶିତ ।

'ଜୀବହଂସ', 'ସୁପର୍ଣ୍ଣପକ୍ଷୀ' ପ୍ରଭୃତି ପ୍ରତୀକାତ୍ମକ ସନେଟ୍‌ଗୁଡ଼ିକରେ ଆତ୍ମାର ଏଇ ଶାଶ୍ୱତୋପଲବ୍ଧି ଓ ପରମପ୍ରଶାନ୍ତିର ବାର୍ତ୍ତା ରୂପାୟିତ । 'କିଛୁ ପ୍ରଶ୍ନ ନାହିଁ', 'ସବୁଜ ବିସ୍ମୟ', 'ପୂର୍ଣ୍ଣତା ପ୍ରାପ୍ତି' ପ୍ରଭୃତି କବିତାମାନଙ୍କରେ ଆତ୍ମାର ଊର୍ଦ୍ଧ୍ୱଗତି ଓ ଦିବ୍ୟୋପଲବ୍ଧିର ସଂବାଦ ରହିଛି । ଦେହପାତ, ଦୁଃଖାସନ, ପାର୍ଥିବରେ ମୋହଗ୍ରସ୍ତତା ପ୍ରଭୃତି ଶବ୍ଦପ୍ରୟୋଗ ଜୀବନର ଦୁଃଖାନୁଭୂତିକୁ ସ୍ପଷ୍ଟ କରିଦିଏ । ଏଇସବୁ ରଚନାରେ କବିସତ୍ତା ଏକାଗ୍ର ଧ୍ୟାନମଗ୍ନତା ଭିତରେ କ୍ରମଶଃ ଚେତନାର ଊର୍ଦ୍ଧ୍ୱସ୍ତରକୁ ଗତି କରିଛି । ଭୌତିକତା ଓ ଆପେକ୍ଷିକତାର ବନ୍ଧନ ପରିସର ଭିତରୁ ଊର୍ଦ୍ଧ୍ୱତର ଓ ବୃହତ୍ତର ଦିଗ୍‌ମଣ୍ଡଳୀକୁ ନିଷ୍କ୍ରମଣ ଲାଭକରି କ୍ରମଶଃ ଅନନ୍ତବ୍ୟାପ୍ତିରେ ପ୍ରସାରଲାଭକରିଛି । ଅନନ୍ତର ମହାଙ୍ଗଂଗତକୁ ପ୍ରାଣରେ ଲାଭକରିଛି ଓ ନିଜ ସୀମାର ଅନ୍ତଃବିସ୍ତୃତ ହୋଇଛି । (୭୪) କ୍ରମଶଃ ତା ସମ୍ମୁଖରେ କୋଟି କୋଟି ବ୍ରହ୍ମାଣ୍ଡ ପ୍ରକଟିତ ହୋଇଛନ୍ତି । ବିଶ୍ୱକୁ ସେ ତାର ପରିପାର୍ଶ୍ୱ ଘେରି ରହିଥିବାର ଦେଖିଛି ।

ଏ ଅନୁଭୂତି ପରେ ସତ୍ତାର ସ୍ତୋତ୍ରଗାନ, ଏକକ ଗାନ ଆଉ କିଛି ବି ରହିନପାରେ । କେବଳ ଏକ ବିପୁଳ ସ୍ତବ୍ଧତା । ନିଖିଳ ଲୋକର ଅଶ୍ରୁତ ସଙ୍ଗୀତ ଭିତରେ ପ୍ରଲୀନ ଏକ ମୁଗ୍ଧ ସ୍ୱର ''ନମସ୍କାର ନାଥ ମୋର, କିଛି ପ୍ରଶ୍ନ ନାହିଁ ।'' (୭୫) କବି ସେହି ବିସ୍ମୟକୁ, ପରମାତ୍ମୈକ୍ୟକୁ ଭେଟିଛନ୍ତି, ଯାହା ଏକ ଅନିର୍ବଚନୀୟ ମହାବିମୂର୍ଚ୍ଛନା ଭିତରେ ସତ୍ତାକୁ ସ୍ୱବିଲୋପିତ କରିଦିଏ ବୋଲି ରହସ୍ୟବାଦ ସୂଚନା ଦିଏ । ସେହି ମୁହୂର୍ତ୍ତରେ ଯେପରି ଜୀବନର ସବୁ ପ୍ରଶ୍ନର ସମାଧାନ ଉଦ୍‌ଘାଟିତ ହୋଇଯାଆନ୍ତି । ଗୋଟିଏ ଅନୁଭବରେ , ''ସବୁଜ ବିସ୍ମୟ ଅଛି ଲୁଚି, ସଂଗୋପନେ ।'' (୭୬) ପ୍ରାଣର ସମ୍ଭ୍ରମ, ଶ୍ରଦ୍ଧା, କୃତଜ୍ଞତା ଓ ବିସ୍ମୟ କେବଳ ବିନମ୍ର ନମସ୍କାର ରୂପସ୍ୱରହୀନ ଉଚ୍ଚାରଣ ଲାଭକରେ ।

---

(୭୧) ପୃ. ୪୯୦ (ଗ୍ରନ୍ଥାବଳୀ ୧ମ)

(୭୨) 'ପରିବର୍ତ୍ତିତ' ଗ୍ରନ୍ଥାବଳୀ ୧ମ—ପୃ. ୪୯୩

(୭୩) ''ସେ ମହା ଏକକ — ବିମୁଗ୍ଧ ବକ୍ଷରେ''
'ରସାଳଦ୍ରୁମ'—ଗ୍ରନ୍ଥାବଳୀ ୧ମ, ପୃ. ୪୮୬

(୭୪) ''ଯେତେ ଯାଏ ସେତେ ନିଜ ସତ୍ତା ଯାଏ ବୃଦ୍ଧି
ଓତପ୍ରୋତ ପ୍ରାଣେ ଭରେ ଅନନ୍ତ ମହିମା'' —ଗ୍ରନ୍ଥାବଳୀ, ୧ମ ପୃ. ୪୮୨

(୭୫) ଗ୍ରନ୍ଥାବଳୀ ୧ମ—ପୃ. ୪୮୬

(୭୬) ଗ୍ରନ୍ଥାବଳୀ ପୃ. ୪୮୭

Digitized by PPRACHIN, SOA

'ସ୍ରଷ୍ଟାର ଜାଦୁ'ରେ ବର୍ଣ୍ଣିତ "ଧ୍ୟାନ ଉଡନେ ଊର୍ଦ୍ଧ୍ୱେ ଗଲେ ଛୁଟି", କବିକଳ୍ପନାର ପାର୍ଥିବ ଉଲ୍ଲଂଘନ ନୁହେଁ ।' ଏକାଗ୍ର ଊର୍ଦ୍ଧ୍ୱ ଚେତନାରେ କବି ଅନ୍ତରୀକ୍ଷରେ କୋଟି ଗ୍ରହନକ୍ଷତ୍ରଙ୍କ ମେଳା ଦେଖିଛନ୍ତି । (୭୬କ) ସେତେବେଳେ କବି ଏ କ୍ଷୁଦ୍ର ପୃଥିବୀକୁ ସେ ନିଖିଳ ଭିତରେ ସନ୍ଧାନ କରିପାରିନାହାନ୍ତି । ଆତ୍ମୋଦୟର ସେହି ଅଭିନବ ମୁହୂର୍ତ୍ତରେ କବି ପାର୍ଥିବ ସ୍ଥିତିର ନଗଣ୍ୟତା ତାର ଅହମିକାପୁଷ୍ଟ ପ୍ରମତ୍ତତାକୁ ସ୍ମରଣ କରି ଲଜ୍ଜିତ ହୋଇଛନ୍ତି । ଏ କବିତାଟିର ଶେଷପଦ କବିଧର୍ମର ମହତ୍ତ୍ୱ ରକ୍ଷାକରି ଏକ ଚମତ୍କାର କାବ୍ୟକତା କରିଛି, "ମୋ ଅହମିକା ତବ ଇନ୍ଦ୍ରଜାଲ ।" ଏହା ବିସ୍ତୃତ ବିରକ୍ତର ବୈରାଗୀର କ୍ଷୁବ୍ଧ ସ୍ୱର ନୁହେଁ ଧରଣୀର 'ମାୟା'କୁ ନାସିକାକୁଞ୍ଚନ ନୁହେଁ । ରୂପ ଓ ପ୍ରଣୟମୁଗ୍ଧ ଏକ ନିର୍ମଳ କବିସୃଷ୍ଟି ହିଁ ଏଠାରେ ଜୀବନର ଅଶାନ୍ତିକୁ ଏପରି ରୂପ-ରଞ୍ଜିତ ଦେଖିଛି । ମାନସିଂହଙ୍କର କବିମନ ସୃଷ୍ଟିକୁ କେଉଁଠାରେ ଅସ୍ୱୀକାର କରିପାରିନାହିଁ । କବିର ସମ୍ବେଦନା ଓ ଦୂରାନ୍ତରରେ ପ୍ରବୃତ୍ତିଶ୍ଚ ବିଶ୍ୱଜୀବନର ମଧ୍ୟମ ସଂଯୋଗ ଲାଭକରିଛି; ଊର୍ଦ୍ଧ୍ୱସ୍ଥିତ ଚେତନାରେ କବିଙ୍କର ସେ ପରମ ଉଦାରତା ପୃଥିବୀର ନଗଣ୍ୟ ସ୍ଥିତି ଓ ଜୀବନର କ୍ଷୁଦ୍ରତାମାନଙ୍କୁ ବିପୁଳ ଗୁରୁତ୍ୱ ଦେଇଛି । ଅହଂଚେତନାକୁ 'ଇନ୍ଦ୍ରଜାଲ' କହି କବି ଅହଂର ଅନ୍ତରରୁ, ପୁଣି ତାର ରମଣୀୟତାର ସୃଷ୍ଟିପ୍ରତ୍ୟୟ ଭିତରେ ସ୍ରଷ୍ଟାର ଶାଶ୍ୱତାନନ୍ଦଦାୟୀ ସୌନ୍ଦର୍ଯ୍ୟ ପ୍ରେମର ଅଭିବ୍ୟକ୍ତିମୂଳକ ଗୂଢ଼ ପ୍ରେରଣାକୁ ମଧ୍ୟ ସନ୍ଧାନ କରିଛନ୍ତି । ଏହା ହିଁ ମାନସିଂହଙ୍କର ନାସ୍ତିପର ବୈରାଗ୍ୟଧର୍ମିତାକୁ ପ୍ରଚଣ୍ଡ ପ୍ରତିବାଦ, ପୁଣି କବିଧର୍ମ ଓ ଶିଳ୍ପସାଧନାକୁ ଶ୍ରେଷ୍ଠ ସ୍ୱୀକୃତି ।

ଜୀବନପ୍ରଣୟୀ, ବିଶ୍ୱାନୁରାଗୀ କବି ଅନନ୍ତ ଅମର୍ତ୍ତ୍ୟ କେଉଁ ଦେବତାଙ୍କର ଅପାର୍ଥିବ ପ୍ରେମ ପାଇଁ ଏଇ ଜୀବନ ଓ ଧରାଧାମ ପ୍ରତି ବିତୃଷ୍ଣା ପ୍ରକାଶ କରିନାହାନ୍ତି । ବୈରାଗ୍ୟର ଉଗ୍ରସ୍ୱର କେଉଁଠାରେ ତାଙ୍କର ମୁକ୍ତଆତ୍ମାର ଗାନକୁ କର୍କଶ କରିନାହିଁ । ଅନୁରାଗର ପଥରେ ହିଁ ସୃଷ୍ଟିର ଆଦ୍ୟ ପ୍ରେମ ଗଙ୍ଗୋତ୍ରୀକୁ ତାଙ୍କର ମୁଗ୍ଧ କବି-ଆତ୍ମାର ଚିରନ୍ତନ କାବ୍ୟାଭିସାର । ପାପୀକୁ, କ୍ଲାନ୍ତକୁ ତାଙ୍କ ଉଦାର କବିତ୍ୱ ଘୃଣା କରିପାରିନାହିଁ; ବରଂ ଏକ ଆନ୍ତରିକ ଶ୍ରଦ୍ଧା ଧରଣୀର ସକଳ ଅକ୍ଷମତା ପ୍ରତି ବିପୁଳ ସମ୍ବେଦନାରେ ଅଜସ୍ରଧାର ହୋଇ ଝରିପଡ଼ିଛି । କବିତ୍ୱରୁ ବିଶ୍ୱମାନବତ୍ୱକୁ ତାଙ୍କ ଚେତନାର ଏ ଯାତ୍ରା ଖୁବ୍ ସହଜ ଓ ସ୍ୱାଭାବିକ ମନେହୁଏ । ବୈରାଗ୍ୟର ସାଧନାଦର୍ଶ ତାଙ୍କର କାବ୍ୟାଦର୍ଶ ବା ଜୀବନାଦର୍ଶ, କାହାରିକୁ ବି ପ୍ରଭାବିତ କରିପାରିନାହିଁ । ପ୍ରତିଟି ଧୂଳିକଣାରେ ଯେ ଶାଶ୍ୱତ ସ୍ୱତଃ ପ୍ରତିଭାତ, ସୃଷ୍ଟିର କେଉଁ ଉପାଦାନକୁ ଉପେକ୍ଷା କରି କବି ତାର ସ୍ୱୀକୃତି ବାଢ଼ିପାରନ୍ତେ ? କବି ଯେପରି ଇଂରାଜୀ ରୋମାଣ୍ଟିକ କବି (Blakeଙ୍କ ସହ ସ୍ୱର ମିଳାଇ ପରିପୂର୍ଣ୍ଣ ବିଶ୍ୱମିଳନାନନ୍ଦର ଗାନ କରିଛନ୍ତି, "ସୃଷ୍ଟିର ପୂଜାରୀ ମୁହିଁ ବିଚରି ଭୂମାର/ପ୍ରତ୍ୟକ୍ଷରେ ପଢ଼ିପାରେ ତୁମରି ସ୍ୱାକ୍ଷର । (୭୬)

---

(୭୬କ) (ସ୍ମରଣୀୟ, କବି ଏଇରୂପ ଅନ୍ତରୀକ୍ଷ ଭ୍ରମଣର କଥା ପୂର୍ବରୁ ମଧ୍ୟ କହିଛନ୍ତି । 'ପୂଜାରିଣୀ' ନାଟିକାର ନାୟିକା ଲକ୍ଷ୍ମୀର ଏଇପରି ଆକାଶ ଅଭିସାରର ବର୍ଣ୍ଣନା ଅଛି । ମାତ୍ର ସ୍ପଷ୍ଟ ରୂପେ ତାହା କବିଙ୍କ ରୋମାଣ୍ଟିକ୍ କଳ୍ପନାଭିସାର । କବି ସେଠାରେ କେବଳ ଭାବଲୋକବିଳାସୀ । ଅନୁଭବ ଜଗତର ପ୍ରତ୍ୟକ୍ଷ ସମ୍ବାଦ 'ପୂଜାରିଣୀ'ରେ ନାହିଁ; ମାତ୍ର ସେଦିନର ସେହି ବିଶୁଦ୍ଧ କଳ୍ପନାଜାତ ରୂପାଲୋକ ଅତି ସନ୍ତର୍ପଣରେ କବିଚେତନାରେ ଅରୂପ ଅମର୍ତ୍ତ୍ୟାଲୋକର ଉନ୍ମୁଖତାକୁ ଜଣାଇ ଦେଇଥିଲାବୋଲି ଅନୁମାନ କରିଯାଇପାରେ ।

(୭୬) ଗ୍ରନ୍ଥାବଳୀ ୧ମ—ପୃ. ୪୮୭

Digitized by PPRACHIN, SOA

ପୁଣି ଏ ଦେଖା ଉଦାସୀନ ନିଃସ୍ପୃହତାରେ ନୁହେଁ, ଦେବତାର ଅମର୍ତ୍ତ୍ୟ ଲୀଳାକୁ ମର୍ତ୍ତ୍ୟ-ଆଖିରେ ପ୍ରୀତି ମୁଗ୍‌ଧ ଏ ମଧୁର ଦେଖା । (୭୮)

ଏ ପ୍ରସଙ୍ଗରେ କବି ପ୍ରଯୁକ୍ତ 'ଭୁବନେଶ୍ୱର' ଶବ୍ଦ ପ୍ରଣିଧାନଯୋଗ୍ୟ । ଜୀବନେଶ୍ୱରଙ୍କୁ ଖୋଜିବା ପାଇଁ ଜୀବନକୁ ବାଦ୍ ଦେବାକୁ ହୁଏନାହିଁ । ବସ୍ତୁତଃ ଭୁବନପ୍ରତ୍ୟକ୍ଷ ଭୁବନେଶ୍ୱର ହିଁ ଜୀବନ ସଂଗୁପ୍ତ ଜୀବନେଶ୍ୱର । କବିଙ୍କର ସଚେତନ ପ୍ରୟୋଗ ଭିତରେ ଏ ଶବ୍ଦଗୁଡ଼ିକ ଚମତ୍କାର ରହସ୍ୟବାଦୀ ଭାବବ୍ୟଂଜନା ବହନ କରିଛନ୍ତି । ଈଶ୍ୱରଙ୍କ ଭୁବନେଶ୍ୱର, ବିଶ୍ୱେଶ୍ୱର ପ୍ରଭୃତି ପରିଚୟ ଉପରେ କବି ପୁଣି ଅନ୍ତର୍ଯାମୀ, ଦୁର୍ଲଭ ବଲ୍ଲଭ, ଜୀବନେଶ୍ୱର ଇତ୍ୟାଦି ଅଂତରଂଗ ସମ୍ଭାଷଣ କରିଛନ୍ତି । ସର୍ବେଶ୍ୱରଂକୁ ତ ଚେତନାର ବାହାରେ ଓ ଭିତରେ, ଭୁବନରେ ଓ ଜୀବନରେ, ଜଡ଼ରେ ଓ ଚିନ୍ମୟରେ ସର୍ବତ୍ର ଖୋଜିବାକୁ ହୁଏ । (୭୯) କବିଂକ ସ୍ୱରରେ ରାଜ-ସୁତର ଗଦଗଦରବାଣୀ ସହ ଅଂତପୁରର ପ୍ରାଣପ୍ରିୟ ଉଦ୍ଦେଶ୍ୟରେ ଆଶାବଶ୍ଚି ଗାନଟି ମଧ୍ୟ ସମତାନରେ ରଚିତ । ସୃଷ୍ଟି, ପ୍ରକାଶ, ଧ୍ୱଂସ ପ୍ରଭୃତି ଅସଂଖ୍ୟ ଲୀଳାଛଂଦର ଚରନଟ ହୋଇ ମଧ୍ୟ ସ୍ରଷ୍ଟା ହେଉ ହୃଦୟର ଏକକ ପ୍ରଣୟ-ଘନିଷ୍ଠ, ଏ ରହସ୍ୟ ସମ୍ପର୍କରେ କବି ଭାବାନ୍ୱିତ । କ୍ଷୁଦ୍ରପ୍ରୀତି (ପୃ. ୪୫୫), ଗୁପ୍ତପ୍ରଣୟ (ପୃ. ୪୫୮), ଅନ୍ତର ଆଲୋକ (ପୃ. ୪୬୦), ଆଦାନ (ପୃ. ୪୬୦), ସର୍ବସମର୍ପଣ (ପୃ. ୪୬୪), ଭ୍ରମର ଅହଂକାର (ପୃ. ୪୬୧), ଐଶ୍ୱର୍ଯ୍ୟମୟ (ପୃ. ୪୬୬), ଚିରଅନ୍ୱେଷଣ (ପୃ. ୪୪୫), ନବଜନ୍ମାଂତର (ପୃ. ୪୬୭) ପ୍ରଭୃତି ସନେଟ୍ (୮୦) ଏହି ପ୍ରୀତିମୁଗ୍‌ଧତାର ରସଘନ ବିଚିତ୍ର ଭାବବିଳାସ । କବିର ଅନ୍ୟାନ୍ୟ ପ୍ରଣୟଭାବସ୍ନିଗ୍‌ଧ ରହସ୍ୟବାଦୀ କାବ୍ୟଚିତ୍ରମାନଂକ ଭିତରେ ଏଗୁଡ଼ିକୁ ଅଂତର୍ଭୁକ୍ତ କରାଯାଇପାରେ । କ୍ଷୁଦ୍ରପ୍ରୀତିରେ ବଡ଼ ବ୍ୟାକୁଳତାର ସହ କବି ଅନୁଯୋଗ କରିଛନ୍ତି, "କେବେହେଲେ କରି ପୃଷ୍ଠେ ଅଂଗୁଳି ସଞ୍ଚର/ହେ ବିରାଟ, ମାନରଖ ମୋର କ୍ଷୁଦ୍ରତାର ।" ପ୍ରୀତିରେ ସଂଶୟ ତ ଏକ ଅନିବାର୍ଯ୍ୟ ପ୍ରବଣତା; ସଂଶୟ ଓ ବିଶ୍ୱାସର କ୍ଷୁର ଧାରରେ ପ୍ରେମର ଶାଶ୍ୱତ ଜୟଯାତ୍ରା । ପ୍ରିୟ ଯେତେ ମହାନ୍, ପ୍ରୀତି ଯେତେ ଗଭୀର ହେଲେ ବି ପ୍ରଣୟୀର ଏ ଆଶଙ୍କା ଅମୂଳକ ନୁହେଁ ଯେ, ସେ ପ୍ରୀତିବଂଚିତ ହୋଇପାରେ, ପ୍ରିୟତମ୍ୱଚ୍ୟୁତ ହୋଇପାରେ । ଏହା ବରଂ ସ୍ୱାଭାବିକ ଯେ ବିରାଟ କ୍ଷୁଦ୍ରକୁ ଭୁଲିପାରେ । ଈଶ୍ୱର ଅସୀମ ହୋଇ ମଧ୍ୟ କ୍ଷୁଦ୍ର ସୀମା ପ୍ରତି ପ୍ରୀତି-ବିଶ୍ୱସ୍ତ କବି ପ୍ରେମର ଏଇ ଆଶ୍ୱାସନାଟିକୁ ଲୋଡ଼ିଛନ୍ତି । ପ୍ରେମର ପାତ୍ର କ୍ଷୁଦ୍ର ହୋଇପାରେ, ମାତ୍ର ତାର ପ୍ରେମର ଶକ୍ତି ସାମାନ୍ୟ ନୁହେଁ । ଅଗ୍ନି ଯେପରି କ୍ଷୁଦ୍ର ଆଧାରରେ ଆଚ୍ଛାଦିତ ଥିଲେ ମଧ୍ୟ ତାର ଦାହିକାଶକ୍ତିକୁ ହରାଏ ନାହିଁ, ପ୍ରେମ ତାର ଦୁର୍ଜୟ ମାନରେ ସେହିପରି ହୃଦୟ ଭିତରେ ସଂଜୀବିତ ରହିଥାଏ । କବି ପ୍ରେମର ସେହି ସ୍ୱାଭିମାନକୁ ସ୍ୱୀକୃତି ଦେବାକୁ ସ୍ପର୍ଶ-ଗୌରବ ଦେଇ ଜୀବନ ପ୍ରତ୍ୟଭିଳାଷକୁ ସାର୍ଥକ କରିବାକୁ ପ୍ରାଣ-ପ୍ରିୟତମ ନିବେଦନ କରିଛନ୍ତି । ତାଂକ ମୁକ୍ତିରେ ପ୍ରୀତିସଂପର୍କ କ୍ଷୁଦ୍ରାକ୍ଷୁଦ୍ରର ବିଗ୍ରହ କରେ ନାହିଁ । ବରଂ କ୍ଷୁଦ୍ର ପ୍ରେମର ମାନରକ୍ଷି ତାର ପ୍ରଣୟ ଭାଗ୍ୟକୁ ସାର୍ଥକ କରିଦିଏ । କ୍ଷୁଦ୍ର ତ ସ୍ୱାଭାବିକ ସଂକୁଚିତ । ବିରାଟର ସ୍ପର୍ଶ ଦେଇ ତାର ସେ ସଂକୋଚନ, ଗ୍ଲାନିକୁ ଦୂର-କରି, ନିଜ ପ୍ରେମ ସଂପର୍କରେ କ୍ଷୁଦ୍ରକୁ ଆଶ୍ୱସ୍ତ ଓ ଅପଣାର ହୃଦୟାନୁରାଗ ପ୍ରତି ବିଶ୍ୱସ୍ତ କରି ରଖିଥାଏ ।

---

(୭୮) "ମୁହିଁ ଅନୁରାଗୀ ତବ ଜୀବନ ଲୀଳାର ।"—ଗ୍ରଂଥାବଳୀ ୧ମ—ପୃ: ୪୯୫

(୭୯) ଖୋଜିବ ମୁଁ ତେଣୁ ତାଂକୁ ଭିତରେ ବାହାରେ
ଏକ ଚକ୍ଷେ ଅଂତର୍ଯାମୀ, ଅନ୍ୟ ବିଶ୍ୱେଶ୍ୱରେ ।" ଗ୍ରଂଥାବଳୀ ୧ମ—ପୃ. ୪୯୭

(୮୦) ଗ୍ରଂଥାବଳୀ ୧ମ ଭାଗ

Digitized by PPRACHIN, SOA

କବିଚିତ୍ତର ଏହି ଆଶ୍ୱସ୍ତି ଓ ପ୍ରୀତି-ବିଶ୍ୱସ୍ତତାର ସଂବାଦ ତାଙ୍କ 'ଜନ୍ମାନ୍ତର' ଭାବଚେତନାମୂଳକ କବିତାମାନଙ୍କରେ ରୂପାୟିତ । (୮୧) ଜନ୍ମଜନ୍ମର ଅନ୍ୱେଷଣ ସେଇ ଜୀବଧନ। ପ୍ରତିଟି ବାସନା, ଆକାଂକ୍ଷା, ଆସକ୍ତି ଓ ସୁନ୍ଦର ପ୍ରତି ଆକର୍ଷଣ ମୂଳରେ ଆପଣାର ଅଲକ୍ଷ୍ୟରେ ଜୀବନ ସେଇ ସୃଷ୍ଟି-ଆଦ୍ୟ ପ୍ରେମାନଂଦକୁ ହିଁ ଅସ୍ୱାଦନ କରିବାକୁ ଚାହିଁଥାଏ । ତେଣୁ ଜୀବନର ସକଳ କାର୍ଯ୍ୟରେ, ଜନ୍ମ-ଜନ୍ମାଂତରର ପ୍ରତିଟି ଆବର୍ତ୍ତରେ ତାହାରି ପ୍ରତି ସଞ୍ଚାର ଅଭିମୁଖିତା ଓ ଅଗ୍ରସରତା ଲାଗିରହେ । କବି ତେଣୁ ବିଗତ ଅସଂଖ୍ୟ ଜନ୍ମଗୁଡ଼ିକୁ ବୃଥା ହେବାପାଇଁ ନାହିଁ, ବରଂ ସେସବୁ ଯେପରି ଏକ ପୁଷ୍ପମାଳାର ପ୍ରସ୍ତୁତି । ପ୍ରତି ଜନ୍ମର ଅନୁଭବକୁ ଜୀବନ ସହିତ ଯେପରି ଗୋଟିଏ ଗୋଟିଏ ସୁମନ ସୁରଭିରେ ଭରି ମାଳା ଗୁନ୍ଥି ଚାଲିଥାଏ, ପ୍ରିୟ ଦର୍ଶନର ସେଇ ଦୁର୍ଲଭ ମୁହୂର୍ତ୍ତଟିକୁ ଭେଟି ଦେବାପାଇଁ । (୮୨)

ଏଇ ଅବକାଶରେ କବିଚିତ୍ତରେ ପ୍ରଣୟର ବିଚିତ୍ର ଭାବୋଦ୍‌ବେଳନମାନ ରୂପ ନେଇଛଂତି । ଏଠି ନିବିଡ଼ ସାନ୍ନିଧ କାମନା ଭିତରେ କବି ଜୀବନପ୍ରିୟଂକୁ ଜଣାଉଛଂତି, "ତମେ ରହ ରହିଲେ ରହସ୍ୟ ଅଜ୍ଞାନ ।" (୮୩) ହୃଦୟର ଅତୃପ୍ତ ଆଶାରେ, ଅସମାପ୍ତ ପ୍ରତୀକ୍ଷା ଭିତରେ, ସେ ଅପ୍ରାପ୍ୟ ପ୍ରେମ ମହତ୍ତ୍ୱର ହୋଇ ବଂଚିରହୁ କବି ଆଶଂକା କରଂତି । ସେ ବିରାଟ ପ୍ରୀତିକୁ ସହଜସାଧ୍ୟ ମଣି ତାର ଅମର୍ଯ୍ୟାଦା କରିପାରଂତି, ସେ ମହାନ ପ୍ରେମିକଂକୁ ନିଜର ଭାବିବାକୁ ପାଇ ଅହଂକାରରେ ତାଂକର ଅଗୌରବ କରିପାରଂତି । ପାର୍ଥିବ ପ୍ରତ୍ୟୟାନୁଭୂତିରେ କବି ପ୍ରେମର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବ ଓ ଭାବ-ରୂପମାନଂକୁ ଚହ୍ନି ସାରିଛଂତି । ପ୍ରୀତିଚେତନାର ଦୁର୍ବଳ ପାର୍ଶ୍ୱଗୁଡ଼ିକୁ ମଧ୍ୟ ଜାଣିସାରିଛଂତି । ତେଣୁ ଈଶ୍ୱର ଓ ତାଙ୍କର ପ୍ରେମ ଧୂଳିଧୂସର ସାଧ କବି ଏ ଅସମ୍ମାନ ଦେବାକୁ ଚାହାଂନ୍ତିନାହିଁ । ବରଂ ହୃଦୟର ପ୍ରୀତି ସାଧନା ଯେଉଁ ସୁଖମୟ ଆଶାଟିରେ ଅନୁଲିପ୍ତ, ତାକୁଇ ଜନ୍ମଜନ୍ମାଂତରର ସାଧନା-ସଙ୍ଗୀ କରିବାକୁ ପ୍ରସ୍ତୁତ । (୮୪)

ଏକ ସାମୟିକ ଭାବବିଳାସ ରୂପେ କବିପ୍ରାଣରେ ଏ ଅରୂପ-ପ୍ରୀତି ଦିନେ ହୁଏତ ଉଦୟ ମାଗିଥିଲା, ଏବେ ତାକୁଇ କବି ଅଂତରଲୋକ ରୂପେ ନିରବଧି ଲାଭ କରିବାକୁ ଚାହାଂନ୍ତି । କ୍ରମଶଃ କବି-ଚିତ୍ତର ସବୁ ଭାବସଂଘାତ କେବଳ ମିଳନସ୍ପର୍ଶ ଉନ୍ମୁଖତା ଭିତରେ ଆତ୍ମାର 'ନବପ୍ରଣୟିନୀ' ପରିଚୟ ଭିତରକୁ ଅପସରି ଆସିଛଂତି । ପ୍ରେମାସ୍ପଦକୁ ସ୍ପର୍ଶ ଭିତର ଦେଇ ନିକଟ-ପ୍ରତ୍ୟକ୍ଷ କରି ପାଇବାର ଏ ଆବେଗ ପ୍ରଣୟ ଚେତନାର ମୁଖ୍ୟ-ରୂପ । ନିଜ ପୃଷ୍ଠାରେ 'ଈଶ୍ୱରର ଅଂଗୁଳି ସଂଗୃହ' ଭିତରେ ଆଧାଣ। ପ୍ରୀତିର ମାନ ରକ୍ଷା ଚାହିଁଥିବା ସେ ଦିନର କ୍ଷୁଦ୍ର ଶଂକିତ ନବପ୍ରେମଟି କ୍ରମଶଃ କେବଳ ମିଳନ

(୮୧) "ହେ ପ୍ରିୟ ଅନ୍ତରତମ ! ହେ ଭୁବନେଶ୍ୱର
ମୋର ମାଳା ଗୁନ୍ଥା ଯାହା ତମ ପୂଜା ପାଇଁ
ପ୍ରୀତି ପୁଷ୍ପ ତହିଁ ଅଶ୍ରୁ ଶିଶିର ସଜଳ
ସୂତ୍ର, ନବ-ଜନ୍ମ, ମାଳାକାର ସୁଧାଶାସ୍ତ୍ରୀ ।" 'ଚମଲଗ'/ଗ୍ରନ୍ଥାବଳୀ ୧ମ-ପୃ. ୪୫୨

(୮୨) "ନାନା ଫୁଲମାଳ ମୋର ଜନ୍ମଜନ୍ମାନ୍ତରେ
ଭେଟିବାକୁ ଶେଷଦେଖା ବେଳେ ମୋ ପ୍ରିୟର ।" ଗ୍ରଂଥାବଳୀ ୧ମ—ପୃ. ୪୪୭

(୮୩) ଗ୍ରନ୍ଥାବଳୀ ୧ମ ଭାଗ ପୃ: ୪୪୭

(୮୪) "ତୁମ ଲାଗି ସୁଖେ ନେବି ଜନ୍ମଜନ୍ମାଂତର ।"—ଗ୍ରନ୍ଥାବଳୀ ୧ମ, ପୃ. ୬୦୫

Digitized by PPRACHIN, SOA

ଆଶାରେ ଉଚ୍ଚକିତ ହୋଇଉଠିଛି, "ହେ ପରମ, ହେ ନିକଟ, ହେ ଅଂତରତମ / ଖୋଜେ ଆତ୍ମା ତବ ସ୍ପର୍ଶ ଆଜି ଅହରହ ।" (୮୫) ଆତ୍ମାର ଏ ଅପେକ୍ଷାକୁ କବି ନବପ୍ରଣୟିନୀର ପ୍ରତୀକ୍ଷା ସହ ଉପମିତ କରିଛଂତି । ଏ ଉପମା ଭିତରେ ଲୌକିକ ପ୍ରେମର ମଧ୍ୟ ଏକ ଅଲୌକିକ ରହସ୍ୟବ୍ୟଂଜନା ଫୁଟିଉଠିଛି । ନବବଧୂ ପ୍ରିୟକୁ ପ୍ରବଳଭାବେ କିଂତୁ ନିଭୃତରେ ପାଇବାକୁ କାମନାକରେ । ତେଣୁ, "ଯେତେ ଲୋକ କୋଲାହଳ, ସେତେ ତା ବିରହ ।" ପୁଣି ଆତ୍ମା ଏଠାରେ ନବବଧୂର ରୂପସାମ୍ୟ ଦେଖିବାର ରହସ୍ୟବାଦୀ ତାତ୍ପର୍ଯ୍ୟ ମଧ୍ୟ ସୁସ୍ପଷ୍ଟ । କବି ଆତ୍ମାର ଭଗବତ୍ ପ୍ରେମକୁ ନୂତନ କରି ପ୍ରତ୍ୟକ୍ଷ କରୁଛଂତି ବୋଲି ଜଣାପଡ଼େ । ଆତ୍ମାର ଏ ନବାନୁରାଗ ନବବଧୂର ପ୍ରେମ ପରି ସହଜ ଓ ସଲଜ୍ଜ, ଗୋପନ ଓ ନୀରବ । ଜୀବନର ବାସନାଦଗ୍ଧ ଭବ କୋଳାହଳମାନ, ଜଗତର ଦାବିଦେଇ ଜଂଜାଳମୟ ମୁହୂର୍ତ୍ତମାନ ଆତ୍ମା ବଧୂକୁ ପ୍ରାଣାରାମଂକ ସହ ଏକାଂତ ମିଳନସୁଖ ଉପଭୋଗ କରିବାକୁ ସହଜରେ ସୁଯୋଗ ଦିଅନ୍ତିନାହିଁ ।

କବିଂକର ମନେପଡ଼ୁଛି, ଅତୀତରେ ବହୁବାର ନିଜକୁ ସେ ନାସ୍ତିକ ଓ ଧର୍ମବିରୋଧୀ ବୋଲି ଘୋଷଣା କରିଥିଲେ । (୮୬) ଜୀବନର ପ୍ରବଂଚିତ୍ତ କରିବାକୁ ଯାଇ କବି ଦିନେ ଈଶ୍ୱରଂକ ବିରୁଦ୍ଧରେ ବିଦ୍ରୋହର ସ୍ୱର ଉଠାଇଥିଲେ । ମାତ୍ର ଏବେ ଚେତନାର ନବାଲୋକରେ ସେ ନିଜର ପୂର୍ବ ବିଶ୍ୱର ଭ୍ରାଂତି, ସ୍ୱଳ୍ପ ଦୃଷ୍ଟି ଓ ବଂଚିତ ଆଶାର ପ୍ରବଂଚିତ୍ତ ଆବିଷ୍କାର କରିଛଂତି । କବି ବରଂ ଅନୁଭୂତ ଯେ, ଈଶ୍ୱରଂକ ଉଦାରତା ତାଂକର ସବୁ ଭର୍ତ୍ସନା ଓ ସନ୍ଦିଗ୍ଧତା ସତ୍ତ୍ୱେ ତାକୁ ଆପଣାର କରିରଖିଛି । ତେଣୁ ସେ ଦୂରପରାଧୀ ଅତୀତ ସଂପର୍କରେ ତାଂକର ଶାଂତ ପ୍ରଶ୍ନ "ମନେରଖିଛ କି ନାଥ—କେତେ ଯେ ଭର୍ତ୍ସନା ।" (୮୭) ବଂଚନାର ହାହାକାର ଦିନେ ଯାହାକୁ ନିଷ୍ଠୁର ନିର୍ଦ୍ଦୟ ବୋଲି ପ୍ରତିପାଦନ କରିଥିଲା, କବି ଏବେ ତାହାଙ୍କୁ ଏକ ମଂଗଳଦାୟୀ ପରମ କାରୁଣିକ ବୋଲି ଉପଲବ୍ଧି କରିଛନ୍ତି । ଯାହା ଅପାର ବଂଚନା ଥିଲା, ତାହାହିଁ ଆଜିର ନୂତନ ଉପଲବ୍ଧିରେ ଆଶୀର୍ବାଦ ମନେହୋଇଛି । ସେଇଥିପାଇଁ ଏ ଭିନ୍ନ ସ୍ୱରର ଭିନ୍ନ ଗାନ, "ନ ଦେଇଚ ଯାହା ତାହା ପାଇଁ ମୁଁ ନମସ୍ତେ ।" (୮୮)

ଏହି ଅବକାଶରେ ବିଗତ ଜୀବନର ଅଶ୍ରୁ ସଂଚୟ ଆରାଧନାର ପୂତୋଦକ ରୂପେ ଲାଗିହେବାର ସୌଭାଗ୍ୟ ଲାଭକରିଛି । ସେଇ ସୌଭାଗ୍ୟର ସନ୍ଧାନ ସ୍ୱୀକୃତିରେ ଅଶ୍ରୁ ମଧ୍ୟ ମୁକ୍ତାର ରୂପାଂତର ଲାଭକରିଛି । କବି ସମର୍ପଣର ସାମର୍ଥ୍ୟ କାମନା କରିଛଂତି । ହୃଦୟରେ ଅନେକ ଆହତ ଆଶାର ଅଭିମାନ, କ୍ଷୋଭ ଓ କ୍ରୋଧ ଏବେବି ସଜୀବ । ତଥାପି ଜୀବନ ଦେବତାଂକ ସହ ଭାବ ନିବେଦନର ନିରୋଳା ଅବକାଶରେ ସେ ବଂଚନାର କଥା ମନେପଡେନାହିଁ. ଅଭିଯୋଗର ସ୍ୱର ସ୍ଫୁରେନାହିଁ । କେବଳ ଏକ ଅନିର୍ବଚନୀୟ ଆବେଶରେ ସବୁ ଦୁଃଖ ଭୁଲିହୋଇଯାଏ, ଆତ୍ମବିସ୍ମୃତି ଘଟେ । ସେହି ମଂତ୍ର-ମୁଗ୍ଧ ମୁହୂର୍ତ୍ତରେ ପ୍ରାଣର ସମସ୍ତ କ୍ଷୋଭ ମିଳାଇଯାନ୍ତି । (୮୯) ପୂର୍ବର ଯେ ଅହଂକାରୀ ଚେତନା

---

(୮୫) ଗ୍ରନ୍ଥାବଳୀ ୧ମ ଭାଗ ପୃ: ୪୬୦

(୮୬) ,, 'ହେମଶସ୍ୟ' ପୃ: ୮୬

(୮୭) ,, ୧ମ ଭାଗ ପୃ: ୪୬୦

(୮୮) ,, ,, ପୃ: ୪୬୧

(୮୯) "ତଥାପି ନିରୋଳା ଯାନେ ହେଲେ ମୁଖାମୁଖୀ
କି ମଂତ୍ରେ ଭୁଲିଅ ସବୁ ସେ କ୍ଷୁବ୍ଧ ଅତୀତ ।
ହୁଏ ଖାଲି ଅଶ୍ରୁ ତେଜି ଅନ୍ତର ମୋ ସୁଖୀ
ତୁମ୍ଭର ସନ୍ନିଧି ଲଭି ପ୍ରାଣ ହୁଏ ସ୍ଫୀତ ।"
ଗ୍ରଂଥାବଳୀ ୧ମ—ପୃ. ୪୬୧

ଆଜି ପଦାନତ । ପରମପ୍ରେମର ବିଶାଳତା ଉପଲବ୍ଧି କରି କବି ସଂକୁଚିତ, ପୁଣି ତାର ମହିମା-ମଧୁର ସ୍ପର୍ଶରେ ବିହ୍ୱଳିତ । ସମଗ୍ର ଅସ୍ତିତ୍ୱ ଭରି ପ୍ରିୟ ମିଳନ ପାଇଁ ଏବେ ତାଂକ ହୃଦୟର ଉନ୍ମୁଖତା, "ନିରଂତର ଭିନ୍ନ ନୋହୁ ତବ ମମ ଯୋଗ ।" (୯୦)

ଅହଂମୁକ୍ତର ସେ ବୈଭବହୀନ ଶୂନ୍ୟଲଗ୍ନରେ କବି କେବଳ ଗୋଟିଏ ଆଶ୍ୱାସନା ଗୁହିଁଛନ୍ତି, "ତୁମରି ସ୍ନେହର ଗନ୍ଧେ ଭରୁ ମୋର ପ୍ରାଣ ।" (୯୧) ଏ ସ୍ନେହର ସ୍ପର୍ଶ ଲଗେ ଅଖିର ଲୁହରେ ଯାହା ପ୍ରିୟ ପାଇଁ ଉତ୍ସର୍ଗିତ ହେବାର ଆନନ୍ଦରେ ମୁକ୍ତାୟିତ ହୋଇଯାଏ । ସର୍ବରିକ୍ତ ଜୀବନରେ ପ୍ରଣୟାଶ୍ରୁ ଏକମାତ୍ର ସୁଧାର ଗଂଗୋତ୍ରୀ ମନେହୁଏ ।

ସର୍ବଶେଷରେ କବି ପରମ ପ୍ରେମକୁ ଜୀବନର ଚରମବନ୍ଦନା ବାଢ଼ିଛନ୍ତି, "ସହସ୍ର ଦୁଆର ମୋର ଖୋଲି ତୋହଲାଗି ।" (୯୨) କବି ସେଇ ସହସ୍ର-ପ୍ରେମ-ରୂପକୁ ସହସ୍ର ହୃଦୟ ନେଇ ଲଭକରିବାକୁ ଗୁହାନ୍ତି । ବୈରାଗ୍ୟର ପଥ ଗୋଟିଏ, ସାଧନା ଏକମୁଖୀ । ମାତ୍ର ଅନୁରାଗର ସହସ୍ର ପଥ । କବି ପ୍ରଣୟ ମଧୁରତାର ସହସ୍ର ଭୋଗ ପଥ ଦେଇ ସେଇ ସହସ୍ରରୂପୀ ଈଶ୍ୱରଂକ ପ୍ରୀତିସ୍ପର୍ଶ ଗୁହାଂନ୍ତି । କବି ଏଠାରେ ସକଳ ଜାଗତିକ ପ୍ରାପ୍ତି-ରୂପକୁ ମଧ୍ୟ ଈଶ୍ୱରୀୟ ବୋଲି ଚିହ୍ନିତ କରନ୍ତି । ମମତାର ଐଶ୍ୱର୍ଯ୍ୟମୟୀ ପୂଜାବେଦୀରେ ପ୍ରେମମୟଂକର ଏ ଐଶ୍ୱରିକ ପ୍ରତିଷ୍ଠା । ଏ ପୂଜାରେ ଜୀବନର ସ୍ୱେଦ୍‌ସଞ୍ଚିର ଧରି ଅଶ୍ରୁ ହିଁ ଆରାଧିକା ସାଜିବ । ଅଶ୍ରୁ ମୂଂଚନ କାଳରେ ଦେବତାଂଙ୍କର ମଧୁର ସ୍ପର୍ଶ କବି ପ୍ରାଣରେ ବାଜିବ । ସେଇ ସୁଖମୟ ଲଗ୍ନରେ ବିଗତ ଓ ସମାଗତ ସବୁ ଅପ୍ରାପ୍ତିର ଗ୍ଲାନି ପୋଛିହୋଇଯିବ । ସେଇ ଗୋଟିଏ ପ୍ରାପ୍ତି ସହସ୍ର ପ୍ରାପ୍ତିରେ ପୂର୍ଣ୍ଣ ହୋଇଯିବ । (୯୩)

ମନେପଡ଼େ, 'ଧୂପ' ଆଉ 'ହୈମଶସ୍ୟ'ର ମର୍ତ୍ତ୍ୟପ୍ରଣୟ ବିଭୋର କବି ଧରାର ପ୍ରୀତିଶୀଳାକୁ ସହସ୍ର ହସ୍ତରେ ପ୍ରେମାଲିଂଗନ ଦେବାର କାମନା କରିଥଲେ । ସେ ମର୍ତ୍ତ୍ୟସ୍ପୃହା ଆଜି ଅମର୍ତ୍ତ୍ୟ ପ୍ରେମରେ ରୂପାନ୍ତରିତ ହେବାର ଅଭିଳାଷକୁ ପ୍ରକାଶ କରିଛି । ପ୍ରମାଣ କରିଛି, ଜୀବନର କୌଣସି ଭାବ, ଅନୁଭବ ନିଜ ସମ୍ପର୍କରେ ଶେଷକଥା ନୁହଂନ୍ତି । ପରିବର୍ତ୍ତିତ ଓ ଊର୍ଦ୍ଧ୍ୱାୟିତ ହେବାର ଅବକାଶ ଚେତନାର ପ୍ରତି ସ୍ତର ପାଇଁ ଉନ୍ମୁକ୍ତ । କବିଙ୍କର ପୂର୍ବପ୍ରଣୟାନୁଭୂତ ବରଂ ଅମର୍ତ୍ତ୍ୟ ପ୍ରୀତି-ରୂପକୁ ଚିହ୍ନାଇ ଦେବାର ସହଜ ପଥରେ ଅବଲୀଳାକ୍ରମରେ ଯେନଆସିଛି । ପ୍ରିୟା ଦିନେ ତାଙ୍କୁ ପ୍ରୀତିର ସହସ୍ରାୟିତ ଐଶ୍ୱର୍ଯ୍ୟ-ରୂପ ପାଇଁ ଲୋଭାତୁର କରିଥିଲା; ଯେଉଁ ଐଶ୍ୱର୍ଯ୍ୟର ରୂପଘନ, ପାର୍ଥିବ ମୂର୍ତ୍ତିରେ ଯେପରି ତାର ଆବିର୍ଭାବ ଘଟିଥିଲା । ପ୍ରିୟାଲିଂଗନ ପାଇଁ ତୀବ୍ର ବ୍ୟାକୁଳତା, ହୃଦୟର ଅପୂର୍ଣ୍ଣ ଆକାଂକ୍ଷା, ଅଖଂଡ ପ୍ରେମ-ତୃଷ୍ଣା ଓ ଚିରନ୍ତନ ଅତୃପ୍ତି-ଭାବନା କବିପ୍ରାଣକୁ ଯେ ଦଗ୍ଧ କରିଥିଲା, ଏ ନୂତନ ଉଦ୍‌ବୋଧନରେ ସେଇ ଭାବାନୁଭୂତି ଯେପରି ଚେତନାର ଗଭୀରତାରେ, ଅତଳତାରେ ପରମ ପ୍ରେମ ଅଭିଳାଷୀ ହୋଇଉଠିଲା । କବିଙ୍କର ମର୍ତ୍ତ୍ୟ ପ୍ରଣୟାନୁଭୂତି ସମ୍ପର୍କରେ 'ଧୂପ-ହୈମଶସ୍ୟ' ପର୍ଯ୍ୟାୟର ସକଳ ମୁଗ୍ଧ ଉଚ୍ଚାରଣ କଣ୍ଠରେ ଅନ୍ତରର ଶାଶ୍ୱତ ପ୍ରେମ ଉପଲବ୍‌ଧିର ସତ୍ୟତା ହୋଇ ପୁନର୍ବାର ଆବିର୍ଭୂତ । ଏହାହିଁ ତାଂକ ପ୍ରୀତିସାଧନାର ସଫଳତା ଓ କାବ୍ୟସାଧନାର ଋଦ୍ଧି ।

(୯୦) ଗ୍ରନ୍ଥାବଳୀ ୧ମ ପୃ. ୪୭୫

(୯୧) ଗ୍ରଂଥାବଳୀ ୧ମ—ପୃ: ୪୭୫

(୯୨) ଐଶ୍ୱର୍ଯ୍ୟମୟୀ—ପୃ: ୪୭୬, ଗ୍ରଂଥାବଳୀ ୧ମ

(୯୩) "ତମ ଲାଗି ହେବ ସେଇ କ୍ଷଣେ ଅଶେଷ ବିଶେଷ ।" ଗ୍ରଂଥାବଳୀ ୧ମ—ପୃ. ୪୭୭

Digitized by PPRACHIN, SOA

'କ୍ଷଣ' ସଂକଳନରେ କବି ଚେତନାର ଦେହ ମନ ପ୍ରାଣର ଊର୍ଦ୍ଧ୍ୱରତା ସ୍ଥିତ ଏକ ଅଲୌକିକ ଶୂନ୍ୟତାର ଉପଲବ୍ଧି ସଙ୍କେତ ସ୍ପଷ୍ଟ । ଶୂନ୍ୟତା ଭିତରେ ଅଲୌକିକ ବେଦନାବୋଧର ଜଗତଟି ମଧ୍ୟ ଖୋଲିଯାଏ, 'ସିନ୍ଧୁ ଓ ବିନ୍ଦୁ'ରେ ତାହାର ସଂବାଦ । ଊର୍ଦ୍ଧ୍ୱସ୍ଥିତ ଦିବ୍ୟଜ୍ୟୋତି ଅନ୍ତଶ୍ଚେତନର ଅଭ୍ୟନ୍ତରରେ ଛପିରହିଥିବା ଗୋପନ ଅଂଧକାରକୁ ଯେ ବିଦୀର୍ଣ୍ଣ କରିଦିଏ, କବି ସେଇ ଉପଲବ୍ଧିର ସମ୍ମୁଖୀନ । ଜଗତ ଓ ଜୀବନ କବି ଅନୁଭୂତିରେ ପୂର୍ଣ୍ଣ ସତ୍ୟ; ସେହିପରି ତାଙ୍କ ଚେତନାରେ ଅସୀମ ଓ ଜୀବନାତୀତ ମଧ୍ୟ ସତ୍ୟ । ରୂପ ଓ ଜୀବନକୁ ଅସ୍ୱୀକାର କରିଦେଲେ ମାନସିଂହଙ୍କ କାବ୍ୟୋପଲବ୍ଧିଗତ ଜୀବନର ସମସ୍ତ ପ୍ରେମ, ସମଗ୍ର ମାଧୁର୍ଯ୍ୟ ଅଂତର୍ହିତ ହୋଇଯିବ । ଜୀବନକୁ ବାଦ୍‌ଦେଇ କବିଙ୍କ ରଚନାରେ ଜୀବନାତୀତର ସାଧନା ହୋଇନାହିଁ । ତାଙ୍କ ପାଇଁ ଜୀବନାତୀତ ନୁହଁ କେବଳ ଜୀବନ ଯୋଗେ ସତ୍ୟ । ରବୀନ୍ଦ୍ରନାଥ 'ସୁରଦାସେର ପ୍ରାର୍ଥନା'ରେ ଲେଖିଥିଲେ, "ଇନ୍ଦ୍ରିୟ ଦିୟେ ତୋମାର ମୂର୍ତ୍ତି ପଶେଛେ ଜୀବନ ମୂଲେ ।" (୧୪) ମର୍ତ୍ତ୍ୟଲୋକରେ ଅମର୍ତ୍ତ୍ୟର ଅରୂପକୁ ରୂପାଶ୍ରିତ କରି ମନୁଷ୍ୟ ଜୀବନର ସାଧନା କରେ । ମାନସିଂହ କାବ୍ୟରେ ମହାମାନବର ବନ୍ଦନା, ସୌନ୍ଦର୍ଯ୍ୟ ଓ ପ୍ରେମର ଧ୍ୟାନ ଏବଂ ଉନ୍ନତତର ଚେତନାଲୋକ ଲଭିବାର ଆକାଂକ୍ଷା ରହିଛି —ଏ ରୋମାଣ୍ଟିକ ଗଭୀର ଅଧ୍ୟାତ୍ମ ପ୍ରେରଣା ପରିଦୃଷ୍ଟ ।

କବି ଈଶ୍ୱରଙ୍କୁ ସମଗ୍ର ଜୀବନ ଧରି ସନ୍ଧାନ କରିଛନ୍ତି । ସେ ସନ୍ଧାନ ଅବଶ୍ୟ ମଂଦିର ଗର୍ଭରେ ନୁହେଁ । ଆନୁଷ୍ଠାନିକ ଧର୍ମଧାରଣା ପ୍ରତି କବିସତ୍ତା ବିଦ୍ରୋହୀ । ମାତ୍ର କବିଂକ ଅନ୍ୱେଷିତ ଈଶ୍ୱରଙ୍କୁ ଜାଣିବା ପାଇଁ, ସେଠାରେ ପହଂଚିବା ପାଇଁ, କବିଂକ ସମ୍ମୁଖରେ ଗୋଟିଏ ମାତ୍ର ପଥ ରହିଛି— ତାହା ପ୍ରେମ—ବ୍ୟକ୍ତିପ୍ରେମ ଓ ବିଶ୍ୱପ୍ରେମ । ପୃଥିବୀର ଭାଷାରେ ଈଶ୍ୱରଂକର ସାର୍ଥକତମ ଅଭିବ୍ୟକ୍ତି ଶ୍ରଦ୍ଧା / ପ୍ରେମ / କରୁଣା; ଏମାନେ ଶାଶ୍ୱତର ସମାର୍ଥବାଚକ । କବି ପୃଥିବୀ-ପ୍ରିୟ । ତେଣୁ ପୃଥିବୀର ଦୁଃଖର କାରଣ ଯେଉଁ କୁତ୍ସିତତା, ତାହା ତାଂକର ଅସହ୍ୟ । ତଥାପି ଯାବତୀୟ କୁତ୍ସିତତା, କ୍ଲୀବତା ସତ୍ତ୍ୱେ ବି ଏ ଜୀବନ ବରଣୀୟ, ଏ ଧରଣୀ ମଧୁମୟ; କାରଣ ଏଠାରେ ସୃଷ୍ଟିର ଅମୃତ 'ପ୍ରେମ' ବିଦ୍ୟମାନ । ତାହାର ରୂପ ଭିନ୍ନ, ଆଧାର ଭିନ୍ନ, ପ୍ରକାଶ ଭିନ୍ନ । ତଥାପି ମାଟିର ଫୁଲ ଓ ଶିଶୁର ହସରେ ତାହାର ସୁଂଦର ସ୍ଥିତି । ଦୈବୀ-ସୁଷମାର ସେଇ ହିଁ ପରିଚୟ ସ୍ୱର୍ଣ୍ଣଦ୍ୱାର । ଆତ୍ମାର ଏଇ ପରମ ଦୈବତକୁ କବି ଈଶ୍ୱର ରୂପେ ପ୍ରମାଣ କରିଛଂତି । ଧରଣୀର ମାୟାମମତା ଜୀବନରେ ଆଶ୍ୱାସନା ଭରିଦିଏ । ବଂଚିବାକୁ ପ୍ରେରଣାଦିଏ । ଜୀବନର ଦିବ୍ୟ ବିଭବକୁ, ଅନଂତର ସମ୍ଭାବନାକୁ ଉଚ୍ଚକିତ କରିଯାଏ । ତେଣୁ ଜୀବନର କ୍ଷଣିକତାରେ ପୃଥିବୀ ପ୍ରତି ଏଇ ମମତାଟିକୁ କବି ପରମ ସ୍ୱୀକୃତି ଦେଇଛଂତି, ଜୀବନର ଶେଷଦିନ ପର୍ଯ୍ୟଂତ ଯେପରି "ମାଟି ଘାସେ ପାଉଥାଏ ଭଲ ।" (୧୫)

ଚେତନାର ଏଇ ନବୋନ୍ମେଷ ସମ୍ପର୍କରେ କବି ଯେ ସଚେତନ, ତାର ସ୍ପଷ୍ଟ ଉଲ୍ଲେଖ 'ନୂତନ ଏ ପଥେ' । ଦୂର ଅତୀତର ଯେଉଁ ପାର୍ଥିବ ପ୍ରଣୟ କବିଂକୁ ମୋହାସକ୍ତ କରି ରଖିଥିଲା କବି ତାହାର ମୋହମୁକ୍ତ ଗ୍ରହିଂଛଂତି । ଏ ଜୀବନ ନୂତନ ଭାବେ ଅଭିମଂଡିତ । ଚେତନାର ଏ ଜନ୍ମାଂତର ସତ୍ତ୍ୱାର ଦେହାଂତରକୁ ସବୁବେଳେ ଅପେକ୍ଷା ରଖେନାହିଁ । ଏ ନବଜନ୍ମର, ଚୈତ ଜାଗରଣର ଅନ୍ୟ ଏକ ସମର୍ଥନ ବାଣୀ, "ମୁଁ ତମ ପ୍ରାଣରେ ଗହନବନବାସୀ । ବେଳରେ ମୁଁ ଖାଲି ଚେତାଇଦିଏ ।"(୧୬)

(୧୪) ସଚସ୍ପ୍ରିତା—ପୃ. ୮୮

(୧୫) ମାନସିଂହ ଗ୍ରଂଥାବଳୀ ୧ମ, ପୃ. ୫୧୬, (୧୬) ଗ୍ରଂଥାବଳୀ ୧ମ, ପୃ. ୫୨୨

Digitized by PPRACHIN, SOA

କବି ଅନେକସ୍ଥ ସଚେତନଭାବେ ଈଶ୍ୱର ପ୍ରତୀକ ରୂପେ 'ଶ୍ରୀକୃଷ୍ଣଙ୍କୁ ଉଲ୍ଲେଖ କରିଛନ୍ତି । ଏ ଶ୍ରୀକୃଷ୍ଣ କିନ୍ତୁ କେବଳ ମନ୍ଦିରର ପୂଜିତ ପ୍ରତିମା ନୁହନ୍ତି, ଏ ସେହି ନିତ୍ୟ ଆକର୍ଷକ ଶକ୍ତି, ଯେ ଯୁଗେ ଯୁଗେ ଭାରତୀୟ ପ୍ରାଣ-ବଧୂଙ୍କୁ ତାଙ୍କ ଶାଶ୍ୱତ ବଂଶୀ ସ୍ୱନରେ ପ୍ରେମୋନ୍ମାଦିତ କରିଥାନ୍ତି । 'ମାନବ ଦୃଷ୍ଟିର ପରମ ଚନ୍ଦନ' ଏ ଶ୍ରୀକୃଷ୍ଣ ପୌରାଣିକ ହୋଇ ମଧ୍ୟ ନିତ୍ୟ କାଳର, ଭାରତବର୍ଷୀ ହୋଇ ମଧ୍ୟ ନିଖିଳ ପ୍ରେମିକ । ଭାରତୀୟ ଭକ୍ତିଧାରାର ରହସ୍ୟବାଦୀ ସାଧନାଟି ଚରମ ସାର୍ଥକତା ଖୋଜେ ଏଇ କୃଷ୍ଣ-ପ୍ରୀତିରେ । ଶ୍ରୀକୃଷ୍ଣ ଭାରତୀୟ ରହସ୍ୟବାଦୀ ପ୍ରେମ ଅନ୍ୱେଷାର ସଙ୍କୋଚ ଅଭିପ୍ରେତ ବୋଲି ଅତ୍ୟୁକ୍ତ ନ କରି କୁହାଯାଇପାରେ ।

ଶ୍ରୀକୃଷ୍ଣ ପରମ ପ୍ରେମିକ । ଏହାଙ୍କୁ କେନ୍ଦ୍ରକରି କବିଚିତ୍ତରେ ଅନୁରାଗ ଓ ଅଭିମାନର ଏକ ମଧୁର ମିଶ୍ରରାଗ । ଶ୍ରୀକୃଷ୍ଣଙ୍କ ଆକର୍ଷଣରେ ନିଖିଳ ହୃଦୟ ବିହ୍ୱଳ, ଅଥଚ ସେ ସହଜରେ ଧରାଦିଅନ୍ତି ନାହିଁ । କୁଟିଳପନିଆ, ନଟଖଟିଆ, ଶଠ ଦଗାବାଜ ଇତ୍ୟାଦି ବହୁ ମଧୁର ଉପସ୍ଥାର ଭିତରେ ସେ ଭାରତୀୟ ଚେତନାର ଅତି ବଶ୍ୟ 'ପରାଣଚୋରର ।'' ''ଖାଲି ଟାଣ, ନାହିଁ ମିଳ, ଏଇ ତବ କଠୋ କାରବାର ।'' (୯୭) କବିଙ୍କର ଏ ଶ୍ରୀକୃଷ୍ଣ ସେଇ ରବୀନ୍ଦ୍ରିକ ଜୀବନଦେବତା ପର୍ଯ୍ୟାୟବାଚୀ ଯେ ''ଚିରଦିନ ମୋରେ ହାସାଲ କାନ୍ଦାଲ, ଚିରଦିନ ଚଲି ଫାଙ୍କି ।'' (୯୮) ତଥାପି କବିଙ୍କର ଖୋଜିବାର ଶେଷନାହିଁ । ସେ ଦୁର୍ଲଭ ; ତାଙ୍କ ପ୍ରେମ ଲଭିବା ସାଧନା ମଧ୍ୟ ସେହିପରି ଦୁଷ୍କର । ଚେଷ୍ଟା ଗୋଟିଏ ଜନ୍ମର ସାଧନାରେ ସେ ଦୁର୍ଲଭ ରତ୍ନ ନ ମିଳିଲେ ବି ଅବଶୋଷ ନାହିଁ । ସେ ଅବଶେଷରେ ହିଁ ମିଳନ୍ତି, ପ୍ରତ୍ୟନ୍ତର ନିଷ୍ଠାଭିତରେ ଜନ୍ମଜନ୍ମାନ୍ତର ତାଙ୍କୁ ଅନ୍ୱେଷଣ କରିବାକୁ ପ୍ରସ୍ତୁତ । (୯୯)

ଚିରନ୍ତନ ପ୍ରେମର ଏଇ ଆହ୍ୱାନ, ଚିର ବନ୍ଧୁଙ୍କର ଏଇ ଆଗମନ, ନୂଆକରି ଯେପରି କବି ଚେତନାରେ ପ୍ରତ୍ୟୁତ୍ତର ଖୋଜିପାଇଛି । ବହୁବାର, ବହୁରୂପେ, ବହୁଭାବେ, ଈଶ୍ୱର ମର୍ତ୍ତ୍ୟସତ୍ତା ନିକଟରେ ପ୍ରୀତିନିବେଦନ ନେଇ ଉପସ୍ଥିତ ହୋଇଥାନ୍ତି । ମାତ୍ର ବ୍ୟକ୍ତି ତାହା ହୁଏତ ଜାଣିପାରେନା, କିମ୍ବା ଜାଣି ଜାଣି ଉପେକ୍ଷାକରେ । ତନ୍ଦ୍ରା ଭ୍ରାନ୍ତି ଓ ଅକ୍ଷମତାର ଦୁର୍ଭେଦ୍ୟ ସ୍ତର ତଳେ ସତ୍ତାର ଏ ଆତ୍ମଗୋପନ । ଚେତନାର ନବଜାଗ୍ରତ ମୁହୂର୍ତ୍ତରେ କବି ସେହି ପ୍ରତାରଣାର ମୁହୂର୍ତ୍ତ ପାଇଁ ଆତ୍ମ-ଧିକ୍କାର କରିଛନ୍ତି ଓ ଅନୁଶୋଚନାଗ୍ରସ୍ତ ହୋଇପଡ଼ିଛନ୍ତି । ଜୀବନପଥରୁ କ୍ଷଣିକ-ବନ୍ଧୁ ସବୁ ହଜିଗଲେ, ରୂପରଙ୍ଗର ସାମୟିକତା ତୁଟିଗଲେ, ନିଃସଙ୍ଗତାର ନିର୍ଜନତମ ମୁହୂର୍ତ୍ତରେ ସେହି ପରମବାନ୍ଧବ ଜୀବନଦୟିତ ସ୍ମରଣକୁ ଆସନ୍ତି । ସେତେବେଳେ ତାଙ୍କୁ ସଖୋଲିବାପାଇଁ ସତ୍ତାର ସମସ୍ତ ରୁଦ୍ଧଦ୍ୱାର ଖୋଲିଯାଏ । (୧୦୦) କବି ଏବେ ତାଙ୍କୁ ଅସଙ୍କୋଚ ଆମନ୍ତ୍ରଣ କରୁଛନ୍ତି । ''ସେବେ କେବେ ଲୁଚି ଆସୁଥିଲ । (ଆସିବାର ଅନୁଭବଟା ଅପରିଶୁଦ୍ଧ ଚିତ୍ତରେ ସ୍ପଷ୍ଟ ନଥିଲା), ଆଜି ଆସ ପ୍ରକାଶ୍ୟ ଆଲୋକେ'' (ଶୁଦ୍ଧ ଚେତନାର ବିମଳ ସ୍ପଷ୍ଟତାରେ) । ସେ ଯେ ହୃଦୟର ନିକଟଲୋକ, ଜୀବନର ପରମପ୍ରିୟ, ଏକଥା କବିଙ୍କ ପାଇଁ ଆଉ ଗୋପନ ରଖିବା ପ୍ରୟୋଜନ ନୁହେଁ, ଏହା ଏବେ ଗୌରବର ଗାନ ।

---

(୯୭) ଗ୍ରନ୍ଥାବଳୀ ୧ମ, ପୃ. ୬୨୪

(୯୮) ରବୀନ୍ଦ୍ରନାଥ—'ଛବି'-ସଞ୍ଚୟିତା ପୃ. ୨୭୪

(୯୯) 'ଅନ୍ୱେଷୀ'—ଗ୍ରନ୍ଥାବଳୀ ୧ମ, ପୃ. ୬୨୪

(୧୦୦) 'ଅତି ଆପଣାର'—ଗ୍ରନ୍ଥାବଳୀ ୧ମ, ପୃ. ୧୦୪

Digitized by PPRACHIN, SOA

କବି ଏହା ପରେ ଜୀବନରେ ଦୁଃଖାନୁଭୂତିର ନୂତନ ଅର୍ଥ ଲାଭ କରିଛନ୍ତି । ପାଇବାଠାରୁ ଖୋଜିବାକୁ, ମିଳନର ଆନନ୍ଦଠାରୁ ବିରହର ବେଦନା ଯେ ଅଶ୍ରୁପ୍ରାପ୍ତ ଯୋଗେ ମହତ୍ତର ହୋଇଥାଏ, 'ଦହନ ସୁଖ'ରେ ତାର ପ୍ରତିପାଦନ । ଅଂତରର ଚୂଡ଼ାମଣାରେ କବି ଏଇ ଆଶ୍ୱସ୍ତିର ବାର୍ତ୍ତାକୁ ଲାଭକରିପାରିଛଂତି । "ଚୁମ୍ବିନ୍ତୁ ଆଜ ବିଳାପ ଯେତେ ଅଲକ୍ଷ୍ୟରେ ଆଣିଛୁ ଅବା ତୁମରି କରି ।" (ପୃ. ୪୪୭)

କବିଂକର ଏ ମୁଗ୍ଧ ପ୍ରେମାନୁଭୂତି ବୈଷ୍ଣବ ପ୍ରୀତିତତ୍ତ୍ୱର ଆଶ୍ରୟରେ ଅଭିବ୍ୟକ୍ତ ପାଇଛି । ଏହାପରେ ସମାଜର, ରାଷ୍ଟ୍ରର, ଜନଜୀବନର, ନୀତି-ଅନୀତିର ଭଲମଂଦ ବିଚାର ସଂପୃକ୍ତ ରାଷ୍ଟ୍ରନାୟକରୂପୀ ଈଶ୍ୱରଂକ ସଂବଂଧରେ କବିଂକର କିଛି ବକ୍ତବ୍ୟ ନାହିଁ । କବିଂକ ଈଶ୍ୱର ଏକାଂତ ଭାବରେ ବ୍ୟକ୍ତି ଆତ୍ମାର ମୁଗ୍ଧ ପ୍ରଣୟୀ । ଏ ସେହି ଅରୂପ, ଯିଏ ଆତ୍ମାର ନବଜାତ ପ୍ରଣୟାନୁଭବରେ ଅପରୂପ ହୋଇ ବିରାଜିତ; ଯିଏ ପ୍ରେମ ଓ ସୌଂଦର୍ଯ୍ୟର, ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ଘନୀଭୂତ ବିଗ୍ରହରୂପ, ଶାଶ୍ୱତ ପୁରୁଷ ଶ୍ରୀକୃଷ୍ଣ । ଭାରତୀୟ ପ୍ରଣୟୀ ସତ୍ତାର ଚିରଂତନ ଆକୁଳତା କବି ସ୍ୱରରେ ମଧ୍ୟ ମର୍ମରିତ । 'ନବପ୍ରଣୟୀ' (ପୃ. ୫୬୦—ଗ୍ରଂଥାବଳୀ ୧ମ) ଆତ୍ମାର ସେହି ନବଲବ୍ଧ ପ୍ରେମ ସଂଦେଶ, ମିଳନ ପ୍ରତୀକ୍ଷାର ମନୋଜ୍ଞ ଚିତ୍ର ।

କବି ଜୀବନରେ ସ୍ୱକୀୟା, ପରକୀୟା, ଆତ୍ମପ୍ରୀତି, ବିଶ୍ୱପ୍ରୀତି, ରୂପାସକ୍ତି, ରୂପୋତ୍ତର ପ୍ରୀତି ପ୍ରଭୃତି ବହୁ ଭାବରେ ପ୍ରଣୟ ଚେତନାର ଆବିର୍ଭାବ ଘଟିଛି । ମାତ୍ର ସେସବୁ ସଂପୂର୍ଣ୍ଣଭାବେ ଆତ୍ମକେଂଦ୍ରିକ ଥିଲା । ପ୍ରୀତି ଚେତନାର କ୍ଷୁଦ୍ର, ଖଂଡିତ, ବିକଳାଂଗ ରୂପମାତ୍ର ଥିଲା । ସେସବୁ କ୍ଷଣ-ପ୍ରୀତି ସଂପର୍କର ଅବସାନ ପରେ ସତ୍ତାର ଏକ ଶୂନ୍ୟତା, ବ୍ୟର୍ଥତା ଓ ରସଶୁଷ୍କତାର ଭାବ ମଧ୍ୟ କବିଂକର ଉତ୍ତର ଯୌବନକୁ ଆଚ୍ଛନ୍ନ କରୁଥିଲା । (୧୦୧) "ମୁଁ କେବଳ ଯୌବନ ସକାଶେ" ଉଦ୍‌ଘୋଷଣା କରି ଅଭିସାରିକା, ମୁଗ୍‌ଧା ପୃଥ୍ୱୀର ରୂପଲାବଣ୍ୟ ଯେପରି ବିଗତତାରୁଣ୍ୟ କବିଂକୁ ବହୁ ଗ୍ଲାନି, ବହୁ ବ୍ୟର୍ଥ ପ୍ରଣୟ ଭାବନାର ଧ୍ୱଂସାବଶେଷ ଭିତରକୁ ଠେଲିଦେଉଥିଲା । ମାତ୍ର ଏବେ ସେ ପାର୍ଥିବ ସ୍ୱାଦ ବୁଦ୍‌ବୁଦ ପରି ଅକାଳବିଲୟ ଭଜିବା ପରେ ଜୀବନ ପୂର୍ଣ୍ଣ ନବୀନ ସ୍ୱାଦର ସନ୍ଧାନ ପାଇଛି । ଯାହାକୁ ସେ ପୃଥ୍ୱୀର କେତୋଟି ରୂପବଂଧନ ଭିତରେ ଦିନେ ଉନ୍ମାଦ ହୋଇ ଖୋଜିଥିଲା, ସେଇ ପ୍ରୀତି ହିଁ ଆଜି ବିଶ୍ୱର ପ୍ରତିଟି ରେଣୁ ଭିତରେ କବିପ୍ରାଣକୁ ଅନଂତ ପ୍ରେମିକଂକ ଅନ୍ୱେଷଣ ପଥରେ ଛୁଟାଇ ନେଇଛି । କବି ଆଉ ପ୍ରଣୟିନୀ ଖୋଜୁନାହାଂତି । ବରଂ ନିଜେ ପ୍ରେମିକା, ଅଭିସାରିକା ସାଜି ପରମପ୍ରେମିକଂକ ଅପେକ୍ଷାରେ ନିଜକୁ ପ୍ରସ୍ତୁତ ରଖୁଛଂତି । ମାନବୀୟ ପ୍ରୀତି ଦିନେ ତାଂକୁ ପ୍ରେମ ସଂପର୍କର, ହୃଦୟାର୍ପଣର, ଆତ୍ମୋତ୍ସର୍ଗର ସ୍ୱରୂପ ଦେଖାଇଥିଲା । ଆଜି ସେଇ ସମର୍ପଣ-ବାଣୀ କବି ଆତ୍ମାକୁ ପ୍ରେମ ଆରାଧନାର ମହାମଂଚରେ ପରିଣତ କରିଛି । ଧରାରମଣୀର ପ୍ରୀତି ନାରୀ ପ୍ରେମର ପରାକାଷ୍ଠା ଦେଖାଇଥିଲା । (୧୦୨) ସେଇ ପ୍ରେମର ଗଭୀରତା, ମହନୀୟତା ଓ ଉତ୍ସର୍ଗ ବ୍ୟାକୁଳତା ଏବେ କବିଙ୍କ ନବତନ ପ୍ରେମିକା-ସତ୍ତାରେ ଯେପରି ମୂର୍ତ୍ତ ହୋଇଛି । ପ୍ରଣୟ ସାଧନାରେ

---

(୧୦୧) ଗ୍ରଂଥାବଳୀ ୧ମ—ପୃ. ୫୧୫

(୧୦୨) "ନାରୀ ହୋଇ ପ୍ରେୟସୀ ଶିଖାଇଛୁ ମତେ ପ୍ରେମ କପରି
ସାଧନାର ତତ୍ତ୍ୱ ପୀୟୂଷ କେମନେ ପଡ଼ଇ ଝରି ।"
ଧୂପ—ମାନସିଂହ ଗ୍ରଂଥାବଳୀ, ୧ମ—ପୃ. ୮୭

Digitized by PPRACHIN, SOA

ନିଷ୍ଠା, ଆନୁଗତ୍ୟ, ଏକାଗ୍ରତା ଓ ସର୍ବ ସମର୍ପଣର ବିବିଧପର୍ଯ୍ୟାୟମାନଙ୍କୁ ମୂଲ୍ୟାୟିତ କରିଛି । "ଆଲୋ ମୋ ଖୋଜେ ଶ୍ୟାମ, ସେ ପ୍ରେମ ଅଭିରାମ"—'ହେମଶସ୍ୟ'ର କୁଳଟା ରାଧାର ଉତ୍ତରଣ ପ୍ରେମବ୍ୟାକୁଳ ଏ ପ୍ରିୟାସ୍ପଦ । ରାଧାଚରିତ୍ର ପ୍ରତି କବିମନର ଦୁର୍ବଳତାଟି ପରକୀୟା ପ୍ରୀତି ଜନିତ ହୋଇଥାଇପାରେ । ମାତ୍ର ଏ ନବଉପଲବ୍ଧିର ମୁହୂର୍ତ୍ତରେ କବିହୃଦୟ ରାଧାର ସେ ଐକାନ୍ତିକୀ ପ୍ରେମକୁ ନିଜ ଭିତରେ ଅନୁଭବ କରିବାର, ରାଧାର ବିରହ ବେଦନାକୁ ନିଜର ପ୍ରୀତି ସାଧନାରେ ପରିଣତ କରିବାର ଆଶ୍ଚର୍ଯ୍ୟ ସାମର୍ଥ୍ୟ ଲାଭକରିଛି । ପ୍ରଣୟିନୀର ପ୍ରୀତିପିପାସା, ପ୍ରିୟ-ସର୍ବସ୍ୱତା, ଆତ୍ମବିସ୍ମୃତି ଓ ପରବର୍ତ୍ତୀ କାଳରେ ସ୍ୱୀୟ ପରିଣୀତାର ତ୍ୟାଗ, ଆତ୍ମଦାନ ଓ ଅକୁଣ୍ଠ ପ୍ରେମାର୍ଚ୍ଚନାର ଏକାଗ୍ରତାରେ କବି ନାରୀପ୍ରେମର ଯେଉଁ ମହିମାନ୍ୱିତ ପ୍ରକାଶ ଦେଖିଥିଲେ, ତାଙ୍କର ଚିତ୍ତ-ବଧୂ ଏବେ ଜୀବନପ୍ରଣୟିନୀଙ୍କ ଲାଗି ସେଇ ରୂପସଜ୍ଜାରେ ପ୍ରସାଧାନରତା । କବି ଦିନେ ଗାନ କରିଥିଲେ, "ନିବିଡ଼ ପ୍ରେମର ଯେ ଅନୁଭୂତି କରିଶେଷ ମମ / ବ୍ୟକ୍ତ କରିଛି ଚିତ୍ତେ ମୋହର ତତ୍ତ୍ୱଜ୍ଞାନ ।"(୧୦୩) ଏ ପ୍ରେମ ସ୍ୱକୀୟାର ହେଉ ବା ପରକୀୟାର ହୋଇଥାଉ, ଏହା କେବଳ ରୂପ-ପର ଥିଲା । ପ୍ରେମର ତାତ୍ତ୍ୱିକ ଉପଲବ୍ଧିଟି ଏଠାରେ ରୋମାଣ୍ଟିକ ଅତୀନ୍ଦ୍ରିୟ ବୋଧ ମାତ୍ର ଥିଲା । ତାହା ନିଃସନ୍ଦେହରେ ଜୈବିକ, ପ୍ରାଣିକ ଓ ବାସନାସକ୍ତ ପ୍ରେମ । ଏ ପ୍ରେମ ତେଣୁ ତଥାପି ବନ୍ଧନ—ମୁକ୍ତିର ତତ୍ତ୍ୱଜ୍ଞାନ ନଥିଲା । ଆସକ୍ତିର ସମଗ୍ରତାହିଁ ଏ ପ୍ରେମ ଅନୁଭବର ଶେଷ ସିଦ୍ଧିରୂପ । ମାତ୍ର ଏହି ବ୍ୟକ୍ତି-ନିବଦ୍ଧ ପ୍ରେମହିଁ ରୂପୋତ୍ତର ପ୍ରେମ ସାଧନାର ସଙ୍କେତ ରହସ୍ୟକୁ ଯେ କବି ଉପଲବ୍ଧିରେ ଉନ୍ମୋଚିତ କରିପାରିଥିଲା ତାହା ସିନ୍ଧୁ ଓ ବିନ୍ଦୁର ଭାବବୃତ୍ତର ବିଶ୍ଳେଷଣରେ ଉଦ୍‌ଘାଟିତ ।

କବି ନବପ୍ରଣୟିନୀଙ୍କ ମୋହନବଂଶୀର ସ୍ୱର ନୂତନକରି ଶୁଣୁଛନ୍ତି । ଆତ୍ମାରେ ନୂତନ ଆକର୍ଷଣର ଉନ୍ମାଦନାକୁ ଅନୁଭବ କରୁଛନ୍ତି, ଅଥଚ ତାର ଅଭିସାର ସ୍ୱରୂପଟିକୁ ଜାଣିନାହାନ୍ତି । ଏ ପ୍ରେମ-ଅନୁଭବ ନୂତନ ବୋଲିହିଁ, ଅପାର୍ଥିବ ବୋଲିହିଁ, ଚିରାଚରିତ ପାର୍ଥିବ ପ୍ରେମମାର୍ଗରେ ଏହି ନବୀନ ପ୍ରିୟଙ୍କ ସହି ସମ୍ପର୍କ ସ୍ଥାପନ କରାଯାଇପାରେ କି ନା, କବି ଚିତ୍ତରେ ସେ ସଂଶୟ ଜାଗିଛି । ଅଥଚ ନବପ୍ରେମର, ଦିବ୍ୟପ୍ରେମର ଭିନ୍ନତ୍ୱ ଯଦି କିଛି ଥାଏ ତେବେ ତାର ସନ୍ଧାନ କେଉଁଠାରେ ? ପ୍ରୀତି ତ ଚିରଦିନ ପ୍ରଣୟିନୀକୁ ଘରଛଡ଼ା କରିଛି, କୁଳଟା କରିଛି । ଆତ୍ମା-ବଧୂ ସଂସାର ଛାଡ଼ିବ ? ଦେହ ଛାଡ଼ିବ ? ଅଥବା ସେଇଠାରୁ ଭୂଷଣ ମଣ୍ଡନରେ ସୁସଜ୍ଜିତ ହୋଇ ଅଭିସାର ରଚନାକରିବ ? ଭେଟିବାକୁ କେଉଁଠାକୁ ବା ଯିବ ? ଅଭିସାର-କୁଞ୍ଜ ତ ସଙ୍କେତିତ ହୋଇନାହିଁ । ତେଣୁ "ଯେଉଁଠି ଅଛ ମୁଁ ସେଇଠୁ ମୋ ପୂଜା ନିଅ ।" (୧୦୪) ସେ ଦିବ୍ୟପ୍ରେମ ଯଦି ସତରେ ବିଶ୍ୱସ୍ତ ଓ ଭୁବନମୟ, କବି ଯେଉଁଠାରେ ଖୋଜିଲେ ବି ତାହା ମିଳିବ, ଏଥିକି ଆଶ୍ୱସ୍ତ ।

ଶାଶ୍ୱତ ପ୍ରେମର ନିତ୍ୟ ଆକର୍ଷଣରେ ନିଖିଳ ପ୍ରାଣ ଚିର ଉନ୍ମନା । ଅଭୂତ ସେ ଆକର୍ଷଣ, ସେ ମୋହନ ବେଣୁତାନ । ସେଥିପାଇଁ ନିଖିଳ ଆତ୍ମା ନିତ୍ୟ ବିରହିଣୀ । ଯେ କୋଟି ଧରିର 'ପ୍ରିୟତମ', ଗୋଟିଏ ପ୍ରେମାକୁଳ କ୍ଷୁଦ୍ର ହୃଦୟକୁ ପ୍ରତିଦାନ ଦେବାକୁ ସେ କାର୍ପଣ୍ୟ କରିବେ ନାହିଁ, ତଥାପି କବି

---

(୧୦୩) 'ପ୍ରେମ ଓ ସୃଷ୍ଟି'—ହେମଶସ୍ୟ—ମାନସିଂହ ଗ୍ରନ୍ଥାବଳୀ ୧ମ—ପୃ. ୨୨୩

(୧୦୪) ଗ୍ରନ୍ଥାବଳୀ ୧ମ—ପୃ. ୫୫୯

Digitized by PPRACHIN, SOA

ଶଂକାକୁଳ, 'ଆତ୍ମାର ଏ ଚରଂତନ ଆହ୍ୱାନ ଓ ଶାଶ୍ୱତର ନତ୍ୟଅପେକ୍ଷିତ ପ୍ରେମ—ସୃଷ୍ଟି ବୃକ୍ଷରେ ଏମାନେ କଣ କେବେ ଏକନ୍ତ ହୋଇ ପାରବେ ନାହିଁ ?' (୧୦୫)

'ମିଳବ କ ନାହିଁ' କବତାରେ 'ସୃଜନ କୁଂଜ ବନେ...' ଅଭବ୍ୟକ୍ତିଟି ଏକ ଗମ୍ଭୀର ରହସ୍ୟବାଦୀ ଅର୍ଥବ୍ୟଂଜନାଶାଳିତ । ଏ ଅନନ୍ତ୍ୟ ସୃଷ୍ଟି ବକ୍ଷରେ ହିଁ ଅସୀମ ଓ ସୀମାର ଯାବଯ୍ଯସ୍ତ ସମ୍ପର୍କ ସ୍ଥାପନା । ସୃଷ୍ଟି ପୂର୍ବରୁ ସୀମା ଓ ଅସୀମ ବଳୀନ । ସେଠାରେ ଆତ୍ମା ପରମାତ୍ମାଠ ବଚ୍ଛେଦ ନଥାଏ, ମିଳନ ବରହ ପ୍ରଶ୍ନ ଉଠେନାହିଁ । ମିଳନ ସୁଖ ଉପଲବ୍ଧି ପାଇଁ ପରମ ଆପଣାଠୁ ସତ୍ତ୍ୱାକୁ ବଚ୍ଛିନ୍ନ କରି ସୃଷ୍ଟି କରଂଛ ଏବଂ ସୀମା ଭିତରେ ଆପଣା ପାଇଁ ପ୍ରୀତକାମନାକୁ ଭରଦେଇଥାନ୍ତି । ସେ ପ୍ରୀତକୁ ଲଭ କରିବା ପାଇଁ ମର୍ତ୍ତ୍ୟଜୀବନ ନତ୍ୟ ଉଚ୍ଛଳତ; ସକଳ ପାର୍ଥିବ ପ୍ରାପ୍ତି ସତ୍ତ୍ୱେ ବ ଏକ ଅପ୍ରାପ୍ତିର ହାହାକାର-ବକ୍ଷୁବ୍ଧ । କାଳ ଓ ଦେଶର ସୀମା ଭିତରେ ଅନଂତ ଓ ଅନାଦଠାରୁ ସତ୍ତ୍ୱାର ସମ୍ଭୂତ, ତାର ପ୍ରେମ ସାଧନା ମଧ୍ୟ ସେଇ ସୀମା ଭିତରେ ହେବାକୁ ବାଧ୍ୟ । ଅସୀମ ସହ ସୀମାର ମିଳନଟି ତେଣୁ ଏକ ନର୍ଦ୍ଦିଷ୍ଟ ମୂହୂର୍ତ୍ତକୁ, ଦେଶକାଳର ବଭାଜନକୁ ଅବଲଂବନକର ସଂଘଟିତ ହେବ । ସେଇ ଚଳନମୟ ମୂହୂର୍ତ୍ତଟିରେ ସ୍ଥିରବଂଦୁ ରଚନାକର ପରମଂକ ସହ ମିଳନସୁଖ ଅନୁଭବ କରପାରବା ହିଁ ତାର ପ୍ରେମ-ସିଦ୍ଧି । ଏଇ ସିଦ୍ଧିର ମୂହୂର୍ତ୍ତ ବଂଦୁରେ ହିଁ ଦେଶକାଳଗତ ବଂଧନରୁ ମୁକ୍ତପାଇ ସତ୍ତ୍ୱାର ପ୍ରେମ ନର୍ବିଶେଷତା ଲଭକରେ । ମାତ୍ର ଦେଶକାଳକୁ ବାଦ୍‌ଦେଇ ତାର ସାଧନା ବା ସିଦ୍ଧି କଛୁ ବ ସମ୍ଭବନୁହେଁ । ତେଣୁ ସୀମା ପରି ଅସୀମକୁ ମଧ୍ୟ ପ୍ରେମର ବକାଶ ଓ ସିଦ୍ଧି ପାଇଁ ସୃଷ୍ଟିଧର୍ମକୁ, ଦେଶକାଳକୁ ଆଶ୍ରୟ କରବାକୁ ପଡ଼େ । ସୀମାର ଅକ୍ଷମତା ପରି ଅସୀମର ମଧ୍ୟ ଏ ପରିପ୍ରେକ୍ଷୀରେ ଅସହାୟତା ରହନ୍ତୁ । ସୀମା ସମର୍ଥ ହୋଇଉଠି ନ ପାରବା ପର୍ଯ୍ୟନ୍ତ ଏ ଅସହାୟତା । ସୀମାର ସାମର୍ଥ୍ୟ ଲଭ ହିଁ ତାର ବଜୟ । ଏହା ଏକ ଜଟିଳ ଓ ଦୁର୍ବୋଧ ରହସ୍ୟବାଦୀ ତତ୍ତ୍ୱ ହୋଇଥିଲେ ମଧ୍ୟ କବଂକ ମହାକାବ୍ୟମୟ ଆବେଗରେ କବତାର ଅନବଦ୍ୟମୟତା ଭିତରକୁ ଶବ୍ଦ ଶକ୍ତି ଆଶ୍ରିତ ହୋଇ ପ୍ରବେଶଲଭକରନ୍ତୁ । ମାନସିଂହଙ୍କ ବ୍ୟକ୍ତିଗତ ଅଧ୍ୟାତ୍ମ ସିଦ୍ଧିର ପ୍ରସଂଗ ଯାହା ହେଉନା କାହିଁକ, ଏଇ ପଦଟିରେ ତାଂକର କାବ୍ୟସାଧନା ଅପୂର୍ବ ରସ-ସିଦ୍ଧି ଲଭ କରନ୍ତୁ । ମାନସିଂହ କାବ୍ୟଚେତନାର ସମଗ୍ର ରୂପମୁଗ୍‌ଧତା, ପ୍ରେମାଭିଳାଷ, ଶାଶ୍ୱତ ସନ୍ଧାନ ଓ ଜୀବନାନୁଭବ ଏଇ ପଂକ୍ତିଟିରେ ନର୍ଯ୍ୟାସିତ । ଆଦ୍ୟ କୈଶୋରର ସ୍ୱପ୍ନାଚ୍ଛନ୍ନତା, ଯୌବନର ରୂପନିର୍ଭର ପ୍ରଣୟ ମୁଗ୍‌ଧତା, ଦାଂପତ୍ୟର ମଧୁର ଅନୁଭବ ଓ ପରିଣତ ମନର ଅତୀନ୍ଦ୍ରିୟ ଉଦ୍ଘାଟନ ଏବଂ ଅଂତମରେ ସମଗ୍ର ଜୀବନ ଓ ଜଗତର ସ୍ୱୀକୃତମୂଳକ ଅଥଚ ଜଗତ ଓ ଜୀବନାସକ୍ତର ଊର୍ଦ୍ଧ୍ୱତନ ଦବ୍ୟ ପ୍ରେମ ଏବଂ ଅଶ୍ୱୁନ୍ତିର ପରିପୂର୍ଣ୍ଣ ଏହ ସାମଗାନ ମାନସିଂହଙ୍କର ଶାଶ୍ୱତ-ଅଭିଳାଷର ସ୍ଥୂଳରୁ ସୂକ୍ଷ୍ମତମ ସ୍ୱରୂପାବର୍ତ୍ତନ ଅଧ୍ୟାତ୍ମ ସାଧନାର ଭବାତ୍ମକ ବବର୍ତ୍ତନ-ରୂପ ବୋଲ ନଃସନ୍ଦେହରେ କୁହାଯାଇପାରେ ।

'ସିନ୍ଧୁ ଓ ବନ୍ଦୁ' ସଂକଳନ କବଙ୍କ ଜୀବନଦର୍ଶନ ଓ ଆତ୍ମସନ୍ଧାନର ପୂର୍ଣ୍ଣାଭିବ୍ୟକ୍ତି । 'ଲକ୍ଷ୍ମୀଲଭ', 'ମହାପଥର ଯାତ୍ରୀ', 'ଅର୍କଶତାବ୍ଦୀ'—ଏ କବତା ତନୋଟି ମାନସିଂହଂକର କାବ୍ୟଦର୍ଶନ ଓ ଜୀବନାନୁଭବର ମହାଭାଷ୍ୟ ବୋଲ ବବେଚନା କରାଯାଇପାରେ ।

---

(୧୦୫) "ହେ କୋଟି ଧରାର ଏକାନ୍ତ ପ୍ରିୟତମ ଅଶାଂତ ଏକ ପ୍ରାଣ ସୃହେଁ ଧରାକଣେ
ମିଳବେ କ ନାହିଁ ଶାଶ୍ୱତ ଦୁଇ ମନ / ତୁମେ ଆଉ ମୁହିଁ ସୃଜନ କୁଂଜ ବନେ ।"
ମିଳବ କ ନାହିଁ—ଗ୍ରନ୍ଥାବଳୀ, ୧ମ—ପୃ. ୫୫୯

Digitized by PPRACHIN, SOA

'ନିର୍ମାଲ୍ୟ'ର ଅଭ୍ୟନ୍ତ ଜାଗତିକ ହିସାବରୁ ମୁଖଫେରାଇ କବି ନୂତନ ପ୍ରାପ୍ତି ସଂବାଦରେ ତଟସ୍ଥ । "ସେଦିନର ମୁହିଁ ଦୁଃସ୍ଥ ଅପାଂକ୍ତେୟ, ଆଜିକାର ଦାନେ ପ୍ରସନ୍ନ ମନ ।" (୧୦୬) ଏ ଦାନକୁ କବି ଅଶ୍ରୁ ବୋଲି ଚହ୍ନିଛନ୍ତି । ଅଥଚ ସେ ଅଶ୍ରୁ ଆଜି ଦୈନ୍ୟର ନୁହେଁ, ଗ୍ଲାନିର ନୁହେଁ । ତାହା ତାଙ୍କ ଭାଷାରେ 'ଈଶ୍ୱରର ପରମ ଦାନ' ହୃଦୟର ମହାନ୍ ଶକ୍ତି । ସେ ଅଶ୍ରୁ ନିଖିଳ ଜୀବନର ହୃଦ୍‌ଗତ ପ୍ରେମ-ଉତ୍ସର ସନ୍ଧାନ ଦେଇଛୁ । କବି ଏ ଜନ୍ମର ଅଂତିମ ଲଗ୍ନରେ ହୃଦୟଘଟକୁ ନିଜର ଅଗୋଚରରେ ବିଂଦୁ ବିଂଦୁ ପରିପୂର୍ଣ୍ଣ ହୋଇଯିବାର ଦେଖିବାକୁ ପାଇଛନ୍ତି । ଚେତନାର କ୍ଷୁଦ୍ରତା ଓ ଗ୍ଲାନି, ନୀଚ ସ୍ୱାର୍ଥପରତା ସେ ପୂର୍ଣ୍ଣ ଗଂଗାଜଳରେ ଶୁଚିସ୍ନାତ ହୋଇଯିବାର ଅନୁଭବ କରିଛନ୍ତି । ନିଜକୁ ସେ ଜାହ୍ନବୀ ପ୍ଲାବନରେ ବିଶ୍ୱଜୀବନ ପ୍ରସାରିତ ଦେଖିଛନ୍ତି ।

ଜୀବନ ସ୍ୱର୍ଣ୍ଣାସ୍ଥିତ ବୋଲି ଆବିଷ୍କାର କରିବାର ସେଇ ବିଚିତ୍ର ମୁହୂର୍ତ୍ତରେ କବିଙ୍କର ମନେହୋଇଛୁ ଜୀବନର ସେ ଅଦୃଶ୍ୟ ସ୍ୱର୍ଣ୍ଣକାର ଏ ଯାବତ୍ କିଂତୁ ଅଦୃଷ୍ଟ । କେଉଁ ଉଦ୍ଦେଶ୍ୟ ନେଇ ସେ ନିପୁଣ ବିଂଧାଣୀ ଏତେ ଆଗ୍ରହରେ ଜୀବନ ମୃତ୍ତିକା-ସତ୍ତାକୁ ଏଇ ସ୍ୱର୍ଣ୍ଣ ଶ୍ରେଣୀ ଦେଲେ, ସେ ମହତ୍ ଅଭିପ୍ରାୟଟି ଜାଣିବାକୁ ବ୍ୟଗ୍ର । ତାକୁ ନଭେଟିବା ପର୍ଯ୍ୟଂତ ଜୀବନର ସକଳ ପ୍ରାପ୍ତି ଯେ ତୁଚ୍ଛ ।

'ମହାପଥର ଯାତ୍ରୀ'ରେ କବି ସୃଷ୍ଟି-ସଚେତନ । ସତ୍ତା ସ୍ୱମହିମା ଅବିଷ୍କାରର ଉଲ୍ଲାସରେ ଭୋଳ । ସ୍ରଷ୍ଟାର ମହାନ ଇଂଗିତ, ସୃଷ୍ଟିପ୍ରେରଣା ଓ ସୃଜନଶକ୍ତି ଯେଉଁ ଉଦ୍ଦାମ ଆବେଗରେ ଜୀବନକୁ ଜୀବନାଂତର, ହୃଦୟରୁ ହୃଦୟାଂତର, ନବନବ ସୃଷ୍ଟିବିକାଶ ଭିତରେ ନିଜକୁ ଅଭିବ୍ୟକ୍ତ କରିଚାଲିଛୁ, ତାର ଉପଲବ୍ଧିରେ କବି ପୁଲକବିଭୋର । ଜୀବନର ବିଂଦୁମୟ ସ୍ଥିତିରେ ବି ଅନ୍ତିତ୍ୱର ଆକାଶ ବିପୁଳ ଉଦ୍‌ଭାସନ । ଗତି ତାର ଦୁର୍ବାର, ଛଂଦ ତାର ଉଦ୍ଦାମ, ପକ୍ଷ ତାର ନିଃସୀମ । ସେ ସର୍ବତ୍ର ସଂଚରଣ କରିବ, ସବୁଠାରେ ପ୍ରାଣର ସ୍ପଂଦନ ହୋଇ ଫୁଟିଯିବ । ମହାଜୀବନର ପ୍ରେମାମୃତକୁ ପୃଷ୍ଠରେ ବହନ କରି ଜ୍ଞାନ-ଦ୍ୟୁତିର ସ୍ୱର୍ଣ୍ଣ ପକ୍ଷ ମେଲାଇ ମହାବିଶ୍ୱର ନୀଳ ନିଃସୀମତା ଭିତରକୁ ନିଃସରି ଯିବ, ସର୍ବତ୍ର ବିଭୁଙ୍କର ବିଭୂତିର ମହାତ୍ମ୍ୟବାର୍ତ୍ତା ପ୍ରଚ୍ଛର କରିବ । ଶାଶ୍ୱତର ଆକର୍ଷଣ ସଙ୍ଗୀତକୁ ବଂଶୀ ହୋଇ ସୃଷ୍ଟିର କୋଣ ଅନୁକୋଣ ବିଧ୍ୱନିତ କରିଦେବ । ବଂଧନର କ୍ଷୀଣ ଆନଂଦକୁ ସ୍ୱାଗତ କରି ମୁକ୍ତିର ପରମାନଂଦକୁ ବିନମ୍ର ବନ୍ଦନା ଦେବ ।

ପ୍ରତିଟି ସୃଷ୍ଟି ସେହି ମହାଜୀବନର ବାର୍ତ୍ତାପାଠ । ଏଠାହିଁ ସତ୍ତାର ଶାଶ୍ୱତ ଉପଲବ୍ଧି । ଆତ୍ମାର ମୁକ୍ତ ରୂପଟି "ସୃଷ୍ଟିର ମହାପଥକ ମୁଁ, ମହାସ୍ୱପନେ ମୋର ଚଳିଭୋଳ ।" ପ୍ରତିଟି ସୃଷ୍ଟିରେ ସ୍ରଷ୍ଟାର ସୃଜନଇଚ୍ଛା ଓ ସୃଜନାନଂଦ ସଂଚରିତ । ଦେଶବଂଧନ ଓ କାଳବଂଧନ, ସବୁ ଭିତରେ ବି କବିଙ୍କର "ଏତେଦିନେ ପଥପାଇବା"ର ଏଠାହିଁ ରହସ୍ୟ ସଂକେତ ।

ଏହାପରେ କବିଙ୍କର ବିଗତଜୀବନକୁ ଏକ ବିହଂଗମ ଦୃଷ୍ଟିର ପ୍ରୟାସ 'ଅର୍ଦ୍ଧଶତାବ୍ଦୀ' । ଧରିତ୍ରୀର ଚରିତ୍ର ମମତାମୟୀ କବିସତ୍ତା ଏବେ ଦେଖନ୍ତି ଧରିଜୀବନର ସମାପ୍ତି ପ୍ରାୟ ଆସନ୍ନ । କବି ପ୍ରାଣରେ ଉଦବେଗ, ପୃଥିବୀର ଅଜସ୍ର ସ୍ନେହମୟ ଦାନର ଅମର୍ଯ୍ୟାଦା ସେ କରିନାହାନ୍ତି ତ ! ସଂଭୋଗ ପାଇଁ ଲୋଭାତୁର ଭାବେ ଲୁଣ୍ଠନ କରି ତାକୁ ଦରିଦ୍ରତର କରିନାହାଂତି ତ ! ସେ କିଣ ପ୍ରତିଦାନ-ଅକ୍ଷମ ! ମାଟିର ସ୍ନେହ ବନ୍ଧନମୟରେ ତାଂକର ଜୀବନ, ହୃଦୟ କଣ କହୁଛି କେଉଁଭାବେ ଦେଇପାରିନାହିଁ ? (୧୦୭)

(୧୦୬) ମାନସିଂହ ଗ୍ରଂଥାବଳୀ, ୧ମ—ପୃ. ୫୬୮

(୧୦୭) "ନେଇଛୁ, ଯାଉଛୁ, ଯାହା ପାଇଛୁ ଧରିତ୍ରୀରେ ସ୍ନେହେ, ଧନେ, ମନେ
ଫେରାଇ ନାହିଁକି ଯାହା ପାଇଲି ଜୀବନେ ?" ଗ୍ରଂଥାବଳୀ ୧ମ—ପୃ: ୫୬୩

Digitized by PPRACHIN, SOA

ଏ ଅବକାଶରେ କବିଚିତ୍ତରେ ମାନବ ଚେତନାର ସେଇ ଚିରନ୍ତନ ଜିଜ୍ଞାସା ଜାଗରିତ, 'କାହିଁକି ତାର ପୃଥିବୀରେ ଜନ୍ମ ! କିଏ ସେ ତାଠାରୁ ପାଇଲା ଓ କିଏ ତାକୁ ଦେଇପାରିଲା ! ଅଥବା ଅର୍ଥହୀନ ତାର ସମ୍ଭୂତି !' (୧୦୮) ମଣିଷର ଦାବୀ ଏତେ ଅକିଞ୍ଚନ ନୁହେଁ । ଅସ୍ତିତ୍ୱର ଉପସ୍ଥାପନା ଏତେ କ୍ଷୀଣ ନୁହେଁ । ପ୍ରତିଟି ସୃଷ୍ଟି ଏକ ସମ୍ଭାବନାର ଇଙ୍ଗିତ । ପ୍ରତିଟି ଜନ୍ମ ସତ୍ୟ । ପ୍ରତିଟି ଜୀବନ ବାସ୍ତବ । ମାନବଚିତ୍ତର ଚିର ଅବୁଝା ଦ୍ୱନ୍ଦ୍ୱଟି କବିପ୍ରାଣର ଏକ କୋଦମୟ ଜିଜ୍ଞାସା ହୋଇ ଯେପରି ସ୍ୱାବତରଣ କରିଛି—"ଏତେ ଦୁଃଖ, ଏତେ ଅଶ୍ରୁ, ଅଭିନୟ ମାତ୍ର ସୃଜନର" ! ଏ ପ୍ରଶ୍ନ ତ କେବଳ ଆଜିର ଅସ୍ତିତ୍ୱବାଦୀ ତର୍କଶୀଳର ନୁହେଁ; ଆଦିମାନବର ଜନ୍ମସହ ଏ ଜିଜ୍ଞାସା ବ୍ୟକ୍ତିର ଚେତନାଗତ । ଜୀବନର ପ୍ରଥମ ସ୍ପନ୍ଦନରୂପ ଆମିବା (Amoeba) ସହ ଏ ପ୍ରଶ୍ନ ସୃଷ୍ଟି ବକ୍ଷକୁ ସମାଗତ । ଜନ୍ମ ପରେ ଜୀବନର ପ୍ରଥମ ସଚେତନତାଟି ଅସ୍ତିତ୍ୱର ଅସ୍ମିତାତ୍ମକ 'ମୁଁ'ର । ଶେଷ ସଚେତନତାଟି ମଧ୍ୟ ସେହି ଅସ୍ତିତ୍ୱର । ସେଇଥିପାଇଁ ଜୀବନର ପ୍ରତିଟି ମୁହୂର୍ତ୍ତ, ପ୍ରତିଟି ଅନୁଭବ 'ମୁଁ'ର ବାସ୍ତବତାରେ ସତ୍ୟର ଦାବୀ ଯେମିତି ଉପସ୍ଥାପିତ ହୁଅନ୍ତି । ଧରାବକ୍ଷରେ ପ୍ରତି ସୃଷ୍ଟିର ସ୍ୱତନ୍ତ୍ର ମୂଲ୍ୟ ତାର ସୃଷ୍ଟିକ୍ରିୟାରେ, ସୃଷ୍ଟିର ଉଦ୍ଦେଶ୍ୟମୂଳକତାରେ ନିହିତ । (୧୦୯) ଚିତାଭସ୍ମ ଯେ ଆବର୍ଜନା ହୋଇ ଧରାକୁ କଳୁଷିତ କରିଦେବାର ଆଶଙ୍କା ଦିନେ କବିମନରେ ଜାଗ୍ରତ ହୋଇଥିଲା, ଆଜି ଯେପରି ତାହା ଆଶ୍ୱସ୍ତି ଲାଭ କରିଛି ଯେ, ଏ ଭସ୍ମ ପୃଥିବୀକୁ କିଞ୍ଚିତ୍ ଉର୍ବର ଶ୍ୟାମଳ କରିପାରେ । କବି ସୃଷ୍ଟିର ଆନନ୍ଦକୁ, ମଙ୍ଗଳକୁ ଅସ୍ତିତ୍ୱର ପ୍ରତ୍ୟେକ ସ୍ତରରେ ରୂପାୟିତ କରି ଜୀବନକୁ ସାର୍ଥକ କରିବାର ସ୍ୱପ୍ନ ଦେଖନ୍ତି । ସେ ସ୍ୱପ୍ନରେ ତାଙ୍କ ଦେହର ରକ୍ତ ପ୍ରକୃତିର ପୁଷ୍ପକୁ ରଙ୍ଗୋଜ୍ଜ୍ୱଳ କରିଦିଏ, ନିଜପ୍ରାଣର ଉତ୍ତାପ ଅନ୍ୟ ଜୀବନରେ ଉଷ୍ମତା ସଞ୍ଚାର କରିଦିଏ । ଯେତେ ସାମାନ୍ୟ ହେଲେ ବି ସୃଷ୍ଟିର ବିରାଟ ଆନନ୍ଦଯଜ୍ଞରେ ପ୍ରତିଟି ଜୀବ କିଛି ଶ୍ରଦ୍ଧାର ନୈବେଦ୍ୟ ବାଢ଼ିପାରିବ । ଧରାକୁ ଅନ୍ତରର ଶୁଭେଚ୍ଛାର ପ୍ରୀତି-ଉପହାର ଦେଇପାରିବ । "ପ୍ରାଣେ ଆନନ୍ଦବାର୍ତ୍ତା, ସର୍ବ ବିଶ୍ୱେ ପ୍ରେମର ପ୍ରବାହ"—ବ୍ୟକ୍ତିର ଏ ଅଭିଳାଷରେ ଧୂଳି ଧରଣୀର ସାମାନ୍ୟତମର ମଧ୍ୟ ଅଧିକାର ରହିଛି ।

---

(୧୦୮) "ବାଷ୍ପ ପରି ମେଘ ହୋଇ ଲଭିଥିବା ପୁଣି ନଭତଳେ ।"
ଗ୍ରନ୍ଥାବଳୀ . ୧ମ—ପୃ. ୫୭୫

(୧୦୯) "ଅଛୁ ମାତ୍ର ନିଜେ ସଚେତନ
ମୋର ଅଶ୍ରୁ, ମୋ ଶୋଣିତ, ମୋର ଭସ୍ମ
ନୋହୁ ଅଭିନୟ, ହେଉ ଦୃଢ଼ ସତ୍ୟ ।" ମାନସିଂହ ଗ୍ରନ୍ଥାବଳୀ—ପୃ. ୫୭୫

Digitized by PPRACHIN, SOA

# ତୃତୀୟ ପରିଚ୍ଛେଦ

## ରହସ୍ୟବାଦୀ ଭାବାନୁଚିନ୍ତାର ଗୌଣ କାବ୍ୟପ୍ରକାଶ

ଶଂସିତ ସମୟର ପୂର୍ବାଲୋଚିତ ଯେଉଁ କବିମାନଙ୍କ ରଚନାରେ ରହସ୍ୟବାଦ ଏକ ମୁଖ୍ୟ କାବ୍ୟ-ଚେତନା ରୂପେ ପ୍ରକାଶିତ, କବିମାନସ ଓ କାବ୍ୟଭାବନାର ରୂପାଦର୍ଶ ନିୟନ୍ତ୍ରଣକୋଶ ସ୍ୱରୂପ ଏହାର ବଳିଷ୍ଠ ଇଙ୍ଗିତ ସମ୍ପ୍ରେରିତ । ଏହା ବ୍ୟତୀତ ବିଂଶ ଶତକର ଆଦ୍ୟପାଦରୁ ଚତୁର୍ଥ ଦଶନ୍ଧି ପର୍ଯ୍ୟନ୍ତ ଏ ରହସ୍ୟବାଦୀ ଭାବନା ଅନ୍ୟ କେତେକ କବିଙ୍କର ବିବିଧ କାଳର ରଚନାରେ ଗୌଣାତ୍ମକ ବା ଆଭାସଇଙ୍ଗିତମୟ ସାମୟିକ ପ୍ରକାଶ ପାଇଛି । ଏହାକୁ ଗୌଣ ବିବେଚନା କରିବାର ଅଭିପ୍ରାୟ ହେଉଛି ଏ ଚେତନା କେତେକ ସ୍ଥଳରେ ଯୁଗାନୁସାରୀ କାବ୍ୟଭାବନା ପ୍ରଭାବିତ ହୋଇଥିଲେ ବି ଭାବବସ୍ତୁର ବଳିଷ୍ଠତା ଓ ସ୍ୱରସଙ୍ଗୀର ବିଶୁଦ୍ଧତା ଅଭାବରୁ ତାହା ସମ୍ପୃକ୍ତ କବିମାନସର କାବ୍ୟାଦର୍ଶ ନିର୍ଦ୍ଧାରଣ କ୍ଷେତ୍ରରେ ଯେପରି ଅସଫଳ, ଶଂସିତ କାଳର କାବ୍ୟଭଣ୍ଡାରକୁ ତାର ସ୍ଥାୟୀ ଅବଦାନ ସେହିପରି ଅକିଞ୍ଚିତ୍କର । (ଅବଶ୍ୟ ସେ କବିମାନଙ୍କର ଓଡ଼ିଆ କବିତାର ସମୃଦ୍ଧି ଓ ବିକାଶ ଦିଗରେ ଭିନ୍ନ କାବ୍ୟଆସ୍ୱାଦର ମୂଲ୍ୟାଙ୍କନ ଏ ଆଲୋଚନା ପରିସରର ଅନ୍ତର୍ଭୁକ୍ତ ନୁହେଁ ।) ଏହା ସ୍ପଷ୍ଟ ଯେ, ଏକ ଅନିବାର୍ଯ୍ୟ ଯୁଗପ୍ରବଣତା ସଞ୍ଜାତ ଏ ରହସ୍ୟବାଦୀ କାବ୍ୟଆସ୍ୱାଦ ଯୁଗସ୍ୱରକୁ ସମୟୋଚିତ ପ୍ରାଣ-ସ୍ଫୂର୍ତ୍ତିରେ ରଞ୍ଜିମନ୍ତ କରିବାକୁ ଓ ଆଗାମୀ ପାଇଁ ପ୍ରୟୋଜନୀୟ ପଦକ୍ଷେପର ନିର୍ଦ୍ଦେଶ ଦେବାକୁ ସମର୍ଥ ନଥିଲା । ସାମୟିକ ଭାବପ୍ରବଣତା ଉଦ୍‌ବେଳିତ ଓ ନବଆଧୁନିକ ଶିକ୍ଷାଛଳରେ ପ୍ରାପ୍ତ ରୋମାଣ୍ଟିକ କାବ୍ୟାଦର୍ଶ ପ୍ରଣୋଦିତ ଏ ରହସ୍ୟଭାବନା କେବଳ ଓଡ଼ିଆ କବିତାର ନବପ୍ରାପ୍ତ ଆଙ୍ଗିକର ଆକର୍ଷଣ ଭିତରେ ନିଜ ପାଇଁ ସ୍ଥାନ ସନ୍ଧାନ କରୁଥିଲା ।

ଆଧୁନିକ ଓଡ଼ିଆ କବିତାର ରହସ୍ୟବାଦୀ ପ୍ରକାଶ ଯେଉଁଠି ଗୌଣରୂପ ନେଇଛି, ତାର ବିସ୍ତୃତ କ୍ଷେତ୍ର ଦ୍ୱିବିଧ । ଯଥା (କ)—ପ୍ରତିଷ୍ଠିତ କବିମାନଙ୍କ ରଚନାରେ ଆଦ୍ୟ ଓ ସାମୟିକ କାବ୍ୟ ଆବେଗ ରୂପେ ପ୍ରକଟିତ ରହସ୍ୟଚେତନା, (ଖ) ଓଡ଼ିଆ କବିତା କ୍ଷେତ୍ରରେ ଅପେକ୍ଷାକୃତ ସ୍ୱଳ୍ପାଲୋଚିତ କ୍ଷୀଣସ୍ୱର କବି-ମାନଙ୍କ ରଚନାରେ ରହସ୍ୟବାଦୀ ଭାବାନୁଚିନ୍ତା । ଲକ୍ଷ୍ୟ କରିବାର କଥା ଯେ, ମଧୁସୂଦନଙ୍କ ପରେ ବିଂଶଶତକର ଆଦ୍ୟ ଦଶନ୍ଧିରୁ ସବୁଜୋତ୍ତର କାଳ ପର୍ଯ୍ୟନ୍ତ ବହୁ କବିଙ୍କ ପ୍ରାରମ୍ଭିକ ରଚନାରେ ରହସ୍ୟବାଦୀ ଭାବଧାରାର ପ୍ରକାଶ ପ୍ରବଣତା ବଳବତ୍ତର; ମାତ୍ର ସାମୟିକ କାବ୍ୟୋଚ୍ଛ୍ୱାସ ପରେ ଏହା ଭିନ୍ନପଥଗାମୀ । ମନେହୁଏ, ଏହା ପ୍ରାଥମିକ କାବ୍ୟପ୍ରେରଣା ରୂପେ (ଆହରଣ ଓ ଭାବାନୁସରଣ ମାର୍ଗରେ) କବିକଳ୍ପନାକୁ ଉଦ୍ରିକ୍ତ କରିଛି । ମାତ୍ର ସେତେବେଳେ ଜାତୀୟତାବାଦ ଓ ପ୍ରଗତିବାଦ ପ୍ରଭୃତି ଯେଉଁ ନୂତନ ଆହ୍ୱାନ ଓ ନୂତନ ଭାବଚେତନାମାନ କବି ସମ୍ମୁଖରେ ଉନ୍ମୁକ୍ତ ହେଉଥିଲା, ଏ ରହସ୍ୟବାଦୀ କାବ୍ୟଜିଜ୍ଞାସା କ୍ରମଶଃ ତାହାର ଅନ୍ତରାଳବର୍ତ୍ତୀ ହୋଇ କ୍ଷୀଣସ୍ୱର ଓ ଅନେକତ୍ର ପୂର୍ଣ୍ଣବିଲୟ ଭଜିଛି । ଅନେକ ଲବ୍ଧପ୍ରତିଷ୍ଠ କବି ପ୍ରଥମରୁ ରହସ୍ୟବାଦୀ ରୂପେ କାବ୍ୟସାଧନା କରି ପରେ ନୂତନ ଆଦର୍ଶ ଅନୁସରଣରେ ଓଡ଼ିଆ କାବ୍ୟଚେତନାକୁ ଭିନ୍ନ ସ୍ରୋତ କରାଇଛନ୍ତି । ପୁଣି ଅନ୍ୟ କେତେକ

Digitized by PPRACHIN, SOA

କବିଂକ ରଚନାରେ ଏହା ଅନ୍ତର୍ନିହିତ ମୂଳ ସ୍ୱର ରୂପେ ବିଚ୍ଛୁରିତ ହୋଇଥିଲେ ବି ରସଚର୍ଯ୍ୟା ଓ କଳାଗତ ଅସଫଳତା ହେତୁ ଏକ ବଳିଷ୍ଠ ଭାବପ୍ରବେଗ ରୂପେ ରହସ୍ୟବାଦ ଆବଶ୍ୟକୀୟ ରୂପପ୍ରାଧାନ୍ୟ ଲାଭ କରିପାରିନାହିଁ । ପାଠକ ଓ ସମୀକ୍ଷକ ମହଲରେ ଆଶାନୁରୂପ ସ୍ୱୀକୃତି ଓ ପ୍ରତିଷ୍ଠା ଲାଭ କରିପାରିନଥିବା କବିମାନଂକର ଏ ରହସ୍ୟବାଦୀ ପ୍ରବଣତା ବିଚାରର ଅବକାଶ ରଖେ । ଏଥି ସହ ସୁନାମଧନ୍ୟ କବିମାନଂକ ରଚନାରେ ମିଷ୍ଟିକ ଭାବନାର ଯେଉଁ ଗୌଣ ପ୍ରକାଶ ଘଟିଛି, ତାହା ମଧ୍ୟ ବିଚାର ପରିସରରେ ଅନ୍ତର୍ଭୁକ୍ତ ହୋଇଛି ।

ଆଧୁନିକ ଓଡ଼ିଆ କବିତାର ଉନମେଷ କାଳରେ, ପ୍ରାକ୍-ସବୁଜ ସତ୍ୟବାଦୀ ଚେତନାରେ ଏବଂ ସବୁଜ ଓ ସବୁଜୋତ୍ତର କାବ୍ୟସ୍ୱରରେ ରହସ୍ୟବାଦୀ ଭାବଚେତନାର ଗୌଣ ପ୍ରକାଶ ଯୁଗାନୁଯୁକ୍ତ ସ୍ୱଷ୍ଟ ରୂପପରିବର୍ତ୍ତନ ସହ ପ୍ରକାଶିତ । ଫକୀରମୋହନ ଓ ଗଂଗାଧରଂକ କ୍ଷୁଦ୍ର ଗୀତି କବିତା-ଗୁଡ଼ିକରେ ନବୋଦିତ ଯୁଗଚେତନାର ଏବଂ ନୀଳକଂଠ ଓ ପଦ୍ମଚରଣଂକ ରଚନାରେ ପରବର୍ତ୍ତୀ ଯୁଗସ୍ୱରର ଅବଚେତନ କ୍ଷୀଣ ରହସ୍ୟବାଦୀ ଆଭିମୁଖ୍ୟଟିକୁ ସଂଧାନ କରାଯାଇପାରେ । ପକ୍ଷାଂତରେ ସାଧୁଚରଣ ରାୟ ଓ ଚେମା ରାଉ, ନାରାୟଣ ମୋହନ ଦେ, ମଦନମୋହନ ପଟ୍ଟନାୟକ ପ୍ରଭୃତିଂକ କବିତା ପ୍ରବଳ ରହସ୍ୟବାଦୀ ଆବେଦନ ସମ୍ପନ୍ନ ବୋଲି ମନେହୁଏ । ସବୁଜ କାବ୍ୟ ଭାବନାରେ ଏହା ଯୁଗୀୟ ମୁଖ୍ୟ କାବ୍ୟ ପ୍ରବଣତା ରୂପେ ଆତ୍ମପ୍ରକାଶ କରି କାଳିନ୍ଦୀଚରଣଂକ ଆଦ୍ୟ ରଚନା ସ୍ୱରକୁ ପ୍ରଭାବିତ କରିଛି । ସବୁଜ ପ୍ରଭାବିତ ଚନ୍ଦ୍ରଶେଖର ମିଶ୍ର, ଦୟାନିଧି ମିଶ୍ର, ନବକିଶୋର ଦାସ, ଊର୍ମିଳା ଦେବୀ ପ୍ରଭୃତିଂକ କାବ୍ୟାଦର୍ଶରେ ଏହା ମୁଖ୍ୟ ପ୍ରେରଣା ରୂପେ ଆତ୍ମପ୍ରକାଶ କରିଥିବାବେଳେ ଅନ୍ୟାନ୍ୟ ବହୁକବି ଯଥା ଷଡ଼ାନନ ଦେ, ହରେକୃଷ୍ଣ ବଡ଼ାଲ, କୁବେର ଦଳାଇ, ଅନଂତ ପ୍ରସାଦ ପଣ୍ଡା ଗୋଦାବରୀଶ ମହାପାତ୍ର ଓ ସବୁଜୋତ୍ତର ସଚ୍ଚି ରାଉତରାୟ, ଅନଂତ ପଟ୍ଟନାୟକ, ବଂଶୀଧର ସାମଂତରାୟ ଏବଂ କୁଂଜବିହାରୀ ଦାଶ ପ୍ରଭୃତି ଆଧୁନିକ କବିମାନଙ୍କର ଆଦ୍ୟ କାବ୍ୟ ସଂବେଗରୂପେ କ୍ଷୀଣ ବା ସାମୟିକ ରୂପ ପ୍ରକାଶ ଲାଭକରିଛି (ତାହାର ବିଚାର ପରିସର ଏଠାରେ ଅବକାଶ ବହିର୍ଭୂତ ।)

ଐତିହାସିକ କ୍ରମ ବିବେଚନା ଦୃଷ୍ଟିରୁ ଫକୀରମୋହନଂକ ଆତ୍ମସମର୍ପଣମୂଳକ ଭକ୍ତିସଂଗୀତ ଓ ଆଧ୍ୟାତ୍ମିକ ରଚନା ରହସ୍ୟବାଦୀ ପ୍ରଣୋଦିତ ବୋଲି ମନେହୁଏ ନାହିଁ । ଯଦିଓ ବ୍ୟକ୍ତିଜୀବନ ସହ ବିଶ୍ୱଜଗତର ସମ୍ପର୍କ ସ୍ୱରୂପ ଅନୁଶୀଳନ ଭିତରେ କବି ଉପନିଷଦର କାବ୍ୟାନୁଭୂତି ନିକଟରେ ଉପଗତ ହୋଇଥିବାର ପ୍ରତ୍ୟକ୍ଷ କାବ୍ୟସବାଦ ବିଦ୍ୟମାନ । (୧)

ଭାବ-ସିଦ୍ଧ ସ୍ରଷ୍ଟା କବି ଗଂଗାଧରଂକ ରଚନାରେ ପାରଂପରିକ ବିଶ୍ୱାସ ଓ ଆତ୍ମସମର୍ପଣର ଗାନ ଅନେକ । ସେମାନଂକ ମଧ୍ୟରୁ ଭକ୍ତ କବିତାଟି ରହସ୍ୟବାଦୀ ଭାବାନୁଚଂତା ଦୃଷ୍ଟିରୁ ପ୍ରଣିଧାନଯୋଗ୍ୟ । ଯଥା—(୧) ଈଶ୍ୱରଂକ ଅନଂତମିତ୍ୱ-ଅସୀମ ବିରାଟ ଇତ୍ୟାଦି ଶାଶ୍ୱତବାଦୀ ତତ୍ତ୍ୱାଭିଳାଷୀ ନ ହୋଇ ହୃଦୟ ଯାହାକୁ ଆପଣାର ଭକ୍ତି ଅର୍ପଣ କରିବାକୁ ଉଦ୍ୟତ । ସେ ହୃଦୟାନୁଭବକୁ ଜାଣିଥାଂତି (୨)

---

(୧) "ବ୍ରହ୍ମାଂଡ ବିରାଟ ଗ୍ରଂଥ କରି ଅଧ୍ୟୟନ
ଏତିକ ମାତ୍ରକ ଶିକ୍ଷା କରିଛି ଜୀବନ,
ନିକ୍ଷିପ୍ତ ଗଗନମାର୍ଗେ ଅସଂଖ୍ୟ ଗୋଲକ
ପ୍ରତ୍ୟେକ ସହିତ ଅଛି ମୋହର ସମ୍ପର୍କ ।"
ଫକୀର ମୋହନ—(ଅବସର ବାସରେ) ଗ୍ରଂଥାବଳୀ—ପୃ. ୨୨୦

(୨) "ହୃଦୟର କଥା ଜାଣିବାକୁ ଅଛି ତୁମ୍ଭର ଅସୀମ ଶକ୍ତି ।" —'ଭକ୍ତ'

Digitized by PPRACHIN, SOA

ବୋଲି କବି ଦୃଢ଼ ବିଶ୍ୱାସୀ । 'ତାଂକ ସହ ଭାବସଂବନ୍ଧ ଚଳେ' ଏଭଳି ଆତ୍ମିକ ଇଂଗିତ ଭିତରେ 'ଅଂତର୍ଯାମୀ' ରୂପଚେତନାଟି କବିଂକ ଭାବ-ବିଶ୍ୱାସ ହୃଦୟାବେଗକୁ କଂଚିତ ରହସ୍ୟାତ୍ମକ ବ୍ୟଂଜନା ଦେବାରେ ସମର୍ଥ ମନେହୁଏ ।

(୨) ଗଂଗାଧରଂକ କାବ୍ୟଚେତନା ମାନବାତ୍ମାର ଉତ୍ସଗତ ଦିବ୍ୟତ୍ୱ ଓ ଦୈବୀ ଅଭିଳାଷ ସମ୍ପର୍କରେ ସଚେତନ । ଅମୃତ ସାଗର ବିନ୍ଦୁ ଦିନେ ସିଂଧୁ ଲେଖି ଆକାଶମ୍ଭଙ୍ଗ ହୋଇଥିଲା । ସେ ବିଚ୍ଛିନ୍ନତାର ବେଦନା ଏବେ ଜୀବନର ଅମୃତ ସ୍ରୋତା ଆଶାନଦୀ ସହ ଏକାକାର ହୋଇ ସ୍ୱସ୍ଥାନ ସାଗର ଅଭିମୁଖେ ଯାତ୍ରା କରିବାର ଭାବନାଭୂମିରେ ଅଂତର୍ହିତ । (୩) ଏ ଭାବକଳ୍ପନାରେ ସାଗର ସଂଗମ ରୂପ ଦ୍ୟୋତନାଟି ମୂଳରେ ବ୍ୟକ୍ତି ଜୀବନର ମହାପ୍ରାଣରେ ଅଂତିମ ବିଳୟ ସଂଭାବନା ଏବଂ ସତ୍ତ୍ୱର ନିତ୍ୟ ଶାଶ୍ୱତ ଅଭିମୁଖିତାର ରହସ୍ୟବାଦୀ ବ୍ୟଂଜନାଟି ନିହିତ । ମଧୁସୂଦନଂକ 'ନଦୀପ୍ରତି' କବିତାର ଅଂତଦର୍ଶନ ମଧ୍ୟ ଏଥିରେ ପ୍ରତିଫଳିତ ।

(୩) ଗଂଗାଧରଂକ ନିଃସର୍ଗଚେତନା ଓ୍ୱାର୍ଡ଼ସଓ୍ୱାର୍ଥୀୟ ଅଭିବ୍ୟକ୍ତିବାଦ ଉପରେ ପ୍ରତିଷ୍ଠିତ । କବି ପ୍ରକୃତିକୁ ସର୍ବଜ୍ଞ ଈଶ୍ୱରଂକ ପ୍ରତିଚ୍ଛବି ବୋଲି ଗ୍ରହଣ କରିଛଂତି ।

(୪) କବିଂକ ବିଶ୍ୱରରେ ଜୀବନକୁ ମୂଲକରି ଜୀବନ ଦେବତାଂକ ପୂଜାର୍ଚନା କରିବାହିଁ ସାର୍ଥକ ଆରାଧନା । ୪) ଏହା ଶୁଷ୍କ ସନ୍ନ୍ୟାସ ନୁହେ, ବରଂ ଧର୍ମାନୁରାଗୀ ଜୀବନବାଦୀ ସ୍ରଷ୍ଟା ପ୍ରେମିକର ହିଁ ବିଶ୍ୱାସ ।

ମଧୁସୂଦନଂକ କାବ୍ୟଭାବନାର ଭକ୍ତିନିଷ୍ଠା ଓ ଆଧ୍ୟାତ୍ମ ସ୍ୱୀକୃତି ତାଂକର ନ୍ୟୂନାଧିକ ସାଧୁଚରଣ ଗ୍ରନ୍ଥଂକ 'ଭାବକୁସୁମ', 'ଭାବନା', 'ପ୍ରୀତିକୁସୁମ' ଆଦି କବିତାର ରହସ୍ୟଧର୍ମୀ ଅନୁଭବନାରେ ସଂରକ୍ଷିତ । ତାଙ୍କୀୟ ପତ୍ନୀ ରେବା ରାୟଂକ କେତୋଟି କ୍ଷୁଦ୍ର କବିତାରେ ('ଅଂଜଳି'—୧୯୦୪ ସାଲ) ଈଶ୍ୱରଂକ ସହ କବିପ୍ରାଣର ରହସ୍ୟବାଦୀ ପ୍ରୀତି ସମ୍ପର୍କ ଚର୍ଚ୍ଚିତ । ଅଧ୍ୟାତ୍ମ ଆକୁଳତା ଓ ଦ୍ରାକ୍ଷା ସାଧନାର ମର୍ମବାଣୀ ଏଥିରେ ବିମୂର୍ଚ୍ଛିତ ।

ନବଜାଗରଣ ଯୁଗରେ ସତ୍ୟବାଦୀ କାଳର କବିମାନଂକ ରଚନାରେ ଏକ ପକ୍ଷରେ ଉଗ୍ର ଦେଶ-ଭାବନା ଏବଂ ଅପରପକ୍ଷରେ ରୋମାଂଟିକ ସୌନ୍ଦର୍ଯ୍ୟାଦର୍ଶ ଓ ପଲ୍ଲିପ୍ରାଣତାର ପ୍ରବଳ ଉଚ୍ଛ୍ୱାସ ଭିତରେ ଆତ୍ମମୁଗ୍ଧ ଗମ୍ଭୀରତା, ସୂକ୍ଷ୍ମାନୁଭୂତି ସମ୍ପନ୍ନ ଉପଲବ୍ଧି ଓ ବ୍ୟାପକ ଅତୀନ୍ଦ୍ରିୟ ଜିଜ୍ଞାସାର ପରିସର ପ୍ରାୟ ସଂକୁଚିତ; ତଥାପି ଏ ସବୁର କ୍ଷତିପୂରଣ ଯେପରି ଗୋପବଂଧୁଂକ ଅଧ୍ୟାତ୍ମରଚନା ଓ ନୀଳକଂଠଂକ ପ୍ରାଥମିକ କାବ୍ୟୋଦ୍ୟମ ଭିତରେ ପ୍ରତିଶ୍ରୁତ ହୋଇଛି । ନୀଳକଂଠଂକ ସମ୍ପର୍କରେ ଏତିକି କହିଲେ ଅତ୍ୟୁକ୍ତି ହେବନାହିଁ ଯେ, ବିଗତ ଓ ନବାଗତ କାବ୍ୟଜିଜ୍ଞାସାର ଏକ ସନ୍ଧିକ୍ଷଣରେ ଦଂଡାୟମାନ ଏ ଭାବୁକ କବିଂକର ଅତୀନ୍ଦ୍ରିୟ ଦାର୍ଶନିକତା ଏବଂ ରହସ୍ୟୋପଲବ୍ଧିର କାବ୍ୟସାଧନା ସ୍ୱଳ୍ପ ସମୟ ସୀମିତ ହେଲେବି ଭାବ ଆବେଦନ ଦୃଷ୍ଟିରୁ ପରିମିତ ବା ନିଷ୍ପ୍ରଭ ନୁହେ, ଯଦିଓ ପରବର୍ତ୍ତୀ ସାଂସ୍କୃତିକ ମନୋଭାବ ଓ ରାଜନୈତିକ କର୍ମଜୀବନ ଏହାକୁ ନେଇ କାବ୍ୟ-ନିରୀକ୍ଷା କରିବାର ଅବକାଶ ଆଉ ପାଇନାହିଁ ।

---

(୩) "ମୁଁ ତ ଅମୃତ ସାଗର ବିନ୍ଦୁ
ନଭେ ଉଠିଥିଲି ତେଜି ସିନ୍ଧୁ
ଖସି ମିଶିଛି ଅମୃତ ଧାରେ
ଗତି କରୁଛି ସେ ଅକୂପାରେ ।"

(୪) "ଅରଜିଛି ଯାହା ଅରପିଲି ତାହା, କୃପାବନ୍ତ କର ଧାରଣ ।"

Digitized by PPRACHIN, SOA

ନୀଳକଂଠ ଦାସ—

ଯୁଗଚେତନାର କ୍ରମବିକାଶକୁ ଲକ୍ଷ୍ୟ କଲେ ପାରଂପରିକ ଓ ନବାଗନ୍ତୁକ ଭାବସମନ୍ୱୟର ପୃଷ୍ଠଭୂମିରେ ମଧୁସୂଦନ ଏବଂ ଗୋପବଂଧୁଙ୍କ ରଚନାରେ ଯେ ବହିସ୍ଥ ଅଧ୍ୟାତ୍ମନିଷ୍ଠ ରହସ୍ୟଭାବନା ପ୍ରକଟିତ, ସମସାମୟିକତାକୁ ତାହା ଉଦ୍‌ବୁଦ୍ଧ କରିଥିବାର ପ୍ରତ୍ୟକ୍ଷ ପ୍ରମାଣ ନୀଳକଂଠ କାବ୍ୟମାନସ । ନୀଳକଂଠଙ୍କ କାବ୍ୟ—ବ୍ୟକ୍ତିତ୍ୱ କିନ୍ତୁ ମୁଖ୍ୟତଃ ଏକ ଦାର୍ଶନିକ—ବ୍ୟକ୍ତିତ୍ୱ ଓ ତାଂକ ଚେତନାର ଉଗ୍ର ଜାତୀୟତା, ସ୍ୱଦେଶପ୍ରାଣତା, ପ୍ରଣୟ ଚିନ୍ତ ଓ ଆଧ୍ୟାତ୍ମିକ ଭାବନା ସର୍ବତ୍ର ଏଇ 'ଦର୍ଶନ—ଦୃଷ୍ଟି' ଜଗତଟିର ସଂବାଦ ମିଳିଥାଏ । ସେ ଦୃଷ୍ଟି-ଜଗତ ସୌନ୍ଦର୍ଯ୍ୟ ଓ ପ୍ରେମ, ସୃଷ୍ଟି ଓ ବିସୃଷ୍ଟିର ଲୀଳା ଭିତରେ ଜୀବନର ଅନନ୍ତତ୍ୱ ପ୍ରଖ୍ୟାପନକାରୀ । ବସ୍ତୁତଃ ଶୁଭାଭିଳାଷୀ ନୀଳକଂଠଂକ କାବ୍ୟ ଚେତନାର ରୂପରାଗମୟ ପୃଥିବୀ ସବୁ ଅବସ୍ଥାରେ ଏକ ଅପାର୍ଥିବ ବିମୋହନ ଲୋକର ଉନ୍ମୁଖତା ପ୍ରକଟ କରିଛି । ପ୍ରାଥମିକ କବି[illegible] କେତୋଟିରେ ରୋମାଣ୍ଟିକ ସୌନ୍ଦର୍ଯ୍ୟ ସୌରଭ ବିଚ୍ଛୁରଣ ଅବକାଶରେ ସେ ଯେଉଁ 'ଦିବ୍ୟ-ଉଚ୍ଚାଟନ' ପ୍ରକଟନ କରିଛନ୍ତି, ସେଥିରେ ପ୍ଲାଟୋନିକ ଭାବାଦର୍ଶାତ୍ମକ (Idealistic ରହସ୍ୟବାଦୀ ସ୍ପର୍ଶଟିକୁ ଲାଭ କରିହୁଏ ।

କବିଂକ ପ୍ରଥମ କବିତା 'ଆଦର୍ଶତାରା'ରେ (୫) ସେ ପ୍ରଣୟଚେତନା ଓ ଅପାର୍ଥିବ-ଅଭିଳାଷର ସ୍ୱରୂପଟି ଆଭାସିତ । ଦୂର ନଭସ୍ଥିତ ତାରକା କବିଂକ ପ୍ରଣୟିନୀର ପ୍ରତିରୂପା । ପାର୍ଥିବ ଅନୁଭବରେ ଅମର୍ତ୍ତ୍ୟ ପ୍ରେମଭାବନାର ଆଦ୍ୟସଂସ୍ପର୍ଶ ଯାହା ପାଇଁ, ସେଇ 'ଆଦର୍ଶତାରା' ଏ ଇନ୍ଦ୍ରିୟାତୀତ ପ୍ରେମସମ୍ପର୍କର ଉନ୍ମେଷ-ସଂବାଦ ହୋଇପାରେ । ଜୀବନ ପାଇଁ ସମ୍ଭାବିତ ସମସ୍ତ ଆଶା ଓ ଆଲୋକ ସେ 'ପ୍ରଣୟ ତାରା' ପ୍ରତିଶ୍ରୁତା । (୬) ଶ୍ରେଷ୍ଠ ଜଗତର ଲୀନ ହେଲେବି କବି ଜଗତ-ନିର୍ଲିପ୍ତ ରହିପାରିଛନ୍ତି ଏବଂ ଜୀବନର ବିପାକ ବିପର୍ଯ୍ୟୟ ଭିତରେ ମଧ୍ୟ ସେଇ ଊର୍ଦ୍ଧ୍ୱଲୋକର ଦୂର ପ୍ରଣୟ ପ୍ରତି ଅଚଳ ଆନୁଗତ୍ୟ ରଖି ସବୁ ଝଂକାର ଅବସ୍ଥାନରେ ତାର 'ପ୍ରେମ-ଜ୍ୟୋତି' ଲାଭ କରିବାକୁ ଆଶାୟୀ ହୋଇଛନ୍ତି ।

ଆଦର୍ଶବାଦୀ ପ୍ରଣୟର ଏ ପ୍ଲାଟୋନିକ୍ ଊର୍ଦ୍ଧ୍ୱାଭିସାର ଓ ବିଦେହ-ସାଧନା ପ୍ରଥମରୁ ହିଁ ନୀଳକଂଠଂକ କାବ୍ୟ-ଚେତନାର ପ୍ରଣୟାଦର୍ଶକୁ ନିରୂପିତ କରିଛି । (୭) ନୀଳକଂଠଂକ କବିତାର ସାମଗ୍ରିକ୍ ପ୍ରେମ ଉଦ୍‌ବୋଧନାରେ ଏ ଆଇଡିଆଲିଷ୍ଟିକ ରୂପଚେତନା (Idealism) ଉପଲବ୍ଧ ହୋଇଥାଏ । ସେ ରୂପଚେତନା ଅନୁପ୍ରାଣିତ ଆଲୋଚ୍ୟ ଏ କବିତାଟିକୁ ରହସ୍ୟବାଦୀ ପ୍ରେମ ଭାବନାର ବିଶିଷ୍ଟ କାବ୍ୟୋଦାହରଣ ବୋଲି ଦ୍ୱିଧାହୀନ ଭାବେ ଗ୍ରହଣ କରାଯାଇପାରେ । (୮)

ଏ ଆଦର୍ଶ ପ୍ରଣୟର ଉତ୍ସାର ଓ ବିକାଶ ରୂପ କବି ମାନସରେ କ୍ରମେ ପରିପୁଷ୍ଟ ହୋଇଛି । 'ଆଦର୍ଶ ତାରା'ରେ ସଙ୍କେତିତ ପ୍ରେମିକ ଜୀବନର ଆଦର୍ଶଗତ ମହନୀୟତା 'ପ୍ରୀତି ରହସ୍ୟ' କବିତାରେ ମଧ୍ୟ ପରିସ୍ଫୁଟ । ଏ ପ୍ରୀତି ଯେ ଅଲୌକିକତାର ବ୍ୟଂଜନା ସୀମାରେ ଆଧ୍ୟାତ୍ମିକ-ସାଧନା

(୫) ଜାନୁୟାରୀ ୧୯୦୯

(୬) "ଉଚ୍ଚ ଅଭିଳାଷେ ମୋର ହସୁଥିଲା ଜଗତ ।"

(୭) "ଆହା ସେ ପୀରତି ନାଁ ବିଚିତ୍ର ରସ/ଜଗତ ମୁକୁରେ ଦେଖଇ ମୁଖ
ଗଗନେ ତପନେ ଜଳେ ସ୍ଥଳେ ନଭେ / ଝଲଇ ପୀରତି ସ୍ୱପନ ମୁଖ ।"
('ଖାରବେଳ'—ପୃଷ୍ଠା ୨୫)

(୮) "ଏହାକୁ ମିଷ୍ଟିକ୍ ପ୍ରଣୟର ନିର୍ମଳ ଅନୁଭବ ବୋଲି ଗ୍ରହଣ କରାଯାଇପାରେ ।"
ଶ୍ରୀ କ୍ଷେତ୍ରବାସୀ ନାୟକ । (କବି ନୀଳକଂଠ—ପୃ. ୪)

Digitized by PPRACHIN, SOA

ପୂର୍ଣ୍ଣିତ ଓ ବିଭୁ-ଅନୁରାଗ-ନିଷିକ୍ତ ହେବାର ସୌଭାଗ୍ୟ ଲାଭକରିଛି, 'ବିଶ୍ୱବାଣୀ', 'ଆତ୍ମବାଣୀ', 'କାନ୍ଦିଅଛି' ପ୍ରଭୃତି କବିତାରେ ତାହା ପ୍ରକଟିତ । ଦେହସମ୍ଭୋଗବାସନାକୁ ଅତିକ୍ରମ କରି ପ୍ରେମର ଯେ ଏକ ଊର୍ଦ୍ଧ୍ୱତର ବିଦେହ ସ୍ଥିତି ଅଛି ଏବଂ ତାହା ପୂରାପୂରି କାଳ୍ପନିକ ନହୋଇ ଉପଲବ୍ଧିରେ ପ୍ରାପ୍ୟ, —ଏ ଚିନ୍ତାଧାରାର ବଳବତ୍ତରତା ନୀଳକଣ୍ଠଙ୍କ ପ୍ରୀତି-ଚେତନାକୁ ଆଦ୍ୟପ୍ରାନ୍ତ ଆଚ୍ଛାଦିତ କରିଛି । କବିଙ୍କ ଦାର୍ଶନିକ ଦୃଷ୍ଟିକୋଣ ପ୍ରଥମରୁ ହିଁ ପ୍ରେମର ସ୍ଥୂଳତା-ବର୍ଜିତ ଓ ସୂକ୍ଷ୍ମ ଅବବୋଧଗମ୍ୟ ଅତୀନ୍ଦ୍ରିୟ ରୂପ-ରହସ୍ୟ ପ୍ରତି ଆକୃଷ୍ଟ ଥିଲା.—(୯) ରାଜନୀତି ଓ ଜାତୀୟତାର ବନ୍ୟା ସ୍ରୋତରେ କବି ଜୀବନ ଉତ୍କଳ ହୋଇନଥିଲେ ତାଙ୍କ କାବ୍ୟଜିଜ୍ଞାସାରେ ଏ ପ୍ରେମାତ୍ମକ ରହସ୍ୟଧର୍ମିତା ପରିପୁଷ୍ଟ ଏବଂ ଅନୁଭବନିଷ୍ଠ ଭାବସାନ୍ଦ୍ରତାର ଦିଗ୍ବିଜୟ କରିଥାନ୍ତା—ଏହା ଅନୁମାନ କରାଯାଇପାରେ ।

ଖ୍ରୀ: ୧୯୨୨-୨୩ରେ ରଚିତ 'ଭକ୍ତଗାଥା'ରେ ଏ ଅତୀନ୍ଦ୍ରିୟବାଦୀ ରୂପଚେତନା ଦାର୍ଶନିକ ସମାଧାନ ନେଇଛି । ସୃଷ୍ଟି ରହସ୍ୟର ବିରୋଧାତ୍ମକତା କବିଚେତନାରେ ଯେଉଁ ପ୍ରଶ୍ନ ଭରିଦେଇଛି, ସଂଶୟ ଓ ସ୍ୱୀକୃତିର ସଂଘର୍ଷ ଭିତରେ ତାର ଏକ ରହସ୍ୟବାଦୀ ଐକ୍ୟ-ଉନ୍ମୁଖୀ ଉପଲବ୍ଧି ଆସିଛି । ସତ୍ୟରେ ଯନ୍ତ୍ରଣାର ସ୍ଥିତି ହିଁ ମାନବ-ମନସ୍ତତ୍ତ୍ୱରେ ଈଶ୍ୱରଙ୍କ ପ୍ରତି ସଂଶୟର ମୂଳ ହେତୁ । ମାତ୍ର ବିଭୁ-ପ୍ରେମୀ ସକଳ ବିରୋଧାଭାସତାର ଦ୍ୱନ୍ଦ୍ୱକୁ ଅତିକ୍ରମ କରି ନିର୍ଲିପ୍ତ ରହିଥାଏ । ଈଶ୍ୱରଙ୍କ ସର୍ବବ୍ୟାପିତ୍ୱ ଓ ଅନନ୍ତ-ତ୍ୱ ଭିତରେ କବି ସବୁ ସମାଧାନର ରହସ୍ୟ ସୂତ୍ରଟିକୁ ଆବିଷ୍କାର କରିଛନ୍ତି । ତାପରେ ତ ନିରୁଦ୍‌ବିଗ୍ନ ପ୍ରାଣରେ ନିଶ୍ଚିନ୍ତ ସର୍ବସମର୍ପଣ, ଗାନ—"ଜୀବନ ମରଣ ମମ ସବୁ ସେ ତୁମ୍ଭରି ।" (ଭକ୍ତଗାଥା, ଗ୍ରନ୍ଥାବଳୀ ପୃ. ୧୦୦) । ଏ ମିଷ୍ଟିକ ରୂପୋନ୍ମୋଚନ କବିଙ୍କ ଦର୍ଶନର ଅମୂର୍ତ୍ତତାକୁ ଅତିକ୍ରମ କରି ଅନୁଭବର ପ୍ରତ୍ୟକ୍ଷତା ଭିତରକୁ ପ୍ରମୂର୍ତ୍ତ ହୋଇଆସିଛି, "ଦେଖିବି କି କାନ୍ଦିଅଛି ଧରି ବିଶ୍ୱସାରା/ଅନ୍ତରେ ବାହାରେ ବହିଯିବ ପ୍ରୀତିଧାରା ।" (୧୦)

ନୀଳକଣ୍ଠଙ୍କ ଗଦ୍ୟ ପଦ୍ୟ ସର୍ବତ୍ର ଏଇ ଅନନ୍ତ ଉନ୍ମୁଖତା ଓ ଅରୂପ ପ୍ରେମ ଭାବନା ବିଳସିତ । ତାଙ୍କ ରଚନାର ଆଧ୍ୟାତ୍ମିକ ସ୍ୱରୂପ ଏବଂ ବୈଦାନ୍ତିକ ଉପଲବ୍ଧି ତାଙ୍କୁ ମଧୁସୂଦନଙ୍କ କାବ୍ୟ ଭାବନାର ଯଥାର୍ଥ ଉତ୍ତରାଧିକାରୀ ରୂପେ ପରିଚିତ କରାଇଥାଏ । କାରଣ, ଏ ଦାର୍ଶନିକ ମନନଶୀଳତା ଓ ଆଧ୍ୟାତ୍ମିକ ବିଶ୍ୱର ଗତାନୁଗତିକ ଧର୍ମ ଓ ପାରତ୍ରିକ ଚିନ୍ତା ପରିବର୍ତ୍ତେ ମନୁଷ୍ୟ ଜୀବନ ଓ ବିଶ୍ୱ ସୃଷ୍ଟି ମୂଳରେ ନିହିତ ରହସ୍ୟାତ୍ମକତା ପ୍ରତି ଇଙ୍ଗିତ । ସେହି ବିସ୍ମୟ ଉଦ୍‌ବୋଧନ ତାଙ୍କ କାବ୍ୟ ସ୍ୱରରେ ବୌଦ୍ଧିକ ପରିଚ୍ଛନ୍ନତା ଓ ଅନୁଭବର ନିର୍ମଳତାକୁ ରୂପାୟିତ କରିଛି । ଅନନ୍ତବାଦ ବିଶ୍ୱରହସ୍ୟର ମୂଳଉତ୍ସ ରୂପେ କବି-ସ୍ୱୀକୃତି ଲାଭକରିଛି । ସ୍ଥାନ-କାଳ-ଅତୀତ ସୃଷ୍ଟିର ଅନନ୍ତତ୍ୱ ଓ ମାନବାତ୍ମାର ଅବିନାଶୀ ନିତ୍ୟତା ସନ୍ଧାନକାରୀ ତାଙ୍କର ଦାର୍ଶନିକତା ନିକଟରେ ସର୍ବବାଦୀ ରହସ୍ୟଚେତନାର ଆବେଗ ଉଦ୍‌ବେଳନ ଓ ପ୍ରଣୟୋଚ୍ଛ୍ୱାସ ଅବଶ୍ୟ ଦୁର୍ଲଭ ହେବା କଥା ନୁହେ । ମାତ୍ର ତାଙ୍କ ଅତୀନ୍ଦ୍ରିୟ ଭାବ-ରୂପଟି ଅନୁଭୂତି ବର୍ଜିତ ଲଘୁ କାବ୍ୟକଳ୍ପନା ସମୁଚ୍ଚାରିତ ମଧ୍ୟ ନୁହେ । ବାସ୍ତବବାଦୀ ଦର୍ଶନର ତୀକ୍ଷ୍ଣ ଜିଜ୍ଞାସା ନେଇ ସେ ଜୀବ ଓ ଜଗତର ଗତି ଓ ପ୍ରକୃତିକୁ

---

(୯) "ପ୍ରେମବଶେ ରସବନ୍ତ ଅନ୍ତରାତ୍ମା ମମ
ରସୋନ୍ମାଦେ ଭକତିର ଆଲକ୍ଷ୍ୟ ଲୋତକେ
ଗାଇବ ହେ ତବ କୃତି ପରାଣ ପୁଲକେ
ଅନନ୍ତ ପରାଣ ବିଭୋ ! ବ୍ରହ୍ମାଣ୍ଡ ସବିତା ।" ('ଭକ୍ତବାଣୀ' ପୃ. ୧୧୬ ଗ୍ରନ୍ଥାବଳୀ)

(୧୦) 'ପ୍ରଶ୍ନବାଣୀ'—ନୀଳକଣ୍ଠ ଗ୍ରନ୍ଥାବଳୀ—ପୃ. ୧୬୭

Digitized by PPRACHIN, SOA

ଚିନ୍ତା ନିରୀକ୍ଷଣ କରିଛନ୍ତି । (ଦ୍ରଷ୍ଟବ୍ୟ, ପ୍ରବନ୍ଧ—'ଯୌବନର ପ୍ରଭାବ ଓ ପ୍ରତିଷ୍ଠା') ଏହି ଗଭୀର ନିରୀକ୍ଷା ଓ ବିଶ୍ୱରବୋଧ ହିଁ ତାଙ୍କୁ ଅନନ୍ତ ଅଭିଳାଷୀ ଅଧ୍ୟାତ୍ମବାଦୀ ପ୍ରତିପନ୍ନ କରିଛି । (୧୧) ନୀଳକଣ୍ଠଙ୍କ ଉପସ୍ଥାପନାରେ ପ୍ରକୃତି ଓ ମାନବ, ଜଡ଼ ଓ ଜୀବନରେ ଏକ ଅତି-ଜାଗତିକ-ସତ୍ତାର ଅନ୍ତଃସ୍ୱୀକୃତି ରହିଛି, ଯାହା ଅନୁଭବ, ବିଶ୍ୱର ଓ କର୍ମ ମାଧ୍ୟମରେ ମନୁଷ୍ୟର ଭାବଜଗତରେ ରୂପଲାଭ କରିବାକୁ ନିରନ୍ତର ବ୍ୟକ୍ତିଚେତନାକୁ ସଂପ୍ରେରିତ କରୁଥାଏ । ଏହାହିଁ କବିଙ୍କର ଆତ୍ମଦର୍ଶନ ଓ ବିଶ୍ୱଦର୍ଶନର ରହସ୍ୟାତ୍ମକତା । 'ଭକ୍ତିବାଣୀ' କବିତାରେ ଏ ଦର୍ଶନର ବର୍ଣ୍ଣନା ଅଛି ।

"ମାନବ ନୟନେ ମୁହିଁ ଜୀବରଶ୍ମି ଢାଳେ/ଦେଖାଇ ଉପରେ ସଦା ଅମୃତତୋରଣ,
ମହାଭୂତ ଶକ୍ତିପୁଞ୍ଜ କରେ ମୁଁ ଶାସନ/ମରଦେହେ ଧୂଳିର ଏ ମାନବ ବିଗ୍ରହେ ।
ରାଜା ମୁହିଁ, ଦାସ ମୁହିଁ, ପ୍ରକୃତି ସର୍ଜନେ/ମହା ଅନୁଭୂତି ବଳେ,
ପରାଣର କୋଳାହଳେ/ଅମର ମୁଁ ଜଗତର କୀଟ ପୁଣି କ୍ଷଣେ ।"

କବିଙ୍କର ମିଷ୍ଟିକ ଉପଲବ୍ଧିର ଏହା ଏକ ଅକପଟ ଅଭିବ୍ୟକ୍ତି । ଅପାର୍ଥିବ ତତ୍ତ୍ୱ, ଅନନ୍ତ ବିଶାଳ ମହାପ୍ରାଣତାର ଏ ସଂବାଦ ତାଙ୍କ ଚେତନାର ଅଭ୍ୟନ୍ତରରୁ ଅନୁଭୂତିର ଗଭୀର ସ୍ୱାକ୍ଷର ସଂବହନ କରି ନିଷ୍କାସିତ ହୋଇଥିବାର ମନେହୁଏ । ଅସ୍ତିତ୍ୱର ଏ ବିପୁଳ ଅନୁଭବଟି ଜୀବନର ବାହ୍ୟରୂପ, ସସୀମତା ଓ ଅନିତ୍ୟତାର ଅନ୍ତର୍ଗତ ଶାଶ୍ୱତଠାରୁ ହିଁ ଉଚ୍ଚାରିତ । ବିଥୋଭେନ୍‌ଙ୍କ ଅପୂର୍ବ ସ୍ୱରରଚନା 'ନାଇନ୍‌ଥ ସିଂଫୋନୀ' ପ୍ରକଟିତ ସକଳ ଅରାଜକ, ବିସଦୃଶ ଓ ବିଶୃଙ୍ଖଳ ସ୍ୱର କୋଳାହଳ ଭିତରେ ଏକ ଅନ୍ତର୍ଲୀନ ସମାହିତ ସୂକ୍ଷ୍ମ ଲୟ ମୂର୍ଚ୍ଛନାଟି ପରି ଏ ସୃଷ୍ଟି ରହସ୍ୟ, ଗୀତାର 'ବିଭକ୍ତେଷୁ ଅବିଭକ୍ତଂ—ଆତ୍ମତତ୍ତ୍ୱର ଏ ଆତ୍ମରୂପାୟନ ରହସ୍ୟ କବିଙ୍କ ଅନ୍ତଃଗହନର ଜ୍ଞାନପ୍ରବୁଦ୍ଧ ସମାହିତତାରେ ପୂର୍ଣ୍ଣ ଉନ୍ମୋଚିତ ।

## ପଦ୍ମଚରଣ ପଟ୍ଟନାୟକ

ସୁରୁଚିପ୍ରବଣ ଓଡ଼ିଆ କବିତା ସ୍ୱରରେ ଓ ପ୍ରଣୟ ଭାବର ସଂତର୍ପଣ ଆତ୍ମପ୍ରକାଶ କାଳରେ ଆଧ୍ୟାତ୍ମିକତା / ଅପାର୍ଥିବତାର ମୋହ ଭିତରୁ ଆଧୁନିକ କାବ୍ୟ ପ୍ରୟାସକୁ ଯଥାସମ୍ଭବ ପ୍ରଭାବମୁକ୍ତ ରଖିଥିବା ପ୍ରାକ୍-ସବୁଜ ଜାତୀୟ-ଚେତନା କବି ପଦ୍ମଚରଣଙ୍କ କବିତାରେ ରହସ୍ୟବାଦର ସ୍ପଷ୍ଟ ଦାର୍ଶନିକ ଜିଜ୍ଞାସା ବା ଭାବାନୁଭୂତିର ଉଦ୍‌ବୋଧନ ମିଳେନାହିଁ । ସ୍ୱଦେଶଭାବନା ସହ, ରୂପ ଓ ପ୍ରେମ ଚେତନାର ଗାନମୁଖର ତାଙ୍କ କାବ୍ୟକୃତି ମଧ୍ୟରେ 'କିଏ ତୁମ୍ଭେ' ଓ 'କେଉଁ ଦେଶେ ଅଛ' ('ପଦ୍ମ ପାଖୁଡ଼ା' ପୃ. ° ଓ ପୃ. ୬୭) କବିତା ଦ୍ୱୟ କେତେକ ସମୀକ୍ଷକ ରହସ୍ୟଭାବବର୍ଜିତ ଅତୀନ୍ଦ୍ରିୟତା ଉତ୍ସାହୀ ଦାର୍ଶନିକ ପ୍ରୟାସ ବୋଲି ମତବ୍ୟକ୍ତ କଲାବେଳେ କେହି କେହି ଏହାକୁ ରହସ୍ୟଭାବ ବର୍ଜିତ ବୋଲି ମଧ୍ୟ ତର୍କଣା କରିଥାନ୍ତି । ଡ ନଟବର ସାମନ୍ତରାୟଙ୍କ ବିଶ୍ଳେଷଣରେ 'କବିତାରେ ଭାବ-ଗାମ୍ଭୀର ସ୍ୱଚ୍ଛତା ତଥା ପ୍ରବହମାନତା ସଙ୍ଗେ ତାର ଅନ୍ତଃଗୂଢ଼ତା ଆଦୌ ଉଲ୍ଲେଖ୍ୟ ନୁହେଁ । ଏଥିରେ ରହସ୍ୟବାଦର ଅସ୍ପଷ୍ଟତା ଆଦୌ ନାହିଁ କହିଲେ ଚଳେ ।" (୧୨) ଏହା ସହ ତୁଳନୀୟ,

(୧ ) "କି ଭାବ, କି ଭାଷା, ପ୍ରକାଶଶୈଳୀ ଅଥବା ବିଷୟ ନିର୍ବାଚନ, ସର୍ବକ୍ଷେତ୍ରରେ ଉଚ୍ଚାଙ୍ଗ କଳ୍ପନା, ଗାମ୍ଭୀର୍ଯ୍ୟ ଓ ମହାନତା ପ୍ରତି କବି ଧ୍ୟାନ ଦେଇଥିବା ଦେଖାଯାଏ ।"
ଡ. ନରେନ୍ଦ୍ରନାଥ ମିଶ୍ର—'ଆଧୁନିକ ଓଡ଼ିଆ କାବ୍ୟଧାରା'
(ନବଜାଗରଣ ଯୁଗ)—ପୃ. ୧୮୭

(୧୨) ଡ. ନଟବର ସାମନ୍ତରାୟ—'ଓଡ଼ିଆ ସାହିତ୍ୟର ଇତିହାସ'—ପୃ. ୫୧୩

Digitized by PPRACHIN, SOA

ଡଃ ନିତ୍ୟାନଂଦ ଶତପଥୀଂକ ନିମ୍ନୋକ୍ତ ମଂତବ୍ୟଟି "କବି ପଦ୍ମଚରଣଂକ ପରି ଜଣେ ଜାତୀୟବାଦୀ ରୋମାଂଟିକ କବି ତାଂକ କବିତାରେ ଯେଉଁ ରହସ୍ୟାତ୍ମକ ଚେତନା ପ୍ରକାଶ କରିଛଂତି, ତାହା ମଧୁସୂଦନଂକ ଚିଂତାଧାରାଠାରୁ ଦୂରତା ରକ୍ଷାକରି ଇଂରେଜୀ ବୈଦେଶିକମାନଂକ ଚିଂତାଧାରା ସହ ଅନେକ ପରିମାଣରେ ସମନ୍ୱିତ ହୋଇପାରିଛି । ଏ ଚିଂତାରେ ମଧୁସୂଦନୀୟ ପୂର୍ଣ ଆତ୍ମସମର୍ପଣର ଛବି ନାହିଁ, ଏକ ରହସ୍ୟାନୁଭୂତି ମାତ୍ର ଅଛି ।" (୧୩) ଏ ପ୍ରସଂଗରେ 'ଗୋଲାପ ଗୁଚ୍ଛ'ର ସମୀକ୍ଷା ଅବକାଶରେ 'ଯୁଗବାଣୀ'ରେ ପ୍ରକାଶିତ ମଂତବ୍ୟଟି ପ୍ରଣିଧାନଯୋଗ୍ୟ—"ନାନାବିଧ ଘାତ ପ୍ରତିଘାତରେ ଆତ୍ମହରା ହୋଇ ଲକ୍ଷ୍ୟବସ୍ତୁର ଉଦ୍ଦେଶ୍ୟ ନ ହରାଇ ଜୀବନର ସମସ୍ତ ଦୁଃଖ ଦୈନ୍ୟ ଏବଂ ବ୍ୟଥା ମଧ୍ୟରେ ସତ୍ୟ-ଶିବ-ସୁଂଦରଂକୁ ମଂଗଳ ପ୍ରେରଣାର ଗୂଢ଼ ଇଂଗିତ ସେ ଦେଖିପାରିଛଂତି । (୧୪)

ଖ୍ରୀ: ୧୯୨୧ ଓ ଖ୍ରୀ. ୧୯୧୦ ଓଡ଼ିଆ କାବ୍ୟସ୍ତରର ଅଧ୍ୟାତ୍ମବାଦୀ ଦାର୍ଶନିକ ଜିଜ୍ଞାସା ଓ ଅତୀଂଦ୍ରିୟ ରହସ୍ୟୋନ୍ମୁଖିତା ନାମରେ ଅବାସ୍ତବ ବିଳାସର ମୋହାସକ୍ତିକୁ ଲକ୍ଷ୍ୟକରି ପଦ୍ମଚରଣ ଲେଖିଥିଲେ । "ଆଜିକାଲି ସମସ୍ତେ ଭକ୍ତ ବା ଭଣ୍ଡଭକ୍ତ ହୋଇ ସାହିତ୍ୟସେବା କରିବାକୁ ଆଗଭର । ଆଧୁନିକ ଯୁବକର ମୁଖରେ ସଂସାର ତ୍ୟାଗର ବୈରାଗ୍ୟ-ଗୀତ ଶୁଣିଲେ ପ୍ରାଣରେ ବୈରାଗ୍ୟ ଜାତ ହୁଏନାହିଁ । ପବିତ୍ରତା, ସ୍ନେହପ୍ରୀତି, ହର୍ଷର କଳ ସଙ୍ଗୀତ ଗାଇ ଯେ ଆମ୍ଭମାନଙ୍କ ଶ୍ରାନ୍ତ ପ୍ରାଣରେ ସାହସ ସଂଚାର କରିପାରେ···ପରମ ବିଶ୍ୱାସର ଗୀତ ଗାଇ ଯେ ଆମ୍ଭମାନଂକ କ୍ଷୀଣବିଶ୍ୱାସକୁ ଦୃଢ଼ କରିପାରେ, ସେ ଆମ୍ଭମାନଙ୍କ ଭକ୍ତି ସମ୍ମାନର ଅଧିକାରୀ । (୧୫)

ଶଂସିତ ଯୁଗର କବିତାରେ ଆଧ୍ୟାତ୍ମିକତା ନାମରେ ଛଳନା, ଲଘୁଭାବନା, ଉଚ୍ଛ୍ୱାସ ତରଳତା, ବିଶ୍ୱାସହୀନ ଭଗବଦ୍‌ଗାନ, ନିଷ୍ଠାହୀନ ଆତ୍ମନିବେଦନ, ସ୍ଥୂଳ ଅତୀଂଦ୍ରିୟ ଦର୍ଶନ, ସଂଶୟାକୁଳିତ ତର୍କଣା ଓ ପ୍ରତ୍ୟୟବର୍ଜିତ ବୈରାଗ୍ୟବାଣୀର ଶୁଷ୍କ ନିଃଗର୍ଭିତାପୂର୍ଣ ଯେଉଁ ଅନୁକରଣାତ୍ମକ ସ୍ଫୂର୍ତ୍ତିହୀନ ସ୍ୱର ସମାବେଶ ଘଟିଥିଲା, (୧୬) ପଦ୍ମଚରଣ ତାର ଇଂଗିତ ଦେବା ଭିତରେ ପ୍ରକୃତଭାବରେ ସ୍ନେହପ୍ରୀତି, ପବିତ୍ରତା ଓ ଆନଂଦାନୁଭବରେ ଆଧ୍ୟାତ୍ମିକତାର ସିଦ୍ଧି, ବିଭୁପ୍ରାଣର ଚରିତାର୍ଥତା— ଏବଂ ଜୀବନ ଓ ଜଗତର ଯଥାର୍ଥ ମୂଲ୍ୟଦାନ ଭିତରେ ସୌନ୍ଦର୍ଯ୍ୟ ଓ ଆନନ୍ଦ ପଥରେ ସତ୍ୟସନ୍ଧାନ କରିବାର ଯେ କଳାତ୍ମକ ଆଦର୍ଶଟି ନିହିତ, ତାର ସ୍ୱୀକୃତି ବାଢ଼ିଛନ୍ତି । ପଦ୍ମଚରଣଙ୍କ ନିଜ ରଚନାରେ ଜୀବନ-ରସଧାରା ପ୍ରସ୍ରବିତ ସୌନ୍ଦର୍ଯ୍ୟାତ୍ମକ ସତ୍ୟୋଦ୍‌ବୋଧନରେ ପ୍ରକାଶ ପ୍ରୟାସ ମଧ୍ୟ ପରିଲକ୍ଷିତ ହୁଏ; ଯଦିଓ ସେଗୁଡ଼ିକ ଉପସ୍ଥାପନାରେ ଠିକ୍ ରହସ୍ୟବାଦୀ ପର୍ଯ୍ୟାୟଭୁକ୍ତ ନୁହନ୍ତି ।

କିନ୍ତୁ 'କିଏ ତୁମେ' ଓ 'କେଉଁ ଦେଶେ ଅଛ' ରେ ଜୀବନ-ସ୍ରଷ୍ଟାଙ୍କ ସଂପର୍କରେ ଜୀବ ହୃଦୟର ଯେ ଅନୁଭବ ଜିଜ୍ଞାସା ଝଂକୃତ ତାହା ରହସ୍ୟବାଦୀ ଅନୁଭାବନାର ଆଦ୍ୟ ଉନ୍ମେଷ । ରହସ୍ୟାଶ୍ରୟୀ

(୧୩) ଡ. ନିତ୍ୟାନଂଦ ଶତପଥୀ—'ସବୁଜରୁ ସାଂପ୍ରତିକ' ପୃ. ୯୪

(୧୪) ଯୁଗବାଣୀ ୧୯୩୩—ଏପ୍ରିଲ ୧ମ / ୪ର୍ଥ ସଂଖ୍ୟା —ପୃ. ୩୩୪

(୧୫) ଡଃ ନଟବର ସାମଂତରାୟଙ୍କ ଉଦ୍ଧୃତ ଓଡ଼ିଆ ସାହିତ୍ୟର ଇତିହାସ—ପୃ. ୩୬୪

(୧୬) "ରସ ସାହିତ୍ୟକୁ ଓଡ଼ିଶାର କବି ଓ ପାଠକ ଅବିମିଶ୍ର କଳାକୌତୁକ ଭାବରେ ଗ୍ରହଣ କରିବାକୁ ସବୁବେଳେ ପରାଙ୍ମୁଖ । ତେଣୁ ଓଡ଼ିଶାର କବିମାନେ ପ୍ରାୟ ସମସ୍ତେ ଭକ୍ତ ।"
ଦାଶରଥି ଦାସ—'କାବ୍ୟ ସଂବାଦ' ପୃ. ୨୧୬

Digitized by PPRACHIN, SOA

ଅଭିଭାଷଣର ଆଦ୍ୟରୂପ-ସଙ୍କେତ ବୋଲି ସୂଚିତ କରାଯାଇପାରେ । ଈଶ୍ୱରଙ୍କୁ ନେଇ କାବ୍ୟକଳ୍ପନା କରିବାର ମନୋବୃତ୍ତି କବିଙ୍କର ନଥିଲା । କେବଳ ଯେଉଁଠି ଚେତନାର ନିଗୂଢ଼ ଉପଲବ୍ଧି ଭିତରୁ ହୃଦୟର ଜିଜ୍ଞାସା ସ୍ପଷ୍ଟ ଉତ୍ତର ଖୋଜିଛି ସେଠାରେ କବି ସେ ବିସ୍ମୟ ରହସ୍ୟ ସନ୍ଧାନ କରିବାକୁ ବାଣୀଭାବନାର ଆଶ୍ରୟ ନେଇଛନ୍ତି । ସବୁ କିଛିର ଅନ୍ତରାଳରେ ସତ୍ୟ-ଶିବ-ସୁନ୍ଦରଙ୍କ ମଂଗଳପ୍ରେରଣାର ଗୂଢ଼ ଇଂଗିତ ଦେଖିପାରିବାର କବି ସାଧ କ୍ରାଂତଦର୍ଶନ ହିଁ ସ୍ପିଷ୍ଟ କର ଦେଖାଃ—ଯଥାସମ୍ଭବ ସଙ୍କର୍ଷଣ ଭାଷାବିନ୍ୟାସ ଭିତରେ ବି ଆଲୋଚ୍ୟ କବିତାରେ ଏ ଦର୍ଶନର ସମ୍ବାଦ ସତ୍ୟତା ଓ ଉପଲବ୍ଧି ବିଶ୍ୱସ୍ତତା ଆଲୋଚ୍ୟ କବିତା ଦୁଇଟିର ମର୍ମସ୍ପନ୍ଦନରେ ଅନୁଭବ କରିହୁଏ ।

କବିଙ୍କ ଅନ୍ତିମ ଜୀବନରେ ରଚିତ ଓ ଶାନ୍ତିନିକେତନରୁ ପ୍ରକାଶିତ ଗୋଟିଏ କବିତା 'ଯୌବନର ବର୍ଣ୍ଣନା'ରେ ଲେଖାଅଛି—

"ଚିରକାଳ ଏହି ରଶ୍ମି ରଖିଥାଅ ମୋହ ପାଇଁ / ହେ ମୋର ଅନ୍ତର ଦେବ ହେ ମୋର ଜୀବନ ପାଇଁ; ଏହି ମୃଦୁ ମନ୍ଦ ହାସ୍ୟ, ଏଇ ମନ ଏଇ ଖେଳ / ଚିରକାଳ ମୋ ଜୀବନେ ଲଭିଥାଉ ମଧୁମେଳ ।" (୧୭)

ଆଲୋକ ଓ ଆତ୍ମୀୟତାର ସମ୍ବାଦମୁଖର ଏଇ ପଙ୍‌କ୍ତିଟିରେ 'ମଧୁମେଳ'ର ଏ ଅନୁଯୋଗଟି ନିଶ୍ଚିତଭାବେ ଶରଦିନ ମାଟିର ମଧୁର ମମତାସିକ୍ତ ଧରାପ୍ରିୟ ଜୀବନ-ପ୍ରଣୟୀ କବିମନର । ଆଲୋକ-ପିପାସୁ ସେ ମନ କିନ୍ତୁ ଊର୍ଦ୍ଧ୍ୱସ୍ଥିତ ଦେବତାଙ୍କୁ ଅନ୍ତର ପ୍ରିୟ ରୂପେ ଲାଭ କରିବାକୁ ନିତ୍ୟ ଅପେକ୍ଷିତ । ଜୀବନ ଓ ଜଗତର ପ୍ରାତ୍ୟହିକତା ଭିତରେ କବି ଜୀବନସହ ନିରନ୍ତର ଲୀଳାବିଳାସ ରଚନା କରୁଥିବା ଏଇ ଅନ୍ତରଦେବ ରବୀନ୍ଦ୍ରନାଥଙ୍କ ଜୀବନଦେବତା, ମଧୁସୂଦନଙ୍କ ପ୍ରାଣଧବ, ଗୋପବନ୍ଧୁଙ୍କ ହୃଦୟ ବନ୍ଧୁଙ୍କଠାରୁ ଯେ ଭିନ୍ନ ନୁହନ୍ତି ଏବଂ ଏହି ରୂପଚେତନାକୁ ଆଶ୍ରୟକରି ପରବର୍ତ୍ତୀ ଓଡ଼ିଆ କବିତାର ରହସ୍ୟବାଦୀ ଅନୁଚିନ୍ତନ ତାର କାବ୍ୟଭାବନାରେ ଯେ ପ୍ରତିଫଳିତ, ଏହା ସ୍ୱୀକାର୍ଯ୍ୟ । (୧୮)

## ନାରାୟଣମୋହନ ଦେ—

ପ୍ରାକ୍-ସବୁଜ ନାରାୟଣମୋହନ ଦେ'ଙ୍କ କାବ୍ୟ ଭାବନାର ସୌନ୍ଦର୍ଯ୍ୟାଦର୍ଶ ଓ ନିଃସର୍ଗଚିନ୍ତାରେ ପ୍ରକଟିତ ରୋମାଣ୍ଟିକ୍ ଦୃଷ୍ଟିଭଂଗୀଟି ବୈଦିକ ଭାବମାନସ ଓ ପାଶ୍ଚାତ୍ୟ ରୂପାଦର୍ଶ ପ୍ରଣୋଦିତ । ବୈଦିକ ପ୍ରକୃତିର ରୂପକାତ୍ମକତାରେ ମାନବର ଅନ୍ତଃଚେତନାକୁ ରୂପାୟିତ କରିବାର ଏ ଆଧୁନିକ ପ୍ରବଣତା ପୂର୍ବରୁ ବଂଗ କବି ଦ୍ୱିଜେନ୍ଦ୍ରଲାଲ ଓ ଓଡ଼ିଶାର ସଚ୍ଚିଦାନନ୍ଦ ତ୍ରିଭୁବନଦେବଂଙ୍କ ରଚନାରେ ('ବୈଦିକ ପ୍ରକୃତି') ପରିଦୃଷ୍ଟ । ଏହା ସହ ରବୀନ୍ଦ୍ରନାଥଂଙ୍କ ସୌନ୍ଦର୍ଯ୍ୟଦୃଷ୍ଟି ଓ ମଧୁସୂଦନଂଙ୍କ ଅଧ୍ୟାତ୍ମ ଚେତନା ଓ ବୈଷ୍ଣବ ପ୍ରଣୟ-ତତ୍ତ୍ୱ କବିମାନସକୁ ପରିପୁଷ୍ଟ କରିଥିବାର ମନେହୁଏ । କବିଂଙ୍କ ପ୍ରକାଶିତ ଗ୍ରନ୍ଥ 'ଜୟନ୍ତୀ' ଓ 'ବୈଜୟନ୍ତୀ'ରେ କୌଣସିପ୍ରକାର ରହସ୍ୟବାଦୀ ରୂପଚେତନାର ସ୍ପଷ୍ଟ ଉଲ୍ଲେଖ ମିଳେନାହିଁ । ମାତ୍ର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର କେତୋଟି କବିତାରେ ଏ ରୂପାନୁଭୂତି ଲବ୍ଧ । ସେ କବିତାଗୁଡ଼ିକରେ—ଅରୂପପ୍ରଣୟ, ନିଃସର୍ଗ ଉଦ୍‌ବୋଧନା ଓ ବୈଷ୍ଣବ

---

(୧୭) 'କବିତା' ୧ମ ବର୍ଷ—୩ୟ ସଂଖ୍ୟା

(୧୮) କବି ବୈକୁଣ୍ଠନାଥଂଙ୍କ କବିତାରେ ପରେ ଯେଉଁ ଭାବଧାରାର ସଞ୍ଚାର ମିଳେ, ପଦ୍ମଚରଣଙ୍କ ଅନେକ କବିତାରେ ତାହାହିଁ ୧୯୨୦ ପୂର୍ବରୁ ପ୍ରକଟିତ ହୋଇଛି ।"
ଡଃ ନିତ୍ୟାନନ୍ଦ ଶତପଥୀ 'ସବୁଜରୁ ସାଂପ୍ରତିକ' ପୃ.—୯୨

Digitized by PPRACHIN, SOA

ପ୍ରେମଭାବନାର ଚରମାଲେଖ୍ୟ ଭିତରେ ଅଲୌକିକତାର ଅଭିବ୍ୟଂଜନା ସୁସ୍ପଷ୍ଟ । 'ଅରୂପରତନ', 'ବାଙ୍ମୟୀ', 'ଶ୍ରୀ ବୃନ୍ଦାବନେ' ପ୍ରଭୃତି କେତୋଟି କବିତା ରହସ୍ୟବାଦୀ ଭାବନା ପ୍ରେରିତ ବୋଲି ବିଚାର କରାଯାଇପାରେ ।

ଅରୂପରତନ—(୧୯୨୩/ଇ: ସା: ବୈଶାଖ ୧୩୨୯-୩୦) କବିତାରେ ଉପସ୍ଥାପିତ ଅରୂପ-ତତ୍ତ୍ୱର ରହସ୍ୟବାଦୀ ଉପସ୍ଥାପନା ସଂକ୍ଷିପ୍ତ ଯୁଗର ବସ୍ତୁ କବିତାରେ ପ୍ରକାଶ-ରୂପ ନେଇଥିବାର ଦେଖାଯାଏ । ଏହାର ମୂଳ ପ୍ରେରଣା ମଧୁସୂଦନଂକ ରୂପାନ୍ତରର ଅରୂପ ସ୍ୱୀକୃତି ଓ ରବୀନ୍ଦ୍ରନାଥଂକ ରୂପ ଅନ୍ତର-ବର୍ତ୍ତୀ ଅରୂପ-ସନ୍ଧାନ ('ରୂପ ସାଗରରେ ଡୁବ୍ ଦେଇଛି ଅରୂପରତନ ଆଶାକରେ') । ମାତ୍ର ମଧୁସୂଦନଙ୍କ ସ୍ପଷ୍ଟ ଅବଧାରଣା ଓ ରବୀନ୍ଦ୍ରନାଥଂକ ନିର୍ମଳାନୁଭବର ପ୍ରଦର୍ଶନରେ ଏ କାବ୍ୟ-ରୂପ ନିଷ୍ପତ୍ତିଭାବେ ଦରିଦ୍ର ।

କବି ଦେ'ଙ୍କ ଏ 'ଅରୂପରତନ' କବିତାଟି ରବୀନ୍ଦ୍ର କବିତାର ବିଶ୍ଳେଷଣାତ୍ମକ ଉପସ୍ଥାପନା ମନେହୁଏ । ଅରୂପରତ୍ନ ଆଶାରେ କବି ରୂପ-ରତ୍ନାକର ମନ୍ଥି ଛନ୍ତି । କିନ୍ତୁ ଗଭୀର ନିମଜ୍ଜନ ହୋଇପାରି ନାହାନ୍ତି । ଫଳରେ ଅରୂପ ସୌନ୍ଦର୍ଯ୍ୟ ପରିବର୍ତ୍ତେ ବାହ୍ୟ ରୂପାସକ୍ତ ହୋଇପଡ଼ିଛନ୍ତି । ସମ୍ଭାର ଏ ରୂପବିଳାସ ଭିତରେ ରୂପୋତ୍ତରର ସାଧନା ବ୍ୟର୍ଥ ହୋଇଯାଇଛି । ସାଧନାଗତ ଏ ବ୍ୟର୍ଥତାର ଅବାଦ ସାଧନା ପଥର (Purgation) ଆତ୍ମଗ୍ଲାନି, ବିଷାଦବାଦ ଓ ଭବ-ବିରାଗ ସ୍ୱର ଭିତରେ ପ୍ରଗଲ୍‌ଭ ହୋଇପଡ଼ିଛି ।

ଆତ୍ମାନୁଶୀଳନ ଓ ଆତ୍ମଗ୍ଲାନି ତଥା ଆତ୍ମଶକ୍ତି ସମ୍ପର୍କରେ ସଚେତନତାର ଅଭିଜ୍ଞତାକୁ କବି ଚୂଡ଼ାନ୍ତରେ ପ୍ରଦାନ କରିଛଂନ୍ତି । ଏ ରହସ୍ୟବାଦୀ ଉପସ୍ଥାପନା କ୍ରମଶଃ ତାତ୍ତ୍ୱିକତାର ଶରଣାପନ୍ନ ହୋଇଛି । ମାତ୍ର କାବ୍ୟ-ମାଧୁର୍ଯ୍ୟ ହରାଇ ବସିଛି । ଉପଦେଶାତ୍ମକ ଓ ନୀତିଗର୍ଭିତ ଏ ଆଧ୍ୟାତ୍ମିକ ସମାଧାନ କବିଂକ ଆଧ୍ୟାତ୍ମିକ ବ୍ୟାକୁଳତାକୁ ସାବ୍ୟସ୍ତ କରିଛି । ମାତ୍ର ରୂପଗୌରବ ସମ୍ପାଦନକାରୀ ଓ ରସନିଷ୍ପାଦନକାରୀ ସୌନ୍ଦର୍ଯ୍ୟ ରହସ୍ୟକୁ ହରାଇ ବସିଛି । "କିଂତୁ ଯେ ଜନ ବରିଛି ରୂପରାଜ୍ୟ ସୀମା" ବାକ୍ୟବିନ୍ୟାସ ଶାସ୍ତ୍ରନିର୍ଦ୍ଦେଶର ମାର୍ଗସଙ୍କେତ ହୋଇପାରେ, ମାତ୍ର 'ଅରୂପର ଅପରୂପ ରାଜ୍ୟ' ସମ୍ପର୍କରେ କୌଣସି କଳାସୃଷ୍ଟିଗତ କୌତୂହଳ ଜାତ କରିପାରେ ନାହିଁ ।

'ବାଙ୍ମୟୀ' (ଇ: ସା: ୧୯୩୬) ନିଃସର୍ଗ ପ୍ରଣୟର ରୂପକାଦର୍ଶ ପ୍ରତୀକିତ । ପ୍ରକୃତିରେ ପ୍ରେମ ଭାବନାର ରହସ୍ୟାତ୍ମକ ଉପସ୍ଥାପନା ଏହାର ଭାବବୈଚିତ୍ର୍ୟ ସମ୍ପାଦନ କରିଛି । ଏହାର ଅଂତଗୂଢ଼ ସନ୍ଦେଶଟି ହେଉଛି, 'ପ୍ରକୃତି ପ୍ରେମର ସମାଂତରାଳ ପଶ୍ଚାଦ୍‌ଭୂମିରେ ମାନବପ୍ରେମ ଅବସ୍ଥିତ; ମାନବ-ପ୍ରେମ ବିଶ୍ୱପ୍ରେମ ଓ ଅନଂତପ୍ରେମରେ ବିଚ୍ଛୁରିତ । ଅର୍ଥାତ୍ ସମଗ୍ର ସୃଷ୍ଟି ପ୍ରେମର ଏକତାନ ବନ୍ଧନ ।

ଏ କବିତାଟିର ବାତାବରଣରେ ପରିପୂର୍ଣ୍ଣ ରୋମାଂଟିକ ଅଚ୍ଛନ୍ନତା ଅନୁଭବ କରିହୁଏ । ପ୍ରାତଃ-କାଳରେ ସୂର୍ଯ୍ୟ ସମାଗମ, ସରସୀରେ ପଦ୍ମର ବିକାଶ, ସଙ୍ଗ ନବାନୁରାଗ, ମିଳନ ବ୍ୟାକୁଳତା, ପ୍ରତୀକ୍ଷା, ଅଧୀରତା, ବିରହ ଭାବନାର ଚିତ୍ର ଶେଲିଂକ Love's Philosophy ଓ ଗୋପବନ୍ଧୁଂକ 'ବିଶ୍ୱର ମିଳନ ଚିତ୍ର' କବିତାକୁ ସ୍ମରଣ କରାଇଦିଏ । ନିଖିଳ ପ୍ରକୃତିରେ ପ୍ରଣୟର ଉତ୍ସବ । ନିକ୍ଷିପ୍ତ ପ୍ରେମ ଯେପରି ମିଳନ ରାଗିଣୀରେ ବାକ୍-ରୂପା ହୋଇଯାଇଛି । ସ୍ୱୟଂ ପ୍ରକୃତି ପ୍ରେମର ସ୍ପନ୍ଦନ ରୂପାୟନରେ ବାଙ୍ମୟୀ ସାଜିଛି ।

ଆଲୋଚ୍ୟ କବିତାଦ୍ୱୟ ରହସ୍ୟବାଦୀ ତର୍କଣା ଉପରେ ପ୍ରତିଷ୍ଠିତ; ମାତ୍ର ଉପଲବ୍ଧି-ହୀନ କବିଂକ ରହସ୍ୟାନୁଭବର ବିଶୁଦ୍ଧ ଓ ସୁସଂଗତ ଭାବପ୍ରକାଶ ଅପେକ୍ଷା ବରଂ 'ଶ୍ରୀ ବୃନ୍ଦାବନେ' କବିତାଟି ସ୍ୱତଂତ୍ର ଶିଳ୍ପାଭିବ୍ୟକ୍ତିର ଦାବୀରଖେ ।

Digitized by PPRACHIN, SOA

'ଶ୍ରୀ ବୃନ୍ଦାବନେ' (୧୩୩୧ ଶ୍ରାବଣ 'ଉତ୍କଳ ସାହିତ୍ୟ') କବିତାରେ ବୃନ୍ଦାବନ ଧାମକୁ ଆଗମନରେ କବିଂକ ଭାବାଂତର ବର୍ଣିତ । କବିଂକ ଆଧ୍ୟାତ୍ମିକ ପିପାସା ଓ ବୈଷ୍ଣବୋଚିତ ବ୍ୟାକୁଳତାର ଅମୂର୍ତ୍ତ ସଂସ୍ପର୍ଶ ଏ କବିତାର ଅନ୍ତଃରୂପକୁ ଏକ ଗୂଢ଼ ରହସ୍ୟ-ଆଭିମୁଖ୍ୟ ଦାନ କରିଛି ।

"ଅସୀମକୁ ସୀମା ମଧ୍ୟେ ସମ୍ୟକ୍ ପ୍ରକାଶି" ଅନଂତ ଭାବରାଜକୁ ବାଣୀରୂପ ଦେଇ ଅଂତରଂଗଂକ ନିକଟରେ ହୃଦ ଖୋଲିଦେବାର ବ୍ୟାକୁଳତାରୁ ସମୁଚ୍ଛ୍ୱାସିତ ଏ କବିତା । ଏ 'ଅଂତରଂଗ' କବିଂକ ଅଂତର୍ଯାମୀ ଦେବତା ଯାହା ନିକଟରେ ବ୍ୟକ୍ତର କୌଣସି ଭାବ ଆଲୋଡ଼ନ ଅଜ୍ଞାତ ରହିନପାରେ । କାରଣ ସେ ଦେବତାର ବଂଶୀସ୍ୱରରେ ଆକର୍ଷଣର ମୂଳସ୍ୱରଟି ବାଜୁଛି ଏବଂ କବିଚିତ୍ତକୁ ତାହା ବିହ୍ୱଳ କରୁଛି । ଏ 'ବେଣୁ' ଚିରାଚରିତ ବୈଷ୍ଣବ ଚେତନାର ରହସ୍ୟବାଦୀ ଇଂଗିତ ନେଇ ଅସୀମ ଆହ୍ୱାନର ସଂକେତ ରୂପେ କଳ୍ପିତ ।

କବି ସେ ଜୀବନମରଣର ବାଧାଡ଼ିଂକୁ ସବୁ ଅଂତରରେ ଭାବ ହୋଇ ବିହରିବା ଜାଣଂତି । ତାଂକର ଲୀଳାମାଧୁରୀ ହୃଦେ ହୃଦେ ହୃଦ୍‌ଗତ ହୋଇ ବିଶ୍ୱସାରା ପ୍ରବାହିତ । ସେ ମାଧୁରୀ ବ୍ୟକ୍ତ କରିବା ପାଇଁ ସ୍ୱୟଂ ଶାଶ୍ୱତ 'ପ୍ରେମ' ଶ୍ରୀକୃଷ୍ଣ ରୂପ ପରିଗ୍ରହ କରି ବୃଂଦାବନ ଧାମରେ ଆବିର୍ଭୂତ । ଏହା ସ୍ମରଣକରି କବି ଭାବବିହ୍ୱଳିତ । ଭାବ ସରଣିର ଏଇ ପର୍ଯ୍ୟାୟରେ ପାର୍ଥିବ ବୃଂଦାବନ ଓ ବ୍ୟକ୍ତରୂପ ଶ୍ରୀକୃଷ୍ଣ ଭାବୋତ୍ତର ଓ ରୂପୋତ୍ତର ଅଲୌକିକସାମାନ୍ୟତାକୁ ପ୍ରାପ୍ତ ହୁଅଂତି । କବିଂକ ଭାବସତ୍ତା ଯେ ଏ ବେଳରେ କାଳବଂଧନର ସୀମା ଲଂଘନ କରି ବିଗତ ଅତୀତରେ ସମୁପସ୍ଥିତ, ସେ ହୃଃସାରଣର ଅନୁଭୂତିକୁ କବି ସାମାନ୍ୟତଃ ସୂଚିତ କରିଛଂତି, "ସୁଦ୍ଧିବ୍ୟ ଚେତନା ଆସି ଅଭିଭୂତ ହୃଦରେ" (ପଦ ୨୬) । ମାତ୍ର ଏ ଅନୁଭୂତି ଅଚିରାୟୁ । କବିଚେତନା ପରମୁହୂର୍ତ୍ତରେ ଭାବର ଊର୍ଦ୍ଧ୍ୱଲୋକରୁ ଉପସ୍ଥିତ ପାର୍ଥିବତାକୁ ପ୍ରତ୍ୟାବୃତ୍ତ । 'କ୍ଷଣ ପ୍ରଭାସମ' ସେ ଦିବ୍ୟାନୁଭବର ପରଲଗ୍ନଟିରେ ତେଣୁ 'ପୁନଶ୍ଚ ଅନ୍ଧାର'ର ଭୟଂକରତା କବିଂକୁ ପାର୍ଥିବଚେତନାର ତୀବ୍ର ବାସ୍ତବତା ଭିତରେ ଠିଆ କରାଇଦେଇଛି । ଆଲୋକଞ୍ଚଳିତ, ଆନଂଦଚ୍ୟୁତ ଏ ଅନୁଭବର ଭାବବିପର୍ଯ୍ୟୟକାଳୀନ ସ୍ୱାଭାବିକ ସଂଶୟ ଜିଜ୍ଞାସା କ୍ଷଣିକପାଇଁ ହେଲେ ବି ମୁଣ୍ଡ ଟେକେ । (୧୯) ଏ ଭାବ-ଦୋଳନ ସଂପର୍କରେ ପୂର୍ଣ ସଚେତନ କବି ଯେଉଁ ସଂଶୟକୁ ଇଂଗିତ କରିଛଂତି, ତାହା ସବୁଜ ଓ ତାର ସମସାମୟିକ ତଥା ପରବର୍ତ୍ତୀ ବହୁ ରହସ୍ୟବାଦୀ ଅତୀଂଦ୍ରିୟ କାବ୍ୟଜିଜ୍ଞାସାରେ ସ୍ପଷ୍ଟ ରୂପ-ପରିଗ୍ରହ କରିଛି ।

ଏ ସଂଶୟ କବିଂକ କ୍ଷେତ୍ରରେ ବ୍ୟକ୍ତଚେତନାର ପ୍ରତ୍ୟାଶିତ ଭାବସଂଘର୍ଷକୁ ସାମୟିକ ସ୍ପର୍ଶ କରିଛି ମାତ୍ର । କବିଂକର ଏହି ଅନ୍ତ-ସ୍ଥାୟଣ ଚେତନାର ଏକ ନୀରବ ଅଥଚ ବଳିଷ୍ଠ ପ୍ରତ୍ୟୟ ଭିତରୁ ସଂସ୍ଥିତ ହୋଇପାରିଥାଏ ଯାହା ବିଶ୍ୱାସର ଅଗ୍ନ୍ୟୁଜ୍ଜ୍ୱଳତାକୁ ଲଭିକରି ନଥିଲେ ବି ଦୀପଶିଖାର କ୍ଷୀଣ ଆଲୋକରେ ସଂଦୀପିତ ବୋଧହୁଏ । କବିମାନସର ଏଇ ଆଲୋକ ସ୍ନିଗ୍ଧତାକୁ ବ୍ରଜସୁଂଦର ଦାଶ (ମୁକୁର) ଯଥାଯୁକ୍ତ ମଂତବ୍ୟ କରିଥିଲେ, "କବିଂକ ଲେଖାରେ ଆଲୋକ ଅଛି, ତାପ ନାହିଁ । ପ୍ରୀତି ଓ ପ୍ରେମର ଗାମ୍ଭୀର୍ଯ୍ୟ ଅଛି, ଉନ୍ମାଦନା ନାହିଁ·· ସ୍ଥୂଳରେ କହିବାକୁ ଗଲେ କବିଂକ କବିତାବଳୀ ସତ୍ୟଶିବସୁଂଦରଂକ ଉପଯୁକ୍ତ ପୂଜାସମ୍ଭାର ।" (୨୦) ମନେହୁଏ, ଏଇ ଆଲୋକଶିଖାର କ୍ଷୀଣ

---

(୧୯) "କ୍ଷଣେ ଜାଗିଉଠେ ବାଣୀ
ନିଇଗ୍ରାସ୍ୟମୟୀ ନାସ୍ତିକ ବିକାର ।" (ପଦ-୨୮)

(୨୦) ମୁଖବନ୍ଧ 'ଜୟନ୍ତୀ'

Digitized by PPRACHIN, SOA

କଂପନ ହିଁ କବିଂକୁ ମାର୍ଗ ସଙ୍କେତ କରିଛି । 'ଉର୍ମିଳ ମାନସରେ' ଅଭିବ୍ୟକ୍ତିଟି ଏହି ଆଲୋକ-ସ୍ୱୀକୃତ । କବି ଅଂତରସ୍ଥ ଅଂଧକାରକୁ ଅସ୍ୱୀକାର କରିନାହାନ୍ତି । ମାତ୍ର ସମ୍ମୁଖସ୍ଥ ଉଜ୍ଜ୍ୱଳସ୍ୟକୁ ଆଲୋକ ଉଦୟର ସମ୍ଭାବନାହୀନ ମଣିନାହାନ୍ତି । କବି ଦେ'ଙ୍କ ରହସ୍ୟବାଦୀ ଭାବନା ଅଧ୍ୟାତ୍ମିକ ଜିଜ୍ଞାସା ସମ୍ପ୍ରେରିତ ଓ ଆଧ୍ୟାତ୍ମିକ ବ୍ୟାକୁଳତା ତାର ପରବର୍ତ୍ତୀ ସ୍ୱାଭାବିକ ଭାବାନୁସଙ୍ଗ ରୂପେ ଉପଜାତ । ତାଙ୍କ କଳାଶକ୍ତି ସେ ଅନୁଭବ-ମାର୍ମିକତା ଧାରଣରେ ହୁଏତ ସେପରି ସମର୍ଥ ନଥିଲା । ସେ କାବ୍ୟାନୁଭବ ବି ତେଣୁ ଭାବ-ବିଶୃଙ୍ଖ ବା ପ୍ରକାଶ-ଉଜ୍ଜ୍ୱଳ ହୋଇପାରିନାହିଁ ।

ଏ ଅଂତର୍ଗତ ଅରୂପାଭିଳାଷ ଓ ଭାବସଂଘର୍ଷରେ କବି ଆତ୍ମ-ସାଂତ୍ୱନା ଦେଇନ୍ତି, "ଅଛଇ ପରଶମଣି"—(୨୧) ଯାହା ଅଯତ୍ନସ୍ପୃଷ୍ଟ ମଣିପରି ସ୍ୱର୍ଣ୍ଣମାନେ ଲୌହକୁ କାଂଚନ କରିଦେବ, ପାର୍ଥିବ ମଳିନ ସତ୍ତାକୁ ସ୍ୱର୍ଗଦ୍ୱାର ସୁବର୍ଣ୍ଣ ନିର୍ମଳ ସୁନ୍ଦର୍ମିଳ କରିଦେବ । ଏ ରୂପାଂତର ରହସ୍ୟ ରହସ୍ୟବାଦୀ ରସାୟନର (Alchemy) ସମର୍ଥନ ଲାଭକରି 'ଧର ଧୈର୍ଯ୍ୟ ଯେତନରେ ସାଂତ୍ୱନା' (ଜୀବନଚିଂତା)ର ବିପୁଳ ମଧୁସୂଦନୀୟ ଉଦ୍‌ବୋଧନ ଲାଭକରିଛି ।

୧୩୨୨ ମାଘ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ 'ହୃଦୟ ବୃନ୍ଦାବନ' 'ଶ୍ରୀବୃନ୍ଦାବନେ'ର ଉତ୍ତରଣ ଭାବବିନ୍ୟାସ । ସେ ଦୂର ବୃନ୍ଦାବନର 'ମଦନମୋହନ' ଏଇ ଅବକାଶରେ କବିଙ୍କ ମାନସମୋହନ ରୂପେ ଅଭିଳଷିତ । ବୈଷ୍ଣବ ପ୍ରେମର ସ୍ପଷ୍ଟ ଭାବସମର୍ଥନରେ ଏ କବିତାଟି ହୃଦୟ ଓ ବୃନ୍ଦାବନର ଅଭେଦ ରୂପଚିତ୍ର ରଚନା କରିଛି । କବି-ପ୍ରେମିକ ଶ୍ରୀକୃଷ୍ଣଂକ ପ୍ରେମମାଧୁରୀ ଉପଭୋଗ ଅଭିଳାଷୀ ଓ ଲୀଳାରେ ଅଂଶ-ଆକାଙ୍କ୍ଷୀ । କବିଂକ ଭକ୍ତି ପ୍ରେମମୟୀ ରାଧା ସ୍ୱରୂପା, ଲୀଳାକାଳରେ ରାଧାଙ୍କ ଅଭିବ ଦୂର କରିବାକୁ ସମର୍ଥ । ପ୍ରେମ ଆକର୍ଷଣର ପ୍ରତ୍ୟକ୍ଷ ସଂବାଦ କବି ବାଢ଼ିଂଛି, "ଯେବେ ପ୍ରାଣସଖା ସୁରଂଗ ଅଧରେ ବଜାଂଇ ମୋହନ ବଂଶୀ / ମରଣ ପରଶି ସଙ୍ଗୀତେ ମୋ ମନ କଦଂବ ଉଠେ ବିକଶି ।" ପାରଂପରିକ ବୈଷ୍ଣବ ସାଧନାର ମଂଜରୀଭାବ ଓ ରବୀନ୍ଦ୍ର ପ୍ରଣୟର ପ୍ରିୟାଭାବ ଏ ରୂପଚେତନାରେ ସମ୍ମିଳିତ ।

ସାଧାରଣତଃ ବୈଷ୍ଣବକାବ୍ୟରେ ଶ୍ରୀକୃଷ୍ଣ ରସରାଜ ଓ ପ୍ରେମ-ସ୍ୱରୂପ ଥିଲେ ମଧ୍ୟ ଭକ୍ତ-ହୃଦ ଚିଂତାମଣି ରୂପେ ଉପାସିତ ହେଉଥିଲେ କବିଂକଦ୍ୱାରା ରସେଶ୍ୱର ସେତିକି 'ରାଧାବଲ୍ଲଭ' ବା 'ଗୋପୀବଲ୍ଲଭ' ରୂପେହିଁ ସମ୍ବୋଧିତ ହେଉଥିଲେ । କାବ୍ୟସ୍ତରରେ ମଂଜରୀଭାବ ଓ କବିଂକ ତଟସ୍ଥତାର ଅନିବାର୍ଯ୍ୟତା ଏଠାରେ ଲକ୍ଷଣୀୟ । ଆଧୁନିକ କାବ୍ୟଚିନ୍ତାରେ ଏ ଶ୍ରୀକୃଷ୍ଣଂକ ଉପସ୍ଥାପନା ସେହି ରସ ଓ ପ୍ରେମର ଅଖଂଡ ଐକ୍ୟ ମୂର୍ତ୍ତିରେ; ମାତ୍ର ଶ୍ରୀକୃଷ୍ଣ ପୂର୍ବଭଳି ଆଉ କେବଳ ବ୍ରଜ / ବୃଂଦାବନ / ମଥୁରା / ଦ୍ୱାରକା-ବିହାରୀ ନୁହନ୍ତି; ଦ୍ୱାପରଯୁଗୀୟ ନୁହଂତି । ସେ ସୁରାଣ, ସର୍ବକାଳିକ / ତାଂକର ପ୍ରୀତି ଅଭିଳାଷରେ ଆଧୁନିକ କବିର ଆଉ ରାଧା ବୃଂଦାବଣ ସାଜିବା ଅପରିହାର୍ଯ୍ୟ ନୁହେଁ । ଏ ଶ୍ରୀକୃଷ୍ଣ ନାମ ରୂପର ବଂଧନକୁ ଅତିକ୍ରମ କରି ଅନାମ-ଅରୂପ ରସ-ଦେବତା ରୂପେ ଆଧୁନିକ କବିତାର ରହସ୍ୟ-ଭାବନାକୁ ଉଚ୍ଚାଟିତ କରିଛଂତି । ଲକ୍ଷ୍ମୀକାଂତ, କୁଂତଳା, ବୈକୁଂଠନାଥ, ମାନସିଂହ ତଥା ସାଂପ୍ରତିକ ସୀତାକାଂତ, ରମାକାଂତ କାବ୍ୟଭାବନା ଏହାର ପ୍ରମାଣ । ଶ୍ରୀକୃଷ୍ଣଂକୁ ସ୍ଥାନକାଳ ନିର୍ବାଧ ଅରୂପ ଅବ୍ୟକ୍ତ ଭଗବନ୍ତ ତତ୍ତ୍ୱରୂପେ ପ୍ରତିପାଦନ କରିବା ଏ ଯାବତ୍ ବୈଷ୍ଣବ ସାଧନାର ଆଭିମୁଖ୍ୟ ଥିଲା । (ତାହାର କାବ୍ୟଗତ ଗଳଦ୍‌ଘର୍ମିତା ଏହାର ପରିଣାମ) । ସେ ସାଧନାର ଭାବସିଦ୍ଧି ପ୍ରସଙ୍ଗ ଯାହା

(୨୧) 'ସାଂତ୍ୱନା'-ଉତ୍କଳ ସାହିତ୍ୟ ୧୩୨୯ ଶ୍ରାବଣ

Digitized by PPRACHIN, SOA

ହେଉନା କାହିଁକ, ବାତାବରଣରେ ମଧୁସୂଦନ ପରବର୍ତ୍ତୀ ଓଡ଼ିଆ କବିତା ସ୍ୱରରେ ସଂସାଧିତ ହୋଇଯାଇଛି । ଏସବୁ ଅତୀନ୍ଦ୍ରିୟ ମୂଳକ କାବ୍ୟ-ଭାବନାରେ ଶ୍ରୀକୃଷ୍ଣ ସ୍ୱନାମ ଓ ସ୍ୱରୂପରେ ଉଲ୍ଲିଖିତ ରହିଥିଲେ ବି ସ୍ପଷ୍ଟକର ସେ କାଳଗତ ଓ ସ୍ଥାନଗତ ଦୂରତ୍ୱ ଉଲ୍ଲଂଘନକରି ପ୍ରତ୍ୟକ୍ଷ ପ୍ରେମ ସଂପର୍କରେ ଆଧୁନିକ କବିଦ୍ୱାରା ସମ୍ବୋଧିତ । ଏ ଉଦ୍‌ବୋଧନ ପିପାସାଳୁ ବ୍ୟକ୍ତିସତ୍ତାର କୃଷ୍ଣ-ବ୍ୟକ୍ତିତ୍ୱ ସହ ପ୍ରୀତି ଭାବନାତ୍ମକ ଅନୁଚାରଣ । ଏଥିରେ କବି ଆଉ ନିଜକୁ ସେ ଯୁଗର ବୃନ୍ଦାବନେଶ୍ୱରୀ ଶ୍ରୀରାଧା-ଦାସୀ ଏପରିକି ସ୍ୱୟଂ ରାଧା ରୂପରେ ଦେଖିବାକୁ ବି ଉତ୍କଣ୍ଠିତ ନୁହେଁ । ନିଜ ବ୍ୟକ୍ତିତ୍ୱର ନିରୋଳା ପରିଚୟ ସାବ୍ୟସ୍ତ କରି ହିଁ ଅମୂର୍ତ୍ତ ଭାବୋପଲବ୍ଧି ଭିତରେ ସେ ଅଂତରସ୍ଥ ଚିରକାଳର ରାଧା-ରୂପିଣୀ ଆରାଧିକା ସତ୍ତାକୁ ପ୍ରତୀକିତ ଓ ପ୍ରମୂର୍ତ୍ତିତ କରିବାକୁ ଚାହେଁ । ପୂର୍ବରୁ ରାଧାଚେତନା ସହ ଭାବାତ୍ମିକତା ଲୌକିକ ବା ସାମାଜିକ ପ୍ରଣୟ ସ୍ୱରରେ ହିଁ ଏକ ସ୍ୱୀକୃତ ଥିଲା । ତଥାପି ତାହା ଏକାନ୍ତ ପାର୍ଥିବ ପ୍ରେମ ସଂପର୍କ ଆଧାରିତ ଥିଲା ଏବଂ କାବ୍ୟରେ ସେ ସାହସର ଅଭାବ ପ୍ରତିଫଳିତ ହୋଇଥିଲା ବୋଲି ବୋଧହୁଏ ରାଧା-କୃଷ୍ଣ ପ୍ରେମକୁ ଅତୀନ୍ଦ୍ରିୟ ଅପ୍ରାକୃତ ସାବ୍ୟସ୍ତ କରିବାକୁ ଉଦ୍ୟମ ନେଉଥିଲା । ଏ ଆତ୍ମୀକରଣ କିନ୍ତୁ ଏ ଯୁଗର କାବ୍ୟଚେତନାରେ ଅନାୟାସ ଓ ତାତ୍‌କାଳୀନ ରୂପେ ହିଁ ସଂଘଟିତ । କୃଷ୍ଣଙ୍କର ପ୍ରେମଲାଭ ପାଇଁ ରାଧାକୃଷ୍ଣ ପ୍ରେମର ଦିବ୍ୟତ୍ୱ ପ୍ରସଙ୍ଗ ଆଉ କାବ୍ୟତଃ ଅନିବାର୍ଯ୍ୟ ନୁହେଁ । ଏକାକୀ କୃଷ୍ଣ ସେ ଦିବ୍ୟପ୍ରେମର ରସଘନତାରେ ପ୍ରମୂର୍ତ୍ତ । ଏ କୃଷ୍ଣ କେଉଁ କେବଳ ଦେବତାରୂପେ ଭକ୍ତ-ବୈଷ୍ଣବ-କବିର ଗତିମୁକ୍ତିଦାତା ଆରାଧ୍ୟ ନ ହୋଇ (ଯେଉଁ ଆରାଧନା ସଙ୍ଗୀତ ଅନେକଙ୍କ ଗୋପିକା-ଦେହ-ସମ୍ଭୋଗ ଲାଳସୀ ଏକ କାମୁକ ବ୍ୟକ୍ତିତ୍ୱକୁ ଉଦ୍‌ବୋଧିତ କରେ), ଆଧୁନିକ କବିତାରେ ଶାଶ୍ୱତ ପ୍ରେମ ଓ ଆନନ୍ଦର ରହସ୍ୟ ମଧୁରତାରେ ହିଁ ସହଜ ସୁନ୍ଦର ଓ ସ୍ୱଚ୍ଛନ୍ଦ ଅଭିବ୍ୟକ୍ତ ନେଉଛନ୍ତି ।

ପାର୍ଥିବ ସତ୍ତାର ଦିବ୍ୟ ପ୍ରଣୟ ସଂପର୍କ ସୂତ୍ରରେ ରାମ / କୃଷ୍ଣ / ଶିବ ପ୍ରଭୃତି ଅଲୌକିକ ବ୍ୟକ୍ତିତ୍ୱର ଏ ଆଧୁନିକ ଭାବରୂପାନ୍ତର ପାଶ୍ଚାତ୍ୟ-ରହସ୍ୟାତ୍ମକତାର ପ୍ରତ୍ୟକ୍ଷ ସଂପର୍କ ପ୍ରଭାବିତ ବୋଲି ମନେକରାଯାଇପାରେ । ଊନବିଂଶ ଶତାବ୍ଦୀରେ ଖ୍ରୀଷ୍ଟିୟାନ ଏବଂ ବ୍ରାହ୍ମ ଉପାସକମାନଙ୍କର ଭକ୍ତିମୂଳକ ରଚନା ଏବଂ ସଙ୍ଗୀତରେ ଈଶ୍ୱରଙ୍କ ସହ ପ୍ରଣୟ ସଂପର୍କମୂଳକ ଭାବାନୁଭୂତିମାନ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆଧ୍ୟାତ୍ମିକତା ସୂତ୍ରରେ ରହସ୍ୟାତ୍ମକ ଉପାସନା ରୂପୀ ଯୁଗ-ସ୍ୱୀକୃତ ନବ ଦିଗନ୍ତର ପଥ ଉନ୍ମୋଚନ କରିଥିଲା ।* ଖ୍ରୀଷ୍ଟଙ୍କ ସମଭାବନାରେ କୃଷ୍ଣଙ୍କର ଏଇ ରୂପପରିବେଶ ପାରଂପରିକ ରାଗାନୁଗା-ସାଧନାର ସହଜ ସ୍ୱଚ୍ଛନ୍ଦତା ଭିତରୁ ଓଡ଼ିଆ କବିତାର ରହସ୍ୟାତ୍ମିକା ଶୃଙ୍ଗାରିକତାକୁ ଦୃପ୍ତ ଓ ଭାବୋଜ୍ଜ୍ୱଳ କରିଥିବା ବିଚିତ୍ର ନୁହେଁ ।

ମଦନମୋହନ ପଟ୍ଟନାୟକ—

ଆଲୋଚକ ନଟବର ସାମନ୍ତରାୟଙ୍କ ଅଭିମତରେ ମଦନମୋହନଙ୍କ "ଭାବ ଆବେଗ, ସ୍ପଷ୍ଟତା ତଥା ଛନ୍ଦର ସ୍ୱାଧୀନତା ସ୍ୱତଃସ୍ଫୂର୍ତ୍ତ ବିକାଶ ବୈଚିତ୍ର୍ୟ ଆଧୁନିକ ଗୀତି କବିତାରେ ଏକାନ୍ତ ବିସ୍ମୟକର ।" (୨୨)

---

* ଦ୍ରଷ୍ଟବ୍ୟ—'ଆରତି', 'ଉପାସନା', 'ଭାବନା', 'ଅନୁଭବ', 'ଉତ୍ସର୍ଗ', 'ପ୍ରାଣର ବନ୍ଧୁ'—ଇତ୍ୟାଦି ଲେଖକ—ବ୍ରଜାନନ୍ଦ ମହାନ୍ତି । ପ୍ରକାଶନ—ଆଶା ପ୍ରେସ, ବ୍ରହ୍ମପୁର, ଗଂଜାମ ସମୟ—୧୯୩୨—୧୯୩୫

(୨୨) ଓଡ଼ିଆ ସାହିତ୍ୟର ଇତିହାସ—ପୃ. ୩୯୫

Digitized by PPRACHIN, SOA

ଏ କବିତ୍ୱର ସଂବର୍ଦ୍ଧନା କରି ପଲ୍ଲୀକବି ନଂଦକିଶୋର କବିଂକ ଅଗ୍ରଜ ପଦ୍ମଚରଣଂକୁ ଗୋଟିଏ ଚିଠିରେ କବିଂକୁ 'ନବୀନ ତପସ୍ୱୀ' ବୋଲି ବର୍ଣନା କରିଛଂତି । (୨୩) 'ଉଚ୍ଛ୍ୱାସ' କବିତାରେ କବି ନିଜର ପରିଚୟ ବାଢ଼ିଛଂତି, "ନବୀନ ତପସ୍ୱୀ ମୁହିଁ ନବୀନ ସନ୍ନ୍ୟାସୀ ।"

ଏ ତାପସ ଭାବର ଜାଗରଣ, ମୁକ୍ତି ସଂଧାନର ପ୍ରାରଂଭାବସ୍ଥାରେ ପାର୍ଥିବଭାବନା ଏବଂ ପ୍ରବୃତ୍ତି ବାସନା ସଂବଂଧରେ ତାଂକର ସଚେତନତା ଓ ସତ୍ୟାନୁସଂଧାନ ମାର୍ଗରେ ସନ୍ନ୍ୟାସ-ସଂକଳ୍ପର ନିଷ୍ପଟ ଅଭିବ୍ୟକ୍ତି ନିମ୍ନୋକ୍ତ ପଙ୍‌କ୍ତିରୁ ଅନୁସଂଧାନ କରାଯାଇପାରେ ।

"କାମନା ନାଚିଛି ପ୍ରାଣେ ଦଳେ ନାହିଁ ମିଛ
ବାସନା ପୋଷିଛି ମନେ, ଦିଶୁ ଅଛି ସ୍ୱଚ୍ଛ ।
କାମନା ତ କାୟାସ୍ଥାନ, ବାସନା ଅମର
ଧ୍ୟାନେ ରଚିଛି ଲୟ, ପାଳିବି ମୁକର ।" (୨୪)

ଏ ଯାତ୍ରା-ଧ୍ୟାନର ଅବ୍ୟାହତ ଲୟକେଂଦ୍ରିକର ପରିଚୟ ଯେଉଁ ମୋହଚେତନା, 'ଆକାଶବାଣୀ' କବିତାରେ ତାର ସ୍ୱରୂପ ଅନୁସଂଧେୟ । ଶୂନ୍ୟତତ୍ତ୍ୱମୂଳକ ନିରାକାର ଦର୍ଶନର ପଥ୍ୟରୂପ ମନେ-ହେଉଥିବା ଅରୂପ ଭାବଗର୍ଭିତ ଏଇ ରଚନାଟିରେ ବିଶ୍ୱରହସ୍ୟ ମୂଳକେଂଦ୍ରିକ 'ଶବ୍ଦ-ବ୍ରହ୍ମ' ତତ୍ତ୍ୱର ସଂଧାନ କରାଯାଇପାରେ, "ଶୂନ୍ୟେ ଶୂନ୍ୟେ ଅଶରୀରୀ ବାଣୀ ସେ ସଂଚରେ ।" ତଥାପି ଏ ଅଶରୀରୀ ଶୂନ୍ୟତା ଧର୍ମ ସମ୍ପର୍କହୀନ ଓ ବ୍ୟକ୍ତି ସଂପ୍ରଦାୟହୀନ ନୁହେଁ । ମର୍ତ୍ତ୍ୟପ୍ରାଣ ପାଇଁ ତାହା ଶକ୍ତି, ବରାଭୟ ଓ ଅମରତ୍ୱର ଅଭୟବାଣୀ । ଉକ୍ତ ଅଜଣା: ମାତ୍ର ମାନବ ହୃଦୟରେ ସେ ବାଣୀର ସଂଗୀତ ଜୀବନପାଇଁ ନୂତନ ଆଶାର ମଧୁର ଅବକାଶ ସୃଷ୍ଟିକରିଥାଏ । ଏ ଶାସ୍ତ୍ର-ସୁଲଭ ଶୂନ୍ୟବାଦୀ ଉପସ୍ଥାପନା ମୂଳରେ ଆତ୍ମ-ପ୍ରବୋଧନା ଓ ପାରଂପରିକ ବିଶ୍ୱାସବୋଧ ଜଡ଼ିତ । ଏ କବିତାଟି ମେଟାଫିଜିକାଲ ବା ରହସ୍ୟବାଦୀ ଭାବଗୌରବ-ମଂଡ଼ିତ ମଧ୍ୟ ନୁହେଁ । ତେବେ ଅଜ୍ଞେୟ ସହ ମାନବ ପ୍ରାଣର ଏକ ସଂବଂଧ ଯେ ସ୍ୱୀକୃତ ଏବଂ ନିଖିଳ ସୃଷ୍ଟି ବକ୍ଷରେ ମାନବାତ୍ମା ପରିତ୍ୟକ୍ତ ବା ନିଃସହାୟ ନୁହେଁ, ଏ ରହସ୍ୟବାଦୀ ଅଭିବ୍ୟଂଜନାଟି ବହୁ ସୁଦୂର କଳ୍ପନା ଭିତରେ ଆରୋପିତ ହୋଇନି । ମଧୁସୂଦନଂକ ଧ୍ୱନି କବିତାର 'ନାଦ' ଚେତନାର ଭାବସାମ୍ୟ ଏଥିରେ ପରିଲକ୍ଷିତ ।

କବିଂକ 'ବ୍ରହ୍ମବାଦୀର ସ୍ୱପ୍ନ' (୨୪କ) ଏକ ଆଧ୍ୟାତ୍ମିକ ରହସ୍ୟ-ତର୍କଣାମୂଳକ ଅସଫଳ କାବ୍ୟ ପ୍ରୟାସ । ବ୍ରହ୍ମବାଦୀର ସେ ସ୍ୱପ୍ନ ଅନଂତ ସ୍ୱରୂପ ଦର୍ଶନର ଅଭିଳାଷୀ । ମାତ୍ର ତାହାର ଉପସ୍ଥାପନା ବଡ଼ ସ୍ଥୂଳ ଓ ବର୍ଣନାତ୍ମକ । ଅନୁଭୂତିହୀନ ଅପରିପକ୍ୱ ଭାବନାର କ୍ଷୀଣ କାବ୍ୟକଳ୍ପନା ଏ ଅନଂତ-ତତ୍ତ୍ୱ ପ୍ରସଂଗରେ ଯେ ବାକ୍ ବିମୂଢ଼, ସେ ଦୁର୍ବଳତାର ଚିହ୍ନ କବିତାର ଛତ୍ରେ ଛତ୍ରେ ବିଦ୍ୟମାନ । ରହସ୍ୟବାଦୀ ପରିକଳ୍ପନାରେ ଶାଂତ ସୃଷ୍ଟିବକ୍ଷରେ ଯେ ଅନଂତ ଅରୂପର ରୂପବିଳାସ, ତାହାହିଁ ଏଠାରେ କାବ୍ୟରୂପ ନେଇଛି । 'ବ୍ରହ୍ମବାଦୀର ସ୍ୱପ୍ନ' ନାମକରଣରେ ସେ ଅନଂତ ସ୍ୱପ୍ନ ଦେଖିବାର ସାର୍ବଜନୀନ ପ୍ରବୃତ୍ତି ତତ୍ତ୍ୱତଃ ସ୍ୱୀକୃତ । ପରୋକ୍ଷରେ କହିଲେ, ସାଂତ ଅନୁଭବରେ ନିଷ୍ଠିକର ଅନଂତଂକୁ ଲାଭ କରିବାର ଏ ସ୍ୱପ୍ନ ପ୍ରତ୍ୟେକ ମାନବାତ୍ମାର ଆଜନ୍ମ ସହଚର ।

---

(୨୩) ଆଧୁନିକ ଓଡ଼ିଆ କାବ୍ୟଧାରା (ନବଜାଗରଣ ଯୁଗ) (ନରେନ୍ଦ୍ରନାଥ ମିଶ୍ର)—ପୃ. ୩୩୩
(୨୪) ମୁକୁର ୮ମ ଭାଗ ୧୦/୧୧ ସଂଖ୍ୟା ।
(୨୪କ) ଉତ୍କଳ ସାହିତ୍ୟ—ଜ୍ୟେଷ୍ଠ ୧୩୨୧—୨ୟ ସଂଖ୍ୟା— ୧୮ଶ ଭାଗ ।

Digitized by PPRACHIN, SOA

ଏ ଦୃଷ୍ଟିରୁ 'ପଗ୍ରଣଦେବତା' କବିତାଟି ଏକ ସାର୍ଥକ ରୂପ ଆସ୍ୱାସ । 'ନବୀନ ତାପସ'ଙ୍କ ଅଧ୍ୟାତ୍ମ ଆକୁଳତା ଯେଉଁ ହୃଦୟକୁ ଦିନେ ଅସୀମ-ଉଚ୍ଚକିତ କରିଥିଲା, ସେଠାରେ ପୁଣି ପାର୍ଥିକ ବିଳାସ ବିଭ୍ରମ କାହିଁକି ? "ଅମୃତବର୍ଷିଣୀ ଅଶରୀରୀ ବାଣୀ ବାଜିଥିଲା ଦିନେ ପ୍ରାଣେ"—କବିଙ୍କ ଅପାର୍ଥିବ ଉତ୍କଣ୍ଠାର ସଂବାଦଟି ଏଥିରେ ପ୍ରତିଫଳିତ; ମାତ୍ର ସାଧନାପଥ ବିଡ଼ମ୍ବିତ, କେଉଁ ମାୟା କୁହୁକିନୀ ଅଳ ଜୀବନରେ ଲୀଳାମୟୀ ସାଜିଛି । ଦିନେ କବି ସ୍ୱର୍ଗଗଂଗାର କଲତାନରେ ମୁଗ୍ଧ ହୋଇଥିଲେ, ଆଜି କର୍ମନାଶା ନଦୀତୀରରେ କ୍ଷୁବ୍ଧ ପ୍ରାଣ ନେଇ ସମାଗତ ।

କବି କାଂତୁ ଦୈବତର ଦୀକ୍ଷା ଲାଭ କରିଛଂତି । ନିଜକୁ ଶାଶ୍ୱତ ନିଳୟବାସୀ ଜାଣଂତି । ତାଂକ ଜଡ଼ ଜୀବନ ସେଇ ଦୀକ୍ଷାମାର୍ଗରେ ଗତିକଲେ ତୁଳସୀଦଳରେ ମଂଜରିତ ହୋଇଉଠିବ, ସେତିକି ଅନୁଯୋଗ କବିଂକର ଜୀବନ ଦେବତାଂକଠାରେ । ଏ କବିତାଟିରେ ଦର୍ଶନ ବା ଭକ୍ତିଭାବନା ବା ନାମଗୁଣଗାନ ନାହିଁ । ମାତ୍ର ଅନଂତ-ଅଭିଳାଷ ଓ ଆତ୍ମନିବେଦନର ଆକୁଳତାରେ ଏହାର ସ୍ୱର ମାର୍ମିକ । ତଥାପି ଲକ୍ଷ୍ୟ କରାଯାଇପାରେ ଏଥିରେ ଆବେଗ ବିହ୍ୱଳତା ଯେତେ ଅନୁଭବ ସେତେ ଗଭୀର ନୁହେଁ । ଭାବାପ୍ଲୁତ ବେଦନାତୁରତା ରହିଛି । ନବପ୍ରେମ ଓ ନବବିରହ ସୁଲଭ ଖେଦର ଅଶ୍ରୁ ଆକ୍ଷେପ ରହିଛି । ଏ ଭାବ ଉତ୍ତରକାଳରେ ପରେ ସବୁଜ ଓ ସବୁଜୋତ୍ତର ରହସ୍ୟବାଦୀ କାବ୍ୟ ସ୍ୱରରେ ଅଧିକାଧିକ ପ୍ରକାଶିତ ହୋଇଥିବାର ଲକ୍ଷ୍ୟ କରାଯାଇପାରେ ।

୧୯୩୫ ସାଲ ୧୨ ସଂଖ୍ୟା ମୁକୁରରେ ପ୍ରକାଶିତ 'ତୁମେ' କବିତାଟି ଈଶ୍ୱରଂକ ସର୍ବବ୍ୟାପ୍ତିତ୍ୱ ଓ ନିଃସର୍ଗବାଦୀ ରହସ୍ୟଚେତନା ରୂପ ଲାଭ କରିଛି । ୧୩୩୬ ସାଲ ୯ମ ସଂଖ୍ୟାରେ 'କିଏ ତୁମେ'ରେ ଏହାର ଭାବବିସ୍ତାର ଲକ୍ଷଣୀୟ । ଦ୍ୱୈତ ଓ ବିପକ୍ଷର ସ୍ଥିତିରେ ମଧ୍ୟ ସେଇ (ବିଭକ୍ତୋନ୍ମୁ ଅବିଭକ୍ତଂ) ଅବିଭାଜ୍ୟ ଏକ ବର୍ତ୍ତିମାନ—ଏ ସମନ୍ୱୟବାଦୀ ଭେଦଚେତନା କବିଂକ ରହସ୍ୟବାଦୀ ଉପସ୍ଥାପନାକୁ ତୀକ୍ଷ୍ଣ ରୂପ ଦେଇଛି । ମଧୁସୂଦନୀୟ ସ୍ୱରରେ—"କିଏ ତୁମ୍ଭେ ଆଲୋକ ଅଂଧାର" ପୁଣି "କେତେଦୂରେ ମୁକ୍ତ ପାରିବାର ?"— ଯାହାପାଇଁ ତାଂକର କ୍ଷୁଦ୍ର ଜୀବନ ଅବିଶ୍ରାଂତ ଉଦ୍‌ବେଗରେ ଧାଇଁଚାଲିଛି ।

### ଚନ୍ଦ୍ରଶେଖର ମିଶ୍ର—

କବି ପଦ୍ମଚରଣଂକ 'ନିଷ୍ଠାପର ଆଧ୍ୟାତ୍ମିକତା'-ଅହ୍ୱାନର ଉତ୍ତରସ୍ୱରୂପ ଯେପରିକି ଛଳନାହୀନ ଅଧ୍ୟାତ୍ମ ଅନୁଭବ, ବିଭୁପ୍ରାଣତା ଓ ଶ୍ରଦ୍ଧାନୁରାଗର ମାର୍ମିକ ଉଚ୍ଚାରଣ ଚଂଦ୍ରଶେଖରଂକ କବିତାରେ ରୂପାୟିତ ହୋଇଛି । ନିର୍ମଳ ଅନୁଭବ ଓ ଆନ୍ତରିକ ଭାବପ୍ରକାଶରେ ଏ କବିତାମାନଂକର ରହସ୍ୟବାଦୀ ସ୍ୱୀକୃତି ଅନସ୍ୱୀକାର୍ଯ୍ୟ । ଯୁଗ କବିତାର ସ୍ୱରରେ ପ୍ରକାଶିତ ସମସ୍ତ ଚେତନା ଓ ଆଧିଭୌତିକ ତର୍କଣାମୁକ୍ତ ଏ କବିତାଗୁଡ଼ିକରେ ଦାର୍ଶନିକ ମନନଶୀ ଜମ୍ମା ପ୍ରଣୟ ନିବେଦନ ଲଘୁ ଚପଳତା ପରିବର୍ତ୍ତେ ଆତ୍ମାର ପ୍ରତ୍ୟକ୍ଷାନୁଭବ ଓ ସାଧନାସ୍ୱରୂପ ଅଭିବ୍ୟକ୍ତ, ଯଦିଓ ରସ-ସଫଳତାର ବିଗୃର ପ୍ରସଙ୍ଗରେ ଏଗୁଡ଼ିକ ସଂତୋଷଜନକ ନୁହଂନ୍ତି ।

ଆଧୁନିକ କବିତାର ଦେବାଳୟ, ପଥିକ, ଅତିଥି, ସମୁଦ୍ର, ଦୀପାଳୋକ, ଶିଶିଶିଖ, ରାତି ପ୍ରଭୃତି ଆଧ୍ୟାତ୍ମିକ ସଙ୍କେତ ଓ ରହସ୍ୟବାଦୀ ପ୍ରତୀକମାନ ତାଙ୍କ ରଚନାରେ ସଚେତନଭାବେ ଚରିତାର୍ଥ ଅର୍ଥବୋଧରେ ପ୍ରଯୁକ୍ତ ହୋଇଛଂତି । କବିଂକ ଅଦ୍ୟ ଅଧ୍ୟାତ୍ମ ଜାଗରଣମୂଳକ ଚେତନା ସମ୍ବାଦ ପାଇଁ ଭ୍ରମ କବିତାଟି ବିଗୃରସାପେକ୍ଷ । (୨୫) କ୍ଷେତ୍ରୁତତ୍ତ୍ୱ ଉପରେ ଆଧାରିତ ଏ କବିତାଟି

(୨୫) ଉତ୍କଳସାହିତ୍ୟ—୨୮ଶ ଭାଗ, ୧୨ଶ ସଂଖ୍ୟା—୧୩୩୭ ସାଲ ।

Digitized by PPRACHIN, SOA

ଏକାଧାରରେ ଆଲୋକ ସଙ୍କେତବାହୀ ଉନ୍ମେଷ ପର୍ବ ଓ ଆତ୍ମକର୍ଷଣ ପର୍ବର ଅଂଧାର ସଂବାଦ । ଜୀବନର ଦୁର୍ବିପାକ ପାଇଁ ମଣିଷ ଦେବତାଙ୍କୁ ଦାୟୀକରେ । ଏହାହିଁ ତାର ଭ୍ରମ । କବିଙ୍କ ଉପଲବ୍ଧିର ଏକ ସୁଂଦର ବୁଝାମଣାରେ ତେଣୁ, "ସବୁ ଦୋଷ ମୋର ଜାଣେ ।"

"ତୁ ମର ବର୍ମଲାଲୋକ ପୂବକ ଅଂଧାରେ," ରହସ୍ୟାନୁଭବର ସେଇ ବିଷମ ସ୍ଥିତିକୁ ବୁଝାଏ, ଯେଉଁଠି ବ୍ୟକ୍ତି ଦିବ୍ୟାଲୋକ ଉଦଭାସନକୁ ଯେତିକି ଦେଖେ, ଅଂଧକାର ସଂପର୍କରେ ସେତିକି ସଚେତନ ହୋଇଯାଏ ଯେ ସେ ନିଜେ ଅଂଧାର ରାଜ୍ୟବାସୀ । ପୂର୍ବରୁ ତ ଅଂଧାର ହେତୁ ଦୃଷ୍ଟିଶକ୍ତି କ୍ରିୟାହୀନ ଥିଲା, ଅଚେତନ ନିଦ୍ରା ମଧ୍ୟ ଘାରିଥିଲା, "ଯାଇଥିଲା ନେତ୍ର ଫୁଟି, ଯାଇଥିଲା ଚେତା ତୁଟି," ଏ ବର୍ଣ୍ଣନା ତାଙ୍କର ତମସାଚ୍ଛନ୍ନତାକୁ, ଉନ୍ମେଷ ପୂର୍ବ ଅଜ୍ଞାନଚେତନାକୁ ଇଂଗିତ କରୁଛି । ଏବେ ଊର୍ଦ୍ଧ୍ୱସ୍ଥ ଆଲୋକର ସଙ୍କେତ ସ୍ପଷ୍ଟ ହୋଇ ଉଠିଛି । ଯଦିଓ ନିମ୍ନ ଚେତନା ସେ ଆଲୋକର ବିମ୍ବ ଗ୍ରହଣପାଇଁ ସମର୍ଥ ହୋଇପାରି ନାହିଁ । ସେ ଏବେବି ତମିର ବିଜଡ଼ିତ ଏବଂ ଏ ତମିସ୍ରାଚ୍ଛନ୍ନତା ବିଷୟରେ ପୂର୍ଣ୍ଣ ସଚେତ । କବିଙ୍କ ଆଲୋକ ଚେତନାର କ୍ରମ ଉତ୍ତରଣ ରୂପ 'ଲୋକକ ତର୍ପଣ', 'ଜୀବନ କି ବ୍ୟର୍ଥ', 'ନବଜ୍ୟୋତି' ପ୍ରଭୃତି ପରବର୍ତ୍ତୀ କବିତାରେ ଅନୁଶୀଳିତ ।

କବି ସଂକୁଚିତ, 'ପ୍ରିୟ ସୁମଧୁର ହାସ୍ୟଛଟା'ରେ ବୁଡ଼ି ରହିଥିଲେ ବି, କର୍ଦ୍ଦମଗଢ଼ା ତନୁ ଦେଇ ଗିରି ଚୂଡ଼ା ଆରୋହଣର କପରି ଯୋଗ୍ୟହେବେ । ବ୍ୟଥାର ଅଶ୍ରୁ-ଧୌତ ଅପାର ବେଦନାରାଶିର ସଂବଳ ସେ ଦୂର ଦେଶରେ ପହଞ୍ଚିପାରିବେ ତ ? ରାତିର ନୀରବ ଅଂଧାରରେ ପ୍ରାଣରେ ବ୍ୟଥାର ଗାନ ବାଜିଉଠିଲେ ତାହା ସେ ଦୂର ଦେବତାଂକ ହୃଦୟକୁ ଛୁଇଁବ ତ ? ଏସବୁ ପ୍ରଶ୍ନ ଶଂକା ଭିତରେ ପ୍ରୀତିର ସହଜାତ ମଧୁର ସୁଖ ଆଶାଟି ମଧ୍ୟ ସଂଗୋପିତ ।

ରହସ୍ୟବାଦୀ ଭାବସଂପର୍କର ଆଶାନିରାଶା ଘଟିତ ଏ ଉତ୍ଥାନ-ପତନ, ହର୍ଷ-ବିଷାଦ ପ୍ରଭୃତି ଭାବାନୁଭୂତିର ଏକ ମନୋଜ୍ଞ ଚିତ୍ର କବି ବାଢ଼ିଛଂତି । ଜୀବନର ଦୁର୍ଦ୍ଦିନରେ ସେ ମୋହନ ରୂପ ସହ ଯେ ଆଦ୍ୟ ସାକ୍ଷାତ୍କାର ହୋଇଥିଲା ସେହି ମନଲୋଭା ପ୍ରତିମାର ଆକର୍ଷଣରେ ଧାଇଁଯାଇ କବି କଚ୍ଚଡ଼ି ପଡ଼ିଲେ । ସାଧନାର ଏ ଗୂଢ଼ ରହସ୍ୟଟି ଅନୁଭୂତିରୁ ଯେଉଁ ଉପଲବ୍ଧି ମାଗିଛି, ତାହା ହେଉଛି—ମର୍ତ୍ତ ଦେହ ଧରି ପ୍ରାଣରେ ଅମର୍ତ୍ତ-ସାରକୁ ଲାଭ କରିବାର କାମନା କେବଳ ଯଥେଷ୍ଟ ନୁହେଁ, ସାଧନା ବି ପ୍ରୟୋଜନ । ଅଧିକାର ଯୋଗ୍ୟ ହେବା ପୂର୍ବରୁ ଅଧିକାର ଭୋଗର ମର୍ଯ୍ୟାଦା ଓ ମାଧୁର୍ଯ୍ୟ ନଷ୍ଟ କରିବାକୁ କବି ସଂକୁଚିତ । ତାଂକର ଅସମର୍ଥ ଅଥଚ ଅନୁଭୂତି-ବିଶ୍ୱସ୍ତ ପ୍ରୀତି ତେଣୁ ଅନୁଯୋଗ କରିଛି. ପ୍ରିୟ ଦୂରରେ ଥାନ୍ତୁ, କବି କେବଳ ନିର୍ମଳ ଅଶ୍ରୁ ଓ ଭକ୍ତିପୁଷ୍ପର ଆରାଧନା ଭାଗ୍ୟ ଟିକକ ଲାଭକରନ୍ତୁ । କେବେହେଲେ ବି ଆଲୋକ-ଆଶିଷ ଓ ପ୍ରିୟସାନ୍ନିଧ ଲାଭ କରିବାର ସୁଦିନ ଆସିବ, ସେ ବିଶ୍ୱାସ କବି ପ୍ରାଣରେ ଦୁର୍ବାର । (୨୭)

କବିଙ୍କର ବିଶ୍ୱାସର ଦୁର୍ଗ ଅଟଳ । ଆଲୋକ-ପ୍ରତ୍ୟୟ ଦୁର୍ନିବାର । ପ୍ରଥମରୁ କବି ନିଷ୍ଟିତ, ସେ ଆଲୋକ ବିଭବ, ସେ ସୁକଲ୍ୟାଣ ଲାଭକରି ଜୀବନର ଅଂତିମରେ ସଫଳତାକୁ ନିଶ୍ଚୟ

(୨୭) "ସେ ଅଂଧାରେ ଧର ତୁମେ ମୋ ଲାଗି ପ୍ରଦୀପ/ପଳାଇବ ଧରା ତେଜି ତୁମର ସମୀପ ।
ବ୍ୟଥାର ବଂଧନେ ମୋର ପୋଡ଼ଇ ହୃଦୟ/ରଖିଥାଅ ପ୍ରାଣେ ମୋର ଚିର ଦୟାମୟ ।
ତୁମ ପ୍ରେମାଲୋକେ ମୋର ବରଷି ପରାଣ/ହସିଲେ ହସିବ ଜନେ ନିରାଶରେ ଜାଣ ।
ସେଦିନ ମିଳନ ପଥେ ମୁଠାଏ ଭୟ ଭୁଲି'ତର ସୁଖମୟ ଗୃହେ ପଶିବି ମୁଁ ଠେଲି ।"
'ଲୋକକ ବର୍ଷଣ'-ଉତ୍କଳ ସାହିତ୍ୟ ୩୬ଶ ଭାଗ, ୪ର୍ଥ ସଂଖ୍ୟା

Digitized by PPRACHIN, SOA

ଭେଟିବେ । (୬୭) 'ବ୍ୟାକୁଳ ପ୍ରତୀକ୍ଷା' କବିତାରେ ମଧ୍ଯ ଦୂରପାରିବାର ସୀମାରେଖା ନିକଟରେ ନିବିଡ଼ ଅଂଧାର ଗିରିରେ ଏକ ଦୀପାଲୋକର ସଂକେତ ରହିଛି ଯାହା କବିଙ୍କ ପାଇଁ 'କ୍ଷଣେ ଜଳେ, କ୍ଷଣେ ନିଭେ' । ଏ ଆଲୋକ ବ୍ୟାକୁଳତା 'ସୂଚୀଭେଦ୍ୟ' କବିତାରେ ଅଭିବ୍ୟକ୍ତ । ସ୍ୱଳ୍ପରେ ଚକ୍ଷୁ ଫୁଟାଇ ଅଂଧାର ଭିତରେ ଆଲୋକ ରହସ୍ୟ ସନ୍ଧାନ କରିବାର କଥା ସୁରଦାସଙ୍କ (ବିଲ୍ୱମଂଗଳ) ସାଧନା କାହାଣୀକୁ ସ୍ମରଣ କରାଇଦିଏ । *

ଏ ଆଲୋକ ଚେତନା କବିଙ୍କ ପ୍ରାଣୋପଲବ୍ଧିର ଗମ୍ଭୀରତାରେ ଯେ ସନ୍ନିହିତ, ତାର ଏକ ସ୍ପଷ୍ଟ ସ୍ୱୀକାରୋକ୍ତି ପରବର୍ତ୍ତୀ ଜୀବନର କାବ୍ୟସଂବାଦରେ ପ୍ରଦତ୍ତ । 'ନବଜ୍ୟୋତି' (ଉ: ସା: ଚୈତ୍ର ୧୩୪୭ ସାଲ)ରେ କବି ଲେଖିଛନ୍ତି—

"ଅନନ୍ତ ଆଲୋକ ଏକ ପ୍ରଭୁ ଅନୁଗ୍ରହେ/ବିରାଜେ ହୃଦୟେ ମୋର ନବୀନ ବିଗ୍ରହେ ।
ସେତେବେଳେ କାତରେ ମୋ ପରାଣର ଘରେ / ଜଳିଲା ଆଲୋକ ଏକ ବାଧାତାଂକ ବରେ ।
କି ସୁଂଦର କେତେ ସ୍ୱଚ୍ଛ ସ୍ୱର୍ଗୀୟ ଆଲୋକ / ସବଳକରି ମୁଁ ତାକୁ ଦୂର କଲି ଶୋକ ।"

ଜୀବନ ଯଂତ୍ରଣା ଭିତରେ ଦିବ୍ୟକୃପା, ଆଲୋକ ସଂବାଦ, ସ୍ୱର୍ଗ-ସଂକେତ ଓ ବିଭୁ ଆଶ୍ୱାସନାର ଉପଲବ୍ଧି-ତଟଟିରେ ରହସ୍ୟବାଦୀ ରୂପ-ଉଦ୍‌ବୋଧନ ସଂଦୀପ୍ତ ହୋଇପାରେ । ଏ ବିଶ୍ୱାସ, ନିଷ୍ଠା ଓ ପ୍ରତ୍ୟୟ ଦୃଢ଼ତା ବଳରେ ହିଁ ତାଙ୍କ କାବ୍ୟୋପଲବ୍ଧିରେ ଆଲୋକ ଗାନ ଏତେ ପ୍ରତ୍ୟକ୍ଷ ହୋଇପାରିଛି । ସେ ଆଲୋକ କେତେବେଳେ କ୍ଷୀଣ, କେତେବେଳେ ବା ବିପୁଳ । 'ନବ ଜ୍ୟୋତି'ରେ ସଂକେତିତ କୃପାତତ୍ତ୍ୱ, ଆଲୋକ ଅନୁଭବ, ସୌଂଦର୍ଯ୍ୟ ଓ ଶାନ୍ତିର ଉପଲବ୍ଧିରେ ଚେତନାର ନବଲବ୍ଧ ସାମର୍ଥ୍ୟ ଉଦ୍‌ଘୋଷିତ ।

୧୩୪୮ ସାଲ ମାର୍ଗଶିର, ଉତ୍କଳ ସାହିତ୍ୟରେ ପ୍ରକାଶିତ 'ଅର୍ଚ୍ଚନା'ରେ ଏକ ରହସ୍ୟମୟ ଅତିଥିଙ୍କ ଶୁଭାଗମନର ସଂବାଦ ଗାନ କରିଛି । ଅଥଚ ସଂକେତିତ ଯେ, ରାତି ପାହିନାହିଁ । ଅଂଧାର ସରିନାହିଁ । ପାହାଂତି ପକ୍ଷୀର ଗୀତ ଶୁଭିନାହିଁ । ଏ ବର୍ଣ୍ଣନାର ରହସ୍ୟବାଦୀ ତାତ୍ପର୍ଯ୍ୟଟି ହେଉଛି କବିଙ୍କ ଚେତନାବଳୟରୁ ଅଂଧାରର ଅପସାରଣ ସଂପୂର୍ଣ୍ଣ ହୋଇନାହିଁ । ପ୍ରତୀକ୍ଷା-ବ୍ୟାକୁଳ, ବିରହ-କରୁଣ, ନୀରବମଂଡଳରେ ଏ ଅତର୍କିତ ଦେବାବିର୍ଭାବ ତେଣୁ ଏତେ କୋଳାହଳମୟ । ଶଂଖଧ୍ୱନି ଭିତରେ ହୃଦୟ ବାଣୀହୀନ ହୋଇପଡ଼ୁଛି । ଲାଂଛନାର ଅଭିମାନ ନେଇ ଦୀନକବି ଏଇ ଅଯାଚିତ ଅନୁଗ୍ରହକୁ ହାତପାତି ନେବାପାଇଁ ଭରସି ପାରୁନାହାଂତି । ଶତକଳ୍ପ ତପସ୍ୟାର ଫଳ ସମ୍ମୁଖରେ ଆବିର୍ଭୂତ, ମାତ୍ର ନିଜକୁ ସେ ତପସିଦ୍ଧ ମଣଂତି ନାହିଁ । ଏଇ ଅଭାବନୀୟ ମୁହୂର୍ତ୍ତଟିରେ ପ୍ରାପ୍ତି ଘଟିତ ଅପ୍ରତ୍ୟୟ ନାହିଁ । କେବଳ ଚିତ୍ତରେ ସଂଶୟ, ଏ ପ୍ରାପ୍ତି ହୁଏତ ଚିରନ୍ତନ ହେବନାହିଁ । ଏ ଚିତ୍ତସଂଶୟ ରହସ୍ୟାନୁଭୂତିରେ ନିତାଂତ ସ୍ୱାଭାବିକ ରୂପେ ଉପଜାତ । ହୃଦୟର ରତ୍ନସିଂହାସନ ତଳେ ପ୍ରାଣର ଏ ଚିର ପୂଜା ଆୟୋଜନ ଲାଗି ରହିଥିବ ତ ? ଜୀବନର ଧ୍ରୁବ-ବ୍ରତ-ଯୋଗ ଅବ୍ୟାହତ

---

(୬୭) "ସେ ଆଲୋକ, ସେ ବିଭବ, ପାଇ ସେ କଲ୍ୟାଣ
ସଫଳ ଜୀବନ ସିନା ବ୍ୟର୍ଥ ନୁହେଁ ଜାଣ ।"
'ଜୀବନ କି ବ୍ୟର୍ଥ-ଉ:ସା: ୩ୟ ସଂଖ୍ୟା ୪୧ ଭାଗ, ଜୁନ୍ ୧୯୩୭

* ତୁଳନୀୟ "ଆଖିର ସହିତେ ଆଖିର ପିପାସା ଲୋପ କରେ ଏକେବାରେ ।"
ରବୀନ୍ଦ୍ରନାଥ—'ସୁରଦାସେର ପ୍ରାର୍ଥନା'—ସଂଚୟିତା ପୃ. ୮୮

Digitized by PPRACHIN, SOA

ରହିଥିବ ତ ? କବି ପରମ ପ୍ରେମକୁ ସମ୍ମୁଖରେ ଦେଖି ଏ ଅଭାବିତ ମୁହୂର୍ତ୍ତର ବାସ୍ତବତାକୁ ସହଜେ ସ୍ୱୀକାର କରିପାରୁନାହାନ୍ତି । "ପାହୁଛି କି ବ୍ୟଥାର ରଜନୀ / ନୋହୁଛି ପ୍ରଭାତ ମୋର ।" ବିସ୍ମିତ ଅମା ରଜନୀ ପରେ ଏ ନିମେଷ କିରଣ ! ତଥାପି କବି ବ୍ୟାକୁଳ, କ୍ଷଣଲଗ୍ନର ହେଉପଛେ, ଏ ଉଦୟ ମୁହୂର୍ତ୍ତର ସେ ସ୍ୱାଗତ ରଚିବେ । ଦୈବତ-ପ୍ରସାଦ ଅଳ୍ପରେ ବି ମୂଲ୍ୟବିପୁଳ । କବି ସେ ପ୍ରସାଦ ରତ୍ନକୁ କ୍ଷଣେହେଲେ ବକ୍ଷରେ ଧାରଣ କରିବେ । ଦେବତାଙ୍କୁ ଅଶ୍ରୁ-ଅଭିଷେକ କରାଇ ପ୍ରେମସ୍ପର୍ଶ ଦେବେ । ଏ କ୍ଷଣ ପ୍ରଭାତର ଲଗ୍ନ ସେହି ପାହାନ୍ତ-ଅତିଥିଙ୍କ ସ୍ୱାଗତ ରଚନାରେ ସାର୍ଥକ ହେବ ।

ଚେତନାର ଉତ୍ତରଣ ଓ ପ୍ରାପ୍ତି ଅନୁଭବର ସଂବାଦରୂପେ କବି ମାନସର ଗତି ନିରୀକ୍ଷଣପାଇଁ ଏ କବିତାଟି ବଡ଼ ମୂଲ୍ୟବାନ ମନେହୁଏ । ଆନନ୍ଦ ଓ ବିଷାଦ ମିଶ୍ରିତ ଏ ଅନ୍ତର୍ଗତ ଭାବ-ଉପଲବ୍ଧି ରହସ୍ୟ-ସାଧନାର ପଥ ନିର୍ଦ୍ଦିଷ୍ଟ କରିବାରେ ଯଥୋଚିତ ଦିଗ୍-ସଙ୍କେତ ରୂପେ ଆବିର୍ଭୂତ ।

କବିଙ୍କ ରହସ୍ୟବାଦୀ ଭାବନାର ଆଉ ଏକ ସୁନ୍ଦର ଅଭିବ୍ୟକ୍ତି 'ରୂପଦେବତା' । (ନବଭାରତ ୧୩୫୪ ସାଲ) । ରୂପ ଓ ଅରୂପର ଦ୍ୱନ୍ଦ୍ୱ ମିଷ୍ଟିକ୍-ଭାବନାରେ ସେ ଏତେ ଗୁରୁତ୍ୱ ଲାଭ କରିଛି, ତାର କାରଣ ମିଷ୍ଟିକ୍ କେବଳ ଦର୍ଶନର ଅରୂପ-ତତ୍ତ୍ୱରେ ସନ୍ତୁଷ୍ଟ ନ ହୋଇ ରୂପ ଭିତରେ ରୂପାତୀତକୁ ସନ୍ଧାନ କରିଥାଏ । ଅଥଚ କେବଳ ରୂପକୁ ମଧ୍ୟ ସେ ଜଡ଼ବାଦୀର ପୂର୍ଣ୍ଣାଙ୍ଗଳି ଅର୍ପଣ କରିପାରେ ନାହିଁ । ତା ପାଇଁ ରୂପର ସାର୍ଥକତା ଅରୂପର ସନ୍ଧାନରେ; ଅରୂପର ସ୍ୱୀକୃତି ରୂପର ଅଭିନନ୍ଦନରେ । ମିଷ୍ଟିକ ଅରୂପକୁ ତତ୍ତ୍ୱତଃ ଗ୍ରହଣକରେ, ମାତ୍ର ରୂପର ପ୍ରତ୍ୟକ୍ଷତାରେ ଅରୂପକୁ ଲାଭ ନ କରିବା ପର୍ଯ୍ୟନ୍ତ ସେ କେବଳ ପ୍ରତୀକ୍ଷା ଓ ଅନ୍ୱେଷଣର ଅଳସଗାନ କରୁଥିବ ସିନା, ଯାତ୍ରା ସମାପ୍ତି ବା ପୂର୍ଣ୍ଣସ୍ୱୀକୃତିର ସ୍ୱସ୍ତ୍ୟୟନ କରିପାରିବ ନାହିଁ । ରବୀନ୍ଦ୍ର ଅନୁଗାମୀ ଚନ୍ଦ୍ରଶେଖର ଦେଖିଛନ୍ତି ଏତେ ବଡ଼ ବିଶ୍ୱରେ ଅସୀମ ଅନନ୍ତର ରହସ୍ୟ ସମୁଦ୍ର ଗର୍ଭରେ ପଶି ଅରୂପସନ୍ଧାନ କରିବାର ସାମର୍ଥ୍ୟ ତାଙ୍କର ନାହିଁ । ମାନବ ମନ ଯେତେ ଅରୂପ ଆଦର୍ଶକୁ ମାନିନେଲେ ବି ହୃଦୟ ନିରାକାରକୁ ସାକାରରୂପେ ପାଇବାକୁ ଚିରବ୍ୟଗ୍ର; କାରଣ ଏହା ଭିନ୍ନ ପ୍ରାପ୍ତିର ଭିନ୍ନରୂପ ଓ ତୃପ୍ତିର ଭିନ୍ନ ଅର୍ଥ କିଛିନାହିଁ । ସେଥିପାଇଁ ଯୁଗେ ଯୁଗେ ଅରୂପ ଦେବତାର ଏତେ ସାକାର ପୂଜା ଆୟୋଜନ ।

ମୋଟ ଉପରେ ଚନ୍ଦ୍ରଶେଖର ଜଣେ ସଚେତନ ଓ ନିଷ୍ଠାପର ରହସ୍ୟବାଦୀ କବି ମନେହୁଅନ୍ତି । ତାଙ୍କ ରଚନାରେ ସମସାମୟିକ କାବ୍ୟସ୍ୱରର ଭାବକୁହିମତା ଓ ରୂପ-ଦୁର୍ବୋଧତା ପରିଦୃଷ୍ଟ ହୁଏନାହିଁ । କବିଙ୍କ ଆଦ୍ୟ ରଚନା ସ୍ତରରେ ହିଁ ଅଧ୍ୟାତ୍ମ ଉନ୍ମୁଖତାରେ ଆନ୍ତରିକତା ଓ ପ୍ରୀତି ଅନ୍ତରଙ୍ଗତାର ସହଜ ସ୍ପଷ୍ଟ ଉଚ୍ଚାରଣ ଘଟିଛି । (୬୮) ଜୀବନର ଅନୁଭୂତିମାନ ଯେଉଁ ଜୀବନ ଦେବତାଙ୍କ ପ୍ରତି ଜୀବନର ଚିନ୍ତାଚେତନାକୁ ପ୍ରଥମରୁ ଉଚ୍ଚକିତ କରିଛନ୍ତି, ଦର୍ଶନ ଜଗତରେ କବି ତାଙ୍କର ସନ୍ଧାନ ନେଉଛନ୍ତି । ତାଙ୍କ ପ୍ରାଣର ଉପଲବ୍ଧିରେ ଯେଉଁ ପ୍ରତ୍ୟୟ ଦୃଢ଼ମୂଳ, ତାହା ହେଉଛି, ତାଙ୍କ ଜୀବନଦେବତା ତାଙ୍କ ଜୀବନସହ ଘନିଷ୍ଠ ନିବିଡ଼, ତେଣୁ ସମର୍ପଣର ବ୍ୟାକୁଳତା ଓ

---

(୬୮) "ତାଳଦଅ ପ୍ରାଣେ କରୁଣା ପ୍ରସାଦ ।"
'ନନ୍ଦନ ସୌରଭ'—ଉ: ସା: ୩୫ ଭାଗ, ୧ମ ସଂଖ୍ୟା ।

Digitized by PPRACHIN, SOA

ଆଶା ଆଶ୍ୱାସନାର ଗାନ, ପ୍ରୀତ ଅନୁରାଗ ଓ ପ୍ରତୀକ୍ଷାସ୍ପୃହତାର ଅଂଗୀକାର । (୨୯) ଲକ୍ଷଣୀୟ, ସବୁଜଭାବ ପ୍ରଭାବିତ ହେଲେ ବି ସବୁଜ-କାବ୍ୟଚେତନାର ସଂଶୟ ପୀଡ଼ିତ ସ୍ୱଗତାଳାପ ଅପେକ୍ଷା ସବୁଜ ପୂର୍ବ ବିଶ୍ୱାସ ଓ ନିଷ୍ଠା ସହ ଅଧ୍ୟାତ୍ମ ଦୃଢ଼ ପ୍ରଣୟସ୍ପୃହତା ତାଂକ ରହସ୍ୟ ଆରାଧନାର ରୂପବିଭାବ ମଂଡନ କରିଛି ।

କାଳନ୍ଦୀଚରଣ ପାଣିଗ୍ରାହୀ :

"ଦେହ ମୋର ସାଜଇ ବସି ତୁମରି ପ୍ରେମଲଗ ଯେ
ନିଜକୁ ମୁଁ ଯେ କରଇ ପ୍ରେମ ତୁମରି ଅନୁରାଗୀ ହେ ।" (୩୦)

ପ୍ରସାଧନରତା ବାସକସଜ୍ଜା ମୁଗ୍ଧା ନାୟିକାର ଏ ରୂପାନୁଭବରେ ପରବର୍ତ୍ତୀ କାଳର ଏକ ଦୃପ୍ତ ପୌରୁଷର ଆଗ୍ନେୟଭାଷା ଲୁକାୟିତ ବୋଲି ସହଜରେ ଭାବି ହୁଏନାହିଁ । ସବୁଜ ସୁଲଭ ବିଷାଦ-ବିଧୁରତା ଓ ଚିରପ୍ରେୟସୀର ବିଦେହ ମଧୁରତା ଅଭିଳାଷୀ ଏ ତରୁଣମାନସରେ ଜୀବନର ଆଦ୍ୟ ପ୍ରଣୟ ଉଦ୍ଘାଟନ ସଂବୋଧନ କରିବାକୁ ଏକ ଅଶରୀରୀ, ଅରୂପ ଦେବତାଂକୁ ନେଇ ଭାବନାବିଳାସ କରିଛି । ରୋମାଂଟିକ ମାନବବାଦୀ ଓ ବୈପ୍ଳବିକ ଚିଂତାଧାରାର କବି ରୂପେ ପରିଚିତ କାଳିଂଦୀଚରଣଂକର ଏ ରହସ୍ୟବାଦୀ ଜିଜ୍ଞାସା ସ୍ୱାଭାବିକ ରବୀଂଦ୍ର ଭାବାନୁସୃତ । ପରବର୍ତ୍ତୀ କାଳରେ ଏହି ଭାବାଦର୍ଶ ଭିନ୍ନ ଆଦର୍ଶ ପ୍ରେରିତ ଓ ଭିନ୍ନମାର୍ଗ ଅନୁସନ୍ଧାନୀ ହୋଇଛି ।

ଉତ୍କଳ ସାହିତ୍ୟ ୧୩୩୬-୩୭ ସାଲ କାର୍ତ୍ତିକ ୭ମ ସଂଖ୍ୟାରେ ପ୍ରକାଶିତ 'ଅବ୍ୟକ୍ତ' କବିତାଟିରେ ପ୍ରଯୁକ୍ତ 'ଅରୂପ' ଶବ୍ଦ ଭାବଚେତନାଟିରେ ପାରଂପରିକ ଶବ୍ଦ-ବ୍ରହ୍ମ ଭାବ-ବୋଧ ସହ ରବୀଂଦ୍ରକାବ୍ୟର ଅଜଣା ଅରୂପ ସ୍ୱରଚେତନାଟି ମଧ୍ୟ ବିମୂର୍ଚ୍ଛିତ । ଏ କବିତାର ଭାବ ଅଭିବ୍ୟକ୍ତି ଓ ଭାଷା ସଂଯୋଜନାରେ କାବ୍ୟ ମନୋହାରିତାର ଚମତ୍କାର ରସସିଦ୍ଧି ସଂସାଧିତ । କବି ବାକ୍‌ମନର ଅତୀତ ଏକ ଭାବସ୍ପଂଦନ ପ୍ରତି ଉନ୍ମୁଖ । ବିଶ୍ୱବାଙ୍ମୟ ତାହାରି ଅଭିବ୍ୟକ୍ତି ପ୍ରଚେଷ୍ଟା ବୋଲି ସେ ଜାଣଂତି । ସେ ଅକୁହା କଥା କବିଂକୁ ମଧ୍ୟ ମୁଖର କରୁଛି । ତଥାପି ସେ କହିବାକୁ ଅସମର୍ଥ । ତେଣୁ ଦୁଃଖିତ । ଏ ଦୁଃଖର ଉତ୍ସ ରୋମାଂଟିକ୍ ଭାବାକୁଳତା ବୋଲି ସହଜରେ ଚିହ୍ନି ହୁଏ । ପରବର୍ତ୍ତୀ କାଳର କବିତା 'ଲୋହିତ ବ୍ୟଥା'ରେ ପ୍ରକଟିତ ଏହି ଅହେତୁକ ଦୁଃଖବାଦର ଉତ୍ସକୁ ଏଠାରେ ସନ୍ଧାନ କରାଯାଇପାରେ । 'ଲୋହିତ ବ୍ୟଥା'ରେ ଦୂର ବଂଶୀତାନ ଜିବପ୍ରାଣରେ ଉଦାସଭାବ ଖେଳାଇ ଦେଇଛି । ଏ କବିତାରେ ଅଶ୍ରୁତ ଏକ ସ୍ୱରଧ୍ୱନି କବିଂକ ଅଂତରକୁ ଭାବବିଧୁର କରି ଦେଉଛି । (୩୧) କବି ସେ କଥାର ଅର୍ଥ ବୁଝୁଂତି ନାହିଁ । ତେଣୁ ଅବ୍ୟକ୍ତର ବେଦନା ଭୋଗଂତି ।

(୨୯) "ସହିଲେ ଯେତେ ପ୍ରାଣେ ବିରହ ଅପମାନ / ତୁମରି ଭାଷାଲାଗି ତେରି ରହିବ କାନ ।
ଦେବ ଯା କିଛି ତୁମ ହୃଦୟ ମୋତେ ଦାନ / ଜୀବନେ ଏକା ସୁଖ ମଣିବି ।
ତୁମରି ଲାଗି ଯେବେ ଝରିବ ଅଶ୍ରୁଜଳ / ଧୋଇବି ଧୀରେ ତହିଁ ତୁମରି ପଦତଳ
ଦେବତା ଗୃହେ ତବ ମୋର ଅର୍ଘ୍ୟ ସମ୍ବଳ / ପୀରତି ପାରିଜାତ ଧରିବି ।"
ଅର୍ଘ୍ୟ—ଉତ୍କଳ ସାହିତ୍ୟ—୩୬ଶ ଭାଗ, ୪ର୍ଥ ସଂଖ୍ୟା ୧୩୪୦ ସାଲ ।

(୩୦) 'ପ୍ରସାଧନ'—'ମୋ କବିତା' ।

(୩୧) "ଅଦୂରକାର ଗୀତଟି କଥା
ମରମେ ମୋର ଲଗାଏ ବ୍ୟଥା
× × ପରଶ ତାର ପରାସ ହଏ ପରାଣ ମୂଳେ ମମ ।" (ପଦ ୨, ୪)

Digitized by PPRACHIN, SOA

ତେବେ ଏମିତି କେତେ କବି ସେ ଅରୂପ ଭାବନାକୁ ରୂପ ଦେବାକୁ ମର୍ମୀ ସାଧନା କରିଛଂନ୍ତି । (୩୨) ମାତ୍ର "ପାରିନି ଜାଣି, ପାରିନି କହି / ସେ କଥା କହି ଲେଖି ସେ ଛବି ।" (ପଦ ୫)

ତଥାପି "ବିଶ୍ୱଗୀତି ତାହାର ଦାନ" । ସେ କଥା କହିବାକୁ ସପ୍ତସ୍ୱରର ବିଧାନ, ତାହାର ରୂପ ଆଂକିବାକୁ ସପ୍ତରଂଗର ସୃଷ୍ଟି । ନିଖିଳ ପ୍ରକୃତି ତାରି ରୂପ ପରିଗ୍ରହ କରିଛି । ତଥାପି ତାହା ଅସ୍ଫୁଟ । ବାରଂବାର ପରାଜୟର ଲଜ୍ଜା ସତ୍ତ୍ୱେ ପାଷାଣ ଚାପାରେଁ ବିଗଳିତ ହୋଇ ସ୍ରୋତସ୍ୱିନୀ ସାଜେ । ସେ ପ୍ରକାଶହୀନ ବିରାଟ ଅଭିଳାଷକୁ ହୃଦୟରେ ଧାରଣକରି କବି ମଧ୍ୟ ସେହି ବିଶ୍ୱବେଦନାରେ ଭାଗୀ ହୋଇପଡ଼ଂନ୍ତି । ଏ ସ୍ୱରର ପ୍ରତିଧ୍ୱନି ପରେ 'ନୀରବ ଆହ୍ୱାନ' କବିତାରେ ଅଧିକ ଭାବ ଗାମ୍ଭୀରତା ଲାଭକରିଛି । (୩୩)

କବିତାର ଭାବ-ଉଦ୍‌ବୋଧନଟି ଚମତ୍କାର । ଏକ କାବ୍ୟକ ଉପଲବ୍‌ଧିରୂପେ ବିଶ୍ୱରହସ୍ୟର ଯେଉଁ ଅନ୍ତଃଗୂଢ଼ ସତ୍ୟଟି ଏଠାରେ ରୂପଲାଭ କରିଛି, ତାର ଉପସ୍ଥାପନାରେ କବିଂକ କଳାକୁଶଳତାର ପ୍ରତିଚ୍ଛବିଟି ସୁନିବିଡ଼ । ତଥାପି ଲକ୍ଷ୍ୟ କରିହୁଏ, ପାରଂପରିକ ଭକ୍ତିବୋଧ ଓ ରବୀନ୍ଦ୍ରାନୁଗ ସ୍ୱଗତୋକ୍ତି ଭିତରେ ଏଇ ରହସ୍ୟବାଦୀ ଅନୁଭବନାଟିର କାବ୍ୟାଭିମୁଖ ଓ କବିଂକ ନିଜସ୍ୱ ଦୃଷ୍ଟିଭଂଗୀ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ରୂପସଂକେତ ମିଳେନାହିଁ । ଅଯଥା ବିଷାଦବାଦ ଓ ଭାବକାରୁଣ୍ୟ କବିତାଟିର ଆକର୍ଷଣୀୟ ବିଭବ ହୋଇଥିଲେ ବି ପାଠକ ମନରେ ସ୍ଥାୟୀ ରେଖାପାତ କରିବାକୁ ସମର୍ଥ ହୁଏ ନାହିଁ । କବିଂକର ଏ ଆତ୍ମ ବିଷାଦ ଜଡ଼ିତ ଆଶାସ୍ଫୁର୍ତ୍ତି ସମ୍ମୋହ ବ୍ୟତୀତ ଭିନ୍ନ କିଛି ଆତ୍ମସନ୍ଦେଶ ଏଥିରେ ରୂପଲାଭ କରିନାହିଁ ।

୧୯୩୧ରେ ରଚିତ 'କୁହୁପ୍ରାସ'ରେ (ଛୁଆଟିଏ ଲୋଡ଼ା, ୧୯୫୦) ଇଂରେଜୀ କାବ୍ୟଭାବନାର ପକ୍ଷୀଗୀତିମାନଂକର ଭାବପ୍ରତିଫଳନ ଘଟିଛି । ପ୍ରକୃତିର ଶୀତଳ ମଧୁର ପରିବେଶ, ପକ୍ଷୀର କୂଜନ ଓ ଦୁଇ ବନବାଳାଂକ ରୂପବିମୋହିତ କବିଚିତ୍ତ ଅତୀନ୍ଦ୍ରିୟ ଅରୂପ ଏକ ଅନିର୍ବଚନୀୟ କଳ୍ପନାରାଜ୍ୟକୁ ନିଃସାରିତ ହୋଇଛି । କବି ଏକ ଅଜଣା ସଂଗୀତ ଶୁଣିଛଂନ୍ତି, "ଯାହା ଧାରାର କେଉଁ ମରମତନ୍ତ୍ରୁ/ ଉଠିଲା ଭେଦି ବିଶ୍ୱ ମରୁ/ ସକଳ ପଥେ ସକଳ ଘାଟେ ଚକିତ କରି ବାଜି ।" ଅରୂପ ଶାଶ୍ୱତ ରୂପେ ରୂପେ ନିଜର ବିଶ୍ୱରୂପତାକୁ ପ୍ରକଟ କରିଥାଂନ୍ତି, ନିଜ ସୃଜନୀ ସଂକଳ୍ପକୁ ଶବ୍ଦସନ୍ଦେଶ କରି ବିଶ୍ୱକୁ ପ୍ରେରଣ କରିଥାଂନ୍ତି । ସବୁ ଦୃଶ୍ୟର ଅଂତରାଳରେ ସେହିଁ ଏକ ଅଦୃଶ୍ୟ ରୂପ ଓ ସବୁ ଭାବର ଅଂତରାଳରେ ସେହି ଏକ ଭାବାତୀତ ପ୍ରେମ । ସୁତରାଂ କବିପ୍ରାଣ ଅନାୟାସରେ ବିଶ୍ୱକୁ 'ପ୍ରିୟ'ର ଆଲିଂଗନ ଦେଇପାରେ, ଜୀବନର ଗ୍ଲାନିତାପକୁ ସେଇ ଭାବାବେଶରେ ବିସ୍ମରଣ ହୋଇପାରେ, ସକଳ ଅଂତରର ପୁଂଜୀଭୂତ ଦ୍ୱେଷ ଓ ଅବିଶ୍ୱାସର ବିଷକୁ ନିଜ ଶ୍ରଦ୍ଧାର ଅସୀମଶକ୍ତିରେ ଜୀବନାମୃତରେ ରୂପାଂତରିତ କରିପାରେ । ସେଇ ମହାନ୍ ଶକ୍ତିଧର ମୃତ୍ୟୁଂଜୟ ବିଶ୍ୱପୁରୁଷଂକୁ କବି ଆତ୍ମସତ୍ତାରେ ସଂଭାବିତ ଦେଖିଛଂନ୍ତି "ଅଛି ମୋର ବିଶ୍ୱରୂପ ବିରାଟ ଅସୀମ / ତଡ଼ାଗ ସମାନ ଯହିଁ ତୋର ରୂପ ଭୀମ / ରବିଚଂଦ୍ର ଗ୍ରହ ତାରା ଆକାଶପବନ / ନିଶିଦିନ / ରେଣୁ ସମ ଯହିଁ ଭରେ ଲୀନ ।" (୩୪)

---

(୩୨) "କେତେ ଯେ କବି ଗାଇଛି ଗୀତ / ଢାଳିଛି କେତେ ମର୍ମୀ
ଧରଣୀ ପରେ ଉଦାସେ ଏକା ବସି ।" (ପଦ ୫)

(୩୩) "ସବୁ କୋଳାହଳ ଭେଦି ଶୁଣିବି ମୁଁ ଶବ୍ଦହୀନ ନୀରବତା ଡାକ ।"
(ମହାଦୀପ) 'ମୋ କବିତା'—ପୃ. ୧୮୦

(୩୪) ('ସିନ୍ଧୁ') — ଛୁଆଟିଏ ଲୋଡ଼ା—ପୃ: ୫୦

Digitized by PPRACHIN, SOA

'ବିଶ୍ୱର ଆହ୍ୱାନ' କବିତାରେ ଯେଉଁ ଅସ୍ତିତ୍ୱର ଜୟଗାନ, ତାହା ମଧ୍ୟ ମାନବାତ୍ମାର ଐଶ୍ୱରିକ ଗୌରବ-ସ୍ୱୀକୃତ । ବ୍ୟକ୍ତିଚେତନାର ବିଶ୍ୱସଂପୃକ୍ତିର ଏ ରୂପ ଉଦ୍‌ବୋଧନ ଭୂମି ଉପରେ ପୂର୍ବର ବୁଦ୍ଧିଷ୍ଠିତ ପୃଥିବୀ ପ୍ରେମାପ୍ଲୁତ କବି ହୃଦୟ ପାଇଁ କେବଳ ଆଉ ସହନୀୟ ନୁହେଁ, ରମଣୀୟ ଓ ବରଣୀୟ ମଧ୍ୟ ମନେହୋଇଯାଇଛି । ( ୩୫ )

ପରବର୍ତ୍ତୀ କାଳରେ କବିଙ୍କ ସ୍ୱରରେ ଯେ ସାମ୍ୟବାଦୀ ସ୍ୱର ଉଚ୍ଚାରିତ, ତାହା ଏହି ବିଶ୍ୱାଲିଂଗନ ଓ ଜୀବନ-ମମତାରୁ ହିଁ ଉତ୍ସାରି ଲାଭକରିଛି ଏବଂ ତହିଁରେ କାବ୍ୟମୋହ ଅପେକ୍ଷା ଭାବୋପଲବ୍ଧିର ଗଭୀରତା ଅଧିକ ପ୍ରକଟିତ । କାଳିଂଦୀଚରଣଙ୍କ କାବ୍ୟଭାବନାର ମେଟାଫିଜିକାଲ ଇଂଦ୍ରିୟୋତ୍ତର-ଜିଜ୍ଞାସା ରୋମାଣ୍ଟିସିଜମ ପରିପୁଷ୍ଟ ସେଇ ଭାବଭୂମିରୁ ଉଦ୍‌ବୋଧିତ ଯାହା ଗଭୀର ଓ ସ୍ଥାୟୀ ଉପଲବ୍ଧିରେ ରହସ୍ୟବାଦୀ ଅତୀଂଦ୍ରିୟତାକୁ ଉପଲକ୍ଷ୍ୟ କରିଥାଏ । କାଳିଂଦୀଚରଣଙ୍କ ଗଭୀର ବିଶ୍ୱାସଦୀପ୍ତ ବିଶ୍ୱଭ୍ରାତୃତ୍ୱ ଚେତନା ଉଦ୍‌ବୁଦ୍ଧ ମାନବବାଦୀ ଦର୍ଶନ 'ସର୍ବୈକମ୍'ର ଆଦ୍ୟଚେତନା ଉତ୍ସାରିତ । ଏ ପରିପ୍ରେକ୍ଷୀରେ ପାରଂପରିକ ଧର୍ମ, ଦର୍ଶନ, ବ୍ୟକ୍ତିଗତ ମୁମୁକ୍ଷା ଓ ଶୁଷ୍କ ବୈରାଗ୍ୟ ବିରୁଦ୍ଧରେ ଯୁଗୋଚିତ ନବକାବ୍ୟଭାବନାର ଅନୁକୂଳତା ଲାଭକରି କାଳିଂଦୀ-କାବ୍ୟଦର୍ଶନ ଯେଉଁ ବିଦ୍ରୋହ ରଚନା କରିଛି, ତାହାକୁ କବିଙ୍କ ଭାବ ଅସଂଗତ କିଂବା ଚେତନା-ବିଚ୍ୟୁତ କହିବା ସଂଗତ ମନେହୁଏ ନାହିଁ । ବ୍ୟକ୍ତିଗତ ପ୍ରେମଭାବନାର ଐକ୍ୟଚେତନା ସ୍ୱାଭାବିକ ଭାବରେ ବିଶ୍ୱାନୁରାଗ । ତ୍ୟାଗ ଓ କରୁଣାର୍ଦ୍ରତା ଭିତରେ ପୁଷ୍କଳ, ସେଇ ମାନବବାଦୀ ବାସ୍ତବଦର୍ଶନ ତାଙ୍କର ଆଦ୍ୟ ରହସ୍ୟୋନ୍ମୁଖ ଅତୀଂନ୍ଦ୍ରିୟ ଚିନ୍ତାଧାରାର କ୍ରମ-ବର୍ଦ୍ଧମାନ ରୂପାନ୍ତର । ସାମ୍ୟବାଦୀ ବାସ୍ତବାନୁଗ ଦର୍ଶନ ଯେ କବିଙ୍କୁ ଏ ଆତ୍ମାନୁଭବରୁ ବିଚ୍ୟୁତ କରିପାରି ନାହିଁ, ବରଂ ତାଙ୍କ ଅଧ୍ୟାତ୍ମ ଆକୂତି ବିଭିନ୍ନ ସାମୟିକ ସଂଶୟ ଓ ନୈରାଶ୍ୟର ଭାବସଂଘାତ ଭିତରେ ବି ଥରକୁ ଥର ନିଜକୁ ପ୍ରତିଷ୍ଠା କରିବାର ଉଦ୍ୟମ କରିଛି ସେ ସାଧନା-ରୂପ କାବ୍ୟଭାବନାରେ ସ୍ପଷ୍ଟ ଉତ୍କୀର୍ଣ୍ଣ । ସଂଶୟାତ୍ମିକା ଚିତ୍ତଦୋଳନ ମନସ୍ତତ୍ତ୍ୱର ଯେଉଁ ସ୍ୱାଭାବିକ ଭାବସ୍ତରକୁ ସଙ୍କେତ କରେ ନବିଙ୍କ ରଚନାରେ ତାର ରୂପାନୁଭୂତି ମଧ୍ୟ ସ୍ପଷ୍ଟ । କାଳିଂଦୀ-ମାନସର ଏ ସଂଶୟ ସମଗ୍ର ଯୁଗୀୟ କାବ୍ୟଚେତନାରେ । ପୁଣି କବି ଏ ସଂଶୟାତ୍ମିକତାକୁ ପୂର୍ବେ ଅତିକ୍ରମ କରି ପାରିନଥିବା ମଧ୍ୟ ସ୍ୱୀକୃତ । ଏ ଦୃଷ୍ଟିରୁ ସଚ୍ଚିଦାନନ୍ଦ ବୈକୁଣ୍ଠନାଥଙ୍କ ସଂଶୟଦଗ୍ଧ କାବ୍ୟଚେତନା ସହ ତାଙ୍କର ସ୍ୱର-ସାମ୍ୟ ବିଚାରଣୀୟ । ମଧ୍ୟଯୁଗୀୟ ସ୍ୱର୍ଗ, ପାରତ୍ରିକ ଓ ଅମରତ୍ୱ ଭାବନା ପ୍ରତି ସଂଶୟ, ଆକ୍ଷେପ, ନାସ୍ତିବାଣୀ ଥରକୁ ଥର ମୁଣ୍ଡ ଟେକିଛଂତି, "ଜୀବନ ପରେ ନ ହିଁ ରେ କିଛି ନାହିଁ ।"

ତଥାପି କବି ପ୍ରାଣରେ ଅରୂପର ଆହ୍ୱାନକୁ ମାନବୀୟ ଆର୍ତ୍ତି ଦୈନ୍ୟ ଲୁଚାଇ ପାରିନାହିଁ । ସାଲ୍‌ସ-ବ୍ୟର୍ଥ ଏ ଭଗ୍ନସ୍ୱରାଳାପ ଯୁଗୀୟ ରହସ୍ୟବାଦୀ ଭାବନାର ପ୍ରଧାନ ଅନ୍ତର୍ଦ୍ୱନ୍ଦ୍ୱ ରୂପେ ପ୍ରକଟିତ ।

---

(୩୫) "ତୁମରି ପ୍ରେମେ ଭୁବନ ଭଲ ଲାଗଇ
ଚେତନା ମମ ସକଳ ପଥେ ଜାଗଇ
ହତାଶେ ଆଉ ନୁହେ ମୁଁ ଜଡ଼,
ମରଣ ଆଉ ନ ମଣେ ବଡ଼
ତୁମରି ଲାଗି ଶତ ଜୀବନ ଆଜି ମୋ ଏଥି ମାଗଇ ।"

(ପ୍ରସାଧାନ) 'ମୋ କବିତା'—ପୃ· ୪

Digitized by PPRACHIN, SOA

ଦେଖାଯାଏ, ଜାଗତିକ ସମସ୍ୟାପ୍ରତି ଦୃଷ୍ଟି ଦେଲାବେଳେ କବି ଯେପରି ଈଶ୍ୱରବିମୁଖ, ଆତ୍ମାନୁ-ଭବରେ ଅନ୍ତରଙ୍ଗ ଦେବତାଙ୍କ ପ୍ରତି ସେହିପରି ଭାବ-ବିଶ୍ୱସ୍ତ । ପୃଥିବୀର ଦୁଃଖ ଦେଖି ତାଙ୍କ କାବ୍ୟ-ସ୍ୱର ବାରଂବାର ଦେବତାର ବିଦ୍ରୋହୀ ହୋଇଛି, ନାସ୍ତିକ ସାଜିଛି; ଆଉ ପ୍ରୀତି ସମ୍ପର୍କରେ ଅନ୍ତରରେ ଅନ୍ତରତମଂକ ତିର ଅନୁଗତ ରହିଛି । ତାଂକ ପ୍ରତି ବିମୁଖଭାବନା ମଧ୍ୟ ଅନ୍ତଃସ୍ୱରର ଅସହ୍ୟ ହୋଇଛି । (୩୬) ଆଷ୍ଟେପୈର କଥା, ତାଂଙ୍କ କବିତା ବହୁରୂପେ, ବହୁଭାବେ ବିଶ୍ୱସ୍ରଷ୍ଟାଂକୁ ଅସ୍ୱୀକାର କଲେ ମଧ୍ୟ, ଅଂତାର ବ୍ୟାକୁଳତା ପ୍ରାଣସ୍ରଷ୍ଟାଂକୁ ଯେଉଁ ଭାବେ ନିବେଦନ କଣାଇଛି । ସେଥିରେ କବିଂକର ଅଜ୍ଞାତ-ଅକୃତ ପ୍ରମୃତି । ଏ ସ୍ୱର ନିଃସନ୍ଦେହରେ ବିଶ୍ୱଜନ-ପ୍ରତିନିଧି-ରୂପ କବିର ନୁହେଁ, ଏକକ ଅନ୍ତଃସ୍ୱରର । ଚିର ରହସ୍ୟପୁରୁଷ ସହ ପ୍ରେମର ନିଗୂଢ଼ ସମ୍ପର୍କରେ ବନ୍ଧା ବିଶ୍ୱବିସ୍ମୃତ ଅନ୍ତର୍ଗତ ପ୍ରତୀକ୍ଷୀସତ୍ତ୍ୱର ଚିରନ୍ତନ ବ୍ୟାକୁଳତା ହିଁ ଏଠାରେ ରୂପାୟିତ । ଏ ବ୍ୟାକୁଳତା ସହ କବିର ସମସ୍ତ ମିଳନ ପିପାସା ବରଂ କବିସତ୍ତ୍ୱରେ ଏକୀଭୂତ ହୋଇ ଅତନୁମାର୍ଗରେ ଅରୂପ ପ୍ରଣୟର ଉତ୍ତପ୍ତ ସୁଖପାଇଁ ବ୍ୟଗ୍ର ହୋଇଛି । ବିଶ୍ୱର ପଥଘାଟକୁ ଛୁଇଁ ଛୁଇଁ ନିଜ ପ୍ରାଣର ସ୍ପର୍ଶଦେଇ କବି ସେ ପ୍ରେମ ସହ ଏକାତ୍ମ ହେବାର ଅଭିଳାଷ ଗାନ କରିଛନ୍ତି ।

ମୋଟ ଉପରେ ବାସ୍ତବବାଦ କବିଂକ ରହସ୍ୟବାଦୀ ସ୍ୱରରେ ସଂଶୟ ସଂଘାତ ସୃଷ୍ଟି କରିଥିଲେ ବି ତାହା ଏକ ନିମବିକାଶ ଓ ରୂପାନ୍ତରର ମାର୍ଗ ସନ୍ଧାନ ପାଇଁ ତାଙ୍କ ଚେତନା ପକ୍ଷେ ଅନୁକୂଳତା ସୃଷ୍ଟି କରିଛି ବୋଲି କୁହାଯାଇପାରେ । କବିଂକ ଅତୀନ୍ଦ୍ରିୟ କାବ୍ୟଚେତନାର ସାର୍ଥକତା ଯେ ଆଦ୍ୟ ଆବେଗ ବିହ୍ୱଳିତ ଅନିଶ୍ଚୟତାକୁ ତ୍ୟାଗ କରି ଏକ ସଚେତନ ଜୀବନବାଦୀ ବାସ୍ତବତାର ଦୃଢ଼ ଭିତ୍ତି ଚେତନା ଉପରେ ଆପଣାକୁ ପ୍ରତିଷ୍ଠା କରିବାକୁ ପ୍ରୟାସରତ କବିଂକ ସାମଗ୍ରିକ କାବ୍ୟଭାବନାରେ ତାହାର ଆଭାସ ରହିଛି । ତାର ସିଦ୍ଧିରୂପ ଅବଶ୍ୟ କବ୍ୟ-ସ୍ୱୀକୃତିରେ ଏବେବି ଅପେକ୍ଷିତ ।

## ଶ୍ରୀ ନବକିଶୋର ଦାସ

ରୋମାଣ୍ଟିକ ପ୍ରକୃତି ଭାବନା ଓ ଅରୂପ ପ୍ରଣୟୋତ୍ମକ ଅତୀନ୍ଦ୍ରିୟ ଚେତନାର କବି ରୂପେ ନବକିଶୋର ଦାସ ୧୬୯୪-(୪୦) ସାଲ ମଧ୍ୟରେ ଓଡ଼ିଆ କାବ୍ୟ ଜଗତରେ ପରିଚିତ ଥିଲେ । ଐତିହାସିକ ଓ ମାନବବାଦୀ ରଚନାକୁ ବାଦଦେଲେ ତାଂକ କାବ୍ୟଧର୍ମରେ ଯେ ରହସ୍ୟବାଦୀ ରୋମାଣ୍ଟିକ ଆଭିମୁଖ୍ୟ ପ୍ରକଟିତ, ତାର ସ୍ୱର କିନ୍ତୁ ସ୍ପଷ୍ଟ, ସୁନିର୍ଦ୍ଦିଷ୍ଟ ବା ଲକ୍ଷ୍ୟାନୁବର୍ତ୍ତୀ ମନେ ହୁଏ ନାହିଁ । ତାଂକର ସବୁଜ ଚେତନା ସମଧର୍ମୀ ଭାବୋଦବେଳ ଆବେଗ ଭିତରେ ଅରୂପ ପ୍ରାଣତାର ରହସ୍ୟବାଦୀ ସ୍ୱର ବ୍ୟଂଜନା ଅଛି, ମାତ୍ର ରହସ୍ୟୋପଲବ୍ଧିର ସ୍ପଷ୍ଟତା ଥିଲାଭଳି ମନେହୁଏ ନାହିଁ । ରୋମାଣ୍ଟିକ ସୁଦୂରବିସର, ଦୂରପ୍ରେମ ଓ ପଳାୟନ ଆମୁଖତାରେ ଉଚ୍ଛ୍ୱସିତ ଅତୀନ୍ଦ୍ରିୟ-ଉଚ୍ଚାରଣ ରହସ୍ୟ-ପ୍ରଣୀତ ହେଲେହେଁ ରହସ୍ୟଧର୍ମିତାର ଅନ୍ତର୍ବ୍ୟଂଜନା-ସଂଯୁକ୍ତ ବୋଲି ମନେ ହୁଅନ୍ତି ନାହିଁ । ଭାବଦୈନ୍ୟ ଓ ଭାଷା ଅସାମର୍ଥ୍ୟ ସହ ବିପୁଳ ପ୍ରତିଭାର ପ୍ରଚ୍ଛନ୍ନ ଅନତିକ୍ରମଣତା ଏ କବିତାମାନଂକରେ ପରିଲକ୍ଷିତ ।

୧୯୩୬ ସାଲରେ 'କଳାବିଜ୍ଞାନକୁଂଜ' ପକ୍ଷରୁ 'ସଂକଳ୍ପ'ର ପ୍ରକାଶ ଅବକାଶରେ ଶ୍ରୀ ଭାଗୀରଥୀ ମହାପାତ୍ରଂକ ମୁଖବନ୍ଧରେ ପ୍ରଦତ୍ତ ମନ୍ତବ୍ୟଟି ଏଠାରେ ସ୍ମରଣ କରାଯାଇପାରେ । ସେ ଲେଖିଛଂନ୍ତି —

(୩୬) "ତୁମ ଅପମାନ ପ୍ରିୟ ମରଣ ହୁଁ ବଳି ଦେଉ ବ୍ୟଥା
ତବ ଅପମାନ କଲେ ମୂକ ହେଉ ମୋର ସବୁ କଥା ।"
'ଆସ୍ତିକର ଆକୂତି' — ମୋ କବିତା — ପୃ. ୧୨୪

Digitized by PPRACHIN, SOA

"କବି ପ୍ରକୃତିର ସହଜ ସୌନ୍ଦର୍ଯ୍ୟକୁ ଚିତ୍ର କରୁ କରୁ ପ୍ରକୃତି ସହିତ ମାନବାତ୍ମାର ଅବିନଶ୍ୱର ସଂବଂଧ ଓ ସ୍ଥାନେ ସ୍ଥାନେ ସୃଷ୍ଟିଚକ୍ରର ରହସ୍ୟମୟ ଅଧ୍ୟାତ୍ମବାଦକୁ ଇଂଗିତ କରିଛଂନ୍ତି ।" ଏଥିରେ ପ୍ରକୃତି ଭାବାତ୍ମକ ଅତୀନ୍ଦ୍ରିୟ ରୂପଦର୍ଶନ ବାଳାସର ସ୍ୱୀକୃତି ରହିଛି । ସେ ପୁଣି ଲେଖିଛଂନ୍ତି, "ଅବଶ୍ୟ ସ୍ଥାନେ ସ୍ଥାନେ କବିତାର ଅନ୍ତର୍ନିହିତ ଭାବ ବୁଝିବା ସାଧାରଣ ପକ୍ଷେ କଠିନ ହୋଇପାରେ । କିଂତୁ ଆଜକାଲି ଯେଉଁମାନେ ଗୁହ୍ୟବାଦୀ (Mystic ବା Suggestive) କବିତା ଲେଖଂନ୍ତି, ସେମାନଂକ ସଂବଂଧରେ ସେ ଦୋଷଗୁଣ ଥାଏ ।"

ଦ୍ରଷ୍ଟବ୍ୟ, ଏଠାରେ ଭାଷାଗତ ଦୁର୍ବୋଧତା ଓ ଭାବଗତ ଅସ୍ପଷ୍ଟତାହିଁ (ଗୁହ୍ୟାମୟ, Suggestive) ରହସ୍ୟବାଦର ସ୍ୱରୂପ ବିଗ୍ରହ ବୋଲି ନିର୍ଣ୍ଣିତ କରାଯାଇଛି । ଶଂସିତ ଯୁଗଚେତନାରେ ରହସ୍ୟବାଦର ରୂପସ୍ୱୀକୃତି ଯେ ତାର ମୂଳ ପ୍ରେରଣାଠାରୁ ବହୁଦୂରରେ କେବଳ କାବ୍ୟକଳ୍ପନାଗତ ଭାବ-ଅସ୍ପଷ୍ଟତା ଓ ଦାର୍ଶନିକ ରହସ୍ୟ ଦୁର୍ବୋଧତା ଭିତରେ ସୀମାବଦ୍ଧ ରହିଥିଲା ଏବଂ ଅଂତରାନୁଭବ ଓ ବାସ୍ତବ ଉପଲବ୍ଧି ସହ ତାର ସଂଯୋଗ ବିଗ୍ରହର ଅପରିହାର୍ଯ୍ୟତା ଅନୁଭୂତ ହେଉନଥିଲା । ନବକିଶୋରଂକ ପରି ବହୁ ତଥାକଥିତ ରହସ୍ୟବାଦୀଂକ କାବ୍ୟଭାବନା ତାହାର ସାକ୍ଷୀ ।

ପ୍ରକୃତପକ୍ଷେ 'ମହାଗୁହ୍ୟା' (ନବ ଭାରତ, ଜୁଲା ୧୯୪୭) କବିତାରେ ଗୁହ୍ୟାଂତର୍ଗତ ଆଲୋକ ପିପାସାରେ ଯେଉଁ ଦାର୍ଶନିକତା ଓ ଭାବ ବ୍ୟାକୁଳତା ପ୍ରକଟିତ ତାହାହିଁ 'ମଂଜରୀ' ଓ 'ମୁକୁଳ'ରେ ରହସ୍ୟବାଦୀ ବ୍ୟଂଜନା ଲାଭକରିଛି । କହିବାକୁ ଗଲେ, କବିଂକ ସମଗ୍ର ରହସ୍ୟବାଦୀ ଭାବାନୁଭବର ମୂଳସ୍ୱର ଏଇ ପଂକ୍ତିରେ ମର୍ମରିତ ।

"କି ଆଲୋକ ପାଇଁ ସତେ ବ୍ୟାକୁଳ ମୋ ଚିତ୍ତ
ହେ ଅଂଧାର ଲୁଚାଇଲୁ କାହିଁ ମୋର ବିତ୍ତ
ପୁଚ୍ଛ ମୋତେ ରୂପରେଖା ? ମାଳତୀର ଗଂଧ
ବହିଆସେ, ତେସନ ହେ ରଚ ମହାଛଂଦ
କାହିଁ ରହେ ମୋ ଆଲୋକ ?"

ଏ ଆଲୋକ ବ୍ୟାକୁଳତା କବିଂକ ସ୍ୱାନୁଭୂତି-ସ୍ୱାକ୍ଷରିତ । "ଆଲୋକ ଲାଗି ଅଂଧାରେ ଜୀବନ ମୁକୁଳୁ" (ଉତ୍ସର୍ଗ-ମଂଜରୀ) — ଆକାଂକ୍ଷାଟି ମଧ୍ୟ ତିମିର ସଂଘର୍ଷଣାଗ୍ରସ୍ତ ମର୍ତ୍ତ୍ୟସତ୍ତାର ଏକ ମାର୍ମିକ ଅଭିପ୍ରାୟ । କବିଙ୍କର ଏ ଆଲୋକାଭିଳାଷ ଓ ଅତୀଂଦ୍ରିୟ-ସଚେତନତା ( "କି ବୁଝିବି ମୁହିଁ ବିଶ୍ୱେ ଏକ ରେଣୁ, ବଜାରେ ବଜାରେ ଲୀଳାମୟ ବେଣୁ ।") (୩୬କ)—ରହସ୍ୟବାଦୀ ଭାବନା ପ୍ରଣୋଦିତ ହେବାରେ ଅଂସଗତ ନାହିଁ । ମାତ୍ର ସେ ଉନ୍ମୁଖତା ଯେଉଁଠି ଉପଲବ୍ଧିହୀନ ଭାବକଳ୍ପନାର ରୂପ-ପ୍ରୟାସ କରିଛି, ସେଠାରେ କାବ୍ୟସ୍ୱରରେ ଅବାସ୍ତବତା, ପ୍ରତ୍ୟୟହୀନତା ଓ ବାହୁଲ୍ୟୋକ୍ତି ସ୍ୱାଭାବିକଭାବେ ଆସିଛି । ରବୀଂଦ୍ର ଭାବଗମ୍ଭୀରତାକୁ ସ୍ପର୍ଶ ନ କରି କେବଳ ତାର ରୂପାନୁଭବକୁ ନେଇ କାବ୍ୟୋକ୍ତି କଲାବେଳେ ଚେଷ୍ଟା ଚେତନାଗତ ବହୁ ଅଂସଗତ, ଭାବଗତ ବହୁ ବିରୋଧାତ୍ମକତା ଓ ଭାଷାଗତ ଅର୍ଥହୀନତା ଜାତ ହୋଇଛି । ଆଲୋଚକ କବି ପ୍ରତାପ ସେନଂକ ମଂତବ୍ୟଟି ଏଠାରେ ପ୍ରଣିଧାନ୍ୟଯୋଗ୍ୟ ଯେ "ରବୀଂଦ୍ରନାଥଂକ ପ୍ରବର୍ତ୍ତିତ ମିଷ୍ଟିସିଜମ୍‌ର ଅନୁକରଣ କରିବା ବିରାଟ ପ୍ରତିଭା ଦ୍ୱାରାହିଁ ସଂଭବ ।" (୩୭) ରବୀଂଦ୍ରନାଥଂକ ମାନବତାବାଦ, ଶାଶ୍ୱତଚେତନା,

(୩୬କ) ଗୀତ ୭ ମଂଜରୀ

(୩୭) "ଆଧୁନିକ ଓଡ଼ିଆ ସାହିତ୍ୟ" ୩୭ଶ ଭାଗ, ୩ୟ ସଂଖ୍ୟା ଜ୍ୟେଷ୍ଠ ୧୩୫୦

Digitized by PPRACHIN, SOA

ଜୀବନଦେବତା ତତ୍ତ୍ୱ ଏବଂ ସର୍ବମୟ ପ୍ରେମଭାବନାକୁ କବି ପଦେ ପଦେ ଗ୍ରହଣ କରିଛନ୍ତି । ମାତ୍ର ସେ ସବୁର ରୂପ ଆବେଦନ ଭାବ ନିବେଦନ ଦୃଷ୍ଟିରୁ ବ୍ୟର୍ଥ ହୋଇଯାଇଛି । ମୌଳିକତା ହରାଇ ଅତିମାତ୍ରାରେ ପ୍ରଭାବଗ୍ରସ୍ତ ଓ ଅନୁକରଣାତ୍ମକ ହେବାରୁ ତାଙ୍କ କାବ୍ୟ-ରୂପର ଏ ଦୁର୍ଦ୍ଦଶା । (୩୮) ଦେଖିବାକୁ ଗଲେ 'ମଂଜରୀ' ଓ 'ମୁକୁଳ'ରେ ଉପସ୍ଥାପିତ ଚିଂତାଧାରାର ରହସ୍ୟଧର୍ମିତା ପ୍ରକୃତରେ ଏକ କାବ୍ୟଗୁଣ ରୂପେ ଯୁଗୀୟ ପାଠକ ମାନସରେ ସ୍ୱୀକୃତ ହୋଇପାରିନଥିଲା । ଏ ଦୃଷ୍ଟିରୁ ନବକିଶୋରଙ୍କୁ ଯଥାର୍ଥ ରହସ୍ୟବାଦୀ କବି ଅପେକ୍ଷା ରହସ୍ୟଭାବ ପ୍ରଭାବିତ କାବ୍ୟକାର ବୋଲି କୁହାଯାଇ ପାରେ ଏବଂ ଏହା ସମସାମୟିକ ଅନେକ କବିଙ୍କ ସମ୍ପର୍କରେ ଅବିକଳ ପ୍ରଯୁକ୍ତ ହୋଇପାରେ । ଏହାର କାରଣ, ଏସବୁ କାବ୍ୟ ଆଭିମୁଖ୍ୟରେ ରହସ୍ୟଧର୍ମିତାର ନିରବଚ୍ଛିନ୍ନତା ବା କ୍ରମାନୁସରଣ ନାହିଁ । କବିଚେତନାରେ ରହସ୍ୟବାଦର ସ୍ପଷ୍ଟ ରୂପ-ଅବବୋଧର ପରିଚ୍ଛନ୍ନତା ନାହିଁ । କାବ୍ୟସ୍ୱରରେ କିଛି ସନ୍ଦେଶ ବା ଅଂଗୀକାର ମଧ୍ୟ ବିରଳ । ଏ ସବୁ ରଚନା ମୁଖ୍ୟତଃ ଆଧିତାତ୍ତ୍ୱିକ ( Metaphysical ) କାବ୍ୟପ୍ରୟାସ ଓ ରହସ୍ୟଭାବ ଅଭାସିତ । ହରିଶ୍ଚନ୍ଦ୍ର ବଡ଼ାଳ, କୁବେର ଦଳାଇ, ସଚ୍ଚି ରାଉତରାୟ ପ୍ରଭୃତିଙ୍କ ପ୍ରାଥମିକ ରଚନାର ଅତୀନ୍ଦ୍ରିୟ କାବ୍ୟଭାବନା ଏହି ଶ୍ରେଣୀୟ । ଯୁଗୀୟ କାବ୍ୟଚେତନାର ଅନୁରୂପ ପ୍ରୟାସ ତାର ମୁଖ୍ୟ ପ୍ରବଣତା ରୂପେ ପରିଦୃଷ୍ଟ ହୋଇଥାଏ ।

## ଦୟାନିଧି ମିଶ୍ର

ସବୁଜ କାଳ ପାଖାପାଖି ଆଉ ଏକ ବିସ୍ମୃତ ସ୍ୱରର କବି ଦୟାନିଧି, ଯାହାଙ୍କ କବିତାରେ ଲକ୍ଷ୍ମୀକାଂତଙ୍କ ରଚନାର ଭାବଦରଦ ଓ ଭାଷାର ଆଂତରିକତା ଉପଲବ୍ଧ । ତାଙ୍କ କବିତାର ରହସ୍ୟବାଦୀ ଆଲାପଟି ମୁଖ୍ୟତଃ ମାର୍ମିକ ପ୍ରଣୟଭାବ ଓ ଅନୁଭୂତିସ୍ନିଗ୍ଧତାରୁ ଉତ୍ସାରିତ । ପ୍ରାଣର ଶାଶ୍ୱତ ଉନ୍ମୁଖତା ଓ ଈଶ୍ୱରଙ୍କ ସହ ପ୍ରୀତି ସମ୍ପର୍କର ଭାବମାଧୁର୍ଯ୍ୟମଣ୍ଡିତ ତାଙ୍କ କବିତା ଦାର୍ଶନିକତା ବା ରହସ୍ୟବାଦୀ ତର୍କଣା ପ୍ରୟାସ ବର୍ଜିତ । କବିଙ୍କ ଅନ୍ୱେଷିତ ପ୍ରିୟ ସକଳ ଐଶ୍ୱରିକ ଗୌରବ ବର୍ଜିତ ନିରୋଳା ଭାବ-ବଂଧୁ ରୂପେ ପ୍ରେମ ଓ ସୌଂଦର୍ଯ୍ୟର ଉପହାର ନେଇ ଦୀନକବିଙ୍କ ହୃଦୟ-ଦ୍ୱାରରେ ଉପଗତ । ଏକାଗ୍ରତା, ଆତ୍ମନିବେଦନ, ପ୍ରତୀକ୍ଷା ଓ ବିରହ ଆକୁଳତାରେ କବିଙ୍କ ଅମର୍ତ୍ତ୍ୟ ପ୍ରଣୟ ସ୍ୱପ୍ନ ଭାବସବଳିତ । 'ବ୍ୟାକୁଳ ବାସନା' (୧୩୩୨ ସାଲ ଚୈତ୍ର ଉ:ସା: ) କବିଙ୍କର ପ୍ରତୀକ୍ଷା ଓ ବିଶ୍ୱାସର ଏକ ସୁଂଦର ରୂପାୟନ । "ଆସିବେ ବୋଲି ତ କହିଯାଇଥିଲେ ରଖିଛନ୍ତି ଏଇ ବାଟ ଜଗାଇ" / "ଅସିବେ ତାଙ୍କର···ସନ୍ଦନ ସାଡ଼ ମୁଁ ଗଲିଣି ଭୁଲି ।" ପ୍ରକୃତରେ କବି ମନରେ ପ୍ରିୟ ଅଦର୍ଶନ ଜନିତ ଆଶଂକା ସଂତର୍ପଣରେ ପ୍ରକାଶିତ । ପୁଣି ବିଶ୍ୱାସର ଦୁର୍ବାରତା ଏକ ସୁଂଦର ମନସ୍ତାତ୍ତ୍ୱିକ ପ୍ରଶ୍ନ ପଚାରିଛି, "ଦୁର୍ବଳ ଯଦି ମୋ ଇଚ୍ଛାର ଶକତି, ଇଚ୍ଛା ଏ ପରାଣେ ଦେଲେ କିପାଇଁ ?" ପ୍ରେମ ସମ୍ପର୍କରେ ଆଶାର ମୂଳ ପର୍ଯ୍ୟଂତ କବି ଅନୁସଂଧାନ କରିଛଂତି, "ଅଭିନ୍ନ ପରାଣ ବୋଲି ସିନା ହୃଦେ ବାନ୍ଧି ଆଶାବନ୍ଧ ରହିଛି ଗ୍ରନ୍ଥି ।"

ଏ ପ୍ରତୀକ୍ଷା ଓ ବାଟଜଗା, ପ୍ରାଣବଂଧୁଙ୍କ ସହ ପ୍ରୀତି ସମ୍ପର୍କ ଓ ବିରହ ଭାବନା 'ରହିଥିବ ବାଟ ଚାହିଁ' ( ୧୩୩୨ ସାଲ ଜ୍ୟେଷ୍ଠ ଉ:ସା: )ରେ ମଧ୍ୟ ରୂପାୟିତ । କବି ସୂଚନା ଦେଇଛଂତି, 'ବଂଧୁ

(୩୮) "ତାଙ୍କ କାବ୍ୟ ଆତ୍ମା ମୌଳିକତା ହରାଇ ଅତିମାତ୍ରାରେ ଗ୍ରସ୍ତ ହୋଇଯାଇଛି ।"
ନିତ୍ୟାନନ୍ଦ ଶତପଥୀ—ସବୁଜରୁ ସଂପ୍ରତିକ-ପୃ. ୧୦୬

Digitized by PPRACHIN, SOA

ବିରହ ଦୁଃଖ ସହ୍ୟ ନପାରି କବି ତାଂକୁ ଭୁଲିଯିବାକୁ ଚାହୁଁଥିଲେ । ମାତ୍ର ସ୍ମୃତିରେ ସମାଗତ ତାଂକ ଉଜ୍ଜ୍ୱଳରୂପ ଏବେ ତାଂକ ପ୍ରେମ ବାସନାକୁ ତୀବ୍ର କରଦେଲା, ଯଦିଓ ଧରା ଦେଲନାହିଁ । ବିସ୍ମରଣ ପାଇଁ କବି ଅନୁତପ୍ତ । ଦେଖାଦେଲେ ପଦଧରି କ୍ଷମା ମାଗି ନଅଂତେ । 'ସମୀର ସଙ୍ଗୀତ' ( ଶ୍ରାବଣ, ୧୩୩୬ ଉ:ସା: )ରେ ସେ ଅପେକ୍ଷାର ଅନୁଭୂତି ବର୍ଣ୍ଣିତ । ଗଗନରେ ମିଶିଯିବା, ପବନରେ ହଜିଯିବାର ଏକ ସ୍ପୃହା ତାଂକ ଅନ୍ତରାନୁଭବରେ ଉଚ୍ଛ୍ୱାସିତ । କବିତାଟିରେ କଳ୍ପନାଧର୍ମିତ୍ୱକୁ କଂଗୁ ଉପେକ୍ଷା କରି ହୁଏ ନାହିଁ । ହୃଦୟର ପ୍ରୀତିପଚ୍ଛିତ ଭାବାଂତରମାନ ଓ ଚେତନାର ଉପଲବ୍ଧି ବୈଚିତ୍ର୍ୟ ତାହାକୁ ରଂଗ ବିଭବଯୁକ୍ତ କରିଛି । ମନନଗାଂଭୀର୍ଯ୍ୟବର୍ଜିତ ଏ ମାର୍ମିକ ସଙ୍ଗୀତମାନ ଏକ ଅଶ୍ରୁସଜଳ ସ୍ନିଗ୍ଧତାପ୍ରାପ୍ତ । ଅରୂପ ଅପ୍ରାପ୍ୟଂକୁ ଆତ୍ମୀୟ ଅଭିଳଷିତ କରି ଦେଖିବାରେ ଅତ୍ୟନ୍ତ ଏ ସହଜ ସରଳସ୍ୱର ଓ ଈଶ୍ୱରଂକ ପ୍ରଣୟାଭିଳାଷ ଜନିତ ଏ ରୂପ କାବ୍ୟ ସଂପାଦନ ଲକ୍ଷ୍ମୀକାଂତଂକ 'ଜୀବନ ସଙ୍ଗୀତ'କୁ ସ୍ମରଣ କରାଇଦିଏ । ଅହଂମୁକ୍ତ ନିର୍ମଳତା ଓ ନିରଭିମାନ ପ୍ରତୀକ୍ଷା ବ୍ୟାକୁଳତାରେ ସଂତପ୍ତ ଏ କବିତାମାନ ନିଶ୍ଚିତଭାବେ ଅଧ୍ୟାତ୍ମ ରୂପାତ୍ମକ ନ ହେଲେ ବି ରହସ୍ୟବାଦୀ ପ୍ରେମ ଭାବନାତ୍ମକ ରୂପେ ଗ୍ରହଣୀୟ । ଏ ପ୍ରେମ ପାର୍ଥିବ ସଂପର୍କର ଅପାର୍ଥିବ ଉତ୍ତରଣ ନୁହେଁ । ବରଂ ସତ୍ତା ସହ ପାର୍ଥିବ ଜୀବନର ପ୍ରୀତି ଚେତନାର ଏହା ଭାବ-ଉତ୍ତରଣ ମାତ୍ର ।

ଅନୁରୂପ ସ୍ୱଗତାଳାପ ଓ ଭାବଚେତନା ସାମଗ୍ରିକଭାବେ କବି ଘନଶ୍ୟାମ ମହାଂତିଂକ 'ଅର୍ଚ୍ଚନା' ( ୧୩୩୬ / ୩୩ କାର୍ତ୍ତିକ ଉ:ସା: ) ଓ ଅନ୍ୟ କେତେକ କବିତାରେ ମଧ୍ୟ ପରିଦୃଷ୍ଟ ।

ନିର୍ମଳାଦେବୀ—

ବ୍ୟକ୍ତିଗତ ପ୍ରେମଭାବନା ଓ ଅଲୌକିକ ପ୍ରୀତିସାଧନାରେ ଯେ ରୂପାଦର୍ଶଟି ରହସ୍ୟବାଦୀ ଭାବାନୁକୂଳତା ଲଭିକରି ଓଡ଼ିଆ ସାହିତ୍ୟରେ ବିସ୍ତାରିତ ଓ ପଲ୍ଲବିତ, ନିର୍ମଳାଦେବୀଙ୍କ 'ଝଙ୍କାର' ଓ 'ସୀମାନ୍ତେ' ସେହି ସାଧନା ସଂବାଦ ଗାନ ମୁଖର । ତାଙ୍କ କବିତାର ପାର୍ଥିବତାମୂଳକ ଗ୍ରୁଷ୍ଟାବାଦୀ ରହସ୍ୟଗାନ ପରି ବ୍ୟକ୍ତିଗତ ପ୍ରଣୟାନୁଭବର ବ୍ୟଥାବେଦନା, ଚିରନ୍ତନ ପ୍ରେମ ଅଭିଳାଷର ଆଶାବାଦିତା, ପୁଣି ଚିରବିରହର ସାଧନା ଯନ୍ତ୍ରଣା ନାୟିକବଂକ ସ୍ୱରରେ ବିମୂର୍ଚ୍ଛିତ ।

ନିର୍ମଳା ଦେବୀଂକ କାବ୍ୟସଂବୋଧିତ ପ୍ରିୟତମ ଅନେକତ୍ର ଦେହଧାରୀ, ଯଦିଓ ଦେହୋତ୍ତର ପ୍ରୀତି ସାଧନାର ସେ ବିଦେହୀ ଅବଲଂବନ । ଏହା ସ୍ପଷ୍ଟ ଯେ, ଅରୂପ ଦେବତାର ସମ୍ବୋଧନ ସତ୍ତ୍ୱେ ତାଂକ ପ୍ରଣୟ ଅରୂପ-ସମର୍ପିତ ନୁହେଁ । ମାତ୍ର ସେ ପ୍ରେମ ସାଧନା ବିରହର ଶୂନ୍ୟ-ସ୍ୱରୂପରେ ଯାହା ରୂପପର ପ୍ରଣୟର ରୂପୋତ୍ତରତାକୁ ଆସ୍ପୃହା କରେ । ସାଧନାର ପରିସର ମିଳିଲେ ବିରହ ମଧ୍ୟ ନିର୍ମଳ ରହସ୍ୟାନୁଭୂତି ଉତ୍ପନ୍ନ କରିପାରେ, ଏ ପ୍ରେମ-ମନସ୍ତତ୍ତ୍ୱର ପରିଚୟ ହୋଫୋ, ଖ୍ରୀଷ୍ଟୀନା ରୋକେଟି କୁଂତଲାକୁମାରୀ, ମହାଦେବୀ ବର୍ମାଂକ କାବ୍ୟସ୍ୱରରେ ଉପଲବ୍ଧ । ବିରହର ଶୂନ୍ୟତା ଭିତରେ କବି ନିର୍ମଳାଂକ ନିରାଶ୍ରୟ ପ୍ରେମ ଯେଉଁ ଆଶା ରୂପର ସମ୍ମୋହନ ଭିତରେ ମରଣସ୍ୱପ୍ନ ଜନ୍ମବ୍ରତକୁ (୩୯) ଅପେକ୍ଷା କରି ରହିଛି, ତାହାହିଁ ତାଂକ ପ୍ରଣୟର ରୂପୋତ୍ତରତା ଓ ଲୋକୋତ୍ତରତା ।

କବିଂକ କବିତା ସଂକଳନ 'ଝଙ୍କାର'ରେ ପ୍ରେମର ପାର୍ଥିବତା ପ୍ରକଟିତ, ତାର ଅପାର୍ଥିବ ଅଭିଳାଷ ମଧ୍ୟ ବ୍ୟଂଜିତ । 'ସୀମାନ୍ତେ'ରେ ଏ ଅଭିଳାଷ ପ୍ରବଳ, ଗମ୍ଭୀର ଓ ଭାବ ନିଗୂଢ଼ । କବିତା-ଗୁଡ଼ିକ ସ୍ୱାଭାବିକ୍ ଦୁଃଖଭାବନାପୀଡ଼ିତ । ଅନ୍ୟରାଜ୍ୟ, ଅଦେଖା ପ୍ରଣୟୀ, ଅସଫଳ ସ୍ୱପ୍ନ-ଉଚ୍ଚାଟନର ସ୍ୱର ମର୍ମରିତ । ପ୍ରେମର ସୁପ୍ତ ବିକଳତା ପର୍ଯ୍ୟାପ୍ତ । ଏକ ସୁଦୂର ଦେଶରେ ଚିର ମିଳନର ଆନନ୍ଦଗାନ

(୩୯) "ପୁଣି ତା ଜଗାଇବ ନବୀନ ଅନୁରାଗେ ମରଣସ୍ୱପ୍ନ ଜନ୍ମବ୍ରତରେ ।" ଝଙ୍କାର—ପୃ. ୧୭

Digitized by PPRACHIN, SOA

କବିଂକ ବିରହତପ୍ତ ପ୍ରାଣକୁ ଅପେକ୍ଷା କରି ରହିଛି । ପ୍ରେମ ସମ୍ପର୍କରେ ବିରହଜ୍ୱାଳା ଓ ଶୂନ୍ୟତା ସତ୍ତ୍ୱ ମର୍ତ୍ତ୍ୟ-ପ୍ରୀତିରେ ଯେଉଁ ଐଶ୍ୱର୍ଯ୍ୟ ଗୌରବ ଆଣେ, ଅମର୍ତ୍ତ୍ୟଦେବତା ସେ ସୌଭାଗ୍ୟ ବଂଚିତ ବୋଲି କବି ଖେଦୋକ୍ତି କରିଛଂତି । ଧରିତ୍ରୀବାସୀର ଏ ବିରହ ଅହଂକାର ରହସ୍ୟବାଦୀ ପ୍ରେମ ମନସ୍ତତ୍ତ୍ୱରେ ଏକ ଗଭୀର ଆଶ୍ୱାସନା ଆଣି ଦେଇଥାଏ । ଦେଖିବାକୁ ଗଲେ, ପ୍ରାୟଶଃ ଦେହାଭିଲାଷ ନିବଦ୍ଧ ପ୍ରଣୟ କ୍ରମଶଃ ମାନସ ସ୍ତରର ଲାଭ କରି ଅତୀଂଦ୍ରିୟତାର ଉଦ୍‌ବୋଧନ ମାଗଥାଏ । ଏ ଉତ୍ତରଣ ପ୍ରୟାସର ସାମର୍ଥ୍ୟ ଓ ସଂକଳ୍ପ ବହନ କରୁଥିବାରୁ ପ୍ରେମ ଆଧ୍ୟାତ୍ମିକ ସାଧନର ସଫଳତମ (ଯଦିଓ ଦୁଃସାଧ୍ୟତମ) ମାର୍ଗ ରୂପେ ସ୍ୱୀକୃତି ଲାଭ କରିଛି । ଆଲୋଚ୍ୟ କବିଂକ ରଚନାର ସୂକ୍ଷ୍ମ ସଜଳତା, ଆଶା ଆତୁରତା, ସ୍ୱପ୍ନାଚ୍ଛନ୍ନତା ଓ ଅନ୍ତର୍ମଗ୍ନତା ତାଙ୍କ ହୃଦୟର ପ୍ରୀତି ସାଧନାକୁ ଦେବତାର ସାଧନାରେ ରୂପାନ୍ତର କରିବାର ଆନ୍ତରିକତାଟି ସୁସ୍ପଷ୍ଟ ।

---

Digitized by PPRACHIN, SOA

# ଚତୁର୍ଥ ପରିଚ୍ଛେଦ

## ଉପସଂହାର :

### ଯୁଗୀୟ-କବିତାର ରହସ୍ୟବାଦୀ ଆଭିମୁଖ୍ୟ ଓ ପରିଣତି

ଆଧୁନିକ କବିତାର ରହସ୍ୟବାଦୀ ଆଭିମୁଖ୍ୟ ସମ୍ପର୍କରେ ପ୍ରଖ୍ୟାତ ହିନ୍ଦୀ କବି ମହାଦେବୀ ବର୍ମାଙ୍କ ନିମ୍ନ ମନ୍ତବ୍ୟଟି ପ୍ରଣିଧାନଯୋଗ୍ୟ । 'ସାଂଧ୍ୟଗୀତ'ର ଉପକ୍ରମଣିକାରେ ତାଂକର ଅନୁଶୀଳନ, "ଆଜ ଗୀତମେ ହମ ଜିସେ ନୟେ ରହସ୍ୟବାଦକେ ରୂପମେ ଗ୍ରହଣ କର ରହେ ହେଁ...ଉସନେ ପରାବିଦ୍ୟାକୀ ଅପାର୍ଥିବତା ଲୀ । ବେଦାନ୍ତକେ ଅଦ୍ୱୈତକୀ ଛାୟାମାତ୍ର ଗ୍ରହଣ କୀ, ଲୌକିକ ପ୍ରେମସେ ତୀବ୍ରତା ଉଧାରଲୀ ଔର ଇନ ସବ୍‌କୋ କବୀରକେ ସାଂକେତିକ ଦାଂପତ୍ୟ ଭାବ ସୂତ୍ରମେ ବାଁଧକର ଏକ ନିରାଲେ ସ୍ନେହସଂବଂଧକୀ ସୃଷ୍ଟି କରଡାଲୀ ଯୋ ମନୁଷ୍ୟକେ ହୃଦୟକୋ ଆଲଂବନ ଦେସକା । ଉସେ ପାର୍ଥିବ ପ୍ରେମକୋ ଉପର ଉଠାସକା ତଥା ମସ୍ତିଷ୍କକୋ ହୃଦୟ ଔର ହୃଦୟକୋ ମସ୍ତିଷ୍କ ବନାସକା । ଇସମେ ସଂଦେହ ନହିଂ କି ଇସ୍ ବାଦନେ ରୁଢ଼ି ବନ ବହୁତୋଁ କୋ ଭ୍ରମମେ ଡାଲ ଦିୟା ହୈ । ପରନ୍ତୁ ଜିନ୍ ଇନେ ଗିନେ ବ୍ୟକ୍ତିୟୋଂନେ ଇସେ ବାସ୍ତବମେ ସମଝା ଉନହେ ଇସ ନିହାର ଲୋକମେ ଭୀ ଗନ୍ତବ୍ୟମାର୍ଗ ସ୍ପଷ୍ଟ ଦିଖାଇ ଦେସକା । ଇସ କାବ୍ୟଧାରା କୀ ଅପାର୍ଥିବ ପାର୍ଥିବତା ଔର ସାଧନାକୀ ନ୍ୟୂନତାକୋ ସହଜ ହୀ ସବକୋ ଅପନୀସେ ଆକର୍ଷିତ କର ଲିୟାହୈ, ଅତଃ ଯଦି ଉସକା ରୂପ କୁଛ ବିକୃତ ହୋତା ଜା ରହା ହୋ ତୋ ଆଶ୍ଚର୍ଯ୍ୟ କୀ ବାତ୍ ନହୀ ।"

ସ୍ୱଳ୍ପସଂଖ୍ୟକ ବିଦଗ୍ଧ କବିଂକ ରଚନାଂକୁ ବାଦ ଦେଇ ରହସ୍ୟବାଦର ଏଇ 'ରୁଢ଼ିଗତ' କାବ୍ୟ-ପ୍ରୟୋଗ ଓଡ଼ିଆ କବିତା କ୍ଷେତ୍ରରେ ଯେଉଁ ବିଶୃଙ୍ଖଳା ସୃଷ୍ଟି କରିଛି, ତାହା ସ୍ୱାଭାବିକ ସମସାମୟିକ ଓ ପରବର୍ତ୍ତୀ ବହୁ ଆଲୋଚକଂକ ଦୃଷ୍ଟି ଆକର୍ଷଣ କରିଛି । ନିର୍ଦ୍ଦିଷ୍ଟ ଭାବନାଭୂତ ଓ କାବ୍ୟ-ଅଂଗୀକାର ବିହୀନ ଲକ୍ଷ୍ୟହୀନ ଅଗାଧ୍ୟ ବିଳାସିତା ରହସ୍ୟବାଦୀ ଅଂଗସଜ୍ଜାର ଯେ ବ୍ୟାକୁଳତା ପ୍ରକାଶ କରିଛି, ତାହା ଏଇ ଅସଫଳ କାବ୍ୟ ପ୍ରୟାସର ମୂଳ କାରଣ ।

ଦେଖିବାକୁ ଗଲେ, ମାନବ ପ୍ରାଣର ସ୍ୱାଭାବିକ ପ୍ରବଣତା ଅଗାଧ୍ୟ ଉନ୍ମୁଖତା । ସାହିତ୍ୟରେ ଏ ଉନ୍ମୁକ୍ତିର ବିଚରଣକ୍ଷେତ୍ର ଅବାଧ । ବସ୍ତୁନିଷ୍ଠ ସାହିତ୍ୟ ତୁଳନାରେ ଭାବନାତ୍ମକ ରଚନାରେ ଅନିବାର୍ଯ୍ୟ ଅନ୍ତର୍ମଗ୍ନତା ସ୍ୱାଭାବିକ ଭାବେ ଅଗାଧ୍ୟତାକୁ ଭାବ-ଉପଜୀବ୍ୟ କରିବାର ପର୍ଯ୍ୟାପ୍ତ ଅବକାଶ ସୃଷ୍ଟି କରେ । ଭାବ ଅନ୍ତଃସରଣର ଏ ସୁଯୋଗ ଅଗାଧ୍ୟତାର ଅଳରେ ଓ ଆଧ୍ୟାତ୍ମିକ ତଥା ( ) ଦାର୍ଶନିକତାର ଅନ୍ତରାଳରେ ସମୟ ବିଶେଷରେ କେବଳ କଳ୍ପନା ଅତିରେକ ମଧ୍ୟ କହିପାରେ; ରହସ୍ୟବାଦୀ କାବ୍ୟଭାବନା ପକ୍ଷରେ ଏହାହିଁ ସବୁଦେଶ ସବୁକାଳର ପ୍ରଧାନତମ ସତର୍କବାଣୀ । କାବ୍ୟୋପଲବ୍‌ଧିଟି ଯଦି ଭାବୋପଲବ୍‌ଧିର ବିଶୁଦ୍ଧତା ଲାଭ କରିନଥାଏ; ଅନ୍ତରାନୁଭୂତିର ସତ୍ୟ ପରୀକ୍ଷିତ ହୋଇନଥାଏ,

---

(୧) ଅପନୀବାତ୍—ସାଂଧ୍ୟଗୀତ ପୃ. ୭, ୮

Digitized by PPRACHIN, SOA

ତେବେ ପାରମାର୍ଥିକ ଓ ରସଚର୍ଯାର ଉପଲକ୍ଷ୍ୟରେ ଯେତେ ରହସ୍ୟାଚ୍ଛନ୍ନତାର ଦୁର୍ବୋଧ ବାକ୍‌ବିଳାସ କରୁପଛେ, ପ୍ରକୃତ ମିଷ୍ଟିକ-ରଚନାର ସାର୍ଥକତା ଲାଭ କରିପାରିବ ନାହିଁ । କାବ୍ୟ-ସତ୍ୟ ଅନୁସତ୍ୟ ବା ମୂଳସତ୍ୟର ବିରୋଧୀ ନୁହେଁ, ବରଂ ସତ୍ୟର କଳାତ୍ମକ ପ୍ରକାଶ-ରୂପ । ରହସ୍ୟବାଦୀ ଅନୁଭବ ଓ କାବ୍ୟ-ଉପଲବ୍ଧ ସୌନ୍ଦର୍ଯାନୁଭବର ମୂଳ ଉତ୍ପତ୍ତି ଭିନ୍ନ ନୁହେଁ । (୨) ଏବଂ ଅନୁରାଗାନୁଭୂତିର ସମର୍ଥନ ବ୍ୟତୀତ ସେ କାବ୍ୟାନୁଭୂତିର ରହସ୍ୟାତ୍ମକତା ଭାବସିଦ୍ଧ ହୋଇନପାରେ । (୩) ଆଧ୍ୟାତ୍ମିକ ଉପଲବ୍ଧି ଓ ପ୍ରେମ ସୌନ୍ଦର୍ଯର ଉପଲବ୍ଧି ଭିତରେ ଚେତନା ଉତ୍ତରାଂଶର ଯେଉଁ ସମ୍ବାଦଟି ସଙ୍ଗୋପିତ, ତାହାହିଁ ରହସ୍ୟବାଦର ଅତୀନ୍ଦ୍ରିୟ-ଉପଲବ୍ଧି ଏବଂ ସେ ସାଧନା ସମ୍ବାଦରେ ପ୍ରତ୍ୟକ୍ଷତା-ବର୍ଜିତ ଅତୀନ୍ଦ୍ରିୟ କାବ୍ୟଭାବନା ପ୍ରକୃତ ରହସ୍ୟବାଦୀ ରଚନାରୂପେ ବିବେଚିତ ନୁହେଁ ।

ଓଡ଼ିଆ କବିତାର ଉନ୍ମେଷ ଓ ବିକାଶକାଳଠାରୁ ଅଦ୍ୟାବଧି ଭାବନିଷ୍ଠ ଓ ଅନୁଭବ-ବିଶିଷ୍ଟ କେତୋଟି ମାତ୍ର କବିଙ୍କ ରଚନାକୁ ବାଦଦେଲେ ଯୁଗଧର୍ମ ରୂପେ ଅବିର୍ଭୂତ ଏ କାବ୍ୟଚେତନା ଅଧିକାଂଶ ଆଧୁନିକ କବିଙ୍କ କ୍ଷେତ୍ରରେ ବିଫଳ ରସଚର୍ଯାରେ ପର୍ଯବସିତ ହୋଇଛି । ଉନ୍ମେଷ ଯୁଗ ନବଜାଗରଣ ଯୁଗ, ସବୁଜ ଓ ସବୁଜୋତ୍ତର ଚେତନାରେ ରୋମାଣ୍ଟିକ ଭାବଧର୍ମ ସହ ତାର ଆନୁଷଂଗିକ କାବ୍ୟଚେତନା ରୂପେ ଓ ଅଧ୍ୟାତ୍ମ ପରଂପରାର ସମର୍ଥନରେ ରହସ୍ୟବାଦ ଯେଉଁ ସ୍ୱରୂପରେ ଓଡ଼ିଆ କବିତାରେ ଆତ୍ମପ୍ରକାଶ କରିଛି, ଅନୁକୂଳ ବାତାବରଣ ଲାଭ ଓ ଅନୁକରଣରେ କବିମନର ପ୍ରବଳ ଆସକ୍ତି ଏହାକୁ ବହୁ କ୍ଷେତ୍ରରେ ଯେ ଏକ ବିଫଳ କାବ୍ୟାନୁଚିନ୍ତାରେ ପରିଣତ କରିଛି ତାହାହିଁ ତତ୍କାଳୀନ ସାହିତ୍ୟରେ ବିଶେଷକରି ସବୁଜକାଳରେ ଭାବସ୍ପଷ୍ଟତ୍ୱ ଓ ବିକାଶ ବିରୋଧର କାରଣ ରୂପେ କାବ୍ୟ-ଚିନ୍ତକମାନଙ୍କ ଆକ୍ଷେପ ଏବଂ ଉଦ୍‌ବେଗର ଯଥାର୍ଥ କାରଣ ହୋଇଥିଲା ।

ଏ ବିଫଳତାର ହେତୁ ଅନୁସଂଧାନ କରିଯାଇପାରେ । ଯଥା—

(୧) ମଧୁସୂଦନଙ୍କ ରଚନାର ମେଟାଫିଜିକାଲ ଜିଜ୍ଞାସା ଓ ମନନଶୀଳତା ଯେଉଁ ଆତ୍ମାନୁଚିଂତନର ଗଭୀରତା ଏବଂ ଉପଲବ୍ଧିରୁ ଉଚ୍ଚାରିତ, ପ୍ରଚଳିତ କାବ୍ୟସ୍ୱରର ଲଘୁ ଭାବତରଳତା ଭିତରେ ତାହା ମିଳେନାହିଁ ।

(୨) ରବୀନ୍ଦ୍ରନାଥଙ୍କ କାବ୍ୟଚେତନାରେ ବ୍ୟଂଜିତ ସୀମା-ଅସୀମର ସମ୍ପର୍କ ଓ ଇନ୍ଦ୍ରିୟରୁ ଇନ୍ଦ୍ରିୟାତୀତର ସାଧନା-ରହସ୍ୟ ଯେଉଁ ଅନ୍ତରୋପଲବ୍ଧିର ଅପେକ୍ଷା ରଖେ, ଏ ରହସ୍ୟଧର୍ମିତା ଯେଉଁ ଭାବଦର୍ଶୀଳ ଚେତନାର ସ୍ୱୀକୃତି-ସାମର୍ଥ୍ୟ ଉପରେ ନିର୍ଭର କରେ, ଭାବ-ସାମଂଜସ୍ୟ ସ୍ଥାପନ କ୍ଷେତ୍ରରେ ଯେଉଁ ମାନସିକ ଏକାଗ୍ରତା ଓ ଲକ୍ଷ୍ୟଦୃଢ଼ ଆନୁଗତ୍ୟ-ଅଚଳତା ଦାବୀକରେ, ତାହା ଓଡ଼ିଆ ସାହିତ୍ୟର ତତ୍କାଳୀନ ଅନୁକରଣ ପିପାସୁ ଭାବଚଂଚଳ ତରୁଣ କାବ୍ୟ-ମାନସ ନିକଟରେ ସୁସାଧ୍ୟ ନଥିଲା ।

---

(2) "I would argue that there is no fundamental difference between the asthetic experience and the mystical experience.
—Wilson-Poetry and Mysticism' Colin P. 16

(3) "The surest criterion of mysticism is the reality of the experience as enjoyed by the mystic himself."
Ranade—'The Pathway to God'—P. 2

Digitized by PPRACHIN, SOA

(୩) ପାଶ୍ଚାତ୍ୟ ମେଟାଫିଜିକାଲ ଓ ରୋମାଣ୍ଟିକ ସାହିତ୍ୟର ଅତୀନ୍ଦ୍ରିୟ ଚେତନା ଏ କାବ୍ୟସ୍ୱରକୁ ଅନୁପ୍ରାଣିତ କରିଥିଲେ ବି ସେ ଅତୀନ୍ଦ୍ରିୟର ଅନ୍ୱେଷଣରେ ନିଷ୍ଠା ଓ ଆନ୍ତରିକତାର ପରିଚୟ ମିଳେନାହିଁ । ପ୍ରକୃତି ଓ ପୃଥିବୀ, ସୌନ୍ଦର୍ଯ୍ୟ ଓ ପ୍ରେମ, ଏ ସବୁର ରୂପ ଆସ୍ୱାଦନ ଓ ରସଗ୍ରାହିତା ସତ୍ତ୍ୱେ କବିଚେତନାରେ ଅତୀନ୍ଦ୍ରିୟ ଉତ୍ତରଣର ଯଥାର୍ଥ ଚିହ୍ନ ମିଳେନାହିଁ । ଇଂରାଜୀ କାବ୍ୟଭାବନାର ପର୍ଯ୍ୟାପ୍ତ ଅନୁସରଣ ରହିଥିଲେ ବି ପ୍ରକୃତପକ୍ଷେ ସେହିପରି ଅତୀନ୍ଦ୍ରିୟ ଉପଲବ୍ଧି ବା ରୂପାନୁଭବର ରହସ୍ୟ ସଙ୍କେତ ଏ ରଚନାମାନଙ୍କରେ ଦୁର୍ଲଭ ।

ବରଂ ମନେହୁଏ, ରୋମାଣ୍ଟିକ ବିଷାଦବାଦ, ପ୍ରେମସ୍ୱାଚ୍ଛନ୍ଦ୍ୟର ଅଭିଳାଷ ଓ ଦୂରକଳ୍ପିତ ସୁଖ ପ୍ରତି ଏକ ବସ୍ତୁବ ବିମୁଖ ମୋହାସକ୍ତି ଏବଂ ଅପ୍ରାପ୍ତର ବିଫଳ ବିଧୁରତା ଏ ପ୍ରକାର କାବ୍ୟଭାବନାକୁ ରହସ୍ୟବାଦର ଛଳନାରେ ପଳାୟନପରହିଁ କରିଛୁ । ତେଣୁ ଏ କାବ୍ୟସଂବାଦରେ ଅମର୍ତ୍ତ୍ୟ ଜୀବନର ଅଭିଳାଷଟି ବ୍ୟଞ୍ଜିତ ଥିଲେ ବି ସାଧନା-ସଂବାଦ ଓ ଉତ୍ତୀର୍ଣ୍ଣ-ଉପଲବ୍ଧିର ସଫଳଚିହ୍ନ ଦେଖିବାକୁ ମିଳେନାହିଁ ।

(୪) କୁହାଯାଇପାରେ, ପାରଂପରିକ ଭାରତୀୟ ଅଧ୍ୟାତ୍ମଭାବନା ପ୍ରାୟଶଃ ମର୍ତ୍ତ୍ୟକୁ ଅମର୍ତ୍ତ୍ୟରୁ, ଦେହକୁ ବିଦେହରୁ ଭିନ୍ନ ଓ ସ୍ୱତନ୍ତ୍ରବନ୍ଧାନ ଦେଖିଆସିଛୁ ଏବଂ ତାର ଅପାର୍ଥିବ-ସାଧନାରେ ପାର୍ଥିବ-ବର୍ଜନ ଅନିବାର୍ଯ୍ୟ ହୋଇପଡ଼ିଛୁ । ମାତ୍ର ଜ୍ଞାନ-ପ୍ରୌଢ଼ି ଭାରତୀୟ ମାନସର ସେ ପରିଣତ ଓ ପରିପକ୍ୱ ଦର୍ଶନରେ ତିତିକ୍ଷା ମୁମୁକ୍ଷାର ଯେଉଁ ଅର୍ଥଦ୍ୟୋତି ଓ ଭାବ-ଗାମ୍ଭୀର୍ଯ୍ୟ ବିଦ୍ୟମାନ, ଶଂସିତ କାଳର ଅପରିପକ୍ୱ କାବ୍ୟଚେତନାରେ ତାହା ଭିନ୍ନ ଅର୍ଥ ଓ ଭିନ୍ନ ରୂପ ପ୍ରତୀତି ଲାଭ କରିଛୁ । କେବଳ ପାର୍ଥିବ ଧର୍ମ ବର୍ଜନ ଓ ମୃତ୍ୟୁ-ଶ୍ରାନ୍ତ ଜୀବନର ଏକ କଳ୍ପିତ ଚିରସୁନ୍ଦରର ସ୍ୱପ୍ନରାଜ୍ୟ ସହ ସେ ଅରୂପଦେଶ ଯେ ରୂପାତ୍ମୀକରଣ ( Identification ) ଲାଭକରିଛୁ, ଏ କାବ୍ୟସ୍ୱରରେ ସେଥିପାଇଁ ସ୍ୱର୍ଗ ଆରପାରି, ଦୂରଦେଶ, ମେଘଲୋକକୁ ଅପସୃତ । ଏ ନିର୍ଦ୍ଦିଷ୍ଟ ଶବ୍ଦ ଚୟନର ପ୍ରବଣତା ଭିତରେ ତରୁଣମନର ସୁଖାଭିଳାଷମୟ ( hedonistic ) କଳ୍ପିତ ପ୍ରଣୟାବେଗରହିଁ ଉତ୍କଣ୍ଠା ପ୍ରକଟିତ । ଏ ଅନ୍ୟଦେଶ, ମେଘଲୋକ ଓ ପୂର୍ବ ପ୍ରଣୟସ୍ମୃତି ସହ ଯେଉଁ ରହସ୍ୟ ପ୍ରତୀତି ବିଦ୍ୟମାନ, ତାହା କଳ୍ପନା ଲୋକର ଅସ୍ପଷ୍ଟତା ଜନିତ ହୋଇପାରେ, ଯଥାର୍ଥ ମିଷ୍ଟିକ୍ ଉପଲବ୍ଧି ଅନୁସ୍ୟୂତ ନୁହେଁ । ଆଲୋଚକ ଡ ରାମପ୍ରସାଦ ମିଶ୍ର କହନ୍ତି, "ସଚ୍ଚା ରହସ୍ୟବାଦୀ ଉପପାର ଜାନେଙ୍କା କଳ୍ପନା ତୋ ଦୂର, ମୁକ୍ତିକୋ ଭି ଲଲକାରଣ ହୁଆ ଦୃଷ୍ଟିଗୋଚର ହୋତାହୈ ।" (୪) କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ ଏବଂ କବୀର, ତୁଳସୀ, ମୀରା ପ୍ରଭୃତିଙ୍କ କର୍ମସାଧନାର କ୍ଷେତ୍ର ଏଇ ପାର୍ଥିବ ଜୀବନ ।

ମନେହୁଏ ପ୍ରାକ୍-ସବୁଜ ସ୍ୱର୍ଗ ଓ ମୃତ୍ୟୁର କାବ୍ୟାଭିଳାଷ ସବୁଜ ଚେତନାର ସୁଦୂରାସକ୍ତି ଓ ପଳାୟନପରତା ରୂପେ ପ୍ରକାଶିତ । ପ୍ରଥମୋକ୍ତ କାବ୍ୟଚେତନାରେ ମୁମୁକ୍ଷା ଓ ପାରଂପରିକ ପାରଲୌକିକ ଭାବନାର ବଳବତ୍ତରତା ପରିଲକ୍ଷିତ । ଭକ୍ତ ଗଦ୍‌ଗଦତା ଏହାର ପ୍ରମୁଖ ସ୍ୱର ।

---

(୪) "ବିଶ୍ୱର ନାନାବିଧ ସତ୍ୟ ତଥା ତତ୍ତ୍ୱ ପଶ୍ଚାତରେ ଧାବମାନ ହୋଇ ମାନବ ଜୀବନର ଗଭୀର ରହସ୍ୟ ଉପଲବ୍ଧି କରିବାରେ···ଜୀବ ଓ ଜଗତର ଇଶ୍ୱରଙ୍କ ସହ ସଂବଂଧ ନିର୍ଣ୍ଣୟ କରିବାରେ ପ୍ରୟାସୀ ହୋଇ ଦାର୍ଶନିକତାର ପରିଚୟ ଦେବା ଯେପରି ସବୁଜ ଯୁଗର କବିମାନଙ୍କର ଗୋଟାଏ ଉଦ୍ଦେଶ୍ୟରେ ପରିଣତ ହୋଇଥିଲା ।

କାହ୍ନୁ ଚରଣ ମିଶ୍ର, ଦୃଷ୍ଟି ଓ ସୃଷ୍ଟି—ପୃ. ୨୦୪

Digitized by PPRACHIN, SOA

ଦ୍ୱିତୀୟତଃରେ ପ୍ରୀତିସମ୍ପର୍କନାହିଁ ଏ ଅତୀନ୍ଦ୍ରିୟ ଉନ୍ମୋଚନର ହେତୁରୂପେ ଆବିର୍ଭୂତ । ମାତ୍ର ଏ ପ୍ରେମରେ ଧାରଣ ଓ ଗ୍ରହଣ ଅପେକ୍ଷା, ମୁକ୍ତି ଦାନ ଓ ସମର୍ପଣ ତୁଳନାରେ, ପ୍ରାପ୍ତି ଓ ଉପଭୋଗର ଆକୁଳତା ଅଧିକ । ପଳାଇଯିବା, ଉଡ଼ିଯିବା, ଭାସିଯିବା, ଭୁଲିଯିବା, ସ୍ୱପ୍ନଦେଖିବା ପ୍ରଭୃତି ବାସ୍ତବ-ବିମୁଖ ମୋହାଚ୍ଛନ୍ନତା ଭିତରେ ରହସ୍ୟବାଦୀ ସାଧନା କ୍ଷୀଣକଣ୍ଠ ଓ ନିଷ୍ପ୍ରଭ ହୋଇଯାଇଛି । ରହସ୍ୟବାଦର ସୁଦୂରଧାମ ଓ ଯାତ୍ରାଭିସାରର ଧାରଣାଟି ଏ କାବ୍ୟଚେତନାରେ ସୁସ୍ପଷ୍ଟ ନୁହେଁ । ତେଣୁ ଏ ଭାବଗତ ଓ ଭାଷାଗତ ଅସ୍ପଷ୍ଟ ଦୁର୍ବୋଧତା । ଏ କଳ୍ପିତ ସ୍ୱର୍ଗଲୋକପାଇଁ କୌଣସି ଆଧ୍ୟାତ୍ମିକ ସାଧନା ତ ଦୂରର, ଏପରିକି ଅତୀନ୍ଦ୍ରିୟ ପ୍ରେମ ସୌନ୍ଦର୍ଯ୍ୟର ଭାବଗତ ବା ରସଗତ କଳାତ୍ମକ ସାଧନା-ସଂବାଦ ମଧ୍ୟ ଏଂସିତ କାବ୍ୟ-ଭାବନାରେ ଦୁଷ୍ପ୍ରାପ୍ୟ । ଏ 'ଅମର୍ତ୍ତ୍ୟ' ଖୁବ୍ ବେଶିରେ ଚାଳିତାସଂକ ଅଳକାପୁର କେବଳ କଳ୍ପନା-ସାଧ । ଦୂର ଆକାଶ, ନିରୁଦ୍ଦେଶ୍ୟ ଆନନ୍ଦ, ଦୁର୍ବୋଧତା, ଅସ୍ପଷ୍ଟତା ଆଳରେ, ରହସ୍ୟବାଦୀ ଛଳନା ତଳେ ଯେ ସ୍ୱପ୍ନବିଳାସ ଆତ୍ମଗୋପନ କରିଛି ଏବଂ ଏ ପଳାୟନପରତା ଯେ ରହସ୍ୟବାଦୀ ଶାଶ୍ୱତଧାମର ମର୍ମ ଉଦ୍‌ଘାଟନ ପାଇଁ ସମର୍ଥ ହୋଇପାରିନାହିଁ, ଏହା ସୁସ୍ପଷ୍ଟ ।

ଅତଏବ ଏହା ସ୍ୱାଭାବିକ ଯେ, ଯୁଗାନ୍ତରର ବାସ୍ତବବାଦୀ କାବ୍ୟ ପ୍ରତିକ୍ରିୟା ଏ ଭାବପ୍ରବଣତାକୁ ନାପସନ୍ଦ କରିବ । ମିଥ୍ୟା ସ୍ୱପ୍ନ, ମର୍ତ୍ତ୍ୟଭୀରୁ, ଆଳସ୍ୟଜଡ଼ିତ, ଗଡ଼ଡ୍ଡାଳ ଓ ଦୁର୍ବଳ ବୋଲି କଟାକ୍ଷ କରିବ । (*) ବାସ୍ତବର ସମାଧାନ ପ୍ରୟାସ ନକରି ଅବାସ୍ତବତା ଭିତରେ କେବେ କେଉଁ ଯୁଗରେ ବି ମୁକ୍ତିର ସନ୍ଧାନ କେହି କରିପାରିନାହିଁ ? (୬) ଦୂର ଅତୀତ ବା ନଥିବା ଅଜ୍ଞାତରେ ସ୍ୱପ୍ନମଗ୍ନ ରହି କିମ୍ବା ଅନାଗତର ଭବିଷ୍ୟତ ଗର୍ଭରେ ଆତ୍ମଗୋପନ କରି ଉପସ୍ଥିତ କାଳକୁ କେବେ ଫାଙ୍କି ହୁଏ ନାହିଁ । ସତ୍ୟକୁ ଚିରନ୍ତନ ସହ ମିଳାଇ ଦେଖିବାରେ ଯେଉଁ ସିଦ୍ଧି, ତାହାହିଁ ସବୁ ସାଧନାର ଏକମାତ୍ର ଲକ୍ଷ୍ୟ ଓ ରହସ୍ୟବାଦ ସେ ସାଧନାଧାରାର ପ୍ରସାରିତ ରହସ୍ୟ ସଂବାଦ, ସେଇସବୁ ସାଧନା ରହସ୍ୟର ସଂବାଦ । ଅଲେଚ୍ୟ ଯୁଗର କାବ୍ୟମାନସ ଶିଳ୍ପସାଧନାର ଏ ପ୍ରାଣ ମର୍ମଟି ପ୍ରତି ହୁଏତ ସଚେତନ ନଥିଲା । ଜୀବନର ମୂଳଧର୍ମଟିକୁ ସେଇ ସୂତ୍ରରେ ଧାରଣ କରିପାରି ନଥିଲା । ତେଣୁ ଏ ସ୍ୱର ଶୀଘ୍ର ଛନ୍ଦ ପରିବର୍ତ୍ତନ କରିବାକୁ ବାଧ୍ୟ ହେଲା ।

୫ । ବିରୋଧାଭାସ—ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଓ ଲକ୍ଷ୍ୟ ଅଭିମୁଖୀନତାର ଅଭାବରୁ ଏ କାବ୍ୟସ୍ୱର ବହୁଭାବ ଆନ୍ଦୋଳିତ । ସମ୍ମୁଖରେ ବହୁପଥ, ବହୁ ଆଦର୍ଶ, ବହୁ ମତ; ଯେଉଁ କବି ଯେତେବେଳେ ଯେ ଭାବାଦର୍ଶରେ ଉଦ୍‌ବୁଦ୍ଧ ହୋଇଛି, ତାକୁଇ କାବ୍ୟାଦର୍ଶ ମାନିନେଇଛି । ଏ ସାମୟିକ ଆହରଣ ଓ ଅଂଗୀକରଣରେ ଯେଉଁ ଭାବ-ବିରୋଧ ଉପୁଜିଛି, ତାକୁ କଳ୍ପ ରହସ୍ୟବାଦୀ ପାରାଡକ୍ସ ବା ବିରୋଧାଭାସ ବୋଲି ଗ୍ରହଣ କରାଯାଇନପାରେ । ରହସ୍ୟବାଦରେ ସବୁ ବିରୋଧାତ୍ମକତାର ମୂଳ ସ୍ୱୀକୃତିଟି ହେଉଛି ଐକ୍ୟଭାବନା; ଅର୍ଥାତ୍ ସକଳ ବହିରଂଗ ବିରୋଧ ବିଭେଦ ଭିତରେ ଏକ ମୂଳ ଅନ୍ତଃସତ୍ୟ ବିରାଜିତ, 'Unity underlies diversity' ରହସ୍ୟବାଦ ସବୁବେଳେ ବୈଭିନ୍ନ ବା ଡାଇଭରସିଟିର କଥା ଉଲ୍ଲେଖକରି ସେମାନଙ୍କ ଐକ୍ୟ ବା ୟୁନିଟି ଆଡ଼େ ମୁହାଇଁନିଏ ।

---

(*) "ସ୍ୱର୍ଗ ତହିଁ କଳ୍ପନାର କ୍ଷଣିକ ବିସ୍ମର" । ସଚ୍ଚି ରାଉତରାୟ— ପାଥେୟ—ଗ୍ରଂଥାବଳୀ ପୃ. ୬୨

(୬) "ଯୁଗାଂତର ଗର୍ଭରେ ଅଂଗାମୀର ଅଭାସ କାହିଁ ତୁମର ?
ପ୍ରଳୟର ପ୍ରଶ୍ନରେ ପ୍ରାଣର ଉତ୍ତର କାହିଁ ତୁମର ?
ବୈରାଗ୍ୟର ବିରପତ୍ରରେ ଭାସୁଛ !
ଆହା ଭାସୁଛ !" ଅନଂତ ପଟ୍ଟନାୟକ, (ହାତ ବଢ଼ାଏ) 'କଳ୍ପିତ'—ପୃ. ୭୮

Digitized by PPRACHIN, SOA

ବୈଚିତ୍ର୍ୟର ଅନ୍ତର୍ଲୀନ ଏକତ୍ୱକୁ ପ୍ରତିଷ୍ଠା କରିବାର ଉଦ୍ୟମ ନଥିଲେ unity ଓ diversityର ଯେତେ ଦର୍ଶନ ବା କାବ୍ୟାତ୍ମକତା କଲେ ମଧ୍ୟ ତାହା ରହସ୍ୟବାଦୀ ଦୃଷ୍ଟିଭଂଗୀ ହେବନାହିଁ— ଅଥଚ ଆଲୋଚ୍ୟ ଯୁଗର କାବ୍ୟଭାବନାରେ ଏ ସିଦ୍ଧାନ୍ତଟି ଅନୁସୃତ ହୋଇଥିବାର ମନେହୁଏ ନାହିଁ । କବିତାରେ ବିରୋଧଭାବନାମାନ ସମାଂତରାଳ ଯୁଗ୍ମରେଖାପରି ପ୍ରଧାବିତ ଯାହାକୁ କେବଳ ରହସ୍ୟବାଦ ହିଁ ଅସୀମ ବା ଇନଫିନିଟିରେ ସଂଯୋଗ କରିପାରେ । ଶଂସିତ କାବ୍ୟଚେତନାରେ ଏ ଉଦ୍ୟମ କିମ୍ବା ସାମର୍ଥ୍ୟ ପରିଲକ୍ଷିତ ହୁଏ ନାହିଁ । ରହସ୍ୟବାଦୀ କାବ୍ୟଭାବନା ଯେଉଁ ସକଳ ବିରୋଧାତ୍ମକତା ସଂଯୁକ୍ତ ପୂର୍ଣାନୁଭବର କଥା କୁହେ, ସେ ପୂର୍ଣଚେତନାର ଉଦ୍‌ବୋଧନ ଏ କାବ୍ୟ ପ୍ରୟାସରେ ସଂଭବ ହୋଇନାହିଁ ।

୭ । ସଂଶୟବାଦ—ଯୁଗୀୟ କାବ୍ୟଚେତନାରେ ପ୍ରକଟିତ ସଂଶୟାନୁଭବ ରହସ୍ୟବାଦୀ ଭାବଉପଲବ୍ଧି ପଥରେ ଅନ୍ତରାୟ ସ୍ୱରୂପ ଅବିର୍ଭୂତ । ସଂଶୟବାଦ ବିଶ୍ୱରପ୍ରବଣ ମନନଧର୍ମିତାର ଅସ୍ତ୍ର । ସେ ବିଶ୍ୱର କନ୍ତୁ କ୍ଷେତ୍ର ବିବେଚନା କରେନାହିଁ; ତେଣୁ ଅଂଧ ଏବଂ ଏ ବିଶ୍ୱର-ଅଂଧତ୍ୱ ସତ୍ୟାନୁସଂଧାନ ମାର୍ଗରେ ବିଶ୍ୱାସ-ଅଂଧତ୍ୱଠାରୁ ବଳି ଭୟଂକର । ଆଧୁନିକ କବିତାର ରହସ୍ୟବାଦୀ ସ୍ୱର ଗୋଟିଏ ମୁହୂର୍ତ୍ତରେ ଆଧ୍ୟାତ୍ମିକତା, ଈଶ୍ୱରଭକ୍ତି ଓ ସମର୍ପଣର ଗାନକରି, ପରମୁହୂର୍ତ୍ତରେ ସେ ଗଦ୍‌ଗଦତାକୁ ସଂଶୟବାଣରେ ଉଚ୍ଛେଦ କରେ । ମାତ୍ର ଲକ୍ଷଣୀୟ, ସେ ସଂଶୟ ମଧ୍ୟ ତା'ର ସାମୟିକ ଏବଂ ନିଷ୍କ୍ରାନ୍ତ ପର ମୁହୂର୍ତ୍ତରେ ପୁନର୍ବାର ଦୂରଦିଗନ୍ତର ସୁଖାଭିଳାଷ, ଅରୂପ ଅଦେଖାକୁ ପ୍ରୀତି ନିବେଦନ । ଅର୍ଥାତ୍ ଏ ସଂଶୟ ମଧ୍ୟ ତାର ନିଜସ୍ୱ ନୁହେଁ, ନିଜର ଚେତନା-ସଂକଟରୁ ସମୁଚ୍ଚାରିତ ନୁହେଁ । ଯୁଗ ପ୍ରଭାବ ରୂପେ ଆଧ୍ୟାତ୍ମିକତା ଓ ସଂଶୟବାଦ ଉଭୟେ କାବ୍ୟମାନସକୁ ସ୍ପର୍ଶ କରିଛନ୍ତି । ମାତ୍ର କବିର ପ୍ରତ୍ୟୟହୀନତା ଯୋଗୁ କିଛି ବି ଗଭୀର ସ୍ତରର ଲାଭକରିପାରିନାହିଁ । ଏପରିକି ଈଶ୍ୱର ଭାବନାତ୍ମକ କବିତାରେ ମଧ୍ୟ ବିଶ୍ୱାସ ନିର୍ଭରତା ଅପେକ୍ଷା ସଂଶୟବାଦୀ ସ୍ୱର ଅଧିକ ମୁଖର । ଏ ଅବସ୍ଥାରେ ବିଭୁ ନିର୍ଭରତା ଓ ପ୍ରଣୟାନୁରାଗ କେତେଦୂର କବିର ଆନ୍ତରିକତା ଓ ନିଷ୍ଠା ପ୍ରସୂତ, ତାହା ସହଜରେ ଉପଲବ୍ଧି କରିହୁଏ, କାରଣ କେବଳ ଗଭୀର ପ୍ରେମର ଧ୍ୟାନଶୀଳତା ଓ ନିର୍ମଳ ହୃଦୟର ଆଶା-ଉଜ୍ଜ୍ୱଳ ବିଶ୍ୱାସ-ସ୍ଥିର ଅନିର୍ବାଣ ଦ୍ୟୁତିରେ ହିଁ ରହସ୍ୟବାଦୀ ପ୍ରେମାର୍ଚ୍ଚନା ଓ ଆତ୍ମସମର୍ପଣର ଉତ୍ତରଣ ସାଧନା ସଂଭବ ହୋଇପାରେ । ମଧୁସୂଦନ, ଗୋପବଂଧୁ, ଲକ୍ଷ୍ମୀକାଂତ, କୁଂତଳାକୁମାରୀ ଓ ପରେ ଚନ୍ଦ୍ରଶେଖର ମିଶ୍ର ପ୍ରଭୃତି ପରିମିତ କେତୋଟି କବିଂକ ବ୍ୟତୀତ ଓଡ଼ିଆ ରହସ୍ୟବାଦୀ କାବ୍ୟଭାବନାରେ ଏ ବିଶ୍ୱାସ-ଦୀପ୍ତି ଓ ପ୍ରତ୍ୟୟନିଷ୍ଠା ଏତେ ଅବିଚଳିତ ନୁହେ । ତେଣୁ ସେ ରହସ୍ୟବାଦୀ କାବ୍ୟସାଧନା ମଧ୍ୟ ଅପ୍ରତିହତ ଓ ଏକାଗ୍ର ନୁହେ । ଅବଶ୍ୟ ବୈକୁଂଠନାଥ ଓ ମାନସିଂହଙ୍କ ଭାବସାଧନାରେ ସେ ସଂଗ୍ରାମ ବୈଚିତ୍ର୍ୟର ରକ୍ତାକ୍ତ ସଂବାଦ କିଛି ପରିମାଣରେ ଚେତନାର ଊର୍ଦ୍ଧ୍ୱାଭିସାରମୂଳକ ଐକାନ୍ତିକତାକୁ ପ୍ରତିପାଦନ କରିବାକୁ ଚେଷ୍ଟା କରିଛି ।

ସ୍ୱୀକାର କରିବାକୁ ହେବ, ରହସ୍ୟବାଦୀ କବିତା କେବଳ ଅନଂଦଗାନ ନୁହେଁ । ମାତ୍ର ଦୁଃଖର ଅଜସ୍ର ଖେଦୋକ୍ତି ରହିଥିଲେ ବି, ଦୁଃଖହୀନ-ଧାମ ସଂପର୍କରେ ରହସ୍ୟବାଦୀର ବିଶ୍ୱାସ ଓ ଅନୁରକ୍ତି ତୁଟିବାର ନୁହେଁ । ମଧୁସୂଦନଂକ 'ଅମୃତଜୀବନ'ର ସ୍ୱର୍ଝଂକାର ବ୍ୟକ୍ତିଗତ ଜୀବନର ଦୁଃଖାନୁଭବସିକ୍ତ କରୁଣଗାନକୁ ଏଭଳି ଅନ୍ତରାଳବର୍ତ୍ତୀ କରିଦେଇଛି ଯେ, ଦୁଃଖ କବି ଓ ଈଶ୍ୱରଂକ ମଧ୍ୟରେ ବ୍ୟବଧାନ ହୋଇ ଉଭା ହେବା ତ ଦୂରର କଥା, ସେଠାରେ ସଂଶୟର କଳାମୁହଁର ଛାଇ ମଧ୍ୟ ଦେଖାଇବାକୁ ସାହସ କରିନାହିଁ । ଗୋପବଂଧୁ ଓ ଲକ୍ଷ୍ମୀକାଂତଂକ ଭାବବାଦୀ-ସାଧନାନୁଭବରେ ଦୁଃଖର ଆଚ୍ଛନ୍ନତା

Digitized by PPRACHIN, SOA

ରହିଛି । ସେହି ଉଚ୍ଛନ୍ନତା କାଂଶୁ ଉଜାଣି ସ୍ରୋତରେ ଦୁଃଖର ସେଇ ମୂଳଉତ୍ସ ପାର୍ଶ୍ୱରେ କବି ଉପଲବ୍ଧିକୁ ନେଇ ପହଞ୍ଚାଇ ଦେଇଛି, ଯେଉଁଠି ଆନନ୍ଦର ମୂଳ ଅନୁଭୂତିଟି ମଧ୍ୟ ସଂଗୋପିତ । (୭) ସୁଖ ଦୁଃଖ ପ୍ରତି ଏ ନାଂତ ଦୃଷ୍ଟି ହିଁ ରହସ୍ୟାନୁଭବର ନିଜସ୍ୱ ବୈଶିଷ୍ଟ୍ୟ । ଏହା ବିନା ସକଳ ରହସ୍ୟଗାନ ଅଯଥାର୍ଥ, ସକଳ ଯାତ୍ରା ଆସ୍ତୋଳନ ନିରର୍ଥକ । ଏଇ ପ୍ରତ୍ୟୟ ବିହୀନ ପ୍ରଣୟ ସଙ୍ଗୀତ କେବଳ ଉଚ୍ଛ୍ୱାସ-ସ୍ଫୁରଣ ମାତ୍ର, ଯାହାର କାବ୍ୟ-କଳ୍ପନା ରୂପେ କିଛି ମୂଲ୍ୟ ସାମୟିକ ଭାବେ ସ୍ୱୀକୃତ ହୋଇ ପାରେ; ମାତ୍ର ଚିରନ୍ତନ ଭାବନିବେଦନ ଦୃଷ୍ଟିରୁ ପ୍ରାଣବନ୍ତ ରସ ସାହିତ୍ୟ ପାଇଁ କିଛି ପ୍ରତିଶ୍ରୁତି ମିଳି ପାରେନାହିଁ । ଅଧିକାଂଶ ଓଡ଼ିଆ କବିତାର ରହସ୍ୟବାଦୀ ରୂପ ଆୟାସ ତେଣୁ ପ୍ରାୟ ଅସଫଳ । ଏହା ମୁଖ୍ୟତଃ ଯାତ୍ରା, ସଂଧାନ ଓ ଅପେକ୍ଷାର କଥା କହେ । ମାତ୍ର ସେ ଯାତ୍ରା ସଂକଳ୍ପ ସେତେ ବିଶୁଦ୍ଧ ଓ ଦୃଢ଼ ନୁହେଁ । ଅବିଚଳିତ ଯାତ୍ରା ସଂବାଦ ଓ ଲକ୍ଷ୍ୟସ୍ଥିରତାର ଚିତ୍ର କ୍ୱଚିତ୍ କାବ୍ୟାଲେଖ୍ୟରେ ଉପଲବ୍ଧ ହୋଇଥାଏ । ଅଧିକାଂଶ କବିତାରେ ଦୁଃଖଯନ୍ତ୍ରଣାର ଆର୍ତ୍ତି, ପ୍ରଣୟବିମୁଖତା ଓ ଅଭିଯୋଗର କଳକୋଳାହଳ ଭିତରେ ରହସ୍ୟବାଦୀ ଆତ୍ମସମର୍ପଣର କ୍ଷୀଣ ସ୍ୱର ଆଳାପଟି ପ୍ରାୟ ଅଶ୍ରୁତ । ଆରାଧ୍ୟ ଦେବତା ମୂକ ପ୍ରସ୍ତର, ଭାବଲେଶବିହୀନ କିମ୍ବା ଖୁବ୍ ବେଶିରେ ନିଷ୍ଠୁର ଅମାର୍ମିକ । ଅର୍ଥାତ୍ ଦେବତାର ରୂପ ଚେତନାଟି ଭାବବିନିମୟ—ଅକ୍ଷମ । ଏ ଅଭିଯୋଗ ପ୍ରଣୟ ଅଧିକାରର ଭର୍ତ୍ସନା ନୁହେଁ, ଏବଂ ଏଥିରେ ରହସ୍ୟବାଦୀର ମୂଳ ସିଦ୍ଧାଂତଟି—ଯାହା ଅଜ୍ଞେୟକୁ ସତ୍ତ୍ୱା ସହ ଭାବସଂବନ୍ଧଯୁକ୍ତ କରି ଦେଖିବା ଉପରେ ପ୍ରତିଷ୍ଠିତ,—ପ୍ରାୟ ଖର୍ବ । ଜୀବନର ସର୍ବପ୍ରକାର ଅନୁଭବ ଭିତର ଦେଇ ଯେ ମର୍ମଗତ ଚେତନାର ଉତ୍ସକୁ ଯିବାକୁ ହୁଏ, ଆଲୋଚ୍ୟ ସମୟର ଅନୁଭୂତି-କାତର କାବ୍ୟମାନସିକତାରେ ସେ ରହସ୍ୟବାଦୀ ସତ୍ୟର ସ୍ୱୀକୃତି ଥିଲା ଭଳି ମନେହୁଏ ନାହିଁ । ତେଣୁ ଅଧିକାଂଶ କବିତା ଉତ୍ତରଣ ଚେତନାର ରୂପ ସାଧନାରୂପେ ବିଫଳ ହୋଇଛନ୍ତି । ଅନ୍ତର୍ଗତ ଦୋଦୁଲ୍ୟମାନତା ହିଁ କାବ୍ୟ-ଆଭିମୁଖ୍ୟକୁ ସଂଗଠିତ ଏବଂ ଅଂଗୀକାର ବିହୀନ କରିଦେଇଛି ଏବଂ ପରେ ପରେ ବାସ୍ତବବାଦ ନାମରେ ବିଭିନ୍ନ ଚେତନାଦର୍ଶ ଆଡ଼କୁ ସ୍ୱର ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇଛି ।

ବାସ୍ତବବାଦ ନାମରେ ଏ କାବ୍ୟଭାବନାରେ ଆଉ ଏକ ଭାବଚେତନାର ସୂତ୍ରପାତ ଘଟିଛି, ଯାହା ରବୀନ୍ଦ୍ରନାଥଂକ ମାନବତାବାଦ ଓ ଜୀବନବାଦର ଅସଫଳ ଭାବାନୁଭୂତି ଭିତରେ ମାର୍କସୀୟ ସାମ୍ୟବାଦର ରୂପାଦର୍ଶ ନିରୂପଣ କରି ସର୍ବହରା ପାଇଁ ଅଶ୍ରୁମୋଚନରେ କବିର କର୍ତ୍ତବ୍ୟ ସମାପ୍ତି ଦେଖିଛି । ମାଟି ପ୍ରତି ମମତାକୁ ପ୍ରମାଣିତ କରିବାର ମୋହଦୃଷ୍ଟି ଈଶ୍ୱରଙ୍କ ରାଜ୍ୟକୁ ଅରାଜକ ଓ ଈଶ୍ୱରଙ୍କୁ ଅବିମୃଶ୍ୟ ସାବ୍ୟସ୍ତ କରିବା ଛଡ଼ା ଅଧିକ ଦର୍ଶନ-କ୍ଷମ ହୋଇପାରିନାହିଁ । ସର୍ବହରାର ପ୍ରତିନିଧିତ୍ୱକର ସଂଶୟାତ୍ମକ ନାସ୍ତିବାଣୀ ଭିତରେ ଏ ତଥାକଥିତ ବାସ୍ତବବାଦୀ ଆଭିମୁଖ୍ୟଟି କିନ୍ତୁ ବାରମ୍ବାର ଭାବବିପର୍ଯ୍ୟସ୍ତ ହୋଇଛି । କେବଳ କେତୋଟି ବଳିଷ୍ଠ ପ୍ରତିଭା ନିକଟରେ ହିଁ ଯଥାର୍ଥ ବାସ୍ତବବାଦୀ କାବ୍ୟଦର୍ଶନ ଏ କୁମ୍ଭୀର କାନ୍ଦଣା ଛାଡ଼ି ପ୍ରଗତିବାଦ ଆଡ଼କୁ ମୁହାଁଇଛି, ଏବଂ ସ୍ୱାଭାବିକ୍

(୭) "ସାଗରେ ତ ଦ୍ୱୀପ ଅଛି, ମରୁସ୍ଥଳେ ଜଳ
ପ୍ରାଂତରେ ପାଦପ ଅଛି, ମରୁରେ ଅନଳ
ତେବେ ଶାଂତି ଅଛି ଏହି ଅଶାନ୍ତ ସଂସାରେ
ଅଛିରେ ଆଲୋକ ଏହି ଭୀଷଣ ଅଂଧାରେ ।"

'ଲକ୍ଷ୍ମୀକାଂତ ମହାପାତ୍ର —'ସାନ୍ତ୍ୱନା'

Digitized by PPRACHIN, SOA

ଭାବେ ଏହା ରହସ୍ୟବାଦ ପ୍ରତି ବିଦ୍ୱେଷମୂଳକ ପ୍ରତିକ୍ରିୟା ପ୍ରକାଶକରିଛି ।(୮) ('ଯାହା ତାର ଖଣ୍ଡିତ ଦୃଷ୍ଟି ଚେତନା ଓ ବ୍ୟାପକ ଅବଧାରଣର ଅକ୍ଷମତା ଜନିତ ) । ପକ୍ଷାନ୍ତରେ ନବଜାଗରଣ ଯୁଗରୁ ଗୋପବନ୍ଧୁ ଓ ପରେ ପରେ ଲକ୍ଷ୍ମୀକାନ୍ତ ପ୍ରଭୃତିଙ୍କ ରଚନାରେ ବାସ୍ତବବାଦ ଓ ଆଧ୍ୟାତ୍ମିକତା ଜୀବନର ସମସ୍ୟା ସମାଧାନ ଦିଗରେ ସମନ୍ୱିତ ହୋଇଛନ୍ତି । ରହସ୍ୟବାଦୀ ଯେ ଆପଣାର ବ୍ୟକ୍ତି ଜୀବନକୁ ବିଶ୍ୱକଲ୍ୟାଣ ଦିବ୍ୟାଭିପ୍ରେତ ଜାଣେ ଓ କର୍ମଜଗତକୁ ସାଧନାମନ୍ଦିରରେ ରୂପାନ୍ତରିତ କରିଥାଏ, ଏହି ଉପଲବ୍‌ଧିର ଅଭାବ ଯୁଗୀୟ ରହସ୍ୟାଭିବ୍ୟକ୍ତିକୁ ଏଭଳି କମଳ-ବିଳାସରେ ସ୍ୱପ୍ନାଚ୍ଛନ୍ନ ଓ କବିଚେତନାକୁ ସଂଶୟ ସନ୍ତ୍ରସ୍ତ କରିଛି ।

ଓଡ଼ିଆ କବିତାରେ ରହସ୍ୟଭାବନାର ପ୍ରତିକ୍ରିୟା ଓ ପ୍ରତିବାଦ ମୂଳରେ ଯେଉଁ ମନସ୍ତତ୍ତ୍ୱଟି କ୍ରିୟାଶୀଳ ବୋଲି ମନେହୁଏ, ତାହା ଯେପରି ଭାବନେଇଥାଏ, ସମସ୍ତ ଅକ୍ଷମତା, ସମସ୍ତ ଅତୃପ୍ତି ବୃତ୍ତି-ବିଚ୍ୟୁତି ସତ୍ତ୍ୱେ, ବ୍ୟକ୍ତିର ଜୀବନରେ ବିପର୍ଯ୍ୟୟ ବିପାକ ସୃଷ୍ଟି ନହେଉ । ବ୍ୟକ୍ତିଗତ ଓ ସାମାଜିକ କୌଣସି ସମସ୍ୟା ସୃଷ୍ଟି ନହେଉ ବା କବି ସମ୍ବୋଧିତ ରହସ୍ୟ-ସତ୍ତ୍ୱା ସେ ସବୁର ସମାଧାନ କରି ଦେଇପାରିବା ଭଳି କରିଦିଅନ୍ତୁ; କବିଙ୍କ ପାଇଁ ପଥମଣ୍ଡଣି କରିଦିଅନ୍ତୁ ଓ ଉପବନ ସଜାଇ ଦିଅନ୍ତୁ ଯେଉଁଠାରେ କି ସୁମନ-କୁଞ୍ଜରେ ବସି ରହି କବି ଅଜଣା ଦେବତାଙ୍କୁ 'ପ୍ରିୟ' ସମ୍ବୋଧନରେ କୃତାର୍ଥ କରିଦେବେ ଓ ପ୍ରତୀକ୍ଷାଶ୍ରୁ ଢାଳି ଆପଣାର ପ୍ରେମ-ମହତ୍ତ୍ୱ ବଖାଣିବେ । ଏ ଲଘୁ ପ୍ରଣୟ-ସ୍ୱପ୍ନ ଭିତରେ ରହସ୍ୟବାଦ ଭାବସାଧନାର କ୍ଳେଶ ଓ ଦୁର୍ବିପାକ, ଅସିଧାରରେ ପଥ ଚାଲିବାର କଠୋର ସଂଗ୍ରାମ ଓ ଅନଳ ପରୀକ୍ଷାର ଶୋଷଣ ସ୍ୱରୂପଟି ପୂର୍ଣ୍ଣ ଅନ୍ତର୍ହିତ । ବିରହ ବିରହଗାନ ଓ ମିଳନସ୍ୱପ୍ନ ଖୁବ୍ ବେଶିରେ ଅମର୍ତ୍ତ୍ୟ, ଅଳକାର ବିଦେହ ପ୍ରେମ ଓ ସମ୍ଭାଷଣ ହୋଇପାରନ୍ତି । ରହସ୍ୟବାଦର ଦେହାତୀତ ପ୍ରେମସନ୍ଦେଶ ଏଠାରେ କିଛି ନାହିଁ, କିମ୍ବା ଦେହକୁ ଦେହୋତ୍ତର ସାଧନାର ପୃଷ୍ଠଭୂମି ରୂପେ ଗ୍ରହଣ କରିବାର ପ୍ରେରଣା ଦୃଷ୍ଟି ନାହିଁ । ଏକ ଅଗଭୀର ଓ ସାମୟିକ ଉଚ୍ଛ୍ୱାସପ୍ରବଣ ରହସ୍ୟବାଦୀ ଅନୁଚିନ୍ତନ ତେଣୁ ସମସାମୟିକ ଓ ପରବର୍ତ୍ତୀ ବାସ୍ତବବାଦୀ ଭାବମାନସ ଦ୍ୱାରା ଯେ ସମାଲୋଚିତ ଓ ପରିତ୍ୟକ୍ତ ହୋଇଛି ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ଏକଥା ସ୍ୱୀକାର୍ଯ୍ୟ ଯେ, ପ୍ରବଳ ଅନୁକରଣ ଓ ଅନୁସରଣପ୍ରୟାସ ସତ୍ତ୍ୱେ ଶିଂସିତ ସମୟର ଦୋଦୁଲ୍ୟମାନ ଜୀବନଜିଜ୍ଞାସା ରହସ୍ୟବାଦୀ କାବ୍ୟଭାବନାକୁ କେବଳ ଅତୀନ୍ଦ୍ରିୟ ଭିନମୁଖତାରେ ହିଁ ପର୍ଯ୍ୟବସିତ ରଖିଥିଲା । ଏ କାବ୍ୟ-ବିଫଳତାର ମୂଳକାରଣ, ଏଥିରେ କୌଣସି ମିଷ୍ଟିକ୍ ଦିଗ୍‌ଦର୍ଶନ ବା ଜୀବନ-ସନ୍ଦେଶ ଉପଲଭ୍ୟ ନଥିଲା । ଏଠାରେ ମଧୁସୂଦନୀୟ ନିର୍ବିଚଳ ଆଧ୍ୟାତ୍ମିକତା, ରବୀନ୍ଦ୍ର କାବ୍ୟର ଦ୍ୱିଧାହୀନ ପ୍ରଣୟ-ପ୍ରତ୍ୟୟ କିମ୍ବା ପାଶ୍ଚାତ୍ୟ ଅତୀନ୍ଦ୍ରିୟ ଚେତନା ସମର୍ଥିତ ଜୀବନବାଦୀ ଉଦାର ବାସ୍ତବତାର ଅଙ୍ଗୀକାର ନଥିଲା ଅଥଚ ଏଇ ସନ୍ଦେଶ ବା ପ୍ରତିଶ୍ରୁତି ବିନା କୌଣସି କଳା ସୃଷ୍ଟି ସାର୍ଥକ ନୁହେଁ । ଜୀବନ ପାଇଁ କିଛି ସନ୍ଦେଶ ଖୋଜିବା କଳାର ମୂଳ ଉଦ୍ଦେଶ୍ୟ, ଅତୀନ୍ଦ୍ରିୟ ଲୋକରୁ ପୃଥିବୀ ପାଇଁ ସନ୍ଦେଶ ବହନ କରି ଆଣେ ବୋଲି କଳା କାଳାତୀତ ସ୍ୱୀକୃତି ପାଇପାରିଛି । ମାତ୍ର ଆଲୋଚ୍ୟଯୁଗର ଓଡ଼ିଆକବିର ରହସ୍ୟବାଦୀ କାବ୍ୟଭାବନା କେବଳ ଆପଣା ପାଇଁ ଏକ ଅରୂପ ସୁଖଲୋକକୁ କଳ୍ପନାବିହାରରେ ପର୍ଯ୍ୟବସିତ ରହିଛି ।

---

(୮) "ରହସ୍ୟବାଦୀ ଚିରନ୍ତନ ସତ୍ୟକୁ ଗୋପନରେ ରଖି ମିଥ୍ୟାକୁ ପ୍ରଶ୍ରୟ ଦେଇଛି ।"
ଅନନ୍ତ ପଟ୍ଟନାୟକ ( ସାହିତ୍ୟରେ ଶ୍ରେଣୀପରତା ) 'ଆଧୁନିକ' ୧/୫ ସଂଖ୍ୟା
୧୯୩୬ ସାଲ

Digitized by PPRACHIN, SOA

ଅମର୍ତ୍ତ୍ୟ ଆକାଂକ୍ଷାର ଏଇ ବିପୁଳ ଉଦ୍‌ଘୋଷଣ କଂଠରୁ କେଉଁଠାରେ ନିଜକୁ ପ୍ରଶ୍ନ କରିଥିବାର ମନେହୁଏ ନାହିଁ, ଏ ଦୁର୍ଲଭ ସୌଭାଗ୍ୟପାଇଁ ନିଜକୁ ସେ କେତେ ଦୂର ପ୍ରସ୍ତୁତ କରିଛି, ଜୀବନର ଯେଉଁ ପରମପ୍ରାପ୍ତି ପାଇଁ ସାରା ଜୀବନର ଏକାଗ୍ରତା ତପଃସାଧନା ଆବଶ୍ୟକ, ଏ କାବ୍ୟସ୍ୱରରେ ସେ ଐକାନ୍ତିକତା ବିରଳ । ନରକର ବ୍ୟୂହ ଭେଦକରି ଚେତନାକୁ ସ୍ୱର୍ଗପଥର ସନ୍ଧାନ ନେବାକୁ ହୁଏ, ସେ ନରକ-ସତ୍ତ୍ୱର ଯାବତୀୟ ସୀମାବୋଧ ଉଦ୍‌ଭୂତ—କଲା ତାର ଉତ୍କ୍ରମଣ ଅଭୀପ୍‌ସାର ଅଭିବ୍ୟକ୍ତି ମାତ୍ର ! ରହସ୍ୟବାଦୀ ଦର୍ଶନର ଏ ଗୂଢ଼ ଇଂଗିତର ସ୍ୱୀକୃତି ପରିବର୍ତ୍ତେ ବରଂ ଶଂସିତ କାବ୍ୟସ୍ୱରରେ ଅଲୀକ କଳ୍ପନା ଓ ଉଦ୍‌ଭଟ ବିଦ୍ରୋହ ରୂପଲାଭ କରିଛି । ସେ କାବ୍ୟଚେତନା ଏକ କଳ୍ପିତ ରହସ୍ୟ ପୁରୁଷ ନିକଟରେ ଯେପରି ଦାବୀ କରେ, ଚରମପନ୍ଥ ବାଢ଼େ; ଅମର୍ତ୍ତ୍ୟ ପ୍ରୀତିର ନବାକ୍ଷରୀ ଗାନକରି କବି ସିଧା ସ୍ୱର୍ଗ-ପୁର ଦୁର୍ଗକୁ ଯିବେ ଓ ସେଠାରେ ନିତ୍ୟ ବିଳାସର କାଦଂବରୀ-ପାନ-ସୁଖ ଲାଭ କରିବେ । ଏ ଅଲୌକିକତାର ଦୁରଭିଳାଷ ନା ଆଧ୍ୟାତ୍ମିକ, ନା କଳାତ୍ମକ ପ୍ରୟାସ ସାଧ୍ୟ, ନା ପ୍ରାଚ୍ୟ ଭାବଦର୍ଶନ ନା ପାଶ୍ଚାତ୍ୟ କାବ୍ୟାଦର୍ଶ ସମର୍ଥିତ । ଏହା ଏକ ବିମୂଢ଼ ଉଦ୍‌ଭଟ ରହସ୍ୟଧର୍ମୀ ତର୍କଣା ଯାହା କିଛି ନ କରି, କିଛି ନଦେଇ ସବୁ ପାଇବାକୁ ଚାହେଁ ଏବଂ ସେ ଚାହିଁବାଟା ତାର ଅବିସମ୍ବାଦିତ ଯୋଗ୍ୟତା ପନ୍ଥ ବୋଲି ମନେକରେ । ଶାଶ୍ୱତର ରୂପବଂଦନା ବା ଅସ୍ତିତ୍ୱର ଅଭିନଂଦନ-ପରାଙ୍ମୁଖ ଏଇ ସୁଖ-ଲିପ୍ସୁ କାବ୍ୟଚେତନାରେ ସଂଶୟ ଓ ବିଦ୍ରୋହ ; ତେଣୁ ମାର୍ଗସନ୍ଧାନ ପ୍ରବୃତ୍ତି ପରିବର୍ତ୍ତେ ଭାବ-ବୈଧକାରୀ ପ୍ରାଚୀର ରୂପେ ଆବିର୍ଭୂତ । ଶାଶ୍ୱତ ନିକଟରେ ନିଜକୁ ସମର୍ପଣ କରି-ଦେବାର ଦୃଢ଼ତା ଓ ଜୀବନକୁ ନିଃସର୍ତ୍ତ ଭାବେ ଗ୍ରହଣ କରିନେବାରେ ପ୍ରକଟିତ ମିଷ୍ଟିକର ଭାବ ସାମର୍ଥ୍ୟ ତଥାକଥିତ ବାସ୍ତବବାଦୀର ଜୀବନବାଦଠାରୁ ଆହୁରି ବ୍ୟାପକ ଓ ଗମ୍ଭୀର । ଏହା ଏ କାବ୍ୟ-ସନ୍ଦେଶରେ ଅନୁପଲଭ୍ୟ ।

---

Digitized by PPRACHIN, SOA

# ପରିଶିଷ୍ଟ

## ରହସ୍ୟବାଦର ବିକାଶଧାରା

ଐତିହାସିକ ସମୟକ୍ରମ ବା ଭୌଗୋଳିକ ସୀମା ନିର୍ଦ୍ଦେଶ —ଉଭୟ ପ୍ରକାରେ ମାନବର ଭାବପ୍ରକାଶ ଭିତରେ ରହସ୍ୟବାଦର ଗତିବିକାଶକୁ ନିରୀକ୍ଷଣ କରାଯାଇପାରେ । ଦୂର-ପ୍ରାଚ୍ୟ, ମଧ୍ୟ-ପ୍ରାଚ୍ୟ, ପାଶ୍ଚାତ୍ୟ ପ୍ରଭୃତି ଭୌଗୋଳିକ ବିଭାଜନ ନିର୍ଦ୍ଦିଷ୍ଟ ଗୋଷ୍ଠୀର ସାଂସ୍କୃତିକ ପରଂପରା ଓ ଧର୍ମବିଶ୍ୱର ଅନୁବନ୍ଧିତା ଇତିହାସ ଦୃଷ୍ଟିରୁ ରହସ୍ୟବାଦର ମୂଳପ୍ରବାହଟିକୁ ବୈଦିକ ଉଷାକାଳରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ତାର ବାଙ୍ମୟ ଦର୍ଶନ ଭିତରୁ ଅଖଣ୍ଡ ଅନୁସରଣ କରାଯାଇପାରେ । ପୁନଃ ସ୍ମରଣୀୟ ଯେ, ଏକ ଆତ୍ମିକ ଉପଲବ୍ଧିର ପରବର୍ତ୍ତୀ ତାତ୍ତ୍ୱିକ ବିଚାର ଅନୁଶୀଳନ ହିଁ ସମ୍ବନ୍ଧ ଧର୍ମ, ସଂଘ, ଗୋଷ୍ଠୀ ବା ମତବାଦକୁ ଅନୁସରଣ କରିଆସିଛି । ଏ ଦୃଷ୍ଟିରୁ ପୃଥିବୀର କେତୋଟି ପ୍ରଧାନ ରହସ୍ୟବାଦୀ ବିଚାର ପ୍ରସଙ୍ଗରେ ଗ୍ରୀକ୍ ଦର୍ଶନ, ଖ୍ରୀଷ୍ଟିୟାନ ମତବାଦ, ସୁଫୀତତ୍ତ୍ୱ ଏବଂ ଭାରତୀୟ ବେଦ ଓ ଉପନିଷଦ ତଥା କେତୋଟି ପ୍ରଚଳିତ ଧର୍ମଧାରଣାର ଅଂତର୍ଲବ୍ଧ ରହସ୍ୟଦର୍ଶନ ସାମାନ୍ୟତଃ ଅନୁଶୀଳିତ ହୋଇଛି । ଏ ଅଧ୍ୟାୟରେ ମାନବ ଇତିହାସରେ ରହସ୍ୟବାଦୀ ବିଚାରର ଗତି ପରିଣତି କାଳ-ନିର୍ଭର ନ ହୋଇ ସ୍ଥାନ-ନିର୍ଭର ହୋଇଛି ।

ପାଶ୍ଚାତ୍ୟ ରହସ୍ୟବାଦ :—ପାଶ୍ଚାତ୍ୟ ଭାବମାନସ ମୁଖ୍ୟତଃ ତିନୋଟି ପ୍ରବାହରେ ଗତିଶୀଳ । ଏ ସ୍ରୋତତ୍ରୟ ସମାଂତରାଳ ନୁହଂତି । ପଥଧାରରେ ବହିବାର ପରସ୍ପରର ସାକ୍ଷାତ ସ୍ପର୍ଶ, ସମ୍ମିଶ୍ରଣ ଓ ବିନିମୟର ଅବକାଶରେ ଏହା ଏକ ବିଚିତ୍ରବର୍ଣ୍ଣା, ବିରାଟ ନଦୀଶରୀୟାରେ ପରିଣତ ହୋଇଛି । ଏ ବିଭାଗ ତିନୋଟି ଗ୍ରୀସୀୟ-ରୋମାନ, ହିବ୍ରୁ ଓ ପ୍ରାଚ୍ୟ-ଭାବ ଜିଜ୍ଞାସା ପ୍ରଭାବିତ ଦର୍ଶନ ବୋଲି ବିଚାର କରାଯାଇପାରେ । ସାମାଜିକ, ରାଷ୍ଟ୍ରୀୟ ତଥା ଆଧ୍ୟାତ୍ମିକ ମାନସିକତା ସହ ପାଶ୍ଚାତ୍ୟ ଜୀବନଦର୍ଶନର ସଂପର୍କ ଓ ଆଭିମୁଖ୍ୟ ନିରୂପଣରେ ଏ ଉତ୍ସ ତିନୋଟିକୁ ଯଥାକ୍ରମରେ ଆବିଷ୍କାର କରନ୍ତୁଏ ।

(କ) ଗ୍ରୀସୀୟ ଦର୍ଶନ—ପାଶ୍ଚାତ୍ୟ ଧର୍ମଧାରାରେ ଜିଜ୍ଞାସାବାଦ ଓ ତତ୍ତ୍ୱରହସ୍ୟ ସନ୍ଧାନ ପ୍ରୟାସ ମୂଳରେ ଗ୍ରୀକ୍‌ମାନଙ୍କର ବୌଦ୍ଧିକ ପ୍ରବଣତାଟି ଲକ୍ଷଣୀୟ । ସତ୍ୟର ସନ୍ଧାନ ପାଇଁ ସବୁ କିଛିକୁ ଗ୍ରୀକ୍ ଚେତନା ବିଚାରର କଷଟି ପଥରରେ ପରଖୁଥିଲା । ଯୁଗେ ଯୁଗେ ସେହି ବିଚାରବୋଧ ଓ ଦାର୍ଶନିକ ଜିଜ୍ଞାସା ପାଶ୍ଚାତ୍ୟ ମାନସରେ ଅଂକୁରିତ ଯାବତୀୟ ଚିଂତାଧାରାକୁ ଆପଣା ମାପକାଠିରେ ମାପିବାକୁ ଚେଷ୍ଟାକରିଛି ।

ଗ୍ରୀସ୍‌ର Delphy ଠାରେ ଥିବା ଆପୋଲୋଙ୍କ ମଂଦିର ଗାତ୍ରରେ ଗ୍ରୀକ୍ ଜୀବନ ପାଇଁ ଏକ ନିର୍ଦ୍ଦେଶ ଉତ୍କୀର୍ଣ୍ଣ ଥିଲା 'ନିଜକୁ ଜାଣ' ('Know Thyself') । ସ୍ୱାଧୀନଚେତା ଗ୍ରୀକ୍‌ଜାତି ଜୀବନକୁ କଳାବିଳାସମାର୍ଗରେ ଉପଭୋଗ କରିବାକୁ ଚାଲିବେଳେ ତାର ଶୁଷ୍କ ଯୁକ୍ତିଶୀଳ ମନର ବିଚାରଭାବନାକୁ ଯେତିକି ସମ୍ମାନ ଦେଇଛି, ଆଧ୍ୟାତ୍ମିକ ଅଭୀପ୍ସାକୁ ମଧ୍ୟ ସେପରି ସ୍ୱୀକୃତି ଦେଇଛି । ସେଇ ଆଧ୍ୟାତ୍ମିକ କ୍ଷୁଧାରୁ କୃଷିଦେବତା 'ଡାଇନାଇସାସ୍'ଙ୍କ ଆବିର୍ଭାବ ।

Digitized by PPRACHIN, SOA

ପ୍ରାଥମିକ ସ୍ତରରେ ଡାଇନାଇସାସ ମଦ୍ୟଦେବତାରୂପେ ପୂଜିତ ହେଉଥିଲେ ଓ ମଦ୍ୟପାନର ଉଲ୍ଲାସ ଭିତରେ ଆରାଧକ କିଛି ଅତୀନ୍ଦ୍ରିୟାନୁଭବ ଲାଭକରୁଥିଲେ । ପ୍ରେସର 'ଅର୍ଫିସ୍' ନାମକ ଜଣେ ସଙ୍ଗୀତଜ୍ଞ ସନ୍ନ୍ୟାସୀ ଏହାର ପ୍ରକୃତ ଆଧ୍ୟାତ୍ମିକ ରୂପାନ୍ତର ରହସ୍ୟ ଉନ୍ମୋଚନ କରିଥିଲେ । ମନୁଷ୍ୟର ଆତ୍ମା ଅମର, ଦିବ୍ୟ ଏବଂ ଈଶ୍ୱର-ସାନ୍ନିଧ୍ୟ ଲାଭକରିବା ତା ପକ୍ଷେ ସମ୍ଭବ— ଏହା ସେ ବିଶ୍ୱାସ କରୁଥିଲେ । ମଦ ଓ ଉନ୍ମାଦନା ଅର୍ଫିସ ଏବଂ ତାଂକ ମତବାଦୀ ଅର୍ଫିକ-ମାନଂକ ପାଇଁ ଆଧ୍ୟାତ୍ମିକ ସଙ୍କେତ-ରୂପ ଥିଲା । (୧) ଆତ୍ମାର ସହଜାତ ଅମରତ୍ୱ ମଦ୍ୟପାନ ଜନିତ ଉଲ୍ଲାସ ଭିତରେ ବ୍ୟକ୍ତିଚେତନାରେ ଅନୁଭୂତ ହେଉଥିଲା । (୨) ଅର୍ଫିକ୍‌ମାନଂକ ଯୁକ୍ତିରେ ଥରେ ଆତ୍ମାର ଦିବ୍ୟତ୍ୱ ବ୍ୟକ୍ତିମାନସରେ ପ୍ରକଟିତ ହୋଇଗଲେ ସେ ଆଉ ଅଦିବ୍ୟବାଚୀ ହୋଇପାରେନା ।

ଅର୍ଫିକ୍ ରହସ୍ୟବାଦ ବିଶେଷକରି ତାର ଜନ୍ମାନ୍ତର ତତ୍ତ୍ୱ ଓ ଅଧ୍ୟାତ୍ମ-ସାଧନା-ରହସ୍ୟ ତତ୍କାଳୀନ ଗ୍ରୀକ୍‌ମାନସରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ମନୁଷ୍ୟ ଦିବ୍ୟ ଓ ଈଶ୍ୱର-ସାନ୍ନିଧ୍ୟ ଲାଭ କରିପାରେ, ଏହା ଦ୍ୱୈତବାଦୀ ଗ୍ରୀକ୍‌ମାନସରେ ଅକ୍ଷମଣୀୟ ଅପରାଧ ଥିଲା । (୩)* ସାଧାରଣ ଗ୍ରୀକ୍‌ଦେବତାଂକ ପୂଜା ବିଶ୍ୱାସ ଓ ପଦ୍ଧତି ସହ ଏ ଅର୍ଫିକ୍ ରହସ୍ୟଚେତନାର ମେଳ ନଥିଲା । ଏ ସବୁ ପ୍ରାଚ୍ୟ-ପ୍ରଭାବ ବୋଲି ଅନେକ ସମୀକ୍ଷକଂକ ମତ । ପିଥାଗୋରାସ, ଏଲୁସିନ୍ନିୟାନ ଓ ଅନାକ୍‌ସେଗ୍ରାସ ଓ ପର୍ମେନିଡିଶ ଏବଂ ପ୍ଲେଟୋଂକ ଚିଂତାଧାରାରେ ଏହି ଅଂଶର ଇଂଗିତରେ ପ୍ରକାଶିତ । ପିଥାଗୋରାସ ( ଖ୍ରୀ: ପୂ: ୫୮୦-୪୯୭ ) ବୁଦ୍ଧ ଓ ଜରଥୁଷ୍ଟ୍ର ଦର୍ଶନର ସାମଞ୍ଜସ୍ୟ ରକ୍ଷାକରିଛନ୍ତି । ପିଥାଗୋରାସ ଦର୍ଶନର ଅସୀମବାଦ, ଆତ୍ମାର ଦେହାନ୍ତର ( transmigration ) ଓ ଅବିନଶ୍ୱରତ୍ୱ ଏବଂ ସନ୍ନ୍ୟାସବାଦ ତାଂକ ରହସ୍ୟବାଦୀ ଆଭିମୁଖ୍ୟର ପ୍ରମାଣ । ପିଥାଗୋରାସ ପର୍ମେନିଡିଶ ଓ ପ୍ଲେଟୋମାନଙ୍କୁ ପ୍ରଭାବିତ କରନ୍ତି ।

ହେରାକ୍ଲିଟସ-ଦର୍ଶନ ରହସ୍ୟବାଦୀ ସିଦ୍ଧାନ୍ତର ବହୁ ନିକଟବର୍ତ୍ତୀ । ଏହା ବିଶ୍ୱର ପରିବର୍ତ୍ତନ ଓ ବିବିଧତ୍ୱର ଅନ୍ତରାଳରେ ଏକ 'ଅଖଣ୍ଡ ନିୟମ'ର କଥା କହୁଥିଲା । ଅହରହ ପରିବର୍ତ୍ତନଶୀଳତା ବିଶ୍ୱର

(1) "In the phenomena of ecstasy of the soul step out of the body
& and reveals its true nature. When we are possessed by God
(2) we are for the moment lifted to the divine status—what can become divine even for a time cannot be different in essence from the Divine."

S. Radhakrishnan—'Eastern Religion and Western Thought' p. 135.

(3) "The mystic tradition is definitely un-Greek in character."
S. Radhakrishnan —'Easter Religion....'p—135.

* "Genuine Greek religion knows no mystical striving. A blessed union with God in ecstasy after an abolition of the limits of the individuality in a realm beyond the conscious life, prophetic, austerity and mystic indifference are alike foreign to it."
Heiler—Prayer E. T. p. 76-79
qt—W. K. C. 'Orpheus and Greek Religion. p. 136.

Digitized by PPRACHIN, SOA

ଅପରିବର୍ତ୍ତନୀୟ ମୂଳ ନିୟମ; ସବୁ ବିରୋଧାତ୍ମକତା ଭିତରେ ଏହି ସତ୍ୟହିଁ ବିଦ୍ୟମାନ; ପରସ୍ପର ବିନାଶ-ନିୟରୁ ସୃଷ୍ଟି ସଞ୍ଜାତ । (୦)ବିଶ୍ୱର ମୂଳ ଉପାଦାନରୂପେ ହେରାକ୍ଲିଟସ 'ଅଗ୍ନି'କୁ ନିର୍ଦ୍ଦିଷ୍ଟ କରିଥିଲେ । ତାଙ୍କ ବିଚାରରେ ଏ ଜଗତ ଏକ ବିରାଟ ଅଗ୍ନିକୁଣ୍ଡ; ଯେଉଁଠି ସୃଷ୍ଟି ଓ ଧ୍ୱଂସ ଦ୍ୱିବିଧ ଦହନକ୍ରିୟା ଯୁଗପତ୍ ଚାଲିଛି । ଏହାର ମୂଳପ୍ରେରଣାଟି ଆନନ୍ଦ । ସେ ମଣିଷର 'ଆତ୍ମା'ରେ ସେ ଅଗ୍ନିକୁ ସଂଗୁପ୍ତ ଦେଖିଥିଲେ (୫) ଏବଂ ଅଗ୍ନିର ତେଜରେ ଉଦ୍‌ଭାସିତ ଜ୍ଞାନ ସଂଜ୍ଞା ବା ପ୍ରକୃତ ଜ୍ଞାନ (intuition) ବୋଲି କହୁଥିଲେ । ସେ 'ସର୍ବଭୂତରେ ଦିବ୍ୟତ୍ୱ' ବୋଧରେ ବିଶ୍ୱାସୀ ଥିଲେ । ଅସ୍ପଷ୍ଟଭାବେ ହେଲେ ମଧ୍ୟ ମଣିଷ ଜୀବନ ଓ ବିଶ୍ୱ ଗୋଟିଏ ନିୟମର ଅଧୀନ ବୋଲି ପ୍ରଦର୍ଶାଇଥିଲେ । ଏଇସବୁ ଚିନ୍ତାଧାରା ସହ ଉପନିଷଦୀୟ ଭାବମାନସର ଆଶ୍ଚର୍ଯ୍ୟଜନକ ସାମଂଜସ୍ୟ ଦେଖିବାକୁ ମିଳେ । ଆନାକ୍ସଗୋରାସ ମଧ୍ୟ ଏଇଭଳି ଏକ ଅଖଣ୍ଡ ଐକ୍ୟପ୍ରସଙ୍ଗ ଉଠାଇଛନ୍ତି ଯାହା ଉପନିଷଦର 'ସର୍ବଭୂତ ଏକ ବ୍ରହ୍ମ' ସିଦ୍ଧାନ୍ତର ଅନୁରୂପ । (୬)

ଗ୍ରୀକ୍ ମାନସର ଚରମାଭିବ୍ୟକ୍ତି ସକ୍ରେଟିଶ-ଦର୍ଶନ । ସକ୍ରେଟିଶ ଚିନ୍ତାଧାରାରେ ରହସ୍ୟବାଦୀ ଉପାଦାନ ସନ୍ଧାନ କରିବାକୁ ଗଲବେଳେ ମନେରଖିବାକୁ ପଡ଼େ ସେ ବୌଦ୍ଧିକ ମାନବର ପ୍ରଧାନତମ ପ୍ରବକ୍ତା ରୂପେହିଁ ୟୁରୋପୀୟ ଦର୍ଶନର ଉଦ୍‌ଗାତା ଏବଂ ପାଶ୍ଚାତ୍ୟ ଭାବମାନସ ଏ ପର୍ଯ୍ୟନ୍ତ ସକ୍ରେଟିଶ ଚିନ୍ତା-ସମୁଦ୍ରକୁ ଅତିକ୍ରମ କରିପାରିନାହିଁ । ତାଙ୍କ ଦର୍ଶନରେ ରହସ୍ୟଧର୍ମିତାର ଇଂଗିତ ବଳବତ୍ତର ଏବଂ "ଈଶ୍ୱରଙ୍କ ସହ ତାଙ୍କର ରହସ୍ୟମୟ ଯୋଗସୂତ୍ର" ଥିଲା ବୋଲି ସେ ବିଶ୍ୱାସ କରୁଥିଲେ । ଈଶ୍ୱରଙ୍କ ଅସ୍ତିତ୍ୱ କେବଳ ଅବଧାରଣାତ୍ମକ (conceptual) ବୋଲି ସେ ଭାବୁ ନଥିଲେ, ତାହା ସ୍ଥିତିବାନ (existing) ବୋଲି ବିଚାରୁଥିଲେ ଏବଂ ଏହା ଅନ୍ତର୍ଜ୍ଞାନ (intuition) ବୋଧଗମ୍ୟ ବୋଲି ମତବ୍ୟକ୍ତ କରୁଥିଲେ ।

ଆତ୍ମାର ଅମରତ୍ୱରେ ସେ ଦୃଢ଼ବିଶ୍ୱାସୀ ଥିଲେ । ଜ୍ଞାନକୁ ପୂର୍ବ-ସ୍ମୃତି-ସ୍ମରଣ କହୁଥିଲେ । ବୀଣା ଓ ତାର ସବୁ ପ୍ରମୂର୍ତ୍ତ ହେଲେ ମଧ୍ୟ ଅମୂର୍ତ୍ତ ସ୍ୱରକୁ ଧାରଣ କରିପାରିଲା ଭଳି ଆତ୍ମା ସତ୍ୟର ଅମୂର୍ତ୍ତ ଅପାର୍ଥିବତାକୁ ପ୍ରତ୍ୟକ୍ଷ କରିଥାଏ । ସକ୍ରେଟିଶଙ୍କ 'ଆତ୍ମଜ୍ଞାନ' ବିଚାରଜ୍ଞାନ ନୁହେଁ, ସହଜଜ୍ଞାନ । ମୃତ୍ୟୁ ପରେ ଆତ୍ମାର ଅମରଧାମକୁ ଯାତ୍ରା ପ୍ରସଂଗରେ ତାଂକର ବର୍ଣ୍ଣନା ମଧ୍ୟ ରହସ୍ୟବାଦୀ ଚେତନା-ସ୍ତର ସହ ଭାବ-ସାମଂଜସ୍ୟ ବହନକରେ । (୭)

---

(4) "It is a harmony of opposite tensions like that of a bow and the lyre.—qt. ଶରତ କୁମାର ମହାନ୍ତି—ସକ୍ରେଟିସ୍ ଓ ପ୍ଲେଟୋ—ପୃ. ୭୧

(୫) "ଅନ୍ଧକାର ମଧ୍ୟରେ ଗୋଟିଏ ଆଲୋକ ଶିଖାପରି ମଣିଷକୁ ଜଳେଇ ଦିଆଯାଇଛି ।" ଶରତ କୁମାର ମହାନ୍ତି—'ସକ୍ରେଟିଶ ଓ ପ୍ଲେଟୋ'—ପୃ. ୭୧

(6) "Nous is infinite and self-ruled' and 'in everything there is a portion of everything.'

qt—'ସକ୍ରେଟିଶ ଓ ପ୍ଲେଟୋ' ପୃ. ୮୦

(7) "When the soul returns into itself and reflects, it passed into another region, the region of that which is pure and everlasting, immortal and unchangable and feeling itself kindred thereto, it dwells there under its own control and has

Digitized by PPRACHIN, SOA

ସକ୍ରେଟିସ ପ୍ରେମକୁ ଆତ୍ମାର 'ଶାଶ୍ୱତ ଆକାଂକ୍ଷା' ବୋଲି ବର୍ଣ୍ଣନା କରିଛଂନ୍ତି । ପ୍ରେମର ସଂଜ୍ଞା ବୁଝାଇବାକୁ ଯାଇ ସେ କହିଛଂନ୍ତି, 'ନିଜର ସୃଷ୍ଟି ମାଧ୍ୟମରେ ଅମରତ୍ୱ ଲାଭ କରିବାର ବ୍ୟାକୁଳତା ହେଉଛି ପ୍ରେମ । × × ଅମରତ୍ୱ କାମନାରେ ଆତ୍ମାର ସୌନ୍ଦର୍ଯ୍ୟମୁଗ୍ଧତା ପ୍ରେମର ପ୍ରଥମ ସୋପାନ × × ଅମରତ୍ୱକୁ ସବଂଦା ଖୋଜି ମଣିଷ ତାକୁ ନିଜ ଅଂତର ଭିତରୁ ପାଏ । ସକ୍ରେଟିସଙ୍କ ପ୍ରେମ-ବିଗ୍ରହକୁ ପ୍ଲେଟୋ ବଡ଼ କବିତ୍ୱପୂର୍ଣ୍ଣ ଭାଷାରେ ବର୍ଣ୍ଣନା କରିଛଂନ୍ତି । ପ୍ରେମ ଓ ସୌନ୍ଦର୍ଯ୍ୟ ଅଭିନ୍ନ ରୂପେ ଉଦ୍‌ବୋଧିତ ହୋଇଛଂନ୍ତି ଓ ମୂଳ ପରମ ସତ୍ୟ ସହିତ ଏକାତ୍ମ ହୋଇଛଂନ୍ତି । ଏହି ପ୍ରେମକୁ ସକ୍ରେଟିସ 'ଦିବ୍ୟପାଗଳାମି' ବା 'ସ୍ୱର୍ଗୀୟ ଉନ୍ମାଦନା' ବୋଲି ବର୍ଣ୍ଣନା କରିଛଂନ୍ତି ।

ସକ୍ରେଟିସଙ୍କ ବିଚାରଧାରାର ପୂର୍ଣ୍ଣ ଅଭିବ୍ୟକ୍ତି ପ୍ଲାଟୋ-ଦର୍ଶନ । ପ୍ଲାଟୋ ରହସ୍ୟବାଦର ସଚେତନ ପ୍ରବକ୍ତା ନଥିଲେ ମଧ୍ୟ ତାଂଙ୍କ ରଚନାରେ ରହସ୍ୟବାଦୀ ଭାବଧାରା ବଳିଷ୍ଠ । ନିକୃଷ୍ଟ ପ୍ରଭୃତି ବହୁ ଭାବୁକ ପ୍ଲାଟୋଂକୁ ଅଭୀପ୍ସିୟ ବୋଲି ଆକ୍ଷେପ କରିବା ମୂଳରେ ତାଂକର ଫର୍ମତତ୍ତ୍ୱ, ଅମୂର୍ତ୍ତବାଦ, ପ୍ରେମ ଓ ସୌଂଦର୍ଯ୍ୟର ଅନୁଭବାତ୍ମକ ବ୍ୟାଖ୍ୟା, ଆତ୍ମାର ଅମରତ୍ୱ ତଥା ରୂପଧାରଣରେ ବିଶ୍ୱାସ ଓ ଏକ ଅତି-ଚେତନ-ସ୍ରଷ୍ଟିର ସ୍ୱୀକୃତ କାରଣ ରୂପରେ ବିଦ୍ୟମାନ । ପ୍ଲାଟୋ-ନିର୍ଦ୍ଦିଷ୍ଟ ସତ୍ୟ ବିଚାର-ଲବ୍ଧ ନୁହେଁ । ଏକ ଅତୀଂନ୍ଦ୍ରିୟ ଚେତନାର ଏହା ଅଂତରୋପଲବ୍ଧି ରୂପେ ପ୍ରାପ୍ତ । 'ସତ୍ୟ' ସମ୍ପର୍କରେ ସମସ୍ତ ମାନବଙ୍କ ଅଭିଜ୍ଞାକୁ ସେ ଏକ ସୁଂଦର ରୂପକ ଭିତରେ ପରିବେଷଣ କରିଛଂନ୍ତି । ମଣିଷ ଜାତି ହାତ ପାଦ ବଂଧା ଥାଇ ଏକ ଅନ୍ଧକାର ଗୁହା ଭିତରେ ଆଲୋକକୁ ପଛକରି ବସି ବାହାରୁ ପ୍ରତିଫଳିତ ହେଉଥିବା ସାମାନ୍ୟ ଆଲୋକାଭାସକୁ ପ୍ରକୃତ ଆଲୋକ ମଣିବା ଭଳି, ଯାବତୀୟ ମାନବୀୟ ଜ୍ଞାନ କେବଳ ସତ୍ୟାଭାସ ମାତ୍ର । ପ୍ଲାଟୋଂକର ପରମ ସତ୍ (Absolute) ଚେହେରାରେ ଉପନିଷଦୀୟ ବ୍ରହ୍ମଂକ ଅନୁରୂପ-ଦର୍ଶନ ବା ଫିଲୋସଫିକୁ ବିଶ୍ୱପ୍ରକାଶର ଅଂତର୍ସତ୍ୟ ଉଦ୍‌ଘାଟନ ନିମଂତେ ସମସ୍ତ ପ୍ରକାଶମାନ ଜାଗତିକ ସତ୍ତାର ଅତିକ୍ରମଣପାଇଁ ପ୍ଲାଟୋ ନିର୍ଦ୍ଦେଶ କରିଛଂନ୍ତି । ଏ ଚିଂତାଧାରା ଗ୍ରୀକ୍‌ଚେତନାର ଅନୁକୂଳ ନଥିଲା । ମାତ୍ର ପରବର୍ତ୍ତୀ ୟୁରୋପୀୟ ଓ ମଧ୍ୟପ୍ରାଚ୍ୟର ଇସଲାମୀ ରହସ୍ୟବାଦ ପ୍ଲାଟୋ-ଅତୀଂନ୍ଦ୍ରିୟବାଦ ଦ୍ୱାରା ବହୁଭାବେ ପ୍ରଭାବିତ ।

(ଖ) ଇହୁଦୀ ଧର୍ମ-ଦର୍ଶନ ଓ ପ୍ଲାଟୋନୀୟ ଭାବ ପ୍ରଭାବ—

ପାଶ୍ଚାତ୍ୟ ଜୀବନ ଦର୍ଶନର ଦ୍ୱିତୀୟ ଧାରାଟି ଇହୁଦୀୟ । ଇସରାଏଲ ମହାତ୍ମା ପ୍ରଫେଟ୍‌ମାନଂକର ମାନବଚେତନାକୁ ଅତୁଳନୀୟ ଦାନ ହେଲା ଏକେଶ୍ୱରବାଦ ଏବଂ ପରମେଶ୍ୱରଂକର ଏକ ଆରାଧ୍ୟ ବ୍ୟକ୍ତି-ରୂପ ersonal God , ସର୍ବାତିଶାଂତ ନିର୍ଗୁଣ ନିରୂପ ଜଗତ-ନିଃସଂପୃକ୍ତ ବ୍ରହ୍ମ ପରିବର୍ତ୍ତେ ହିନ୍ଦୁ ଚେତନାର ମାନବୀୟ ଭାବ ସଂବେଦନଶୀଳ ଉପାସ୍ୟ ଈଶ୍ୱର ମନୁଷ୍ୟ ଚିଂତାଚେତନାର ଅଧିକ ନିକଟବର୍ତ୍ତୀ ମନେହୁଅଂନ୍ତି । ପାଶ୍ଚାତ୍ୟ ଧର୍ମ ଚେତନାର ଜୀବନ ଓ ଜଗତପ୍ରତି ବଳିଷ୍ଠ ଆକର୍ଷଣ, ସଂବେଦନଶୀଳତା ଏବଂ ବ୍ୟକ୍ତିକୁ ଆଧ୍ୟାତ୍ମିକତା ପ୍ରତି ଆକୃଷ୍ଟ କରାଇବାରେ ଏ 'ଈଶ୍ୱର' ଭାବମୂର୍ତ୍ତିଟିର ଅବଦାନ ବିପୁଳତମ । ମାୟାବାଦ ଓ ବୈରାଗ୍ୟ ପରିବର୍ତ୍ତେ ଏକ ବଳିଷ୍ଠ ଜୀବନବାଦ ଏଇ ସୂତ୍ରରେ ହିଁ ପାଶ୍ଚାତ୍ୟ ଧର୍ମଦର୍ଶନର ପ୍ରଧାନ ବିଭବ ରୂପେ ପ୍ରକଟିତ ।

---

rest from its wanderings and is one with itself as are the objects with which it deals."

'Pheado'—qt—S. Radhakrishnan 'Eastern Religion and Western Thought'—p. 145

Digitized by PPRACHIN, SOA

ହିବ୍ରୁ ଧର୍ମରେ ଈଶ୍ୱରଙ୍କ ପ୍ରତିଶ୍ରୁତ ସ୍ୱର୍ଗରାଜ୍ୟ (Promised Land) ଏଇ ପୃଥିବୀରେ ଅନ୍ୱେଷିତ ଥିଲା । ହିବ୍ରୁ-ଗ୍ରନ୍ଥରେ ମୃତ୍ୟୁର ଅନ୍ତେ ଜୀବନ ସମ୍ପର୍କରେ କୌଣସି ଉଲ୍ଲେଖ ନାହିଁ । ମନୁଷ୍ୟ ଓ ଈଶ୍ୱରଙ୍କ ମଧ୍ୟରେ ଯାବତୀୟ ସଂପର୍କ ଏଇ ପାର୍ଥିବ ଜୀବନକୁ କେନ୍ଦ୍ରକରି । ହିବ୍ରୁର ଚିନ୍ତା ଜାତିଗତ, ବ୍ୟକ୍ତିଗତ ନୁହେଁ । ତେଣୁ ଏହାର ଧର୍ମ ମଧ୍ୟ ଗୋଷ୍ଠୀଧର୍ମ । ସ୍ୱଗୋଷ୍ଠୀ, ସ୍ୱଜାତି ଓ ସ୍ୱଧର୍ମର ଚିନ୍ତାବନ୍ଧନ ଭିତରେ ବିଶ୍ୱମାନବ ଓ ବିଶ୍ୱେଶ୍ୱର ଅବଧାରଣା ପାଇଁ ତେଣୁ ହିବ୍ରୁମାନସର ଅନୁକୂଳତା ନାହିଁ । ମତାନ୍ଧତା ଓ ଧର୍ମାନ୍ଧତା (dogma) ଏହାର ଆଚରିକପନ୍ଥାକୁ ଶୃଙ୍ଖଳିତ କରିଛି ।

ପ୍ରସଂଗତଃ ଉଲ୍ଲେଖଯୋଗ୍ୟ ହିବ୍ରୁ ଧର୍ମ ଭିତରେ ରହସ୍ୟବାଦୀ କାବାଲିଜମ୍ ଏକ ସ୍ୱୀକୃତ ଗୁହ୍ୟ-ସାଧନ-ବିଦ୍ୟା ଓ (esoteric cult) ଭାରତୀୟ ତନ୍ତ୍ରୋପାସନା ସଦୃଶ ସତ୍ତାର ବିଭିନ୍ନ ଚେତନା କେନ୍ଦ୍ର ଉନ୍ମୋଚନ ଏବଂ ଉତ୍ସାରଣର ସଙ୍କେତ-ପରିପୁଷ୍ଟ । ଅବଶ୍ୟ ଇହୁଦୀ ଧର୍ମଚେତନା ଖ୍ରୀଷ୍ଟ ଚିନ୍ତାଧାରାପରି ଉଚ୍ଚାରଣରେ ରହସ୍ୟବାଦ ବିରୋଧୀ । ମାତ୍ର ଇହୁଦୀ ପ୍ରଫେଟ୍‌ମାନଙ୍କର ଆଧ୍ୟାତ୍ମିକ ଅନୁଭବ ଓ ଦିବ୍ୟପ୍ରେରଣା ସମ୍ବାଦ ଅଲୌକିକ ଚେତନାସ୍ତରଣକୁ ପରୋକ୍ଷ ସ୍ୱୀକୃତି ଦିଏ । ଦିବ୍ୟବାଣୀ, ଦିବ୍ୟଦୃଶ୍ୟ, ଦିବ୍ୟୋପଲବ୍ଧିର ନିଦର୍ଶନ ହିବ୍ରୁ ଗ୍ରନ୍ଥରେ ବିରଳ ନୁହେଁ । ଈଶ୍ୱରଙ୍କ ସମ୍ବନ୍ଧରେ ମାନବାତ୍ମା କେବେ ପୂର୍ଣ୍ଣ ଜ୍ଞାନ ଲାଭ କରିବା ସମ୍ଭବ ନୁହେ ଏବଂ ଈଶ୍ୱର ଅଭେଦ୍ୟ ଅନ୍ଧକାରର ପରପାରରେ ସ୍ଥିତ ଯାହା ମାନବର ଜ୍ଞାନ ଉଲ୍ଲଂଘନ କରିପାରିବ ନାହିଁ—ଏଇ ବିଶ୍ୱାସ । ଏହା ଈଶ୍ୱର ଓ ମାନବ ମଧ୍ୟରେ ସକଳ ପ୍ରତ୍ୟକ୍ଷର ସଂଯୋଗକୁ ଅସ୍ୱୀକାର କଲେ ମଧ୍ୟ 'Old Testament'ରେ ଆତ୍ମା ପରମେଶ୍ୱରଙ୍କ ସନ୍ଦେଶ ଲାଭ କରିବା ପ୍ରସଙ୍ଗ ବର୍ଣ୍ଣିତ ଅଛି । ମୁଖ୍ୟତଃ ଏକ ଆଚରିତ ଧର୍ମ ରୂପେ ହିବ୍ରୁ ଦର୍ଶନରେ ଏ 'ପ୍ରତ୍ୟକ୍ଷ ସଂଯୋଗ ବାଦ'ର ପରୋକ୍ଷ-ପ୍ରକାଶକୁ ଅସ୍ୱୀକାର କରାଯାଇ ନପାରେ ।

ଫିଲୋ ଓ ଜ୍ଞେୟଶୂନ୍ୟବାଦ—ହିବ୍ରୁ ଧର୍ମର ପ୍ରତିବାଦରେ ହିଁ ୟୁରୋପରେ ଖ୍ରୀଷ୍ଟଧର୍ମର ଅଭ୍ୟୁଦୟ ବୋଲି କୁହାଯାଇପାରେ । ଯୀଶୁଖ୍ରୀଷ୍ଟଙ୍କ ଆବିର୍ଭାବର ଅବ୍ୟବହିତ ପୂର୍ବ ଓ ପର କେତୋଟି ବର୍ଷ ପାଶ୍ଚାତ୍ୟ ଜୀବନର ଏକ ବହୁ ଆଲୋଡ଼ିତ ଅସ୍ଥିରତାର ସାକ୍ଷୀ । ଖ୍ରୀଷ୍ଟଧର୍ମର ଅଭ୍ୟୁଦୟ ଫଳରେ ପ୍ରାକ୍ତନ ଧର୍ମଧାରାମାନଙ୍କରେ ବହୁ ରୂପଗତ ପରିବର୍ତ୍ତନ ଘଟିଲା । ବିଭିନ୍ନ ରାଜନୈତିକ ଓ ସାଂସ୍କୃତିକ ସଂଘର୍ଷ ଏବଂ ସମନ୍ୱୟ ପ୍ରକ୍ରିୟା ଭିତରେ କିଏ କାହାଦ୍ୱାରା କେତେ ଦୂର ପ୍ରଭାବିତ ତାହାର ଯଥାର୍ଥ ନିରୂପଣ ସମ୍ଭବ ନୁହେଁ । ବୈଦିକ ମିତ୍ର ଓ ବରୁଣ, ଭାରତୀୟ ବୁଦ୍ଧ, ପାରସିକ ମିତ୍ର, ଅହୁର—ମଜଦା ମିଶରୀୟ ମାତୃଶକ୍ତି (Isis), ହେଲେନିକ ଅଲିମ୍ପିଅନ ଦେବତା ଓ ହିବ୍ରୁ ଏବଂ ରୋମାନ ପ୍ରଭୃ ଦେବତାମାନଙ୍କ ସହ ଖ୍ରୀଷ୍ଟୀୟ ପ୍ରେମ/କରୁଣାମୟ ଅନ୍ତର୍ଯାମୀ ଈଶ୍ୱର ଚେତନାର ଭାବଗତ ଆଦାନ ପ୍ରଦାନର ରୂପ ପରିଣତିଟି ଖ୍ରୀଷ୍ଟୀୟ ପ୍ରଥମ ଶତକରେ ହିଁ ସେ ଯୁଗର ପ୍ରଧାନ ଆନ୍ତର୍ଜାତିକ ବିଦ୍ୟାପୀଠର ସହର ଆଲେକ୍‌ଜାଣ୍ଡ୍ରିୟାରେ ଆତ୍ମପ୍ରକାଶ କରିଥିଲା । ନବ୍ୟ ରୂପାନୁଭୂତି ଯୁକ୍ତ ଏଇ ଧର୍ମ/ଦର୍ଶନ ଓ ସାଂସ୍କୃତିକ ଚେତନାର ପ୍ରଧାନ ଅଭିବ୍ୟକ୍ତିମାନ କିଂନ୍ତୁ ମୂଳ ସିଦ୍ଧାଂତରେ ରହସ୍ୟବାଦୀ ଦର୍ଶନ ଆଶ୍ରିତ ଥିଲେ । ପ୍ଲାଟୋନିଜମ୍ (ନବ-ପ୍ଲାଟୋବାଦ) ଓ ଜ୍ଞେୟବାଦ ଏହାର ପ୍ରଧାନ ସଂଗ୍ରାହକ ଶକ୍ତି ଥିଲା ।

ପ୍ଲାଟୋଙ୍କର ଅତୀନ୍ଦ୍ରିୟ ପରମ ସତ୍ ଚେତନାର ତାତ୍ତ୍ୱିକ ଭିତ୍ତି ଉପରେ ଏ ସବୁର ଅଭ୍ୟୁଦୟ ଘଟିଥିଲା । ଏ ନିଓ-ପ୍ଲାଟୋନିଜମ ଏଭଳି ଏକ ଶକ୍ତିଶାଳୀ ଚିନ୍ତାଧାରା ରୂପେ ଆତ୍ମପ୍ରକାଶ କରିଥିଲା ଯେ ଖ୍ରୀଷ୍ଟଙ୍କର ଆବିର୍ଭାବ ପୂର୍ବରୁ ଏହା ଇହୁଦୀ ଚେତନାରେ ମଧ୍ୟ ଅନୁପ୍ରବେଶ କରିଥିଲା ।

Digitized by PPRACHIN, SOA

ହିବ୍ରୁ-ଦାର୍ଶନିକ ଫିଲୋ (ଖ୍ରୀ: ପୂ: ୨୦-ଖ୍ରୀ: ଅ: ୪୦) ଙ୍କଠାରେ ଏହି ଚିନ୍ତାଧାରାର ପୁଷ୍ଟଲତା ଆସିଥିଲା । ନିଜକୁ ଏକ ନୈଷ୍ଠିକ ଜାଉ ବୋଲି ଦାବୀ କରୁଥିବା ଏହି ଭଦ୍ରବ୍ୟକ୍ତି ଜଣକ ହିବ୍ରୁ ଧର୍ମ ଦର୍ଶନ ସହ ପ୍ଲାଟୋଂକ ଚିନ୍ତାଧାରାକୁ ସମ୍ମିଶ୍ରିତ କରି ତାହାର ଯେଉଁ ବ୍ୟାଖ୍ୟାରୂପ ବାଢ଼ିଲେ, ତାହା ପୁରାପୁରି ରହସ୍ୟବାଦୀ ଭାବଫବଳିତ । ଫିଲୋ ନିର୍ଦ୍ଦିଷ୍ଟ ପ୍ରଥମ ପରମ କାରଣସତ୍ତା ( The First Principle) ଏକ ନୈର୍ବ୍ୟକ୍ତିକ, ସର୍ବାତୀତାଂତ ଅଗୋଚର ସିଦ୍ଧାନ୍ତ ଯାହା ଇହୁଦୀ-ଉପାସ୍ୟ ଜେହୋଭାଙ୍କଠାରୁ ଭିନ୍ନ ଏବଂ ପ୍ରାଚ୍ୟ ବ୍ରହ୍ମଶୂନ୍ୟ ସ୍ୱରୂପର ଅଧିକ ନିକଟବର୍ତ୍ତୀ ମନେହୋଇଥାନ୍ତି । (୮)

ପାର୍ଥିବ ଚେତନା ଓ ପରମ ସତ୍ତ୍ୱ ମଧ୍ୟରେ ଫିଲୋଙ୍କନ ବା 'ଲୋଗସ'କୁ (Logus) ଅବସ୍ଥାପିତ କରିଛଂନ୍ତି । ଏହା ପ୍ଲାଟୋଂକ ଭାବର ଭାବ-ରୂପ (Idea of Idea) ସମାଂତରାଳ ଚେତନା । ଏହା ନିର୍ଗୁଣ ସତ୍ତାଙ୍କର ପ୍ରକାଶ-ଶକ୍ତି ସହ ତୁଳନୀୟ । ଫିଲୋ ମାନବାତ୍ମାର ଦିବ୍ୟତ୍ୱ ଓ ଦିବ୍ୟଜ୍ଞାନ ଅଧିକାରରେ ବିଶ୍ୱାସୀ । 'ଈଶ୍ୱରଂକୁ ଜାଣିବା ପାଇଁ ମନୁଷ୍ୟକୁ ଈଶ୍ୱର ହେବାକୁ ପଡ଼ିବ'—ଫିଲୋଙ୍କର ଏ ବିଶ୍ୱାସ ହିବ୍ରୁ ଈଶ୍ୱର-ତତ୍ତ୍ୱ ପ୍ରତି ଏକ ପ୍ରଚଣ୍ଡ ଆଘାତ ଥିଲା । ଫିଲୋ ବର୍ଣ୍ଣିତ 'ଅଧ୍ୟାତ୍ମ ଯାତ୍ରା'ରେ ସତ୍ତାର ଭାବତନ୍ମୟତା ଓ ଉଲ୍ଲାସ, ଜ୍ଞାନର ବୋଧାତୀତତା ଓ ସହଜ ଆବିର୍ଭାବ ଏବଂ ସତ୍ତାର ଚେତନାଗତ ଉତ୍କ୍ରମଣର ରହସ୍ୟବାଦୀ ଚିନ୍ତ ପ୍ରଦତ୍ତ ।

ଫିଲୋଂକ ରହସ୍ୟବାଦର ମୂଳ ପ୍ରବଣତାଟି ଜ୍ଞେୟବାଦ ପ୍ରଭାବିତ । ଉପନିଷଦ-ସୂଚିତ 'ସତ୍ତା-କୋଷ' ପ୍ରସଂଗ ସହ ଏହାର ଭାବସାମ୍ୟ ରହିଛି । ଅଜ୍ଞାତ ଓ ଅଜ୍ଞେୟ ପରମ ପ୍ରଜ୍ଞାନ ଶାଶ୍ୱତ ଯେ ଅଜ୍ଞାନ ମାନବର ନିର୍ମଳ ପ୍ରଜ୍ଞାରେ ସ୍ୱୟଂ ପ୍ରତ୍ୟକ୍ଷୀଭୂତ ହୋଇଥାଆନ୍ତି, ତାହାହିଁ ରହସ୍ୟବାଦୀ 'ଜ୍ଞେୟତତ୍ତ୍ୱ' (Gnosticism) ରୂପେ ବିଶ୍ଳେଷିତ । ଏହାର ସିଦ୍ଧାଂତରେ—

୧) ପରମସତ୍ ଜୀବସତ୍ତାର ଗୋଚର ପରିସର ବହିର୍ଭୂତ ଏକ ସର୍ବାତୀତ କୋଟୀରେ ଅବସ୍ଥିତ ।

୨) ଏହାର ବିପରୀତ କୋଟୀରେ ଜଡ଼ ଜଗତର ମୂଳ 'ଅସତ୍' ବିଦ୍ୟମାନ ।

୩) ସର୍ବୋଚ୍ଚ ସ୍ତରର ପ୍ରାଣସ୍ପଂଦନ ମଧ୍ୟବର୍ତ୍ତୀ ବହୁସ୍ତର ଦେଇ ଜଡ଼ ମାଧ୍ୟମରେ ରୂପାଶ୍ରୟୀ ଜଗତର ସୃଷ୍ଟି କରେ ।

୪) ଜଡ଼ ଓ ଜୀବ ଉଭୟ ପରମ ସତ୍ ସହ ତତ୍ତ୍ୱତଃ ସଂଯୁକ୍ତ ।

୫) ପରମ ସତ୍ତାଙ୍କ ସଂପର୍କରେ ସ୍ୱତଃ ଅଭିଜ୍ଞା (Gnosis) ମାନବ ଚେତନାରେ ସ୍ୱୟଂ ଉଦିତ ହୋଇଥାଏ ।

ଖ୍ରୀଷ୍ଟୀୟ ପ୍ରଥମ ଶତକରେ ହିଁ ଏ ତତ୍ତ୍ୱ ଖ୍ରୀଷ୍ଟଧର୍ମ ବିଗ୍ରହକୁ ପ୍ରଭାବିତ କରି ଜ୍ଞାନ ଓ ସତ୍ୟକୁ ଈଶ୍ୱରଂଙ୍କ ପରିଭାଷା ରୂପେ ପ୍ରୟୋଗ କରିଥିଲା । Old Testament ର ପ୍ରଭାବକୁ ଏହା ଅନେକ ପରିମାଣରେ କ୍ଷୁଣ୍ଣ କରି ଖ୍ରୀଷ୍ଟଧର୍ମକୁ ରହସ୍ୟବାଦୀ ଆଭିମୁଖ୍ୟ ପ୍ରଦାନ କରିଥିଲା । ରୋମାନ୍ କାଥଲିକ ଚର୍ଚ୍ଚ ଉଭୟ ଜ୍ଞେୟବାଦୀଙ୍କୁ ଖ୍ରୀଷ୍ଟଧର୍ମ ବିରୋଧୀ ସଇତାନର ମତ ବୋଲି ସନ୍ଦେହ କରୁଥିଲା । ଖ୍ରୀଷ୍ଟାବ୍ଦ ପ୍ରଥମ ଶତକରେ ପ୍ଲୁଟାର୍କ (Plutarch) ଏକ ଉଦାରପନ୍ଥୀ ରୂପେ ରହସ୍ୟବାଦ ଓ ଧର୍ମ-

---

(8) "He is full of Himself, and sufficient to Himself equally, before and after the creation of the universe, for he is unchangeable, requiring nothingelse at all, so that all things belong to Him, but He belongs to nothing." Philo Jadaeus. Drummond.'

qt—'Easterng Religion......thoughts'—P—193.

Digitized by PPRACHIN, SOA

ଧାରାର ସମନ୍ୱୟ ସାଧନ ଘଟାଇଥିଲେ । ଗ୍ରୀକ୍ ଚିନ୍ତାଧାରା ଓ ମିଶରୀୟ ଧର୍ମଧାରଣାଦ୍ୱାରା ପ୍ରଭାବିତ, ଖ୍ରୀଷ୍ଟିୟାନ୍ ପ୍ଲୁଟାର୍କ କ୍ଷେୟବାଦ ଓ ଈଶ୍ୱର-ଉପାସନା ମଧ୍ୟରେ ପୂର୍ଣ ସାମଞ୍ଜସ୍ୟ ପ୍ରତିପାଦନ କରିଥିଲେ । ପରବର୍ତ୍ତୀ ବହୁ କ୍ଷେୟବାଦୀ ସାଧକଂକ ଆନୁକୂଲ୍ୟରେ କ୍ରମଶଃ ଖ୍ରୀଷ୍ଟଧର୍ମରେ ରହସ୍ୟୋପାସନା ଅଧିକାଧିକ ପ୍ରବେଶର ସୁଯୋଗ ଲାଭ କରିଛି ଓ ପରେ ପରେ ଇସ୍‌ଲାମ ଚେତନାକୁ ମଧ୍ୟ ଅନୁପ୍ରବେଶ କରିଛି ।

## ଖ୍ରୀଷ୍ଟଧର୍ମ ଓ ନବପ୍ଲାଟୋବାଦ—

ପ୍ଲାଟୋଦର୍ଶନ ଓ ତାଂକର ଅନୁଗାମୀ ବହୁ ଶିଷ୍ୟଂକର ଭିନ୍ନ ସମ୍ପ୍ରଦ ଏବଂ ଗ୍ରୀକ୍ ଚିନ୍ତାଧାରାର ଏକ କ୍ରମ ସଂଶ୍ଲେଷିତ ଓ ସମନ୍ୱିତ-ରୂପ ତତ୍‌କାଳୀନ ଭାବ-ରାଜ୍ୟରେ ଯେଉଁ ନିର୍ଦ୍ଦିଷ୍ଟ ପରିଣାମ ଅଭିମୁଖୀ ହୋଇଉଥିଲା ତାହାର ଏକ ସୁସମଂଜସ ଅଭିବ୍ୟକ୍ତି ଖ୍ରୀଷ୍ଟାବ୍ଦ ପ୍ରଥମ ଶତକର ନବ ପ୍ଲାଟୋଦର୍ଶନ (Neo Platonism) ଯାହାର ପ୍ରଭାବ ଖ୍ରୀ: ଅ: ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ୟୁରୋପର ଭାବରାଜ୍ୟରେ ବଳବତ୍ତର ଥିଲା, (ଏବଂ ସାମ୍ପ୍ରତିକ ଚିନ୍ତାମାନସରେ ମଧ୍ୟ ତାର ପରୋକ୍ଷ ପ୍ରଭାବ ସ୍ୱୀକୃତ ।) ପ୍ଲୋଟିନସ୍ (Plotinus—ଖ୍ରୀ. ପୂ. ୧୯୫-ଖ୍ରୀ: ଅ: ୭୦) ଏହାର ପ୍ରତିଷ୍ଠାତା ଓ ପ୍ରଧାନପ୍ରବକ୍ତା ରୂପେ ସମ୍ମାନିତ । ଏଥେନ୍‌ସ ସ୍ଥିତ ପ୍ଲାଟୋନିକ ଏକାଡ଼େମୀ ଏହି ନବତନ ଚିନ୍ତାଧାରାର ପ୍ରଧାନ ପରିପୋଷକ ଥିଲା । ପ୍ଲୋଟିନସ ପାଶ୍ଚାତ୍ୟ ଅଧିତତ୍ତ୍ୱ ସହ ଉପଲବ୍‌ଧିମୂଳକ ସତ୍ୟଜ୍ଞାନର ରହସ୍ୟବାଦୀ ସଂଯୋଗକୁ ପ୍ରତିପାଦନ କରି ଦର୍ଶନ ଓ ଧର୍ମକୁ ଜୀବନ ସହ ପ୍ରତ୍ୟକ୍ଷ ସଂଯୋଗ-ମୂଳକ କରିବାରେ ସାଧନାରତ ଥିଲେ । ନିଓପ୍ଲୋଟୋନିଜମ୍ ନବଜାଗ୍ରତ ଖ୍ରୀଷ୍ଟଧର୍ମକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲା । କ୍ରମଶଃ ଚର୍ଚ୍ଚର ଉପାସନା ପଦ୍ଧତିକୁ ଏହା ପ୍ରଭାବିତ ଓ ଅବଶେଷରେ ପୂର୍ଣ ସଂକ୍ରାମିତ କରି ଖ୍ରୀଷ୍ଟଧର୍ମକୁ ରହସ୍ୟବାଦୀ ଆଭିମୁଖ୍ୟ ପ୍ରଦାନ କରିଥିଲା । ପରବର୍ତ୍ତୀ ସମୟରେ ସେଣ୍ଟ ଅଗଷ୍ଟାଇନ ଓ ଡାୟୋନିସିସ୍ (ଏରିଓପାଜାଇଟ୍)ଙ୍କ ଦ୍ୱାରା ପ୍ଲୋଟିନୀୟ ଚିନ୍ତାଧାରା ଚର୍ଚ୍ଚ-ବିଶ୍ୱରଧାରା ସହ ଗଭୀରଭାବେ ସଂଶ୍ଳିଷ୍ଟ ହୋଇଗଲା । ଜଣେ ଅଣ-ଖ୍ରୀଷ୍ଟୀୟାନ ପ୍ଲୋଟିନସଂକ ଖ୍ରୀଷ୍ଟଧର୍ମରେ ଏହି ପ୍ରଚଣ୍ଡ ଓ ସୁଦୂରପ୍ରସାରୀ ପ୍ରଭାବକୁ ଲକ୍ଷ୍ୟକରି ସମୀକ୍ଷକମାନେ ଉଚ୍ଛ୍ୱସିତ ପ୍ରଶଂସାପତ୍ର ଦାନ କରିଥାଂତି । (୯)

ପ୍ଲୋଟିନସ୍ ପ୍ରମୁଖତଃ ତତ୍ତ୍ୱବାଦୀ ଥିଲେ ଏବଂ ତାଂକର ରହସ୍ୟବାଦୀ ବିଶ୍ୱର ଭାବବାଦୀମାନଂକ ଅପେକ୍ଷା ବରଂ ଶଂକର, ଏକହାର୍ଟ ପ୍ରଭୃତିଂକ ଉପସ୍ଥାପନା ଓ ବାଣୀଭଂଗୀ ସହ ଘନିଷ୍ଠ ସାମଂଜସ୍ୟ ରକ୍ଷାକରେ । ପ୍ଲୋଟିନସଂକ ପୂର୍ବବର୍ତ୍ତୀମାନେ ଦିବ୍ୟଚେତନାକୁ ପାର୍ଥିବ ଅତୀତ ଏକ ସ୍ୱର୍ଗରାଜ୍ୟରେ ସଂସ୍ଥାପିତ କରିଥିଲେ । ପ୍ଲୋଟିନସ୍ ସେହି ଅଦେଖା ରାଜ୍ୟରୁ ଅନୁଭୂତ ରାଜ୍ୟକୁ ଆତ୍ମାର ପ୍ରତ୍ୟାବର୍ତ୍ତନର ଧାରାଟି ସୂତ୍ରପାତ କରିଥିଲେ, ପ୍ଲୋଟିନସଂକ ପରମ (Absolute) ଅସୀମ ଓ ସର୍ବାତିକ୍ରାଂତ ହେଲେ ମଧ୍ୟ ଆତ୍ମାରୂପେ ଜୀବନରେ ପ୍ରକଟିତ । ତେଣୁ ଜୀବନ ସ୍ୱଭାବତଃ ଦୈବତମୁଖୀ । ସତ୍ୟ, ସୌନ୍ଦର୍ଯ୍ୟ ଓ ପ୍ରେମ ତାର ଜନ୍ମଗତ ଅଧିକାର ଏବଂ ବ୍ୟକ୍ତି ଶ୍ରଦ୍ଧେୟ ଓ ସମ୍ମାନନୀୟ ।

---

(୯) "It is no paradox to say with Eucken that the Pagan Plotinus has left a deeper mark upon Christian thought than any other single man"..."Even the future Christian Philosophy must continue to be largely Plotinian."

Encyclopaedica Britanika Vol. 18, P-81.

Digitized by PPRACHIN, SOA

ପ୍ଲୋଟିନସଙ୍କର ପରମ ସତ୍ତ୍ୱ ଏବଂ Nous, ଉପନିଷଦୀୟ ବ୍ରହ୍ମ ଓ ହିରଣ୍ୟଗର୍ଭ ସମପର୍ଯ୍ୟାୟର ବୋଲି ବୁଝାଯାଇପାରେ । ସମୀକ୍ଷକମାନଙ୍କ ମତରେ ପ୍ଲୋଟିନସ୍ ଦର୍ଶନ ମାଧ୍ୟମରେ ପ୍ରାଚ୍ୟଚେତନା ଖ୍ରୀଷ୍ଟୀୟାନ ଧର୍ମଭାବନାକୁ ସଂସ୍କୃତ ହୋଇଛି । ପ୍ଲୋଟିନସ ଆତ୍ମାର ଅମରତ୍ୱ ସହ ଜନ୍ମାଂତରକୁ ମଧ୍ୟ ବିଶ୍ୱାସ କରୁଥିଲେ । ଆତ୍ମା ଜନ୍ମାଂତର ପ୍ରକ୍ରିୟାରେ ଗତକର ସତ୍ୟର Vision ବା ଅଭିଜ୍ଞାନ ଲାଭ କରିଥାଏ । ଭିନ୍ନ ଜନ୍ମମାନ ଆତ୍ମାର ଭିନ୍ନ ଶଯ୍ୟାରେ ଶୟନ ବା ନିଦ୍ରାରେ ସମାଗତ ଭିନ୍ନ ଭିନ୍ନ ସ୍ୱପ୍ନ ସଦୃଶ । (୧୦) ଭାବସାଧନାର ଶୀର୍ଷତମ ବିଂଦୁରେ ଭାବଲେଶହୀନ ସଂଯୋଗ ସ୍ଥାପିତ ହୁଏ ।

ପ୍ଲୋଟିନସ୍ ଦର୍ଶନକୁ ପ୍ରଭାବଶାଳୀ ଓ ଲୋକପ୍ରିୟ କରାଇବାରେ 'Porphyry' (ଖ୍ରୀ: ଅ: ୨୩୦–୩୦୦) ଭୂମିକା ଗୁରୁତ୍ୱପୂର୍ଣ୍ଣ । ପାଶ୍ଚାତ୍ୟ ଦ୍ୱୈତବାଦୀ ବ୍ୟବଧାନର ସେ ଉଚ୍ଛେଦବିରୋଧୀ ଥିଲେ ଓ ସ୍ରଷ୍ଟା ଓ ସୃଷ୍ଟି ସଂପର୍କ ମୂଳରେ ଏକ ସଂଯୋଗ ତତ୍ତ୍ୱର ପ୍ରୟୋଜନ ଖୋଜିଥିଲେ ଯାହା ପ୍ଲୋଟିନସ ଦର୍ଶନ ତାଂକୁ ଦେଇପାରିଥିଲା । ପ୍ଲୋଟିନୀୟ ଚେତନାକୁ କ୍ରିୟାମୂଳକ ଓ ସାଧନାତ୍ମକ ରୂପରେଖ ପ୍ରଦାନ କରି କ୍ରମଶଃ ଭକ୍ତିର ପ୍ରଲେପ ମାଧ୍ୟମରେ ଆଧ୍ୟାତ୍ମିକ କରିନେବା ପରବର୍ତ୍ତୀ କେତୋଟି ଶତକର ଉଦ୍ୟମ-ରୂପ ।

ପ୍ରସଂଗତଃ ଉଲ୍ଲେଖଯୋଗ୍ୟ, ଷଷ୍ଠ ଶତାବ୍ଦୀରେ ଏଥେନ୍ସର ପ୍ଲାଟୋନିକ୍ ସ୍କୁଲମାନ ବଂଦ କରି ଦିଆଯିବା ପୂର୍ବରୁ ଖ୍ରୀଷ୍ଟୀୟାନ ଧର୍ମମତକୁ ଅନ୍ତଃସ୍ୱରୂପରେ ନବ-ପ୍ଲାଟୋ-ବାଦ ଗ୍ରାସ କରିସାରିଥିଲା । ତ୍ରୟୋଦଶ ଶତାବ୍ଦୀରେ ଏକହାର୍ଟ ପ୍ରଭୃତି ରହସ୍ୟ-ସାଧକମାନଂକ ଦ୍ୱାରା ଏହାର ପୁନର୍ବିକାଶ ଘଟିଥିଲା । ରେନେସାଁକାଳୀନ ପାଶ୍ଚାତ୍ୟଦର୍ଶନରେ ନବ-ପ୍ଲାଟୋ-ଦର୍ଶନର ଦ୍ରୁତ ପୁନରୁତ୍ଥାନ ଘଟିଥିଲା ଓ ପରବର୍ତ୍ତୀ ରୋମାଣ୍ଟିକ ଭାବାଦର୍ଶକୁ ତାହା ସଂପ୍ରସାରିତ ହୋଇଥିଲା ।

ଖ୍ରୀଷ୍ଟିୟାନ୍ ଧର୍ମମତରେ ରହସ୍ୟବାଦର ସ୍ଥିତି ସଂପର୍କରେ ସମୀକ୍ଷକମାନଂକ ମଧ୍ୟରେ ମତଭିନ୍ନତା ରହିଛି । ବହୁ ବିଚାରକ ହିବ୍ରୁ ତତ୍ତ୍ୱସଂଭୂତ ଖ୍ରୀଷ୍ଟିୟାନ ଧର୍ମମତରେ ରହସ୍ୟବାଦକୁ ବହିରାଗତ ଚିଂତାଧାରା ବୋଲି ପ୍ରତିପାଦନ କରନ୍ତି । ଆଲେକଜାଣ୍ଡ୍ରିୟାର ହିବ୍ରୁ ଧର୍ମ, ଜ୍ଞେୟବାଦ ଓ ନବପ୍ଲାଟୋ ଦର୍ଶନର ଜଗତ ଭିତରେ ସଂବର୍ଧିତ ଏହି ନବାଗଂତୁକ ଉପାସ୍ୟମାନ ଖ୍ରୀଷ୍ଟଧର୍ମ ପ୍ରାଚ୍ୟ ରହସ୍ୟାଭାସ-ସଂଯୁକ୍ତ ହୋଇପଡ଼ିଥିଲା ବୋଲି ସେମାନେ କୁହନ୍ତି । ଏହାର ବିରୁଦ୍ଧମତବାଦୀମାନେ ଖ୍ରୀଷ୍ଟଧର୍ମକୁ ମୂଳତଃ ରହସ୍ୟାତ୍ମକ ଓ ଯୀଶୁକୁ ଏକ ମିଷ୍ଟିକ୍ ବ୍ୟକ୍ତିତ୍ୱ ରୂପେ ବିବେଚନା କରିଥାଂତି । ଯୀଶୁ ପ୍ରଚାରିତ 'ବ୍ୟକ୍ତିଗତ-ଉପଲବ୍ଧ ସତ୍ୟ' ଉପରେ ହିଁ ଏହି ମତବାଦ ପ୍ରତିଷ୍ଠିତ । ଯୀଶୁ ପ୍ରଥମାବସ୍ଥାରେ Essence ସାଧକ 'John the Baptist' ଙ୍କଠାରୁ ଏସୋଟେରିକ ସାଧନ-ରହସ୍ୟର ଦୀକ୍ଷା ନେବା ପ୍ରସଂଗ ମଧ୍ୟ ସେମାନେ ଉଲ୍ଲେଖ କରିଥାଂତି ।

ଯୀଶୁଂକ ପରେ 'ପଲ୍ ବା ଶଲ୍' ଖ୍ରୀଷ୍ଟୀୟ ରହସ୍ୟବାଦର ପ୍ରମୁଖ ପ୍ରବକ୍ତା ରୂପେ ବିବେଚିତ । ଦିବ୍ୟାନୁଭବର ଅନ୍ତର୍ବଚନୀୟତା ଓ ଖ୍ରୀଷ୍ଟ-ଚେତନା ସହ ବ୍ୟକ୍ତିଚେତନାର ଏକାତ୍ମିକତା ('Christ in me') ତାଂକ ରହସ୍ୟବାଦୀ ଅଭିବ୍ୟକ୍ତିର ତାତ୍ପର୍ଯ୍ୟ-ସଂକେତ ବହନ କରିଛି । ପଲ୍ଂକ ଅନୁଭୂତି-ପ୍ରତ୍ୟକ୍ଷତା, ଦେହ ଚେତନାରୁ ବିମୁକ୍ତ, ବାହ୍ୟାଚରଣରେ ଅନାସକ୍ତ, ଖ୍ରୀଷ୍ଟଂକ ସହ ଏକାତ୍ମିକତା ପ୍ରଭୃତି ଭାବ ଚେତନାମାନ ପରବର୍ତ୍ତୀ ଖ୍ରୀଷ୍ଟିୟାନ ରହସ୍ୟାଶ୍ରୟୀ ଅଭିଭାଷଣକୁ ବହୁଭାବେ ପ୍ରଭାବିତ କରିଛି ।

---

(୧୦) "Successive rebirths are like one dream after another or sleep in different beds" Plotinus—Enneads— III, —66.

Digitized by PPRACHIN, SOA

First Epistel of John' ପ୍ରଚଳିତ 'କ୍ଲେସ୍ୟତତ୍ତ୍ୱ' ରହସ୍ୟ-ଭାବ ସମ୍ପୃକ୍ତ । ବାଇବେଲର 'Before Abraham was I' ଉଚ୍ଚାରଣ ଯୀଶୁଙ୍କର ଦିବତ୍ୱ ଓ ଖ୍ରୀଷ୍ଟତ୍ୱର ରୂପ ସଂକେତ ରୂପେ ଗୃହୀତ । ସେଣ୍ଟ ଜେମସ୍‌ଙ୍କର Epistelରେ 'ଜନ୍ମ-ଚକ୍ର'ର ପ୍ରୟୋଗଟି ଜନ୍ମାଂତର-ବାଦ ତଥା ଆତ୍ମାର ଅବିନଶ୍ୱରତା ସଂପର୍କରେ ବିଶ୍ୱାସର ପ୍ରମାଣ ହୋଇପାରେ । ଏ ଆପୋଲଜିଷ୍ଟମାନେ ଖ୍ରୀଷ୍ଟଧର୍ମକୁ ଶ୍ରେଷ୍ଠ ବୋଲି ପ୍ରତିପାଦନ କରିବାକୁ ଚାହୁଁଥିଲେ ଓ ସେଥିପାଇଁ ତାର ତାତ୍ତ୍ୱିକ-ସଂକଳନରେ ଗ୍ରୀକ୍-ଅଭିବ୍ୟକ୍ତି ପ୍ରଣାଳୀକୁ ଗ୍ରହଣ କରିଥିଲେ । ପ୍ରଥମ ଓ ଦ୍ୱିତୀୟ ଶତକ ଭିତରେ ଖ୍ରୀଷ୍ଟଧର୍ମ ବହିର୍ଗତ ବହୁ ଉପାଦାନ ଆପଣା ଭିତରେ ଆତ୍ମସାତ୍ କରି ଏକ ନିର୍ଦ୍ଦିଷ୍ଟ ରୂପାତ୍ମକତା ଲାଭ କରିଛି । (୧୧) ଆଲେକ୍‌ଜାଣ୍ଡ୍ରୀୟ ଖ୍ରୀଷ୍ଟିୟାନ୍‌ଙ୍କ ପ୍ରତିଭୂ ରୂପେ Clement Origen ଖ୍ରୀଷ୍ଟୀୟ ଅଧ୍ୟାତ୍ମ-ତତ୍ତ୍ୱକୁ ପ୍ରାଚ୍ୟ ରହସ୍ୟବାଦୀ ଭାଷାରେ ପରିବେଷଣ କରିଛଂତି ।

ଖ୍ରୀ: ଅ: ପଞ୍ଚମ ଓ ଷଷ୍ଠ ଶତକରେ ଆବିର୍ଭୂତ ଅଣଖ୍ରୀଷ୍ଟିୟାନ>ନିଓପ୍ଲାଟୋନିଷ୍ଟ>ଖ୍ରୀଷ୍ଟିୟାନ ସନ୍ନ୍ୟାସୀ ସାଧକ ସେଣ୍ଟ ଅଗଷ୍ଟାଇନ୍‌ଙ୍କ ଜୀବନୀ ଓ ଦର୍ଶନ ଖ୍ରୀଷ୍ଟିୟାନ ରହସ୍ୟବାଦ ପ୍ରସଙ୍ଗରେ ଅତି ଗୁରୁତ୍ୱପୂର୍ଣ୍ଣ ଏବଂ ତାଂକ ରଚିତ 'କନ୍‌ଫେସନ୍' ବାଇବେଲର ଠିକ୍ ପରବର୍ତ୍ତୀ ସମ୍ମାନର ଅଧିକାରୀ । 'ନାସ୍ତୀୟ ଅଭିବ୍ୟକ୍ତି'ର ସମାନ୍ତରାଳ ଭାଷ୍ୟକାର ରୂପେ ସେ ରହସ୍ୟବାଦୀ ଦର୍ଶନ-ଜଗତରେ ସୁପରିଚିତ ।

ତତ୍ତ୍ୱାଶ୍ରୟୀ ରହସ୍ୟବାଦକୁ ସେଣ୍ଟ ଅଗଷ୍ଟାଇନ ମଧୁର ଭାବବାଦୀ ରସ-ସାଧନା ରୂପେ ପ୍ରତିପାଦନ କରିଛଂତି । ମାନବାତ୍ମାର ଆଂତର ଲିପ୍‌ସାକୁ ସେ ତାର ଦୁର୍ବାରତମ ଆଧ୍ୟାତ୍ମ-ଆକୁତିର ମୂଳ ରୂପେ ଉପସ୍ଥାପିତ କରିଛଂତି । ଈଶ୍ୱର ଉପଲବ୍‌ଧି ପାଇଁ ଧ୍ୟାନ ଧାରଣା ଓ ଭାବ-ଉନ୍ମାଦନାର ପ୍ରୟୋଜନ ସେ ସ୍ୱୀକାର କରଂତି । ବୌଦ୍ଧିକ ଜ୍ଞାନକୁ ବିଷୟାଶ୍ରୟୀ ଜଗତ ପାଇଁ ଓ ଶାଶ୍ୱତ-ଅନୁଭବ ପାଇଁ ଅନ୍ତର୍ଜ୍ଞାନକୁ ଅପରିହାର୍ଯ୍ୟ ବିବେଚନା କରିଛଂତି । ତାଂକ ଈଶ୍ୱର ଅଭିଜ୍ଞାର ସୂତ୍ର ବେଦାଂତର ନେତିବାଦର ସମଧର୍ମୀ । (୧୨) ଉନ୍ମନପାଦ ଚେତନାର ତିନୋଟି ସ୍ତରଗତ ବିଭେଦ ସେ ନିର୍ଦ୍ଦେଶ କରିଛଂତି ( ପ୍ରଜ୍ଞସ୍ୱର, ଆତ୍ମଶୁଦ୍ଧି ଓ ମିଳନ— Illumination, Purgation, Union ) ଯାହା ଏ ଯାବତ୍ ଖ୍ରୀଷ୍ଟିୟାନ ରହସ୍ୟସାଧନାର ଅବିସମ୍ବାଦିତ ସିଦ୍ଧାଂତରୂପେ ତିଷ୍ଠି ରହିଛି ।

ଅଗଷ୍ଟାଇନ୍‌ଙ୍କ ଉପଲବ୍‌ଧି, ଅଭିବ୍ୟକ୍ତି ଓ କାର୍ଯ୍ୟକଳାପରେ ବହୁ ବିରୋଧାତ୍ମକତା ଦୃଷ୍ଟିଗୋଚର ହୁଏ, ଉପଲବ୍‌ଧିର ଉପସ୍ଥାପନାରେ ସେ ପୂର୍ଣ୍ଣ ନବ-ପ୍ଲାଟୋବାଦୀ ଅଦ୍ୱୈତଧର୍ମୀ ଓ ବିଶପ (Bishop)·ର ଆସନରେ ଏକ ମତାଂଧ ଦ୍ୱୈତବାଦୀ । ତତ୍ତ୍ୱ ବ୍ୟାଖ୍ୟାନରେ ସେ ସକଳ ଧର୍ମ-ମତ ଊର୍ଦ୍ଧ୍ୱରେ ପ୍ରକୃତ ଧର୍ମକୁ ଏକ, ସନାତନ, ଅପରିବର୍ତ୍ତନୀୟ ବୋଲି ଘୋଷଣା କରିଥିଲେ ( 'ଖ୍ରୀଷ୍ଟିୟାନ୍ ବୋଲି କଥିତ ହେଉଥିବା ଧର୍ମ ଭିନ୍ନନାମରେ ପ୍ରାଚୀନ କାଳରେ ବି ଥିଲା ) ।'

(11) "Jewish Prophecy, Rabbinic teaching, oriental gnosis, and Greek Philosophy had already mingled their colours upon the palate from which the potrait of Christ was painted..

Pfleiderer—'The Early Christian Conception of Christ'—P 9.

* 'If asked, I know not, If not asked I know." (confession)

(12) "We can know what God is not, but not what He is"

( On the Trinity—VIII – 2 )

Digitized by PPRACHIN, SOA

ଅଥଚ ବିଶେଷ ଭାବରେ ଭିନ୍ନମତାବଲମ୍ବୀମାନଙ୍କୁ ପାଷାଣ୍ଡ ( heretic ) ବୋଲି ଦଣ୍ଡିତ କରିବାକୁ ଚର୍ଚ୍ଚୀୟ ଅଧିକାରର ସେ ସପକ୍ଷବାଦୀ ଥିଲେ । ଏ ଭାବ-ଅସଂଗତି ବହୁ ମିଷ୍ଟିକଙ୍କ ଜୀବନରେ ପରିଦର୍ଶିତ ।

ଖ୍ରୀଷ୍ଟିୟାନ ରହସ୍ୟବାଦର ଜନକ ରୂପେ ସମ୍ମାନିତ ଡାୟୋନିସିସ Aaropagit ନିଜର ବିଶ୍ୱରଦର୍ଶନ ଓ ରଚନା ମାଧ୍ୟମରେ ମଧ୍ୟଯୁଗୀୟ ଚର୍ଚ୍ଚକୁ ଗଭୀର ଅନୁପ୍ରାଣିତ କରିଛନ୍ତି । ଖ୍ରୀଷ୍ଟିୟାନ୍ ରହସ୍ୟ ତତ୍ତ୍ୱର ପ୍ରାମାଣିକ ଗ୍ରନ୍ଥରୂପେ ସ୍ୱୀକୃତ Theologica Mistica ତାଙ୍କର ରଚନା ବୋଲି ଅନୁମାନ କରାଯାଏ । ଖ୍ରୀଷ୍ଟିୟାନ ରହସ୍ୟ ରଚନାର ଅଧ୍ୟାତ୍ମ ଚେତନାସମ୍ବନ୍ଧୀ ବିରୋଧାତ୍ମକ ରୂପ ଚଳମାନ ( divine dark, superfluent darkness of silence the negation of all that is" ଇତ୍ୟାଦି ) ଡାୟୋନିସିସଙ୍କ ଅଭିବ୍ୟକ୍ତ ପ୍ରଭାବିତ ।

ମଧ୍ୟଯୁଗର ପ୍ରାରମ୍ଭରେ ଦୁଇଟି ପ୍ରଭାବଶାଳୀ ଅଧ୍ୟାତ୍ମ-ଭାବନା-ଧାରା ଖ୍ରୀଷ୍ଟଧର୍ମକୁ ପ୍ରଭାବିତ କରିଥିଲା । ଗୋଟିଏ ପ୍ରାୟୋଗିକ 'ବେନେଡିକ୍ଟବାଦ' ଅପରଟି ଉଗ୍ର ନବ-ପ୍ଲାଟୋ-ବାଦ । ଖ୍ରୀ: ୭୩୨ ରେ ଆରବମାନେ ଫ୍ରାନ୍ସରେ ପରାଜିତ ହେବାପରେ ୟୁରୋପୀୟ ଧର୍ମଧାରା ଇସ୍‌ଲାମର ଗ୍ରାସରୁ ଆପଣା ସ୍ୱାତନ୍ତ୍ର୍ୟ ବଜାଇ ରଖିବାକୁ ସମର୍ଥ ହେଲା । ସପ୍ତମ ଶତାବ୍ଦୀରେ ଆଲେକଜାଣ୍ଡ୍ରିୟାର ପତନ ପରେ ବାଗଦାଦ ଓ କାଇରୋ ପ୍ରତିଷ୍ଠ ନବ ଅଭ୍ୟୁଦିତ ସହରମାନ ପୃଥିବୀର ବିଭିନ୍ନ ସଭ୍ୟତା ସଂସ୍କୃତିର ଆଦାନପ୍ରଦାନର କେନ୍ଦ୍ରସ୍ଥଳ ହୋଇଉଠିଲା । ଫଳରେ ଗ୍ରୀକ୍, ଇହୁଦୀ, ପ୍ରାଚ୍ୟ ଓ ଇସ୍‌ଲାମ ଚିନ୍ତାଧାରାର ପୁନର୍ମିଳନ ଓ ସମନ୍ୱୟ ପାଶ୍ଚାତ୍ୟ ଭାବମାନସକୁ ପ୍ରଭାବିତ କଲା । ନବମ ଶତାବ୍ଦୀ ପର୍ଯ୍ୟନ୍ତ ୟୁରୋପର ରହସ୍ୟବାଦ ସମ୍ପୂର୍ଣ ବ୍ୟକ୍ତିଗତ ଭାବଜିଜ୍ଞାସା ଓ ସାଧନାରେ ପର୍ଯ୍ୟବସିତ ଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ଫ୍ରାନ୍ସର ଅଗଷ୍ଟାଇନ୍ ମଠାଶ୍ରମ ରହସ୍ୟବାଦର କେନ୍ଦ୍ରସ୍ଥଳ ହୋଇଉଠିଲା । ମଧ୍ୟଯୁଗୀୟ ଚର୍ଚ୍ଚୀୟ ଭକ୍ତିବାଦ ଓ ପଶ୍ଚାତରେ ରହସ୍ୟ-ସାଧକ-ମାନଙ୍କର ନିରଳସ ଜୀବନଧାରା ଏବଂ ବିଶ୍ୱ-କଲ୍ୟାଣ-ଉଦ୍ୟୋଗ ତତ୍କାଳୀନ ପାଶ୍ଚାତ୍ୟ ଆଧ୍ୟାତ୍ମ ଜିଜ୍ଞାସାକୁ ଆଲୋଡ଼ିତ କରିଥିଲା । ମଧ୍ୟଯୁଗର ୟୁରୋପ ଏକପକ୍ଷରେ କଠିନ ଧର୍ମାନ୍ଧର ନିପୀଡ଼ନ ଭୋଗକରୁଥିଲା ଓ ଅନ୍ୟଦିଗରେ ରହସ୍ୟବାଦର ସ୍ୱର୍ଣ୍ଣଯୁଗ ରୂପେ ଆଧ୍ୟାତ୍ମିକତାର ନବମୂଲ୍ୟବୋଧରେ ଜାଗ୍ରତ ହୋଇଉଠୁଥିଲା ।

ଏହାପରେ ୟୁରୋପରେ ରହସ୍ୟବାଦ ପ୍ରାନ୍ତୀୟ ଚେତନାରୂପେ ବିକାଶ ଲାଭ କରିଥିଲା । ସମଗ୍ର ୟୁରୋପର ଚିନ୍ତାଧାରା, ସାହିତ୍ୟ, ଶିଳ୍ପକୁ ଏହା ଅନୁପ୍ରାଣିତ କରିଥିଲା । ଜର୍ମାନ ଓ ଇଟାଲୀ ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡକୁ ଉଣାଅଧିକେ ଏ ଦିଗରେ ବଳିଷ୍ଠ ଦିଗ୍‌ଦର୍ଶନ ଦେବାରେ ନେତୃତ୍ୱ ନେଇଥିଲେ । ବହୁ ରହସ୍ୟବାଦୀ ସାଧକ ସାଧିକା (ସେଣ୍ଟକାଥାରିନ୍ ପ୍ରଭୃତି) ନିଜ ଜୀବନୀ ଓ ରଚନା ମାଧ୍ୟମରେ ବ୍ୟକ୍ତିଗତ ଭାବରେ ଅନ୍ୟ ସାଧକଙ୍କୁ ଓ ସାମୂହିକ ଭାବରେ ସାମାଜିକ ଜୀବନକୁ ମିଷ୍ଟିକ୍ ଅନୁପ୍ରାଣନାରେ ଉଦ୍‌ବୁଦ୍ଧ କରିଥିଲେ । ଜର୍ମାନରେ ଭାବବାଦ ଓ ଅଧ୍ୟାତ୍ମବାଦର ଚେତନା-ସଂଘର୍ଷ ଏଇ ସମୟରେ ପ୍ରବଳ ହୋଇଉଠିଥିଲା । ଇଟାଲୀର ସନ୍ନ୍ୟାସୀ ଫ୍ରାନ୍ସିସ-ଆସିସି ଓ ସନ୍ନ୍ୟାସିନୀ ଆଂଜେଲା ( Folign ) ଙ୍କ ଦ୍ୱାରା ରହସ୍ୟବାଦ ସାର୍ବଜନୀନ ଜୀବନଧାରା ସହ ଗଭୀର ସମ୍ପୃକ୍ତ ହେବାର ଅବକାଶ ଲଭିଥିଲା ।

ରହସ୍ୟବାଦୀ-ସ୍ୱର୍ଣ୍ଣଯୁଗ ରୂପେ ପରିଚିତ ଚତୁର୍ଦ୍ଦଶ ଶତାବ୍ଦୀରେ ବୌଦ୍ଧିକ ବିକାଶ ଓ ଅଧ୍ୟାତ୍ମ-ସାଧନାର ମଧୁର ସମନ୍ୱୟ ସେ କାଳର ସାହିତ୍ୟ, ସଙ୍ଗୀତ ଓ ଭାସ୍କର୍ଯ୍ୟରେ ଲିପିବଦ୍ଧ । ସୂଫୀ

Digitized by PPRACHIN, SOA

ପ୍ରେମଚିଂତା ପ୍ରଭାବିତ ରହସ୍ୟବାଦର କଳାତ୍ମକ ଅଭିବ୍ୟକ୍ତି ଏ ଯୁଗର ୟୁରୋପରେ ଅପୂର୍ବ ସିଦ୍ଧିରୂପ ଲାଭକରିଥିଲା । ଏ ରହସ୍ୟବାଦୀ ପରଂପରାର ଏକ ଅମୃତମୟ କାବ୍ୟ-ସିଦ୍ଧି ଦାନ୍ତେଙ୍କ 'ଡିଭାଇନ୍ କମେଡି' । ପବିତ୍ରତା ଓ ପ୍ରେମ—ଉଭୟର ସମନ୍ୱୟ ସହ ଜ୍ଞାନର ମଧୁର ସଂଗମ ଦାନ୍ତେଙ୍କ ଭାବଲୋକରେ ଯେଉଁ ସ୍ୱର୍ଗରାଜ୍ୟକୁ ଉଦ୍‌ଭାସିତ କରିଥିଲା, ତାହା ପୂର୍ବାପର ବହୁ ରହସ୍ୟବାଦୀ ରଚନାକୁ ପ୍ରଭାବିତ କରିଛି ।

ଇଂଲଣ୍ଡର ରହସ୍ୟବାଦୀ ଧାରାଟି ଲାଟିନ୍ ମୂଳସ୍ରୋତ ପ୍ରଭାବିତ ! ଚତୁର୍ଦ୍ଦଶ ଶତାବ୍ଦୀରେ ରିଚାର୍ଡ଼ ରୋଲ ଓ ଜୁଲିୟାନ ନରଉଇଚଂଙ୍କ ରହସ୍ୟବାଦୀ କବିତା ପ୍ରେମ-ଭକ୍ତିମୂଳକ ରହସ୍ୟବାଦୀ ଭାବଧାରା ସମ୍ପୃକ୍ତ । ଇଂରାଜୀ ମିଷ୍ଟିକ କାବ୍ୟ ମୁଖ୍ୟତଃ ଏଇ ଭାବଚେତନାକୁ ଅନୁସରଣ କରି ବିବର୍ତ୍ତିତ । ମଧ୍ୟଯୁଗୀୟ ରହସ୍ୟବାଦୀ ଭାବାଦର୍ଶର ଆତ୍ମା-ପରମାତ୍ମା ପ୍ରଣୟ ସଂପର୍କ ଏବଂ ବାଇବେଲର Songs of Solomon ର ସ୍ୱରସାମ୍ୟ ଏ ରଚନାମାନଂକର ପ୍ରେମାକୁଳତାରେ ସୁଲଭ । ଚତୁର୍ଦ୍ଦଶ ଶତକର ରହସ୍ୟ ରଚନାମାନଂକ ଭିତରେ ଅଜ୍ଞାତ ଲେଖକଙ୍କ ରଚିତ ମୂଳ ଜର୍ମାନୀ ରଚନା The cloud of unknowing ଅନୁବାଦ (ira hrogrof ) ଏକ ସ୍ୱତଂତ୍ର ସ୍ଥାନର ଅଧିକାରୀ । ଏଇ ସମୟର ଅନ୍ୟତମ ରହସ୍ୟବାଦୀ ଲେଖକ ଓ୍ୱାଲଟର ହିଲଟନଂକ (The Scale of perfection') ର ଅଧ୍ୟାତ୍ମ ଚେତନାର ରହସ୍ୟ ଉନ୍‌ମୋଚନ ଦିଗରେ ଏକ ସାର୍ଥକ ମନସ୍ତାତ୍ତ୍ୱିକ କଳାକୃତି ।

ଚତୁର୍ଦ୍ଦଶ ଶତାବ୍ଦୀରେ ଦାଂତେଂକର ଉପଯୁକ୍ତ ଉତ୍ତର ସାଧିକା ରୂପେ ସେଣ୍ଟ କାଥାରିନ୍ ( ସିଏନା ) ଆବିର୍ଭୂତ । ତାଂକର Divine Dialogue ଇଟାଲୀ ଭାଷାରେ ଏକ ଚମତ୍କାର ରହସ୍ୟବାଦୀ ଗ୍ରଂଥ । ପଂଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ ସେଣ୍ଟ କାଥାରିନ୍ ( ଜେନୋଆ ) ସମସାମୟିକ ରହସ୍ୟବାଦୀ ରଚୟିତା ଓ ସାଧକମାନଂକ ମଧ୍ୟରେ ଅଗ୍ରଗଣ୍ୟା । ଷୋଡ଼ଶ ଶତାବ୍ଦୀର ଅଧ୍ୟାତ୍ମ ଜିଜ୍ଞାସା ଓ ରହସ୍ୟ ଅଭିବ୍ୟକ୍ତିର ଶ୍ରେଷ୍ଠ ପ୍ରତିଭୂ ରୂପେ ସେଣ୍ଟ ଟେରେସା ଓ ତାଂକ ଅନୁଗାମୀ ସେଣ୍ଟ ଜନ୍ (କ୍ରସ) ପ୍ରସିଦ୍ଧ । ସେମାନଂକ ଆତ୍ମଜୀବନୀ ଓ ରଚନା ବହୁ ଅଧ୍ୟାତ୍ମବାଦୀଂକୁ ରହସ୍ୟମାର୍ଗ ପ୍ରତି ଆକୃଷ୍ଟ କରିଥିଲା । ଷୋଡ଼ଶ ଶତାବ୍ଦୀର ପ୍ରୋଟେଷ୍ଟାଣ୍ଟ ଜର୍ମାନୀର ବିଖ୍ୟାତ ମିଷ୍ଟିକ ରଚୟିତା ହେଲେ ଜାକବ ବୋହେମ । ଜର୍ମାନୀ ରହସ୍ୟବାଦୀ ଦର୍ଶନ ଇତିହାସରେ ସେ ଯୁଗାନ୍ତକାରୀ ଆଲୋଡ଼ନ ଆଣିଥିଲେ । ଇଂଲଣ୍ଡର ଉଇଲିୟମ ଲ, ବ୍ଲେକ୍, ସେଣ୍ଟ ମାର୍ଟିନ୍ ପ୍ରଭୃତି କବି-ସାଧକଂକ ଚିଂତାଧାରା ତାଂକର ପ୍ରଭାବ ପରିପୁଷ୍ଟ ।

ସପ୍ତଦଶ ଶତାବ୍ଦୀରେ ୟୁରୋପୀୟ ରହସ୍ୟଚେତନା ଦୁଇଟି ଧାରାରେ ପ୍ରକାଶିତ । ଗୋଟିଏ ବୋହେମ ପ୍ରଭାବିତ ଅଧ୍ୟାତ୍ମ-ରସାୟନ ପ୍ରତୀକାତ୍ମକତା ଏବଂ ଅପରଟି ଖ୍ରୀଷ୍ଟିୟାନ୍ ଚର୍ଚ୍ଚର ପାରଂପରିକ ଆତ୍ମା-ପରମାତ୍ମା ସଂଯୋଗ ସାଧନା । ଏଇ ସପ୍ତଦଶ ଶତାବ୍ଦୀରେ ଇଂଲଣ୍ଡରେ ରହସ୍ୟବାଦୀ ରଚନା ରସ ପୁଷ୍କଳତା ଲାଭ କରିଛି । George Fox ପ୍ରଭୃତି Quakers ଚିଂତାଧାରାରେ ରହସ୍ୟବାଦ ଧର୍ମ ଓ ପରଂପରାବର୍ଦ୍ଧିତ ଏକ ଅବମିଶ୍ର କଳା-ଚେତନା ରୂପେ ସ୍ୱୀକୃତି ପ୍ରାପ୍ତ ହୋଇଛି । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ପରିସରରେ Henry Moore, John Smith ପ୍ରଭୃତି ଚିଂତାଶୀଳମାନେ ପ୍ଲାଟୋ ରହସ୍ୟବାଦ ଅନୁପ୍ରାଣିତ ଥିଲେ । Donne, Herbert Crashand, Vandham ଭାତୃଦ୍ୱୟ ଓ ଅନ୍ୟାନ୍ୟ Metaphysical କବିଂକ ରଚନାରେ ରହସ୍ୟବାଦୀ ଅନ୍ତର୍ଦ୍ଦୃଷ୍ଟିର ରୂପ ସଂକେତ ସ୍ପଷ୍ଟ ।

Digitized by PPRACHIN, SOA

ଅଷ୍ଟାଦଶ ଶତାବ୍ଦୀରେ ହେତୁବାଦ, ବସ୍ତୁବାଦ ଓ ଜଡ଼ବାଦ ପ୍ରଭାବରେ ରହସ୍ୟବାଦ ପ୍ରଭାବିତ କାବ୍ୟସ୍ୱର କ୍ଷୀଣ । ଏହା ପରେ ଇଂରାଜୀ ସାହିତ୍ୟରେ ରୋମାଣ୍ଟିକ କାବ୍ୟଚେତନାର ବଳିଷ୍ଠ ଆଦର୍ଶବାଦ, ଭାବସ୍ୱାଚ୍ଛନ୍ଦ୍ୟ ଏବଂ ଅତୀନ୍ଦ୍ରିୟପ୍ରିୟତା, ରହସ୍ୟବାଦୀ କାବ୍ୟାତ୍ମକତା ପାଇଁ ଯଥେଷ୍ଟ ସୁଯୋଗ ସୃଷ୍ଟି କରିଥିଲା । ପ୍ଲାଟୋ ଓ ବୋହେମ୍‌ଙ୍କ ଚିନ୍ତାଧାରା ଏ ଯୁଗର କାବ୍ୟାଦର୍ଶ ଥିଲା । Blake ଓ Wordsworth ଙ୍କ ଶ୍ରେଷ୍ଠ ପ୍ରକୃତି କବିତାଗୁଡ଼ିକରେ ଏ ରହସ୍ୟାତ୍ମକତା ସ୍ପଷ୍ଟ । ଶେଲି ପ୍ରେମଚେତନାକୁ ଓ କୀଟ୍‌ସ ସୌନ୍ଦର୍ଯ୍ୟବୋଧକୁ ରହସ୍ୟବାଦୀ ସ୍ୱର୍ଣ୍ଣ-ସ୍ପର୍ଶ ଦେବାରେ ସମର୍ଥ ହୋଇଥିଲେ । କଲରିଜ୍‌ଙ୍କ ଭାବଚେତନା ପରବର୍ତ୍ତୀ ଆମେରିକୀୟ ଅତୀନ୍ଦ୍ରିୟ କାବ୍ୟଦର୍ଶନକୁ ପ୍ରଭାବିତ କରିଥିଲା । Quakerism ରୋମାଣ୍ଟିସିଜମ ଓ ଆମେରିକୀୟ ସ୍ୱବନ୍ଧବାଧତା Emerson, Thoreau ଓ Whitmanଙ୍କ ରଚନାରେ ସଫଳ ରହସ୍ୟାତ୍ମକ ଅଭିବ୍ୟକ୍ତି ଲାଭ କରିଛି । ଏହାର ପ୍ରତିଧ୍ୱନି ସମସାମୟିକ ଇଂରାଜୀ ଲେଖକ Carpenterଙ୍କ ରଚନାରେ ମଧ୍ୟ ପରିଦୃଷ୍ଟ ।

---

Digitized by PPRACHIN, SOA

# ସୂଫୀ ଚେତନା

ପାଶ୍ଚାତ୍ୟ ଦୃଷ୍ଟିରୁ ଚେତନା ସମ୍ଭୂତ ମହମ୍ମଦ ପ୍ରବର୍ତ୍ତିତ ଇସଲାମ ଧର୍ମବିଶ୍ୱର ରହସ୍ୟବାଦୀ ଚିନ୍ତାଧାରାର ପୂର୍ଣ୍ଣ ପରିପନ୍ଥୀ। ଏକ ସାମାଜିକ, ରାଷ୍ଟ୍ରୀୟ ଓ ନୈତିକ ଅନୁଶାସନ ରୂପେ ଏହାର ଆବିର୍ଭାବ । ତଥାପି ଏହାର ଭିତରେ ଦିବ୍ୟ ପରମଙ୍କ ସହ ବ୍ୟକ୍ତିର 'ପ୍ରତ୍ୟକ୍ଷ ସଂଯୋଗବାଦୀ ଅଣ-ଇସଲାମୀୟ ସୂଫୀଦର୍ଶନ ବହୁ ପ୍ରତିକୂଳତା ଭିତରେ ଆପଣାକୁ କେବଳ ବଞ୍ଚାଇ ରଖିନାହିଁ, କ୍ରମଶଃ ନିଜକୁ ଏକ ସ୍ୱତନ୍ତ୍ର, ମର୍ଯ୍ୟାଦାବନ୍ତ ଆସନରେ ପ୍ରତିଷ୍ଠିତ କରିଛି । (୧)

ସୂଫୀ ମତର ଉଦ୍ଭବ ଓ ବିକାଶ ସଂପର୍କରେ ବହୁ ବାଦ ବିସଂବାଦ ସତ୍ତ୍ୱେ ଏହା ସ୍ୱୀକୃତ ଯେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଧର୍ମୀୟ ଚିନ୍ତାଧାରାର ସମନ୍ୱିତ-ଇସ୍‌ଲାମୀ-ରୂପାଲେଖ୍ୟ ରୂପେ ଏହାର ଆବିର୍ଭାବ । ଉପନିଷଦର ନିର୍ଗୁଣ/ବ୍ରହ୍ମ / ବୌଦ୍ଧ ନିର୍ବାଣ ଦର୍ଶନ, ପାଶ୍ଚାତ୍ୟ ନିରାକାର ଉପାସନା, ଜ୍ଞେୟବାଦ ଓ ନବପ୍ଲାଟୋଦର୍ଶନର ପ୍ରଭାବ ସୂଫୀ ସାଧନା-ତତ୍ତ୍ୱରେ ପରିଦୃଷ୍ଟ । (୨)

ସୂଫୀ-ଦର୍ଶନର ଉତ୍ସ ରୂପେ କୋରାଣକୁ ଗ୍ରହଣ କରାଯାଇଛି । ଈଶ୍ୱର ଏକ ଅଦ୍ୱିତୀୟ, ଈଶ୍ୱର ସର୍ବତ୍ର ବିରାଜିତ, (୩) ଈଶ୍ୱର ପରମ ସୁନ୍ଦର ପ୍ରଭୃତି ଭକ୍ତିମାନ ଅନୁଭବ ପ୍ରତ୍ୟକ୍ଷତା ଉପରେ ପର୍ଯ୍ୟବସିତ । ସୂଫୀ ବିଚାରରେ ପ୍ରେମ ଓ ସୌନ୍ଦର୍ଯ୍ୟ ସମାର୍ଥବାଚକ ସୃଷ୍ଟି-ମୂଳତତ୍ତ୍ୱ । ଇସଲାମ ଧର୍ମ ସ୍ରଷ୍ଟାଙ୍କୁ ସର୍ବାତୀତ ଓ କଠୋର ବିଚାରକ ରୂପେ ଯେତେ ଦୂର ରାଜ୍ୟରେ ଅବସ୍ଥାପିତ କରୁଥିଲେ ବି ତାଙ୍କର 'ସର୍ବବିଦ୍ୟମାନତା', ସୃଷ୍ଟି ସହ ସ୍ରଷ୍ଟାର ଯେଉଁ ସଂପର୍କକୁ ଇଂଗିତ କରେ, ସେଇ ସଂପର୍କ ରହସ୍ୟର ଉପଲବ୍ଧି ଲାଭ (ମହମ୍ମଦଙ୍କ ଦ୍ୱାରା) 'ସଂପ୍ରାପ୍ତ ଜ୍ଞାନ' (Revealed knowledge)ରୂପେ କୋରାନ୍‌ରେ ବର୍ଣ୍ଣିତ । ଏ ଦୃଷ୍ଟିରୁ ସ୍ୱୟଂ ମହମ୍ମଦ ଏକ ମିଷ୍ଟିକ ଏବଂ ସୂଫୀ ମତର ଆଦ୍ୟ ପ୍ରତିଷ୍ଠାତା ରୂପେ ଏହାର ପ୍ରବକ୍ତାମାନଙ୍କ ଦ୍ୱାରା ପ୍ରତିପାଦିତ ।

ପ୍ରାରଂଭିକ ଅବସ୍ଥାରେ ସନ୍ନ୍ୟାସବାଦ ଓ ସରଳ ଜୀବନଧାରାର ପରିପୋଷକ ରୂପେ ସୂଫୀ ମତର ଉଦ୍ଭବ ଘଟିଥିଲା । ଇସଲାମ ପାଶ୍ଚାତ୍ୟ ଧର୍ମ ଭଳି ଜୀବନ ଭିତ୍ତିକ ଥିଲା ଏବଂ ମହମ୍ମଦ ସଂସାରବିମୁଖ ଶୁଷ୍କ ବୈରାଗ୍ୟର ପକ୍ଷପାତୀ ନଥିଲେ । ମାତ୍ର ସମସାମୟିକ ଖ୍ରୀଷ୍ଟିୟାନ ସନ୍ନ୍ୟାସୀମାନଙ୍କ ସରଳ ଜୀବନ, ଜନକଲ୍ୟାଣସ୍ପୃହା, ଭକ୍ତିବାଦ ଓ ସର୍ବତ୍ୟାଗୀ ସନ୍ନ୍ୟାସ-ଜୀବନକୁ ascetism ପ୍ରତି ତାଙ୍କର ଶ୍ରଦ୍ଧା ଥିଲା । ସୂଫୀ ଦର୍ଶନ ଏ ବୈରାଗ୍ୟ ସାଧନା ପ୍ରତି ପ୍ରାଥମିକ ଅବସ୍ଥାରେ ଆକୃଷ୍ଟ ହୋଇଥିଲା,

---

(1) "Mysticism is such a vital element in Islam that without some understanding of its ideas and the forms which they assume we should seek in vain to penetrate below the surface of Muhammadan religious life."

R. A. Nicholson—'Studies in Islamic Mysticism. Preface—VI

(2) "Muslim Philosophy is a blend of Western and Eastern thoughts under the dominating influence of Islamic doctrine.

Shustery—'Outline of Islamic Culture' —Vol II-P.344.

(3) "Wherever you return, there is a face of Allah"

The Quran : 11. 1, 15.

Digitized by PPRACHIN, SOA

ସନ୍ଦର୍ଭ ପରେ ସନ୍ନ୍ୟାସବାଦଠାରୁ ଭିନ୍ନ ଏକ ଆରାଧନା ରୂପ ଓ ଉପଲବ୍ଧିମୂଳକ ଅନୁଚର୍ଯ୍ୟା ରୂପେ ପ୍ରସାର ଲାଭ କରିଥିଲା ଏବଂ ଇସଲାମ ଚେତନାରେ ରହସ୍ୟବାଦର ସରସ ପ୍ରେମ ସାଧନାକୁ ବ୍ୟକ୍ତି ଜୀବନର ଚରମ ଆଧ୍ୟାତ୍ମିକ ପରାକାଷ୍ଠା ରୂପେ ପ୍ରତିଷ୍ଠିତ କରିଥିଲା ।

ସବୁ ରହସ୍ୟସାଧନାପରି ସୂଫୀବାଦ ମଧ୍ୟ ପ୍ରାରଂଭିକ ଅବସ୍ଥାରେ ଚର୍ଯ୍ୟାମୂଳକ ଥିଲା ଓ ସୂଫୀ-ଚେତନା ଇସଲାମୀୟ ଧର୍ମାନୁଷ୍ଠାନ ସହ ଗଭୀରଭାବେ ସମ୍ପୃକ୍ତ ଥିଲା । ସୂଫୀ ସାଧକମାନେ ସାଧାରଣତଃ ପ୍ରବର୍ଯ୍ୟା ଅବଲଂବନ କରି ଏକାକୀ କିଂବା କ୍ଷୁଦ୍ର ଦଳରେ ବାସ କରୁଥିଲେ । କୋରାନ୍‌ର କେତେକ ଶବ୍ଦ ଓ ଶ୍ଳୋକକୁ ସେମାନେ ମୂଳ ସତ୍ୟରୂପେ ଗ୍ରହଣ କରି ତାହାର ଆବୃତ୍ତି ଏବଂ ଉପଲବ୍ଧି ଭିତରେ ସାଧନାର ରୂପରେଖ ନିର୍ଦ୍ଧାରଣ କରୁଥିଲେ ।

ଇସ୍‌ଲାମୀୟ ପ୍ରଥମ ଶତାବ୍ଦୀରେ ବୀଜ ରୂପେ ସଂଗୋପିତ କୋରାନ୍‌ର ସୂକ୍ଷ୍ମ ରହସ୍ୟାତ୍ମିକତା ପରବର୍ତ୍ତୀ ଦୁଇଟି ଶତକର ସାମାଜିକ ଓ ରାଜନୈତିକ ପରିପ୍ରେକ୍ଷୀରେ ବ୍ୟକ୍ତିଗତ ଜୀବନର ଅଧ୍ୟାତ୍ମ ଅନ୍ୱେଷା ଭିତରୁ ସ୍ପଷ୍ଟ ରୂପେ ଗ୍ରହଣ କଲା । ତାର ସାଧନଚର୍ଯ୍ୟା କ୍ରମଶଃ ବୌଦ୍ଧିକ ଅନୁଶୀଳନ ଭିତରେ ସୂଫୀତତ୍ତ୍ୱର ବ୍ୟାଖ୍ୟାତ୍ମକ ସ୍ୱରୂପକୁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେବାରେ ଲାଗିଲା । ପ୍ରଥମ ଅବସ୍ଥାରେ ସୂଫୀ-ସାଧନାରେ ମୃତ୍ୟୁ ପରର ଜୀବନ ଓ ମୁକ୍ତି ଚେତନା ସହ ଭାବସାଧନାତ୍ମକ ଐକ୍ୟଚେତନା ଏବଂ ପବିତ୍ର ଜୀବନର ଭାବ ବଳବତ୍ତର ହୋଇଉଠିଲା । ବ୍ୟକ୍ତି ଚେତନାର ଈଶ୍ୱରୀୟ ଚେତନାରେ ଅବସ୍ଥାନ, ଏହାହିଁ ସେ ସାଧନାର ଲକ୍ଷ୍ୟ ଥିଲା । ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଶେଷ ଅଂଶକୁ ରହସ୍ୟବାଦୀ ପ୍ରେମ-ସାଧନା ସୂଫୀ ଦର୍ଶନରେ ଏକ ସ୍ପଷ୍ଟ ଭାବ-ରୂପ ପ୍ରକାଶକଲା । ପ୍ରତୀକାତ୍ମକ ଅଭିବ୍ୟକ୍ତି-ରୂପେ ପ୍ରେମ ଓ ଆସବର ରୂପଚିତ୍ର ଭାବସାଧନାର ଗୂଢ଼ତତ୍ତ୍ୱ ସହ ଗଭୀରଭାବେ ସମ୍ପୃକ୍ତ ହୋଇପଡ଼ିଲା । ଏହି ସମୟରେ ହିଁ ପ୍ରେମ ଉପାସନାର ଇତିହାସରେ ଆତ୍ମଲୟର ('ଫନା') ଚିତ୍ର ସ୍ପଷ୍ଟୋଜ୍ଜ୍ୱଳ ହୋଇଉଠିଲା । ଏଇ ପର୍ଯ୍ୟାୟରେ ସୂଫୀ ସାଧନାର ଶାନ୍ତ ଓ ସଂଯମଶୀଳ ଜୀବନଚର୍ଯ୍ୟାରେ ଭାବୋନ୍ମାଦନା ଓ ଅଦ୍ୱୈତଭାବନା ଅଂଗାଂଗୀ ଜଡ଼ିତ ହୋଇଗଲେ । ଆଲୋଚକମାନଂକ ଦୃଷ୍ଟିରେ ଉପନିଷଦ ଓ ନବପ୍ଲାଟୋ-ଅଦ୍ୱୈତ-ଚେତନାଠାରୁ 'ରାବୟା' (ନାରୀ ସାଧିକା, ଜନ୍ମ ଖ୍ରୀ: ୮୦୦, ବସ୍ରା)-ପ୍ରରୋଚିତ ଏହି ବ୍ୟକ୍ତିଗତ ପ୍ରେମଭାବନାତ୍ମକ ଅଦ୍ୱୈତ ଅନୁଭବ ସ୍ୱରୂପତଃ ଭିନ୍ନ । (୪) ସୂଫୀ ମତର କ୍ରମବିକାଶଧାରାରେ ଏ ସ୍ୱାତଂତ୍ର୍ୟଟି ତାହାର ବଳିଷ୍ଠତମ ଉପାଦାନ ରୂପେ ପ୍ରକଟିତ ।

ସାଧାରଣତଃ ଆତ୍ମଶୁଦ୍ଧି ଓ ଆଧ୍ୟାତ୍ମିକତାର ଈଶ୍ୱର ଚେତନା ଓ ଦିବ୍ୟଜୀବନ ପ୍ରସଂଗରେ ସଚରାଚର ସନ୍ନ୍ୟାସବାଦ ଏବଂ ସୂଫୀ ତତ୍ତ୍ୱରେ ବିଶେଷ କୌଣସି ପ୍ରଭେଦ ନାହିଁ । ମାତ୍ର ଏକ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ସାକ୍ଷାତ୍କାର ଓ ଭାବାନୁଭୂତିର ପ୍ରସଂଗଟି ସୂଫୀ ସାଧକକୁ ତାହାର ସମାଜ ଓ ପରିପାର୍ଶ୍ୱ-ଠାରୁ ସ୍ୱତଂତ୍ର କରି ଚଳାଇଦେଇ ତତ୍‌କାଳୀନ ମୁସଲମ ଧର୍ମାଚରଣ ଓ ଆଚାରବିଧାନ କ୍ଷେତ୍ରରେ ଏକ ବ୍ୟାପକ ଆନ୍ଦୋଳନର ସୂତ୍ରପାତ କରିଥିଲା ଯାହା ଏକାଦଶ ଶତାବ୍ଦୀ ପର୍ଯ୍ୟଂତ ବଳବତ୍ତର ଥିଲା ।

ଇସ୍‌ଲାମୀୟ ତୃତୀୟ ଶତକରୁ ହିଁ ସୂଫୀବାଦ ଏକ ନୂତନରୂପ ଗ୍ରହଣ କଲା । ରହସ୍ୟବାଦୀ ଆତ୍ମୋପଲବ୍ଧି ଓ ବିଶ୍ୱୋପଲବ୍ଧିର ଅଭିବ୍ୟକ୍ତିରେ ସୂଫୀତତ୍ତ୍ୱ ଇସଲାମର ମୌଳିକ 'ଏକେଶ୍ୱରବାଦ' ଚେତନାର ବିରୋଧୀ ବହୁଦେବବାଦ (Pantheism) ଓ ଅଦ୍ୱୈତବାଦର ଆତ୍ମଲୟ (ଫନା)

(4) "The former type (mysticism of the infinite) has found expression in the system of Plotinus and in the Upanishads In Sufism it was mysticism of porsonality.

Annamarie Sch'mmel—'Mystical Dimensions of Islam' P-5.

Digitized by PPRACHIN, SOA

ପ୍ରସଙ୍ଗ ଉତ୍ଥାପନ କଲେ । ଧର୍ମୀୟ ଉଲେମାମାନଂକର ସୁଫୀ ସାଧକମାନଂକୁ ପାଷାଣ୍ଡ ଧର୍ମ ପ୍ରବର୍ତ୍ତନାକାରୀ (heretic) ରୂପେ ନିର୍ଯାତନ କରିବା ପରବର୍ତ୍ତୀ ତିନୋଟି ଶତକର କାହାଣୀ । ଅଷ୍ଟମ ଶତାବ୍ଦୀରେ ବାଗଦାଦ ମୁସଲିମ ସାମ୍ରାଜ୍ୟର କେଂନ୍ଦ୍ରରୂପେ ପ୍ରତିଷ୍ଠିତ ହେବା ପରେ ସୁଫୀ ମତ ଓ ଦର୍ଶନ ନିଜକୁ ସାବ୍ୟସ୍ତ କରିବାର କ୍ଷେତ୍ର ଲାଭକଲା । କ୍ଷେତ୍ରବାଦର ବ୍ୟାଖ୍ୟାକାରୀ 'ଧୂନ୍-ଉନ' ଏବଂ ସର୍ବାତ୍ମବାଦର ଦୃଢ଼ତମ ପ୍ରବକ୍ତା 'ବାୟେଜିଦ୍' 'ଫନା'ର ତତ୍ତ୍ୱ ପ୍ରଖ୍ୟାପନ କରି ଇସ୍‌ଲାମୀୟ ଚଂତାଧାରାରେ ଏକ ନୂଂତନକାରୀ ଆଂଦୋଳନର ସୂତ୍ରପାତ କଲେ । ଏହାଛଡ଼ା ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଆରବୀ ଭାଷାର ଅନୁବାଦ ମାଧ୍ୟମରେ ଗ୍ରୀସ୍‌ର ପ୍ଲାଟୋଦର୍ଶନ ଓ Psuedo-Dionysius ଙ୍କ ରହସ୍ୟାତ୍ମକ ରଚନା ସୁଫୀତତ୍ତ୍ୱର ବସ୍ତୁର-ରୂପକୁ (Speculative form) ବହୁଭାବେ ପ୍ରଭାବିତ କରିଥିବାର ଦେଖାଯାଏ ।

ସୈଦ୍ଧାଂତିକ ସୂଫୀମତର ବିକଶିତ ରୂପ 'ଧୂନ୍-ଉନ୍'ଙ୍କଠାରୁ ଆରମ୍ଭ ହୋଇ ଜଲାଲୁଦ୍ଦୀନ ରୁମୀଂକ ସମୟରେ ପୂର୍ଣତା ପ୍ରାପ୍ତ ହୋଇଥିଲା ବୋଲି କୁହାଯାଇପାରେ । ନବମ/ଦଶମ ଶତକରେ ସୂଫୀ ମତରେ ଫନାର ଚେତନାଟି ଏତେ ସୁସ୍ପଷ୍ଟ ଅଭିବ୍ୟକ୍ତ ଲାଭକରିନଥିଲା । ବାୟୁଜିଦ୍ ସୂଫୀ ଚେତନାର ଅଦ୍ୱୈତ ପ୍ରତିପାଦନ ସ୍ପଷ୍ଟ କରିଦେଲେ । ( ୫ ) ବାଗଦାଦର ଜୁନାଇଦ୍ ସୂଫୀ ସିଦ୍ଧାନ୍ତର ସମନ୍ୱିତ ସଂରକ୍ଷିତ ରୂପନ୍ୟାସ କଲେ । ଦ୍ୱାଦଶ ଶତାବ୍ଦୀର ଇବନୁଲ ଆରବୀ ଏ ସିଦ୍ଧାଂତରେ ଅଦ୍ୱୈତକୁ ଅପରିହାର୍ଯ ପ୍ରତିପନ୍ନ କଲେ ।

ଇସଲାମର ଇତିହାସରେ ଏ କେତୋଟି ଶତାବ୍ଦୀ ଘୋର ଦୁର୍ବିପାକର ସମୟ ଥିଲା । ରହସ୍ୟବାଦୀମାନଂକର ଦିବ୍ୟ-ପ୍ରେମ-ଉନ୍ମାଦନା ଅଣ-ଇସଲାମ ଚେତନାରୂପେ ନୈଷ୍ଠିକ ଗୋଷ୍ଠୀର ନିର୍ଯାତନ ଲାଭ କରିଥିଲା । ସଂଘାତ ଓ ପ୍ରତିରୋଧ ଭିତରେ ଦଶମ ଶତାବ୍ଦୀ ବେଳକୁ ସୂଫୀତତ୍ତ୍ୱ ଏକ ସୁସଂବଂଧ ଓ ସଂଗଠିତ ପଦ୍ଧତି ରୂପେ ଆତ୍ମପ୍ରକାଶ କରିଥିଲା । ନବମ ଶତାବ୍ଦୀ ବେଳକୁ ଅବୁ ସୁଲେମାନ ରହସ୍ୟଜ୍ଞାନର ( ସହଜଜ୍ଞାନ-ମାରିଫତ୍ତ୍ୱ ) ସିଦ୍ଧାଂତକୁ ବୌଦ୍ଧିକ 'ଇଲମ'ଠାରୁ ପୃଥକ୍ ଦର୍ଶାଇଥିଲେ ଓ ଏହା ଈଶ୍ୱରଙ୍କ ଐକ୍ୟସିଦ୍ଧାଂତର ଅନୁସାରୀ ଥିଲା । ଅଦ୍ୱୈତ ପ୍ରସ୍ତାପକ (୬) ବାୟୁଜିଦ୍‌ଙ୍କ ସମର୍ଥକ ଧୀରମତି ଭାବସାଧକ ରୂପେ ପରିଚିତ ଜୁନାଇଦ ପ୍ରେମତତ୍ତ୍ୱର ବ୍ୟାଖ୍ୟାନରେ ( ୭ ) ସତ୍ତ୍ୱର ସ୍ୱଚେତନା ଈଶ୍ୱରଚେତନାରେ ଏକାତ୍ମ ହେବାର (୮) ପୂର୍ଣ ରୂପ-ଚିତ୍ର ପ୍ରଦାନ କରି ଇସଲାମ ଜଗତରେ ସୂଫୀ ଅଦ୍ୱୈତ ତତ୍ତ୍ୱର ଦୃଢ଼ ପ୍ରତିଷ୍ଠା କଲେ ।

---

(5) "Sufism means that God makes you to die to yourself and makes you alive in Him."
Readings from the mystics of Islam— P. 36

(6) "Praise be to me... Iam the Truth, Iam the God. I must be celebrated by Divine praises,"
qt. 'A lIterary History of Persia—P.427

(7) "In secret from the world apart / My tongue hath talked with my Adorned. So in a manner me/united are, and one/yet otherwise disunion/is our state eternally.
Junaid qt bo Arberry 'Islam' —P—145.

(8) "Love between two is not right until one address the 'Other 'O Thou I I
Annamerie—'Mystical Dimensions of Islam'—P.131

Digitized by PPRACHIN, SOA

ହଲ୍ଲଜଂକ ସହାଧ୍ୟାୟୀ ଶିବ୍ଲୀ ଏ ସିଦ୍ଧାଂତର ବହୁତ ପ୍ରଚାର କରିଥିଲେ । ଈଶ୍ୱରଂକ ପ୍ରତି ପ୍ରେମକୁ ସେ 'ଉନ୍ମାଦନା' ନାମ ଦେଇଥିଲେ । ବିଖ୍ୟାତ ସୂଫୀ ମନସୁର ଅଲ ହଲ୍ଲଜ ମନୁଷ୍ୟକୁ ଦିବ୍ୟବୋଲି ସ୍ୱୀକୃତି ଦେଇ ଅସୀମ ସାହସିକତାର ପରିଚୟ ଦେଇଥିଲେ । 'ସ୍ୱ' ପରିଚୟ ଭାବନାରୁ ମୁକ୍ତିପରେ ହିଁ ଈଶ୍ୱରଂକ ସହ ମିଳନର ଅଦ୍ୱୈତାତ୍ମକ ମତ ପୋଷଣ କରି (୯) ଏଇ ଜନପ୍ରିୟ ଭାବସାଧକ ଡଗମାଟିକ୍ ଇସ୍‌ଲାମ ଧର୍ମଯାଜକମାନଂକ ଦ୍ୱାରା ଖ୍ରୀ: ୯୨୨ରେ ବାଗଦାଦ୍‌ରେ ପ୍ରାଣଦଣ୍ଡ ଭୋଗିଥିଲେ । ତାପରେ ତାଂକର ଅନୁଗାମୀ ତଥା ଅନେକ ସୂଫୀ ମତରେ ବିଶ୍ୱାସୀ ମୁସଲମାନ ବାଗଦାଦ ତ୍ୟାଗକରି ଖୁରାସନ ଓ ଟ୍ରାନ୍‌ସୋକାନିୟା ( Transoxania ) ଚାଲିଯାଇଥିଲେ । ସେଠାକାର ଅଧିବାସୀ ଓ ଶାସକ ସୂଫୀମତ ପ୍ରତି ସହାନୁଭୂତିଶୀଳ ଥିଲେ । ମଧ୍ୟଏସୀୟ ତୁର୍କୀମାନଂକର ବହୁପରିମାଣରେ ଇସଲାମ ଧର୍ମ ଗ୍ରହଣ ଏଇ ସୂଫୀମାନଂକର ପ୍ରଭାବ ଓ ପ୍ରଚାରର ପରିଣତି । ଖୁରାସାନର ସୂଫୀବାଦ ଉଲେମା ବିଦ୍ୱେଷୀ ଥିଲା ଓ ସେ ପୁରୋହିତ ଗୋଷ୍ଠୀକୁ ଈଶ୍ୱରଂକ ପ୍ରିୟଲୋକଂକ ହତ୍ୟାକାରୀ ଓ ଧର୍ମଭାବନାର ପରିପଂଥୀ ବୋଲି ଘୋଷଣା କରିଥିଲା ।

ଏହି ସମୟଠାରୁ ସୂଫୀମତର ଏକ ସଂକଳିତ ସ୍ୱରୂପ ଓ ଧାର୍ମିକ ସୁଖାବସ୍ଥାର ଚିହ୍ନ ମିଳେ । ସୂଫୀକବିମାନେ ନିଜ ଅନୁଭୂତିର ରସୋଜ୍ଜ୍ୱଳ ବର୍ଣ୍ଣନାରେ ଧର୍ମବିଶ୍ୱାସକୁ ସହଯୋଗ କରୁଥିଲେ । ସୂଫୀମତର ଅନୁଶୀଳନ କରି କାଲାବଧୀ ( ଖ୍ରୀ: ୧୦୫୨ ), ହୁଜରି, ଆବୁଖୈର ଓ ଅଲଗଜଲୀ ତାର ଦର୍ଶନାତ୍ମକ ବ୍ୟାଖ୍ୟା କରିଥିଲେ । ଦଶମ ଓ ଏକାଦଶ ଶତାବ୍ଦୀ ମୁସଲିମ ଜଗତରେ ଦାର୍ଶନିକ, ଆଧ୍ୟାତ୍ମିକ ଓ କଳାତ୍ମକ ପ୍ରଚେଷ୍ଟା ପାଇଁ ପ୍ରସିଦ୍ଧ । ଅବୁ-ସଇଦ-ଖାଁ-ଅବୁଲ-ଖୈର ( ଖ୍ରୀ: ୯୬୭-୧୦୪୯ ) ସୂଫୀ ଚେତନାର କାବ୍ୟ-ରୂପ ପାଇଁ ପ୍ରଥମ ସାର୍ଥକ ସୂଫୀ କବି ରୂପେ ସମ୍ମାନିତ । ରହସ୍ୟବାଦୀ କବିତାର ବିକାଶରେ ତାଂକର ଅବଦାନ ଅତୁଳନୀୟ । ( ୧୦ )

ଦଶମ ଶତାବ୍ଦୀରେ ସୂଫୀମତରେ ସର୍ବେଶ୍ୱରବାଦର ପରିପ୍ରକାଶ ତଥା ନୀତିଶୃଂଖଳା ରହିତ ଜୀବନଦର୍ଶନର ସୁଯୋଗ ନେଇ ବହୁ ଉଚ୍ଛୃଙ୍ଖଳିତ ସମାଜ-ବିରୋଧୀ ଉପାଦାନ ଏହାର ବାହ୍ୟ-ଗ୍ରାସ୍ୟାଚଳେ ଅନାଚାର ଓ ଅନୈତିକତାରେ ଏହାକୁ କଳଂକିତ କରିଥିଲା । ରହସ୍ୟବାଦର 'ବ୍ୟକ୍ତିଗତ-ସ୍ୱଚ୍ଛନ୍ଦ୍ୟ ଓ କର୍ମ-ସ୍ୱାଧୀନତା' ଭାବାଦର୍ଶଟିର ଅପବ୍ୟବହାର ସବୁ ଦେଶ କାଳରେ ଭ୍ରଷ୍ଟାଚାର ପାଇଁ ଅବାଧ କ୍ଷେତ୍ର ସୃଷ୍ଟି କରିଥିବାର ଦେଖାଯାଏ ।

ଏଇ ଯୁଗସନ୍ଧିରେ ଆବୁ-ଖୈର ସୂଫୀ ମତକୁ ନୈତିକ ମହତ୍ତ୍ୱ ଦାନ କରିଥିଲେ । ଦିବ୍ୟ-ଆରାଧନା ପାଇଁ ହୃଦୟର ପବିତ୍ରତା ଓ ନିଷ୍କାମ ସମର୍ପଣର ଆବଶ୍ୟକତା ଦେଖିଥିଲେ । ଧର୍ମର ଜଟିଳ ତତ୍ତ୍ୱକୁ ସେ ଆକର୍ଷଣୀୟ କବିତା-ରୂପରେ ପ୍ରତୀକ ଛଳରେ ଉପସ୍ଥାପନା କରି ସୂଫୀମତକୁ ଲୋକପ୍ରିୟ

---

(9) "Betwix me and Thee there lingers an' it is I —that torments me. Ah, of Thy Grace, take away this I from between us."
qt—'The Legacy of Islam—Sir To A and A.G. P—218

(10) "Among Persian poets he is perhaps the first to introduce that dexterous juggling with the mundane and the sublime God, and the wine-cups which give later Persian Poetry such extra-ordinary charm,
R. A. Nicholson—'Legacy of Islam'—P—52.

Digitized by PPRACHIN, SOA

କରାଇଥିଲେ । ତାଂକପରେ 'କାଲାବଧୀ' ସୂଫୀମତର ସମ୍ୟକ୍ ବ୍ୟାଖ୍ୟା କରି ଇସଲାମ ସହ ଏହାର ମତସାମ୍ୟ ପ୍ରଦର୍ଶନ କରିଥିଲେ । ଇମାମ୍ ଅଲଗଜାଲୀ ସୂଫୀମତକୁ ପୂର୍ଣ୍ଣ ଆଧ୍ୟାତ୍ମିକତା ଉପରେ ପ୍ରତିଷ୍ଠିତ ବୋଲି ପ୍ରତିପାଦନ କରି ସୂଫୀମତ ଓ ଇସଲାମଧର୍ମର ଅନ୍ତଃବିରୋଧରେ ପୂର୍ଣ୍ଣଚ୍ଛେଦ ଟାଣିଦେଲେ ।

ଏକାଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଅଲଗଜାଲୀ ସୂଫୀମତର ଦାର୍ଶନିକ-ରୂପ ଦାନ କରିଥିଲେ । ଇସଲାମ ଧର୍ମର ଶ୍ରେଷ୍ଠ ବ୍ୟାଖ୍ୟାକାରୀ ରୂପେ ସେ 'ଇସଲମର ପୁନପ୍ରବର୍ତ୍ତକ' ରୂପେ ସମ୍ମାନିତ । ଜ୍ଞାନ ଓ ପ୍ରେମକୁ ସର୍ବାଧିକ ମହତ୍ତ୍ୱ ଦେଇ ଏହାକୁ ପ୍ରତ୍ୟକ୍ଷାନୁଭବରେ କେବଳ ଲାଭକରାଯାଇପାରିବା ସେ ପ୍ରତିପାଦନ କରିଛଂତି । ପ୍ରେମ ମନୁଷ୍ୟର ଅନ୍ତର୍ନିହିତ ଗୁଣ ଏବଂ ପରମସୁଂଦର ଓ ପରମ ପ୍ରେମିକ ଈଶ୍ୱର ଏହାକୁ ବ୍ୟକ୍ତିର ମୁକ୍ତି ପାଇଁ ତା ହୃଦୟରେ ରଖିଦେଇଛନ୍ତି ; ଏହାର ପ୍ରତିପାଦନରେ ଗଜାଲୀ ପ୍ରେମମାର୍ଗରେ ସଶ୍ୱର ଈଶ୍ୱରଂକ ସହ ଏକାତ୍ମିକତା ଓ ସର୍ବଭୂତରେ ଦ୍ୱୈତାବଭୂତର ପ୍ରସଂଗ ଉଠାଇ ଇସଲାମିକ ଧର୍ମଚେତନା ମୂଳରେ କଠିନତମ କୁଠାରାଘାତ କରିଥିଲେ ( ୧୧ ) ବି ତାଂକ ପ୍ରତିପାଦନ-କୌଶଳରେ ସୂଫୀଦର୍ଶନ ଓ ଇସଲାମ-ତତ୍ତ୍ୱର ଅଭିନ୍ନତା ଦର୍ଶାଇପାରିଥିଲେ । ଗଜାଲୀଂକ ପରବର୍ତ୍ତୀ ମୁସଲମ ଧର୍ମବିତ୍ମର ସୂଫୀବାଦର ପ୍ରେମ ଓ ପ୍ରତ୍ୟକ୍ଷ-ଜ୍ଞାନର ତତ୍ତ୍ୱକୁ ଅନ୍ତଃସ୍ରୋତ ରୂପେ ସଂବହନ କରିଚାଲିଛୁ ।

ଅଲଗଜାଲୀଂକ ଭାବଧାରା ଅନୁସରଣରେ ବିଖ୍ୟାତ ସୂଫୀ କବି ଅତ୍ତାରଂକ ( Attar ) ରଚନା ସମୃଦ୍ଧ । ଈଶ୍ୱର ଓ ସୃଷ୍ଟି ତତ୍ତ୍ୱ ପ୍ରସଂଗରେ ସେ ସମୁଦ୍ରଜଳ ଓ ବର୍ଷାଜଳର ରୂପାନ୍ତର ରହସ୍ୟକୁ କାବ୍ୟୋକ୍ତି କରି ( ୧୨ ) ସଶ୍ୱର ପୃଥିବୀରେ ଜନ୍ମରହସ୍ୟର କାରଣ ସନ୍ଧାନ କରିଛଂତି । ତାଂକର ପ୍ରତିପାଦନରେ ସଶ୍ୱର ସ୍ୱତଂତ୍ର ଇଚ୍ଛାହିଁ ପାପ ଯାହାକୁ ତାକୁ ଈଶ୍ୱରଂକଠାରୁ ବିଚ୍ଛିନ୍ନ ରଖେ । ଏହି ବିଚ୍ଛିନ୍ନତାର ଦୁଃଖ ପୁଣି ତାଂକୁ ଈଶ୍ୱରଂକ ପ୍ରତି ଅଭିମୁଖୀ କରାଏ । ( ୧୩ ) ଦୁଃଖ ଓ ବିରହର କାବ୍ୟ-ଗାନ ପାଇଁ ଅତ୍ତାର ପ୍ରସିଦ୍ଧ । ( ୧୪ )

ଅତ୍ତାରଂକ ଦ୍ୱାରା ୪୬୦୦ ପଦର ସମଷ୍ଟିରେ ରଚିତ 'ପକ୍ଷୀ-ସଭା' କାବ୍ୟଟି ଇଂରାଜୀ ରଚନା ('Pilgrim's Progress')ର ସମଧର୍ମୀ ବୋଲି କୁହାଯାଇପାରେ । ସୂଫୀ ସାଧକର ସତ୍ୟ-ରୂପୀ ଈଶ୍ୱରଂକ ଉଦ୍ଦେଶ୍ୟରେ ଯାତାୟାତ ଏଥିରେ ବିବୃତ । ଏଇ ଗ୍ରଂଥର ଶେଷାଂଶରେ ସ୍ରଷ୍ଟା ଓ ସଶ୍ୱର ଅଭିନ୍ନ ସଂଯୋଗାବସ୍ଥା ବିସ୍ତୃତ ଭାବରେ ବର୍ଣ୍ଣିତ ।

---

11. "He gave to Islamic philosophy—derived from Hellenistic thought—a blow from which is was never to recover."
J. A. Williams: 'Islam'—P—198.

12. "...As water lifted from the Deep, again/Falls back in individual drops of Rain—/Then melts into universal Main—/All you, have been, and seen, and done thought / Not you, but I have seen and been and wrought.
Collected Works of Attar—( Tra-Edmond Fitzerald )—P.196

13. "I was the sin that from myself rebelled
I the remorse that towards myself compelled."
qt 'Islam'—P. 158

14. Attar can be called the voice of pain, of longing and searching."
Annamarie—'The Mystical Dimensons of Islam' —P. 305

Digitized by PPRACHIN, SOA

ପ୍ରକୃତରେ ଜୀବାତ୍ମା ପରମାତ୍ମା ଅଂଶ—ସୁତରାଂ ଦିବ୍ୟ—ଏ ଭାବଚେତନା ଇସଲାମ ଧର୍ମବିଶ୍ୱାସର ଆଦ୍ୟ ରୂପରେ ହିଁ ନିହିତ । ହିଜରୀଦର ଚତୁର୍ଥ ଶତକ ପର୍ଯ୍ୟନ୍ତ ଅନେକ ବ୍ୟକ୍ତି ପ୍ରଫେଟ୍ ମହମ୍ମଦଙ୍କ ମୀରାଜକୁ ( ମୃତ୍ୟୁ ) ଆତ୍ମାର ପରମାତ୍ମାଙ୍କ ସହ ମିଳନ ବୋଲି ହିଁ ବ୍ୟାଖ୍ୟା କରିଥିଲେ । ଇବନୁଲ ଅରବୀ ସବୁ ପ୍ରାଣୀଙ୍କୁ ଈଶ୍ୱରଙ୍କ ଅଂଶବୋଲି ଗ୍ରହଣ କରିବା ଭିତରେ ଆତ୍ମାର ଘଟାନ୍ତର-ବାଦ ସୁଫୀ ମତରେ ସ୍ଥାନ ପାଇଥିଲା । ଇବନୁଲ ଅରବୀଙ୍କ ଦର୍ଶନ ସ୍ପେନର ଇହୁଦୀ ଓ ଇସଲାମୀୟ ଦାର୍ଶନିକମାନଙ୍କ ଦ୍ୱାରା ବହୁଭାବେ ପ୍ରଭାବିତ । ସ୍ପେନର ଦାର୍ଶନିକମାନେ ସେମାନଙ୍କ ରଚନାରେ ଉପମା ଓ ଆଲଂକାରିକତାର ଅତ୍ୟନ୍ତ ପ୍ରିୟ ଥିଲେ । ଈଶ୍ୱରଙ୍କ ସହ ପ୍ରେମାତ୍ମକତା ଓ ଏକରୂପତା ନିରୂପଣ ପାଇଁ ଏ ପ୍ରୟୋଗ ପ୍ରବଣତା ପରବର୍ତ୍ତୀ ସୂଫୀ-କବିତାରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲା ।

ଇରାନ୍ ଆରବ ଦ୍ୱାରା ଅଧିକୃତ ହେବାପରେ ସୂଫୀ ମତର ବିକଶିତ ରୂପ ଇରାନରେ ହିଁ ପୁଷ୍କଳତା ଲାଭ କରିଥିଲା । ଇସଲାମ ସଂସ୍କୃତିର ଆରବୀ ସ୍ୱରୂପ ଉପରେ ବିକାଶ ଇରାନର ଭାବଗତ ବିଜୟ ସୂଫୀ ଚେତନାର ଅନ୍ତର୍ନିହିତ ଦ୍ୱିବିଧ ମୂଳଧର୍ମକୁ ସ୍ପଷ୍ଟ ଚର୍ଚ୍ଚିତ କରିଦେଲା । ଇସଲାମୀ ମିଳନତତ୍ତ୍ୱ ଆପଣାର ଅଦ୍ୱୈତତାକୁ ଉଜ୍ଜ୍ୱଳ ପ୍ରକଟ କରିବା ସହ ପ୍ରେମଭାବନାର ରସମାଦକତା ଭିତରେ ଆଧ୍ୟାତ୍ମିକ ଭାବସାଧନାକୁ ପ୍ରୀତିମଧୁର କରିଦେଲା ।

ତ୍ରୟୋଦଶ ଶତାବ୍ଦୀର ସ୍ପେନୀୟ ରହସ୍ୟବାଦୀ କବି ଇବନୁଲ ଅରବୀ ଓ ମିଶରବାସୀ ଅରବୀ ରହସ୍ୟବାଦୀ କବି ଇବନୁଲ ଫରିଦଙ୍କ ନାମ ସୂଫୀ ସାହିତ୍ୟରେ ପ୍ରସିଦ୍ଧ । ଅରବୀଙ୍କ ରହସ୍ୟବାଦ ଗ୍ରୀକ୍-ପ୍ଲୋଟିନସ୍‌ଙ୍କ ଭାବାନୁପ୍ରାଣିତ । ପ୍ରତ୍ୟେକର ଅନ୍ତଃ-ମୂଳ ହେଉ ଈଶ୍ୱର 'ଭଲ ଓ ମନ୍ଦ ଉଭୟର ଉତ୍ସ-ରୂପ', ଆରବୀଙ୍କର ଏହା 'ଇସଲାମ ଚିନ୍ତାଧାରାରେ ଏକ ବୈପ୍ଳବିକ ଉଚ୍ଚାରଣ ଥିଲା । ଆରବୀ ଐକ୍ୟବୋଧ ( unity ) ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ତାଙ୍କର ଉକ୍ତି 'He sent Himself with Himself to Himself' ) ପ୍ଲୋଟିନସଙ୍କର 'Flight of the alone to the Alone' ) ର ପ୍ରତିଧ୍ୱନି ମୂଳକ । ପ୍ରେମର ସ୍ପଷ୍ଟ ଅଦ୍ୱୈତତା ପ୍ରତିପାଦନ କରି ସେ କହିଛନ୍ତି—ପ୍ରେମିକ ଓ ପ୍ରେମପାତ୍ର ଭିତରେ ପ୍ରେମ ଏକ ସମ୍ପର୍କ ବିଶେଷ ନୁହେଁ ଏହା ନିଜେ ନିଜକୁହିଁ ନିଜ ଅଭିଜ୍ଞାନ ଭିତରେ ଲାଭକରିଥାଏ । ( ୧୫ )

ଆରବୀଙ୍କ ପରି ଇବନୁଲ୍ ଫରିଦ ଜଣେ ଆରବୀୟ ହୋଇମଧ୍ୟ ପାରସିକ କାବ୍ୟ-ଚମତ୍କାରିତା ସମ୍ପାଦନାରେ ଜଣେ ବିରଳ କବି ରୂପେ ପରିଚିତ । କ୍ଲାସିକାଲ ଆରବୀ କାବ୍ୟଶୈଳୀ ଅବଲଂବନ୍‌ରେ ସେ 'ଓଡ଼' ରୂପରେ ତାଙ୍କର ଦିବ୍ୟାନୁଭୂତି ବର୍ଣ୍ଣନା କରିଛନ୍ତି । ତାଙ୍କର ପ୍ରସିଦ୍ଧ ରଚନା ଖାମରିୟାରେ ( Khamriyya. ) ଅଲ୍ଲାଙ୍କୁ ନିବେଦିତ ଏକ ଓଡ଼ରେ ( the wine ode ) ଦିବ୍ୟ-ପ୍ରେମ ରୂପକ ମଦ୍ୟର ଆକର୍ଷଣ, ମାଧୁର୍ଯ୍ୟ ଓ ସମ୍ମୋହନ ଚମତ୍କାର ପ୍ରତୀକାତ୍ମକ ଅଭିବ୍ୟଂଜନା ଲାଭ କରିଛି । ତାଙ୍କର ଅନ୍ୟତମ ଗ୍ରଂଥ ଦିଓ୍ୱାନ ( Diwan ) ରହସ୍ୟବାଦୀ

---

15. "When my Beloved appears
With what eye do I see Him ?
With his eye, not mine
For none sees Him except Himself.
Annamarie—'Mystical Dimensions of Islam. p-266

Digitized by PPRACHIN, SOA

ପ୍ରେମାନୁଭବର ଏକ ଗୀତ-ସଙ୍ଗୀତ ସଙ୍କଳନ ଯାହାର ଉପସ୍ଥାପନା ରୂପକାତ୍ମକ । ଏହାର ଅନେକାଂଶ ଆଧ୍ୟାତ୍ମିକତା ପ୍ରସୂତ ନୁହେଁ ବୋଲି କେତେକ ଆଲୋଚକଙ୍କର ମତ । 'ସାଧାରଣ ସବାଦରେ ଅଧ୍ୟାତ୍ମ ସଙ୍କେତ' ଏହାର ରହସ୍ୟବାଦୀ ପରିଚୟ ବୋଲି ପ୍ରତିପନ୍ନ କରି ଅନେକ 'ସର୍ବଜ୍ଞ ପ୍ରେମ-ସ୍ୱରୂପର ଉପଲବ୍ଧି' ଏଇରୂପ ପ୍ରତୀକାତ୍ମକତାର ହେତୁ ବୋଲି ନିର୍ଦ୍ଦେଶ କରିଛନ୍ତି । (୧୬) କବିଙ୍କର ଅନ୍ୟତମ ରଚନା 'ନଜମୁଲ ସୁଲୁକ'-ସୂଫୀର ଯାତ୍ରା-ସବାଦ । ତାଙ୍କର ଅନ୍ୟତମ ବିଖ୍ୟାତ ରଚନା 'Taiyya' ତାଙ୍କ ଦର୍ଶନର ତତ୍ତ୍ୱାତ୍ମକ ଉପସ୍ଥାପନା ବୋଲି କୁହାଯାଇପାରେ । ଆତ୍ମାକୁ ସେ କଣ୍ଢେଇ ନାଚର ସୂତ୍ରଧର ଓ ଜଗତକୁ କଣ୍ଢେଇ-ନାଚର ରୂପକାତ୍ମକ ଉପସ୍ଥାପନା ଦେଇଛନ୍ତି । ତାଙ୍କର ଭାବଧାରା ଅନେକ ସମୟରେ ୟୁରୋପୀୟ କବି 'ଦାଂତେ'ଙ୍କୁ ସ୍ମରଣ କରାଇଦିଏ ।

ଇବନୁଲ ଫରିଦଙ୍କ ପ୍ରେମତତ୍ତ୍ୱ ୟୁରୋପୀୟ ରହସ୍ୟବାଦ ଭାବାଶ୍ରୟୀ । ସୂଫୀ କାବ୍ୟର ମୁଖ୍ୟ ସ୍ୱରୂପ 'ପ୍ରେମ' ଆଧାରିତ ହେଲେହେଁ ଆରବୀୟ ଓ ଇରାନୀୟ ଚେତନାରେ ତାହା ଦ୍ୱିଧାବିଭକ୍ତ । ଇରାନୀୟ ଅଧ୍ୟାତ୍ମବାଦରେ ବିଶ୍ୱଚେତନା ବିଶ୍ୱବ୍ୟାପକତାର ପୃଷ୍ଠଭୂମିରେ ଅବତୀର୍ଣ୍ଣ । ମାତ୍ର ଇହୁଦୀ ଧର୍ମମତ ପ୍ରଭାବିତ ଆରବୀୟ ଚିନ୍ତାଧାରାରେ ଈଶ୍ୱର ସମ୍ପୂର୍ଣ୍ଣ ବ୍ୟକ୍ତି-ରୂପରେ ଉପାସ୍ୟ । ତେଣୁ ପାଶ୍ଚାତ୍ୟ ଓ ଆରବୀୟ ରହସ୍ୟଚେତନା ବ୍ୟକ୍ତିଗତ ଈଶ୍ୱରଙ୍କ ସହ ବ୍ୟକ୍ତିଗତ ପ୍ରେମ ସମ୍ପର୍କର ଚର୍ଚ୍ଚା କରିଥାଏ । ଏଇଦୃଷ୍ଟିରୁ ପାରସିକ ସୂଫୀ-କାବ୍ୟରେ ପ୍ରେମର ଅମୂର୍ତ୍ତଭାବଟି ପ୍ରକଟିତ ଏବଂ ଆରବୀୟ ରହସ୍ୟ କବିତାରେ ପ୍ରେମ ଏକାନ୍ତ ବ୍ୟକ୍ତିଗତ ଆନ୍ତରିକତାରେ ଆସ୍ୱାଦ୍ୟ ମଧୁର । (୧୭)

ତ୍ରୟୋଦଶ ଶତକର ସୂଫୀ ଦାର୍ଶନିକ ଜଲାଲୁଦ୍ଦୀନ ରୁମୀଙ୍କ ମସନବୀ 'ପାରସିକ କୋରାଣ' ରୂପେ ବିବେଚିତ । ମସନବୀ ସୂଫୀ ଚିନ୍ତାଧାରା ଉପରେ ଆଧାରିତ ବହୁ ଆଖ୍ୟାୟିକା ରୂପକ ଓ ଭାବଧାରା ସବଳିତ ଏକ ବିରାଟ ସଙ୍କଳନ । ରୁମୀଙ୍କ ବ୍ୟକ୍ତିଗତ ଅଧ୍ୟାତ୍ମ ଅନୁଭବ ଓ ପ୍ରେମଭାବନା ଗଜଲ ଏବଂ ଗୀତିକବିତାରୂପେ 'ଦିଓ୍ୱାନ୍-ଇ-ଶାମ'ରେ ପ୍ରକାଶିତ । ପ୍ରେମଚେତନାରେ ତନ୍ମୟତା ଏକ ପରମକାମ୍ୟ ଅବସ୍ଥାରୂପେ ରୁମୀଙ୍କ ଦ୍ୱାରା ପ୍ରଦର୍ଶିତ । ରୁମୀ ଈଶ୍ୱରଙ୍କ ପ୍ରତି ସତ୍ତ୍ୱର ବ୍ୟାକୁଳତା ପ୍ରକାଶ କଲାବେଳେ ଈଶ୍ୱର ମଧ୍ୟ ଜୀବପ୍ରେମର ଆକାଂକ୍ଷିତ ଓ ମର୍ତ୍ତ୍ୟପ୍ରେମରେ ଆକୁଳ ବୋଲି ବର୍ଣ୍ଣନା କରିଛନ୍ତି । ପାରସିକ ସୂଫୀ କବିମାନଙ୍କ ଭିତରେ ରୁମୀ ବିଶେଷ ପ୍ରସିଦ୍ଧିର ଅଧିକାରୀ । ପାରସ୍ୟର ଅନ୍ୟତମ କବି 'ସନାଇ' ଜଣେ ସତ୍ୟଦ୍ରଷ୍ଟା ରହସ୍ୟବାଦୀ ରୂପେ ପରିଚିତ । ତାଙ୍କ ରଚିତ 'ହାଦିକା' ସତ୍ୟର ଉପବନ ରୂପେ ସମାଦୃତ ।

---

16. "In every erotic description, whether the subject there of be male or female, and in all imagery of gardens, flowers, rivers, birds and the lake, he refers to the Divine Reality manifested in phenomena and not to the phenomena themselves."
R.A. Nicholson : "Studies in Islamic Mysticism"-P. 168

17. "While the Persian sees a pantheistic vision of one reality in which the individual disappears, the Arab dwells on particular aspects of the relation of that reality to himself.
R. A. Nicholson—'Studies in Islamic Mysticism' P-181

Digitized by PPRACHIN, SOA

ପ୍ରେମମାର୍ଗୀ ଅଦ୍ୱୈତ ଭାବନାର ପୂର୍ଣ ବିକାଶରେ ଜଲ୍ଲି, ଜାମୀ ପ୍ରଭୃତି ପାରସିକ କବିଂକ ନାମ ଉଲ୍ଲେଖଯୋଗ୍ୟ । ଜଲ୍ଲିଂକ ରଚନାରେ ଜାକୋବ ବୋହେମ୍‌ଂକ ରହସ୍ୟଭାବନାର ସାମଂଜସ୍ୟ ମିଳେ । ଜଲ୍ଲି ମାନବର ପାପବୋଧ ଓ ସ୍ୱର୍ଗଚ୍ୟୁତି ମୂଳରେ ମଧ୍ୟ ମାନବର ଅନ୍ତଃସ୍ଥିତ ଦିବ୍ୟତ୍ୱକୁ ଦେଖିଛଂତି । ଆଦାମର ନିଷେଧଫଳ ଭକ୍ଷଣର ଆଗ୍ରହକୁ ସେ ଦିବ୍ୟ-ଭାବନା ସଂପ୍ରେରିତ 'ସକଳ୍ପ-ସ୍ୱାତଂତ୍ର୍ୟ' ବୋଲି ମଂତବ୍ୟ କରିଛଂତି । ( ୧୮ ) ଅନ୍ୟତମ ସୂଫୀ କାବ୍ୟ ସ୍ରଷ୍ଟାଙ୍କ ଗାଓ୍ୱାନା ପାରସ୍ୟରେ ବହୁଳ ପ୍ରସ୍ତୁତି । ତାଂକ ରଚନାର ପ୍ରେମ-ଚେତନାର ସ୍ୱରୂପ ଅବଶ୍ୟ ବହୁବିବାଦିତ । ଏକ ଲୋକପ୍ରିୟ କାବ୍ୟ 'ଲଇଲ୍ଲା'ର ରଚୟିତାରୂପେ ଜାମି ପରିଚିତ । 'ଲଇଲ୍ଲା'ର ଅର୍ଥ ହେଉଛି ଉଜ୍ଜ୍ୱଳ କରଣ ଯାହା ବ୍ୟକ୍ତିତ୍ୱକୁ ଉଦ୍‌ଭାସିତ କରିଥାଏ । ପ୍ରେମ-ଚେତନାରେ ପ୍ରିୟସଙ୍ଗ ଅଭିଳାଷ ବ୍ୟକ୍ତିମାନସରେ ଯେଉଁ ତନ୍ମୟତା ସୃଷ୍ଟିକରେ, ଜାମିଂକ କାବ୍ୟ ଉଚ୍ଛ୍ୱାସରେ ତାହା ମନୋଜ୍ଞ ବାଗ୍-ବୈଦଗ୍ଧ୍ୟ ଲାଭକରିଛି । ( ୧୯ )

ସୂଫୀ ସାଧନା-ରହସ୍ୟ—ସୂଫୀ ମତର ସାମଗ୍ରିକ ପ୍ରସାଦଟି ପ୍ରେମର ଭିତ୍ତିରେ ହିଁ ଦଣ୍ଡାୟମାନ । ସ୍ୱର୍ଗାର୍ଚ୍ଚିକା ରକ୍ତ-ରୂପକୁ ସାଧକ ଅାତ୍ମ ଆକୃତିରେ ରୂପାଂତରିତ କରିଥାଏ । ମାନବ ଦିବ୍ୟଚେତନାର ଅଂଶହର । ଦିବ୍ୟ ପ୍ରେମ-ରୂପ ଈଶ୍ୱରଂକ ପ୍ରେମ-ଭାବ ତାଠାରେ ସଂଗୁପ୍ତ । ସେହି ପ୍ରେମଭାବନାର ବିକାଶଦ୍ୱାରା ସ୍ୱୟଂ ପ୍ରେମ-ରୂପକୁ ପ୍ରାପ୍ତ ହୋଇ ଈଶ୍ୱରଂକୁ ଲାଭ କରିପାରେ, ଏହା କୋରାନର ସଂଦେଶ । ( ୨୦ )

ସୂଫୀ ଚେତନାରେ ପ୍ରେମ ଓ ସୌନ୍ଦର୍ଯ୍ୟ ସମଭାବ ଦ୍ୟୋତକ । ଇବନ ଅରବୀଂକ ବ୍ୟାଖ୍ୟାରେ, ପ୍ରେମର ମୂଳକାରଣ ସୌନ୍ଦର୍ଯ୍ୟ ଚେତନା । ସୌନ୍ଦର୍ଯ୍ୟ ହିଁ ଆକର୍ଷଣର ପ୍ରଥମ ଅନୁଭବ ଓ ଆବେଗ ସୃଷ୍ଟି କରେ । ଈଶ୍ୱର ସ୍ୱୟଂ, ସୌନ୍ଦର୍ଯ୍ୟ-ରୂପ, ତେଣୁ ତାଂକର ଆକର୍ଷଣ ପ୍ରବଳତମ । ସୌନ୍ଦର୍ଯ୍ୟର ସାର୍ଥକତା ପ୍ରକାଶନରେ । ଈଶ୍ୱରୀୟ ସୌନ୍ଦର୍ଯ୍ୟ ଅନିବାର୍ଯ୍ୟ ପ୍ରକାଶପ୍ରବଣତାରୁ ଆପଣାକୁ ରୂପାଭିବ୍ୟକ୍ତ କରେ । ଈଶ୍ୱର ଯେପରି ନିଜ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଆପଣାକୁ ହିଁ ସୁନ୍ଦର କରି ପ୍ରକାଶ

---

18. "For it is not in the nature of the Lordship to submit the prohibition."

R. A. Nicholson- "Studies in Islamic Mysticism" P.119

19. "So constantly art thou in my striken soul and sleepless eye
That who-so-ever would appear from afar
I should think it was thee"

—Jami- qt. 'Islam'- P. 166

20. "Love has come from Eternity, and passes into Eternity, and none has been found in seventy-thousand worlds who drinks one drop of it until at last he is asorbed in God and from that comes the saying,, "He loves them and they love Him."

Surun 59/The Holy Quran

qt—Annamarie—'Mystical Dimensions of Islam'. P-134.

Digitized by PPRACHIN, SOA

କରଥାନ୍ତି । ଆପଣାର ପ୍ରେମକୁ ବହୁଭାବେ ଉପଭୋଗ କରିବା ପାଇଁ ବ୍ୟକ୍ତିହୃଦୟରେ ପ୍ରେମ ହୋଇ ସୌନ୍ଦର୍ଯ୍ୟ-ରୂପ ମାଧ୍ୟମରେ ହିଁ ବ୍ୟକ୍ତିକୁ ଉଦ୍‌ବ୍ୟୋନ୍ମୁଖ କରନ୍ତି । ବସ୍ତୁତଃ ସାରା ବିଶ୍ୱ ଈଶ୍ୱରଙ୍କର ସେଇ ଆତ୍ମପ୍ରେମର ପରିଣାମ ଓ ପାର୍ଥିବ ଜଗତ ତାଙ୍କର ସୌନ୍ଦର୍ଯ୍ୟର ସାକାର ପ୍ରକାଶ-ରୂପ । ସୂଫୀମାନଙ୍କ ଯୁକ୍ତିରେ, ଈଶ୍ୱର ପରମ ପ୍ରେମମୟ ହୋଇନଥିଲେ ଓ ସୌନ୍ଦର୍ଯ୍ୟର ଉତ୍ସ-ରୂପ ହୋଇଥିଲେ ବିଶ୍ୱରେ ରୂପର ଐଶ୍ୱର୍ଯ୍ୟ ଓ ବ୍ୟକ୍ତି ହୃଦୟରେ ପ୍ରେମର ଆବେଗ ସମ୍ଭବ ହୁଅନ୍ତା ନାହିଁ ।

ପାର୍ଥିବ ପ୍ରେମ ମଧ୍ୟ ଏହି ସୌନ୍ଦର୍ଯ୍ୟବୋଧରୁ ଉତ୍ସାରିତ । ପାର୍ଥିବ ରୂପାସ୍ୱାଦନଜାତ ପାର୍ଥିବ ପ୍ରେମ ମଧ୍ୟ ଦିବ୍ୟ-ଉପାଦାନକୁ ବହନ କରିଆଣିଥିବାରୁ ଅଲୌକିକ ପ୍ରେମର ନିମିତ୍ତ କାରଣ ରୂପେ କାର୍ଯ୍ୟ କରିପାରେ । ଏ ଭାବଚେତନାଟି ସୂଫୀ ସାଧନାର ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶକ ରୂପେ ଆବିର୍ଭୂତ ।

ଯାବତୀୟ ପ୍ରେମର ଅନ୍ତିମ ଧ୍ୟେୟ ହେଉଛି ତାର ସତ୍ୟରୂପକୁ ପ୍ରତୀକ୍ଷା କରିବା । ଏହି ସତ୍ୟ ସ୍ୱରୂପ ପାର୍ଥିବତାର ଅନ୍ତରାଳଗତ ଅପାର୍ଥିବ ଈଶ୍ୱରୀୟ ପ୍ରେମ-ସତ୍ତା । ମନୁଷ୍ୟ ସ୍ୱଭାବତଃ ସୌନ୍ଦର୍ଯ୍ୟ-ପ୍ରେମୀ । ଆକର୍ଷଣୀ ଶକ୍ତିର ବିସ୍ତାରରେ ବାହ୍ୟ ସୌନ୍ଦର୍ଯ୍ୟର କୌଣସି ନିର୍ଦ୍ଦିଷ୍ଟ ପରିଭାଷା ନାହିଁ । ଏହା ଅନ୍ତସୌନ୍ଦର୍ଯ୍ୟ ବା ଗୁଣାତ୍ମକତାକୁ ମଧ୍ୟ ବୁଝାଇପାରେ । ବିଶ୍ୱର ଅନ୍ତଃବହି ସର୍ବାଙ୍ଗ ସୁନ୍ଦର ହେତୁ ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ଉପଭୋଗର କାମନା ମନୁଷ୍ୟକୁ ଈଶ୍ୱର ଅନୁରାଗୀ କରିଥାଏ । ଆବୁତାଲିବ ସୂଫୀ ପ୍ରୀତି-ତତ୍ତ୍ୱର ମନନ୍ତବ୍ୟଟି ବାଢ଼ିଛନ୍ତି, 'ପ୍ରିୟତମର ଦର୍ଶନ ଲାଳସା ହିଁ ପ୍ରେମର ଲକ୍ଷଣ ।' ଈଶ୍ୱର ନିରାକାର ଓ ତାଙ୍କ ପ୍ରେମ ଅତୀନ୍ଦ୍ରିୟ ହେବା ସତ୍ତ୍ୱେ ଏହି 'ସାକ୍ଷାତ୍କାର' ପ୍ରସଙ୍ଗଟି ହିଁ ସୂଫୀ ପ୍ରେମ-ଦର୍ଶନକୁ ରହସ୍ୟବାଦୀ ରୂପରେଖ ଦାନ କରିଛି ।

ସୂଫୀ ସାଧନାରେ ରତିର ଆଲମ୍ବନ ଈଶ୍ୱର । ତାଙ୍କର ଅଜସ୍ର ସାକାର ରୂପ ଏ ବିଶ୍ୱପୃଥିବୀ । ତାଙ୍କର ଚିନ୍ତା ସ୍ମରଣୀ ନାମ-ଜପ ଓ ବିରହାନୁଭବ ପାଇଁ ସୂଫୀ ମତରେ ପାର୍ଥିବ ବ୍ୟକ୍ତି-ପ୍ରେମକୁ ଅବଲମ୍ବନ କରି ପରୋକ୍ଷ ଭାବରେ ପରମ-ପ୍ରିୟତମଙ୍କର ପ୍ରେମ-ସାଧନା କରାଯାଇପାରେ । ଏଇ ଉଦ୍ଦେଶ୍ୟମୂଳକତା ହେତୁ ଅଧିକାଂଶ ସୂଫୀ-ପ୍ରେମ-ରଚନାର ଆଲମ୍ବନ ଦୈବୀ ବା ମନୁଷ୍ୟ—ଏ ପ୍ରଶ୍ନ ସ୍ୱତଃ ପାଠକ ମନରେ ଉଦିତ ହୋଇଥାଏ ।

ସୂଫୀ ପ୍ରେମ ଓ ବୈଷ୍ଣବୀୟ ରାଗାନୁଗା ସାଧନା ଭିତରେ ବିଶେଷ ତାରତମ୍ୟ ଦୃଷ୍ଟିଗୋଚର ହୁଏ ନାହିଁ । ରତିର ସ୍ୱରୂପ ଓ ବିକାଶରେ ଭାବଗତସାମ୍ୟ ପ୍ରଚୁର ଭାବରେ ବିଦ୍ୟମାନ । ଦୁହିଁଙ୍କ ମଧ୍ୟରେ ପ୍ରଧାନ ବିଭେଦକାରୀ ଉପାଦାନଟି ହେଉଛି ବୈଷ୍ଣବୀୟ ରତିର ଆଲମ୍ବନ ଭଗବାନଙ୍କର ସାକାର ଅବତାର ରୂପ ଓ ସୂଫୀ ପ୍ରେମର ଆରାଧ୍ୟ ନିରାକାର ଈଶ୍ୱର । ଆଧାରଗତ ଏ ବିଭେଦ ମୂଳକତା ସତ୍ତ୍ୱେ ଆରାଧନାର ଭାବରୂପରେ ସାମଞ୍ଜସ୍ୟ ପ୍ରଚୁର ।

ସୂଫୀ ପ୍ରଣୟ-ସାଧନାରେ ଚରାଚର ବିଶ୍ୱ ଓ ନିଖିଳ ପ୍ରକୃତି ଉଦ୍ଦୀପନ ବିଭାବ ରୂପେ ପରିବେଷିତ । ଶାଶ୍ୱତ ସୌନ୍ଦର୍ଯ୍ୟର ଅଂଶରୂପୀ ପ୍ରକୃତି ସୁନ୍ଦରର ପ୍ରତୀକ ରୂପେ ପୂର୍ଣ୍ଣ ସୌନ୍ଦର୍ଯ୍ୟର ଉଦ୍‌ବୋଧନ ଆଣେ ଏବଂ ସମଗ୍ରକୁ ପାଇବାର ବ୍ୟାକୁଳତାରେ ସାଧକର ରତି ଭାବକୁ ବିରହାନୁଭବ ଦ୍ୱାରା ତୀବ୍ର ଓ ଗାଢ଼ କରିଦିଏ । ସୂଫୀ ପ୍ରେମ ତତ୍ତ୍ୱରେ ଈଶ୍ୱର କେବଳ ପ୍ରେମାସ୍ପଦ ନୁହନ୍ତି । ସେ ପ୍ରେମ ଲୀଳାରେ ପୂର୍ଣ୍ଣ ଅଂଶଗ୍ରହଣକାରୀ ପ୍ରେମିକ ମଧ୍ୟ ସିଏକ ମାନବୀୟ ପ୍ରୀତିପାଇଁ ଉନ୍ମୁଖ ହୋଇ ଆପଣାର ପ୍ରେମ ଭାବନାକୁ ମାନବ ହୃଦୟର ଆନନ୍ଦ ଓ ବିଷାଦର ଅନୁଭବ ଭିତରେ ରୂପାୟିତ କରିଥାନ୍ତି । (୨୧)

21. "Not a Single lover would seek union if the Beloved were not seeking it," Rumi.

qt—Annamanie—'Mystical Dimensions of Islam' P-139,

Digitized by PPRACHIN, SOA

ଅନେକ ଅବସ୍ଥା ଓ ସ୍ଥିତ୍ୟନ୍ତର ଦେଇ ଏହା କ୍ରମଶଃ ପରିପାକ ହୁଏ । ଶେଷରେ ଭବ ·ସମୁଦ୍ରରେ ନିମଜ୍ଜ ହୋଇ ବ୍ୟକ୍ତି ପ୍ରେମର ଐଶ୍ୱରିକ ରୂପକୁ ସାକ୍ଷାତ୍ କରେ, ସୂଫୀ ମତରେ ଏହାହିଁ ଫନା ବା ଆତ୍ମଲୟ । ଅଲ୍ ହଲାଜ ନିଃଶ୍ୱାସ ତ୍ୟାଗ କଲାବେଳେ ପ୍ରେମର ସମଗ୍ର ବ୍ୟାପ୍ତି ଟାକୁ ହିଁ ମୃତ୍ୟୁ ବୋଲି ପ୍ରିୟବନ୍ଧୁ ଶିବଲୀଙ୍କ ନିକଟରେ ବର୍ଣ୍ଣନା କରିଛନ୍ତି । (୨୨)

"ପ୍ରେମର ଅଗ୍ନିରେ ସତ୍ତ୍ୱାର ଭିନ୍ନତାବୋଧ ଧ୍ୱଂସ ହୁଏ । ଦଗ୍ଧାବଶେଷଟି ବିଗଳିତ ସାଧକ ସତ୍ତ୍ୱାର କର୍ପୂର ସୁଗଂଧ—ଭୋଗ, ସ୍ୱର୍ଗ, ମୋକ୍ଷକାମନା ବିରହିତ ଏକ ନିରଭିମାନ ଆତ୍ମ-ନିବେଦନ । ପ୍ରେମିକର କମ୍ବଂଗୁଳି ଶିହରିତ ବାଦ୍ୟତାରର ମୁଗ୍ଧ ପ୍ରେମ-ଆଳାପ । ଜାମୀ କୁହନ୍ତି, ମୋର ହୃଦୟ ରୂପ ସୀତାରରେ ପ୍ରେମ ଏପରି ଏକ ସୁରର ଆଳାପ ତୋଳିଛି ଯେ ମୁଁ ଗୋଟାପଣେ ପ୍ରେମରେ ହିଁ ପରିଣତ ହୋଇଯାଉଛି । (୨୩) ପ୍ରସିଦ୍ଧ ରୁବାୟତ୍‌କାର ଓମରଖୈୟାମଙ୍କ ଅନୁଭବରେ ପ୍ରେମ-ରୂପ ମଦିରା ତାଙ୍କ ପ୍ରାଣରେ ଯେଉଁ ସମ୍ମୋହନ ଜଗାଇ ଦେଇଛି ତାହା ସବୁ ରହସ୍ୟକୁ ଖୋଲିଦେଇଛି, ଏ ମଧୁପାନ ପରେ ତାଙ୍କର ଜୀବନ କି ମୃତ୍ୟୁ ଆଉ କାହାର ଚିନ୍ତା ବି ନାହିଁ । ( ୨୪ ) ରୁମୀଙ୍କ ବିଷ୍ଟରେ ଚେଷ୍ଟ ଗରଳତୁଲ୍ୟ ଭୟଂକର ହେଲେ ବି ଏଇ ପ୍ରେମାସବ ସ୍ୱାଦ୍ୟ ଓ ପାନୀୟ ଶ୍ରେଷ୍ଠ । ( ୨୫ )

ସୂଫୀତତ୍ତ୍ୱ ଓ ଦର୍ଶନ—ସୂଫୀ ସାଧନା ପ୍ରେମ-ନିର୍ଭର ହେଲେହେଁ ଏଥିରେ ଜ୍ଞାନ ଏବଂ ଧ୍ୟାନର ମହତ୍ତ୍ୱ ସ୍ୱୀକୃତ । ସୂଫୀତତ୍ତ୍ୱରେ ମନୁଷ୍ୟର ସତ୍ତ୍ୱା ତ୍ରିଧାବିଭକ୍ତ । ( ୧ ) ବୁଦ୍ଧି ଗୁଣଯୁକ୍ତ ଆତ୍ମା ( ରୁହ ) ( ୨ ) ବାସନା-ପୂର୍ଣ୍ଣ ସତ୍ତ୍ୱା ( ନଫସ୍-ଅହଂସତ୍ତ୍ୱା ), (୩) ଇନ୍ଦ୍ରିୟାଶ୍ରୟୀ ଶରୀର । ରୁହ୍ ଦୈବୀ ଅଂଶ, ମାନବକୁ ନିରନ୍ତର ଊର୍ଦ୍ଧ୍ୱ ଉନ୍ମୁଖୀ କରୁଥାଏ । ନଫସ୍ ବାସନା ଜଗତର ଅଧିବାସୀ, ଆତ୍ମାକୁ ପରମାତ୍ମାଙ୍କଠାରୁ ଭିନ୍ନ କରି ରଖିଥାଏ । ଜ୍ଞାନ, ଧ୍ୟାନ ଓ ପ୍ରେମଦ୍ୱାରା ଏହାର ବିରୁଦ୍ଧରେ ରୁହର ଯୁଦ୍ଧ ସୂଫୀ ସାଧନାତତ୍ତ୍ୱରେ 'ଜେହାଦ୍' ନାମରେ ପରିଚିତ ।

ଅଧ୍ୟାତ୍ମ ସାଧନାରେ କଲ୍‌ବର ( ହୃଦୟ ) ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହା ରହସ୍ୟ ଜ୍ଞାନର ସାଧନା-ଭୂମି । ଏହା ସ୍ୱଭାବତଃ ଏକ ନିର୍ମଳ ଦର୍ପଣ ସଦୃଶ ଯେଉଁଥିରେ କି ସତ୍ୟର ପ୍ରତିଭାସନ ସ୍ପଷ୍ଟରୂପେ ଝଲସି ଉଠିଥାଏ । କଲ୍‌ବ-ଗୋଚର ଜ୍ଞାନ ବୁଦ୍ଧିଜ୍ଞାନଠାରୁ ଭିନ୍ନ ଅନ୍ତର୍ଦୃଷ୍ଟି ସଞ୍ଜାତ 'ପ୍ରଜ୍ଞା'କୁ ହିଁ ବୁଝାଇଥାଏ । ଏହା ହିଁ ମାରଫତ୍ ।

ଈଶ୍ୱରଙ୍କ ସମ୍ବନ୍ଧରେ ଜ୍ଞାନଲାଭର ବିଭିନ୍ନ ସ୍ତର ବିଚାର କରି ସୂଫୀ ଚିନ୍ତାଧାରା ଏହାକୁ ପ୍ରଥମ, ମଧ୍ୟମ, ଉତ୍ତମ ସ୍ଥିତିରେ ବିଭକ୍ତ କରିଛି । ପ୍ରଥମ ସ୍ଥିତି ଏକ 'ଉଜ୍ଜ୍ୱଳ ଜୀବନ' ଯେତେବେଳେ

---

(୨୨) "Oh Shibli, the beginning of love is a consuming fire and in the end there in death."

qt—'Mystical Dimensions of Islam' (Annamarie) -P. 77

(୨୩) ଭାବାନୁବାଦ 'ଇରାନ କେ ସୂଫୀ କବି'—( ଶ୍ରୀ ବାଙ୍କେବିହାରୀ, କଣ୍ଟେମ୍ପ୍ଲେଟିଭ୍ ) ପୃ. ୪୦୦

(୨୪) 'ଇରାନ୍‌କେ ସୂଫୀ କବି'—ପୃ ୫୨

(୨୫) "Sweeter than this poison I didnot see any drink.

Rumi—qt—"Mystical Dimension of Islam"—p. 94.

Digitized by PPRACHIN, SOA

ମନୁଷ୍ୟ ଶୁଦ୍ଧଚିତ୍ତତା ଲାଭକରେ ଓ ବାସନା-ଅନାସକ୍ତ ହୁଏ । କର୍ମବଚନରେ ପବିତ୍ରତା ଅବଲମ୍ବନ କରେ । ଦ୍ୱିତୀୟ ସ୍ଥିତି 'ପ୍ରକାଶମୟ ଜୀବନ'ର ଅଭିବ୍ୟକ୍ତି, ଯାହା ମନୁଷ୍ୟର ଇଚ୍ଛାଶକ୍ତି, ଅନୁଭବ ଏବଂ କ୍ରିୟାତ୍ମକତା ସବୁର ମୂଳରେ ଈଶ୍ୱରୀୟ ନିର୍ଦ୍ଦେଶକୁ ଇଂଗିତମୟ ଦେଖେ । ବୁଦ୍ଧି ପ୍ରଜ୍ଞାକୁ ଅନୁସରଣ କରେ । ତୃତୀୟ ଓ ଅନ୍ତିମ ସ୍ଥିତିରେ ମନୁଷ୍ୟ ଧ୍ୟାନଭିତରେ ଧ୍ୟେୟ ସହ ସାଯୁଜ୍ୟ ପ୍ରାପ୍ତ ହୁଏ ।

ଅଧ୍ୟାତ୍ମଯାତ୍ରୀଙ୍କୁ ସୂଫୀ ପରିଭାଷାରେ ସାଲିକ୍ କୁହାଯାଏ । ସେ ସାତୋଟି ସ୍ତର ପାରହୋଇ ଈଶ୍ୱରଙ୍କ ସହ ଅଭେଦତ୍ୱ ପ୍ରାପ୍ତ ହୁଏ । ଇଶ୍କ୍ ବା ପ୍ରୀତି ବ୍ୟକ୍ତି ହୃଦୟରେ ସଂସୃଜିତ ହେଲେ ସେ ଏକାନ୍ତ ପ୍ରିୟ ହୋଇଉଠେ ଏବଂ ସର୍ବଦା ତାର ଏକମାତ୍ର-ପ୍ରିୟଙ୍କୁ ସନ୍ଧାନକରେ । କ୍ରମଶଃ ତଲ୍ଲୀନତାଜନିତ ଭାବୋନ୍ମାଦନାରେ ଆତ୍ମଭାବ ସଂକ୍ରମଣଦ୍ୱାରା ଧ୍ୟାତା, ଧ୍ୟାନ, ଧ୍ୟେୟର ଏକରୂପତା ଜାତ ହୁଏ । 'ଫନା'ର ଆତ୍ମାଲୟ ଭିତରେ ଈଶ୍ୱର-ସାକ୍ଷାତ୍-ଜ୍ଞାନର ଆନନ୍ଦାବସ୍ଥା 'ବକା' ନାମରେ ପରିଚିତ । ଏହି ଅବସ୍ଥାରେ ପୂର୍ଣ୍ଣତା ଲାଭହୁଏ । ସୂଫୀ ତତ୍ତ୍ୱର 'ପୂର୍ଣ୍ଣଜୀବନ'ର ଏହାହିଁ ରହସ୍ୟୋଦ୍‌ଘାଟନ । (୨୬)

'ଫନା' ଓ 'ବକା'ରେ ସୂଫୀ-ସିଦ୍ଧାନ୍ତ କେତେକ ଭିନ୍ନାବସ୍ଥାର ଲକ୍ଷଣ ନିର୍ଦ୍ଦେଶକରେ । 'ଫନା'ଦଶାରେ ଆତ୍ମଭାବର ପୂର୍ଣ୍ଣବିନାଶ ପରେ ଏକ ଉନ୍ମାଦନାମୟୀ ତଲ୍ଲୀନତା ଆସେ । ଏ ଅଭେଦ-ବୋଧ୍ର ଯେଉଁ ସ୍ଥିତିରେ ଲୋପହୁଏ ତାହା 'ଫନା'ର ଶେଷାବସ୍ଥା । 'ଆତ୍ମଭାବର ଅଭାବ' ଓ 'ଈଶ୍ୱର ଲାଭର ଭାବ'—ରୂପାତ୍ମକ ଏ ଅନ୍ତର୍ନିହିତ ସଂଯୁକାତ୍ମକ ଭାବାଭାବ ଅବସ୍ଥା ପରସ୍ପର ଏକରୂପରେ ଅବବୋଧ ହେବାହିଁ 'ବକା' ।

'ଫନା'ର ଭାବଚେତନାରେ ବୌଦ୍ଧ 'ନିର୍ବାଣ'ର ପ୍ରଭାବ ଥିଲେ ମଧ୍ୟ ଉଭୟ ତତ୍ତ୍ୱତଃ ଏକ ନୁହନ୍ତି । ନିଜର ଅଭାବ-ରୂପ ସହ ଈଶ୍ୱରଙ୍କ ଭାବ-ରୂପ ଲାଭର ସହଯୋଗ ହେତୁ 'ଫନା' ଲୟାବସ୍ଥା ହେଲେ ମଧ୍ୟ ଶୂନ୍ୟତାବୋଧକ ନୁହେଁ । ସୂଫୀ ଈଶ୍ୱରରେ ଅନସ୍ତିତ୍ୱବାଦୀ ବୌଦ୍ଧ-ଚେତନାରେ ଏ ଉପଲବ୍ଧି-ପ୍ରସଙ୍ଗ ଉଠିବା ସମ୍ଭବ ନୁହେଁ ।

ସୂଫୀ ସାଧନାରେ ପ୍ରୀତିକର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ମୂଳରେ ସାମାଜିକ ଓ ଧର୍ମନୈତିକ ପ୍ରତିବେଦନା ରହିଛି । କୁହାଯାଏ, ଧର୍ମର ଆନୁଷ୍ଠାନିକ ବାହ୍ୟାଡ଼ମ୍ବର ବିରୋଧ ଓ ଈଶ୍ୱରଙ୍କ ପ୍ରତି ମାନବର ସହଜାତ ଅନୁରକ୍ତିର ପରିଣାମ ହେଉଛି ସୂଫୀଦର୍ଶନ । ପାଶ୍ଚାତ୍ୟ ଧର୍ମତତ୍ତ୍ୱର ମୂଳଭୂତ କଠୋର, ନ୍ୟାୟ ଦଣ୍ଡଧାରୀ ଶାସକ ରୂପୀ ଈଶ୍ୱର ଦୁଃଖପୀଡ଼ିତ ମାନବର ବିକଳ ଆତ୍ମାର ପ୍ରୟୋଜନ ପୂରଣ କରିପାରନ୍ତି ନାହିଁ । ଏକ କରୁଣାକୋମଳ ଓ କ୍ଷମାସୁନ୍ଦର ପ୍ରେମରୂପର ଅନିବାର୍ଯ୍ୟତା ଖ୍ରୀଷ୍ଟଧର୍ମରେ ଓ ପୂର୍ଣ୍ଣରୂପେ ଓ ପରବର୍ତ୍ତୀ ଇସଲାମରେ ଅଂତଃସଂଗୁପ୍ତ ହୋଇ ପ୍ରକଟିତ । ମୁସଲିମ ଧର୍ମ-ତତ୍ତ୍ୱର ଈଶ୍ୱର ମହାଶକ୍ତିଶାଳୀ, ମାତ୍ର ତାଙ୍କର ମହାନୁଭବତାର ପରିଚୟ ଧର୍ମ-ରକ୍ଷକୋଟୀ ପୁରୋହିତମାନେ ବାଢ଼ି ପାରିଂତି ନାହିଁ ।

ଏଇ ପରିପ୍ରେକ୍ଷୀରେ ସୂଫୀ ଦର୍ଶନର ଈଶ୍ୱର-ବିଗ୍ରହ ଧର୍ମୀୟ ମତର ବିରୁଦ୍ଧ ଇଂଗିତ ଦେଇଥାଏ । ଯିଏଁ ସର୍ବୋପରି, ଶାଶ୍ୱତ ଓ ଆରାଧ୍ୟ, ତାଙ୍କ ସହ କ୍ଷୁଦ୍ର ଜୀବାତ୍ମାର ପ୍ରେମମିଳନର ଭାବଚେତନା,

---

(26) "To abide in God (Baqa) after having passing away from self-hood (Fana) is the mark of the perfect man.
R. A. Nicholson—'The Mystics of Islam'—p. 163.

Digitized by PPRACHIN, SOA

ପୁଣି ନମାଜ ନକରି ଉନ୍ମାଦଂକ ପରି ଇସ୍‌କରି ସଗାଲାପରେ ମତ୍ତ ହେବା, ଧର୍ମଧ୍ୱଜୀ ଉଲ୍ଲେମାଂକୁ ଅଧର୍ମାଗ୍ରହ ମନେହେବା ସ୍ୱାଭାବିକ୍ । ବାସ୍ତବରେ ସୂଫୀ ସାଧନାରେ ଇତର ପ୍ରତ୍ୟକ୍ଷ ଅବଲଂବନ ରୂପେ ଈଶ୍ୱରଂକୁ ଗ୍ରହଣ କରିବା ଏକ ବିପଜ୍ଜନକ ସଂଭାବନାକୁ ବହନ କରିଥାଏ । ସୂଫୀ କବିତା ରମଣୀ ଓ କିଶୋରମାନଂକୁ ପ୍ରେମର ଆଲଂବନ ରୂପେ ଗ୍ରହଣ କରିବାର ପ୍ରଭାବ ସାମାଜିକ ଜୀବନରେ ଉଚ୍ଛୃଙ୍ଖଳ ଭରିଦେଇଥିଲା । କାଳକ୍ରମେ ଅନେକ ପାରସିକ କବିତା ଏହି ପ୍ରଣୟ-ପ୍ରତୀକ ଛଳନାରେ ଅଧ୍ୟାତ୍ମଚେତନାର ଆଢୁଆଳରେ ବ୍ୟକ୍ତିଗତ ପ୍ରେମଭାବନାକୁ ବ୍ୟକ୍ତ କରୁଥିଲେ । ଅଧିକାଂଶ ପାର୍ଶୀ କବିତା ସାର୍ଥକ କାବ୍ୟୋତ୍କର୍ଷଣ ବହନ କରିଥିଲେ ମଧ୍ୟ ସବୁ ପ୍ରେମାତ୍ମକ ରଚନା ଯେ ଅଧ୍ୟାତ୍ମ ପ୍ରେରଣାରୁ ସଂଜାତ ନୁହେଁ, ଏ କଥା ନିଃସନ୍ଦେହରେ କୁହାଯାଇପାରେ ।

ସୂଫୀ କବିତାରେ ପ୍ରତୀକରୂପେ 'ମଦିରା'ର ସ୍ଥାନ ଉଲ୍ଲେଖଯୋଗ୍ୟ । ପ୍ରଣୟର ଉନ୍ମାଦ ମନୁଷ୍ୟଠାରେ ମଦୋଲ୍ଲାସ ଓ ଆନଂଦ-ଭାବ ଭରିଦିଏ । ଓମରଖୟାମଂକ ରଚନାରେ ଏ ପ୍ରତୀକାତ୍ମକତା ଅପୂର୍ବ କାବ୍ୟସିଦ୍ଧି ଲାଭକରିଛି । ମଦମତ୍ତ ଅବସ୍ଥାରେ ପ୍ରଣୟୀ ନିଜ ଭାବନାଠାରୁ ମଧ୍ୟ ଛୁଟିପାଏ ଓ ପ୍ରେମମୂର୍ତ୍ତିର ଧ୍ୟାନରେ ମଗ୍ନ ରହିଯାଏ । ସୂଫୀ ପ୍ରତୀକ ପ୍ରୟୋଗରେ ଈଶ୍ୱରଂକ ପ୍ରେମର ଅପୂର୍ବ ଶକ୍ତି ଓ ମାଦକତା ତଥା ଆନଂଦଘନ ରସ-ସ୍ୱରୂପ ଆସବରେହିଁ ପରିଣତ ହୋଇଥାଂତି । ସୂଫୀ ସାଧନାରେ ଏ ପ୍ରସଙ୍ଗରେ ମଦିରାଦାନକାରିଣୀ ପ୍ରତୀକ ରୂପେ 'ସାକୀ'ର ବ୍ୟବହାର ପ୍ରଚୁର । 'ସାକୀ' ରୂପରେ ଈଶ୍ୱର ( ସୂଫୀ ପ୍ରେମରେ ସେ ପ୍ରିୟା-ସ୍ୱରୂପ ) ମନୁଷ୍ୟକୁ ପ୍ରେମମଦ୍ୟ ପାନ କରାଇ ନିଜପାଇଁ ପ୍ରମତ୍ତ କରାଇଦିଅନ୍ତି ।

ସୂଫୀ ସାଂକେତିକ ପ୍ରୟୋଗରେ ମଦିରାଳୟ ସଂସାର, ପୂଜାସ୍ଥାନ ଅଥବା ପ୍ରଣୟ-ପାତ୍ରର ଶରୀରକୁ ବୁଝାଇ ଥାଏ । ମଦିରା ଦାନକାରୀ ବ୍ୟକ୍ତି ଆଧ୍ୟାତ୍ମିକ ଗୁରୁ କିଂବା ସ୍ୱୟଂ ଈଶ୍ୱର ହୋଇପାରନ୍ତି । ଓଟର ପ୍ରୟୋଗ ଈଶ୍ୱରଂକ ଉଦ୍ଦେଶ୍ୟରେ ଯାତ୍ରାପଥରେ ସଂସାର-ପଥର ସହାୟକ ରୂପେ ସୂଚିତ । ବଦୂ୍ୟନ୍ତ ଈଶ୍ୱରୀୟ ପ୍ରକାଶ ଏବଂ ପ୍ରକୃତି ଐଶ୍ୱରିକ ସୌଂଦର୍ଯ୍ୟକୁ ବ୍ୟଂଜିତ କରିଥାଏ । ଉନ୍ମତ୍ତାବସ୍ଥା ଦିବ୍ୟ-ପ୍ରେମୋନ୍ମାଦନାକୁ ବୁଝାଇଥାଏ । ଏହିପରି ରୂପ ଦ୍ୱାରା ରୂପର ସୁଗମ ବ୍ୟାଖ୍ୟା ହେତୁ ସୂଫୀ ରଚନା ପ୍ରତୀକ-ନିର୍ଭର ହୋଇପଡ଼ିଛି । ସାହିତ୍ୟର ବିଚାର ଦୃଷ୍ଟିରୁ ଆଧ୍ୟାତ୍ମିକତାକୁ ବାଦ ଦେଇ ମଧ୍ୟ ଏ କାବ୍ୟୋକ୍ତିଗୁଡ଼ିକ ଅପୂର୍ବ ରସସିଦ୍ଧିର ସାକ୍ଷରରେ ଉଜ୍ଜ୍ୱଳ ଓ କଳାରାଜ୍ୟରେ ଅମର ସ୍ଥାନର ଅଧିକାରୀ । ପାରସିକ କାବ୍ୟଧାରା ଏଇ ସୂଫୀ ରଚନା ସଂସ୍ପର୍ଶରେ ଆସିନଥିଲେ ତାର କଳାକୁଶଳତାର ଏତେ ସାର୍ଥକ ପରିଚୟ ଦେଇପାରିନଥାନ୍ତା । ( ୨୭ )

---

.(27) 'Persian lyrics would never have acquired their peculiar charm without the Sufi theories, and the tension between the worldly and the religious interpritation of life is resolved in the poems of the outstanding masters of this art, in a perfect harmony of the spiritual, psychic and sensual components."

Annamarie : 'Mystical Dimensions of Islam'—p. 288.

Digitized by PPRACHIN, SOA

# ଭାରତୀୟ ଦର୍ଶନ ଓ ରହସ୍ୟବାଦୀ ଅଭିବ୍ୟକ୍ତି

ଭାରତୀୟ ଅନୁଚିନ୍ତନର ମୂଳମଂତ୍ର 'ଆତ୍ମାନଂ ବିଦ୍ଧି' । ସକଳ ଭାରତୀୟ କଳାସୃଷ୍ଟି ମୂଳରେ ଏହି ଆତ୍ମତତ୍ତ୍ୱର ରହସ୍ୟଦର୍ଶନ ପ୍ରେରଣାରୂପେ ବିଦ୍ୟମାନ । ଭାରତୀୟ କାବ୍ୟାଦର୍ଶ ମଧ୍ୟ ଧର୍ମ ଓ ଦର୍ଶନର ଅନୁସୃତ ରୂପେ ରହସ୍ୟବାଦୀ ଭାବାନୁପ୍ରେରିତ ।

ଐତିହାସିକ ବିବେଚନାରେ ଆର୍ଯ୍ୟ ଭାରତୀୟ ଭାଷା ଓ ସାହିତ୍ୟର ଉତ୍ସ ବୈଦିକ ଭାଷା ସାହିତ୍ୟ । ଆର୍ଯ୍ୟ ଭାରତୀୟ ଭାଷା ଓ ସାହିତ୍ୟର ସୃଷ୍ଟି ନିର୍ଦ୍ଦିଷ୍ଟ ଧର୍ମସଂପ୍ରଦାୟ ବା ସାଧନାପନ୍ଥାର ଅଭ୍ୟୁତ୍ଥାନ ସହ ଜଡ଼ିତ । ଅନୁମାନିକ ଖ୍ରୀଷ୍ଟୀୟ ନବମ ଶତାବ୍ଦୀଠାରୁ ଏହି ବିକାଶର ସୂଚନା ପ୍ରାନ୍ତୀୟ ସାହିତ୍ୟ-ମାନଙ୍କରେ ସୁରକ୍ଷିତ । ବେଦାନ୍ତର ସିଦ୍ଧାନ୍ତ ପ୍ରଖ୍ୟାପନ ଅବକାଶରେ କାବ୍ୟସ୍ୱରୂପର ରହସ୍ୟ ଦର୍ଶନର ଅନିବାର୍ଯ୍ୟ ଅବତାରଣା ଘଟିଛି ।

ବହୁ ପ୍ରାତିଭାସିକର ପାରମାର୍ଥିକ ଏକତା ପ୍ରତିପାଦନ ଏ ରହସ୍ୟ ଦର୍ଶନର ସିଦ୍ଧାଂତ ତାତ୍ପର୍ଯ୍ୟ । ଭାରତୀୟ ରହସ୍ୟତତ୍ତ୍ୱ ମୁଖ୍ୟତଃ ତିନୋଟି ସ୍ୱରୂପରେ ଅନୁଶୀଳିତ—ଜ୍ଞାନ, ଯୋଗ ଓ ଭକ୍ତି । ଭାରତୀୟ ଅଧ୍ୟାତ୍ମ ସାଧନାରେ ଏ ତିନୋଟିର ସହଯୋଗ ଓ ସମନ୍ୱୟ ଅପରିହାର୍ଯ୍ୟ ବୋଲି ବିବେଚିତ ହୋଇଛି ।

ଭାରତୀୟ ସାଧନାପ୍ରଣାଳୀରେ ଆତ୍ମୋପଲବ୍ଧିର ମାର୍ଗ ଦ୍ୱିବିଧ : ନିବୃତ୍ତି ମାର୍ଗ ଓ ପ୍ରବୃତ୍ତି ମାର୍ଗ । ସର୍ବପରିଚୟ ବିମୁକ୍ତ 'ଶୂନ୍ୟ' ଚେତନା ଉପରେ ନିବୃତ୍ତିମାର୍ଗ ଆଧାରିତ । ପ୍ରବୃତ୍ତିମାର୍ଗରେ ପ୍ରତିଭାସ ଜଗତ ସହ ସଂସର୍ଗ ମାଧ୍ୟମରେ ତାର ଅସାରତ୍ୱ ଉପଲବ୍ଧି ତଥା ଚେତନାର ଉଦ୍‌ବର୍ତ୍ତନ ଦ୍ୱାରା ଶୂନ୍ୟକୁ ପୂର୍ଣ୍ଣରୂପେ ଲାଭ କରିବାର ଉପାୟ ପ୍ରଦତ୍ତ । ବସ୍ତୁତଃ ଏହି ଶୂନ୍ୟତତ୍ତ୍ୱର ପୂର୍ଣ୍ଣତ୍ୱ ପ୍ରତିପାଦନହିଁ ସକଳ ଭାରତୀୟ ସାଧନାଧାରାର ଚରମ ନିର୍ଣ୍ଣେୟ ରୂପେ ଗୃହୀତ ହୋଇଛି ।

ଯୋଗ ସେ ସକଳ ସାଧନା ପନ୍ଥା ଓ ତତ୍ତ୍ୱଦର୍ଶନର ସାର ସଂଗ୍ରହ । ସେ ଈଶ୍ୱର ଓ ନିରୀଶ୍ୱର—ଉଭୟ ଭାରତୀୟ ଅଧ୍ୟାତ୍ମ ସିଦ୍ଧାଂତ ଯୋଗର ସାଧନା-ରହସ୍ୟକୁ ଅନୁସରଣ କରିଛନ୍ତି । ଏହି ଯୋଗ-ତଂତ୍ରର ପରଂପରା ବେଦାଂତ ଦର୍ଶନର ମାର୍ଗରେ ଶିବ ଓ ଶକ୍ତି ତତ୍ତ୍ୱସହ ମିଶି ଶୈବ ଓ ଶାକ୍ତତଂତ୍ର ଶୂନ୍ୟତତ୍ତ୍ୱମୂଳକତାରେ ନିରୀଶ୍ୱର ଆଜୀବକ-ସିଦ୍ଧାଂତ, ବୌଦ୍ଧଦର୍ଶନକୁ ପ୍ରଭାବିତକରି ବୌଦ୍ଧତଂତ୍ର, ସେଶ୍ୱର ନାଥ-ସିଦ୍ଧ ଦର୍ଶନ, ଅଦ୍ୱୈତ ଓ ଭକ୍ତିତତ୍ତ୍ୱ ସମନ୍ୱିତ ହୋଇ ନିର୍ଗୁଣ ପନ୍ଥା ଏବଂ ସହଜିଆ ଦର୍ଶନ ସହ ସଂଯୁକ୍ତ ହୋଇ ସହଜିଆ ବୌଦ୍ଧ/ବୈଷ୍ଣବ ତଂତ୍ରରୂପେ ଆତ୍ମପ୍ରକାଶ କରିଛି ।

ଯୋଗର ମୌଳିକ ତତ୍ତ୍ୱଟି ହେଉଛି, ପ୍ରାତିଭାସିକ ଜଗତ ଦ୍ୱଂଦାତ୍ମକ; ଅସ୍ତିବାଚକ ଓ ନାସ୍ତି-ବାଚକ । ପରମତତ୍ତ୍ୱ ବା ଆଦିସତ୍ତାରେ ( Ultimate Reality/Pure Existence ) ଏ ଦ୍ୱଂଦ୍ୱାତ୍ମକତା ସଂଗୁପ୍ତ । ପରମସତ୍ତା ଯାବତୀୟ ବିକଳ୍ପତତ୍ତ୍ୱକୁ ଅତିକ୍ରମକରି ଏକ ଓ ଅଦ୍ୱୈତ ଭାବରେ ସଂସ୍ଥିତ । ପରିଗ୍ରାହ୍ୟ ଜଗତ ପ୍ରବୃତ୍ତି ଓ ନିବୃତ୍ତି, ସ୍ଥିର ଓ ପ୍ରଖର, ସୁପ୍ତ ଓ ଜାଗ୍ରତ ପ୍ରଭୃତି ଯେଉଁ ଦୁଇ ବିପରୀତ ଭାବକୋଟୀରେ ନିରଂତର ଦୋଦୁଲ୍ୟମାନ, ସାଧନା ତତ୍ତ୍ୱରେ ଏହି ଦ୍ୱଂଦ୍ୱ-ବୃତ୍ତି ସ୍ତ୍ରୀ-ପୁରୁଷ ଭେଦ କଳ୍ପନାରେ ପୁରୁଷ-ପ୍ରକୃତି, ବ୍ରହ୍ମ-ମାୟା, ଶିବ-ଶକ୍ତି, ଶୂନ୍ୟତା-କରୁଣା ବଜ୍ର- ପଦ୍ମ, ରାଧା-କୃଷ୍ଣ, ସୂର୍ଯ୍ୟ-ଚଂଦ୍ର ବା ଇଡ଼ା ପିଂଗଳା ରୂପ-କଳ୍ପନାରେ

Digitized by PPRACHIN, SOA

ଉପସ୍ଥାପିତ । ସେମାନେ ସ୍ୱରୂପତଃ ଅଭେଦ, ପ୍ରକାଶରେ ଭେଦାତ୍ମକ । ଯୋଗ ମାର୍ଗରେ ଏ ବାହ୍ୟ ଭେଦବୁଦ୍ଧିକୁ ଅତିକ୍ରମକରି ଏକତତ୍ତ୍ୱ ଲାଭ କରାଯାଏ । ପାତଂଜଳ-ଯୋଗରେ ଈଶ୍ୱର ହେଉ ଏକତତ୍ତ୍ୱ, ଦ୍ୱନ୍ଦ୍ୱମୁକ୍ତ ପୁରୁଷ । ସେ ଏକ ଦିଗରେ ନିଜକୁ ସସୀମ ସବିଶେଷ ପ୍ରତ୍ୟକ୍ଷ ଦୃଶ୍ୟ ଜଗତ ରୂପରେ ପ୍ରକଟିତ କରି ଅନ୍ୟଦିଗରେ ଅସୀମ, ନିର୍ବିଶେଷ ଓ ଅବିକୃତ ରହିଥାନ୍ତି । ଜ୍ଞାନ-ମାର୍ଗରେ ଏହାଙ୍କର ଧ୍ୟାନମୂଳକ ଉପଲବ୍ଧି, ଭକ୍ତିମାର୍ଗରେ ଭାବମୂଳକ ଆତ୍ମଲୀନତା, ଯୋଗ ଓ ତଂତ୍ର ଏହି ସାଧନାର କାୟିକ ଅନୁଚର୍ଯା । ପିଂଡ ବ୍ରହ୍ମାଂଡବାଦ ଓ ନାଡ଼ୀକଳ୍ପନାର ଅନୁପ୍ରବେଶ ଘଟିତ,ଚକ୍ରଭେଦ-ରହସ୍ୟ ମଧ୍ୟ ଏହି ଦୃଷ୍ଟିରୁ ତାତ୍ପର୍ଯପୂର୍ଣ୍ଣ ।

ବୈଦିକ ଉପାସନାରେ ଐକାଂତିକୀ ଧର୍ମର ସଙ୍କେତ-ରୂପ 'ପୁରୁଷ' ଓ 'ବିଷ୍ଣୁ' ସ୍ତୁତିମୂଳକ ଋକ୍‌ମାନଙ୍କରେ ସୁରକ୍ଷିତ । ଉପନିଷଦମାନଙ୍କରେ ଆତ୍ମଜ୍ଞାନ-ସାଧନ ପନ୍ଥା ରୂପେ ସଂନ୍ୟାସ, ଯୋଗ ଓ ଭକ୍ତିର ଅପରିହାର୍ଯତା ନିର୍ଦ୍ଦେଶିତ । ଏହି ଅଂଶତଃ ସ୍ରୋତ ମହାଭାରତ ଯୁଗରେ ଭକ୍ତି-ଜ୍ଞାନ-କର୍ମର ସମନ୍ୱୟମୂଳକ ନିଷ୍କାମ କର୍ମଯୋଗ ରୂପେ 'ଶ୍ରୀମଦ୍ ଭଗବତ ଗୀତା' ରେ ଅନୁଶୀଳିତ ।

ନିରୀଶ୍ୱରବାଦୀ ଅଜୀବକ ତତ୍ତ୍ୱ ଅନୁସୃତ ଜୈନ, ବୌଦ୍ଧଦର୍ଶନ 'କେବଳ ଜ୍ଞାନ' ବା ସକଳାତୀତ ଜ୍ଞାନଲାଭର ସାଧନାରେ ବିଶ୍ୱାସକରେ । ଏ ଜ୍ଞାନ ଅପରୋକ୍ଷ (immediate), ଅନିର୍ବଚନୀୟ, ପରମ (absolute) ଓ ଜୀବନସତ୍ତାର ସାରତ୍ତ୍ୱ (essence) ପ୍ରତିପାଦକ । 'ଆତ୍ମଦୀପ ଭବ'—ନିଜେ ନିଜର ଦୀପ ସ୍ୱରୂପ ହୋଇ ଆଲୋକ-ରହସ୍ୟ ଭେଦ କରିବାକୁ ହେବ—ଏହି ସାଧନା ତେଣୁ ମୁଖ୍ୟତଃ ଉପଲବ୍ଧିମୂଳକ ।

ବୌଦ୍ଧଧର୍ମର ନିର୍ବାଣତତ୍ତ୍ୱ ବିବାଦୀୟ । ନିର୍ବାଣର ପରିଭାଷା ରୂପେ ଶୂନ୍ୟ(୧) ବହୁ ବିଚିତ୍ର ଭାବରେ ଭାରତୀୟ ଅଧ୍ୟାତ୍ମ ଦର୍ଶନରେ ରୂପଲାଭକରିଛି । ନିବୃତ୍ତି ଓ ପ୍ରବୃତ୍ତିମାର୍ଗରେ ଏହାର ଦ୍ୱିବିଧ ଅନୁସରଣ ଲକ୍ଷଣୀୟ । ସକଳ କାର୍ଯ ପ୍ରେରଣାକୁ ଶୂନ୍ୟକରିଦେବାର ନିବୃତ୍ତିଭାବଟି ଉପନିଷଦର ନେତିବାଦର ପ୍ରତିଧ୍ୱନି ଭଳି ମନେହୁଏ । ଅପରଟି ତଂତ୍ର ନିର୍ଦ୍ଦେଶିତ ପ୍ରବୃତ୍ତିମାର୍ଗ,—ଦେହ ବା ଇଂଦ୍ରିୟ ସମ୍ଭୋଗ ସାଧନାରେ ସବୁ ପ୍ରବୃତ୍ତିକୁ ସ୍ୱଚ୍ଛଂଦ ପ୍ରଶ୍ରୟ ଦେଇ ସବୁ ଏକାକାର କରିନେବା ଓ ସବୁ ଅନିତ୍ୟ ଓ କ୍ଷଣିକ ଜ୍ଞାନରେ ତାକୁ ଭୋଗପୂର୍ବକ ନିର୍ବିଶେଷ କରିଦେବାର ଶୂନ୍ୟ-ସାଧନା । ଏ ଶୂନ୍ୟବାଦ ତାର ଅସ୍ତିତାତ୍ମକ ସ୍ୱରୂପରେ ମହାଯାନୀ ମଂତ୍ରଯାନ ପରଂପରାରେ ଏବଂ ପରବର୍ତ୍ତୀ ନାଥ ଓ ନିର୍ଗୁଣ ସାଧନାରେ ପୂର୍ଣ୍ଣାଂଗ ତାତ୍ତ୍ୱିକ ବୈଭବ ସହ 'ସହଜ' ସ୍ୱରୂପରେ ସାର୍ଥକ ବ୍ୟାଖ୍ୟା ଲାଭକରିଛି । ନାସ୍ତ୍ୟାତ୍ମକ ବ୍ୟାଖ୍ୟା ମାଧ୍ୟମିକା ଅନୁସରଣରେ କାଳକ୍ରମେ ବ୍ୟାବହାରିକ ଶୂନ୍ୟବାଦରେ ପର୍ଯବସିତ ହୋଇଛି ।

---

(୧) ନସନ୍ ନାସନ୍‌ନସ ଦସନ୍ନଚ୍ୟପ୍ୟନୁ ଭୟାତ୍ମକମ୍ ।
ଚତୁଷ୍କୋଟି ବିନିର୍ମୁକ୍ତ ତତ୍ତ୍ୱଂ ମାଧ୍ୟମିକା ବିଦୁଃ ॥

ସର୍ବସିଦ୍ଧାଂତ ସଂଗ୍ରହ ମାଧ୍ୟମିକା କାରିକା ୧/୭

(ଅର୍ଥାତ୍—ଏହା ସତ୍ (ଅଛି), ଅସତ୍ (ନାହିଁ), ସଦସତ୍ (ଅଛି ପୁଣି ନାହିଁ) ନସଦସତ୍ (ଅଛି ବି ନୁହେଁ, ନାହିଁ ବି ନୁହେ)—ଏ ଚାରି ପ୍ରକାରରେ ଶୂନ୍ୟ ନିର୍ଣ୍ଣେୟ ନୁହେ । ନାଗାର୍ଜୁନଙ୍କ ମତରେ ଏହା ଅସ୍ତିନାସ୍ତିର ମଧ୍ୟବିନ୍ଦୁ ।)

Digitized by PPRACHIN, SOA

ମୌର୍ଯ୍ୟ ବଂଶର ଅବସାନ ସହ ବୌଦ୍ଧଧର୍ମର ଅବନତି ସମାରବ୍ଧ ହୋଇଗଲା । ବୁଦ୍ଧଙ୍କ ବ୍ୟକ୍ତିତ୍ୱ-ପୂଜା ଏହାକୁ ହିନ୍ଦୁଧର୍ମର ନିକଟବର୍ତ୍ତୀ କରିଦେଲା । ଖ୍ରୀ: ଅ: ୪୦୦ରୁ ୭୦୦ ପର୍ଯ୍ୟନ୍ତ ମହାଯାନରେ ମନ୍ତ୍ରଯାନର ପ୍ରତିଷ୍ଠା ଘଟିଲା । ଏହାଦ୍ୱାରା ଅତୀତ-ବର୍ତ୍ତମାନ ଭାବୀ-ବୁଦ୍ଧ ସତ୍ତା, ବୋଧିସତ୍ତ୍ୱ ଏବଂ ତାଙ୍କର ଶକ୍ତି-ରୂପର ଉପାସନା ପ୍ରବର୍ତ୍ତିତ ହୋଇଗଲା । ହିନ୍ଦୁ ଦେବମଣ୍ଡଳୀ (Pantheon) ଯେପରିକି ନାମ ଓ ସଙ୍କେତ ମାତ୍ର ପରିବର୍ତ୍ତନ କରି ପୂର୍ଣ୍ଣ ମର୍ଯ୍ୟାଦାରେ ବୌଦ୍ଧ ଉପାସନା-ପୀଠରେ ଅଧିଷ୍ଠିତ ହୋଇଗଲେ ମନ୍ତ୍ରଯାନ ଓ ବଜ୍ରଯାନ ଖ୍ରୀ: ୮୦୦ରୁ ୧୨୦୦ ପର୍ଯ୍ୟନ୍ତ ଭାରତୀୟ ଦର୍ଶନ ସାଧନା ଓ ସାହିତ୍ୟକୁ ବହୁଭାବେ ପ୍ରଭାବିତ କରିଥିଲେ । ଏହା ବସ୍ତୁତଃ ଏକ ନିଷ୍ଠାପର ସାଧନତନ୍ତ୍ର ଥିଲେ ମଧ୍ୟ ଅଧିକାରୀ ଭେଦରେ ଅନାଚାର ଓ ସାମାଜିକ ବ୍ୟଭିଚାରମୂଳକ ବିଶୃଙ୍ଖଳାର କାରଣ ହୋଇଉଠିଲା । ଏହାର ପ୍ରତିକ୍ରିୟା ନବମ ଶତାବ୍ଦୀର ଶଂକର-ମତ, ଯାହା ବ୍ରାହ୍ମଣ୍ୟଧର୍ମର କର୍ମକାଣ୍ଡସହ ଏହି ବୌଦ୍ଧଚର୍ଯ୍ୟାକୁ ଭୟଂକର ଆକ୍ରମଣ କରିଥିଲା । ବଜ୍ରଯାନର ଏକ ଶାଖା ସହଜ ଯାନରେ ଯୋଗ ଏବଂ କାୟକ୍ଲେଶ ସାଧନାଂଗ ରୂପେ ଅସ୍ୱୀକୃତ ହୋଇଥିଲା । ବଜ୍ରଯାନର ମହାସୁଖବାଦ ବାସନ-ଉଚ୍ଛେଦମୂଳକ ନ ହୋଇ ବାସନାପୂର୍ତ୍ତିମୂଳକ ସୁଖଭୋଗକୁ ବୁଝାଇ ବସିଲା । ଉପାସନା ବ୍ୟଭିଗ୍ରସ୍ତ ହୋଇ 'ଭୁକ୍ତିବାଦ'ରେ ପର୍ଯ୍ୟବସିତ ହେଲା ।

ଦ୍ୱାଦଶ ଶତାବ୍ଦୀରେ ଏଇ ବାମାଚାରୀ ଭ୍ରଷ୍ଟାଚାର, ଶଂକର ପ୍ରବର୍ତ୍ତିତ ସର୍ବବିଚ୍ଛେଦୀ ଶୂନ୍ୟତା ସହ ଯବନମାନଙ୍କର ହିନ୍ଦୁ ବିଦ୍ୱେଷ ଜନିତ ପ୍ରବଳ ପ୍ରତିକ୍ରିୟା ଭିତରେ ସମନ୍ୱୟବାଦୀ ଗୋରଖନାଥଙ୍କ ଆବିର୍ଭାବ ଉଲ୍ଲେଖଯୋଗ୍ୟ । ବୈଦିକ ତନ୍ତ୍ର ସହ ବୌଦ୍ଧ ସାଧନା ପଦ୍ଧତିର ସଂସ୍କାରିତ ରୂପରେଖ ପ୍ରବର୍ତ୍ତନମୂଳକ ଏହି ନାଥଧର୍ମର ଅଭ୍ୟୁଦୟ ଭାରତୀୟ ଅଧ୍ୟାତ୍ମ ଇତିହାସରେ ପରବର୍ତ୍ତୀ କାଳପାଇଁ ଏକ ସୁନିର୍ଦ୍ଦିଷ୍ଟଧାରା ନିରୂପିତ କରିଦେଲା । ନାଥମାନେ ହିନ୍ଦୁଙ୍କର ମୂର୍ତ୍ତିପୂଜା, ସଗୁଣ ଉପାସନା ଓ ବହୁ ଦେବବାଦର ବିରୋଧ କରୁଥିଲେ ଏବଂ ବୌଦ୍ଧଙ୍କର ପ୍ରବୃତ୍ତି-ମୂଳକ ଭୋଗ-ସାଧନାର ପରିହାର କରି ଶଂକରଙ୍କ ଅଦ୍ୱୈତ, ପତଞ୍ଜଳିଙ୍କ ଯୋଗ, ଶୈବ ଭକ୍ତିତନ୍ତ୍ର ଓ ସହଜ-ସାଧନାର ଔଦାସୀନ୍ୟ ବୃତ୍ତି ଅବଲମ୍ବନରେ ହଠଯୋଗଯୁକ୍ତ ସାଧନାର ମାର୍ଗ ପ୍ରଦର୍ଶନ କଲେ । ମତ୍ସ୍ୟେନ୍ଦ୍ରନାଥ ଓ ଗୋରଖନାଥ ନିଷ୍କାମ ଓ ନିବୃତ୍ତିମୂଳକ ସହଜଯୋଗ ସାଧନା ପ୍ରଣାଳୀର ପ୍ରଚାର ମାଧ୍ୟମରେ ଅଦ୍ୱୈତବାଦ, ଦ୍ୱୈତବାଦ ଓ ବିଶିଷ୍ଟାଦ୍ୱୈତବାଦ—ଏ ତ୍ରୟର ସମନ୍ୱୟ ଘଟାଇ 'ଅଚିନ୍ତ୍ୟ ଦ୍ୱୈତାଦ୍ୱୈତ' ସିଦ୍ଧାନ୍ତର ମୂଳପତ୍ତନ ଘଟାଇଥିବେ ।

ଏହି ଜ୍ଞାନ-ଯୋଗ ମିଶ୍ରିତ ଭକ୍ତିମାର୍ଗର ଧାରା ପରବର୍ତ୍ତୀ ପ୍ରାଂଚୀୟ ଆଧ୍ୟାତ୍ମିକ ଦର୍ଶନ ଓ ସାହିତ୍ୟରେ ପୁଷ୍ଟିଲାଭ କରିଛି । ବିଭିନ୍ନ ବୈଷ୍ଣବ, ଶାକ୍ତ, ଶୈବ ସାହିତ୍ୟରେ, ନିର୍ଗୁଣ ରଚନାରେ, ସହଜିଆ ଓ ବାଉଲ ସଂଗୀତରେ ଏବଂ ଯୋଗୀ ଗୀତମାନଙ୍କରେ ଏ ରହସ୍ୟଧର୍ମୀ ସାଧନା ସଙ୍କେତ ବିଦ୍ୟମାନ । ଉଭୟ ତନ୍ତ୍ରଗ୍ରନ୍ଥ ଆଧ୍ୟାତ୍ମିକ କାବ୍ୟ ସାହିତ୍ୟ ଓ ଜଣାଣ ଭଜନ ପ୍ରଭୃତି ଲୋକଗୀତମାନ ମଧ୍ୟ ସର୍ବଭାରତୀୟ ସ୍ତରରେ ଏ ଯାବତ୍ ଏହାର ମୁଦ୍ରାଙ୍କନ ବହନ କରନ୍ତି ।

## ବୈଦିକ ରହସ୍ୟଚେତନା—

ବୈଦିକ ବାଙ୍ମୟରେ ଋଷିକବିର ରହସ୍ୟାଭିବ୍ୟକ୍ତି ମୁଖ୍ୟତଃ ତିନୋଟି ସ୍ୱରୂପରେ ସଂରକ୍ଷିତ ଯଥା —ଅନୁଭବ, ଅନୁଶୀଳନ ଓ ଅନୁସରଣ ।

Digitized by PPRACHIN, SOA

ବେଦ ପ୍ରତ୍ୟକ୍ଷୀଭୂତ ସତ୍ୟର ଉଚ୍ଚାରଣ, ଅର୍ଥାତ୍ ନିଜକୁ କେନ୍ଦ୍ରକରି ଓ ବିଶ୍ୱଜଗତ ଘେରି ଯେତେ କିଛି ରହସ୍ୟବସ୍ତୁ ଋଷି ଚେତନାରେ ଉଚ୍ଛଳିତ ହୋଇଛି, ଅନୁଭୂତିର ପ୍ରତ୍ୟକ୍ଷତା ଭିତରୁ ତାର ପ୍ରମୂର୍ତ୍ତରୂପାଭିବ୍ୟକ୍ତ ବୈଦିକ ଶ୍ଳୋକ ରୂପେ ଆବିର୍ଭୂତ ହୋଇଛି ।

ଏ ପ୍ରସଂଗରେ ଋଷି, କବି, ଦ୍ରଷ୍ଟି ଓ ଶ୍ରୁତି ଶବ୍ଦମାନ ତାତ୍ପର୍ଯ୍ୟବୋଧୀ ହୋଇଥାନ୍ତି । ଋଷି ଦର୍ଶନାତ୍, 'ସାକ୍ଷାତ୍କୃତଧର୍ମାନଃ ଋଷୟଃ', 'ଋଷୟ ମଂତ୍ରଦ୍ରଷ୍ଟାରଃ' ଇତ୍ୟାଦି ବକ୍ତବ୍ୟରେ ବୈଦିକ ରହସ୍ୟଚେତନାର ମୂଳ ସ୍ୱରୂପଟି ନିହିତ । ଦ୍ରଷ୍ଟା ଋଷିଂକ ପ୍ରତ୍ୟକ୍ଷିତ ବା ପରିଦୃଷ୍ଟ ରୂପେ ସତ୍ୟର ଆବିର୍ଭାବ । ବେଦ ପୁଣି 'ଶ୍ରୁତି' ଅର୍ଥାତ୍ ଯେଉଁ ଜ୍ଞାନ ଶ୍ରୁତ, ଯେଉଁ ସତ୍ୟ ଦୃଷ୍ଟ, ତାହାହିଁ ବେଦର ପ୍ରତିପାଦ୍ୟ । ବେଦରେ 'ଚକ୍ଷୁଃ' ସତ୍ୟଦର୍ଶନର ଶକ୍ତି ଓ 'ଶ୍ରବଃ' ସତ୍ୟଶ୍ରବଣର ଶକ୍ତି ଅର୍ଥରେ ପ୍ରଯୁକ୍ତ । ବୈଦିକ ପ୍ରତିପାଦନ ଜ୍ଞାନକୁ ଦୁଇଭାଗେ ବିଭକ୍ତ କରିଛି, 'ସଜ୍ଞାନ ଓ ପ୍ରଜ୍ଞାନ' । ସର୍ବଗତ ଓ ସର୍ବବ୍ୟାପୀ ଯେଉଁ ଚେତନାଶକ୍ତି ଜ୍ଞାତାରୂପେ ଅନ୍ତର୍ଗର୍ଭରେ ବିଦ୍ୟମାନ ତାହା ସଜ୍ଞାନ, ପୁଣି ଜ୍ଞେୟରୂପୀ ବସ୍ତୁର ବାହ୍ୟଜ୍ଞାନ ପ୍ରଜ୍ଞାନ । ଋଷି-ମାନସ ଏ ଉଭୟ ଶକ୍ତିର ଅଧିକାରୀ । ତେଣୁ ସେ କବି । ଋଷି ସହ 'କବି' ଶବ୍ଦଟି ଘନିଷ୍ଠ ଭାବେ ସଂଯୁକ୍ତ । 'କବି' ଋଷିର ଅନ୍ତଃ ଓ ବହିଃ ଉଭୟ ବ୍ୟକ୍ତିତ୍ୱକୁ ରୂପାୟିତ କରିଥାଏ । ଦର୍ଶନରେ ଯାହା ଉଦ୍‌ଭାସିତ ହୋଇଥାଏ, ତାର ବାକ୍ ରୂପ ଦାନ ପାଇଁ କାବ୍ୟ-ଶକ୍ତିର ପ୍ରୟୋଜନ ହୋଇଥାଏ । କବିର ବିଶେଷ ଭୂମିକା ହେଉଛି, ଯାବତୀୟ ସଂଦର୍ଶନ ଭିତରର ମୂଳ ତାତ୍ପର୍ଯ୍ୟକୁ ସଂକେତିତ କରିବା । ଦାର୍ଶନିକର ଦର୍ଶନ ମାନସିକ ସ୍ଥିତିରେ ଅମୂର୍ତ୍ତ ଭାବଜଗତକୁ, କବିର ସଂଦର୍ଶନ ଭିତରେ ଏ ଭାବଜଗତ ତାର ମନ ଓ ହୃଦୟ, ବୁଦ୍ଧି ଓ ଅନୁଭବର ସାମଗ୍ରିକ ଏକାଗ୍ରତାକୁ ଜାଗ୍ରତ କରି ଶାବ୍ଦିକ-ପ୍ରକାଶ-ବୃତ୍ତିକୁ ସ୍ପନ୍ଦିତ କରେ । କବିର ଧ୍ୟାନତନ୍ମୟତା ତାର ସତ୍ତାର ସାମଗ୍ରିକତାକୁ ଉଦ୍ଦିଷ୍ଟ କରେ ।

ଋଷି ଯେଉଁ ମଂତ୍ର-ସତ୍ୟର ଦର୍ଶନ କରଂତି, ତାର ବାଣୀ ରୂପ ଦାନ ପାଇଁ ବାକ୍-ଶକ୍ତିର ଆଶ୍ରୟ ନେଉଂତି । ଅଥର୍ବ ବେଦରେ ଲିପିବଦ୍ଧ ଅଛି, 'ମୋଠାରେ ଜ୍ଞାନସଂଜାତ ହେଉ, ବାଚସ୍ପତି ଏହାକୁ ସ୍ୱୀକୃତି ଦିଅଂତୁ' । (୧) 'ବାଚସ୍ପତି' (୨) ଏଠାରେ ବାକ୍‌ର ଦେବତା ରୂପେ, କାବ୍ୟପ୍ରେରଣା ରୂପେ ଉଦ୍‌ବୋଧିତ । ଅନୁଭୂତିର ଏହି ବାଣୀ ପ୍ରୟାସ ପର୍ଯ୍ୟାୟରେ ଋଷି-କବି ହୁଅଂତି ।

ବାଣୀ ସାହାଯ୍ୟରେ ଋଷିକବିର ଅଂତରୋପଲବ୍ଧିର ବ୍ୟାଖ୍ୟା-ରୂପ ବୈଦିକ ଦର୍ଶନର ଅନୁଶୀଳନ-ରୂପେ ଲବ୍‌ଧ । ସତ୍ୟର ଯେଉଁ ସ୍ୱରୂପ ଆର୍ଷ ଚେତନାର ପ୍ରତିଭାତ, ଏହା ତାହାର ରହସ୍ୟ-ଜିଜ୍ଞାସା । ବିଶ୍ୱ-ରହସ୍ୟ ଶକ୍ତି ଚକ୍ଷୁରେ ଯେଉଁଭଳି ଉଦ୍‌ଭାସିତ, ତାର ରହସ୍ୟ ଭେଦପ୍ରୟାସ, ଅନୁଭବକାଳୀନ ବସ୍ତୁସ୍ଥ ଆନନ୍ଦ ତଟସ୍ଥତା ଦାର୍ଶନିକ ଜିଜ୍ଞାସା ରୂପେ ଉଚ୍ଚାରିତ ।

ସତ୍ୟୋପଲବ୍‌ଧିକୁ କେବଳ ମାନସିକ ବା ଆଂତରୀଣ ନରଖି ଜୀବନର ସାମଗ୍ରିକତା ଭିତରେ ତାକୁ ରୂପାୟନ କରିବାର ପ୍ରଚେଷ୍ଟା ବୈଦିକ 'କ୍ରତୁ' (ଯଜ୍ଞ) ବା କର୍ମାଭିବ୍ୟକ୍ତ । ବିଶ୍ୱ-ସୃଷ୍ଟି-କ୍ରିୟାର ପାର୍ଥିବ ସଂକେତ ରୂପେ ଯଜ୍ଞ ଆର୍ଷଚେତନାର ବାହ୍ୟ ଓ ଆଭ୍ୟନ୍ତରୀଣ ସଂଯୋଗ-ସମନ୍ୱୟ କ୍ଷେତ୍ର ରୂପେ ଅଭିକଳ୍ପିତ ।

ବୈଦିକ ରହସ୍ୟାଭିବ୍ୟକ୍ତି ବିଶ୍ୱରହସ୍ୟ ଅନ୍ତଃରହସ୍ୟ ଓ ଶବ୍ଦରହସ୍ୟର ରୂପଚେତନାକୁ ଆଶ୍ରୟ କରିଛି । ଅର୍ଥାତ୍ ଏକ ପକ୍ଷରେ ବିଶ୍ୱପ୍ରକୃତି ଓ ମାନବାତ୍ମାର ସତ୍ତାର ଚେତନାଗତ ବିବର୍ତ୍ତନର ଯେଉଁ

(୧) ଅଥର୍ବ ୧/୨-୩

(୨) "ଯେ ତ୍ରିଷପ୍ତା ପରିଯଂତି ବିଶ୍ୱ ରୂପାଣି ବିଭ୍ରତଃ
ବାଚସ୍ପତିର୍ବଲା ତେଷାଂ ତନ୍ୱୋ ଅଦ୍ୟ ଦଧାତୁ ମେ ।" ଅଥର୍ବ ୧/୧/୧

Digitized by PPRACHIN, SOA

ସବୁ ସ୍ତରଗତ ଉପଲବ୍ଧି ଉପଜାତ, ତାହାର ଅର୍ଥମୟ ଅଭିବ୍ୟଂଜନା; ଅପର ପକ୍ଷରେ ମାନବଚେତନାକୁ ସମଗ୍ର ଭାବେ ଦିବ୍ୟଚେତୋନ୍ମୁଖୀ କରିବାପାଇଁ ପ୍ରାୟୋଗିକ ନିର୍ଦ୍ଦେଶନା, ଯାହା ଯାଜ୍ଞିକ କର୍ମବିଧାନ ରୂପେ ପ୍ରଦର୍ଶିତ ।

ଏସବୁ ପରିପ୍ରେକ୍ଷୀରେ ବୈଦିକ ରହସ୍ୟବାଦର ରୂପବିଗ୍ରହ (୧) ନୈସର୍ଗିକ, (୨) ମନସ୍ତାତ୍ତ୍ୱିକ, (୩) ଶାବ୍ଦିକ, (୪) କ୍ରିୟାତ୍ମକ ବା ଯାଜ୍ଞିକ ରୂପେ ସମୀକ୍ଷକଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ହୋଇଥାଏ । 'ଶବ୍ଦରହସ୍ୟ' ବୈଦିକ ପ୍ରକାଶ ଭଙ୍ଗିର ପ୍ରଧାନ ଅଭିମୁଖ୍ୟ ରୂପେ ଅନୁଶୀଳିତ ।

ଯଥାସମୟରେ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ନିର୍ଦ୍ଦିଷ୍ଟ ଧ୍ୱନିବଦ୍ଧ ପଦର ବିଧିମତ ଉଚ୍ଚାରଣରେ ଅକ୍ଷର ଯେଉଁ ନାଦ ବା ସ୍ଫୋଟ-ଶକ୍ତି ପ୍ରାପ୍ତ ହୋଇ ଶବ୍ଦରୂପେ ଅର୍ଥଯୁକ୍ତ ହୁଏ, ସେହି ସ୍ଫୋଟ-ଶକ୍ତିର ଉତ୍ସ ହେଉଛି ମନ୍ତ୍ରର ରହସ୍ୟାତ୍ମକତା । ବୈଦିକ ମନ୍ତ୍ରର ମୂଳ ପ୍ରବଣତାଟି ହେଉଛି ପ୍ରତୀକାତ୍ମକତା । ଏ ପ୍ରତୀକାତ୍ମକତାର ମୂଳ ଉଦ୍ଦେଶ୍ୟଟି ଥିଲା ସାଧାରଣ ଅବୋଧ୍ୟ, ଯେଉଁ ସତ୍ୟକୁ ଋଷି ଚେତନା ସାକ୍ଷାତ୍କାର କରିଥିଲା, ତାହାର ଏକ ସର୍ବ-ବୋଧଗମ୍ୟ ରୂପାଭିବ୍ୟକ୍ତି ଦେବା । ଉପଲବ୍ଧିର ସତ୍ୟକୁ କଦର୍ଥନା ଓ କୁପ୍ରୟୋଗରୁ ରକ୍ଷାକରିବା ଉଦ୍ଦେଶ୍ୟରେ ଏଭଳି ପ୍ରତୀକଚୟନ ଓ ଶବ୍ଦସଂଯୋଗର ଆଗ୍ରହ ହୋଇଥିବ, ଯାହା ସାଧାରଣଙ୍କ ପାଇଁ ଏକ ଅ.ଚରିତ ପ୍ରବୃତ୍ତିସ୍ୱାକୁ ଉଦ୍ଦେଶ୍ୟ କରିବାବେଳେ ଅଧ୍ୟାତ୍ମ-ନିର୍ଦ୍ଦେଶ ପାଇଁ ତାର ମୂଳଗତ ଅର୍ଥଚେତନାରେ ଉଦ୍‌ଭାସିତ ହୋଇପାରୁଥିଲା । ବେଦର ସଂହିତାକରଣରେ ଏହି ଉଦ୍ଦେଶ୍ୟର ପ୍ରଚଳନ ରହିଛି । ଋକ୍ ଛନ୍ଦୋବଦ୍ଧ ମନ୍ତ୍ର, ସାମ ଯଜ୍ଞରେ ଗାନାତ୍ମକ ଓ ଯଜୁଃ ଆଚରଣାତ୍ମକ ଗଦ୍ୟରଚନାର ସଂକଳନ ଥିଲେ । ଅଥର୍ବ ସମ୍ପର୍କରେ ବିଭିନ୍ନ ମତବାଦ ପ୍ରଚଳିତ ଥିଲେ ମଧ୍ୟ ଏହାକୁ 'ବ୍ରହ୍ମବେଦ' ଓ 'ଆତ୍ମବେଦ' ବୋଲି ନିର୍ଦ୍ଦେଶ କରିବା ଭିତରେ ତାର ଅଧ୍ୟାତ୍ମ ଦିଗଟି ପ୍ରତି ସଂକେତ କରାଯାଇଛି ।

ବୈଦିକ ମନ୍ତ୍ରଗୁଡ଼ିକର ଶବ୍ଦଚୟନ ଦ୍ୱିମୁଖୀ ଉଦ୍ଦେଶ୍ୟ ପ୍ରଭାବିତ :

(୧) ସାଧାରଣ ପୂଜା ଉପାସନାରେ ଫଳପ୍ରଦ ମନ୍ତ୍ରାବଳୀ

(୨) ଅଧ୍ୟାତ୍ମ ଗୂଢ଼ାର୍ଥ ନିହିତ ସାଂକେତିକ ଅଭିବ୍ୟକ୍ତି ।

ସାଧାରଣ ଅପକୃଷ୍ଟ ଓ ଅପରିଣତ ବୌଦ୍ଧିକ ଚେତନାରେ ବେଦମନ୍ତ୍ର ସଂଗୁପ୍ତ ପରାବିଦ୍ୟା ଏବଂ ଅଧ୍ୟାତ୍ମ ରହସ୍ୟର ଯଥାଯଥ ଅବଧାରଣ ସମ୍ଭବ ହୁଏନାହିଁ । ସେମାନଙ୍କର ଭ୍ରମାତ୍ମକ ପ୍ରୟୋଗ ହେତୁ ଗୁଣାତ୍ମକ କ୍ଷୟ ବା ବିନଷ୍ଟିର ସମ୍ଭାବନା ଥିବାରୁ ମାନ୍ତ୍ରିକମାନଙ୍କର ଏ ସତର୍କତା ଅବଲମ୍ବନ କରାଯାଇପାରିଥାଏ ।

ସାୟଣଙ୍କ ଦ୍ୱାରା ସଂକଳିତ ଯାଜ୍ଞିକ କର୍ମକାଣ୍ଡ ଯାହା ତାର ବହିଃରୂପରେ ପ୍ରକୃତ ଉପାସନା-ସ୍ୱରୂପକୁ ୟୁରୋପୀୟମାନସରେ ପ୍ରଥମେ ଉପସ୍ଥାପିତ କରିଥିଲା, ତାର ଭିତରେ ହିଁ ବୈଦିକ ସତ୍ୟର ନିହିତାର୍ଥ ସଂଗୁପ୍ତ । ଏ ସତ୍ୟ ସାକ୍ଷାତ୍କାର ଋଷି-ମାନସରେ କୌଣସି ଚମତ୍କାରିତା ବା ଇନ୍ଦ୍ରଜାଲ ନୁହେଁ । ଊର୍ଦ୍ଧ୍ୱଗାମୀ ଅଧ୍ୟାତ୍ମ କର୍ଷଣ ସାହାଯ୍ୟରେ ଚେତନାର ଏ ସତ୍ୟ-ରୂପ ଦର୍ଶନ ସଂଘଟିତ ହୋଇଥାଏ । ବାଇବେଲ, କୋରାନ୍ ପ୍ରସଙ୍ଗରେ ମଧ୍ୟ ଏ ଶଭିଲେଶନ ପ୍ରସଂଗଟି ସ୍ୱୀକୃତ । ପୁନଶ୍ଚ, ବେଦରେ ବହୁବାର ଏକମନ୍ତ୍ର-ସମ୍ପର୍କରେ ପୂର୍ବ ଓ ନୂତନ ଋଷି (ପୂର୍ବେଭିଃ ନୂତନୈଃ) ବୋଲି କୁହାଯାଇଛି । ଏଥିରୁ ସୂଚିତ ହୁଏ ଯେ, ଏକ ମାନ୍ତ୍ରିକ ସତ୍ୟ ବାରବାର ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଋଷିକର୍ତ୍ତୃକ ଲବ୍ଧ ହୋଇଥିଲା, ପ୍ରଥମେ ପୁରାତନ ଋଷିଙ୍କ ଦ୍ୱାରା ପ୍ରତ୍ୟକ୍ଷିତ ହୋଇଥିଲା ଓ ପରେ ଅନ୍ୟ ଋଷି ତାହାର ସାକ୍ଷାତ୍କାର କରିଛନ୍ତି ।

Digitized by PPRACHIN, SOA

ସାୟଣଙ୍କ ଯାଜ୍ଞିକ କ୍ରିୟାବସ୍ତୁମୂଳକ 'ଭାଷ୍ୟ' ବୈଦିକ ସଂହିତାକୁ ଅନୁସରଣ କରିଛି । ଏ ସଂହିତାକାଳ ଏକ ନିର୍ଦ୍ଦିଷ୍ଟ ସମୟକୁ ସୂଚିତ କରୁଛି, ଯାହା ନିଃସନ୍ଦେହରେ ବେଦରଚନାର ପ୍ରାରଂଭକାଳ ନୁହେଁ । ଏହା ହୋଇପାରେ ଯେ, ଏକ ବିରାଟ ବିପୁଳକାୟ ପ୍ରାଚୀନ ବାଙ୍ମୟ ଭିତରୁ ବେଦବ୍ୟାସ କୃଷ୍ଣଦ୍ୱୈପାୟନ କେତେକ ପ୍ରତିନିଧି ସ୍ଥାନୀୟ ଋକର ସଂହିତାକରଣ କରିଥିବେ । ବ୍ରାହ୍ମଣ ଓ ଆରଣ୍ୟକ ରଚନା କାଳରେ ଏକ ଅଧ୍ୟାତ୍ମ୍ୟ-ନବଜାଗରଣର ସୂଚନା ନିହିତ । ବ୍ରାହ୍ମଣଦ୍ୱାରା ଯାଜ୍ଞିକ କ୍ରିୟା ପଦ୍ଧତିର ଶୁଦ୍ଧ ସଂରକ୍ଷଣ ହେଲା । ବ୍ରାହ୍ମଣର ସଙ୍କଳିତ ଅନେକ ଉପକଥା (Legend) ନିଶ୍ଚିତଭାବେ ମୂଳ ବେଦରଚନା ସମୟର ପରବର୍ତ୍ତୀ । ବ୍ରାହ୍ମଣ ମୁଖ୍ୟତଃ ଯଥାସଂଭବ ଅକ୍ଷରିକ ଶବ୍ଦଗତ ଅର୍ଥବିନ୍ୟାସର ପ୍ରଚେଷ୍ଟା, ଆରଣ୍ୟକରେ ବେଦର ଆଧ୍ୟାତ୍ମିକ ଅନୁଶୀଳନ କରାଯାଇଛି । ଯାଜ୍ଞିକ ବିଧିବିଧାନ ସ୍ୱଳ୍ପ-ଗୁରୁତ୍ୱ ପ୍ରାପ୍ତ ହେବାର କାରଣ ହୋଇପାରେ ଯେ, ବେଦ ସଂପର୍କୀୟ ବାହ୍ୟ ଅର୍ଥ କରଣ ଜନିତ ଭ୍ରାନ୍ତ ବିଚାର ଉପନିଷଦ ସମୟକୁ ଆସିଯାଇଥିବ । ବେଦାନ୍ତ ଯେ ପ୍ରାଚୀନ ଜ୍ଞାନରୁ ଆଧ୍ୟାତ୍ମିକ ଉପାଦାନର ପୁନରୁଦ୍ଧାର ନିମନ୍ତେ ସପ୍ରଶଂସନୀୟ ଚେଷ୍ଟା କରିଥିଲା ତାର କାରଣ ବୈଦିକ ଗୂଢ଼ାର୍ଥ ସେତେବେଳକୁ ସର୍ବସାଧାରଣରେ ଦୁର୍ବୋଧ ହୋଇଯାଇଥିବା ସଂଭବ । ଅବଶ୍ୟ ଉପନିଷଦର ଏ ବିଭାଜନ ଓ ଜ୍ଞାନକାଣ୍ଡ ଭିତରେ ବୈଦାନ୍ତିକ ଗୁରୁତ୍ୱର ସୁଦୂରପ୍ରସାରୀ ପରିଣତି ପରେ ବୌଦ୍ଧ ପ୍ରବର୍ତ୍ତୀ ଓ ଅଦ୍ୱୈତ ସାଧନାର କୃଚ୍ଛ୍ର, ବୈରାଗ୍ୟ, ଜୀବନ-ବିତୃଷ୍ଣ ସନ୍ନ୍ୟାସବାଦ ରୂପେ ଆବିର୍ଭୂତ ହୋଇଥିଲା । ବୈଦିକ ସମୟର ସୁରକ୍ଷିତ ଅନ୍ତର୍ଜୀବନ ଓ ବହିର୍ଜୀବନର ପାର୍ଥିବ ଓ ଅଧ୍ୟାତ୍ମିକ ସମନ୍ୱୟଟି ବ୍ରାହ୍ମଣ-କାଳରୁ ଯେ ବ୍ୟାହତ ହେବାକୁ ଆରଂଭ-କରିଥିଲା, ତାର ପୁନର୍ବିନ୍ୟାସ ଭାରତର ଅଧ୍ୟାତ୍ମ-ପରଂପରାରେ ଏଯାବତ୍ ସଂଭବ ହୋଇପାରିନାହିଁ ।

ବେଦର ପରବର୍ତ୍ତୀ ବୌଦ୍ଧିକ ମୂଲ୍ୟାଂକନ ପ୍ରୟାସ ହେଉଛି 'ଯାସ୍କ' ପ୍ରଣୀତ ନିରୁକ୍ତ । ଅବଶ୍ୟ ଅର୍ଥ ଅବଧାରଣ କ୍ଷେତ୍ରରେ ନିରୁକ୍ତ ସାୟଣ-ଭାଷ୍ୟ ଅନୁସରଣରେ ବେଦର ଆଚାରିକତା ଓ ଯାଜ୍ଞିକ ଅଭିମୁଖ୍ୟ ଉପରେ ସମଧିକ ଗୁରୁତ୍ୱ ଦେଇ ତାର ମୌଳିକ ଗୂଢ଼-ତାତ୍ପର୍ଯ୍ୟବୋଧୀ ଓ ଇଂଗିତଧର୍ମୀ ଶବ୍ଦମାନଂକର ଯଥାର୍ଥ ଅର୍ଥ ଗ୍ରହଣ କରିବାରେ ସର୍ବଥା ସମର୍ଥ ହୋଇପାରିନାହିଁ । ତଥାପି ସାୟଣଂକ ଭାଷ୍ୟପରେ ନିରୁକ୍ତ ହିଁ ବେଦ ସହ ଭାରତୀୟମାନସର ସମ୍ବନ୍ଧ ଓ ଜନଜୀବନ-ଧାରାର ସଂଯୋଗ ସୂତ୍ରଟିକୁ ଧରିରଖିଥିଲା । ଭାଷ୍ୟ ଓ ନିରୁକ୍ତ ବେଦରେ ପ୍ରକୃତି-ଉପାସନା ତତ୍ତ୍ୱକୁ ଗ୍ରହଣ କରିଛନ୍ତି । ପାରଂପରିକ ଓ ସର୍ବସ୍ୱୀକୃତ ରୂପ-ବିଗ୍ରହ ଅବଲଂବନ କରି ସୂର୍ଯ୍ୟକୁ ଦିବସ ସହ, ଜଳକୁ ନଦୀ ସହ, ସୋମକୁ ମଦ୍ୟସହ ସଂପର୍କିତ କରିଛଂନ୍ତି ।

ଖାଦ୍ୟ ଓ ବିଭବ, ଏ ପାର୍ଥିବ ଭୋଗଦ୍ରବ୍ୟ ଯଜ୍ଞର ଚରମ-ଲକ୍ଷ୍ୟ ରୂପେ ସାୟଣଂକ ଦ୍ୱାରା ନିର୍ଦ୍ଦିଷ୍ଟ । ଏଇଥିପାଇଁ ଶକ୍ତି, କ୍ଷମତା, ଶତ୍ରୁଦଳନ ଉଦ୍ଦେଶ୍ୟରେ ଦେବାରାଧନା ଓ ଯଜ୍ଞବଳି । ମାତ୍ର ବେଦର ଶବ୍ଦ-ପ୍ରତୀକ ରହସ୍ୟଟି ବୈଦିକ ସତ୍ୟର ଦ୍ୱିବିଧ ସ୍ୱରୂପକୁ ସଂକେତିକ କରେ । ବୈଦିକ ଋକ୍‌ଗୁଡ଼ିକ ବାହ୍ୟପ୍ରକୃତି ଓ ବିଶ୍ୱକ୍ରିୟାକୁ ସ୍ଥୂଳତଃ ବର୍ଣ୍ଣନା କରିବା ଭିତରେ ଅଂତଃଚେତନାର ରହସ୍ୟ-ଜଗତ ମଧ୍ୟ ସଂକେତିତ । ଋଷିବାଣୀ ବାରଂବାର ସାବ୍ୟସ୍ତ କରିଛି ଯେ, ଶାଶ୍ୱତକୁ ସେ ପ୍ରତ୍ୟକ୍ଷ କରିଛି । ଏ ଦର୍ଶନ ଯେ ଅଂତଃଚେତନାର ସଂଦର୍ଶନ ଏହା ସୁସ୍ପଷ୍ଟ । ତେବେ ଋଷିବାକ୍ୟର ମର୍ମାର୍ଥ କେବଳ ସମର୍ଥ-ବୁଦ୍ଧି ପକ୍ଷରେ ହିଁ ସଂଭବ ବୋଲି ନିର୍ଦ୍ଦେଶ କରାଯାଇଛି, "କବୟେ ନିବଚନାନି ନିନ୍ୟାନି ବଚାଂସି ।"

ବୈଦିକ ଉପଲବ୍ଧିକୁ ତିନି ଭାବରେ ବ୍ୟକ୍ତ କରିବାର ପ୍ରୟାସ ପରିଦୃଷ୍ଟ । (୧) ମୂଳସତ୍ୟର ଧାରଣା, (୨) ଆତ୍ମ-ସତ୍ୟର ବିସ୍ତାର, (୩) ମୂଳ-ସତ୍ୟ ସହ ବ୍ୟକ୍ତ ସୃଷ୍ଟିର ସଂପର୍କ ନିର୍ଦ୍ଧାରଣ

Digitized by PPRACHIN, SOA

ପ୍ରୟାସ । ବେଦର ମୂଳାଧାରଣାଟି 'ଏକଂ ସତ୍' ଭାବ ଉପରେ ପ୍ରତିଷ୍ଠିତ । ଏହି ଏକଂ ସଦ୍‌ବିପ୍ରା ବହୁଧା ବଦଂତି—ଉପନିଷଦରେ 'ଏକ ମେବ ଅଦ୍ୱିତୀୟମ୍' ରୂପେ ପ୍ରତିପାଦିତ । 'ପତି ଏକା' 'ଦେବାନା' ନାମଧାଙ୍କା', 'ଅନନ୍ୟ ନାଭିଃ' ପ୍ରଭୃତିରେ ଏ 'ସ୍ରଷ୍ଟା ଆଦ୍ୟ' ଭାବଚେତନାର ରହସ୍ୟ ସଂକେତିତ । ଏ ଶାଶ୍ୱତ ଏକ ସତ୍ୟଙ୍କୁ ବୈଦିକ ମନ ଅବଧାରଣାର ଯେଉଁ ପ୍ରଗାଢ଼ ଉଦ୍ୟମ କରିଛି ତାହାର ସୂଚନା ନାସଦୀୟ, ପୁରୁଷ, ହିରଣ୍ୟଗର୍ଭ, ସ୍କମ୍ଭ ପ୍ରଭୃତି ସୂକ୍ତମାନଂକରେ ପରିଦୃଷ୍ଟ । ଋକ୍‌ବେଦରେ ଏଇ ନିହାର-ପ୍ରାବୃତ, ଅଜ୍ଞାତ-ଉତ୍ସର ରହସ୍ୟଭେଦ କରିନପାରି ଋଷିକଣ୍ଠ ପ୍ରଜଳ୍ପନ କରିଛି—"ନିହାରେଣ ପ୍ରାବୃତା ଜାଲ୍ପ୍ୟସ୍ଥ ଗୃସୃତୃପା ଉକ୍‌ଥସାଶ୍ଚରଂତି । (୩) ଅନିର୍ବଚନୀୟର ଅଭିବ୍ୟକ୍ତି-ପ୍ରୟାସ 'ନାସଦୀୟ'କୁ ମାକ୍‌ସମୁଲର ସର୍ବୋତ୍ତମ ବୋଲି ଅଭିହିତ କରିଛଂତି ।

ଏହି ଏକ 'ଭୁବନସ୍ୟଗୋପା' ଦେବତାମାନଂକର ମଧ୍ୟ ପୂର୍ବବର୍ତ୍ତୀ ଓ ସେହି ପୂର୍ବଦେବ ପୁଣି ସର୍ବଦେବ । ଦୀର୍ଘତମାଂଙ୍କ ଉକ୍ତିରେ 'ସେ ଇଂଦ୍ର, ମିତ୍ର, ବରୁଣ, ଅଗ୍ନି ରୂପେ ପୂଜିତ । ସେହି ସୁପର୍ଣ୍ଣ ଗରୁଡ଼ ( ଗରୁତ୍ମାନ ); ସେହି ଏକଂକୁ ଋଷିମାନେ ଅଗ୍ନି, ଯମ, ମାତରିଶ୍ୱନ ବୋଲି ଅଭିହିତ କରିଛଂତି । (୫) ଦୀର୍ଘତମା, ବଶିଷ୍ଠ, ବିଶ୍ୱାମିତ୍ର ପ୍ରଭୃତି ଋଷିମାନଂକର ବିସ୍ମୟ-ଉଚ୍ଛାସିତ ଆଲୋଚ୍ୟ ସକ୍ତମାନଂକରୁ ବୈଦିକ ରହସ୍ୟଚେତନାର ବିକାଶ ଓ ବିସ୍ତାର ଲକ୍ଷ୍ୟ କରାଯାଇପାରେ ।

ଋକ୍ ୧୦/୧୨ ରେ ଓ ଅଥର୍ବ ୪/୨/୨୬ରେ, "କସ୍ମୈ ଦେବାୟ ହବିଷା ବିଧେମ' ପ୍ରଶ୍ନରେ ଏହି ବହୁନାମଧାରୀ ଏକଦେବତାଂଙ୍କୁ ହିଁ ଉଦ୍ଦେଶ୍ୟ କରାଯାଇଛି । (୬) ପୁରାତନ ଅଥଚ ନିତ୍ୟନୂତନ, ଆଦ୍ୟ, ମଧ୍ୟ, ଅଂତଃ ପ୍ରସାରିତ ଏ ବୈଦିକ-ଆର୍ଯ୍ୟଷଂକର ଅବଧାରଣା ପାଇଁ ପାଶ୍ଚାତ୍ୟ ଜିଜ୍ଞାସା ବହୁ ଦେବବାଦ, ଏକ ଦେବବାଦ, ସର୍ବଦେବବାଦ ଇତ୍ୟାଦି ସଂଜ୍ଞା ଭିତରେ ଧଂଦି ହୋଇଯାଇଛି । ତାର ମୂଳକାରଣ ଅବଶ୍ୟ ପାଶ୍ଚାତ୍ୟ ମାନସ ବେଦର ଦେବ-ବ୍ୟକ୍ତିତ୍ୱମାନଙ୍କୁ ଏକ ଓ ଏକମାତ୍ର ଭବ୍ୟସତ୍ତାଙ୍କ ବିଭିନ୍ନ ଶକ୍ତି-ରୂପ-ପ୍ରତୀକ ଭାବେ ବିଗ୍ରହ ନକରି ସେମାନଙ୍କୁ ଏକ ଏକ ସ୍ୱତଂତ୍ର ଦେବ-ସତ୍ତା ରୂପେ ଗ୍ରହଣ କରିଛି । ବେଦରେ ପରମ ସତ୍ ଏକ, ମାତ୍ର ବହୁରୂପେ ବିବୃତ ('ଏକ ସଦ୍ ବିପ୍ରା ବହୁଧା ବଦନ୍ତି), ପୁଣି ବହୁତ୍ୱ ଭିତରେହିଁ ଅପରିବର୍ତ୍ତନୀୟ । ଏକତ୍ୱରେ ବିଦ୍ୟମାନ—ଏହା ବୈଦିକ ଦେବତତ୍ତ୍ୱର ସାର ରହସ୍ୟ ।

'ବୈଦିକ ବିଶ୍ୱାସ ବିଶ୍ୱରେ ସତ୍ତାର ଊର୍ଦ୍ଧ୍ୱଗାମୀ ସ୍ତର, କ୍ରମବିନ୍ୟସ୍ତ ଶ୍ରେଣୀବଦ୍ଧ ଜଗତ ସବୁ ରହିଥିବାର ସ୍ୱୀକାର କରେ ।' ଏହି ସତ୍ୟ, ନ୍ୟାୟ ଓ ବିଧାନ ଏଇ ସବୁ ସ୍ତରକୁ ଧାରଣ କରୁଛି, ନିୟଂତ୍ରଣ କରୁଛି, ତାହାହିଁ ଋତ । ଅସଂଖ୍ୟ ବିସୃଷ୍ଟି ମଧ୍ୟରେ ତାହାହିଁ ଅଭିବ୍ୟକ୍ତ ବିଶ୍ୱର କର୍ମଧାରା ରୂପେ ପ୍ରବାହିତ । ସେ କର୍ମଧାରାର ଅଂତରାଳରେ ସେଇ ଋତଶକ୍ତିର ଶକ୍ତି, ବିଭୂତି ଓ ନାମରୂପ ପ୍ରକାଶ ଦେବତା ରୂପେ ବେଦଖ୍ୟାତ । ବେଦବର୍ଣ୍ଣିତ ଦେବତାମାନଂକର ଏକ ବାହ୍ୟ ଓ ଆନ୍ତଃ

---

(୩) ଋକ୍ ୧୦-୧୨-୭

(୪) "Language blushes at such expressions, but her blush is a blush of triumph"— Maxmullar—'The Vedas'-P-27

(୫) ଋକ୍ ୧-୧୬୪-୪୬

(୬) "ମଣିଷ ପ୍ରକୃତିରେ ଚେତନାର କ୍ରମ ଊର୍ଦ୍ଧ୍ୱସ୍ତରମାନ ପର୍ଯ୍ୟାୟ, ପରିଧି ଓ ଭୂମି ସବୁ ରହିଛି ଓ ତାହାର ଅନୁରୂପ କ୍ରମ ଊର୍ଦ୍ଧ୍ୱସ୍ତରମାନ ଜଗତ ସବୁ ମଧ୍ୟ ରହିଛନ୍ତି ।"
ଶ୍ରୀ ଅରବିନ୍ଦ : 'ଭାରତୀୟ ସଂସ୍କୃତିର ଆଧାର' —(ଅନୁବାଦ) ପୃ. ୧୧୬ ।

Digitized by PPRACHIN, SOA

ପରିଚୟ ରହିଛି । ଏମାନେ ପ୍ରତ୍ୟେକ 'ତଦେକମ୍ ଶାଶ୍ୱତ'ଙ୍କର ପୂର୍ଣ ଓ ପୃଥକ୍ ବିଶ୍ୱବ୍ୟକ୍ତିତ୍ୱ । 'ଏହି ଶକ୍ତିସବୁର ମିଳିତ ପ୍ରକାଶ ବିଶ୍ୱଶକ୍ତି ଓ ଈଶ୍ୱରଙ୍କର ପୂର୍ଣ ସାର୍ବଭୌମିକତ୍ୱ 'ବୈଶ୍ୱଦେବମ୍' ।

ଅତଏବ ବେଦରେ ସବୁଠାରୁ ତାତ୍ପର୍ଯ୍ୟବୋଧୀ ଓ ବହୁପ୍ରଯୁକ୍ତ ଶବ୍ଦଟି ବୋଧହୁଏ 'ଦେବତା' । ବେଦ ସଂପର୍କରେ ବହୁ ଭ୍ରାଂତି ଏହି 'ଦେବତା'ର ରୂପରହସ୍ୟ ଭେଦ ପ୍ରୟାସରୁ ଉଦ୍ଭୂତ । ସଂକ୍ଷେପରେ କହିଲେ, ଋଷି-ମାନସରେ ଉପଲବ୍ଧ ଜ୍ଞାନ, ପ୍ରେମ ଓ ଆନଂଦର ଭାବ-ଶକ୍ତି ପ୍ରତୀକ ଏ ଦେବତା ବ୍ୟକ୍ତିର ଚେତନାସ୍ତରର ଓ ବିଶ୍ୱକ୍ରିୟାର ବିଭିନ୍ନ ଶକ୍ତିର ଧାରଯିତା ରୂପେ ଯଜ୍ଞରେ ସମାହୃତ । ଅନଂତଦେବ ଓ ବିଶ୍ୱଦେବ ରୂପେ ଶାଶ୍ୱତଙ୍କ ବିଶ୍ୱପ୍ରକାଶ ତଥା ବିଶେଷ ସମୟର ବିଶେଷ ଶକ୍ତିଧାରୀ ଦେବତା ରୂପେ ତାଙ୍କର ବିଶେଷ ପ୍ରକାଶକୁ ବୈଦିକ ବାଙ୍ମୟ ରୂପକାତ୍ମକତା ପ୍ରଦାନ କରିଛି । (୭) ଇଂଦ୍ର, ଅଗ୍ନି, ମିତ୍ର-ବରୁଣ, ସୂର୍ଯ୍ୟ-ସାବିତ୍ରୀ, ବୃହସ୍ପତି, ତ୍ୱଷ୍ଟା, ସୋମ, ରୁଦ୍ର ପ୍ରଭୃତିଙ୍କୁ ଅର୍ପିତ ବିଶିଷ୍ଟ ନୈବେଦ୍ୟ ସେମାନଙ୍କର ଶ୍ରେଷ୍ଠତ୍ୱ ବିସ୍ତାରରେ ନୁହେଁ, ନିର୍ଦ୍ଦିଷ୍ଟ ଶକ୍ତି-ରୂପର କ୍ରିୟା ପ୍ରକାଶ ପାଇଁ ହିଁ ଉଦ୍ଦିଷ୍ଟ । ଜ୍ଞାନ ଓ ଆଲୋକ ଚେତନାକୁ କେଂଦ୍ରକରି ବୈଦିକ ଦେବ-ପ୍ରତୀକର ପ୍ରାଥମିକ ଉଦ୍ଭାସର ଘଟିଥିବା ନିଃସଂଦେହ । ଦିବ୍ୟଶକ୍ତିମାନଙ୍କ ସହ ସଂଯୋଗ ରକ୍ଷା, ପରମଦିବ୍ୟଙ୍କୁ ଲାଭକରିବା ପାଇଁ ଏମାନଙ୍କ ସାହାଯ୍ୟକୁ ଆବାହନ କରିବା ବୈଦିକ ସାଧନାର ଗୋପନ ରହସ୍ୟ । ବାହ୍ୟ ଯଜ୍ଞକ୍ରିୟାର ପ୍ରତୀକ ଅଂତରାଳରେ ଏହି ମର୍ମ ନିଗୂଢ଼ । ସେହି ପ୍ରତୀକ ଦ୍ୱାରା ଯଜ୍ଞସୂତ୍ରକୁ ଅବଲଂବନ କରି ମଣିଷର ସତ୍ତା ଭିତରକୁ ଦୈବୀଶକ୍ତିକୁ ଆବାହନ କରାଯାଏ, ତାରି ଭିତରେ ଦିବ୍ୟ ପ୍ରକୃତି ଉଦ୍‌ବୋଧିତ ହୁଏ । ଏ ଦେବତା-ମାନେ ଅଂତଃ ବହିଃ ସକଳ କ୍ଷେତ୍ରରେ ସତ୍ୟର ତତ୍ତ୍ୱାବଧାରକ ଓ ଅବିନଶ୍ୱର । ଅମୃତ (ମରଣହୀନ) ପଥରେ ସେମାନଙ୍କର ଯାତାୟାତ । ସେହି ଊର୍ଦ୍ଧ୍ୱାୟିତ ପଥରେ, ଦୈବୀଶକ୍ତିର ସାହାଯ୍ୟରେ ସତ୍ୟର ବିଧାନ ବା 'ଋତସ୍ୟପନ୍ଥା' ଦେଇ ମାନବସତ୍ତାର ପରମପଦକୁ ଉତ୍ଥାନ ଘଟେ । ଏକ ଶାଶ୍ୱତ ସ୍ଥିତି ଭିତରୁ ଚୈତ ପୁରୁଷ ମଧ୍ୟଦେଇ ଅଧ୍ୟାତ୍ମ ଜୀବନ ଅଭିମୁଖରେ ସତ୍ତାର ପୂର୍ଣ ବିକାଶ ପାଇଁ ସାଧନା ହିଁ ଯଜ୍ଞ-ରହସ୍ୟ । (୮)

ଯଜ୍ଞ ସହ ଜ୍ଞାନ ପ୍ରେମ କର୍ମ ଅଂଗାଗୀ ଛଂଦା । ଜ୍ଞାନ ହେଉଛି ମୂଳସତ୍ୟର ଅଭିଗମନ । ପ୍ରେମ ଏ ସତ୍ୟକୁ ଜୀବନାନଂଦ ରୂପେ ଧାରଣକରେ । ଏହା ମାଧ୍ୟମରେ ବ୍ୟକ୍ତିର ବିଶ୍ୱ ସହ ତାଦାତ୍ମ୍ୟ ଘଟେ । ଜ୍ଞାନର ଏ ଉପଲବ୍ଧି ଓ ପ୍ରେମର ଏ ସ୍ୱୀକୃତିକୁ କ୍ରିୟାତ୍ମକତାରେ ରୂପାଂତରିତ କରିବାର ପ୍ରଣାଳୀ ହିଁ କର୍ମ—ଯାହା ଯଜ୍ଞ ରୂପରେ ପ୍ରତ୍ୟକ୍ଷ ସୁରକ୍ଷିତ । ଏ ପର୍ଯ୍ୟାୟରେ ଧର୍ମ ଆଉ କେବଳ ଅଧ୍ୟାତ୍ମ

---

(7) "As a matter of fact, they have so few individual or distinctive traits that a riddle hymn is possible, where in each stanza describes a deity by its characteristics marks, leaving its name to be guessed...

(କସ୍ମୈ ଦେବାୟ ହବିଷା ବିଧେମ ?)"

The History and Culture of Indian People.

Vol. - I - p-367.

(୮) "ଅଲୁବ୍ଧ ତ ପୁନରେହି ବିଦ୍ୱାନୁଦୟନଂ ପଥଃ
ଆରୋହଣମାକ୍ରମଣଂ ଜୀବତୋ ଜୀବତୋଽୟନମ୍ ।"

ଅଥର୍ବ ୫/୩୦/୭

Digitized by PPRACHIN, SOA

ସଂଦେଶ ନହୋଇ ଆଚରଣ ପଂଥା ରୂପେ ବ୍ୟକ୍ତିର ସର୍ବବିଧ ଉତ୍କର୍ଷ ସାଧନର ସହାୟକ ହୋଇଥାଏ । ( ୯ ) ବୈଦିକ ଯଜ୍ଞରହସ୍ୟ ସଚରାଚର ଧର୍ମକୁ ବିଶ୍ୱଧର୍ମ ଓ ଜୀବନ ଧର୍ମ ରୂପେ ପୂର୍ଣ ସ୍ୱୀକୃତ ଦେଇଛି ।

ବୈଦିକ ଚେତନାର ମୂଳପ୍ରଶ୍ନ ଆତ୍ମାରୁ ଉଚ୍ଚାରିତ । ପରମ ଶାଶ୍ୱତ ଚିତ୍ତଶକ୍ତି ରୂପେ ବ୍ୟକ୍ତି ସତ୍ତାରେ ବିଦ୍ୟମାନ ଏବଂ ସେହି ଆତ୍ମ-ସ୍ୱରୂପ ଲାଭରେ ବିଶ୍ୱରହସ୍ୟର ଉଦ୍‌ଘାଟନ । ଅନ୍ତଃସତ୍ତା ଓ ବିଶ୍ୱପ୍ରକୃତି ସୃଷ୍ଟିରହସ୍ୟର ଗୋଟିଏ ଛଂଦରେ ହିଁ ସ୍ପଂଦିତ । ବୈଦିକ ପ୍ରତୀକାତ୍ମକତା ପ୍ରକୃତି ଓ ବ୍ୟକ୍ତିଜୀବନର ଏଇ ସମତାନିକତାକୁ ବ୍ୟଂଜିତ କରିବାକୁ ଉଦ୍ଦିଷ୍ଟ ।

ଚେତନାପ୍ରତୀକ ବିସ୍ତାରରେ ବେଦ ବ୍ୟକ୍ତିର ଅଧ୍ୟାତ୍ମ ସାଧନାର ନାଟ୍ୟ-ସଂବାଦ । ରହସ୍ୟବାଦୀ 'ଯାତ୍ରାରୂପ'ର ଏହା ପୂର୍ଣ ତତ୍ତ୍ୱାଭିବ୍ୟକ୍ତି । (୧୦) ସସୀମ ମାନବଠାରେ ସଂଗୁପ୍ତ ଆତ୍ମାର ଅସୀମ-ଭୂମିରେ ଦିବ୍ୟଚେତନାର ଅଧିଷ୍ଠାନ କ୍ରମରେ ମାନବର ଆଧ୍ୟାତ୍ମିକ ପ୍ରୟାସ, ପ୍ରତିକୂଳତା ସହ ସଂଗ୍ରାମ ଓ ଦିବ୍ୟ ସହାୟତାର ସଂବାଦ ଏଥିରେ ପ୍ରଦର୍ଶିତ । ବେଦରେ ଦେବଗଣ ବ୍ୟକ୍ତିର ଚୈତ୍ତସାଧନାରେ ଦିବ୍ୟ ଶକ୍ତି ପ୍ରତୀକ ରୂପେ, ବୈଦିକ ମନ୍ତ୍ରଗୁଡ଼ିକରେ ପରମା ଆଦ୍ୟାଙ୍କର ଶକ୍ତି ଓ ସ୍ଥିତିର ବିଧାୟକ ପୁରୁଷ ରୂପେ ଆହୂତ । ପ୍ରକୃତରେ କହିବାକୁ ଗଲେ, ବ୍ୟାଖ୍ୟା ପ୍ରସଙ୍ଗରେ ଦୁର୍ବୋଧ, ଜଟିଳ, ଅସଂଗତ ଓ ପରସ୍ପର ଅସଂପୃକ୍ତ ମନେହେଉଥିବା ଉଚ୍ଚାରଣଗୁଡ଼ିକ ବା ଶ୍ଳୋକସମୂହ ଏଇ ଆନ୍ତରୀଣ ଚେତନା ସଂପର୍କିତ ମନସ୍ତାତ୍ତ୍ୱିକ ବ୍ୟାଖ୍ୟାରେ ହିଁ ପୂର୍ଣ ଅର୍ଥାନ୍ୱିତ ହୋଇଉଠିଥାନ୍ତି ।

ଏ ବ୍ୟାଖ୍ୟାତ୍ମକତା ବେଦର ପ୍ରତୀକ ବିସ୍ତାରକୁ ତିନପ୍ରକାରେ ଦେଖିଛି । ୧-ବ୍ୟକ୍ତି ପ୍ରତୀକ, ୨-ବସ୍ତୁ ବା ଅବସ୍ଥା ପ୍ରତୀକ, ୩-ଭାବ ପ୍ରତୀକ । ଏଗୁଡ଼ିକ ପ୍ରତ୍ୟେକ ଏକ ପକ୍ଷରେ ମନୁଷ୍ୟର ବ୍ୟକ୍ତିଗତ ଆଧ୍ୟାତ୍ମ-ଚେତନା ଓ ଅପରପକ୍ଷରେ ଉର୍ଦ୍ଧ୍ୱଗତ ଦୈବତ ପ୍ରକାଶ ରପ୍ରତୀକାତ୍ମକ ଅଭିବ୍ୟକ୍ତି । ମିତ୍ର-ବରୁଣ, ଅଗ୍ନି-ସୂର୍ଯ୍ୟ ଓ ଉଷା-ଅଦିତି ପ୍ରଭୃତି ଦେବଦେବୀ, ପୁରୁଷ, ହିରଣ୍ୟଗର୍ଭ, ବ୍ରହ୍ମା, ଦସ୍ୟୁ, ଶିଶୁ, କବି ପ୍ରଭୃତି ଶବ୍ଦ ବ୍ୟକ୍ତି ରୂପାଶ୍ରିତ । ଗୋ, ଅଶ୍ୱ, ଘୃତ, ଅପ, ବୃତ (ଅହି), ହିରଣ୍ୟ, ନିହାର, ପକ୍ଷୀ, ଶ୍ୱାନ, ଘୋଟକ ପ୍ରଭୃତି ବସ୍ତୁପ୍ରତୀକ । ଭାବ-ପ୍ରତୀକରେ ଅଭିବ୍ୟକ୍ତ ଋତୁ, ଋତୁ, ଅମୃତ, କେତୁ, ଶତ୍ରୁ, ସ୍ୱର ପ୍ରଭୃତି ଶବ୍ଦ ମାନବୀୟ ଚୈତ୍ତ-ଜଗତ ସହ ପ୍ରତ୍ୟକ୍ଷଭାବେ ସଂପୃକ୍ତ । ଯାଜ୍ଞିକ କର୍ମକାଣ୍ଡ ବିଧାନରେ ଏ ଶବ୍ଦମାନେ ସେମାନଙ୍କର ସ୍ପଷ୍ଟ ରୂପାତ୍ମକ ଅର୍ଥ ପ୍ରତୀତିରେ ପ୍ରଯୁକ୍ତ ; ମାତ୍ର ଆଧ୍ୟାତ୍ମିକ ଅର୍ଥ ଦ୍ୟୋତନାରେ ପ୍ରତୀକ ଅନ୍ତରାଳବର୍ତ୍ତୀ ଧାତ୍ମାତ୍ମକ ଗୂଢ଼ ଭାବଚେତନାହିଁ ଉତ୍ତ୍ପ୍ରେକ୍ଷିତ । ବେଦର ଆଧ୍ୟାତ୍ମିକ-ବିସ୍ତାର ଏହି ଅର୍ଥ-ଜିଜ୍ଞାସା ଉପରେ ଓତଃପ୍ରୋତ ନିର୍ଭରଶୀଳ ।

---

(9) Religion is human life, in its ultimate context struggling for meaning and responding to its various levels of personal, social and natural environment."

Walter G Muctder—'Religion in Philosophical and Cultural Perspective—p-468'.

(10) "It is the spiritual hymn of battle and victoryas it discovers and climbs to the danes of thought and experience—inaccesible to the natural or animal man, man's praise of the divine light, power and grace at work with the mortal.

Sri Aurobindo : The Secret of the Vedas' P: 9

Digitized by PPRACHIN, SOA

ବୈଦିକ ଭାବପ୍ରଜ୍ଞାର ପ୍ରଧାନ ସଂକେତଟିକୁ ଋତରୂପେ ନିର୍ଦ୍ଦେଶ କରାଯାଇଛି । ଋତର ଧାତ୍ୱାର୍ଥ ଗତି, ପଥ, ଧାରଣୀ, ଏହା ସେହି ଧାରା ବା ନିୟମ ଯାହାକୁ ଅନୁସରଣ କରି ସତ୍ୟ ଅଭିବ୍ୟକ୍ତ ହେଉଥାଏ । ସୃଷ୍ଟି ସେହି ନିୟମରେ ଶୃଙ୍ଖଳିତ । ଋତ ସ୍ୱୟଂ ଈଶ୍ୱରଙ୍କର ମଧ୍ୟ ଅନତିକ୍ରମ୍ୟ ବୋଲି ନିର୍ଦ୍ଦିଷ୍ଟ । ଯଜ୍ଞନିୟମ ଅର୍ଥରେ ଏହାର ବାହ୍ୟପ୍ରଚଳନ ଓ ବିଶ୍ୱନିୟମ ବା ସୃଷ୍ଟି ବିସ୍ତାର କାରଣ ଶକ୍ତି ଏହାର ଅନ୍ତଃସ୍ୱରୂପରେ ଉଦ୍‌ବୋଧିତ । ଆଧ୍ୟାତ୍ମିକ ନିଷ୍କର୍ଷରେ ଏହା ଦୁରିତ (ଅପମାର୍ଗ)ର ବିପରୀତ ଚେତନାରେ ଅବସ୍ଥିତ । ଅଥଚ ଏ 'ଦୁରିତ' ମଧ୍ୟ ସକଳ ଋତ-ବିରୋଧୀ ଅଂଧଗତି ଭିତରେ ଆପଣାର ଅଜ୍ଞାନରେ ଋତର ମୂଳ ପ୍ରେରଣାଟି ଦ୍ୱାରା ଅନୁବଂଧିତ ।

ଅମୃତ ବେଦରେ ଅବିନାଶୀ ପାରତତ୍ତ୍ୱ ଓ ସର୍ବଗତ ଆତ୍ମତତ୍ତ୍ୱରୂପେ ମରଣାତୀତ ଜୀବନାନଂଦ ଭାବଚେତନାକୁ ପ୍ରତୀକିତ କରେ । ପାର୍ଥିବ ମୃତ୍ୟୁ ଅନ୍ତର୍ଗତ ଶାଶ୍ୱତ ମୁକ୍ତିର ଆନନ୍ଦ ମଧ୍ୟ ଏହାର ଅନ୍ତର୍ଗତ । ଆଲୋକ ଓ ଦିବସ ଜ୍ଞାନସ୍ପଷ୍ଟତାକୁ ଏବଂ ରାତ୍ରି, ଅନ୍ଧାର, ନିହାର, ସ୍ୱର୍ଣ୍ଣକୋଷ ଅଜ୍ଞାନତା ଓ ଭ୍ରାନ୍ତିକୁ ସଂକେତିତ କରିଥାନ୍ତି ।

ବେଦରେ 'କ୍ରତୁ' ଯଜ୍ଞର ପରିଭାଷା ରୂପେ ମାନବର ଅନ୍ତଃବାହ୍ୟ ପୁନଶ୍ଚ ବିଶ୍ୱଗତ ସମୁଦାୟ କ୍ରିୟାତ୍ମକତାକୁ ବୁଝାଇଥାଏ । ଯଜ୍ଞର ମୂଳ ପ୍ରେରଣାଟି 'ଯଜନ' ଅର୍ଥାତ୍ ଦାନ ଓ ଆବାହନ । ନିଜସ୍ୱକୁ ଓ ସେଇମାର୍ଗରେ ନିଜକୁ ଦୈବୀସତ୍ତା ନିକଟରେ ସମର୍ପଣକରି ନିଜ ମାଧ୍ୟମରେ ବିଶ୍ୱମଂଗଳ ପାଇଁ ଦୈବୀଶକ୍ତିର ପାର୍ଥିବ ଅବତରଣ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ଯଜ୍ଞ ରହସ୍ୟର ମୂଳ ଚେତନା । ଅତଏବ ଯଜ୍ଞହିଁ ପାର୍ଥିବ ଓ ଅପାର୍ଥିବର ସଂଯୋଗ ସେତୁ । ବ୍ୟକ୍ତିର ସୀମାବଦ୍ଧ ଜଡ଼ତ୍ୱଗତ ଅକ୍ଷମତାକୁ ଚିନ୍ମୟ ଦିବ୍ୟତାରେ ରୂପାନ୍ତରିତ କରିଦେବାହିଁ ଯଜ୍ଞ ଶକ୍ତିର ଯାଦୁକରି—ମିରାକ୍ଲ (miracle) । ଏହି ଯଜ୍ଞ-ଉପାସନା ପ୍ରମାଣ କରେ ଯେ ବୈଦିକ ସାଧନା ପାର୍ଥିବ ବର୍ଜନ ବା ଜୀବନ ସଂଭୋଗ, କୌଣସି ଗୋଟିକୁ ବି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରୂପେ ଅନୁସରଣ ନ କରି ଜୀବନାନୁରାଗ ଭିତରେ ପୃଥିବୀର ମହାଦାନକୁ ସ୍ୱୀକୃତି ଦେଇ, ହୃଦୟର ମାଧୁରୀରେ ବିଶ୍ୱପ୍ରାଣର ସଂଜୀବିତ କରି ଅପାର୍ଥିବ ଦିବ୍ୟତାକୁ ମର୍ତ୍ତ୍ୟଚେତନାର ଉତ୍ତରଣ ପ୍ରୟାସ କରୁଥିଲି । ଏ ସମର୍ପଣର ପ୍ରତୀକ ଶ୍ରେଷ୍ଠ ଥିଲେ ହବି ଓ ମଧୁ । ହବି ଦୁଗ୍ଧର ଶ୍ରେଷ୍ଠ ଅବଦାନ ଓ ମଧୁ ସକଳ ପ୍ରାକୃତିକ-ସମ୍ଭାରର ସାର ନିର୍ଯାସ । ପ୍ରକୃତିର ଏ ଶ୍ରେଷ୍ଠ ସମ୍ଭାର ସହ ହୃଦୟ-ସାର ଶ୍ରଦ୍ଧାକୁ ଏକ କରି ଯଜ୍ଞାର୍ଘ୍ୟ ରୂପେ ନିବେଦନ କରି ଧରାସୁତ ମାନବ ଦୈବତ କଲ୍ୟାଣର ଆଶୀର୍ବାଦ ଯୋଗ୍ୟତା ଲଭିକରୁଥିଲା । ଏ ଦୈବତ ଉପଲବ୍‌ଧି ପ୍ରତୀକ ରୂପେ 'କେତୁ' (Perception) ଶବ୍ଦ ବେଦରେ ପ୍ରଯୁକ୍ତ । 'ବଜ୍ର' ଓ 'ବିଦ୍ୟୁତ୍' ମଧ୍ୟ ଶ୍ରବଣ ଓ ଦର୍ଶନର ରହସ୍ୟବାଦୀ ପ୍ରତ୍ୟକ୍ଷାନୁଭବ ସଂକେତ ସହ ସଂଯୁକ୍ତ ।

ଏ ଅମୂର୍ତ୍ତ ଭାବଚେତନାମାନଙ୍କର ମୂର୍ତ୍ତ ରୂପ ପ୍ରୟାସ ରୂପେ ପ୍ରଖ୍ୟାତ ନାସଦୀୟ * ସୂକ୍ତକୁ ଗ୍ରହଣ କରାଯାଇ ପାରେ ଯାହା ପରବର୍ତ୍ତୀ କାଳରେ ଅଦିତି, ହିରଣ୍ୟଗର୍ଭ, ପୁରୁଷ ପ୍ରଭୃତି ରୂପ-ଚେତନାକୁ ବୈଦିକ ବାଙ୍ମୟରେ ସଜୀବ କରିଛି । ବୈଦିକ ରହସ୍ୟ ଜିଜ୍ଞାସାର ମୂଳ ସ୍ପନ୍ଦନ ଏହାର ଭାବଗତ ଅଭିବ୍ୟକ୍ତି ସହ ଶବ୍ଦ-ରହସ୍ୟରେ ମଧ୍ୟ ଅଭିବ୍ୟଂଜିତ । ବିଶ୍ୱର ସକଳ ସୃଷ୍ଟି-ଆଦ୍ୟ ଜିଜ୍ଞାସାର ଆଦ୍ୟ ଓଁକାର ରୂପେ ନାସଦୀୟକୁ ଗ୍ରହଣ କରାଯାଇପାରେ । (୧୧) 'ପୁରୁଷ' ଚେତନାର ରୂପପ୍ରୟାସ

(11) "They failed in expressing what, by the very nature must always remain inexpressible. But that Inexpressible itself remained...always called for new and better names, nay calls for even them now, and will for them to the very end of man's existence upon earth" (ଋକ୍-୧/୧୬୪/୧-୫)*
Maxmullar-The Vedas-p-119

Digitized by PPRACHIN, SOA

'ବିଶ୍ୱପୁରୁଷ' (୧୨) ଯିଏ ଅନାଦି ଓ ଅନନ୍ତ ସୃଷ୍ଟିପ୍ରବାହକୁ ନିଜଠାରେ ଧାରଣକରି ଆବିର୍ଭୂତ । ହିରଣ୍ୟଗର୍ଭ, ସ୍କମ୍ଭ ବରୁଣ-ସୂକ୍ତରେ ଏଇ ଭାବ ପ୍ରକାଶର ପୂର୍ଣ ମହିମା ବିକାଶ ପରେ 'ବେଦାନ୍ତ'ର ବ୍ରହ୍ମସ୍ୱରୂପରେ ଓ ଗୀତାର ବିଶ୍ୱରୂପବିଭାସରେ ।

ବେଦରେ ମାନବର ସଂକ୍ରାମଣୀଳ ଅଧ୍ୟାତ୍ମ-ସତ୍ତାକୁ 'ଶିଶୁ' ଓ 'ପକ୍ଷୀ' ପ୍ରତୀକରେ ରୂପାୟିତ କରାଯାଇଛି । ସତ୍ତା ଏକ ବରଷକର ଶିଶୁ, ଯାହା ଗୃହପାଖରେ ଦେବତାମାନେ ସାତଟିଅ ବିଶିଷ୍ଟ ବସ୍ତୁ ବୁଣି ରଖିଛନ୍ତି । (୧୩) ଏ ଶିଶୁ 'ଦ୍ୱିମାତୃକା' (୧୪) ରୂପେ ଅଭିହିତ । ଦିବସ ଓ ରାତ୍ରି, ଆଲୋକ ଓ ଅଂଧାର, ସତ୍ୟ ଓ ମାୟାଶକ୍ତି ତାକୁ ଲାଳନକରନ୍ତି ।(୧୫) ଏ ଶିଶୁର ପରମ ଆଭିଜାତ୍ୟ ପୃଥିବୀର ମାତୃତ୍ୱ (୧୬) ଓ ଆକାଶର ପିତୃତ୍ୱ । ଆକାଶ ଓ ପୃଥିବୀର ସନ୍ତାନ, ଦିନ ଓ ରାତ୍ରିର ଶାବକ ଏହି ଶିଶୁ ସ୍ୱଭାବତଃ ଜ୍ଞାନ ଓ ଅଜ୍ଞାନର ସମ୍ମିଶ୍ରଣ ସ୍ଥଳ । ମାନବ ସତ୍ତାରେ ଦୈବତ ଚେତନା ଓ ଜଡ଼ର ନିବେଦିତ୍ୱ ଉଭୟ ବିଦ୍ୟମାନ । ଉଭୟର ସ୍ୱୀକୃତ ପୀଠରେ ସାଧନାର ଆରମ୍ଭ । ଚେତନାରେ ଅଜ୍ଞାନ-ତମସାବୃତ ରାତ୍ରି ଜ୍ଞାନାଲୋକ ଉଦ୍‌ଭାସିତ ଦିବସ-ସତ୍ତାର ନିତ୍ୟ ସଂଗୀ । ବୃତ୍ର ଆଲୋକ (ଅପ୍) ଅପହରଣକାରୀ, ବା ଆବରଣକାରୀ ଚେତନା । ତାମସୀ ଦାନବତ୍ୱ ଓ ଆଲୋକମୟ ଦିବ୍ୟତ୍ୱର ସଂଘର୍ଷ ଭିତରେ ନିର୍ମଳ ମନର ଅଧିପତି ଶକ୍ତି-ଅଧିପତି ଇନ୍ଦ୍ରଙ୍କର ଆଲୋକମୟ 'ସ୍ୱର୍' ରାଜ୍ୟର ପ୍ରତିଷ୍ଠା । ଜ୍ଞାନାରୁଣ ରଂଜିତ ଉଜ୍ଜ୍ୱଳପକ୍ଷ ଧାରଣକାରୀ ଆତ୍ମା-ବିଶ୍ୱାତ୍ମା ପକ୍ଷୀଦ୍ୱୟ ଅସ୍ତିତ୍ୱର ଏକ ଚେତନା ବୃକ୍ଷରେ ସୃଷ୍ଟିର ମୂଳ ଆନନ୍ଦ ସଂବେଗକୁ ବିଭିନ୍ନ ପ୍ରକାରେ ପ୍ରକାଶିତ କରଥାନ୍ତି । ବେଦର ବର୍ଣନାରେ (୧୭) "ସୁନ୍ଦର/ସ୍ୱର୍ଣାଭ ପକ୍ଷଯୁକ୍ତ ଦୁଇଟି ପକ୍ଷୀ ସଖାପରି ପରସ୍ପର ସହ ଯୁକ୍ତ ହୋଇ ଗୋଟିଏ ବୃକ୍ଷକୁ ଆଦର ରହିଛନ୍ତି । ଗୋଟିଏ ସୁସ୍ୱାଦୁ ଫଳ ଭକ୍ଷଣରେ ରତ, ଅପରଟି କେବଳ ତାହାଂକୁ ଦେଖି ରହିଛି । ଯେଉଁଠି ସୁନ୍ଦର ପକ୍ଷଯୁକ୍ତ ଆତ୍ମାସବୁ ଅପଲକ ନେତ୍ରରେ ନିରନ୍ତର ବିଦ୍ୟାର ଘୋଷଣା କରିଛନ୍ତି, ସେଠାରେ ଜଗଦ୍‌ପାଳକ 'ସ୍ୱୟଂ ବିଜ୍ଞାନୀ ହୋଇ ମଧ୍ୟ ଅଜ୍ଞାନୀ ମୋ ଭିତରକୁ' ଆସି ମୋତେ ଆବୋର ରହିଲେ । (ଭୁବନସ୍ୟ ଗୋପା' ଶବ୍ଦର ପ୍ରୟୋଗ ଉଦ୍ଦେଶ୍ୟମୂଳକ)

ରେଖାଂକିତ ଖଣ୍ଡବାକ୍ୟଟି ମାନବର ଦୈବତ-ଭିତ୍ତି, ଜ୍ଞାନ-ସାମର୍ଥ୍ୟ ଓ ଅସୀମତା ଲାଭର ସମ୍ଭାବନାଯୁକ୍ତ ସସୀମ ସ୍ଥିତିକୁ ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ, ଜନ୍ମାନ୍ତରବାଦ ଏବଂ ବିବର୍ତ୍ତନବାଦ ସ୍ୱୀକୃତିକୁ ମଧ୍ୟ ସଂକେତିତ କରୁଛି । ନିମ୍ନଚେତନାକୁ ଆଶୟ ରୂପେ ବ୍ୟବହାର କରି ଯେଉଁ ବିବର୍ତ୍ତନ ସମାରମ୍ଭ, ତାହା ଅବିଦ୍ୟାକୁ ଆଶ୍ରୟ କରି ଗତିଶୀଳ ଏବଂ ଶେଷରେ ଚିତ୍-ସ୍ୱରୂପରେ ତାହାର ପୂର୍ଣ ରୂପାନ୍ତର ଯେ ସଂଘଟିତ, ଜନ୍ମ ଓ ଜୀବନର ଯାବତୀୟ ରହସ୍ୟାତ୍ମିକତା ଏହାର ଭିତରେ ସଂକେତିତ ।

---

(୧୨) "ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍
ସ ଭୂମିଂ ବିଶ୍ୱତୋ ବୃତ୍ୱାତ୍ୟ ତିଷ୍ଠଦ୍ଦଶାଙ୍ଗୁଳମ୍ ।
ଋଷି ନାରାୟଣ—ଋକ୍ ୧୦/୯୦/୧୨

(୧୩) ଋକ୍ ୨/୧୬୪/୫

(୧୪) "ଦ୍ୱିମାତା ହୋତା ବିଦଥେଷୁ ସମ୍ରାଳନ୍ୱଗ୍ରଂ ଚରତି କ୍ଷେତି ବୁଧ୍ନଃ" ।
ଋକ୍ ୩/୫୫/୭

(୧୫) ଋତାୟିନୀ ମାୟିନୀ ସ ଦଧାତେ ନନ୍ଦା ଶିଶୁଂ ଜଜ୍ଞତୁର୍ବଧୟନ୍ତୀ ।"

(୧୬)"ମାତା ଭୂମି ପୁତ୍ରୋ ଅହଂ ପୃଥିବ୍ୟାଃ ।" ଅଥର୍ବ-୧୨/୧/୧୨

Digitized by PPRACHIN, SOA

ମାନବ ଯେ ଅମୃତଜାତ, ତାର ଅନ୍ତରରେ ଦେବପାଦ ଲୁକ୍କାୟିତ (ଋକ୍-୧/୧୬୪/୫), ସେ ଜାଗତିକ ମିଥ୍ୟା ବିଷୟରେ ସଚେତନ, ତଥାପି ଅନନ୍ତର ଶକ୍ତିମାନ ଅଜେୟପୁତ୍ର ସେ ସତ୍ୟର ସଦନରେ ହିଁ ଲାଳିତ ଓ ବର୍ଦ୍ଧିତ (ଋ ୧/୭୦ ୫) ବେଦ ମାନବପୁତ୍ରର ସେହି ଦିବ୍ୟଧାମରେ ଉତ୍ତିତ ଭଗବଜ୍ଜୟର ଉତ୍ସବ-ସଙ୍ଗୀତ ।

ବେଦରେ ଭୂ, ଭୂବ, ସ୍ୱଃ ପ୍ରଭୃତି ଧାମ ବିଭିନ୍ନ ଚେତନାସ୍ତରକୁ ସୂଚିତ କରନ୍ତି । ସ୍ୱର୍ଲୋକ ଜ୍ଞାନ-ରୂପକ ଆଲୋକମୟ ଧାମ ଓ ଇନ୍ଦ୍ର (ସମ୍ୟକ୍ ବୋଧି) ଏହାର ଅଧିପତି ରୂପେ ସ୍ୱୀକୃତ । ଜ୍ଞାନ-ନିର୍ମଳ ସତ୍ତ୍ୱ ବୋଧିର ଉଦ୍ଭାସିତ ଶିଖରରୁ, ଶିଖର ଇନ୍ଦ୍ରଂକ ସହାୟତା ଲାଭକରି ଅବଲୀଳାକ୍ରମେ ଆରୋହଣ କରିଯାନ୍ତି । ଯଜୁର୍ବେଦରେ ଅଛି, 'ପୃଥିବୀର ଉପରକୁ ଉଠି ମୁଁ ଅନ୍ତରୀକ୍ଷ ମଧ୍ୟରେ ଆରୋହଣ କରିଛି । ଅନ୍ତରୀକ୍ଷରୁ ସ୍ୱର୍ଗ ବା ଦ୍ୟୁଲୋକରେ ଉପନୀତ ହୋଇଛି ଏବଂ ସ୍ୱର୍ଗପୃଷ୍ଠରୁ ସ୍ୱର୍ଲୋକର ଜ୍ୟୋତି ମଧ୍ୟରେ ପ୍ରବେଶ କରିଛି ।

ଜ୍ଞାନ ଓ ଆଲୋକ ବୈଦିକ ଅଭୀପ୍ସାର ପ୍ରଥମ ଦିବ୍ୟ-ପ୍ରବେଦନା ଯାହାର ପ୍ରକାଶ ଓ ବିସ୍ତାର ବୈଦିକ ଦେବତା-ରୂପ-କଳ୍ପନାର ସମାଭିବ୍ୟକ୍ତିରେ । ସମସ୍ତ ବେଦର ମୂଳ ଆଭିମୁଖ୍ୟଟି ଏଇ ଋକ୍‌ମାନଙ୍କର ଉପସ୍ଥାପନା ଭଂଗୀ ଭିତରେ ନିବଦ୍ଧ । ଋକ୍-ସଂହିତା ଦଶଟି ମଣ୍ଡଳରେ ବିଭକ୍ତ । ପ୍ରତ୍ୟେକ ମନ୍ତ୍ର ଏକ ଋଷି ବା ଋଷିକୁଳ ନାମରେ ଆରୋପିତ । ପ୍ରତ୍ୟେକଟି ମଣ୍ଡଳରେ ଅଗ୍ନିଙ୍କ ପାଇଁ ଉଦ୍ଦିଷ୍ଟ ଋକ୍‌ମାନଗରିବୋସ ସଂକଳିତ । ତତ୍ପରେ ଇନ୍ଦ୍ରଙ୍କର ଓ ତାପରେ ଅନ୍ୟ ଦେବତାଙ୍କ ବନ୍ଦନାରେ ମଣ୍ଡଳ ସମାପ୍ତ । ଋକ୍ ବେଦର ପ୍ରଥମ ମଣ୍ଡଳଟି ସମଗ୍ର ବୈଦିକ ବାଙ୍ମୟର ମୁଖଦର୍ପଣ ସ୍ୱରୂପ । ଦଶମ ବା ଶେଷ ମଣ୍ଡଳ 'ପୁରୁଷ' ଙ୍କୁ ଉତ୍ସର୍ଗିତ । ସମଗ୍ର ବେଦର ଆତ୍ମା ଏହାର ଭିତରେ ଉପସ୍ଥାପିତ । ଋକ୍ ସଂହିତାର ପ୍ରଥମ ମଣ୍ଡଳରେ ସେହିପରି ସମୁଦାୟ ବୈଦିକ ଚେତନାର ସଂକ୍ଷିପ୍ତ ରୂପନ୍ୟାସ ଘଟିଛି । ଅଗ୍ନିଙ୍କୁ ସମର୍ପିତ ପ୍ରଥମ ମନ୍ତ୍ରଟିରେ ଆର୍ଷ ଉପଲବ୍ଧିର ରୂପ ସଂକେତ ଉଦ୍‌ଘାଟିତ । ତାହାର ପରବର୍ତ୍ତୀ ଶ୍ଳୋକରେ ଇନ୍ଦ୍ରଙ୍କୁ ଅନ୍ୟ ଦେବତାମଣ୍ଡଳୀ ସହିତ ଆବାହନ, ଅବଶିଷ୍ଟ ଆଠଟି ଋକ୍‌ରେ ଇନ୍ଦ୍ର ଏକମାତ୍ର ଦେବତାରୂପେ ସ୍ୱୀକୃତ, ସୋମ ଓ ଗାଭୀ ପ୍ରସଙ୍ଗ ବର୍ଣ୍ଣିତ, ଇନ୍ଦ୍ର-ବୃତ୍ର ସଂଘର୍ଷ ବିବୃତ ଓ ଆଲୋକବାହୀ ଅଭୀପ୍ସା ସଂକେତିତ । ଏ ରୂପ ମଂତ୍ର ସଂକଳନର ବ୍ୟବସ୍ଥାକ୍ରମେ ଦ୍ୱିମୁଖୀ ଉଦ୍ଦେଶ୍ୟ ପ୍ରଣୋଦିତ । (୧) ମାନବୀୟ ସତ୍ତ୍ୱର ଦିବ୍ୟତ୍ୱ ପ୍ରାପ୍ତି ନିମନ୍ତେ ଦେହ ଓ ମନର ଆରୋହଣାତ୍ମକ ପ୍ରସ୍ତୁତି (୨) ବ୍ୟକ୍ତିର ଚୈତ୍ତ ଭୂମିରେ ଦିବ୍ୟ-ଶକ୍ତିର ଅବତରଣକୁ ଆବାହନ । ଦିବତ୍ୱ ଲାଭ ପାଇଁ 'ଆତ୍ମପ୍ରସ୍ତୁତି' ଓ 'ଦିବ୍ୟସହାୟ'ର ଦ୍ୱୈତ ରହସ୍ୟବାଦୀ-ସାଧନା ଏଇ ରୂପେ ବେଦରେ ପ୍ରଥମରୁ ସ୍ୱୀକୃତ ।

ବେଦରେ ଆତ୍ମା ଓ ଦୈବୀ ଚେତନାର ପ୍ରତୀକାର୍ଥରେ ଶ୍ୱାନ ( ସାରମେୟ ) ହଂସ, ଘୋଟକ ପ୍ରଭୃତି ଜୀବମାନଂକର ବର୍ଣ୍ଣନା ରହିଛି । ଅପ୍ ଆଲୋକ ଧାରା ଓ ନଦୀ ଆଲୋକ ପ୍ଲାବନୀ ଏବଂ 'ସରସ୍ୱତୀ' ସେଥିପାଇଁ ନଦୀ ଶ୍ରେଷ୍ଠା ( ଜ୍ଞାନ-ଧାରାମୟୀ ) ରୂପେ ନଂଦିତା । ଆଲୋକ ଅର୍ଥରେ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ସଂକେତ ହେଉଛି 'ଗୋ' ବା ଧେନୁ ଏବଂ ଜ୍ଞାନ ଅର୍ଥରେ ସୁବର୍ଣ୍ଣ-ଯାହା ପରମ ଆଧ୍ୟାତ୍ମିକ-ଉତ୍କର୍ଷ ରୂପେ ଯଜ୍ଞାର୍ଥ ବୋଲି ଆର୍ଷ ଅଭିପ୍ରେତ ଏବଂ ପାର୍ଥିବ ସଂଭୋଗର ଶ୍ରେୟ ରୂପେ ନିର୍ଣ୍ଣିତ । ବୃତ୍ର ବା ଅହି ଜଳ ଅପହାରକ ରୂପେ କଳ୍ପିତ ହେବାର ମୂଳଚେତନାଟି ସତ୍ତ୍ୱର ଅଂଧକାରଗ୍ରସ୍ତ ବିଭ୍ରାଂତି ଯାହା ଇଂଦ୍ର ବା ସତ୍ୟଜ୍ଞାନର ଆଲୋକ ଶକ୍ତିଧାରା ନିର୍ମଳ ଓ ସବଳ ମନଶ୍ଚେତନା ଦ୍ୱାରା ପ୍ରତିହତ ହୋଇଥାଏ । ଏହିପରି ଇଂଦ୍ର ଅପହୃତ ଜଳକୁ (ଜ୍ଞାନ) ପୁନରୁଦ୍ଧାର

Digitized by PPRACHIN, SOA

କରଂତି । ଏହି ଇଂଦ୍ର-ମନ ହିଁ ସୋମ-ପାୟୀ ସମ୍ରାଟ୍ । ଏ ସୋମ ତେଣୁ ଦିବ୍ୟାନଂଦ, ଜ୍ଞାନ ଓ ସତ୍ୟ ସ୍ୱରୂପ ଚେତନାନଂଦ, ବୈଦିକମାନସର ସ୍ୱର୍ଗ ଚେତନାର ସେଇ ଉତ୍ତରଣକୁ ସଂକେତ କରେ ଯାହା ପୌରାଣିକ ଉପସ୍ଥାପନାରେ କାଳ୍ପନିକ ଆବାସ-ସ୍ଥିତି ଲାଭକରିଛି ।

ଏ ଦେବତାମାନଂକର ପ୍ରକାଶ-ଶକ୍ତି 'ଆଲୋକ' ଓ କ୍ରିୟାଶକ୍ତି 'ତେଜ'କୁ ଅଗ୍ନି ହିଁ ଧାରଣ କରିଥାଂତି । ଯଜ୍ଞାର୍ଘ୍ୟ ପ୍ରଥମେ ଏହି ଅଗ୍ନିଂକୁ ସେଥିପାଇଁ ନିବେଦିତ । ଅଗ୍ନି ସତ୍ୟର ଆଲୋକ, କ୍ରିୟା-ସଂକଳ୍ପ ଓ ରକ୍ଷାକାରୀ ଶକ୍ତି ରୂପେ ଆବିର୍ଭୂତ ହୋଇଥାଂତି । ଏହି ସତ୍ୟ ହେଉଛି ସତ୍ତାର ସତ୍ୟ, ଅସ୍ତିତ୍ୱର ମୂଳଭୂତ ସତ୍ୟ, କାର୍ଯ୍ୟ ବା ଋତରେ ବରଣୀୟ । ଦେହମନପ୍ରାଣରେ ଅଭିଲଷିତ, ଦୃଷ୍ଟ, ଶ୍ରୁତ ଓ ବିବେଚନା ରୂପେ ଶକ୍ତିସଂଯୁକ୍ତ । ଏହି ଶକ୍ତିକୁ ଆଶ୍ରୟ କରି ଦେବତାମାନେ ମୃତ୍ୟୁଶୀଳତା ଭିତରେ ଅମରତ୍ୱକୁ ସ୍ଥାପନ କରିବାର ଯଜ୍ଞ ନିର୍ବାହ କରଂତି । ମାନୁଷୀ ଯଜ୍ଞ ଏହି ଦିବ୍ୟ ଯଜ୍ଞର ପରିପୂର୍ତ୍ତି ରୂପେ ଆୟୋଜିତ ।

ଅଗ୍ନି-ସତ୍ୟ-ସ୍ୱରୂପ ହେତୁ ସକଳ ଗତ୍ୟାତ୍ମକ ଓ କାର୍ଯ୍ୟବିଧାୟିକା ଶକ୍ତି ରୂପେ ଅଂତଃସଂଗୁପ୍ତ । ଅଗ୍ନି ହୋତା ରୂପେ ଏସବୁ ବିଶେଷଣର ଅଧିକାରୀ । ଯଜ୍ଞରେ 'ଦେବ ଦେବେଭିଃ' ବୋଲି ବାରଂବାର ଉଚ୍ଚାରଣ ଭିତରେ ଅଗ୍ନିଂକର ଏ ଦିବ୍ୟତ୍ୱର ଉଦ୍‌ବୋଧନ । ଅଗ୍ନି 'ନକ୍ତୋପାସା' (ଦିବାରାତ୍ର ପ୍ରଜ୍ଜ୍ୱଳିତ) । ମନୁଷ୍ୟର କ୍ରିୟାଭିତରେ ସତ୍ତାର ସ୍ପଂଦରୂପେ ସତ୍ୟ ଓ ବୃହତ୍ତ୍ୱକୁ ଆକାଂକ୍ଷା କରି ରହିଥାଂନ୍ତି । ଏହାହିଁ ଶାଶ୍ୱତ-ରୂପୀ ଅଗ୍ନିଂକର ଚରାଚରିତ ବଂଦନା । ଗୋତମ ରହୁଗଣ ଅଗ୍ନିଂକୁ ବିଶ୍ୱରେ କ୍ରିୟା-ଶୀଳ ଦିବ୍ୟ ସଂକଳ୍ପ ସହ ଅଭିନ୍ନ ପ୍ରତିପାଦନ କରିଛଂତି । ଅଗ୍ନି ସର୍ବାପେକ୍ଷା ମହତ୍ତ୍ୱପୂର୍ଣ ଓ ବିଶ୍ୱବ୍ୟାପକ ହୋଇଥିବାରୁ ବିଷ୍ଣୁ ତାଂକରି ଆଶ୍ରୟରେ ସର୍ବତ୍ର ଗମନ କରଂତି । ପାର୍ଥିବ ଜଗତର ସେ ଭକ୍ଷକ, ଉପଭୋକ୍ତା ପୁଣି ପାବକ ମଧ୍ୟ । ଗ୍ରାସ ଓ ଉପଭୋଗ ମଧ୍ୟରେ ବି ସେ ପାବନ କରୁଥାଂତି । ସବୁ କିଛିକୁ ପକ୍ୱ, ପ୍ରସ୍ତୁତ ଓ ପରିପୂର୍ଣ କରଂତି । ସେ ମଧ୍ୟ ସଂମିଶ୍ରକ ଓ ସଂହତି ବିଧାୟକ । ଏହିପରି ଗ୍ରାସ, ଉପଭୋଗ, ପାବନ, ପ୍ରସ୍ତୁତ, ସମ୍ମିଶ୍ରଣ ଓ ରୂପାନ୍ତରିତ କରି ସେ ସର୍ବଦା ଊର୍ଦ୍ଧ୍ୱକୁ ଗମନ କରୁଥାଂତି ଓ ତାଂକରି ଶକ୍ତିମାନଂକୁ ମରୁତ୍‌ରେ ( ଚିଂତାଶକ୍ତି ) ପରିଣତ କରୁଥାଂତି, ଯେଉଁମାନେ କି ଇଂଦ୍ରିୟମାନଂକୁ ଇଂଦ୍ରିୟ-ସମ୍ରାଟ ମନ ରୂପକ ଇଂଦ୍ରଂକ ନିର୍ଦ୍ଦେଶରେ ସୁଷ୍ଠୁ ପରିଚାଳିତ କରଂତି । ପାର୍ଥିବ ସତ୍ତାର ବାସନାଗ୍ରସ୍ତ ଅପରିଚ୍ଛନ୍ନ ଭାବାବେଗମାନ ଏ ଜ୍ୱଲମାନ ବହ୍ନିଂକର ଧୂମ୍ର ସଦୃଶ । ସ୍ନାୟୁସତ୍ତାର ସଂକଳ୍ପରୂପେ କାର୍ଯ୍ୟଦ୍ୱାରା ସେ ପ୍ରାଣକୁ ଶୁଦ୍ଧ କରଂତି । ମାନସିକ ସତ୍ତାର ସଂକଳ୍ପରୂପେ ଆକାଂକ୍ଷାଦ୍ୱାରା ମନକୁ ନିର୍ମଳ କରଂତି । ଏହିପରି ପାର୍ଥିବ ଜୀବଶକ୍ତିକୁ ସେ ଦିବ୍ୟ-ସଂବୋଧୀ କରାଇଦିଅଂତି ।

ଯଦିଓ ସେ ସର୍ବଜାତ ଓ ସର୍ବତ୍ରବାସୀ, ତଥାପି ତାଂକର ସ୍ୱଗୃହ 'ସତ୍ୟ' । ଏ ସତ୍ୟ ଋତ ଓ ବିରାଟ ଦ୍ୱାରା ନିର୍ମିତ ଯେଉଁଠାରେ ଜ୍ଞାନ ଓ ଶକ୍ତି ଏକତ୍ର ଅବସ୍ଥିତ । ଅଗ୍ନି ସେହି ଦେବତା ଯିଏକି ନଶ୍ୱର ଚେତନାରେ ସଚେତ (conscient) ହୋଇ ଯଜ୍ଞସ୍ୱରୂପରେ ଜ୍ଞାନ, ଶକ୍ତି ଓ ଆନଂଦ, ଏ ତ୍ରିବିଧ ଦିବ୍ୟ-ପ୍ରକାଶକୁ ବଂଦରେ ରୂପାୟିତ କରଂତି ।

ସକଳ ନିର୍ମାଣ ଓ ଧ୍ୱଂସ ଭିତରେ, ପରିବର୍ତ୍ତନ ଓ ମୃତ୍ୟୁ ଭିତରେ ଅଗ୍ନି ହିଁ ଏକମାତ୍ର ନିତ୍ୟ ବିଦ୍ୟମାନ ଦେବତା । ଜଡ଼ ପ୍ରକୃତିର ଚରମ ବିଭ୍ରାଂତି ଓ ଅନ୍ଧକାର ମଧ୍ୟରେ, ନିମ୍ନତମ ଚେତନାର ସୁପ୍ତି ଭିତରେ ମଧ୍ୟ ସେ ଗୁପ୍ତଜ୍ଞାନ ରୂପେ ଅଂତର୍ଗତ ହୋଇ ସଚେତପରି ଏ ଜଡ଼କୁ

Digitized by PPRACHIN, SOA

ସଂଯବଦ୍ଧ ହେଲେ ବି ଦିବ୍ୟବିଧାନ ପଥରେ ଚଲାଇନିଅଂତି ଓ ତାର ସ୍ୱଭାବଗତ ସତ୍ୟ ସହ ବାଂଧି ରଖିଥାଂତି । ବୃକ୍ଷ ଓ ବୀଜର ଉତ୍ପାଦନ କ୍ରିୟା ମୂଳରେ ଏହି ସତ୍ୟ ବିଦ୍ୟମାନ । ଅଗ୍ନି ଦିବ୍ୟାଲୋକଯୁକ୍ତ ଓ ଦିବ୍ୟଶକ୍ତିସଂପନ୍ନ ହେତୁ ସତ୍ତ୍ୱର ଅଂଧତ୍ୱ ଓ ଅପଥଗମନକୁ ମଧ୍ୟ ଅବହିତ ହୋଇଥାଂତି ଏବଂ ବିଶ୍ୱାତ୍ମକ ମିଥ୍ୟାର କୁଟିଳାବର୍ତ୍ତ ଭିତରେ ବି ବିଶ୍ୱସତ୍ୟର ଅଭିବୃଦ୍ଧି ବିବର୍ତ୍ତନକୁ ରୂପାୟିତ କରୁଥାଂତି । ଅଂଧକାର ଭିତରେ ଆଲୋକ-ସଂଦେଶକୁ ପ୍ରତ୍ୟକ୍ଷ ପ୍ରମାଣ କରଂତି । ଅନ୍ୟସବୁ ଦେବତା ତ ଉଷର୍ବୁଧଃ—ଉଷାର ଆଗମନ ପରେହିଁ ଜାଗ୍ରତ ।

ଏହି ହେତୁ ଅଗ୍ନି ଯଜ୍ଞର ପୁରୋହିତ, ସଚେତନ ଉତ୍ସର୍ଗ ଯଜ୍ଞରେ ଦିବ୍ୟଶକ୍ତିରୂପେ ସମ୍ମୁଖରେ ଉପଗତ, ଯଜ୍ଞର ଫଳାଫଳ ନିୟଂତ୍ରଣକାରୀ ପୁରୋହିତ, ପାର୍ଥିବ ଓ ଅପାର୍ଥିବ-ଉଭୟ ଲୋକର ପ୍ରତିନିଧି ଏବଂ ସଂଯୋଗକାରୀ, ଅଗ୍ନି ଆମର ଅହଂକୁ ଶାସନାଧୀନ କରି ବିଶ୍ୱସତ୍ତ୍ୱଂକ ନିକଟରେ ସବୁ କାର୍ଯମଧ୍ୟରେ ବିନୀତ ହେବାକୁ, ପୁଣି ନିଜର ନ୍ୟୁନତମ ଗତି ପ୍ରକ୍ରିୟାରେ ମଧ୍ୟ ପରମ ଇଚ୍ଛାକୁ ସମ୍ମାନ କରିବାକୁ ନିର୍ଦ୍ଦେଶ ଦିଅଂତି । ଏହାର ଭିତରେ ମନୁଷ୍ୟ ତାହାର କ୍ଷୀଣତମ ଚେଷ୍ଟାରେ ମଧ୍ୟ ବିରାଟ ଈଶ୍ୱରଂକୁ ରୂପ ଦେଇଥାଏ । ଏହାହିଁ 'ଅକୃଣ୍ୱଧ୍ୱମ୍' । 'ଆ' ଉପସର୍ଗଟି ଏଠାରେ ବହିଃସ୍ଥ କିଛିକୁ ନିଜ ଭିତରେ ତାହାକୁ କ୍ରିୟାନ୍ୱିତ କରିବା ଭିତରେ ଚେତନାଗତ ରୂପାଂତରଟି ସୂଚିତ । ରହସ୍ୟ ସାଧନାର ମୂଳ ଉଦ୍‌ବୋଧନଟି ଏହିଠାରେ ଜାଗ୍ରତ । ସମଗ୍ର ବୈଦିକ ରହସ୍ୟ-ଭାବନାର ଉତ୍ସ ମଧ୍ୟ ଏହି ଅଗ୍ନି ରହସ୍ୟ ।

ଜ୍ଞାନ ଆହରଣ ପଥରେ ଅଗ୍ନିଂକର ମାନସିକ ଶକ୍ତିରୂପେ ମରୁତ୍‌ମାନେ ଆବିର୍ଭୂତ । ଏମାନେ ଅନ୍ୱେଷଣ, ଗତିକ୍ରିୟା, ଆଲୋକ ଝଟକ ଓ ଶକ୍ତି ସଂଘାତର ରୂପଧାରୀ, ଏବଂ ବିଘ୍ନ ଲଂଘନକାରୀ, ଉନ୍ମାର୍ଗଗାମୀ ଏବଂ ବୋଧିମନର ( ଇଂଦ୍ର ) ସାହାଯ୍ୟକାରୀ ରୂପେ ଉଦ୍‌ବୋଧିତ । ମରୁତ୍‌ମାନେ ବୈଦିକ ମନ୍ତ୍ରରେ ସତ୍ତ୍ୱର ଅଚେତରୁ ପୂର୍ଣ୍ଣ ଚେତନ ସ୍ତର ପର୍ଯ୍ୟଂତ ବିରାଜିତ ଏବଂ ଇଂଦ୍ର ସେ ପୂର୍ଣ୍ଣଚେତନାର ଭାସ୍ୱର-ପ୍ରତୀକ ରୂପେ ଅବସ୍ଥିତ । (୧୭) ବେଦରେ ଆଲୋକର ବିଶ୍ୱପ୍ରକାଶ ପାଇଁ ମିତ୍ରାବରୁଣଂକ ସହ ଇଂଦ୍ରମରୁତ୍ ଋଷି ମଧୁଚ୍ଛନ୍ଦଂକ ଦ୍ୱାରା ଏକତ୍ର ଆହୂତ । ଏହା ଉଦ୍ଦେଶ୍ୟମୂଳକ । ବରୁଣ ବେଦରେ ଆଦ୍ୟ-ଦେବତା ରୂପେ ଆରାଧିତ । ବ୍ୟାପ୍ତି, ବିସ୍ତୃତି ଭିତରେ ଋତ୍ ବା ସତ୍ୟତତ୍ତ୍ୱକୁ ସେ ଧାରଣ କରିଛଂତି । ତତ୍ ଶକ୍ତିଦ୍ୱାରା (ଋତେନ) ମନୁଷ୍ୟ ଭିତରେ ସତ୍ୟର କ୍ରିୟା ବୃଦ୍ଧିକରି (ଋତାବୃଧୌ) ସେ ସତ୍ୟର ପରିପୂର୍ଣ୍ଣତା ଭିତରକୁ ମାନବକୁ ଘେନିଯାଂତି ( ଋତସ୍ପୃଶା ) । ଏହା ସହ ଆଲୋକ-ରୂପ ମିତ୍ର ନିତ୍ୟ ସଂଯୁକ୍ତ; ଅର୍ଥାତ୍ ଋତ୍‌ସତର କ୍ରିୟାତ୍ମକତା ଆଲୋକ ସାହାଯ୍ୟରେ ହିଁ ସୁପରିକଳ୍ପିତ ହୁଏ । ଏହି ଆଲୋକ ଓ ଶକ୍ତିର ସମ୍ମିଳିତ ପ୍ରକାଶ ହିଁ । ମିତ୍ର ଏଇ ଅର୍ଥରେ ସତ୍ୟକୁ ମିଥ୍ୟାଠାରୁ ଭିନ୍ନକରି ଚହ୍ଲାଇ ଦେଉଥିବା ଆଲୋକ-ଶକ୍ତି । ବରୁଣ ଏହି ଅର୍ଥରେ ମଧ୍ୟ ଜଳ ( ଅପ୍-ଆଲୋକଧାରା )ର ସମ୍ରାଟ ସେ ବ୍ୟକ୍ତି ହୃଦୟସ୍ଥ ଆଲୋକକୁ ବିଶ୍ୱବ୍ୟାପ୍ତ କରନ୍ତି ।

ଅଥର୍ବ ବେଦରେ ବରୁଣ ବିଶ୍ୱବ୍ୟାପ୍ତ, ବିଶ୍ୱରୂପ, ବିଶ୍ୱମୟ ଚେତନାଶକ୍ତିରୂପେ ଆବିର୍ଭୂତ । ଏହି ପରିପ୍ରେକ୍ଷୀରେ ଓ ଦୈତ୍ୟହନ୍ତାରୂପରେ ସେ ପୌରାଣିକ ବିଷ୍ଣୁଂକର ସମାନ ମର୍ଯ୍ୟାଦାର

(17) "The principle which Indra represents is mind-power released from limits and obscurations of the nervous consciousness."
The Secret of Veda—P—29.

Digitized by PPRACHIN, SOA

ଅଧିକାରୀ । ଏହି ବେଦର ବର୍ଣ୍ଣନାରେ ବରୁଣ ସର୍ବଜ୍ଞାତା ଓ ଅଂତର୍ଯାମୀ । 'ଦୁଇଜଣଂକ ନିଭୃତ ଆଳାପ ମଧ୍ୟରେ ସେଇ ହିଁ ତୃତୀୟ ବିଦ୍ୟମାନ । (୧୮) ଆକାଶ ଓ ପୃଥିବୀ ସବୁକିଛି ତାଂକର ଦେହବିସ୍ତାର । ପୁଣି ଏସବୁର ସେ ଅତୀତ ମଧ୍ୟ ।

ମିତ୍ର ସହ ସୂର୍ଯ୍ୟ, ସାବିତ୍ରୀ, ପୂଷନ୍, ମାର୍ତ୍ତଣ୍ଡ ଆଦି ନାମ ମଧ୍ୟ 'ସୂର୍ଯ୍ୟ'ଙ୍କ ସହ ସମ୍ପୃକ୍ତ । 'ସୂର୍ଯ୍ୟ' ଆଦିତ୍ୟ ମଣ୍ଡଳର ସର୍ବପ୍ରଧାନ ଦେବତା ଓ ଆଲୋକର ଶୁଭ୍ର ଦେବତା, ସର୍ବଦ୍ରଷ୍ଟା ରୂପେ ସ୍ୱୀକୃତ । ସାବିତ୍ରୀ ରୂପୀ ସୂର୍ଯ୍ୟ ହିରଣ୍ୟଗାତ୍ର, ଚେତନାର ଉଦ୍‌ବୁଦ୍ଧିଧାରୀ, ମାନବ ଚେତନାରେ ଦେବତ୍ୱ ପ୍ରତିଷ୍ଠାର ଘୋଷଣାକାରୀ ରୂପେ ସାବିତ୍ରୀ 'ଗାୟତ୍ରୀ' (ଋକ୍ ୩ . ୬୨ ୧୦) ମନ୍ତ୍ରର ଅଧିଷ୍ଠାତା ଦେବତା ରୂପେ ଭାରତୀୟ ମାନସର ଅତି ଅନ୍ତରଙ୍ଗ । ପୂଷନ୍ ବିବାହ-ଉତ୍ସବର ସାକ୍ଷୀ ଓ ବିପଦ ସମୟର ରକ୍ଷାକର୍ତ୍ତା ।

ସୂର୍ଯ୍ୟ ସହ ଆଲୋକ ସୂତ୍ରରେ ଉଷା ନିତ୍ୟ ସଂବୋଧିତା । ସଦାଲୋକିତା ଉଷା ସତ୍ୟର ଉନ୍‌ମେଷ ରୂପା । (୧୯) ସେ ସତ୍ୟର ସରଳ ପଥରେ ଗତି କରିଥାନ୍ତି ଓ ସୂର୍ଯ୍ୟ ତାଙ୍କର ପଥକୁ ଅନୁବର୍ତ୍ତନ କରନ୍ତି । ଗୋମତୀ, ଅଶ୍ୱାବତୀ, ବିଭାବରୀ, ଋତାବରୀ, ସୂନୃତାବରୀ ପ୍ରଭୃତି ପଦକରଣମାନ ଉଷାଙ୍କର ସତ୍ୟମୟୀ ଓ ଆଲୋକମୟୀ ରୂପସଂକେତ ରୂପେ ପ୍ରଯୁକ୍ତ । (୨୦) ଏହି ଦୃଷ୍ଟିରୁ ସତ୍ୟ-ବାକ୍‌ମୟୀ ସରସ୍ୱତୀଙ୍କ ସହ ମଧ୍ୟ ସେ ଅଭେଦରୂପା । ଉଷାଙ୍କ ସମ୍ପର୍କରେ ଦୃଶ୍ୟ ଉଦ୍ଦେଶ୍ୟରେ ଚକ୍ଷୁ ଓ ଉପଲବ୍‌ଧି ଅର୍ଥରେ 'କେତୁ' ଶବ୍ଦର ପ୍ରୟୋଗ ରହିଛି । ମନର ଆନନ୍ଦ ଦୟିନୀ ଉଜ୍ଜ୍ୱଳକାରିଣୀ ରୂପେ ଚନ୍ଦ୍ରରଥା, ପୁରାଣୀ ଦେବୀ, ଯୁବତୀ ଉଷାଙ୍କୁ "ମାତା ଦେବାନାଂ ଅଦିତେର ଅନିକମ୍" (୨୧) କହି ବେଦ ଦେବମାତା ଅଦିତିଙ୍କର ପରମ ଆଲୋକ ଓ ପରମଚେତନ ଶକ୍ତିରୂପା ବୋଲି ନିର୍ଣ୍ଣୟ କରିଛି । ଅଦିତି ନିର୍ବଂଧନର ସଙ୍କେତ ଓ ଅସୀମ ପ୍ରତୀକ; ଦେବ-ଆଦ୍ୟା ରୂପେ ସକଳ ଦିବ୍ୟଶକ୍ତିଙ୍କୁ ସମ୍ପ୍ରେରିତ କରନ୍ତି ଓ ସକଳ ବଂଧନ ଛେଦ କରନ୍ତି । ଦକ୍ଷିଣା, ସରମା ତାଙ୍କର ଆଲୋକ ଶକ୍ତି ।

ବେଦରେ ଅଶ୍ୱିନୀକୁମାରଦ୍ୱୟ ଓ ସୋମ ଜୀବନ ଘନ ଆନନ୍ଦ ରସ ସହ ଉଦ୍‌ବୋଧିତ । ସାଧାରଣ ଅର୍ଥରେ ମଦ୍ୟ ଓ ମଦ୍ୟ ଦେବତାରୂପେ ସୋମ ଗୃହୀତ ହେଲେ ବି ବୈଦିକ ରହସ୍ୟ ବିଗ୍ରହ ଏହାକୁ ଦିବ୍ୟାନନ୍ଦରୂପକ ପାନୀୟ (Mystic Wine) ଓ ତାର ଦେବତା ଚନ୍ଦ୍ର ରୂପେ ଗ୍ରହଣ କରିଛି । ଋକ୍ ୯ । ୮୩ । ୧ ଅନୁସାରେ ଯେ ନିଜକୁ ତପଃଶୁଚ କରିନାହିଁ ଓ ପବିତ୍ର ପ୍ରସ୍ତୁତ ହୋଇନାହିଁ, ଆତ୍ମାର ଏଇ ଶ୍ରେଷ୍ଠ ଐଶ୍ୱର୍ଯ୍ୟ ଆନନ୍ଦକୁ ସେ ଲାଭ କରିପାରିବ ନାହିଁ । ଅଗ୍ନିଦାହର ସଂଘଣାରେ ସିଦ୍ଧ ଓ ପରିପୁକ୍ତ ଘଟି ବିନା ଆନନ୍ଦକୁ ଧାରଣ କରିହୁଏ ନାହିଁ । ସତ୍ତ୍ୱର ଏହି ପ୍ରସ୍ତୁତିରେ ଯେଉଁ ଦିବ୍ୟଶକ୍ତି ସହାୟକ, ସେହି ଆନନ୍ଦ ରସର ଅଧିକାରୀ ଅଶ୍ୱିନୀକୁମାର ।

ବୈଦିକ 'ତ୍ରିମୂର୍ତ୍ତି' ଭାବନାକୁ ପାଶ୍ଚାତ୍ୟ ବିଶ୍ଳେଷଣ ବେଦ ପରବର୍ତ୍ତୀ ପୌରାଣିକ ବିକାଶ ରୂପେ ବିଗ୍ରହ କରୁଛି । ମାତ୍ର ବୈଦିକ ଦେବତାମାନଙ୍କର ପ୍ରାଧାନ୍ୟର ପରିମାପ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ମନ୍ତ୍ର ସଂଖ୍ୟାରୁ କଳନା କରିବା ନିର୍ଭୁଲ ପନ୍ଥା ନୁହେଁ । କାରଣ ବୈଦିକ ଋତ (ଯଜ୍ଞ-ଶୃଙ୍ଖଳା)ରେ

(୧୮) ଅଥର୍ବ ୪ । ୧୬ । ୨, ୩, ୪

(୧୯) "ଭଦ୍ରା ଋତଜାତ ସତ୍ୟାଃ" ଋ ୭ । ୭୫ । ୭—'ବାମଦେବ'

(୨୦) ଋକ୍ ୧ । ୧୧୩ । ୧୮

(୨୧) ଋକ ୧ । ୧୧୩ । ୧୯

Digitized by PPRACHIN, SOA

ସେମାନେ ପୂରଣ କରୁଥିବା କାର୍ଯ୍ୟର ଏକ ସାର୍ବକାଳିକ ପୁଣି ତାତ୍କାଳିକ ଗୁରୁତ୍ୱ ରହିଛି । ବିଷ୍ଣୁ, ରୁଦ୍ର, ବ୍ରହ୍ମଣସ୍ପତି (ପୌରାଣିକ ବିଷ୍ଣୁ, ଶିବ, ବ୍ରହ୍ମା) ବୈଦିକ କ୍ରିୟାର ମୂଳବନ୍ଧ ଓ ଶୃଙ୍ଖଳା ପ୍ରଦାନ କରିଥାନ୍ତି ଏବଂ ସମ୍ମୁଖ ଭାଗସ୍ଥ ଅଧିକ କ୍ରିୟା ତତ୍ପର ଅଗ୍ନି ମରୁତାଦି ଦିବ୍ୟ-ଶକ୍ତିମାନଙ୍କୁ ଅନ୍ତରାଳରୁ ପ୍ରୟୋଜନୀୟ ସାହାଯ୍ୟ ଯୋଗାଇ ଦିଅନ୍ତି ।

ବେଦରେ ବିଷ୍ଣୁ, ରୁଦ୍ର, ବ୍ରହ୍ମଣସ୍ପତିଙ୍କ ଶକ୍ତି ଏକାନ୍ତ କ୍ରିୟାଶୀଳ । ବୈଦିକ ବିଷ୍ଣୁ ବାସୁଦେବ । ପରମ ପ୍ରଶାନ୍ତ ସତ୍ୟକୁ ଧାରଣ କରି ସର୍ବଦା ସର୍ବତ୍ର ବିରାଜିତ। ଚେତନ ଓ ଅଚେତନ ତାଙ୍କଠାରେ ନିମଜ୍ଜିତ । ବ୍ରହ୍ମଣସ୍ପତି ଶବ୍ଦଦ୍ୱାରା ନିଶ୍ଚେତନର ଅଂଧକାର-ସମୁଦ୍ରରୁ ପ୍ରତ୍ୟକ୍ଷ ଜଗତ ଓ ଆଲୋକକୁ ଆବାହନ କରନ୍ତି ଓ ସଚେତନ ସୃଷ୍ଟିକୁ ତାହାର ଊର୍ଦ୍ଧ୍ୱତନ ଲକ୍ଷ୍ୟରେ ପହଞ୍ଚିବା ନିମିତ୍ତ ଦ୍ରୁତାନ୍ୱିତ କରନ୍ତି । ତାଙ୍କର ଏଇ ସୃଜନାତ୍ମକତା ଭିତରୁହିଁ ପରବର୍ତ୍ତୀ ଚେତନାରେ ବ୍ରହ୍ମାଂକର ରୂପୋଦୟ ହେଲା ।

ବ୍ରହ୍ମଣସ୍ପତିଙ୍କ ସୃଷ୍ଟିର ଊର୍ଦ୍ଧ୍ୱାୟିତ ଗତି ପାଇଁ ପ୍ରୟୋଜନୀୟ ଶକ୍ତି ରୁଦ୍ର ପ୍ରଦାନ କରନ୍ତି । ବେଦରେ ରୁଦ୍ର ଅମର୍ତ୍ତ୍ୟର ପରାକ୍ରମୀ ରୂପେ ସମ୍ବୋଧିତ ; ମାତ୍ର ମର୍ତ୍ତ୍ୟରେ ହିଁ ତାଙ୍କର କାର୍ଯ୍ୟର ଆରମ୍ଭ । ଯଜ୍ଞକ୍ରିୟା ବା ଚେତନାର ସବୁ ସ୍ତରର ଊର୍ଦ୍ଧ୍ୱାୟନ ପ୍ରକ୍ରିୟାକୁ ସେ ଫଳପ୍ରଦ କରନ୍ତି । ତାଙ୍କର ଶକ୍ତି ସତତ ସମସ୍ତ ବିରୋଧାତ୍ମକତାର ବିନାଶରତ । ସକଳ ବିଘ୍ନ-ଅପହୃଷ୍ଟି ଓ ଶତ୍ରୁଦଳନଦ୍ୱାରା ରୁଦ୍ର ଦେବତାମାନଙ୍କ ଭିତରେ ସର୍ବାପେକ୍ଷା ଭୟଂକର ଏବଂ ସେ ବୋଧେ ଏକମାତ୍ର ଦେବତା ଯିଏ ବୈଦିକ ଋଷିମାନସରେ ଭୀତି ସଂଚାର କରିପାରନ୍ତି । ଏ ରୁଦ୍ର-ରୂପ ହିବ୍ରୁ 'କେହୋଭା'ଙ୍କ ଦଣ୍ଡ ବିଧାନଦ୍ୱାରା ରୂପ ସହ ସାମଂଜସ୍ୟ ରକ୍ଷାକରେ । ଅଗ୍ନି ମର୍ତ୍ତ୍ୟରେ ଏହି ରୁଦ୍ର-ଶକ୍ତିର ସନ୍ତାନରୂପେ ହିଁ ଆବିର୍ଭୂତ । ଅଗ୍ନି ଓ ମରୁତ ରୁଦ୍ରପୁତ୍ର ଭାବେ ଆଲୋକ-ଅଭିମୁଖୀ ସତ୍ତାର ଅବିଦ୍ୟା ସହ ସଂଗ୍ରାମ-ଯାତ୍ରାରେ ଅଗ୍ରଣୀ ସେନାନାୟକ । ଏହି ଭୟଙ୍କର ଓ ପରାକ୍ରମୀ ରୁଦ୍ରଙ୍କର ଏକ ପ୍ରସନ୍ନ ପ୍ରଶାନ୍ତ ପରିଚୟ ମଧ୍ୟ ରହିଛି । ପାପର ସଂହାରକର୍ତ୍ତା ରୂପେ ସେ ଆତ୍ମାର ପାପ-ପୀଡ଼ା ଉପଶମକାରୀ । ସତ୍ତାର ସଂଗ୍ରାମୀ ଶକ୍ତିଟି ତାଙ୍କରି ଅବଦାନ, ପୁଣି ସଂଗ୍ରାମ ଶେଷର କ୍ଳାନ୍ତି ବିନୋଦନ କାଳରେ ଅନୁଭୂତ ଶାନ୍ତି ଆନନ୍ଦ ମଧ୍ୟ ତାଙ୍କର ଅନୁଗ୍ରହ ।

ରୁଦ୍ରଙ୍କର ଶକ୍ତି କ୍ରିୟାନ୍ୱିତ ହେବାପାଇଁ ସର୍ବଦା ବିଷ୍ଣୁ ହିଁ ଆବଶ୍ୟକୀୟ ଉପାଦାନର ବ୍ୟବସ୍ଥା କରନ୍ତି । ବିଷ୍ଣୁ ତିନୋଟି ପଦକ୍ଷେପରେ ତ୍ରିଦିବକୁ ଆଚ୍ଛାଦନ କରିଥିବା ବେଦରେ ବର୍ଣ୍ଣିତ । ଏ ତିନି ପଦକ୍ଷେପରେ ସେ ଭୁବନମାନଙ୍କୁ ପ୍ରତିଷ୍ଠା କରନ୍ତି, ସବୁଠାରେ ଉପସ୍ଥିତ ରହିଥାନ୍ତି ଏବଂ ସବୁସ୍ତରର ଦେବ-ଶକ୍ତି ଓ ଯଜ୍ଞକ୍ରିୟାକୁ ସୁବିଧା ପରିସର ଦାନ କରନ୍ତି । (ଇନ୍ଦ୍ର ବୃତ୍ର-ସଂହାର କାଳରେ ପ୍ରଥମେ ବିଷ୍ଣୁ ବନ୍ଦନା କରିଛନ୍ତି ।) ବିଷ୍ଣୁଙ୍କର ପରମପଦଟି ଶାନ୍ତିଆନନ୍ଦମୟ ତ୍ରିଦିବର ଶୀର୍ଷରେ, ଯାହାକୁ ଜ୍ଞାନୀମାନେ ଏକ ଉଜ୍ଜ୍ୱଳ ଦୃଶ୍ୟରୂପେ ବର୍ଣ୍ଣନା କରନ୍ତି ; ଏହାହିଁ ବୈଦିକ ସାଧନାର ଅନ୍ତିମ ଲକ୍ଷ୍ୟ । ଏହିଠାରେ ବୈଦିକ ବିଷ୍ଣୁ ପୌରାଣିକ ନାରାୟଣଙ୍କ ପରି (ପ୍ରେମ ଓ ସଂରକ୍ଷଣର ଦେବତା) ଆଦ୍ୟ ସ୍ରଷ୍ଟା ପୁରୁଷ 'ଦୀର୍ଘତମା' ଓ 'ଔଚଥ୍ୟ'ଙ୍କ ମଂତ୍ରରେ ସର୍ବବ୍ୟାପୀ ବିଷ୍ଣୁଙ୍କର ଏ ତିନିପଦକ୍ଷେପର ବଂଦନା ଓ ମର୍ତ୍ତ୍ୟ, ସ୍ୱର୍ଗ ଓ ତ୍ରିଧାତୁ ବା ପ୍ରକଳ୍ପ ରୂପେ ତ୍ରିଦିବ-ବର୍ଣ୍ଣନା ରହିଛି । ଏହା ହିଁ "ନାକସ୍ୟ ପୃଷ୍ଠ" (ଋକ୍ ୧/୧୨୫/୫.) ପରମପଦ ଓ ସର୍ବଦେବତାଂକର ପରମ ଅଧିଷ୍ଠାନ ରୂପେ ସୂଚିତ ।

ବିଷ୍ଣୁ ବ୍ୟାପକ ଗତିରୂପ, ଇଶୋପନିଷଦ ବର୍ଣ୍ଣିତ 'ସପର୍ଯ୍ୟଗାତ୍', ପୁଣି 'ଧେଧା ବିଚକ୍ରମାଣଃ' ଦ୍ରଷ୍ଟା, ଭାବକାର ଓ ରୂପକାର ) । ପରମପ୍ରଜ୍ଞା ଓ ଦିବ୍ୟଚିନ୍ମୟାନଂଦ, ଦିବ୍ୟ-ପ୍ରଭୃ ମନଶ୍ଚେତନା ଏବଂ

Digitized by PPRACHIN, SOA

ପାର୍ଥିକ ସଚେତନତା—ଏ ସବିଧ ପ୍ରକାଶ ତାଂକର ବିଭୂତି । ସକଳ ଗତି ଅତୀତ 'ପରମ ସତ୍' ତାଂକର ସେହି ତୃତୀୟ ବିଷ୍ଣୁପଦ ସଂସ୍ଥାପନ କରିହିଁ ନିଜର ଦିବ୍ୟାଧିକାରକୁ ଦୃଢଭାବେ ସଂସ୍ଥାପିତ କରଂତି ।

ଏହି ଉଗ୍ର ଦୃଢ଼ ଭୟଂକରତା ହିଁ ରୁଦ୍ର-ଶକ୍ତି । ଏହା ସେହି ପ୍ରବଳପ୍ରତାପୀ ଚୂଡ଼ାଗ୍ରସ୍ଥ ଅମିତବିକ୍ରମୀ ଗଂଭୀର ଓ ଗର୍ଜନଶୀଳ ପଶୁରାଜସିଂହ ସହ ଅଭେଦତ୍ୱ ରକ୍ଷାକରେ । ସତ୍ତ୍ୱର ପ୍ରାଣିକ ପ୍ରବୃତ୍ତି ସମୂହର (ପାଶବ) ନିୟନ୍ତ୍ରା, ଦୁରାରୋହ୍ୟ ହେଲେ ବି ଅଗମ୍ୟ ଚେତନାଶୀର୍ଷକୁ ଆରୋହଣ କରି ଚୂଡ଼ାଗ୍ରରେ ଅଭୂତ ବିକ୍ରମରେ ବିରାଜିତ ପୁରୁଷ-ସିଂହ ବିଷ୍ଣୁହିଁ ମାନସଭୂମିର ସର୍ବୋଚ୍ଚ ପୀଠରେ ବୈଦିକ ଉପଲବ୍ଧିରେ ସଂପୂଜିତ ।

ଏ ତ୍ରିକୋଣିୟାକ ସ୍ଥିତିରେ ବିଷ୍ଣୁଂକର ସର୍ବୋତ୍ତମ ପରିପ୍ରକାଶ ଆନନ୍ଦରୂପର । (୨୨) ଆନଂଦରୁ ସଂଭବ ଜାତ ଏବଂ ଆନଂଦରେ ଅବସ୍ଥିତ । ତେଣୁ ଅପଚୟ ହୁଅଂଥ ନାହିଁ । ଊର୍ଜ (ଶକ୍ତି) ପ୍ରିୟ ଓ ମାୟା (ଆନଂଦ, ପ୍ରେମ) ଏଇ ତ୍ରିକୋଣ ସୃଷ୍ଟିକୁ ରୂପଦେଇଥିବାରୁ ପରିପୂର୍ଣ୍ଣତା ଲାଭ ହେଲେ ଏଇ ତ୍ରିକୋଣ ହିଁ ଉପଲବ୍ଧ ହୁଅଂଥ ।

---

(୨୨) "ଯସ୍ୟ ତ୍ରୀପୂର୍ଣ୍ଣା ମଧୁନା ପଦାନ୍ୟକ୍ଷୀୟମାଣା ସ୍ୱଧୟା ମଦଂତି
ଯ ଉ ତ୍ରିଧାତୁ ପୃଥିବୀ ଉତ ଦ୍ୟାଂ/ଏକୋ ଦଧାର ଭୁବନାନି ବିଶ୍ୱା ।
ଋକ୍ ୧/୧୫୪/୪

Digitized by PPRACHIN, SOA

# ଉପନିଷଦରେ ରହସ୍ୟ ଅଭିବ୍ୟକ୍ତି

ଭାରତୀୟ ଚେତନାରେ ରହସ୍ୟ-ଜିଜ୍ଞାସାର ପ୍ରଥମ ପୂର୍ଣ୍ଣ ଅନୁଶୀଳନ ଉପନିଷଦରେ ବାଣୀରୂପ ଲାଭକରିଛି । ଉପନିଷଦର ମୂଳ ପ୍ରସଙ୍ଗଟି ଆତ୍ମ-ତତ୍ତ୍ୱ । 'ଆତ୍ମାନଂ ବିଦ୍ଧି'—ଆତ୍ମାକୁ ଜାଣ, ଏହା ବେଦାଂତର ସାଧନାସାର । ଉପନିଷଦର ପ୍ରତିପାଦନରେ ଏହି ଆତ୍ମତତ୍ତ୍ୱ ହିଁ ସର୍ବତତ୍ତ୍ୱ । ଅର୍ଥାତ୍ ବିଶ୍ୱ ଓ ବିଶ୍ୱାତୀତର ସକଳ ତତ୍ତ୍ୱର ମୂଳ ଆତ୍ମ-ତତ୍ତ୍ୱରେ ନିହିତ ।

ଉପନିଷଦୀୟ ଭାବଜଗତ ମାତ୍ର ଗୋଟିଏ ମୂଳସିଦ୍ଧାନ୍ତକୁ କେଂଦ୍ର କରି ଆବର୍ତ୍ତିତ । ତାହା ହେଲା ସବୁକିଛିର ଅଂତର୍ଗତ ଆତ୍ମା ପରମ ସତ୍ତ୍ୱ, ଏକ ଓ ଅଭିନ୍ନ । ସେହି 'ଐକ୍ୟ' ସକଳ ଜ୍ଞେୟ ଅଜ୍ଞେୟ ବୋଧ ଅବୋଧ ରହସ୍ୟର ଧାରଣ-ସୂତ୍ର । ଉପନିଷଦର ଏ ସିଦ୍ଧାଂତ ବହିର୍ମୁଖ ପ୍ରତ୍ୟକ୍ଷତା ଓ ଅଂତର୍ଗତ ଉପଲବ୍ଧିର ସତ୍ୟତା ଉପରେ ପ୍ରତିଷ୍ଠିତ । (୧) ମାନବର ଅଂତର୍ଚେତନା ଓ ବହିର୍ଜଗତ ସଂବଂଧରେ ଯାବତୀୟ ଅନ୍ୱେଷାର ଉତ୍ତର ଉପନିଷଦ ଦ୍ୱିମୁଖୀ ସ୍ୱରୂପରେ ଦେବାର ପ୍ରୟାସ କରିଛି । ଜୀବନର ଯେଉଁ ସତ୍ୟଗୁଡ଼ିକ ଦର୍ଶନର ଜିଜ୍ଞାସାକୁ ଉଦ୍ରିକ୍ତ କରିଥାଂତି ତାର ଆଂତରିକ ଉପଲବ୍ଧି ହିଁ ଉପନିଷଦରେ ଅନୁଶୀଳିତ । ଏହା ତେଣୁ କେବଳ ଅମୂର୍ତ୍ତ ଦର୍ଶନ-ବିଗ୍ରହ ନୁହେଁ, କେବଳ ଉପଲବ୍ଧି ନୁହେଁ, ବରଂ ମୂର୍ତ୍ତ ଜୀବନାନୁଭବ ରୂପେ ଋଷି ପ୍ରତ୍ୟକ୍ଷିତ ବିଶ୍ୱରହସ୍ୟର ବାଙ୍ମୟ ପ୍ରକାଶ ଏବଂ ମାନବୀୟ ଅନ୍ୱେଷାର ପରମ ଅଧ୍ୟାତ୍ମ-ଉତ୍କର୍ଷ ରୂପେ ସାଧନୀୟ ବୋଲି ନିର୍ଦ୍ଦେଶିତ ।

ଜୀବନକୁ କେଂଦ୍ର କରି ଜନ୍ମରୁ ମୃତ୍ୟୁ ଓ ମୃତ୍ୟୁରୁ ଅମରତ୍ୱ ପର୍ଯ୍ୟନ୍ତ ଏ ସାଧନାର ବିସ୍ତାରଭୂମି । ଶୂନ୍ୟରୁ ଅସୀମର ଯାତ୍ରାପଥରେ, ବିନ୍ଦୁରୁ ବଳୟର ବିସ୍ତାର କ୍ଷେତ୍ରରେ ଜୀବନର ଅନନ୍ତ ରହସ୍ୟ ମାନବଚେତନାକୁ ସଂଭାବିତ ଓ ଅସଂଭବ ଯେତେ ଭାବରେ କରିପାରନ୍ତି, ଉପନିଷଦ ସେଇ ରହସ୍ୟ-ଭେଦର ତୀରଂଦାଜ ରୂପେ ପ୍ରଯୁକ୍ତ । (୨)

ଈଶ୍ୱର ବିଶ୍ୱ ଓ ଜୀବର ପାରସ୍ପରିକ ସଂପର୍କର ରହସ୍ୟ ନିର୍ଦ୍ଧାରଣ ସମଗ୍ର ଉପନିଷଦର ଅଭିବ୍ୟକ୍ତି-ପ୍ରୟାସ । ବ୍ୟକ୍ତିର ନିଜ ସତ୍ତ୍ୱ, ବ୍ୟକ୍ତିଗତ ଭାବରେ ଅପର ବ୍ୟକ୍ତି ସହ, ସାମାଜିକ ଓ ସାମଗ୍ରିକ ଭାବେ

---

(1) "The real which is at the heart of the universe is reflected in the infinite depths of the self. Brahman, the ultimate as discovered objectively, is Atman, the ultimate as discovered introspectively."

'The Call of the Upanishads'—(Rohit Mehta) P—5 (Zero & Infinity)

(2) "The Upanishad seers have shown—"The most ultimate and immediate light upon the secret of existence."

Deussen—quoted by N. Chandrakanta—A Critical Survey of Indian Philosophy. —P 18

Digitized by PPRACHIN, SOA

ବିଶ୍ୱସହ ଏବଂ ଶେଷରେ ବିଶ୍ୱାତୀତ ସହ ସମ୍ପର୍କ ନିର୍ଦ୍ଧାରଣ ଉପନିଷଦର ଏକମାତ୍ର ଆଭିମୁଖ୍ୟ । ଆତ୍ମାହିଁ ଏ ସବୁକିଛି । ଏହି ପରମ ସତ୍ୟର ଔପନିଷଦିକ ପ୍ରତିପାଦକଗୁଡ଼ିକ ହେଲେ—

୧ । 'ପ୍ରଜ୍ଞାନଂ ବ୍ରହ୍ମ' (ବ୍ରହ୍ମ ଜ୍ଞାନମୟ ବା ଚିନ୍ମୟ)—ଐତରେୟ

୨ । 'ତତ୍ ତ୍ୱମ୍ ଅସି' (ତୁମେ ସେହି)—ଛାଂଦୋଗ୍ୟ

୩ । 'ଅୟମାତ୍ମା ବ୍ରହ୍ମ' (ଏହି ଆତ୍ମା ବ୍ରହ୍ମ)—ମାଣ୍ଡୁକ୍ୟ

୪ । 'ଅହଂ ବ୍ରହ୍ମାସ୍ମି' (ମୁଁ ହିଁ ବ୍ରହ୍ମ)—ବୃହଦାରଣ୍ୟକ

୫ । 'ସର୍ବଂଖଲ୍ୱିଦଂ ବ୍ରହ୍ମ' ( ଏ ସବୁ କିଛି ବ୍ରହ୍ମ)—ଛାଂଦୋଗ୍ୟ

ଆତ୍ମଚୈତନ୍ୟ ଓ ବିଶ୍ୱଚୈତନ୍ୟ ଏକ ଓ ଅଭିନ୍ନ ହେଲେ ବି ଦେଶକାଳନିର୍ବାଧ ବିଶ୍ୱଚୈତନ୍ୟର ସ୍ଥାନ ଓ କାଳର ନିର୍ଦ୍ଦିଷ୍ଟତା ଭିତରେ ରୂପପ୍ରକାଶ ହିଁ ବ୍ୟକ୍ତିଚେତନା ରୂପେ ଆବିର୍ଭୂତ । ଏ ଖଣ୍ଡ-ବୋଧର ଉଲ୍ଲଂଘନରେ ସେ ଐକ୍ୟ ଓ ଅଭିନ୍ନତାର ଉପଲବ୍‌ଧି-ସମ୍ଭବ । (୩) ବିଭିନ୍ନ ଉପନିଷଦରେ ଏଇ ମୂଳ ଭାବଚେତନାଟି ବିଭିନ୍ନ ଅଭିବ୍ୟକ୍ତିର ପରେ ଅନୁଶୀଳିତ ହୋଇଛି ।

ଈଶୋପନିଷଦରେ ବର୍ଣ୍ଣିତ ଅଛି, ଈଶ୍ୱର ସବୁକିଛି ମୂଳତଃ ଏକ ଓ ଦିବ୍ୟ-ସ୍ୱରୂପ । ସେ ଏକ-ଚେତନା ସହ ବସ୍ତୁ-ଭାବର ସଂଗତି ସ୍ଥାପନ ଜୀବନର ସ୍ୱତଃପ୍ରବଣତା । ( ) ଈଶାବାସ୍ୟମିଦଂସର୍ବମ୍' ଏହାହିଁ ଉପନିଷଦର ପ୍ରାରମ୍ଭ ଉକ୍ତି ଓ ପରିବ୍ୟାପ୍ତ ଚିନ୍ତାଧାରା ଯାହା ପରବର୍ତ୍ତୀ ସମଗ୍ର ଭାରତୀୟ ଦର୍ଶନର ମୂଳପ୍ରେରଣା ରୂପେ ସ୍ୱୀକୃତ ।

'କେନୋପନିଷଦ'ର ବ୍ରହ୍ମଜିଜ୍ଞାସା ବ୍ରହ୍ମକୁ ଆଦ୍ୟାସତ୍ତ୍ୱ, ଶାଶ୍ୱତ ଜ୍ଞାତା ଓ ସାକ୍ଷୀରୂପେ ପ୍ରତିପାଦନ କରିଛି । ସବୁକିଛି ବ୍ରହ୍ମ-କୃତ ଓ ବ୍ରହ୍ମାନୁଭୂତ, ଏହା ଭିତରେ ଆତ୍ମାର ବ୍ରହ୍ମ ସହ ଅଭେଦାତ୍ମକତାର ସଙ୍କେତ ପ୍ରଦାନ କରାଯାଇଛି । (୫)

କଠ ଉପନିଷଦ ଆତ୍ମା ଓ ବ୍ରହ୍ମର ସ୍ୱରୂପ ବିଶ୍ଳେଷଣ ଏବଂ ଜନ୍ମ, ମୃତ୍ୟୁ ଓ ମରଣାତୀତର ରହସ୍ୟ-ଉଦ୍‌ଘାଟନର କାବ୍ୟିକ ଅଭିବ୍ୟକ୍ତି । ମୃତ୍ୟୁ ରହସ୍ୟର ଉଦ୍‌ଗାତା ଯମ ଓ ଜୀବନ ରହସ୍ୟର ଶାଶ୍ୱତ ଜିଜ୍ଞାସୁ ନଚିକେତା ଏହି ମହାନ୍ କାବ୍ୟୋକ୍ତିର ସଂଳାପକାର ରୂପେ ଋଷିବାଣୀରେ ଅବତୀର୍ଣ୍ଣ । ଆତ୍ମ-ବ୍ରହ୍ମରୂପ ପରମ ସତ୍ୟ ଅବଧାରଣ ଓ ଜୀବନ-ମୃତ୍ୟୁର ରହସ୍ୟଭେଦ ମାନବୀୟ ବୋଧି-ଅତୀତ ଏକ ସ୍ୱତଃ ପ୍ରଜ୍ଞାଶକ୍ତିରେ ହିଁ ସଂଭବ, ଏହା ସେଥିରେ ନିର୍ଦ୍ଦେଶିତ ।

---

(3) Logically. therefore the universal consciousness and the individual consciousness are the same, except that the individual consciousness has to get over the time-space barrier to attain that one-ness. "

—The Cyclic Universe— P-199

(୪) "ସ ପର୍ଯଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ କବିର୍ମନୀଷୀ ପରିଭୂଃ ସ୍ୱୟଂଭୂର୍ଯାଥାତଥ୍ୟତୋଽର୍ଥାନ୍ ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ଈଶ ୧-୮

(୫) "ସା ବ୍ରହ୍ମେତି ହୋବାଚ ବ୍ରହ୍ମଣୋ ବା ଏତଦ୍‌ବିଜୟେ ମହୀୟଧ୍ୱମିତି ତତୋ ହୈବ ବିଦାଂଚକାର ବ୍ରହ୍ମେତି । କେ ନୋ-୪/୧

Digitized by PPRACHIN, SOA

ପ୍ରଶ୍ନ ଉପନିଷଦ ବ୍ରହ୍ମ ଓ ବ୍ରହ୍ମାଣ୍ଡର କାର୍ଯ୍ୟକାରୀ ରୂପ ବିଶ୍ଳେଷଣର ପ୍ରଶ୍ନୋତ୍ତରମୂଳକ ଅନୁଶୀଳନ ।

ମୁଣ୍ଡକରେ ପରାବିଦ୍ୟା ଓ ବ୍ୟାବହାରିକ ବା ଅପରା ବିଦ୍ୟାର ପ୍ରାର୍ଥକ୍ୟ ସୂଚିତ । ପ୍ରସିଦ୍ଧ 'ପକ୍ଷୀ' ପ୍ରତୀକ'(୬)ରେ ଜୀବର ଏଇ ଦୁଇରୂପ ଜ୍ଞାନ ଚେତନାର ପରିଚୟ ପ୍ରଦତ୍ତ । ଭୋକ୍ତା-ପକ୍ଷୀଟି ବ୍ୟାବହାରିକ ବିଦ୍ୟା ସଂପୃକ୍ତ, ବ୍ୟାବହାରିକ ଜୀବନର ସୁଖଦୁଃଖ ଅନୁଭବୀ । ଅପର ପକ୍ଷୀଟି ସୁଖଦୁଃଖନିର୍ଲିପ୍ତ, ସୁଜ୍ଞାନୀ, ଦ୍ରଷ୍ଟାପକ୍ଷୀ ।

ମାଣ୍ଡୁକ୍ୟ ପରମ ସତ୍‌କୁ ପରମଜ୍ଞାନ ରୂପେ ପ୍ରତିପାଦନ କରିଛି । ଆତ୍ମାକୁ ସେହି ପରମ ଚିନ୍ମୟ ଜ୍ଞାନ-ବ୍ରହ୍ମ ବୋଲି ନିର୍ଦ୍ଦେଶ କରିଛି । ଭାରତୀୟ ଅଦ୍ୱୈତଦର୍ଶନ ମୁଖ୍ୟତଃ ଏହି ଉପନିଷଦର ସିଦ୍ଧାନ୍ତ ଓ ମୁଣ୍ଡକର ନଦୀର ସମୁଦ୍ର-ସଂଗମ ଭାବ ଚେତନା (୭) ଉପରେ ବିକାଶ ଏବଂ ବିସ୍ତାର ଲାଭକରିଛି ।

ତୈତ୍ତିରୀୟ ଉପନିଷଦ ବ୍ରହ୍ମ ଓ ଆତ୍ମାର ଏ ଅଭେଦ୍ୟ-ଉପଲବ୍‌ଧି କ୍ଷେତ୍ରରେ ବିଶ୍ୱଚୈତନ୍ୟର ମଧ୍ୟବର୍ତ୍ତୀ ପଞ୍ଚଧାପର୍ଯ୍ୟାୟ ବା ସ୍ତର-ଗୁଡ଼ିକର ବର୍ଣ୍ଣନା କରନ୍ତି । ସ୍ତରର ଏ ପଞ୍ଚକୋଷ (୮) ଆତ୍ମାର ମୂଳ ବ୍ରହ୍ମ-ରୂପର ସ୍ପଷ୍ଟ ଅଭିବ୍ୟକ୍ତି ପଥରେ କୁହେଳି ବା ଆବରଣ ସଦୃଶ ଅନ୍ତରୀୟ ସୃଷ୍ଟିକାରୀ ବୋଲି ନିର୍ଦ୍ଦେଶିତ । ଭାରତୀୟ ଦର୍ଶନର 'ଅଭିବ୍ୟକ୍ତିବାଦ' ଓ 'ଜ୍ଞେୟ-ତତ୍ତ୍ୱ' ଏହି ସିଦ୍ଧାନ୍ତ ଉପରେ ଆଧାରିତ । ଏହି 'କୋଷ' ଭାବଚେତନା ହିଁ ଆତ୍ମାର ଶାଶ୍ୱତୋପଲବ୍‌ଧିମୂଳକ ଯାବତୀୟ ରହସ୍ୟାତ୍ମକତାକୁ ଜୀବନଚର୍ଯ୍ୟା ରୂପେ ସଂଭାବ୍ୟ ଓ ସାଧନୀୟ ପ୍ରତିପାଦନ କରନ୍ତି ।

ପରବର୍ତ୍ତୀ ତ୍ରିମୂର୍ତ୍ତିବାଦ ପରମ ଉପାସ୍ୟ ରୂପେ ଆଦ୍ୟମୂଳ ବ୍ରହ୍ମଙ୍କୁ ଗ୍ରହଣକରି ତାଙ୍କର ତ୍ରିସ୍ୟାତ୍ମକ ଅଭିବ୍ୟକ୍ତ ରୂପେ ବ୍ରହ୍ମା, ବିଷ୍ଣୁ, ରୁଦ୍ରଙ୍କୁ ସ୍ୱୀକୃତି ଦେବାର ସଂକେତ ଏଥିରେ ପ୍ରଚ୍ଛନ୍ନ । 'ଓଁ' ପ୍ରତୀକରେ ଅକ୍ଷୟ ଓ ଏକ ଆଦ୍ୟ ସୃଷ୍ଟି ପ୍ରୟାସ ରୂପେ ବ୍ରହ୍ମ-ଆତ୍ମା ସଂପର୍କ ନିର୍ଣ୍ଣିତ ।

ଐତରେୟ ଉପନିଷଦ ବ୍ରହ୍ମଙ୍କୁ ପୂର୍ଣ୍ଣସଚ୍ଚିଦାନନ୍ଦ ରୂପେ ବିବକ୍ଷାକରି ବିଶ୍ୱକୁ ଏକ ଅଧ୍ୟାତ୍ମରୂପରେଖ ଦାନକରିଛି ଏବଂ ସମଗ୍ର ବିଶ୍ୱକୁ (ସ୍ଥାବରଜଂଗମ) ଚିନ୍ମୟ ବୋଲି ଗ୍ରହଣ କରିଛି । ସର୍ବାନ୍ତର୍ଗତ ଏହି ଚିନ୍ମୟତା ସଂପର୍କରେ ବ୍ୟକ୍ତିମାନସର ସଚେତନତା ହିଁ ଆତ୍ମୋପଲବ୍‌ଧି / ବିଶ୍ୱୋପଲବ୍‌ଧି / ବ୍ରହ୍ମୋପ-ଲବ୍‌ଧି ରୂପେ ସ୍ୱୀକୃତ ।

ଛାନ୍ଦୋଗ୍ୟ ପରମ ସତ୍‌ର ପ୍ରକୃତ ସ୍ୱରୂପ ଓ ଆନୁସଙ୍ଗିକ ରୂପର ବିଚାର କରିଛି ଏବଂ ନାମ-ରୂପ ସଂକେତକୁ ପରମ ସତ୍‌ର ଦେଶକାଳାବଦ୍ଧ କ୍ଷଣସୃଷ୍ଟି ରୂପେ ପ୍ରତିପାଦନ କରିଛି । ଶ୍ୱେତାଶ୍ୱତର ଏଇ ଭାବ ଚେତନାର ଅବଲଂବନରେ ପ୍ରାତ୍ୟହିକ ଜଗତକୁ 'ମାୟା' ବୋଲି ନିର୍ଦ୍ଦେଶ କରିଛି ଯାହା ପରବର୍ତ୍ତୀ ଭାରତୀୟ ଅଧ୍ୟାତ୍ମ ଜିଜ୍ଞାସାକୁ ଗଭୀରଭାବେ ପ୍ରଭାବିତ କରିଛି ।

କର୍ମ ସହ ମୁକ୍ତିର ସଂପର୍କକୁ ନିର୍ଦ୍ଧାରଣ କରି ବୃହଦାରଣ୍ୟକ ଆତ୍ମସାକ୍ଷାତ୍‌କାର ସାଧନାକୁ ହିଁ ଜୀବନର ପରମ ଓ ଏକମାତ୍ର ଶ୍ରେୟ ରୂପେ ସାବ୍ୟସ୍ତ କରିଛି । 'ସତ୍ୟସ୍ୟ ସତ୍ୟମ୍' ହେଉଛି ଏହି

(୬) 'ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା'.......ମଣ୍ଡଳ ୩/୧।୧

(୭) 'ଯଥା ନଦ୍ୟଃ ସ୍ୟନ୍ଦମାନା...ମୁଣ୍ଡକ ୩/୨।୮

(୮) 'ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ, ଆନନ୍ଦମୟ'

Digitized by PPRACHIN, SOA

ଆତ୍ମା/ବ୍ରହ୍ମ । 'ଅହଂ ବ୍ରହ୍ମାସ୍ମି'ର ଦୃପ୍ତ ପ୍ରତିଷ୍ଠା ସ୍ୱରରେ ବ୍ୟକ୍ତିର ଦୈବତ ଅଧିକାର, ସାଧନା-ସାମର୍ଥ୍ୟ ଓ ସାର୍ଥକତାର ସମ୍ଭାବନା ସାବ୍ୟସ୍ତ । ସ୍ମରଣୀୟ, ଏ ବ୍ୟକ୍ତିସାଧନା ଜାତି, ଧର୍ମ, ବର୍ଣ୍ଣ, ଗୋଷ୍ଠୀ ଓ ସ୍ଥାନକାଳ ନିରପେକ୍ଷ ମାନବ-ସତ୍ତାର । ଉପନିଷଦର ସାଧନା ଏଇ ଦୃଷ୍ଟିରୁହିଁ ବ୍ୟକ୍ତି ସାଧନା, ରହସ୍ୟବାଦୀର ଆତ୍ମସାଧନା ଯାହାର ବିସ୍ତାର ପ୍ରୟାସ ବିଶ୍ୱ ମାଧ୍ୟମରେ ବିଶ୍ୱାତୀତକୁ ।

ଏହି ରହସ୍ୟାତ୍ମିକତା ହିଁ ଉପନିଷଦକୁ ନୀତିଶାସ୍ତ୍ରମୂଳକ 'ସ୍ମୃତି' ପର୍ଯ୍ୟାୟଭୁକ୍ତ ନକରି ବେଦ ସଦୃଶ 'ଶ୍ରୁତି' ର ସ୍ତରରେ ଉପସ୍ଥାପିତ କରିଛି । ମାନନୀୟ ବିଶ୍ୱର ସମ୍ଭୂତ ଆଗ୍ରହ ନିର୍ଦ୍ଦେଶଠାରୁ ଭିନ୍ନ ଏହି ସତ୍ୟ-ଶ୍ରବଣାତ୍ମକ ଜ୍ଞାନର ମାର୍ଗ ସଂକେତ ସାର୍ବଜନୀନ, ସର୍ବୋପଲଭ୍ୟ ଜୀବନ ଜିଜ୍ଞାସାର ସମାଧାନ ପ୍ରୟାସ କରିଛି । (୯) ପ୍ରାଚ୍ୟ ଓ ପାଶ୍ଚାତ୍ୟର ଭାବଜଗତ ବାରଂବାର ଏଇ ରହସ୍ୟ ସଙ୍କେତର ଆକର୍ଷଣରେ ଉପନିଷଦର ସମୀପସ୍ଥ ହୋଇଛି ।

ଉପନିଷଦରେ ଗୁରୁବାଦର ସ୍ୱୀକୃତି ରହିଛି । ଏହାର ଚମତ୍କାରିତା ଏଇଥିପାଇଁ ସ୍ୱୀକୃତ ଯେ ଉପନିଷଦରେ ଆତ୍ମତତ୍ତ୍ୱ ଅନିର୍ବଚନୀୟ ବୋଲି ଗୃହୀତ । ଯିଏ 'ନାନ୍ତଃ ପ୍ରଜ୍ଞଃ ନ ବହିଃ ପ୍ରଜ୍ଞଃ' (୧୦) ରୂପେ ଉଦ୍‌ଘୋଷିତ, ଶାସ୍ତ୍ର ପ୍ରବଚନ ଯାହାକୁ ଉଚ୍ଚାରଣ କରିପାରନ୍ତି ନାହିଁ ଯିଏ, 'ଦୂରାତ୍ ଦୂର', ସୂକ୍ଷ୍ମାତ୍ ସୂକ୍ଷ୍ମ ହୋଇ ହୃଦୟ-ଗୁହାରେ ସଂଗୁପ୍ତ, (୧୧) ଆଲୋକ ଯାହାକୁ ଦେଖିପାରେ ନାହିଁ, ଧ୍ୱନି ଯାହାକୁ ଶୁଣିପାରେନାହିଁ, ଅଥଚ ଯାହା 'ଶ୍ରୋତସ୍ୟ ଶ୍ରୋତଂ ମନସୋ ମନଃ' (୧୨), ଚକ୍ଷୁ, କର୍ଣ୍ଣ, ବାଗ୍, ମନ ଯାହାର ରହସ୍ୟ ଭେଦ କରିପାରନ୍ତିନାହିଁ, ଅଥଚ ସେମାନଂକ ମଧ୍ୟଦେଇ ଯିଏ ସବୁକିଛିକୁ ଅଭିଗମନ କରେ, ସେଇ ବ୍ରହ୍ମରୂପୀ ଆତ୍ମା ସଂବଂଧରେ ଗୁରୁ କି ଶିକ୍ଷା ଦେଇପାରଂତେ ? ଉପନିଷଦ ଗୁରୁଙ୍କର ଅସହାୟତାକୁ ଏତେ ସ୍ପଷ୍ଟ କରିଦେବା ଭିତରେ ଅତି ରହସ୍ୟମୟ ଭାବରେ ଗୁରୁବାଦର ଅପରିହାର୍ଯ୍ୟତାକୁ ସଂକେତିତ କରିଦେଇଛି । ଆତ୍ମାନୁଭବର ରହସ୍ୟପଥରେ ଗୁରୁ ପଥଦ୍ରଷ୍ଟା ନୁହଂତି, ଆଲୋକବାହୀ ନୁହଂତି, ବରଂ ଆଲୋକ ରାଜ୍ୟର ପ୍ରତ୍ୟୟଦାତା, ପଥ ରହସ୍ୟର ସଂଧାନଦାତା । ଆଲୋକ ରାଜ୍ୟକୁ ଯାତ୍ରାମାର୍ଗରେ ଚେତନାର ଅଂଧାର-ପ୍ରଦେଶ ସଂପର୍କରେ ସେହିଁ ସୂଚନା ଦେଇଥାଂତି ଓ ରକ୍ଷାର ଉପାୟ ନିର୍ଦ୍ଦେଶ କରଂତି । ଆଲୋକ ଅଭିମୁଖେ ଯାତ୍ରାର ନିଃସଂଗ ଯାତ୍ରାରେ ଅନ୍ଧାରକୁ ସ୍ପଷ୍ଟ ଦେଖାଇ ଦେବାହିଁ ଗୁରୁଶିକ୍ଷା, ସେ ଅଂଧକାର ଅତିକ୍ରମ ଶିଷ୍ୟର ଦାୟିତ୍ୱ ।

---

9.—For the historian, however, who pursues the history of human thought, the upnishads have a yet for greater significance. From the mystical doctrines of the Upanishads one current of thought may be traced to the mysticism of the Persian Sufism, to the mystic-theosophical logus-doctrine of fhe New-Platonics and the Alexandrian Christians down to the Chrisiaan mystics Eckhart and Tauler and finally the philosophy of the great German mystic of the 19th Century Schopenhauer"

Winternitz:—9t.'The vedic Age' (B. V. Pub-) P-476.

(୧୦) ମାଣ୍ଡୁକ୍ୟ ୭

(୧୧) ମୁଣ୍ଡକ ୫/୧/୭

(୧୨) କେନୋପନିଷଦ ୧/୨

Digitized by PPRACHIN, SOA

ସତ୍ୟ ଲାଭ ଏକାନ୍ତ ଭାବରେ ଆତ୍ମସାଧନାର ବ୍ୟାପାର, ଆତ୍ମ ଶକ୍ତି ବିନା ଆତ୍ମ-ଜ୍ଞାନର ଲାଭର ଉପାୟ ନାହିଁ—ଗୁରୁ ଏହି ପ୍ରବଚନର ଉଦ୍‌ଗାତା ।

ଉପନିଷଦ ଅମୂର୍ତ୍ତ ଦାର୍ଶନିକ-ଚିନ୍ତାବିଳାସ ନୁହେଁ । ଆଧ୍ୟାତ୍ମିକତା ଶିକ୍ଷା ଦିଏନାହିଁ । ବ୍ୟକ୍ତିଗତ ସାଧନାରେ ପ୍ରାପ୍ତ ହୋଇଥିବା ଆର୍ଷ-ଉପଲବ୍‌ଧିର ଜ୍ଞାନ-ଦୀପ୍ତ-ଶିଖର ସଂବାଦକୁ ଏହା ଉପସ୍ଥାପିତ କରେ । ବ୍ୟକ୍ତି କେବଳ ଚେତନାର ଶିଖରସ୍ଥ-ସଂବାଦ ଶୁଣେନାହିଁ, ଊର୍ଦ୍ଧ୍ୱାରୋହଣର ମାର୍ଗ ସଂକେତ ମଧ୍ୟ ଲାଭକରେ । ଅଜ୍ଞେୟ-ଗହ୍ୱର ସମ୍ମୁଖରେ ଠିଆ କରାଇ ଦେଇ, ସେ ଅତଳତାରେ ଲୁକ୍‌କାୟିତ ରହସ୍ୟକୁ ଆବିଷ୍କାର କରିବାକୁ ହେବ ବୋଲି କହି ଗୁରୁ ସେ ଅନ୍ଧାର ଭିତରକୁ ନିର୍ଭୀକ ଲମ୍ଫ ଦେବା-ପାଇଁ ଶିଷ୍ୟକୁ ଆହ୍ୱାନ କରଂନ୍ତି । କାରଣ ବଳହୀନର-ଆତ୍ମଜ୍ଞାନ ଲଭ୍ୟ ନୁହେଁ—'ନାୟମାତ୍ମା ବଳ-ହୀନେନ ଲଭ୍ୟ' । ତୃଷ୍ଣର ଅଧ୍ୟାତ୍ମ ସାଧନାରେ ସେଥିପାଇଁ ଗୁରୁ-ପ୍ରବଚନାରେ ଭୂମିକାଟି ଏତେ ବଳବତ୍ତର ଭାବେ ସ୍ୱୀକୃତ ।

ଏଇ ଆତ୍ମା ଜୀବ ସ୍ୱରୂପରେ ଯେତେ ଖଣ୍ଡ ବା ଅଂଶଗତରୂପେ ଉପଲଭ୍ୟ ହେଲେ ମଧ୍ୟ ବ୍ରହ୍ମ ସ୍ୱରୂପରେ ଯେ ନିତ୍ୟପୂର୍ଣ୍ଣ, ଏହାହିଁ ଉପନିଷଦର ଗୁରୁତ୍ୱପୂର୍ଣ୍ଣ ରହସ୍ୟାଭିବ୍ୟକ୍ତି । ଶୁକ୍ଲଯଜୁଃ ଭାବାନୁସୃତ ପୂର୍ଣମିଦଃ ଆତ୍ମାର ଅବିନାଶିତ୍ୱ ସହ ବ୍ରହ୍ମ ଓ ସୃଷ୍ଟିର ପାରସ୍ପରିକ ଅଭେଦତ୍ୱ ପ୍ରତିପାଦନ କରିଥାଏ । ଉପନିଷଦରେ ରହସ୍ୟବାଦୀ ଅଭିବ୍ୟକ୍ତି ବିରୋଧ ଚେତନାତ୍ମକତା ଓ ବିରୋଧାଭାସ ଉଭୟ ଉପାଦାନକୁ ଆଶ୍ରୟ କରିଛି । ପ୍ରତୀକ ନିର୍ବାଚନରେ ଉପନିଷଦୀୟ ମାନସର ଭାବସ୍ୱଚ୍ଛନ୍ଦତା ଓ ରସପ୍ରାଣତା ମନୋଜ୍ଞ କଳାସିଦ୍ଧି ଲାଭକରିଛି ।

ବିରୋଧାତ୍ମକ ଚେତନାର ଅଭିବ୍ୟକ୍ତି ରୂପେ ଭାରତୀୟ ମାନସରେ ନିତ୍ୟ ଜାଗ୍ରତ ବାଣୀଗୁଡ଼ିକ "ତେନ ତ୍ୟକ୍ତେନ ଭୁଂଜୀଥା (ଈଶ) "ତଦେଜତି, ନୈଜତି" (ଈଶ) "ନାହଂ ମନ୍ୟେ ସୁବେଦେତି" (ଠିକ୍ ଜାଣିଚି ବୋଲି ଭାବୁନାହିଁ । ଜାଣୁଛି ଏହା ମୋର ଅଜଣାନୁହେଁ—କେନ)" 'ତ୍ୱଂ ସ୍ତ୍ରୀ ତ୍ୱଂ ପୁନମାନସିତ୍ୱ କୁମାର ଉତବ୍ୱାକୁମାରୀ (ତୁମେ ସ୍ତ୍ରୀ, ତୁମେ ପୁରୁଷ, ତୁମେ କୁମାର, ତୁମେ କୁମାରୀ—ଶ୍ୱେତାଶ୍ୱତର)—ବାଣୀମାନ ଭାଷ୍ୟ ଓ ଭାବଗତ ବିରୋଧାତ୍ମକତା ସହ ସ୍ୱତଃ ଜଡ଼ିତ । ରହସ୍ୟୋପଲବ୍‌ଧିର ପ୍ରକାଶଗତ ଏହି ଭାଷା-ଅକ୍ଷମତାକୁ ଉପନିଷଦ ପ୍ରତୀକାତ୍ମକତାରେ ପୂର୍ଣ୍ଣ ସଫଳ ବିନିଯୋଗ କରିଛି । ବ୍ରହ୍ମ ଆବରଣକୁ ହିରଣ୍ମୟକୋଷ, ବ୍ରହ୍ମ ଚେତନାକୁ ସମୁଦ୍ର, ଜୀବନକୁ ନଦୀ, ଆତ୍ମା-ପରମାତ୍ମାଙ୍କ ସଂପର୍କରେ ସୁପର୍ଣ ପକ୍ଷୀ ଯୁଗଳ, ଅଜ୍ଞାନତାକୁ ଅନ୍ଧକାର ଓ ଜ୍ଞାନକୁ ଅମରତ୍ୱ, ଆନନ୍ଦ ଏବଂ ଆଲୋକ ପ୍ରତୀକରେ ରୂପଦାନର ପରଂପରା ଭାରତୀୟ ରହସ୍ୟବାଦୀ ଯୁଗଧାରାରେ ବାରଂବାର ଆବର୍ତ୍ତିତ । ଗୁହାନ୍ଧକାର ସ୍ଥିତ ଉଜ୍ଜ୍ୱଳ ପୁରୁଷ ଆତ୍ମାଂକ ରାଜ୍ୟରେ ଯେ ସୂର୍ଯ୍ୟପ୍ରଭାହୀନ, ଚନ୍ଦ୍ରତାରକା କ୍ଷୀଣ, ବିଦ୍ୟୁତ୍ ନୀରବ, (୧୩) ସେହି ଜ୍ୟୋତିଧାମର ଅମୃତ ଆନନ୍ଦ ପାଇଁ ବାହ୍ୟ-ଚେତନାସକ୍ତ ଦୁଃଖପୀଡ଼ିତ ସତ୍ତାର ବ୍ୟାକୁଳ ଆହ୍ୱାନ ଉପନିଷଦ କଣ୍ଠରୁ ନିତ୍ୟକାଳ ପାଇଁ ସମୁଦ୍‌ଗତ ହୋଇଛି, "ତମସୋ ମା ଜ୍ୟୋତିର୍ଗମୟ" (୧୪)—'ମୋତେ ମୃତ୍ୟୁରୁ ଅମୃତ-ରାଜ୍ୟକୁ ଘେନିଯାଅ ।'

---

(୧୩) "ନ ତତ୍ର ସୂର୍ଯ୍ୟୋଭାତି ନ ଚନ୍ଦ୍ରତାରକଂ/ନେମା ବିଦ୍ୟୁତୋ ଭାଂନ୍ତି କୁତୋଽୟମଗ୍ନିଃ"
ମୁଣ୍ଡକ ୨/୨/୧୦

(୧୪) "ଅସତୋ ମା ସଦ୍‌ଗମୟ/ତମସୋ ମା ଜ୍ୟୋତିର୍ଗମୟ/ମୃତ୍ୟୋ ର୍ମା ଅମୃତଂଗମୟ" ।
ବୃହଦାରଣ୍ୟକ ୧/୩/୨୮

Digitized by PPRACHIN, SOA

# ଚର୍ଯାରେ ରହସ୍ୟ ତତ୍ତ୍ୱ

ଏ ପର୍ଯ୍ୟନ୍ତ ମିଳିଥିବା ସର୍ବପ୍ରାଚୀନ ଓଡ଼ିଆ ଭାଷାସାହିତ୍ୟରୂପେ ସିଦ୍ଧାଚାର୍ଯମାନଙ୍କ ରଚିତ ଚର୍ଯାଗୀତି-ଗୁଡ଼ିକୁ ସ୍ୱୀକୃତି ଦିଆଯାଇଥାଏ । ବଙ୍ଗଳାର ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଆବିଷ୍କୃତ 'ବୌଦ୍ଧଗାନ ଓ ଦୋହା' ନାମରେ ସଂକଳିତ ଏହି ରହସ୍ୟ ରଚନାଗୁଡ଼ିକ ମୁଖ୍ୟତଃ ବୌଦ୍ଧ ସହଜିଆ ଦର୍ଶନ ପ୍ରଭାବିତ । ଭାବ ଓ ଭାଷା, ତତ୍ତ୍ୱ ଓ ଆଚରଣ, ଅନ୍ତରଂଗ ସ୍ୱରୂପ ତଥା ବହିରଂଗ ପ୍ରକାଶରେ ଏଗୁଡ଼ିକ ପୂର୍ଣ୍ଣମାତ୍ରାରେ ରହସ୍ୟଚେତନାତ୍ମକ । ପଣ୍ଡିତ ବିଧୁଶେଖର ଭଟ୍ଟାଚାର୍ଯ ଚର୍ଯାର ଟିକାକାର ମୁନିଦତ୍ତଙ୍କୁ ଅନୁସରଣ କରି ଏହି ସଂକଳନର ନାମକରଣ 'ଆଶ୍ଚର୍ଯ ଚର୍ଯାଚଯ୍ୟ' ବୋଲି ନିର୍ଦ୍ଦେଶ କରିବା ମୂଳରେ ରହସ୍ୟାତ୍ମକ ବୈଶିଷ୍ଟ୍ୟ ସମର୍ଥିତ । ଭାଷାଗତ ବିବାଦକୁ ଏଠାରେ ଅପ୍ରାସଂଗିକ ବିଚାରକରି କେବଳ ସୂଚନାତ୍ମକ ଭାବେ ଦର୍ଶାଇ ଦିଆଯାଇପାରେ ଯେ ଅନେକ ଚର୍ଯା ସଙ୍ଗୀତର ରୂପାଭିବ୍ୟକ୍ତ ଖ୍ରୀ: ଅ: ୮ମ ଶତକଠାରୁ ଏକାଦଶ ଶତକର ସଦ୍ୟୋଦ୍‌ଭିନ୍ନ ଓଡ଼ିଆ ଭାଷା ସାହିତ୍ୟର ପ୍ରତିନିଧି ।

ଚର୍ଯା-ଗୀତିଗୁଡ଼ିକର ଅନ୍ତର୍ନିହିତ ଭାବଧାରାର ଉତ୍ସ ବୌଦ୍ଧତତ୍ତ୍ୱ ଓ ଦର୍ଶନ । ତଂତ୍ର ପ୍ରଭାବିତ ସହଜିଆ ବୌଦ୍ଧଧର୍ମର ଏହା ଏକ ବିବର୍ତ୍ତିତ ପ୍ରକାଶ । ମାତ୍ର ପ୍ରକୃତପକ୍ଷେ ଚର୍ଯାର ଉତ୍ସ ସନ୍ଧାନରେ ପ୍ରାକ୍-ବୁଦ୍ଧ ଉପାଦାନଗୁଡ଼ିକର ଭୂମିକା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । (୧) ବୌଦ୍ଧ ନିର୍ବାଣତତ୍ତ୍ୱ ସହ ଯୋଗମାର୍ଗର ପଦ୍ଧତିମୂଳକ ଅନୁଚର୍ଯାର ଓ ଆଜୀବକ ପନ୍ଥା ଆଚରିତ ସହଜଚର୍ଯାର ଉପାଦାନ-ମାନଙ୍କର ସମନ୍ୱୟ-ସ୍ୱରୂପ ଏହି ଆଚରଣସିଦ୍ଧ ଚର୍ଯା-ସିଦ୍ଧାନ୍ତରେ ଦୃଷ୍ଟିଗୋଚର ହୋଇଥାଏ ।

ଭାରତୀୟ ସାଂଖ୍ୟ-ପାତଞ୍ଜଳ-ଦାର୍ଶନିକ ତତ୍ତ୍ୱ ସଙ୍ଗେ ଯୋଗର ବିବିଧ ପ୍ରକାର କୌଶଳଗୁଡ଼ିକର ପୁନଃ ପୁନଃ ପ୍ରୟୋଗଫଳରୁ ଏହା ତଥାଗତ ନିର୍ଦ୍ଦେଶିତ ନିର୍ବାଣ ସଂବଂଧୀ ଶୂନ୍ୟତତ୍ତ୍ୱର ଆଲୋଚନା ଭିତରୁ ଯେଉଁ ଗୂଢ଼ ରହସ୍ୟ ଆବିଷ୍କାରର ପ୍ରଚେଷ୍ଟା ଚାଲିଥିଲା, ତାହାର ପରିଣାମ ସ୍ୱରୂପ ଭାରତ-ବର୍ଷରେ ଯେଉଁ ନାନାପ୍ରକାର ଗୂଢ଼ ସାଧନା ପଦ୍ଧତି ଓ ଭାବଧାରା, ତାଂତ୍ରିକତା ସଂଯୋଗତାରେ ତାହାର ଏକତମ ଧାରା ଚର୍ଯାପଦର ଗୀତି ଓ ଧାରା ମଧ୍ୟରେ ସୁନିର୍ଦ୍ଦିଷ୍ଟ ।

ଧ୍ୟାନ ଧାରଣା, ନାନାବିଧ ସାଧନା ଓ ଉପାସନାର ବିବରଣ, ହୀନଯାନ ଓ ମହାଯାନର ବୌଦ୍ଧ-ତତ୍ତ୍ୱର ବିଚିତ୍ର ତନ୍ତ୍ରାଜଗତର ମୂର୍ତ୍ତ ଓ ଅମୂର୍ତ୍ତର ଅନୁଭୂତି, ଦର୍ଶନର ଜଟିଳତମ ତତ୍ତ୍ୱ ତଥା ସାଧନାର ସୂକ୍ଷ୍ମତମ ଉପଲବ୍ଧି ପ୍ରଭୃତି ଆଧ୍ୟାତ୍ମିକ ପ୍ରସଙ୍ଗଗୁଡ଼ିକୁ ଚର୍ଯାକାରଗଣ ରସମୟ ଓ ସୁଖପାଠ୍ୟ କରି ପାରିଛନ୍ତି, ଏହାହିଁ ଚର୍ଯାପଦର ସାହିତ୍ୟିକ ବୈଶିଷ୍ଟ୍ୟ ।

---

1.—"But though on offshoot of Popular Buddhisim the real origin.........lies more outside Buddhism than inside it. It is essentially an esoteric yoga cult"

S. B. Das Gupta "Obscure Religious Cults, ch-x x x III

Digitized by PPRACHIN, SOA

ଚର୍ଯାସାହିତ୍ୟ ଗଣସାହିତ୍ୟ । ଏଥିରେ ସାଧାରଣଲୋକର ଜୀବନ ଓ ଜୀବିକା, କାର୍ଯ୍ୟ ଓ ବିଶ୍ରାମ, ପାରିବାରିକ ଅବସ୍ଥା, ଖାଦ୍ୟପେୟ, ସଙ୍ଗୀତର ଉପକରଣ, ଅପରାଧ ବିଚାର ପ୍ରଭୃତିର ବିବରଣୀ ପ୍ରଦତ୍ତ । ଏଥିରେ କ୍ଲିଷ୍ଟକଳ୍ପନା ବିହୀନ ପ୍ରେମ ଓ ସୌନ୍ଦର୍ଯ୍ୟର ସାବଲୀଳ ଲୀଳା, ମୁକ୍ତାକାଶ ତଳେ ଜାଂଗଲିକ ସୁଷମା ଓ ପାର୍ବତ୍ୟ ଲଳନାର ଲଳିତପ୍ରେମ ଚିତ୍ର ଭିତରେ ହିଁ ଧର୍ମମତ ପ୍ରଖ୍ୟାପନ ଛଳରେ ସାହିତ୍ୟ ରସର ଜୟଯାତ୍ରା ।

ଚର୍ଯାଗୀତ ଭିତରୁ ଅନେକ ସଂପୂର୍ଣ୍ଣ ଆଧ୍ୟାତ୍ମିକ । ସେଥିରେ ଜନ୍ମମୃତ୍ୟୁର, ଉତ୍ଥାନପତନର, ସୁଖ-ଦୁଃଖର ଦ୍ୱନ୍ଦ୍ୱାତ୍ମକତାରୁ ମୁକ୍ତ ଓ ସହଜ ଅବସ୍ଥାନ ସ୍ୱରୂପ 'ମହାସୁଖ' ପ୍ରାପ୍ତିର ପଥ ନିର୍ଦ୍ଦିଷ୍ଟ । କେତେକ ଚର୍ଯାରେ ତତ୍ତ୍ୱ ଉପଦେଶ ଓ ସାଧନାର ଇଂଗିତ ସମ୍ପୂର୍ଣ୍ଣଭାବେ ବାହ୍ୟାର୍ଥର ଅବଗୁଣ୍ଠନରେ ଲୁକ୍କାୟିତ । ଏଇ ଧରଣର ଚର୍ଯାରେ ଏଭଳି ଶବ୍ଦ ଓ ଉପମା ଉତ୍ପ୍ରେକ୍ଷାର ବ୍ୟବହାର ରହିଛି ଯାହା ଦ୍ୱିଅର୍ଥକ । ଗୋଟାଏ ସାଧାରଣ ବୋଧଗମ୍ୟ ଅର୍ଥ, ଅପରଟି ସାଧକମାନଙ୍କର ପାରିଭାଷିକ (Private Code), ସବୁ ରହସ୍ୟ ରଚନାର ଯାହା ସ୍ୱାଭାବିକ ଲକ୍ଷଣ । ଏଇଭଳି ପ୍ରହେଳିକାତ୍ମକ ଶବ୍ଦ ଓ ପ୍ରକାଶରୀତିକୁ ସରହପାଦଙ୍କର ଦୋହାକୋଷର ପଂଜିକାକାର ଅଦ୍ୱୟ-ବଜ୍ର (୧୨ଶ ଶତାବ୍ଦୀ) ଏବଂ ଚର୍ଯାର ଟୀକାକାର ମୁନିଦତ୍ତ 'ସନ୍ଧ୍ୟା' ବୋଲି ନାମକରଣ କରିଥିବାର ଅନୁମାନ ।

## ସିଦ୍ଧାନ୍ତ ବିଚାର

ତଥାଗତ ବୁଦ୍ଧଦେବଙ୍କର ନିର୍ବାଣ ସ୍ୱରୂପ ସଂପର୍କରେ ମୌନତାକୁ କେନ୍ଦ୍ର କରି ଯାବତୀୟ ବୌଦ୍ଧ ସିଦ୍ଧାନ୍ତ ସକଳ ବିବର୍ତ୍ତନ ଓ ରୂପାନ୍ତର ଭିତରେ ମାଧ୍ୟମିକାର 'ଶୂନ୍ୟ' ଓ ଉପନିଷଦୀୟ 'ନେତି' ଚେତନାର ସଂଶ୍ଳେଷଣ ମାର୍ଗ ଦେଇ ସହସ୍ରାଧିକ ବର୍ଷ ପରେ 'ସହଜ' ବା ମହାସୁଖ ପରିଭାଷାକୁ ଆଶ୍ରୟ କରି ମୂଳ ତାତ୍ତ୍ୱିକ ଜିଜ୍ଞାସାର ସମାଧାନ ବାଢ଼ିବାର ପ୍ରୟାସ କରିଛି । ବୁଦ୍ଧଙ୍କର ନୀରବତାର ରହସ୍ୟ କଂଶୁ ସମଗ୍ର ପ୍ରାଚ୍ୟଭୂଖଣ୍ଡର (ଭାରତ, ତିବ୍ବତ, ଚୀନ, ଜାପାନ ଓ ପୂର୍ବଏସୀୟ ଦ୍ୱୀପପୁଂଜ ପ୍ରଭୃତି ବୌଦ୍ଧଧର୍ମ ପ୍ରଭାବିତ ଅଂଚଳ) ବ୍ୟାଖ୍ୟା ବିଶ୍ଳେଷଣ ସତ୍ତ୍ୱେ ଉନ୍ମୋଚିତ ହୋଇପାରି ନାହିଁ, ଏବଂ ଏହାର କାରଣ ନିର୍ଦ୍ଦେଶକରି ବ୍ୟାଖ୍ୟାକାରୀର ସର୍ବଶେଷ ସ୍ୱୀକାରୋକ୍ତିଟି ଅତି ପ୍ରତ୍ୟାଶିତ ଭାବରେ ହିଁ 'ଉପଲବ୍ଧିମୂଳକ ଅନିର୍ବଚନୀୟତା'ର ରହସ୍ୟାତ୍ମକତାକୁ ଆଶ୍ରୟ କରିଥାଏ ।

ବୁଦ୍ଧଙ୍କର ମହାନିର୍ବାଣ ପରେ ବୌଦ୍ଧଧର୍ମରେ ଯେଉଁ ଭିତ୍ତି ଉପରେ ମହାଯାନ ଓ ହୀନଯାନ ଶାଖା-ଦ୍ୱୟର ସୃଷ୍ଟି ହୋଇଥିଲା, ତାହ ବ୍ୟକ୍ତିର ବୁଦ୍ଧତ୍ୱ ବା ନିର୍ବାଣ ଲାଭର ସ୍ୱରୂପ ବିଚାର ପ୍ରସଂଗରେ । ହୀନଯାନରେ ଏହା ବ୍ୟକ୍ତିସତ୍ତାର ନିବୃତ୍ତି-ପର ସାଧନାମାର୍ଗରେ ବୋଧିଚିତ୍ତର ସକଳ ଭବ-ସାହିତ୍ୟକୁ ଲୁଟାଉଥିଲା । ମହାଯାନପନ୍ଥା କାଳକ୍ରମେ ହିନ୍ଦୁ ଧର୍ମଧାରଣାର ପ୍ରଭାବ ଭିତରକୁ ଫେରିଆସି ବ୍ୟକ୍ତିଗତ ନିର୍ବାଣପ୍ରାପ୍ତି ପ୍ରଚେଷ୍ଟାକୁ ସାର୍ବଜନୀନ ବୁଦ୍ଧତ୍ୱଲାଭର ସୋପାନ ରୂପେ ଗ୍ରହଣ କରିଦେଲା । ଜ୍ଞାନ ବା ପ୍ରଜ୍ଞା ସହିତ ବିଶ୍ୱକରୁଣାର ସଂଯୋଗ ଏ ସାଧନାମାର୍ଗକୁ ସାର୍ବଜନୀନ ଓ ହୀନଯାନ ପ୍ରବର୍ତ୍ତିତ ଐତିହାସିକ ବୁଦ୍ଧଙ୍କୁ ସାର୍ବକାଳୀନ ସାର୍ବବ୍ୟାପିକ ବୁଦ୍ଧତତ୍ତ୍ୱ ରୂପେ ସ୍ୱୀକୃତି ଦାନ କରିଥିଲା । ପ୍ରତି ସତ୍ତ୍ୱ ଭିତରେ ବୁଦ୍ଧତ୍ୱ ଅନ୍ତର୍ନିହିତ, ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତି ବୁଦ୍ଧତ୍ୱର ଅଧିକାରୀ ଓ ଭବିଷ୍ୟତ କାଳର ବୁଦ୍ଧ । ଏହି ମତବାଦ ସହ ଉପନିଷଦୀୟ 'ତତ୍ତ୍ୱମସି'ର ଅଦ୍ଭୁତ ସାମଂଜସ୍ୟ ସ୍ୱୀକୃତ ହେଲା ।

ମହାଯାନଶାଖା ହିନ୍ଦୁତନ୍ତ୍ରର ସଂସ୍ପର୍ଶରେ ଆସି ତନ୍ତ୍ରର ଉପାଦାନ (ଅଭିଚାରବାଦ) ଓ ଧାରଣୀର ଅନୁପ୍ରବେଶ ଏବଂ ମନ୍ତ୍ରର ବଳିଷ୍ଠତାକୁ ମାନିନେଲା । ମାନ୍ତ୍ରିକ ଉପାଦାନର ଲୋକପ୍ରିୟତା ଓ କ୍ରିୟା-ଶକ୍ତିର ଗୁରୁତ୍ୱ ସ୍ୱୀକାର ହେତୁ ମହାଯାନର ଏକ ଧାରା କ୍ରମଶଃ 'ମନ୍ତ୍ରଯାନ' ରୂପେ ପରିଚିତ ହେଲା ।

Digitized by PPRACHIN, SOA

ହରପ୍ରସାଦ ଶାସ୍ତ୍ରୀଙ୍କ ସଂକଳିତ 'ଅଦ୍ୱୟବଜ୍ରସଂଗ୍ରହ'ରେ ସଂଗୃହୀତ 'ତତ୍ତ୍ୱ ରତ୍ନାବଳୀ' ମହାଯାନର ବିବିଧ ଧାରାକୁ 'ପାରମିତାନୟ' ଓ 'ମନ୍ତ୍ରନୟ' ବୋଲି ଉଲ୍ଲେଖ କରିଛି । ମନ୍ତ୍ରଯାନରେ ତାନ୍ତ୍ରିକ ପୂଜାପଦ୍ଧତିର ମୁଦ୍ରା, ମଣ୍ଡଳ, ଅଭିଷେକ, ସମାଧି ପ୍ରଭୃତିର ଅନୁପ୍ରବେଶ ଘଟିଲା । ସ୍ତରଗତ ଦେବତାରୂପେ ବହୁ ବୁଦ୍ଧ ଓ ତାଙ୍କର ଶକ୍ତିବୃନ୍ଦ, ଏହିପରି ହିନ୍ଦୁ ଦେବମଣ୍ଡଳୀର (Pantheon) ସମାନ୍ତରାଳ ଚେତନାରେ ବୁଦ୍ଧମଣ୍ଡଳୀର ପୂଜାବିଧି ସ୍ୱୀକୃତ ହେଲା ଏବଂ ଅଭିଚାର ଓ ପଞ୍ଚମକାର ସାଧନା ଭିତରେ ବାମାଚାରୀ ପ୍ରଭାବଯୁକ୍ତ ହୋଇ ମନ୍ତ୍ରଯାନ କ୍ରମଶଃ ସ୍ୱପରିଚୟ ହରାଇ ତନ୍ତ୍ରଯାନରେ ପରିଣତ ହେଲା ।

ତନ୍ତ୍ରଯାନ କ୍ରମଶଃ ବଜ୍ରଯାନ, କାଳଚକ୍ରଯାନ ଓ ସହଜଯାନ ରୂପରେ ଆତ୍ମପ୍ରକାଶ କଲା । କେତେକ ଆଲୋଚକ କାଳଚକ୍ରଯାନକୁ ବଜ୍ରଯାନର ଅନ୍ୟନାମ ଓ ସହଜଯାନ ବଜ୍ରଯାନର ନିଃସୃତ ଧାରା ବିଶେଷ ବୋଲି ମତ ପ୍ରକାଶ କଲାବେଳେ ଅନ୍ୟାନ୍ୟ ଆଲୋଚକମାନେ ଏହି ତ୍ରିବିଧ ବୌଦ୍ଧ-ଶାଖାରେ କେତେକ ବିଶିଷ୍ଟ ତାରତମ୍ୟ ଓ ବିଭବକୁ ଗୁରୁତ୍ୱ ଦେଇଥାନ୍ତି ।

ସହଜଯାନ—

ତାନ୍ତ୍ରିକ ବୌଦ୍ଧଧର୍ମର ସୁଦୂରପ୍ରସାରୀ ପ୍ରତିଧ୍ୱନି ରୂପେ ସହଜଯାନର ଆବିର୍ଭାବ । ଏଥିରେ ବଜ୍ରଯାନ ଓ କାଳଚକ୍ରଯାନର ସିଦ୍ଧାନ୍ତ ତଥା ବିଚାରମାନ ସୁରକ୍ଷିତ, ପୁନଶ୍ଚ ଯୋଗମାର୍ଗର ସ୍ୱତନ୍ତ୍ର ଅନୁଚର୍ଯ୍ୟା ବିଧିନିର୍ଦ୍ଦେଶିତ । ସହଜଯାନର ସୃଷ୍ଟି ଓ ବିକାଶ ପରମ୍ପରା ଦୃଷ୍ଟିରୁ 'ଉଡ୍ଡୀୟାନ' ଶବ୍ଦ ସହ ସଂପୃକ୍ତ । ବଜ୍ରଯାନର ସାଧକ ଇନ୍ଦ୍ରଭୂତିଙ୍କର ଭଗିନୀ ଲକ୍ଷ୍ମୀଙ୍କରା ଏହି ସହଜଯାନର ପ୍ରବର୍ତ୍ତିକାରୂପେ ସ୍ୱୀକୃତା । ଭୌଗୋଳିକ ଓ ଭାଷାତାତ୍ତ୍ୱିକ ବିଚାର ଦୃଷ୍ଟିରୁ ସହଜଯାନର ରଚନାପ୍ରତି ଓଡ଼ିଆପାଠକ ମାନେ ଦୁର୍ବଳଚିତ୍ତ । ଗୁରୁପରମ୍ପରାରେ ସ୍ୱୀକୃତ ସରହ, ଲୁଇପା, ନାଗାର୍ଜ୍ଜୁନ, ଶାନ୍ତିଦେବ, କାହ୍ନୁପା ଆଦି ସିଦ୍ଧାଚାର୍ଯ୍ୟମାନେ ଓଡ଼ିଶାବାସୀ ବୋଲି ଅନୁମିତ ।

ଚର୍ଯ୍ୟା ତଥା ବୌଦ୍ଧ ଦୋହାଗୁଡ଼ିକର ସାଧାରଣ ବା ମୌଳିକ ଭିତ୍ତିଭୂମିରେ ମୁଖ୍ୟତଃ ମହାଯାନୀ ଦର୍ଶନର ଅସଂଖ୍ୟ ଧାରଣାଗୁଡ଼ିକ ସଂଶ୍ଳିଷ୍ଟ ହୋଇରହିଛି । ଏହା ନାଗାର୍ଜ୍ଜୁନଙ୍କର ନାସ୍ତିବାଦକତା, ପୁଣି ଅଶ୍ୱଘୋଷଙ୍କର ଅସ୍ତିବା ତଥତା ତଥା ମୈତ୍ରେୟ, ଅସଙ୍ଗ ଓ ବସୁବନ୍ଧୁ ପ୍ରକଳ୍ପିତ ବିଜ୍ଞାନବାଦୀ ସିଦ୍ଧାନ୍ତକୁ ମଧ୍ୟ ଧାରଣ କରିଛି । ଉପନିଷଦୀୟ ଅଦ୍ୱୈତ ଭାବନା ମଧ୍ୟ ଏଥିରେ ବିରଳ ନୁହେଁ । ବେଦାନ୍ତର ବ୍ରହ୍ମ, ତାନ୍ତ୍ରିକ ବୌଦ୍ଧଚେତନାର ବଜ୍ରସତ୍ତ୍ୱ, ବୋଧିଚିତ୍ତ, ମହାସୁଖ ବା ସହଜର ନାମାନ୍ତର ଗ୍ରହଣ କରିଛନ୍ତି କହିଲେ ଖୁବ୍ ବେଶି ଅତ୍ୟୁକ୍ତି ହେବନାହିଁ ।

ଚର୍ଯ୍ୟାପଦର ମୁଖ୍ୟ ଦାର୍ଶନିକ ସ୍ୱର ଭାବାତ୍ମକ ବା ଆଇଡିଆଲିଷ୍ଟିକ୍ (Idealistic) ବୋଲି କୁହାଯାଇପାରେ । ଅର୍ଥାତ୍ ମାୟାର ଜଗତ ସଂବନ୍ଧରେ ପ୍ରବଳ ସଚେତନତା । ମନ ଏହି ମାୟାମୟ ପ୍ରକଳ୍ପର ସ୍ରଷ୍ଟା । ମନର ଚଂଚଳତାହିଁ ସ୍ଥାନ ଓ କାଳର ବୋଧ ଜାତକରେ । ମନର ସଂଯୁକ୍ତ ମାଧ୍ୟମରେ ବସ୍ତୁ ଓ ଭାବଜଗତ ସହ ସତ୍ତାର ସଂପର୍କ ସୃଷ୍ଟିହୁଏ ।

ସହଜଯାନ ରହସ୍ୟବାଦୀ ବିଚାରର ସକଳ ଲକ୍ଷଣ ସମନ୍ୱିତ । ସହଜର ଯାତ୍ରାର୍ଥ ସହଜାତ (ସହଜାୟତେ), ସହଜ ପ୍ରଜ୍ଞାଶୀଳ ଓ କ୍ଲେଶହୀନ । ଯେଉଁ ପଥରେ ( ଯାନ ) ଜୀବ ସହଜ, ସ୍ୱାଭାବିକ ଓ ମୌଳିକ ସ୍ୱରୂପ ଲାଭ କରେ, ତାହାହିଁ ସହଜଯାନ ବା ସ୍ୱାଭାବିକ ପଥ ।

Digitized by PPRACHIN, SOA

ସହଜ ସଂଜ୍ଞାପରିସର ବହିର୍ଭୂତ । (୨) ଏହି ସହଜର ବର୍ଣ୍ଣନା ଅଶ୍ୱଘୋଷଂକର ଅସ୍ତିବାଚକ 'ତଥାତ' ( Thatness ) ବା ସତତାବାଦଠାରୁ ଆରମ୍ଭକରି ଅସଙ୍ଗ, ବସୁବନ୍ଧୁଂକ ମାଧ୍ୟମରେ କ୍ରମଶଃ ଉପନିଷଦୀୟ ବ୍ରହ୍ମଚେତନାର ନିକଟବର୍ତ୍ତୀ ହୋଇଥିବାର ଦେଖାଯାଏ । ବ୍ରହ୍ମପରି ଏହାକୁ ନେତିବାଦ ଓ ଅସ୍ତିବାଦର ବହୁଳ ବର୍ଣ୍ଣନା ପରେ ଅସ୍ତି-ନାସ୍ତି-ବୋଧାତୀତ ଅବର୍ଣ୍ଣନୀୟ ବୋଲି କୁହାଯାଇଛି । ଚର୍ଯାକାରଂକ ପ୍ରତିପାଦନରେ ସେ ପ୍ରସଙ୍ଗରେ 'ଗୁରୁବୋବା ସିସାକାଲା' ।

ବ୍ୟାବହାରିକ ଦୃଷ୍ଟିରୁ ସହଜଯାନ ଧର୍ମାନୁବନ୍ଧିତ କ୍ରିୟାପଦ୍ଧତିର ବିରୋଧୀ, ଏହା ଏକ ବିଦ୍ରୋହୀ ସ୍ୱର । ସରହପାଦ ତାଂକ 'ଦୋହାକୋଷ'ରେ ସହଜପନ୍ଥାର ଉପଦେଶ ଦେବାଆଗରୁ ପ୍ରଚଳିତ ଧର୍ମ ଓ ସାଧନାମତଗୁଡ଼ିକର ବିସ୍ତୃତ କରି କହିଛଂତି—ବେଦବାଦ, ଶୈବ, ଭାଗବତ, କ୍ଷପଣକ (ଜୈନ), ଦୁଇ ପ୍ରଧାନ ବୌଦ୍ଧମତ ( ସୌତାଂତ୍ରିକ ଓ ମହାଯାନ ) ଏସବୁ ଦ୍ୱାରା ପରମାର୍ଥ ସାଧିତ ହୁଏନାହିଁ । ଧ୍ୟାନ, ଧାରଣା, ଗୃହବାସ, ବନବାସ, ଦେବପୂଜା, ତୀର୍ଥାଟନ, ତଂତ୍ରମଂତ୍ରରେ ନିର୍ବାଣ ଅଥବା ମୋକ୍ଷଲାଭ ନାହିଁ । ତେଣୁ ସହଜ ପନ୍ଥା । ସହଜାବସ୍ଥା ଇଂଦ୍ରିୟ-ବିରୋଧ ବା ଇଂଦ୍ରିୟ-ବିଳାସ ନୁହେଁ । ପାପପୁଣ୍ୟ, ଭଲମଂଦ, ସତ୍ୟମିଥ୍ୟା, ଜନ୍ମମୃତ୍ୟୁ ଏସବୁ ଚଂଚଳଚିତ୍ତରେ ସଙ୍ଘଟିତ । ( ତତ୍ତ୍ୱଦର୍ଶୀ ପଣ୍ଡିତ ମଧ୍ୟ ଜନ୍ମମୃତ୍ୟୁର ଖଣ୍ଡନ କରିପାରେ ନାହିଁ । ) ସହଜ ସ୍ୱଭାବ ହେଉଛି 'ଣ ଭାବାଭାବ' । ଚିତ୍ତ ଅଚଂଚଳ ରହିଲେ କାଳଜୟ ଓ ସହଜ ଅବସ୍ଥା ପ୍ରାପ୍ତ ହୁଏ, ସହଜ-ସିଦ୍ଧର ସବୁ କିଛି ବୋଧିସ୍ଥିତ । ସଂସାର ଓ ନିର୍ବାଣ ଅର୍ଥହୀନ ବା ଅମାର୍ଥବାଚକ । 'ସଅଲ ନିରଂତର ବୁଧ ( ସକଳ ନିରଂତର ବୁଦ୍ଧ)' ।

ଗୁରୁବାଦ—ଚର୍ଯାକାରମାନେ ଗୁରୁବାଦର ପ୍ରାଧାନ୍ୟ ସ୍ୱୀକାର କରଂତି । (୩) ଅଧ୍ୟାତ୍ମ ସାଧନା ପଦ୍ଧତି, ବିଶେଷକରି ତଂତ୍ରପଥ 'ଗୁହ୍ୟାତ୍ ଗୁହ୍ୟମ୍' । ଏହା ଶାରୀରିକ, ମାନସିକ, ସକଳ ଭାବର ରୂପାଂତର ନିମଂତେ ଉଦ୍ଦିଷ୍ଟ । ତେଣୁ ଜଟିଳ ଓ ବିପଦପୂର୍ଣ୍ଣ । ପଦେ ପଦେ ଅଭିଜ୍ଞ ଉପଦେଷ୍ଟାର ପ୍ରୟୋଜନ । ତେଣୁ ଚର୍ଯାଗୀତିରେ ଗୁରୁବାଦର ବିପୁଳ ପ୍ରଶସ୍ତି । ଲୁଇ କୁହଂତି, 'ଗୁରୁ ପୁଚ୍ଛିଅ ଜାଣ ।' ଗୁରୁ ମୁକ୍ତି ଦେଇ ପାରଂତି ନାହିଁ, ମାତ୍ର ମୁକ୍ତିର ପଥକୁ ସୋପାନିତ କରଂତି । ଜ୍ଞାନ ଅଗ୍ନିର ସଂବାହକ ଗୁରୁ । ଏକରୁ ଅନ୍ୟର ଅଗ୍ନି—ସଂଚରଣରେ ବର୍ତ୍ତିକା ତୁଲ୍ୟ । ଅସୀମର 'ପ୍ରବେଶ ଦ୍ୱାର' ରୂପେ ତାଂକର ଅବସ୍ଥାନ । ସେ ସୀମାର ଶେଷ ପ୍ରାନ୍ତଭୂ, ଅସୀମର ପ୍ରଥମ ଆଭାସ । ତାଂକରି ମାଧ୍ୟମରେ ସୀମାର ଅସୀମକୁ ନିଷ୍କ୍ରମଣ । କାରଣ, ଅସୀମର ସେ ପ୍ରତ୍ୟକ୍ଷ ପ୍ରଥମ ସସୀମ ରୂପାୟନ ।

---

(2) "Sahaja defies all possible definition and remain unknown and unknowable, it being the ultimate innate nature of all the objects and beings."

Dr. N.C. Sahoo—Buddhism in Orissa."—P-137

(3) "It will be seen that in a sense all the systems of Indian Philosophy and religions are mystic—for according to all the systems, 'Truth always transcends intellectual apprehension or discursive speculations—it is to be intuited within through the help of the preceptor—who has already realised it."

S. B. Dasgupta 'Obscure Religious Cults P—87-88.

Digitized by PPRACHIN, SOA

ସୁଦୂରବର୍ତ୍ତୀ ଓ ଅସଂଭବ ପ୍ରାୟ ଅସୀମକୁ ଗୁରୁ ସ୍ୱଭାବ୍ୟର ପ୍ରତ୍ୟକ୍ଷ ଭିତରକୁ ଶିଷ୍ୟ ପାଇଁ ଘେନଆସଂନ୍ତି । ଅସୀମର ସମୁଦ୍ର ଭିତରେ ଦେହରୂପକ ନୌକାକୁ ସଦ୍‌ଗୁରୁ ବଚନରେ ଚଳାଇ ନେବା କଥା ବୋଲି ଚର୍ଯ୍ୟାଗାନ ରହିଛି ।

ଗୁରୁ ଦିବ୍ୟଶକ୍ତିରେ ପୂର୍ଣ୍ଣ । ତେଣୁ ଗୁରୁଙ୍କୁ ଉଶ୍ୱରରେ ଅବନତ । ସେ ବର୍ଷଣମୁଖୀ ଜଳଧାର ପରି । ରସାଳ ପକ୍ୱ ଫଳ ପରି । ତାଂକୁ ଗ୍ରହଣ କରିନେଇ ପାରିଲେ, ଆସ୍ୱାଦନ କରି ପାରିଲେ ଶିଷ୍ୟର ହୃଦୟ ଆର୍ଦ୍ର, ମଧୁର, ରସବଂତ ହୋଇଯାଏ । ପୁଷ୍ପର ସୁରଭି ପରି ଗୁରୁ ଅସୀମର ମହକ । ତାଂକୁ ଆଘ୍ରାଣ କରିବାକୁ ହୁଏ ।

ରହସ୍ୟବାଦୀ କବିର ଗୁରୁଂକୁ ତତ୍ତ୍ୱଦର୍ଶନ ଶିଖାଇବାର ଅବସର ଦିଏନାହିଁ । ତାଂକୁ ଦିବ୍ୟତାର ପ୍ରଥମ ସ୍ପଂଦନରୂପେ ସତ୍ତ୍ୱା ହୃଦୟରେ ଆବାହନ କରିଏ । ଗ୍ରହଣଶୀଳତା ଓ ପ୍ରେମସମର୍ପଣ ଦ୍ୱାରା ଶିଷ୍ୟ ବିଶାଳ ଗୁରୁ ହୃଦୟରୁ ଅସୀମର ସ୍ପର୍ଶ ଲାଭକରେ । ଗୁରୁ ଆତ୍ମସମର୍ପଣର ମଂନ୍ତ୍ର ସ୍ୱରୂପ । ସେ ମୁକ୍ତି ଦିଅଂନ୍ତି ନାହିଁ । ମୁକ୍ତି-ସାଧନା ପଥରେ ସାହଚର୍ଯ୍ୟ ଦିଅଂନ୍ତି । ଜଟିଳ ଅଧ୍ୟାତ୍ମ-ଅଂଧକାର ମୂହୂର୍ତ୍ତରେ ସୁରକ୍ଷା ଦିଅଂନ୍ତି । ସାଧନାପଥର ବିପ୍ଲବପାକ ନିଜ ଜୀବନରେ ଭୋଗ କରିଥିବାରୁ ସାହସ ଦେଇ କହିପାରଂନ୍ତି 'ମାଭୈଃ' । ଏ ମୁହୂର୍ତ୍ତର ସମାପ୍ତି ମଧ୍ୟ ଆସିବ । ସରହଂକ ବର୍ଣ୍ଣନାରେ ଗୁରୁବାକ୍ୟ ସୁଧା-ବଂଚିତ ବ୍ୟକ୍ତି ଶାସ୍ତ୍ରାର୍ଥ ରୂପୀ ମରୁସ୍ଥଳରେ ତୃଷିତ ହୋଇ ମରଂନ୍ତି । (୪)

## ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ —

ସହଜ-ସାଧନାରେ ମାନବଶରୀରର ଏକ ବିଶେଷ ମର୍ଯ୍ୟାଦା ରହିଛି । କାରଣ ତତ୍ତ୍ୱତଃ ସତ୍ୟ ଅପ୍ରକାଶିତ ଏବଂ ପାର୍ଥିବ ଶରୀର ମଧ୍ୟରେ ହିଁ ତାର ଯାହା କିଛି ପ୍ରତିଭାସ ସଂଭବ ।

'ହେ ବଜ୍ରତଂନ୍ତ୍ର'ରେ ଏହି ଭୌତିକ ଶରୀର ପ୍ରସଙ୍ଗରେ ଉଲ୍ଲେଖ ଅଛି—"ଦେହାଭାବେ କୁତଃ ସୌଖ୍ୟମ୍ ?" (୫) ଦେହ ବିନା ମହାସୁଖ ଅନୁଭବ ଅସଂଭବ । କାରଣ, ତତ୍ତ୍ୱତଃ ସବୁ ଶୂନ୍ୟ । ମହାସୁଖ ଅପାର୍ଥିବ ହେଲେ ମଧ୍ୟ ପାର୍ଥିବ ପ୍ରକାଶ ପାଇଁ ଏକ ଧାରଣୀ ବା ସ୍ଥୂଳ ଦେହକୁ ଅପେକ୍ଷା ରଖେ । ପାର୍ଥିବ ତନୁ ବ୍ୟତିରେକେ ଜନ୍ମଚକ୍ରରେ ସତ୍ତ୍ୱାର କୌଣସି ପ୍ରକାର ପୂର୍ଣ୍ଣତା ଓ ନିଃଶେଷତା ଲାଭ ସଂଭବ ନୁହେଁ । 'ଶ୍ରୀକାଳଚକ୍ର' ଅନୁସାରେ ଦେହସିଦ୍ଧିରେ ହିଁ ନିଜଗତର ସିଦ୍ଧି । ସରହପାଦ କୁହଂନ୍ତି, 'ଦେହ ସଦୃଶ ତୀର୍ଥ ଅନ୍ୟତ୍ର ନାହିଁ । ଦେହ ମଧ୍ୟରେ ସକଳ ତୀର୍ଥ ଅବସ୍ଥିତ ଓ ପୂଣ୍ୟନଦୀ ପ୍ରବାହିତ । (୬) ଚର୍ଯ୍ୟାଗୀତିକାରଂକ ମତରେ ସତ୍ୟ ଧ୍ୟାନ ନୁହେ କି ଧାରଣୀ

---

(୪) "ଗୁରୁ ଉବ ଏସେ ଅମିଅରସୁ ଧାବଣ ପୀ ଅଉ ଦେସ୍ତ
ବହୁ ସତ୍ଥ ତ୍ଥ ମରତ୍ଥଲ ହଂ, ତିସିଏ ମରିଅଉ ତେହ ।"

qt— ହିଂଦୀ କାବ୍ୟଧାରା—ପୃ ୮

(5) qt 'obscure Religious cults'—P—36. (4)

(୬) "ଏତ୍ଥୁ ସେ ସୁରସରି ଜମୁନା ଏତ୍ଥ ସେ ଗଂଗାସାଅରୁ ।
ଏତଥୁ ପଆଗ ବା ଣାରସି ଏତ୍ଥୁ ସେ ଚଂଦଦିବାଅରୁ ।
"ଦେହା ସରିସଅ ତିତ୍ଥ ମହଂ ସୁହ ଅଣ୍ଣ ଣ ଦିଟ୍ଠଂଓ ।" ସରହ-ଚର୍ଯ୍ୟା—୪୬

qt—'An Introduction to Tantrik Buddhism
( S.B Dasgupte ) P—146.

Digitized by PPRACHIN, SOA

ନୁହେ । (୭) ଦେହ ହିଁ ଜପମାଧ୍ୟ । ତେଣୁ ବିନାଶଶୀଳ ଦେହକୁ ସାଧନାମାର୍ଗରେ ଅବିନାଶୀ ଓ ଅକ୍ଷୟ କରି ସିଦ୍ଧଦେହୀ ହୋଇପାରିଲେ ଶାଶ୍ୱତର ପାର୍ଥିବ ଅନୁଭୂତି ସାର୍ଥକ ହୁଏ ।

ଦେହବାଦର ଏଇ ଗୁରୁତ୍ୱ ଦୃଷ୍ଟିରୁ କାୟସାଧନା ବା ନାଡ଼ୀଚକ୍ରସାଧନା ତଂତ୍ର ଓ ବଜ୍ରଯାନ ମଧ୍ୟ ଦେଇ ସହଜସାଧନାରେ ପ୍ରବେଶ କରିଛି । ଦେହ ଶୁଦ୍ଧି ପାଇଁ ପ୍ରାଣାୟାମର ଗୁରୁତ୍ୱ ମଧ୍ୟ ଏଥିରେ ସ୍ୱୀକୃତ । ଦେହର ଦୁଇ ପାର୍ଶ୍ୱସ୍ଥ ସ୍ନାୟୁ ଇଡ଼ା ଓ ପିଂଗଳା ଓ ମଧ୍ୟମା ସୁଷୁମ୍ନା ମହାଯାନ ପରିଭାଷାରେ ଯଥାକ୍ରମେ ପ୍ରଜ୍ଞା ଓ ଉପାୟ ଏବଂ ଅବଧୂତିକା ବା ସହଜପଥ ରୂପେ ପରିଚିତ । ପ୍ରାଣାୟାମର ପ୍ରାଂଜଳ ବିଶ୍ଲେଷଣ ନକରି କୁହାଯାଇପାରେ ଯେ ଏ ନାଡ଼ିଦ୍ୱୟ ଦ୍ୱୈତାବସ୍ଥାର ପ୍ରତୀକ ଏବଂ ମଧ୍ୟନାଡ଼ି ସମ ବା ଅଦ୍ୱୈତ ଅବସ୍ଥାକୁ ସୂଚାଇଥାଏ ।

ମହାଯାନୀ ପନ୍ଥାରେ ନାଗାର୍ଜୁନ ପ୍ରକାଶିତ 'ମାଧ୍ୟମିକା' ସହଜ ସାଧନାର ସବୁଠାରୁ ମହତ୍ତ୍ୱପୂର୍ଣ ସିଦ୍ଧାଂତ ରୂପେ ଗୃହୀତ । ଅସ୍ତି ଓ ନାସ୍ତିର ଉଭୟ ବାଚକତାକୁ ଅତିକ୍ରମ କରି ମଧ୍ୟ ଅବସ୍ଥାରେ ସ୍ଥିର ରହିବା ସହଜାବସ୍ଥା । ଲୁଇପାଏଇ ଦ୍ୱଂଦ୍ୱାତ୍ମକତା ଅତିକ୍ରମ କରିବାକୁ ଭବୋତ୍ତୀର୍ଣ ହେବାର ମାର୍ଗ ବୋଲି ସଂକେତ କରିଛଂତି । (୮) ମହାଯାନ ପରଂପରାନୁସୃତ ବଜ୍ରଯାନୀ ଓ ସହଜଯାନୀ ସିଦ୍ଧାଂତମାନ ଏଇ ଦ୍ୱଂଦ୍ୱରହିତ୍ୟ ଉପରେ ପର୍ଯ୍ୟବସିତ । ଦ୍ୱନ୍ଦ୍ୱହୀନ ପରମ 'ଶୂନ୍ୟ' ଏଇ ପରଂପରାରେ ବଜ୍ରରେ ରୂପାଂତରିତ । ସର୍ବାତ୍ପର ଶୂନ୍ୟତା ବଜ୍ରପରି ଅପରିବର୍ତ୍ତନୀୟ । (୯) ବୌଦ୍ଧ-ଦର୍ଶନର ଶୂନ୍ୟତା ଏହିଭଳି ବଜ୍ର-ସ୍ୱଭାବଯୁକ୍ତ ବଜ୍ରସତ୍ତ୍ୱ ଅନେକ ସମୟରେ ମହାଯାନୀ ବୋଧିଚିତ୍ତର ରୂପାତ୍ମକ ଅଭିବ୍ୟକ୍ତି ଲଭିକରିଛଂତି । ମହାଯାନରେ ପୂର୍ଣଜ୍ଞାନ ଯୁକ୍ତ ନିର୍ମଳ ଚିତ୍ତଭୂମି ବୋଧିଚିତ୍ତ ରୂପେ ପରିଚିତ ଥିଲା । ଯୋଗାଚାରରେ ଏହି ନିର୍ମଳ ଜ୍ଞାନ ସକଳ ମଂଗଳକାମନା ଯୁକ୍ତ ବିଶ୍ୱକରୁଣାରେ ଉଦ୍‌ବୁଦ୍ଧ ବୋଲି ପ୍ରକାଶିତ । ଶୂନ୍ୟତାର ସ୍ୱଭାବ ସହ ଏହି କରୁଣାର ଭାବ ସଂଲଗ୍ନ ହୋଇ ବୋଧି-ଚିତ୍ତରେ ଅବସ୍ଥାନ କରୁଥିବାରୁ ଏହି ମୂଳ ସୂତ୍ରକୁ ଅବଲଂବନ କରି ତାଂତ୍ରିକ ବୌଦ୍ଧଧର୍ମ ବୋଧିଚିତ୍ତକୁ ଶୂନ୍ୟତା ଓ କରୁଣାର ଅଖଣ୍ଡ ମିଳନାବସ୍ଥା ରୂପେ ଉପସ୍ଥାପିତ କଲା । ବଜ୍ରଯାନର ସାଧନାରେ ବିଶେଷକରି ସହଜଯାନରେ ଏହି ଶୂନ୍ୟତା ଓ କରୁଣା ସ୍ତ୍ରୀ-ପୁରୁଷ ଭେଦରେ ପ୍ରଜ୍ଞା ଓ ଉପାୟ ନାମ ଧାରଣ କରି ସମ୍ମିଳିତ ହେଲେ ନରନାରୀଙ୍କର ରମଣ ସୁଖ ଉପଜାତ ହେବାପରି ଅଖଣ୍ଡ ଆନନ୍ଦ ଓ ନିର୍ଦ୍ୱନ୍ଦ୍ୱ ପ୍ରଶାନ୍ତ ରୂପ ବୋଧିସତ୍ତ୍ୱ ଆବିର୍ଭୂତ ହୁଅନ୍ତି ।

---

(୭) "ସରହ ଭଣଇ ଦାଢ଼ା ଜାଣଉ ଅପ୍‌ପା/ଣଉ ସୋ ଦେହ ନା ଧାରଣା ଜପପା ।" (ଦୋହାକୋଷ)—"ହିନ୍ଦୀ କାବ୍ୟଧାରା—ପୃ (୮୪)

(୮) "ଭବନଦୀ ଗହଣ ଗଂଭୀର ବେଗେ ବାହି ଦୁଆଂତେ ଚଖିଲ ମାଝେ ନ ଥାଇ ।"

(୯) "ଦୃଢ଼ଂ ସାରଂ ଅସୌଶୀର୍ଯଂ ଅଚ୍ଛେଦ୍ୟ ଭେଦ ଲକ୍ଷଣଂ
ଅଦାହୀ ଅବିନାଶୀଚ ଶୂନ୍ୟତା ବଜ୍ରମୁଚ୍ୟତେ ।"
ଅଦ୍ୱୟ ବଜ୍ର ସଂଗ୍ରହ (P. 37) 'Obscure Religious Cults'—P. 26

(୧୦) "ଏକ ସୋ ପଦୁମା ଚଉଷଠ୍‌ଠୀ ପାଖୁଡ଼ୀ
ତହିଂ ଚଢ଼ି ନାଚଅ ଡୋମ୍ବୀ ବାପୁଡ଼ୀ" କାହ୍ନୁପା— ଚର୍ଯାଗୀତିକା ଗୀତ ନ : ୧

Digitized by PPRACHIN, SOA

ଶୂନ୍ୟତା ଓ କରୁଣାଂକର ଏ ରୂପାଂତର ସମଗ୍ର ତାଂତ୍ରିକ ବୌଦ୍ଧଧର୍ମର ସାଧନାପଦ୍ଧତିର ଆଭିମୁଖ୍ୟକୁ ମଧ୍ୟ ପରିବର୍ତ୍ତିତ କରିଦେଲା । ପ୍ରଜ୍ଞା, ପୂର୍ଣ୍ଣଜ୍ଞାନ, ନିଷ୍କ୍ରିୟ, ନାସ୍ତିବାଚକ, ନିର୍ଗୁଣାତ୍ମିକା ନାରୀଶକ୍ତି, ପୁରୁଷରୂପୀ ଅସ୍ତିତ୍ୱାତ୍ମକ ସକ୍ରିୟ 'ଉପାୟ' । ପ୍ରଚଳିତ ସାଂଖ୍ୟ-ବିଚାରର ( ପ୍ରକୃତି ସକ୍ରିୟ ପୁରୁଷ ନିଷ୍କ୍ରିୟ ) ଏହା ବିରୋଧାତ୍ମକ । ପୁରୁଷ ଓ ପ୍ରକୃତିର ଏହି ରୂପ ଚେତନା ଥରେ ଅନୁପ୍ରବେଶର ସୁଯୋଗ ଲାଭକରି ସମଗ୍ର ବୌଦ୍ଧ ସାଧନାର ମାର୍ଗକୁ ଭିନ୍ନମୁଖୀ କରାଇନେଲା ବୋଲି ବୁଝାଯାଇପାରେ ।

ପ୍ରଜ୍ଞା ଓ ଉପାୟ ସ୍ତ୍ରୀପୁରୁଷ ଭେଦରେ କ୍ରମଶଃ ହିଂଦୁ ତଂତ୍ରର ଶିବ-ଶକ୍ତି ସହ ଏକାତ୍ମକ ହୋଇଗଲେ । ହିଂଦୁ ତଂତ୍ରର ପ୍ରଭାବରେ ଦେହ ମଧ୍ୟରେ ସ୍ତ୍ରୀ-ପୁରୁଷ ଭାବ-ଭେଦର ସାମ୍ୟତା ସଂପାଦନ ପାଇଁ ବୌଦ୍ଧତଂତ୍ର ମଧ୍ୟ ଦେହ ସାଧନାର ଅପରିହାର୍ଯ୍ୟତା ପ୍ରତିପାଦନ କଲା । ଏ ସ୍ତ୍ରୀ ପୁରୁଷର ବିଷମ ଭାବପ୍ରତୀକ ଶ୍ୱାସନଳୀ ଦ୍ୱୟ ଚନ୍ଦ୍ର-ସୂର୍ଯ୍ୟ, ଗଙ୍ଗା-ଯମୁନା ଭେଦରେ ମଧ୍ୟବର୍ତ୍ତୀ ସୁଷୁମ୍ନାର ସଂଯୋଗମୂଳକ ସମଭାବ ପ୍ରାପ୍ତ ହେବା ସହଜ-ସାଧନାର ଅଂଗୀଭୂତ ହୋଇଗଲା ।

ସମଭାବ ହେଉଛି ସକଳ ଦ୍ୱୈତଭାବର ଏକ ସମନ୍ୱୟାତ୍ମକ ଅଖଣ୍ଡ ଐକ୍ୟାବସ୍ଥା । ସଂଚକର୍ମ ଅନୁସାରେ ଏହା 'ସଂସାର' ଓ 'ନିର୍ବାଣ' ଦ୍ୱୈତ ଭାବବୃତ୍ତିର ସଂପୂର୍ଣ୍ଣ ନିଷ୍କାସିତ ଚେତନା ଭୂମି । ସମଭାବ ସହ ସମରସ ଓ ସହଜ ଶବ୍ଦ ଅଂଗାଂଗୀ ଜଡ଼ିତ । ଏହା ସମଷ୍ଟିତତ୍ତ୍ୱକୁ ମଧ୍ୟ ବୁଝାଏ । 'ହେ ବଜ୍ରତଂତ୍ର' ଅନୁସାରେ ସହଜ ସ୍ଥିତିରେ କୌଣସି ଦ୍ୱୈତାବସ୍ଥା ନ ଥାଏ । ଭଲ ଓ ମନ୍ଦ—ଦ୍ୱୈତଚେତନାର ସଂଘର୍ଷ ଅବସାନ ହେତୁ ମହାସୁଖମୟ ଏଇ ଅବସ୍ଥା । ସହଜଯାନର ମହାସୁଖ ବୌଦ୍ଧ ନିର୍ବାଣର ପରିବର୍ତ୍ତିତ ନାମାଂତର । ନିର୍ବାଣ ଲିଭିଯିବା ଅର୍ଥରେ ନାସ୍ତିସୂଚକ । ତଥାପି ତା ପ୍ରସଂଗରେ ଅସ୍ତିତ୍ୱାତ୍ମକତା ପ୍ରଯୁକ୍ତ ହୋଇଥାଏ । ବିଜ୍ଞାନବାଦ ଶାଖାରେ ସର୍ବ ଜ୍ଞାତା-ଜ୍ଞେୟ ବୋଧଲୁପ୍ତ ଶୁଦ୍ଧ ଚେତନା ଓ ଅନିର୍ବଚନୀୟ ସତତା/ତଥତାର ବିଜ୍ଞପ୍ତି ମାତ୍ର । ବସୁବନ୍ଧୁ ଏହି ବିଜ୍ଞପ୍ତିମାତ୍ରତାକୁ ନିର୍ବାଣର ଅନିବର୍ଚନୀୟ ରହସ୍ୟାତ୍ମକତା ବୋଲି ପ୍ରତିପାଦନ କରିଛନ୍ତି । ବୌଦ୍ଧ-ତଂତ୍ରରେ ନିର୍ବାଣର ସୁଖମୟ ସ୍ୱରୂପ ଭୋଗ ଓ ମୁକ୍ତି, ବୀଜ ଓ ବ୍ୟାପ୍ତି ଏବଂ ଭାବ ଓ ଅଭାବ ଅତିକ୍ରାଂତ 'ସୁଖାବତୀ' (ବୁଦ୍ଧମାନଂକର ସ୍ୱଧାମ) ରୂପେ ବର୍ଣ୍ଣିତ । ଆତ୍ମ-ଅନାତ୍ମ ଦ୍ୱଂଦ୍ୱ ରହିତ ଅବସ୍ଥାତୀତ ମହାସୁଖ ହିଁ ସହଜ-ବୁଦ୍ଧ-ରୂପ । ଏ ପରମାସ୍ଥିତିକୁ ଲାଭ କରିବାର ତାଂତ୍ରିକ ବୌଦ୍ଧପନ୍ଥାଟି ହେଲା ବାମାଚାରୀ ସାଧନା ମାର୍ଗ ।

ବାମାଚାରୀ ସାଧନାର ମୂଳ ସିଦ୍ଧାନ୍ତଟି ହେଉଛି ମନୁଷ୍ୟର ପ୍ରବୃତ୍ତି ମୂଳରେ ସର୍ବାପେକ୍ଷା ଶକ୍ତିଶାଳୀ ପ୍ରବୃତ୍ତି ଯୌନାବେଗକୁ ଯୋଗାଚାର ମାଧ୍ୟମରେ ଉଦ୍‌ଗତ କରିଦେବା । ମନସ୍ତତ୍ତ୍ୱର ବିଚାରରେ ପ୍ରେମ ମାନବର ସହଜାତ, ସହଜତମ ଓ ଆଦିମତମ ଅନୁଭବ । ଏହି ପ୍ରେମର ସ୍ଥୂଳତମ ଦୈହିକ ରୂପାୟନ-ଯୌନ ଚେତନା । ପ୍ରବଳ ବିରୋଧ ଓ ଦମନ ଦ୍ୱାରା ଚିତ୍ତବୃତ୍ତିରୁ ଏହାର ବାସନାକୁ ବହିଷ୍କାର କରିବା ଅସଂଭବ । ଏହା ଜୀବନ-ବିରୋଧୀ ବିଚାର ହୋଇଯିବ । ମନସ୍ତତ୍ତ୍ୱବିଦ୍‌ମତରେ ଯୌନାକାଂକ୍ଷା ନିବୃତ୍ତିମାର୍ଗର କଠୋରତା ଭିତରେ ସ୍ପଷ୍ଟ ଚେତନାଲୋକରୁ ନିଜକୁ ଅପସୃତ କରାଇ ନେଇଥାଏ, ମାତ୍ର ଅବଚେତନରେ ଏହା ସର୍ବାର ବିକୃତୀକରଣର ବହୁ ଅପ୍ରଶସ୍ତ ପଥ ଉନ୍ମୁକ୍ତ କରିଦିଏ । ଭାରତୀୟ ସାଧନାର, ବିଶେଷକରି ଏସୋଟେରିକ ସାଧନାର ମାର୍ଗଗୁଡ଼ିକ ଏହି ମୌଳିକ ପ୍ରବୃତ୍ତିର ସୂକ୍ଷ୍ମସଂସ୍ଥତା ଓ ସ୍ଥୂଳତାର ବିନାଶ ଦ୍ୱାରା ଚେତନାକୁ, ମହତ୍ତର ଲୋକକୁ ଉନ୍ମୋଳିତ କରିବାକୁ ଉଦ୍ଦିଷ୍ଟ । ନିର୍ଦ୍ଦିଷ୍ଟ ସାଧନାମାର୍ଗରେ

Digitized by PPRACHIN, SOA

କେବଳ ଶାରୀରିକ ନୁହେଁ, ମାନସିକ ଭାବବୃତ୍ତି ଓ ଅନ୍ୟାନ୍ୟ ଚେତନାସ୍ତରରେ ଏହି କାମ ପ୍ରବୃତ୍ତି ପ୍ରେମରେ ରୂପାନ୍ତର ଲାଭ ପାଇଲେ ହିଁ ଜୀବନ ସାର୍ବଭୌମ ସିଦ୍ଧି ଲାଭକରେ । ଏ ତତ୍ତ୍ୱ ଶୁଦ୍ଧ ବା ଅଶୁଦ୍ଧ, ପବିତ୍ର ବା ଅପବିତ୍ର ନୁହେଁ । ଚିତ୍ତର ବିକାଶରେ ଜୀବନର ସକଳ ଶକ୍ତିପରି ଏହାକୁ ବିନିଯୋଗ କରାଯାଇପାରେ ।୧୦ ସହଜିଆ ସାଧନା ପରବର୍ତ୍ତୀ କାଳରେ ସାଧକାର ଦ୍ୱାହିରେ ସ୍ୱୈରାଚାର ଓ ବ୍ୟଭିଚାର ମଧ୍ୟରେ ଅଧଃପତିତ ଓ ଭୁକ୍ତିବାଦରେ ପର୍ଯ୍ୟବସିତ ହୋଇଥିଲେ ହେଁ ଯୌନଚେତନାର ଊର୍ଦ୍ଧ୍ୱଗମନ ଦ୍ୱାରା ଆତ୍ମବିକାଶର ସମ୍ଭାବନା ଏକ ଆଧ୍ୟାତ୍ମ ସାଧନରୂପେ ଯେ ସ୍ୱୀକୃତ ( ରାଗେନ ବଧ୍ୟତେ ଲୋକ ରାଗୈ ମୈବ ବିମୁଚ୍ୟତେ ) ସେହି ଯୌନ ଯୌଗିକ ପରଂପରାର ଧାରାକୁ ଅନୁସରଣ କରିଛି । ପ୍ରକୃତ ସମାଧି, ମହାସୁଖ, ସମରସ ବା ସହଜିଆ ବୈଷ୍ଣବମାନଂକର ମହାଭାବ ମୁଖ୍ୟତଃ ସାଧକର ଚିତ୍ତଭୂମିର ଅବସ୍ଥା ଉପରେ ନିର୍ଭରଶୀଳ । ଅପରିଶୁଦ୍ଧ ଓ ଅନିୟଂନ୍ତ୍ରିତ ବାସନା ଅଧ୍ୟୁଷିତ ଚିତ୍ତରେ ସଞ୍ଜାତ ଅନୁଭବ ଓ ଅନୁଭାବନାମାନ ସ୍ଥୂଳଚେତନାତ୍ମକ ହେବା ସ୍ୱାଭାବିକ । ଏମାନେ ସାଂଘାତିକ ଶାରୀରିକ ସାଧକର ମାନସିକ ଓ ଆଧ୍ୟାତ୍ମିକ ବିପର୍ଯ୍ୟସ୍ତ ମଧ୍ୟ ଘଟାଇଥାନ୍ତି । ସୁତରାଂ ସକଳ ପ୍ରକାର ଏସୋଟେରିକ ସାଧନା ପଦ୍ଧତି ଚେତନାର ପ୍ରତ୍ୟେକ ସ୍ତରର ପୂର୍ଣ ପରିଶୁଦ୍ଧିକୁ ପ୍ରଥମେ ସର୍ତ୍ତ ରୂପେ ଆରୋପ କରିଥାଏ ।

## ଚର୍ଯ୍ୟାର ଶକ୍ତି ତତ୍ତ୍ୱ-ରହସ୍ୟ

ଚର୍ଯ୍ୟାସଂଗୀତମାନଙ୍କରେ ଅବଧୂତିକା, ଯୋଗିନୀ, ଚଣ୍ଡାଳୀ, ଡୋଂବୀ, ଶବରୀ, ନୈରାତ୍ମ ଦେବୀ, ସହଜ ସୁଂଦରୀ ପ୍ରଭୃତି ନାରୀ ସତ୍ତ୍ୱାର ରୂପକାତ୍ମକ ଅବତାରଣା ହୋଇଛି ଏବଂ ଚର୍ଯ୍ୟାକାର ବା ଯୋଗୀର ଏହି ନାରୀସହ ରହସ୍ୟାତ୍ମକ ମିଳନ ପ୍ରସଂଗ ବର୍ଣନା କରାଯାଇଛି । ପ୍ରକୃତ ପକ୍ଷେ ଚର୍ଯ୍ୟାଭକ୍ତ ଏହି ଯୋଗିନୀ ବା ସହଜ ସୁନ୍ଦରୀ ରକ୍ତମାଂସଧାରିଣୀ ପାର୍ଥିବ ସାଧନାସଂଗିନୀ ରୂପେ ବିଚାରଣୀୟା ନୁହନ୍ତି । ଚେତନାର ବିଭିନ୍ନ ସ୍ତରରେ ସଂଗୁପ୍ତ ଅସ୍ତିତ୍ୱର ସହଜାତ ଆତ୍ମଧାରିଣୀ ସହଜସ୍ୱରୂପିଣୀ ଶକ୍ତି ହିଁ ଏଇ ପରମାନାରୀ ନୈରାତ୍ମାରୂପେ ପରିକଳ୍ପିତା । ହିଂଦୁ-ତଂତ୍ରରେ ସେ କୁଣ୍ଡଳିନୀ ରୂପେ ମୂଳାଧାରଶାୟିତା ଏବଂ ସାଧନା ମାର୍ଗରେ ସହସ୍ରାରରେ ପ୍ରବେଶ କରିବାରେ ତାଙ୍କର ପୂର୍ଣ ଉଦ୍‌ବୋଧନ । ମୂଳାଧାରରେ ସୁପ୍ତା ଓ ଅପରିଶୁଦ୍ଧା ସେ ଅସ୍ପୃଶ୍ୟା ରମଣୀ-ରତ୍ନ ବୋଧି ଚିତ୍ତ (ବୁଦ୍ଧ ଚନ୍ଦ୍ର)ରେ ଆପଣାର ପରିଶୁଦ୍ଧିକୁ ପ୍ରାପ୍ତ ହେବା ପରେ ହିଁ ପରିଶୁଦ୍ଧା ଅବଧୂତିକା ରୂପେ ସହସ୍ରାରସ୍ଥ ଶୂନ୍ୟ ସ୍ୱଭାବ ବଜ୍ରସତ୍ତ୍ୱଙ୍କ ରମଣ ସୌଭାଗ୍ୟ ଲାଭ କରନ୍ତି । ଏହି ସଂଯୋଗ ସାଧକଯୋଗୀର ସହଜ ସୁନ୍ଦରୀ ଯୋଗିନୀ ସହ ମଧୁର ମିଳନସୁଖ ରୂପେ ସାହିତ୍ୟିକ ଅଭିବ୍ୟଂଜନା ଲାଭ କରିଛି ।

'ହେ ବଜ୍ରତଂତ୍ର'ରେ ମହାସୁଖର ଜନୟିତ୍ରୀ ଏହି ଯୋଗମୁଦ୍ରା ନାଭିକମଳରେ ଶାୟିତା ଅଗ୍ନି-ସ୍ୱରୂପା ବୋଲି ବର୍ଣିତ ଅଛି । କାହ୍ନୁପାଙ୍କ ବର୍ଣନାରେ ନିର୍ମାଣକାୟ ମଧ୍ୟରେ ଏହି ଅଗ୍ନିମୟୀ ଅବଧୂତିକା ବିଭିନ୍ନ ନାଡ଼ୀଚକ୍ରରେ ବହୁଦଳପଦ୍ମ ଉପରେ ନୃତ୍ୟରତା ଅର୍ଥାତ୍

10. "The philosophy itself is neither clean, nor unclean, but one of the thousand methods of enabling mind to break the illusion of its own surroundings. Sex is a fact and a universal fact and its force can be used for mind's enlightenment."
Christmas Humpreys : ' Buddhism ' P—192

Digitized by PPRACHIN, SOA

କ୍ରିୟାଶୀଳା ରୂପେ ଚର୍ଚ୍ଚିତା । ଏହି ଶକ୍ତି ବଜ୍ରସତ୍ତ୍ୱଙ୍କ ସହ ନିତ୍ୟ ନିମଜ୍ଜିତା ସ୍ୱରୂପା ବୋଲି ବୌଦ୍ଧ ଶାସ୍ତ୍ରରେ ଉଲ୍ଲେଖ ଅଛି ।

ଯୋଗ ସାଧନା ଦ୍ୱାରା ନାଭିଚକ୍ରରେ ଏଇ ନୈରାତ୍ମା ଅଗ୍ନିରୂପିଣୀ ପ୍ରଜ୍ୱଳିତା ହେଲେ ପଂଚସ୍କନ୍ଧ ବା ପଂଚଭୂତର ଜଗତ (ଓ ତାହାର ପ୍ରତିନିଧିତ୍ୱ କରୁଥିବା ପଂଚଧ୍ୟାନୀବୁଦ୍ଧ ତଥା ତାଂକର ପଂଚଶକ୍ତି) ଭସ୍ମ ହୁଅନ୍ତି । ଅର୍ଥାତ୍ ନିର୍ମାଣଚକ୍ରରେ ଚଣ୍ଡାଳୀ ଜଳି ଉଠିଲେ ସକଳ ଭାବବୃତ୍ତି ବାସନାବିଗ୍ରହ ଦଗ୍ଧ ହୋଇଥାଂତି । ମର୍ମକାଳିକାତଂତ୍ରରେ ଚଣ୍ଡାଳୀର ସ୍ୱରୂପ ବର୍ଣ୍ଣନା-ପ୍ରସଂଗରେ କୁହାଯାଇଛି, ଏହା ଆଖୁର ନିର୍ଯାସ ସ୍ୱରୂପ, ଦଂପତିଙ୍କର ମିଳନ ସୁଖ ସ୍ୱରୂପ, ଅଗ୍ନିତପ୍ତ କ୍ଷୀର-ସର-ଲବଣୀ ସଂଭୂତ ଘୃତ ସ୍ୱରୂପ । ମହାସୁଖ କାଳରେ ଏ ସେହି ସହଜ ସୁଂଦରୀ ଯାହା ନିତ୍ୟଶୁଦ୍ଧ ଯୋଗୀସହ ସଂଭୋଗରତା । ଚର୍ଯାଗାନରେ ଗ୍ରୀବାଚକ୍ରରେ (ସଂଭୋଗକାୟ) ଯୋଗୀସହ ନୈରାତ୍ମା ଦେବୀଙ୍କର ରମଣ ବିଳାସର ବର୍ଣ୍ଣନା ରହିଛି, "ହିଆ ତାମ୍ବୋଲ ମହାସୁହେ କାପୁର ଖାଇ / ଶୂନ ନିରାମଣି କଣ୍ଠେ ଲଇଆ ମହାସୁହେ ରାତି ପୋହାଇ ।" (୧୨) ଏଠାରେ ହୃଦୟସ୍ଥ ପ୍ରଜ୍ଞା ବୋଧିଚିତ୍ତକୁ, କଣ୍ଠ ସଂଭୋଗଚକ୍ରକୁ ଓ ରାତ୍ରି ଯାପନ କରିବା ଅର୍ଥ ରାତ୍ରି ରୂପିଣୀ ଅଂଧକାରମୟ ଅବିଦ୍ୟା ଅଜ୍ଞାନକୁ ବିନାଶ କରିବା ବୁଝାଉଛି । କାହ୍ନୁପାଙ୍କର ଏକ ଗୀତରେ ଦେଖାଯାଏ, 'ଅଜ୍ଞାନୀ ଡୋମ୍ବୀର ନିଂଦା ଗାଏ, ମାତ୍ର ଜ୍ଞାନୀ କେବେ ତାହାକୁ କଣ୍ଠ ଚ୍ୟୁତ କରେନାହିଁ ।" (୧୩) ଗୁଣ୍ଡରୀପାଦ କୁହଂତି, "ତିନି ନାଡ଼ୀକୁ ନିୟଂତ୍ରଣ ଓ ପବିତ୍ର କରିବା ପରେ ମୁଁ ଯୋଗିନୀକୁ ଆଲିଂଗନ କଲି ।" (୧୪) କାହ୍ନୁପାଂକର ଅତିପରିଚିତ ଗୀତିକା, 'ନଗର ବାହିରେ ଡୋଂବୀ ତୋହେରି କୁଡ଼ିଆ'ରେ ଡୋଂବୀ ସମାଜରେ ଅସ୍ପୃଶ୍ୟ ଓ ନଗରବହିଃସ୍ଥା ଅର୍ଥାତ୍ ନୈରାତ୍ମା ଇନ୍ଦ୍ରିୟଲବ୍ଧ ଜ୍ଞାନଜଗତର ବହିର୍ଭୂତା । ଡୋଂବୀର କୁଳଧର୍ମ ପରି ମାନସିକ ଧାରଣା ସଂଭୂତ ଏ କର୍ମ ଜଗତକୁ ସେ ପରିତ୍ୟାଗ କରିଛଂତି । ଦେହ ରୂପକ ସରୋବରରେ ବୋଧିଚିତ୍ତ ରୂପକ ହୃଦକମଳ ବିକଶିତ ଏବଂ ପ୍ରାଣମୟ (ଜୀବନ ବାୟୁ ରୂପିଣୀ) ଅବଧୂତିକା ସେଠାରେ ନୃତ୍ୟରତା । ଅନ୍ୟ ଏକ ଚର୍ଯାଗାନରେ କାହ୍ନୁପା ଓ ଡୋଂବୀଙ୍କର ବିବାହ ପ୍ରସଂଗ ବର୍ଣ୍ଣିତ । (୧୫) ବିବାହ ପାଇଁ

(୧୧) ଚଣ୍ଡାଳୀ ଜ୍ୱଳିତା ନାଭୌ ଦହଂତି ପଂଚ ତଥାଗତାନ୍" ହେବଜ୍ରତଂତ୍ର

(୧୨) "ଶବରୀପା" ଚର୍ଯା ନ : ୨୮ ।

(୧୩) "କେ ହା ଦେହା ତୋହରେ ବିରୁଆ ବୋଲଇ
ବିଦୁଜନ ଲୋଅ ତୋରେ କଣ୍ଠ ନା ମେଲଇ ।" ଚର୍ଯା ନ : ୧୮

(୧୪) "ତିଆଡ଼ା ଚାପି ଜୋଇନି ଦେ ଅଂକ ବାଲି
× × ଜୋଇନି, ତୋହ ବିନୁ ଖଣହି ନ ଜୀବମି ତୋ, ମୁହଁ ଚୁଂବୀ କମଲ ରସ ପୀବମି ।

(୧୫) ଭବନିର୍ବାଣେ ପଡହ ମାଦଲା / ମଣ ପବଣ ବେଣି କରଣ୍ଡ କସଂଲା ।
ଜଅ ଜଅ ଦୁଂଦୁଭି ନାଦ ଉଛଲିଲା / କାହ୍ନୁ ଡୋଂବୀ ବିବାହେ ଚଲିଲା ।
ଡୋଂବୀ ବିବାହିଆ ଅହା ସିବ ଜାମ / ଜଉତୁକେ କିଅ ଆଣୁ ତୁ ଧାମ ।
ଅହଣିସି ସୁରଅ ପସଂଗେ ଜାଅ / ଜୋଇଣି ଜାଲେ ରଅଣି ପୋହାଅ ।
ଡୋଂବୀ ଏଇ ସଂଗେ ଜୋ ଜୋ ଇ ରତ୍ତୋ / ଖଣହି ନ ଛାଡ଼ଅ ସହଜ ଉନ୍ମତ୍ତୋ ।
ଗୀତ ନ : ୧୯

Digitized by PPRACHIN, SOA

ବିବର୍ତ୍ତନ କାଳରେ ସଂସାର ଓ ନିର୍ବାଣ ପଟହ ଓ ମାଦଳ ରୂପକ ବାଦ୍ୟ ସଂଙ୍ଗରେ ପରିଣତ ହୋଇଛି । ଦୁଂଦୁଭି ନିର୍ଘୋଷ ସହ କାହ୍ନୁପା ବର ବେଶରେ ବିଜୟ ଘୋଷଣାକରି ବିବାହ କରି ଯାତ୍ରା କରୁଛଂତି । ବିବାହପରେ ତାଂକର ପୂର୍ବ 'ଅବାଢ଼ୁଆ' ଦୋଷ ନିରାକୃତ ହେଲା (ପୁନର୍ଜନ୍ମ ଖଣ୍ଡିତ ହେଲା ଏବଂ ଅନୁତ୍ତର ଧାମ ଯୌତୁକ ସ୍ୱରୂପ ପ୍ରାପ୍ତହେଲା) ଏବେ ସେ ଅହର୍ନିଶି ଯୋଗିନୀ ସହ ମିଳନରତ । ସେହି ଶୁଦ୍ଧା ଯୋଗିନୀର ସଂଗ ସୁଖରେ ଅଂଧକାର ରାତ୍ରି ଅତିକ୍ରାଂତ ହେଲା ।

ପାର୍ବତ୍ୟ ପ୍ରେମର ସୁନ୍ଦର ଚିତ୍ର ପ୍ରସ୍ତାବିତ ଶବରୀ ପାଦଙ୍କର ରସମଧୁର ଚର୍ଯାଟିର ମର୍ମାର୍ଥଟି ସେହିପରି ଗମ୍ଭୀର ଭାବବ୍ୟଂଜକ । "ଉଚ୍ଚ ଉଚ୍ଚ ପାବତ ତହିଁ ବସଇ ଶବରୀ ବାଳି" ଆଧ୍ୟାତ୍ମିକ ଚେତନା ଶିଖରରେ ନୈରାତ୍ମାର ଅଧିଷ୍ଠାନକୁ ସଂକେତ କରୁଛି । ସେ ବାଳିକା ସାଧକ ଶବରଂକୁ ଭବବିଳାସପ୍ରମତ୍ତ କିଂବା ସିଦ୍ଧିଲାଭ ପାଇଁ ଅଧୈର୍ଯ ନ ହେବାକୁ ଅନୁଯୋଗ କରୁଛି । ସିଦ୍ଧି ଯେ ସହଜାତ, ରହସ୍ୟ-ତତ୍ତ୍ୱର ଏ ଅଧ୍ୟାତ୍ମ-ଅଂଗୀକାରଟି ମଧ୍ୟ ସ୍ପଷ୍ଟ ଓ ତାତ୍ପର୍ଯମୂଳକ ରୂପ ସଂକେତ ବହନ କରୁଛି, "ତୋହୋର ଣିଅ ଘରଣୀ ଣାମ ସହଜ ସୁଂଦରୀ ।"

ସହଜାନୁଭବ—ଚର୍ଯାପଦର ଗାନରେ ଜୀବନର ମୌଳିକ ଓ ସର୍ବଶ୍ରେଷ୍ଠ ଉପଲବ୍ଧିଟି ସହଜ ଓ ସ୍ୱାଭାବିକ ବୋଲି ବର୍ଣ୍ଣନା କରାଯାଇଛି । ସହଜ ପ୍ରତିକ୍ରିୟା ବିହୀନ। ଏ ପ୍ରତିଭାସ ଜଗତ ମନର ପ୍ରସ୍ତୁତ (୧୬) ଭବସମୁଦ୍ର ଓ ଭାବସମୁଦ୍ର—ଉଭୟ ରାଜ୍ୟରେ ମନର ସଂପୃକ୍ତି ହିଁ ଚେତନା ସମୁଦ୍ରରେ ସୁଖ ଦୁଃଖର ତରଂଗ ଉଦ୍‌ବେଳ ସୃଷ୍ଟି କରେ । ଦେହ ରୂପକ ତରୁରୁ ରୂପଭାବ ଇତ୍ୟାଦି ପଂଚସ୍କଂଧ ଖସି ପଡ଼ିଲେହିଁ (୧୭) କାଳଜ୍ଞାନର ସ୍ରଷ୍ଟା ଗତିକାରକ ମନର ଅଭିବ୍ୟକ୍ତ ପ୍ରୟାସ ଲୋପପାଇଲେ ହିଁ ସର୍ବନିଷ୍ଠାସିଦ୍ଧ ନିରାବରଣ ସହଜ ଶୂନ୍ୟ ରୂପେ ଆତ୍ମ-ପ୍ରକାଶ କରଂତି । ସହଜ ଶୂନ୍ୟ ସ୍ୱରୂପ କାରଣ ତାଙ୍କର ସୁଖ-ଦୁଃଖ, ଭଲ-ମଂଦ, ପାପ-ପୁଣ୍ୟ ସ୍ୱର୍ଗ-ନରକ, ଆଦି-ଅନାଦିର ଭାବବିକାର ନାହିଁ । ସେ ସ୍ୱୟଂସ୍ଥିତ ହେତୁ ତାଙ୍କର ଗତିନାହିଁ, ତେଣୁ ଉନ୍ନତି ବା ଅବନତି ବା ଅଗ୍ରଗତି ତାଙ୍କ ପାଇଁ ସମାନଭାବେ ଅର୍ଥହୀନ । ସିଦ୍ଧି ଓ ସାଧନାର ପ୍ରସଂଗ ତେଣୁ ତାଂକ ପାଇଁ ଅବାନ୍ତର । ମନର ଭାବବୃତ୍ତିମାନ ଅଂଧକାର ପରି ବୋଧିଚିତ୍ତକୁ ଆଚ୍ଛାଦିତ କରି ରହିଥିଲେ ହେଁ ସତ୍ୟର ଚଂଦ୍ରୋଦୟ ହେଲେ ଏମାନେ ସ୍ୱତଃ ଦୂର ହୋଇଯାନ୍ତି (୧୮) ।

ସହଜ ସିଦ୍ଧାଂତରେ ଆଲୋକ ସତ୍ତାତ୍ମକ, ମାତ୍ର ଅଂଧକାର ନୁହେଁ । ଏହା ମନର ମାୟାବରଣ ରୂପେ କଳ୍ପିତ କାରଣ ଆଲୋକ ସମ୍ମୁଖରେ ଅଂଧକାର ଆପଣାକୁ ପ୍ରତିଷ୍ଠା କରିପାରେ

(୧୬) "ଉଦକ ଚାଂଦ ଜିମ ସଚନା ମିଛ ।" —ଲୁଇପା ଗୀତ ୨୯

(୧୭) "କାଆ ତରୁବର ପଂଚ ବିଡ଼ାଲ
ଚଂଚଳ ଚୀଏ ପଇଠୋ କାଲ ।" କାହ୍ନୁପା—ଚର୍ଯା ନ : ୧

(୧୮) "ଜଇ ସେ ଚାଂଦ ଉଦଆ ହୋଇ
ତଆ ରାଜ ତବ ସେ ସୋହଅଇ
ଘୂଜ ଏତିଲ ଜିମ ରାତି ପୋହାଇ
ଭବ ସମୁଦ୍ରା ମୋହ ତମ ଅବସରି ଯାଇ ।" କାହ୍ନୁପା—ଗୀତ ନ ୨୪

Digitized by PPRACHIN, SOA

ନାହିଁ । ପ୍ରତିଭାସର ଅବରୋଧ ସକଳ ଅଂଧକାରକୁ ଭ୍ରାନ୍ତ ପ୍ରତିପାଦନ କରାଇ ଦିଏ । ମାୟା-ବରଣର ଅପସାରଣ ପରେ ସତ୍ତା ଆପଣାର ସହଜସ୍ୱରୂପରେ ନିର୍ଦ୍ୱଂଦ୍ୱ ରହିଥାଏ ।

ଜନ୍ମମରଣପ୍ରକଟିତ ଜୀବନ ଏକ ଅନ୍ଧକାର ପରି । ନିଦ୍ରାପରି । ପ୍ରପଂଚ ଜଗତ ସ୍ୱପ୍ନ ସଦୃଶ । ଯେପରି ନିଦ୍ରା ସମୟରେ ସ୍ୱପ୍ନ ସୃଷ୍ଟି ହୁଏ, ନିଦ୍ରା ଯୋଗୁଁ ହିଁ ସ୍ୱପ୍ନ ସମ୍ଭବ ହୁଏ । ସଚେତନ ଜାଗ୍ରତାବସ୍ଥାରେ ସ୍ୱପ୍ନକୁ ପ୍ରବେଶାଧିକାର ମିଳେ ନାହିଁ । ପୁଣି, ସ୍ୱପ୍ନରେ ସ୍ପୃହଣୀୟ ଅସ୍ପୃହଣୀୟ ଅନେକ କିଛି ଘଟିଯାଏ । ମାତ୍ର ନିଦ୍ରୋତ୍ଥିତ ହୋଇଗଲା ପରେ ବ୍ୟକ୍ତି ସ୍ୱପ୍ନଘଟିତ କୌଣସି ବ୍ୟାପାରର ଦାୟିତ୍ୱ ବା କର୍ତ୍ତୃତ୍ୱ ନିଏ ନାହିଁ । ସେହିପରି ବସ୍ତୁତରୂପକ ନିଦ୍ରାମୟ ଅନ୍ଧକାରାଚ୍ଛନ୍ନ ଚିତ୍ତଭୂମିରେ ଯେଉଁ କ୍ରିୟାମାନ ସଂଘଟିତ ହୁଏ, ସେଗୁଡ଼ିକର ଅସ୍ତିତ୍ୱସହ କୌଣସି ସମ୍ପର୍କ ନାହିଁ । ସତ୍ତା କିଛି କରେ ନାହିଁ, ତେଣୁ ଫଳାଫଳ ମଧ୍ୟ ତାକୁ ସ୍ପର୍ଶ କରେନାହିଁ । ବାହ୍ୟ ସତ୍ତା ଅହଂ କର୍ତ୍ତୃତ୍ୱର ଧାରଣାରେ ସେ ସବୁର ଫଳଭୋକ୍ତା ରୂପେ ସୁଖଦୁଃଖାଧୀନ ହୋଇପଡ଼େ । ଭାରତୀୟ ଅଧ୍ୟାତ୍ମବାଦ ବାହ୍ୟସତ୍ତାସଂପୃକ୍ତ ଏଇ ବିକ୍ଷିପ୍ତ ଭାବ ଜଗତର ପ୍ରତିଭାସକୁ ମାୟା ବୋଲି ଅଭିହିତ କରିଥାଏ ।

ଆପଣାର ଶୂନ୍ୟରୂପ ସ୍ମରଣରେ ସତ୍ତାର ତତ୍କାଳ ବୋଧୋଦୟ ହୁଏ, କର୍ମ ଓ ଫଳର ସମ୍ପର୍କ ମଧ୍ୟ ନଷ୍ଟ ହୁଏ । ଜ୍ଞାନ-ସୂର୍ଯ୍ୟର ଉଦୟମାତ୍ରେ ଯୁଗଯୁଗର ବସ୍ତୁତ ଘେରା ସ୍ୱପ୍ନଭରା ନିଦ୍ରା ଘୋର ଅନ୍ଧକାର ରାଶି ଅପସୃତ ହୋଇଯାଏ । ଆତ୍ମରୂପ ପରିଚୟ ଲାଭକରି କର୍ମାକର୍ମ ନିରପେକ୍ଷ ସତ୍ତା କର୍ତ୍ତାଭୋକ୍ତାର ଅହଂତାଜଟକୁ ଗୋଟାଏ ନିରାସକ୍ତ ହସ୍ତସଂଚାଳନରେ ଫିଂଗିଦେଇ ଲୂତାତଂତୁତ୍ୟାଗୀ ଊର୍ଣ୍ଣନାଭପରି ନିର୍ଜଂଜାଳ ହୋଇଯାଏ (୨୮) କିଂତୁ ସ୍ୱପ୍ନ ଯେ ଦେଖେ ସେ ମିଥ୍ୟା ନୁହେଁ, ମାୟା ନୁହେଁ । ମିଥ୍ୟା ଜଗତର ମାୟାମୟ ସ୍ୱପ୍ନସବୁ ଭାଂଗିଗଲା ପରେ ଦ୍ରଷ୍ଟା ପୁରୁଷ, ସାକ୍ଷୀ ଚୈତନ୍ୟ, ପ୍ରତିକ୍ରିୟାଶୂନ୍ୟ ସହଜ ଶୂନ୍ୟତା ଜାଗ୍ରତଥାଏ (୧୯) ଏହାରି ଅବଧାରଣ ହିଁ ସହଜ ଅନୁଭବ ।

ଚର୍ଯ୍ୟା ଆଚରଣୀୟ; ତଂତ୍ରର ନୁହେ ବା ମଂତ୍ରର ନୁହେ । ସହଜସାଧନା ନାଡ଼ୀଚାଳନା ବା ଶ୍ୱାସକ୍ରିୟା ନୁହେ । ଧ୍ୟାନଧାରଣା ବା କୃଚ୍ଛ୍ର ସାଧନା ନୁହେ । ଆକାଂକ୍ଷା ବା ବର୍ଜନ କିଛି ବି ତାର ସାଧନୀୟ ନୁହେ । ଆକାଂକ୍ଷାରେ ଲିପ୍ତତା ଓ ବର୍ଜନରେ ବିରୋଧ ଅନିବାର୍ଯ୍ୟ । ମାତ୍ର ସହଜ ନିର୍ବିରୋଧ -ନିର୍ଦ୍ୱନ୍ଦ୍ୱ । ତେଣୁ ଗୃହତ୍ୟାଗ, ପ୍ରିୟ ପରିଜନ ସାଂଖ୍ୟବର୍ଜନ ଓ ସଂସାର ବିଦ୍ୱେଷ ଏବଂ ବନବାସ-ଚର୍ଯ୍ୟାର ସାଧନା ନୁହେ । ଚର୍ଯ୍ୟାପଦର ସାଂକେତିକ ବ୍ୟଂଜନାରେ ଏମାନେ ଭିନ୍ନାର୍ଥକ ।

ସମସ୍ୟା ସଂସାର ନୁହେ । ଅପର ବ୍ୟକ୍ତି ନୁହେ । ସମସ୍ୟା ନିଜ ମନର ବଂଧ ସ୍ୱରୂପରେ ବିଦ୍ୟମାନ । ସ୍ଥାନାଂତର ଯାହା ସମାଧାନ ନୁହେଁ । ଅରଣ୍ୟ ମଧ୍ୟ ଗୃହପରି ସ୍ଥାନ ବିଶେଷ । ତୀର୍ଥସ୍ଥଳୀର ମଧ୍ୟ ଆକର୍ଷଣ ଅଛି । ସତ୍ତା ହିମାଳୟର ବଂଧନ ମାନିନେଲେ ସେଠାରେ ବି ସ୍ୱାଧୀନ ହୋଇପାରେନା । ଚର୍ଯ୍ୟା ଏହାରି ଆଚରଣ ରହସ୍ୟ ।

---

(୧୯) "ମାଟିଆ ଶାଶୁ ନଣଂଦ ଘରେ ଶାଳୀ
ମାଆ ମାରିଆ କାହ୍ନୁ ଭଇଲ କାଳୀ ।" କାହ୍ନୁପାଦ : ୧୧

(୨୦) "ମଂତ୍ରଣା ତଂତ୍ରଣା ଓ ଧଅଣ/ସବ୍ବରେ ବଢ ବିବ୍ଭମ କାରଣ"
ସରହପାଦ—"ହୁଂଢ଼ କାବ୍ୟଧାରା" ୯

Digitized by PPRACHIN, SOA

ବନବାସ ସ୍ୱବାସ ନୁହେଁ । କ୍ଷେତ୍ରଯାତ୍ରା ମୁକ୍ତିଯାତ୍ରା ନୁହେଁ, ନିଜଠାରୁ ପଳାୟନ । ନିଜେ ହିଁ ନିଜର ମୁକ୍ତିକ୍ଷେତ୍ର । ସଂସାର ତ୍ୟାଗର ଅର୍ଥ, ସଂସାର ସହ ଯେଉଁ ଆତ୍ମୀୟତାର ସ୍ୱୀକୃତି ବ୍ୟକ୍ତିକୁ ଆସେ । ଚିତ୍ତ ବିକ୍ଷେପ କବଳିତ କରେ, ସେହି ଭବମୁକ୍ତି । ଗୃହପରି ଅରଣ୍ୟର ମଧ୍ୟ ସ୍ୱତଂତ୍ର ବଂଧନ ଅଛି । ବନବାସରେ ମଧ୍ୟ ସୁଖ ସ୍ପୃହା ଚିତ୍ତଗ୍ରନ୍ଥି ଜାତ କରିପାରେ । (୨୧) ଅତଏବ ସ୍ପୃହା ହିଁ ବଂଧନ । ମନର ବିସ୍ତୃତି ହିଁ ବଂଧନ । ମନ ସଂପୃକ୍ତ ସଂଯୋଗ ସୃଷ୍ଟି କରେ । ଅଧିକାର ସଂବଂଧ ଆସି ସଂସାରରେ ହଜାଇଦିଏ । ଏ ସମ୍ବନ୍ଧ-ଧାରଣାଟି ତୁଟିଗଲେ ନିଦ୍ରା ସହ ସ୍ୱପ୍ନ ଅନ୍ତର୍ହିତ ହୋଇଯିବା ପରି କର୍ମ ବଂଧନ ଶେଷ ହୋଇଯାଏ । ଚିତ୍ତ ନିରୋଧର ସାଧନା ଭିତରେ ଡାଳପତ୍ର ରୂପକ କାମନା ବାସନାକୁ କାଟିଦେଲେ ସଂସାର ବୃକ୍ଷ ମରିଯାଏ ନାହିଁ । ମୂଳ ଚେର ମନକୁ, ମନର ସଂପୃକ୍ତ-ବିସ୍ତୃତିକୁ କାଟି ଦେବାକୁ ହୁଏ ।

ମନର ସଂବଂଧ କର୍ମବଂଧନ ସୃଷ୍ଟିକରି ସତ୍ତ୍ୱାକୁ ସଂସାର ସହ ବାଂଧି ରଖିଥାଏ । ସହଜକର୍ମ ସ୍ୱତଃ, ପ୍ରେରଣାତ୍ମକ, ତାତ୍କାଳିକ ଓ ସୃଜନାତ୍ମକ । ମାତ୍ର ମନର ଅସ୍ଥିରତା କର୍ମ ପ୍ରତିକ୍ରିୟାତ୍ମକ, ଜଂଜାଳ ସ୍ୱରୂପ । ଏହା ଫଳାଫଳ ସଂବଂଧିତ । କିଂତୁ ସହଜକର୍ମ ଫଳାଫଳ ନିରପେକ୍ଷ । ଏହା ଯୋଗୀର କର୍ମ । ଯୋଗୀ ନିଷ୍କର୍ମା ନୁହେଁ, ନିର୍ଲିପ୍ତକର୍ମୀ; ନିଷ୍କ୍ରିୟ ନୁହେଁ, ନିଷ୍କାମକର୍ମୀ । ଫଳାଫଳ ନିର୍ଲିପ୍ତତା ହିଁ ତାର ନିର୍ଜଂଜାଳତା । ନୀରବ, ଶାନ୍ତ, ଯୋଗସ୍ଥିର ବୋଧିଚିତ୍ତରେ ଏ କର୍ମପ୍ରେରଣାର ଉଦ୍‌ବୋଧନ । ଏଇ ନିରୁଦ୍‌ବିଗ୍ନତାହିଁ ନିର୍ବାଣସ୍ଥିତି, ସହଜସ୍ଥିତି । ଏହି ସ୍ୱ-ସ୍ଥିତିରେ ସତ୍ତ୍ୱା ସ୍ଥିରକକ୍ଷ ହୋଇଗଲେ କ୍ରିୟା ଜଗତର କର୍ମବଂଧନରେ ଆଉ ଘୂରେନାହିଁ । ପ୍ରବୃତ୍ତି ଓ ନିବୃତ୍ତି, ଉଭୟ ସଂଘର୍ଷ ମୁକ୍ତ ଅନାସକ୍ତ ଚିତ୍ତରେ ସବୁ କର୍ମବଂଧନ ଆପେ ଆପେ ଶିଥିଳ ହୋଇଯାଏ । (୨୨)

କର୍ମରେ ସଂଲଗ୍ନତା ତୁଟିଗଲେ ନିର୍ବିକାର ନିର୍ବାଧ ଶୂନ୍ୟ ହିଁ ଆତ୍ମାର ସହଜ ସ୍ୱରୂପରେ ଉଦ୍‌ଭାସିତ ହୋଇଉଠନ୍ତି । ବାଂଶନଳୀର ବହିରାବରଣ ପରି ବ୍ୟକ୍ତିର ବାହ୍ୟ ଅବବୋଧ ଅସ୍ୱୀକୃତ ହୋଇଗଲା ପରେ ନିରାବରଣ ଶୂନ୍ୟତାରେ ପୂର୍ଣର ବିପୁଳାବତରଣ ଘଟେ । ଏଇ ଆଶ୍ଚର୍ଯ୍ୟାନୁଭୂତିରେ ହିଁ ବାଂଶନଳୀ ବଜ୍ର-ବଂଶୀରେ ରୂପାଂତରିତ ହୋଇଯାଏ । ସତ୍ତ୍ୱା ଅହଂଗତ ଶୂନ୍ୟତାଲାଭ କଲେ ପୂର୍ଣର ସ୍ୱରଚୁଂବନ ଲାଭକରେ । ଏଇ ଅପ୍ରମିତ ଶୂନ୍ୟତାର ପରିପୂର୍ଣ ମୁହୂର୍ତ୍ତରେ ସକଳ ସାଧନା ସମାପ୍ତ ହୁଏ । ଅଗ୍ର-ପଶ୍ଚାତ୍‌, ଊର୍ଦ୍ଧ୍ୱ, ନିମ୍ନ, ସକଳ ଅଭିମୁଖିତା ଓ ଗତି ବର୍ଜିତ ଏଇ ଶୂନ୍ୟର ଅବବୋଧରେ ହିଁ ସାଧକର ପ୍ରବୁଦ୍ଧ ଚେତନାଲୋକରେ 'ବୁଦ୍ଧନାଟକ' ବିରଚିତ ହୁଏ । (୨୩) ବଜ୍ରଧର (ଯୋଗୀ) ଆନନ୍ଦବୀଣା ବାଦନ କରଂତି । ଯୋଗିନୀ ସମରସର ସଂଗୀତ ଗାନ କରଂତି । ସହଜସଂବର୍ଦ୍ଧନାର ଏ ମଧୁର ଲଗ୍ନରେ ଯୋଗୀ କାହ୍ନୁପା ମହାସୁଖଦାୟିନୀ, ସହଜସୁନ୍ଦରୀ 'ନଇରାମଣୀ' ଦେବୀ ମହାମୁଦ୍ରାଂକ ସହ ମହାମିଳନରେ ବିବାହ ଉତ୍ସବ ରଚନା କରନ୍ତି ।"

---

(୨୧) "ମାଳତୋ କରମେ ଫିରେ କହ୍ୱା ଫିର ମୁଖ ମାହି
ମନୁୟାତୋ ଚୌଦିଶ ଫିରେ ୟହ ତୋ ସୁମରଣ ନାଂହି ।"

କବୀର—'ଆଶ୍ଚର୍ଯ୍ୟଚର୍ଯ୍ୟାଚୟ' ( କରୁଣାକର କର ) —ପୃ ୩୨୬

22. "Sahaja is at its best, implies that there is neither desire, nor-non-desire, neither wish, nor repulsion."

R. C. Mazumdar—'Mysticism in love and Sex'— P 137

(୨୩) "ନାଚଂତି ବାଜିଲ ଗାଂତି ଦେଇ 'ବୁଦ୍ଧନାଟକ ବିଷମା ହୋଇ ।

XI. "କାହ୍ନୁ ଡୋଂବୀ ବିବାହେ ଚଳିଲା ।

Digitized by PPRACHIN, SOA

# ନିର୍ଗୁଣ-ରହସ୍ୟ ସାଧନା

ନିର୍ଗୁଣ ଉପାସନା ଭାରତୀୟ ଅଧ୍ୟାତ୍ମ ପରଂପରାର ବ୍ରହ୍ମତ୍ୱ ଓ ଭକ୍ତିତ୍ୱ ପ୍ରକାଶୀ ବିଶ୍ୱାସମାନଂକର ଏକ ସୁସମନ୍ୱିତ ପୀଠିକା ରୂପେ ଆତ୍ମପ୍ରକାଶ କରିଥିଲା । ଯୋଗର ଅଜପା ଓ ପ୍ରାଣାୟାମ, ତଂତ୍ରର କୁଣ୍ଡଳିନୀ ସାଧନା, ଶଙ୍କରାଚାର୍ଯ୍ୟଙ୍କ କେବଳାଦ୍ୱୈତ, ଭକ୍ତ ପ୍ରଚାର କୃପାତତ୍ତ୍ୱ ଓ ଭାବସାଧନା ନିର୍ଗୁଣ ଉପାସନାରେ ସ୍ୱୀକୃତ ଥିଲା । ରାମାନନ୍ଦଙ୍କଠାରେ ପୂର୍ବବର୍ତ୍ତୀ ଅଧ୍ୟାତ୍ମ-ସାଧନାମାନଂକର ଏକ ସୁସ୍ପଷ୍ଟ ଓ ଯୁଗୋପଯୋଗୀ ସମନ୍ୱୟ ଘଟିଥିଲା ବୋଲି କୁହାଯାଇପାରେ । (୧) ତାଂକର ଅନୁଗାମୀ କବୀରଂକ ପନ୍ଥାରେ ଇସଲାମୀୟ ଅବତାର-ବର୍ଜିତ ଏକେଶ୍ୱର ଉପାସନା ଭାରତୀୟ ଭକ୍ତି ଭାବନାରେ ନୂତନ ସାଧନାତତ୍ତ୍ୱ ସ୍ଥାପନାକଲା । ଗୁରୁ-ସାଧନାର ପ୍ରେମପ୍ରତୀକାତ୍ମକତା ଏହି ସମୟରୁ ଅଧ୍ୟାତ୍ମ-ସଙ୍ଗୀତ ରଚନାରେ ବହୁଳଭାବେ ପ୍ରଯୁକ୍ତ ହେଲା । କାବ୍ୟ ସାହିତ୍ୟରେ ମଧ୍ୟ ଏହାର ମୁକ୍ତ ବିଳାସ ପରିଦୃଷ୍ଟ ହେଲା ।

ପ୍ରସଂଗତଃ ଉଲ୍ଲେଖଯୋଗ୍ୟ ନିର୍ଗୁଣ ଭକ୍ତିସାଧନା ସଂପୂର୍ଣ୍ଣଭାବେ ସୁଫି ଉପାସନାର ଅବଦାନ ନୁହେ । ରାମାନଂଦ ଓ ତାଂକର ଅନୁଗାମୀମାନଂକ ଅନୁଶୀଳିତ ଏହି ଭକ୍ତିଭାବନାର ମୂଳସ୍ତଂଭ ଭାରତୀୟ ଐକାଂତିକୀ ଧର୍ମ ଯାହା ବୈଷ୍ଣବୀୟ ବ୍ୟାଖ୍ୟାରେ 'ନବଧା' ରୂପେ ଅନୁସୃତ ହୋଇ ଆସୁଥିଲେ ବି 'ଭକ୍ତିସୂତ୍ର'ର ଦଶଧା ବା ପ୍ରେମ-ଭକ୍ତିର ମହତ୍ତ୍ୱ ରାମାନଂଦଙ୍କ ଦ୍ୱାରା ସର୍ବୋଚ୍ଚ ଅଧ୍ୟାତ୍ମ ସାଧନାରୂପେ ସ୍ୱୀକୃତ ହୋଇଥିଲା । ଦେବର୍ଷି ନାରଦଂକ ଦ୍ୱାରା ପ୍ରବର୍ତ୍ତିତ ବୋଲି କଥିତ ଏହି 'ଭକ୍ତିସୂତ୍ର'ରେ ଭକ୍ତି ସଂବଂଧରେ 'ସାତ୍ୱ ଅସ୍ମିନ୍ ପରମ ପ୍ରେମ-ରୂପା' ବୋଲି ଉଲ୍ଲେଖ ରହିଛି । କବୀର ମଧ୍ୟ ଏହି ନାରଦୀୟ ବ୍ୟାଖ୍ୟାକୁ ସମର୍ଥନ କରି ଏହାକୁ ଜୀବର ଚରମ ପାର୍ଥିବ ସାଧନା ବୋଲି ଗ୍ରହଣ କରିଛଂତି । (୨) ବଲ୍ଲଭ ସଂପ୍ରଦାୟରେ କୃଷ୍ଣ ଏକମାତ୍ର ପୁରୁଷୋତ୍ତମ ଓ ଜୀବଜଗତ ନାରୀରୂପୀ ଏବଂ ପ୍ରେମ ମାର୍ଗରେ ଏହି ପୁରୁଷଂକୁ ପ୍ରାପ୍ତହେବା 'ମୋକ୍ଷ' ବୋଲି ଗୃହୀତ । (୩) ଏଇ ପରିପ୍ରେକ୍ଷୀରେ ପରବର୍ତ୍ତୀ କାଳରେ ଚୈତନ୍ୟଂକ ପ୍ରେମ ଭକ୍ତିର ଶୃଙ୍ଗାରାନୁରାଗବିଳାସ ଭାରତୀୟ ଭକ୍ତି ସାଧନା ପାଇଁ ନୂତନ ବା ଆକସ୍ମିକ ନଥିଲା ।

ନିର୍ଗୁଣ ପନ୍ଥା—ନିର୍ଗୁଣ ସିଦ୍ଧାନ୍ତ ବେଦାଂତ ବର୍ଣ୍ଣିତ ସପ୍ତକୋଷମାନଂକୁ ସ୍ୱୀକୃତ ଦିଏ । ନିର୍ଗୁଣ ସୃଷ୍ଟି ତତ୍ତ୍ୱରେ 'ଅଭିବ୍ୟକ୍ତିବାଦ' ସ୍ୱୀକୃତ । ପର୍ଯ୍ୟାୟକ୍ରମିକ ରୂପାଂତର ଭେଦରେ ଜୀବମୂଳ ଉତ୍ସ ସୃଷ୍ଟିଠାରୁ ଦୂରବର୍ତ୍ତୀ ହୋଇଯାଇଥାଏ । ଆତ୍ମଜ୍ଞାନ ମାଧ୍ୟମରେ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ ହିଁ ଜୀବନର ମୁକ୍ତିସାଧନା । ଏହା ନିର୍ଗୁଣ ଅଭିବ୍ୟକ୍ତିରେ 'ପ୍ରତ୍ୟାବୃତ୍ତି' (retracing steps) ବୋଲି ପରିଚିତ । କବୀରଂକ ଏକ ରଚନାରେ ଜୀବଦେହ ମଥୁରା ଓ କୃଷ୍ଣ ଆତ୍ମାର ପ୍ରତୀକରୂପେ

---

(୧) "It was in Ramananda that Nathism and Vaisnabism discernibly met.

Dr. Barathwal—"Tradition of Indian Mysticism based up on Nirguna School of Hindi Poetry" Introduction—PXV

(୨) "ଭଗତୀ ନାରଦୀ ମଗନ ଶରୀରା/ଇହବିଧି ଭବ ତରି କହୈ କବୀରା ।"

କବୀର ଗ୍ରନ୍ଥାବଳୀ—୧୯୮

(୩) "ହମ ସବନାରୀ ଏକ ଭର୍ତାରା/ସବକୋଇ ତନ କରେ ସିଂଗାର ।"

ଦାଦୁ 'ଜ୍ଞାନସାଗର'—ପୃ ୨୨୨

Digitized by PPRACHIN, SOA

ବର୍ଣ୍ଣିତ । (୪) ବେଦାଂତ ଓ ବୌଦ୍ଧଦର୍ଶନର ବୃକ୍ଷାପକ୍ଷୀ ପ୍ରତୀକରେ (୫) ମଧ୍ୟ ଏ ଆତ୍ମା-ପରମାତ୍ମାର ସମ୍ପର୍କ ନିର୍ଦ୍ଧାରଣ ନିର୍ଗୁଣଚେତନାର ସ୍ୱୀକୃତ । ଏହି ମତରେ, ଜୀବ ପରମାତ୍ମା ସମ୍ଭୂତ ହେତୁ ପରମ ଜ୍ଞାନର ଅଧିକାରୀ ହେଲେ ବି ଅଜ୍ଞାନତା ଦୋଷରୁ ଜ୍ଞାନାମୃତ ଆସ୍ୱାଦନରୁ ବଂଚିତ ହୋଇଥାଏ । ଯେଉଁ ମାଛ ଜଳରେ ବୁଡ଼ି ରହିଥିବା ପରି ସେ ସବଦା ପରମାତ୍ମାଂକ ଭିତରେ ଅବସ୍ଥାନ କଲେ ବି ଉପଲବ୍ଧିର ଅକ୍ଷମତା ହେତୁ ସୀମାବଦ୍ଧତାର ଯନ୍ତ୍ରଣା ଭୋଗିଥାଏ । (୬)

ନିର୍ଗୁଣ ଦର୍ଶନରେ ସମସ୍ତ ଅବତାର ତତ୍ତ୍ୱ, ପ୍ରତିମା ପୂଜା ଓ ଆଚାର ଧର୍ମିତା ବର୍ଜିତା ଲକ୍ଷଣୀୟ । ଅବତାର ବା ପ୍ରଚାରକ ସମ୍ପର୍କରେ ନିର୍ଗୁଣ-ମାନସରେ ଯେଉଁ ବିଦ୍ୱେଷ ପ୍ରକଟିତ, ତାହା ମୁଖ୍ୟତଃ ବ୍ୟକ୍ତିକୁ ଦେବତାରୂପେ ଭକ୍ତି କରିବା ବିରୁଦ୍ଧରେ । କବୀର/ତୁଳସୀଂକ ରାମ ବା ରାଧାସ୍ୱାମୀ ସମ୍ପ୍ରଦାୟର ଶ୍ରୀକୃଷ୍ଣ ପ୍ରକୃତରେ ଦଶରଥ ପୁତ୍ର-ଶ୍ରୀରାମ ବା ନନ୍ଦନନ୍ଦନ ଦ୍ୱାରକାଧୀଶ-ଶ୍ରୀକୃଷ୍ଣ ନୁହନ୍ତି । ସେମାନେ ପରଂବ୍ରହ୍ମଂକର ନାମରୂପ ଅଭିବ୍ୟକ୍ତ ରୂପେ ଉପାସିତ । ନିର୍ଦ୍ଦିଷ୍ଟ ସ୍ଥାନକାଳ ଅଧୀନ ବ୍ୟକ୍ତିତ୍ୱରେ ଦୈବତ ଆରୋପମୂଳକ ବ୍ୟକ୍ତି ଆରାଧନା ନିର୍ଗୁଣ ପନ୍ଥାରେ ଅସ୍ୱୀକୃତ ।

ବୌଦ୍ଧ-ଦର୍ଶନର ମଧ୍ୟମପନ୍ଥା ଓ ଅସମ୍ପୃକ୍ତିବାଦ ମଧ୍ୟ ନିର୍ଗୁଣଚର୍ଯ୍ୟାକୁ ପୁଷ୍ଟ କରିଛି । ଚର୍ଯ୍ୟାଗୀତିରେ ବୀଣାପାଙ୍କ ବର୍ଣ୍ଣନାରେ ଜୀବନ ବୀଣାତୁଲ୍ୟ ବୋଲି ପ୍ରତିପାଦିତ ଯାହାର ତାର ଖୁବ୍ ଶିଥିଳ ବା ଶକ୍ତ ହୋଇ ରହିଲେ ସ୍ୱର ଉତ୍ପନ୍ନ ହୋଇପାରେ ନାହିଁ । କଠୋର ନିବୃତ୍ତି ବା ଅନିୟଂତ୍ରିତ ପ୍ରବୃତ୍ତି ମୂଳକତାର ଉଭୟ ପନ୍ଥା ଚେତନାର ବିକାଶର ପରିପନ୍ଥୀ । ଭବବିଳାସ ବା ଜଗତ-ବିମୁଖତା ଜୀବର ଲକ୍ଷ୍ୟ ନୁହେଁ । ପଦ୍ମପତ୍ର ନ୍ୟାୟ ସଂସାରରେ ଥାଇ ନିର୍ଲିପ୍ତ କର୍ମସାଧନା କରିବାର ଗୀତା-ନିର୍ଦ୍ଦେଶ ହିଁ ନିର୍ଗୁଣ ପ୍ରତିପାଦିତ ନିଷ୍କାମ-କର୍ମବାଦ । ଏହି ନିଷ୍କାମ କର୍ମମୂଳକ ଭାବଭକ୍ତି ସାଧନାରେ ବୈଷ୍ଣବର ଆତ୍ମ ନିବେଦନାତ୍ମକ ମଧୁର ରସ ସାଧନାର ସ୍ୱର ମଧ୍ୟ ଉଚ୍ଚାରିତ । ନିବୃତ୍ତିମୂଳକ ଅନୁଚର୍ଯ୍ୟାରେ 'ଜୀବନରସକୁ ଶୁଷ୍କ କରି ମାରିଦେବା ପରିବର୍ତ୍ତେ, ମୂଳରେ ଜଳ ଦେଲେହିଁ ସମସ୍ତ ଶାଖାପ୍ରଶାଖାରେ ତାହା ସ୍ୱତଃ ସଂଚାରିତ ହୋଇଯିବ, କବୀରଙ୍କ ଏହି ବର୍ଣ୍ଣନାରେ ଜଳ ଭକ୍ତିରସ ଏବଂ ବୃକ୍ଷ ସତ୍ତାରୂପେ ପ୍ରତିପାଦିତ ।

ନିର୍ଗୁଣ ପନ୍ଥାରେ ମୋକ୍ଷ ସାଧନା ଆତ୍ମସୁଖପାଇଁ ନୁହେଁ—ପ୍ରିୟ ଦେବତାର ପ୍ରୀତି ଅନୁରାଗ ପାଇଁ ଉଦ୍ଦିଷ୍ଟ । କୃପାତତ୍ତ୍ୱ ଓ ଗୁରୁବାଦ (୭) ନିର୍ଗୁଣ ସାଧନାରେ ଅପରିହାର୍ଯ୍ୟ ଭୂମିକା ଗ୍ରହଣ କରନ୍ତି । ଏ ଦୃଷ୍ଟିରୁ ଭାବମାର୍ଗ ଓ ଯୋଗର ପ୍ରାଧାନ୍ୟ ମଧ୍ୟ ସ୍ୱୀକୃତ । ଗୁରୁ ପ୍ରଦତ୍ତ 'ନାମ' ସ୍ମରଣହିଁ ନିର୍ଗୁଣୀର ସାଧନପନ୍ଥା । ଏହି ନାମସ୍ମରଣ 'ଶବ୍ଦଯୋଗ' ନାମରେ ପରିଚିତ । ରାଧାସ୍ୱାମୀ ସଂପ୍ରଦାୟ ଏ ନାମସ୍ମରଣକୁ ପ୍ରାଣବାୟୁ ସହ ତୁଳନା କରନ୍ତି । ନାମ ସାଧନାର ଚରମପର୍ଯ୍ୟାୟରେ ବାହ୍ୟ ଉଚ୍ଚାରଣ

---

(୪) "ନଜର ପରୌ ରହି ମଥିରା ନଗରୀ, କାନ୍ହ ପ୍ରିୟାସା ଜାଇରେ ।"

(୫) "ଭିର୍ଗ୍ଭ ତରବର ଗଗନଫଲ ବିରଲାପଂଛୀଖାୟ—କବୀର ଗ୍ରନ୍ଥାବଳୀ ପୃ ୧୧୬/୭୬
ଇସ୍‌ଫଲ କୋ ଚୋସେ ଚଖୈ ଜୀବତ ହି ମରିଜାୟ ।" ସନ୍ତ-ବାଣୀ-ସଂଗ୍ରହ' ପୃ ୧୪

(୬) "ପାନୀ ମେ ମୀନ ପିୟାସୀ / ଜାନତ କୋଇ ସଂଗ ବିଲାସୀ"

—ଶବ୍ଦାବଳୀ—ପୃ. ୧୧

(୭) "ଗୁରୁ ଆୟେ ଘନ ଗରଜ କରି, ସଇଦ କିୟା ପରକାଶ
ବୀଜ ପଡ଼ାଥା ଭୂମିମେ ଭଇ ଫୂଲ ଫଲ ଆଶ ।"

ଦରିୟା—'ସନ୍ତବାଣୀ ସଂଗ୍ରହ'-ପୃ. ୧୨୬

Digitized by PPRACHIN, SOA

ଲେପ ପାଇଁ ଏହା 'ଅଜପା'ରେ ପରିଣତ ହୁଏ । 'ଅଜପା' ଓଡ଼ିଶାର ସିଦ୍ଧ ସାଧନାରେ ମଧ୍ୟ 'ମନ୍ତ୍ରଯୋଗ' ରୂପେ ଅଭ୍ୟାସିତ । ନାମ ଜପ ମାଧ୍ୟମରେ ସତ୍ତା ଇଷ୍ଟ ପରିପୂର୍ଣ୍ଣ ହୋଇଉଠେ ବୋଲି ନାନକ ନାମସ୍ମରଣକୁ ପରମ କୃପାଶୀର୍ବାଦ ମନେକରିଛନ୍ତି । (୮) ନାମସ୍ମରଣ ମାର୍ଗରେ ସାଧକର ଅନ୍ତଃ ଓ ବହିଃ ଉଭୟ ଚେତନାର ପ୍ରତ୍ୟକ୍ଷ ସହଯୋଗ ଘଟିଥାଏ ବୋଲି ପିଣ୍ଡହିଁ ବ୍ରହ୍ମାଣ୍ଡର କେନ୍ଦ୍ର ରୂପେ ନିର୍ଗୁଣ ସାଧନାର 'ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ'ରେ (୯) ଗୃହୀତ । ଗୋରକ୍ଷନାଥ ପ୍ରବର୍ତ୍ତିତ ଆସନ, ପ୍ରାଣାୟାମ, ତ୍ରିକୁଟ, ଅନାହତ ପ୍ରଭୃତି ମଧ୍ୟ ଏହି ସାଧନାରେ ଅଭ୍ୟାସିତ ହୋଇଥାଏ । ପ୍ରେମାଶ୍ରୟୀ ସାଧନାମାର୍ଗରେ (ତୁଳସୀ ଓ ରାମଦୟାଲ ଅନୁସୃତ ) ଏହା ପ୍ରତି କଟାକ୍ଷ ରହିଥିଲେ ବି ପ୍ରେମଭକ୍ତି ସହିତ ଯୋଗମାର୍ଗୀ ସାଧନା ନିର୍ଗୁଣ ପନ୍ଥାରେ ସମାନ୍ତରାଳଭାବେ ପ୍ରବାହିତ ।

ପ୍ରତ୍ୟକ୍ଷାନୁଭବ—ନିର୍ଗୁଣ ପ୍ରତିପାଦନରେ ଚରମ ଉପଲବ୍ଧିର ବର୍ଣ୍ଣନା ଭାବାତ୍ମକ ଓ ଶବ୍ଦାତ୍ମକ ରହସ୍ୟାଶ୍ରୟୀ । ଅପରୋକ୍ଷ ଅନୁଭୂତିରେ ଦ୍ରଷ୍ଟା ଓ ଦୃଶ୍ୟର ଦ୍ୱୈତଭାବ ତିରୋହିତ'—ଏହି ଅଦ୍ୱୈତ ପୃଷ୍ଠଭୂମିରେହିଁ ରାମାନନ୍ଦ ଓ କବୀରପନ୍ଥୀମାନଙ୍କ ଅନୁଚିନ୍ତା ବିଗ୍ରଥି ।

ଏହି ଅନୁଭୂତିରେ ଆଲୋକ, ଆନନ୍ଦ ଓ ପରିତୃପ୍ତିର ସମସ୍ତ ଲକ୍ଷଣ ବିଦ୍ୟମାନ । ଅନିର୍ବଚନୀୟ ଭାବାନୁଭୂତିରେ ଅନୁଭବ୍ୟ ସହ ତଦ୍‌ଗତତା ବ୍ୟତୀତ ଅନ୍ୟ ସବୁକିଛୁ ଅପ୍ରାସଂଗିକ ବୋଲି ପ୍ରଦର୍ଶିତ । ଏ ନିର୍ଗୁଣୋପଲବ୍ଧି କିନ୍ତୁ ଆତ୍ମଗତ, ସହଜ ଓ ସ୍ୱାଭାବିକ ବୋଲି ସ୍ୱୀକୃତ । କବୀର ଏହାକୁ ନିତ୍ୟ 'ସହଜସମାଧି' (୧୦) ବୋଲି ଉଲ୍ଲେଖ କରିଛନ୍ତି । ଅପରୋକ୍ଷ ଅନୁଭୂତିର ବର୍ଣ୍ଣନା କରି କବୀର କୁହନ୍ତି, 'ସହଜ-ସ୍ୱରୂପ ଏଇ ସହଜ ସମାଧିରେ ପ୍ରତ୍ୟକ୍ଷ ହୁଅନ୍ତି । ମୁଁ ଯୁଆଡ଼େ ଗଲେ ବି ତାଙ୍କ ଚତୁର୍ପାର୍ଶ୍ୱରେ ଘୂରୁଥାଏ, ଯାହା କିଛି କରେ ସବୁ ତାଙ୍କରି ସେବା । ମୋର ପାନାହାର ତାଙ୍କରି ଆରାଧନା । ଯାହା ଶୁଣେ, ତାହା ତାଙ୍କରି ନାମସ୍ମରଣ । ଉଠିବା ବସିବା ମଧ୍ୟ ମୋ ପାଇଁ ଏକାର୍ଥକ । ଆଖି ବନ୍ଦ ନକରି, କାନ ନ ବୁଜି, ଦେହକୁ କଷ୍ଟ ନ ଦେଇ ଖୋଲା ଆଖିରେ ତାଂକର ସୁନ୍ଦର ରୂପ ଦେଖିଛି, ତାଂକର ସୁମଧୁର ହସକୁ ଚିହ୍ନିଛି । ଦୁଃଖ ସୁଖର ଅତୀତରେ ପ୍ରତିଷ୍ଠିତ ଏହି ପରମ ପଦରେ ମୋର ମନ ସକଳ ଦ୍ୱୈତଜ୍ଞାନବିମୁକ୍ତ ହୋଇ ନିରନ୍ତର ଲାଗିରହିଛି ।

ଅନୁଭୂତିର ଏ ଅନିର୍ବଚନୀୟତା ମୂକର ବାତୁଳ ହେବାର ଆବେଗ ଓ ମଧୁର ରସ ଆସ୍ୱାଦନ ସ୍ୱରୂପର ପ୍ରକାଶ ଅକ୍ଷମତା ସହ ତୁଳିତ । ଏ ପ୍ରସଂଗରେ ଉଲ୍ଲେଖନୀୟ । ଦିବ୍ୟୋପଲବ୍ଧିର ବର୍ଣ୍ଣନା ପ୍ରୟାସ ସନ୍ଥ-ସାହିତ୍ୟରେ ଯେଉଁ ଚିହ୍ନ ଜୀବନାନୁଭବରୁ ସଂଗୃହୀତ । ପରଂପରାକ୍ରମେ ସେଗୁଡ଼ିକର ପ୍ରଚାର ଓ ପ୍ରସାର ଭାରତୀୟ ମନସ୍ତତ୍ତ୍ୱରେ ଏକ ବିପୁଳ ଐନ୍ଦ୍ରଜାଳିକ ପ୍ରଭାବ ବିସ୍ତାର କରି ସ୍ୱତଂତ୍ର ଅର୍ଥ ସଂବେଦନା ବହନ କରିବାରେ ସମର୍ଥ ହୋଇଛନ୍ତି । ସ୍ଥଳବିଶେଷରେ ଆଲଂକାରିକତା ଓ କାବ୍ୟକଳା

---

୮ । "କରିଣ ଭୂ ମେରା ଯଜମାନ,
ଏକ ଦକ୍ଷିଣା ମାଗୌ, ଦେହୁ ଆପଣା ନାମ୍" —ନାନକ 'ଗ୍ରନ୍ଥ'—ପୃ. ୭୧୫

୯ । "ଜୋ ପିଣ୍ଡେ ସୋ ବ୍ରହ୍ମାଣ୍ଡେ ଜାବ / ମାନସରୋବର କରି ଅସନାନ ।
କବୀର ଗ୍ରନ୍ଥାବଳୀ—ପୃ. ୧୯

୧୦ । "ସାଧୋ ସହଜ ସମାଧି ଭଈ
ସୁରଜ ନିରନ୍ତର ସେ ମନଲଗା, ମଲିନ ବାସନା ତ୍ୟାଗୀ
ଉଠତ ବୈଠତ କବହୁଁ ନ ଛୁଟେ ଐସୀ ତାରୀ ଲାଗୀ"
'ସଂଥବାଣୀ ସଂଗ୍ରହ' (୧ମ ଭାଗ) ପୃ ୧୪୭

Digitized by PPRACHIN, SOA

ପ୍ରତି ଏକ ସଚେତନ ଶୈଳ୍ପିକ ଦୃଷ୍ଟିଭଂଗୀ ଏବଂ ପ୍ରୟତ୍ନର ଲକ୍ଷଣମାନ ପରିଦୃଷ୍ଟ ହେଲେ ବି ମୁଖ୍ୟତଃ ଏହି ସନ୍ଥବାଣୀଗୁଡ଼ିକ ଆନନ୍ଦମଧୁର ଭାବରସାଣିତ ହୃଦୟାବେଗର ସ୍ୱତଃସ୍ଫୂର୍ତ୍ତ ସଂଗୀତରୂପେ ଉଚ୍ଚାରିତ । ସନ୍ଥ-ରଚନାର କାବ୍ୟିକ ସାର୍ଥକତାର ଚରମ ପରାକାଷ୍ଠା ପ୍ରୀତିଧର୍ମୀ ରୂପକଳା ଓ ଚିତ୍ରପ୍ରତୀକ ମାଧ୍ୟମରେ । କୃପା, ପ୍ରେମ ଓ ଆଲୋକ ଚେତନାର କାମଂଗଳ ରୂପାୟନ ସେମାନଙ୍କର ରହସ୍ୟାତ୍ମକ ଭାବବିଭବକୁ ଏକ ରସାତ୍ମକ ବାଗ୍‌ବୈଦଗଧ୍ୟର ସାର୍ଥକତା ଆଣିଦିଏ । ଅବଶ୍ୟ କବୀର, ତୁଳସୀ, ଦାଦୂ, ମୀରା ଓ ସହଜବାଈ ପ୍ରଭୃତି ସନ୍ଥଙ୍କ ସଚନକବିଙ୍କୁ ବାଦଦେଲେ ଅଧିକାଂଶ 'ସନ୍ଥବାଣୀ' ଚର୍ବିତଚର୍ବଣ ନୀତିଗର୍ଭିତ ଧର୍ମବାକ୍ୟର ପୁନରାବୃତ୍ତି ମୂଳକତା । ସକଳ ପ୍ରାନ୍ତୀୟ ସଂଥ-ସାହିତ୍ୟ ସଂପର୍କରେ ଏ ଉକ୍ତି ପ୍ରଯୁଜ୍ୟ ।

ନିର୍ଗୁଣ ପ୍ରେମ ସାଧନା ବୈଷ୍ଣବ ପ୍ରେମଧର୍ମଠାରୁ ଆତ୍ମିକ ସ୍ୱରୂପରେ ଭିନ୍ନ । ଏହା ବୈଷ୍ଣବୀୟ ସଖୀ ଭାବ ଆରାଧନା (ସଖୀଭାବ ବା ମଂଜରୀ ଭାବରେ) ରାଧାକୃଷ୍ଣ-ଲକ୍ଷ୍ମୀନାରାୟଣ, ସୀତା-ରାମଂଙ୍କ ଦିବ୍ୟ ପ୍ରେମ ବିଳାସକୁ ନିଜର ଶୁଦ୍ଧ ଚିତ୍ତଭୂମିରେ ପ୍ରତ୍ୟକ୍ଷ କରାଯାଏ), ପରିବର୍ତ୍ତେ ଜୀବ ଓ ଈଶ୍ୱରଂଙ୍କ ପ୍ରତ୍ୟକ୍ଷ ପ୍ରୀତିମୂଳକ ସଂପର୍କରେ ବିଶ୍ୱାସୀ । ଏକ ପୁରୁଷ-ରୂପ ଈଶ୍ୱରଙ୍କ ପ୍ରେମ-ମିଳନ ଓ ବିରହ ଉଭୟ ସ୍ୱରୂପରେ ଜୀବ ପ୍ରାଣରେ ପ୍ରତିଭାତ, ତେବେ ସେ ସାଧନାର ମାର୍ଗଟି ବିରହର ନିର୍ଜନ ନିଃସଂଗତା ଭିତରେ ଅନ୍ୱେଷିତ ହୋଇଥାଏ । ନିର୍ଗୁଣୀ ମିଳନଚେତନା ବିଶିଷ୍ଟ ଦ୍ୱୈତମୂଳକ ଅଦ୍ୱୈତ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ହେଉଥିବେଳେ ତାର ବିରହ ଭାବନା ସୂଫୀ ଓ ବୈଷ୍ଣବ ଦ୍ୱୈତବାଦୀ ବିଚ୍ଛିନ୍ନତାର ସଂଘର୍ଷ ଜର୍ଜରିତ ।

ସକଳ ପ୍ରଣୟ-କାବ୍ୟ ପରି ସଂଥ ରଚନାରେ ଏହି ବିରହବ୍ୟଥିତ ଦାଂପତ୍ୟର ରସୋଜ୍ଜ୍ୱଳ ଚିତ୍ର ପ୍ରଦତ୍ତ । କବୀର ଅନୁଯୋଗ କରଂତି, 'ସମସ୍ତେ କୁହନ୍ତି, ମୁଁ ତୁମର ନାରୀ ବୋଲି; ମାତ୍ର ତୁମର ମୋ ପ୍ରତି ସେ ପ୍ରେମର ସ୍ୱରୂପଟି କପର, ମୁଁ ଜାଣେନାହିଁ, କାରଣ ମିଳନଶଯ୍ୟା ମୋ ଭାଗ୍ୟରେ ଏଯାବତ୍ ଘଟିନାହିଁ । (୧୧) ଏ ଅବସ୍ଥାରେ ଜୀବନ ମୃତ୍ୟୁ ତୁଲ୍ୟ ସଂଘର୍ଷଦାୟକ ମନେହେଲେ ବି ସାଧକ ମରଣ କାମନା କରେନାହିଁ, ତା ହେଲେ ଜୀବନର ପ୍ରିୟ ଅନ୍ୱେଷଣ ସୌଭାଗ୍ୟଟିକକ ମଧ୍ୟ ସେ ହରାଇ ବସିବ । କାରଣ 'ପ୍ରିୟ ଦ୍ୱାରା କାମ୍ୟ ନାରୀ ହିଁ ସୌଭାଗ୍ୟବତୀ ।' (୧୨)

ଲକ୍ଷ୍ୟ କରାଯାଇପାରେ ଏ ପଂଥା ନିର୍ଗୁଣ ନାମ-ଚିହ୍ନିତ ହେଲେ ବି ବେଦାନ୍ତ ବର୍ଣ୍ଣିତ ନିର୍ଗୁଣ ବ୍ରହ୍ମ ଏହାର ଉପାସନା-ରୂପରେ ସଗୁଣାତ୍ମକ ପ୍ରତିପାଦିତ ହୋଇଛନ୍ତି । ସେ କେବଳ ଭକ୍ତ-ଉପାସନାର ସାକାର ଦେବତା ନୁହନ୍ତି । ନିର୍ଗୁଣ ଆତ୍ମନିବେଦନମୂଳକ ଭକ୍ତି ଜ୍ଞାନ ସାଧନା ଦେଇ ଅମୂର୍ତ୍ତ ସତ୍ୟାତ୍ମକ ଶାଶ୍ୱତ ପ୍ରେମ, ଆଲୋକ, ଆନନ୍ଦର ମୂର୍ତ୍ତ ରୂପରେ ହିଁ ଧରାଦେଇଥାନ୍ତି । ତେଣୁ ପ୍ରକୃତ ତତ୍ତ୍ୱ ହେଉଛି, "ଗୁଣ ମେ ନିର୍ଗୁଣ, ନିର୍ଗୁଣ ମେ ଗୁଣ ।" ନିର୍ଗୁଣ ମାନସ ଅନୁଧ୍ୟାନ ପ୍ରସଙ୍ଗରେ ରବୀନ୍ଦ୍ରନାଥଙ୍କର ନିମ୍ନୋକ୍ତ ମନ୍ତବ୍ୟଟି (୧୩) ପ୍ରଣିଧାନଯୋଗ୍ୟ ।

---

୧୧ । "ସବକୋ କହେ ତୁମ୍‌ହାରି ନାରି, ମୋକା ଇହୈ ଅଁଦେହରେ ।"

କବୀର ଗ୍ରଂଥାବଳୀ ପୃ. ୧୬

୧୨ । "ତା ସୁହାଗିନି ଜା କାନ୍ତେ ଭାବୈ ।"

ନାନକ ଗ୍ରଂଥ—ପୃ. ୪୦୪

13. "For a real myslte, God is never found in abstractions."

R. N. Tagore 'Kabir's Songs'—P. 136

Digitized by PPRACHIN, SOA

# ସହାୟକ ଗ୍ରନ୍ଥସୂଚୀ

## ଓଡ଼ିଆ


୧ । ଅବକାଶଚିନ୍ତା
ଗୋପବନ୍ଧୁ ଦାଶ
ପ୍ରଃ ଗୋପବନ୍ଧୁ ସାହିତ୍ୟ ମନ୍ଦିର, ୧୯୭୮

୨ । ଅସ୍ତିତ୍ୱବାଦର ମର୍ମକଥା
ଶରତ କୁମାର ମହାନ୍ତି
ଅଗ୍ରଦୂତ ପ୍ରକାଶନୀ, ୧୯୭୭

୩ । ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ
ଡଃ କରୁଣାକର କର

୪ । ଆଧୁନିକ ଓଡ଼ିଆ କାବ୍ୟଧାରା
(ନବଜାଗରଣ ମୂଳ)
ଡଃ ନରେନ୍ଦ୍ରନାଥ ମିଶ୍ର
ବିଶ୍ୱଭାରତୀ ଗବେଷଣା ପ୍ରକାଶନ ସମିତି
କଲିକତା

୫ । ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ
ଡଃ ନଟବର ସାମନ୍ତରାୟ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ

୬ । ଉତ୍ତର ଅରଣ୍ୟ
ଚନ୍ଦ୍ରଶେଖର ରଥ
ଗ୍ରଂଥମନ୍ଦିର, କଟକ

୭ । ଓଡ଼ିଆ ସାହିତ୍ୟର ଇତିହାସ
ସୁରେନ୍ଦ୍ର ମହାନ୍ତି
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍

୮ । କାନ୍ତକବି ସାହିତ୍ୟ ସମୀକ୍ଷା
ସଙ୍କଳନ : ଅପୂର୍ବ ରଂଜନ ରାୟ
ଲକ୍ ବୁକ୍ସ୍, ଲୁଇସରୋଡ଼, ଭୁବନେଶ୍ୱର,
୧୯୭୭

୯ । କାନ୍ତ ସାହିତ୍ୟମାଳା
ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ

୧୦ । କାବ୍ୟ ଓ କଳାକାର
ଚିନ୍ତାମଣି ବେହେରା
ଆଲୋକ ସାହିତ୍ୟ ପ୍ରତିଷ୍ଠାନ, ୧୯୭୭

୧୧ । କାରା କବିତା
ଗୋପବନ୍ଧୁ ଦାଶ
ଗୋପବନ୍ଧୁ ସାହିତ୍ୟ ମନ୍ଦିର୍, କଟକ

୧୨ । କୁନ୍ତଳା କୁମାରୀ ଗ୍ରଂଥାବଳୀ
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

୧୩ । କୁନ୍ତଳା କୁମାରୀ ଜୀବନଚରିତ
ଚକ୍ରଧର ମହାପାତ୍ର
ଗ୍ରନ୍ଥମନ୍ଦିର, କଟକ, ୧୯୭୨

୧୪ । ଗୋପବନ୍ଧୁ ପରିକ୍ରମା
ପୂଜ୍ୟପୂଜା ସଂସଦ, ୧୯୭୬

୧୫ । ଚର୍ଯ୍ୟା ଗୀତିକା
ଡଃ ଖଗେଶ୍ୱର ମହାପାତ୍ର
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୬୫

୧୬ । ଜୀବନ ସାହିତ୍ୟ ଓ କଳା
ବାମାଚରଣ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୭୬

୧୭ । ଦିବ୍ୟଜୀବନ : ପ୍ରଥମଖଣ୍ଡ

୧୮ । ଦିବ୍ୟଜୀବନ : ଦ୍ୱିତୀୟ ଖଣ୍ଡ, ଉତ୍ତରାର୍ଦ୍ଧ
ରଚନା—ଶ୍ରୀ ଅରବିନ୍ଦ
ଅନୁବାଦ—ଚିତ୍ତରଂଜନ ଦାଶ
ନବଜ୍ୟୋତି କାର୍ଯ୍ୟାଳୟ
ଶ୍ରୀ ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ-୨


Digitized by PPRACHIN, SOA

୧୯ । ଦୃଷ୍ଟି ଓ ସୃଷ୍ଟି
ଡ: କାହ୍ନୁ ଚରଣ ମିଶ୍ର
ଦାସ୍ ବ୍ରଦର୍ସ, ବ୍ରହ୍ମପୁର

୨୦ । ନାଥଧର୍ମର କ୍ରମବିକାଶ
ଡ: ଦୋଳ ଗୋବିନ୍ଦ ଶାସ୍ତ୍ରୀ

୨୧ । ନିବନ୍ଧମାଳା (ଅନୁବାଦ)
(୧ମ ଓ ୨ୟ ଭାଗ)
ରବୀନ୍ଦ୍ରନାଥ
ସାହିତ୍ୟ ଏକାଡେମୀ, ୧୯୭୧

୨୨ । ନୀଳକଣ୍ଠ ଗ୍ରନ୍ଥାବଳୀ (୧ମ ଭାଗ)
କଟକ ଷ୍ଟୁଡେଣ୍ଟସ ଷ୍ଟୋର

୨୩ । ବୈକୁଣ୍ଠନାଥ ଗ୍ରନ୍ଥାବଳୀ
(୧ମ ଓ ୨ୟ ଭାଗ)
ଉତ୍କଳ ସାହିତ୍ୟ ସମାଜ

୨୪ । ବୈକୁଣ୍ଠନାଥ ପରିକ୍ରମା
ପୂଜ୍ୟପୂଜା ସଂସଦ

୨୫ । ଭାରତୀୟ ଦର୍ଶନ (ଅନୁବାଦ)
ଅଧ୍ୟାପକ ବଳଦେବ ରାୟ
ସାହିତ୍ୟ ଏକାଡେମୀ

୨୬ । ଭାରତୀୟ ସଂସ୍କୃତିର ଆଧାର (ଅନୁବାଦ)
ଶ୍ରୀ ଅରବିନ୍ଦ
(ଅନୁବାଦ : ବିଶ୍ୱମ୍ଭର ସାମନ୍ତ, ପ୍ରପତ୍ତି)
ନବଜ୍ୟୋତି କାର୍ଯ୍ୟାଳୟ
ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ-୨

୨୭ । ଶ୍ରୀମଦ୍ ଭାଗବତ ଏକାଦଶସ୍କନ୍ଧ
(ଅନୁବାଦ)
ଜଗନ୍ନାଥ ଦାସ
ବାଣୀଭଣ୍ଡାର, ବ୍ରହ୍ମପୁର, ଗଂଜାମ

୨୮ । ଭୀମଭୋଇ ଗ୍ରନ୍ଥାବଳୀ
କରୁଣାକର ସାହୁ
ଧର୍ମଗ୍ରନ୍ଥ ଷ୍ଟୋର

୨୯ । ମଧୁସୂଦନ ଗ୍ରନ୍ଥାବଳୀ
କଟକ ଷ୍ଟୁଡେଣ୍ଟସ ଷ୍ଟୋର

୩୦ । ମଧୁ ଦୃଷ୍ଟି ଅମୃତ ସୃଷ୍ଟି
ଡ: ଶରତଚନ୍ଦ୍ର ପ୍ରଧାନ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରକାଶନ
ସଂସ୍ଥା, ଭୁବନେଶ୍ୱର, ୧୯୭୯

୩୧ । ମାନସିଂହ ଗ୍ରଂଥାବଳୀ (୧ମ ଭାଗ)
ଗ୍ରନ୍ଥମନ୍ଦିର, କଟକ

୩୨ । ମାନସିଂହ ସୃଷ୍ଟି-ସମୀକ୍ଷା
ସଂ: ଓ ପ୍ର: ରାଧାଶ୍ୟାମ ବେହୁରା
ବାଲିକୁଦା, କଟକ

୩୩ । ମାନସିଂହ ପରିକ୍ରମା
ପୂଜ୍ୟପୂଜା ସଂସଦ, କଟକ

୩୪ । ମଂଜରୀ
୩୫ । ମୁକୁଳ } ନବ କିଶୋର ଦାସ
କଳାବିକାଶ କୁଂଜ

୩୬ । ରସ କଲ୍ଲୋଳ
ଦୀନକୃଷ୍ଣ ଦାସ
ଫ୍ରେଣ୍ଡସ୍ ପବ୍ଲିସର୍ସ, ୧୯୬୯

୩୭ । ରୁଦ୍ରସୁଧାନିଧି
ନାରାୟଣାନନ୍ଦ ଅବଧୂତ ସ୍ୱାମୀ
ଓଡ଼ିଆ ସାହିତ୍ୟ ଏକାଡେମୀ

୩୮ । ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ
ଧର୍ମଗ୍ରନ୍ଥ ଷ୍ଟୋର, କଟକ

୩୯ । ସଚ୍ଚି ରାଉତରାୟ ଗ୍ରଂଥାବଳୀ
ଗ୍ରଂଥମନ୍ଦିର, କଟକ, ୧୯୬୫

୪୦ । ସନେଟିଶ ଓ ସେଣ୍ଟୋ
ଶରତ କୁମାର ମହାନ୍ତି
ଗ୍ରନ୍ଥମନ୍ଦିର

୪୧ । ସବୁଜରୁ ସାଂପ୍ରତିକ
ଡ: ନିତ୍ୟାନନ୍ଦ ଶତପଥୀ
ଗ୍ରଂଥମନ୍ଦିର, ୧୯୭୯

୪୨ । ହେ ସାଥୀ, ହେ ସାରଥି
ଡ: ନିତ୍ୟାନନ୍ଦ ଶତପଥୀ
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍


Digitized by PPRACHIN, SOA

## ବଂଗଳା

୧ । ଉପନିଷଦେର ପଃଭୂମିକାୟ ରବୀନ୍ଦ୍ରମାନସ
ଶଶିଭୂଷଣ ଦାସଗୁପ୍ତ
ମୂଖାର୍ଜି ଏଣ୍ଡ କୋ ପ୍ରାଃ ଲିଃ
ବଂକିମ୍ ଚ୍ୟାଟାର୍ଜି ରୋଡ୍, କଲିକତା

୨ । କବିମାନସୀ
ଜଗଦୀଶ ଭଟ୍ଟାଚାର୍ଯ୍ୟ
ଡିଃ ଏମ୍ଃ ଲାଇବ୍ରେରି
୪୨ କର୍ଣ୍ଣଓ୍ୱାଲିସ ଷ୍ଟ୍ରୀଟ୍, କଲିକତା-୬

୩ । କବି ଶ୍ରୀ ରାମକୃଷ୍ଣ
ଅଚନ୍ତ୍ୟ କୁମାର ସେନଗୁପ୍ତ
ମିତ୍ର ଓ ଘୋଷ
ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍, କଲିକତା-୧୨

୪ । ଗୌଡ଼ୀୟ ବୈଷ୍ଣବରସେର
ଅଲୌକିକ ତତ୍ତ୍ୱ
ଉମା ରାୟ
କଲିକତା ବିଶ୍ୱବିଦ୍ୟାଳୟ

୫ । ରବି ପ୍ରଦକ୍ଷିଣ
ମୋହିତ ଲାଲ ମଜୁମଦାର
ବଂଗଭାରତୀ ଗ୍ରଂଥାଳୟ, ହାଓଡ଼ା

୬ । ରବି-ରଶ୍ମି
ଚାରୁଚନ୍ଦ୍ର ବନ୍ଦୋପାଧ୍ୟାୟ
Niva Mukherjee &
A. Mukherjee &
Pvt. Ltd.
2-Bankim Chatterjee
Street, Cal. 12

୭ । ରବୀନ୍ଦ୍ର ପରିଚୟ
ମନୋରଂଜନ ଜାନା
କାଲକାଟା ପବ୍ଲିଶର୍ସ

୮ । ପରିଚୟ
ରବୀନ୍ଦ୍ରନାଥ ଠାକୁର
ବିଶ୍ୱଭାରତୀ

୯ । ସାରଦାମଂଗଲ (ବିହାରୀ ଲାଲ)
ଭବାନୀ ଗୋପାଳ ସାନ୍ୟାଲ
ବି. ବି. ବ୍ରଦର୍ସ ଏଣ୍ଡ କୋ
ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍,
କଲିକତା-୧୨

୧୦ । ରବୀନ୍ଦ୍ରାୟଣ (ପତ୍ରିକା), ବାକ୍ ସାହିତ୍ୟ, କଲିକତା

## ହିନ୍ଦୀ

୧ । ଋକ୍‌ବେଦ ଭାଷା-ଭାଷ୍ୟ
ବୈଦ୍ୟନାଥ ଶାସ୍ତ୍ରୀ
ସାର୍ବଦେଶିକ ଆର୍ଯ୍ୟ ପ୍ରତିନିଧି ସଭା
ମହର୍ଷି ଦୟାନନ୍ଦ ଭବନ, ନୂଆଦିଲ୍ଲୀ-୨

୨ । ମହାଦେବୀ କା କାବ୍ୟ ବୈଭବ
ରମେଶଚନ୍ଦ୍ର ଗୁପ୍ତ
ପ୍ରେମ ପ୍ରକାଶନ ମନ୍ଦିର, ଦିଲ୍ଲୀ-୬

୩ । ନୀରଜା
ସାଂଧ୍ୟଗୀତ } ମହାଦେବୀ ବର୍ମା
ଭାରତୀ ଭଣ୍ଡାର, ଲିଡର ପ୍ରେସ
ଏଲାହାବାଦ

୪ । ସୁଫୀ ମତ୍ ଔର ହିନ୍ଦୀ ସାହିତ୍ୟ
ବିମଲ କୁମାର ଜୈନ
ଆତ୍ମାରାମ ଏଣ୍ଡ ସନ୍ସ, ଦିଲ୍ଲୀ-୬

Digitized by PPRACHIN, SOA

## ENGLISH


1. A Critical Survey of Indian Philosophy
   Dr. Chandradhar Sharma
   Motilal Banarasi Das, Delhi-6
2. American Renaissance
   P. D. Matthriesen.
   Oxford University Press, 2/11 Ansari Road,
   Dariaganj, Delhi-6
3. An Introduction to Tantric Buddhism
   S. B. Dasgupta
   University of Calcutta, 1950.
4. An Introduction to Zen Buddhism
   D. T. Suzuki
   Penguine-Books.
5. Anthology of Islamic Literature
   James Kritzect
   Penguine Books.
6. Buddhism in Orissa
   N. C. Sahoo
7. Chinese Religion through Hindu Eyes
   Binoy Kumar Sarkar
   Central Publishers and Distributer
   Pataudi House, Dariyaganj, Delhi-6
8. Cosmic Consciousness
   R. M. Bucke
   Dutton Paperback, New York, 1969.
9. Collected Poems
   Sri Aurobindo
   S. A. Publication Department
   Pondicherry, 1968
10. Eastern Religion and Western Thoughts
    S. P. Radhakrishnan
    Oxford University Press, 1977.


Digitized by PPRACHIN, SOA

11. Encyclopaedica Britanica
Vols 16, 17 and 18.

12. God in Search of Man
Abraham Herschel
Farrar, Straas and Cudahy
10/V. avenue, New York-3

13. Jonathan Livingstone Sea-gull
Richard Bach
Pan Books, London.

14. Keshab Chandra Sen
Pratap Ch Mazumdar
Naba Bidhan Trust, Calcutta, 1931

15. Leaves of Grass
Walt Whitman
The Modern Library, U. S. A.

16. Letters on Humour Vol —III
Sri Aurobindo
S. A. Ashram Publication Department,
Pondicherry

17. Medieval Mysticism in India
Kshitimohan Sen
Biswavarati Publication.

18. Mystical Dimensions of Islam
Annamarie Schimmel
North Caroline Press, Chapel Hill

19. Mysticism
Evelyn Under hill
New American Library
New York

20. Mysticism and Logic and Other Essays
B. Russel
Longmans, London, 1921

Digitized by PPRACHIN, SOA

21. Mysticism, Christian and Buddhist
D. T. Suzuki
New York, Harper and Brothers, 1927

22. Mysticism East and West
Rudolf Otto
Macm·llan Publishing & Co. 1976

23. Mysticism any Philosophy
W. T. Stace
Mac millan & Co. Ltd, London, 1961

24. Mysticism in Rigveda
T. G. Manikar
Popular Book Depot,
Lemington Road, Bombay-7

25. No Water No. Moon
Acharya Rajneesh
Rajneesh Foundation, Pune

26. Obscure Religious Cults
S. B. Dasgupta
Firma K L M Private Ltd., Calcutta.

27. Oxford Advanced Learners Dictionary of Current English
A. S. Hornby
Oxford University Press, 1974

28. Oriental Mysticism
E. H. Palmer
Prank Cess & Co. Ltd., Great Russel Street, London.

29. Pathway to God
Ranade
Bharatiya Vidya Bhaban Publication

30. Poetry and Mysticism
Colin Wilson
Hutchinson Press, London, 1931

Digitized by PPRACHIN, SOA

31. Prayers and Meditations.
The Mother
Sri Aurobindo Publication Department, Pondicherry

32. Religion in Philosophical and Cultural Perspectives
Ed—J. Clayton, Feever and Horosz
East West Press

33. Religious Consciousness
J. B. Pratt
Macmillan Company.

34. Savitri
Sri Aurobindo
S. A. Ashram Publication Department, Pondicherry.

35. Selected Wr'ghtings of
D. T. Suzuki (Zen Buddhism)
Ed William Barrctt,
Anchor Books, Double Day & Co.

36. Studies in American Literature
Egbert S. Oliver
Eurassia Publishing Home

37. Studies in Islamic Mysticism
R. A. Nicholson
Cambridge University Press

38. Synthesis of Yoga
Sri Aurobindo
S. A. Ashram Publication, Pondicherry.

39. The Adventure of Consciousness
Sri Satprem
S. A. Ashram Publication Department, Pondicherry

Digitized by PPRACHIN, SOA

40. The Bible ( King James Version )
The Gideons International Ed. 1977

41. The Call of Upnishads
Rohit Mehta
B. V. B. Publication

42. The Cloud of Unknowing
Ira Progroff
The Julian Press, 1957

43. The Creed of Buddha
G. Edmund Holmes
John Lane Company.

44. The Cyclic Universe of
God, man, Science and Matter.
V. M. Srikumaran Nayar
B. V. B. Publication, 1979

45. The Future Poetry
Sri Aurobindo
S A. Ashram Publication Department,
Pondicherry.

46. The History and Culture of the Indian
People Vol.—III
B V. B. Publication

47. The Hymns of Atharva veda—Vol-I
Ralph T. H. Griffith
Chowkhamba Sanskrit Studies. Vol—LXV

48. The Idea of Holy.
Rudolf Otto
Oxford University Press, London.

49. The Inner Reality
Paul Brunton
54, Janapath, New Delhi—110 001.

Digitized by PPRACHIN, SOA

50. The Metaphysical Poets.
Ed. Helen Gardner
Rupa Paper-back

51. The Mustard seed
Sri Rajneesh
Rajneesh Foundation, Pune.

52. The Mystics of Islam
R. A. Nicholson
University Press, Cambridge.

53. The Pilgrim's Progress
John Bungan
Everyman's Library

54. The Sacred Book of China, Part-I Vol. XXXI
James Legga
Dover Publications, Ins. New York.

5 The Secret of the Vedas
Sri Aurobindo
S. A. A. Publication Department, Pondicherry

56. The Shoes of Fisherman
Morris West
Pan Books.
Tathil Street, London, 1964.

57. The Vedas
Maxmullar
Suship Gupta India Ltd. 1st Ed. 1956.

58. Thus Spoke Zaruthrustra.
Nietsche
J. M. Dent and Sons 1960.

59. Tiruvachbakam
Manikkavachakar (trs)
B. V. B. Publication.

Digitized by PPRACHIN, SOA

60. Tradition of Indian Mysticism based upon
Nirguna School of Hindi Poetry.
P. P. Burthwal.
Heritage Publishers,
M 116, Conneaght Circus, N P 110 001.

61. Variety of Religious Experience,
William James
Modern Library, New York.



Digitized by PPRACHIN, SOA